# ଶ୍ରୀମଦ୍

# ବାଲ୍ମୀକି ରାମାୟଣମ୍

ବିଶ୍ୱର ଅମର ଅବଦାନ ବାଲ୍ମୀକି ରାମାୟଣ ଆଜ ପୃଥିବୀର ଯେ କୌଣସି ଭାଷାଭାଷୀଙ୍କ ନିକଟରେ ଆଦୃତ । ମୂଳ ସଂସ୍କୃତ ଲେଖାର ନିର୍ଭୁଲ ଓଡ଼ିଆ ଅନୁବାଦ ଏପର୍ଯ୍ୟନ୍ତ ପ୍ରକାଶ ପାଇ ନ ଥିଲା । ଏ ପୁସ୍ତକରେ ମୂଳ ସଂସ୍କୃତ ଶ୍ଳୋକ ଓ ତାର ସରଳ ଗଦ୍ୟାନୁବାଦ ପ୍ରକାଶ ପାଇଥିବାରୁ ଏହା ଓଡ଼ିଆ ସାହିତ୍ୟର ଗୋଟିଏ ବଡ଼ ଅଭାବ ଦୂର କରିପାରିଛି ।

| | | | |
|---|---|---|---|
| ବାଲକାଣ୍ଡ | ଟ ୫୪ | ଅଯୋଧ୍ୟାକାଣ୍ଡ | ଟ ୧୦୨ |
| ଅରଣ୍ୟକାଣ୍ଡ | ଟ ୬୨ | କିଷ୍କିନ୍ଧାକାଣ୍ଡ | ଟ ୬୨ |
| ସୁନ୍ଦରକାଣ୍ଡ | ଟ ୬୪ | ଯୁଦ୍ଧକାଣ୍ଡ | ଟ ୧୬୪ |
| ଉତ୍ତରକାଣ୍ଡ | ଟ ୮୪ | | |

ଯେଉଁମାନେ ଏକକାଳୀନ ଟ ୪୫୨ ପଠାଇବେ, ସେମାନେ ସାତଖଣ୍ଡଯାକ ବହି ଟ ୫୫୨ ସ୍ଥଳେ ଟ ୪୫୨ ରେ ପାଇବେ । ଡାକଖର୍ଚ୍ଚ ସ୍ୱତନ୍ତ୍ର ।

---

# ଶ୍ରୀମଦ୍

# ବାଲ୍ମୀକିରାମାୟଣମ୍

## ( ଉତ୍ତରକାଣ୍ଡଃ )

ସଂଗ୍ରାହକ ଓ ଅନୁବାଦକ

ପଣ୍ଡିତ ଲିଙ୍ଗରାଜ ମିଶ୍ର, ଏମ୍. ଏ.

ପ୍ରଥମ ସଂସ୍କରଣ

୧୯୫୭




ମୂଲ୍ୟ ଟ ୮।୮ ଆଠ ଟଙ୍କା ଆଠ ଅଣା ମାତ୍ର

# ଶ୍ରୀମଦ୍ରାମାୟଣସର୍ଗନାମାନୁକ୍ରମଣିକା

## ଉତ୍ତରକାଣ୍ଡଃ

# ଶ୍ରୀମଦ୍ ବାଲ୍ମୀକିରାମାୟଣମ୍

## ଉତ୍ତରକାଣ୍ଡଃ

---

## ପ୍ରଥମଃ ସର୍ଗଃ

### ରାମପ୍ରଶ୍ନଃ

ପ୍ରାପ୍ତରାଜ୍ୟସ୍ୟ ରାମସ୍ୟ ରାକ୍ଷସାନାଂ ବଧେ କୃତେ ।
ଆଜଗ୍ମୁର୍ମୁନୟଃ ସର୍ବେ ରାଘବଂ ପ୍ରତିନନ୍ଦିତୁମ୍ । ୧ ।
କୌଶିକୋଽଥ ଯବକ୍ରୀତୋ ଗାର୍ଗ୍ୟୋ ଗାଲବ ଏବ ଚ ।
କାଣ୍ୱୋ ମେଧାତିଥେଃ ପୁତ୍ରଃ ପୂର୍ବସ୍ୟାଂ ଦିଶି ଯେ ଶ୍ରିତାଃ ।୨।
ସ୍ୱସ୍ତ୍ୟାତ୍ରେୟୋଽଥ ଭଗବାନ୍ନମୁଚିଃ ପ୍ରମୁଚସ୍ତଥା ।
ଅଗସ୍ତ୍ୟୋଽତ୍ରିଶ୍ଚ ଭଗବାନ୍ ସୁମୁଖୋ ବିମୁଖସ୍ତଥା । ୩ ।
ଆଜଗ୍ମୁସ୍ତେ ସହାଗସ୍ତ୍ୟା ଯେ ସ୍ଥିତା ଦକ୍ଷିଣାଂ ଦିଶମ୍ ।
ନୃଷଦ୍ଗୁଃ କବଷୋ ଧୌମ୍ୟୋ ରୌଦ୍ରେୟଶ୍ଚ ମହାନୃଷିଃ । ୪ ।

---

## ୧ମ ସର୍ଗ

( ରାମଙ୍କର ଋଷିମାନଙ୍କୁ ପ୍ରଶ୍ନ )

ରାମ ରାକ୍ଷସମାନଙ୍କୁ ବଧ କରି ରାଜ୍ୟ ପାଇବା ପରେ ମୁନିମାନେ ସମସ୍ତେ ରାଘବଙ୍କୁ ପ୍ରଶଂସା କରିବା ପାଇଁ ଆସିଲେ । ୧ । କୌଶିକ, ଯବକ୍ରୀତ, ଗାର୍ଗ୍ୟ, ଗାଲବ ଏବଂ ମେଧାତିଥିଙ୍କର ପୁତ୍ର କଣ୍ୱ ଏ ଯେଉଁ ଋଷିମାନେ ପୂର୍ବଦିଗରେ ରହୁଥିଲେ ଏବଂ ସ୍ୱସ୍ତ୍ୟାତ୍ରେୟ, ନମୁଚି, ପ୍ରମୁଚ, ସୁମୁଖ, ବିମୁଖ ପ୍ରଭୃତି ଦକ୍ଷିଣଦିଗବାସୀ ଋଷିମାନେ ଅଗସ୍ତ୍ୟଙ୍କ ସହିତ ଆସିଥିଲେ । ନୃଷଦ୍ଗୁ, କବଷ, ଧୌମ୍ୟ, ରୌଦ୍ରେୟ ପ୍ରମୁଖ

ତେଽପ୍ୟାଜଗ୍ମୁଃ ସଶିଷ୍ୟା ବୈ ଯେ ଶ୍ରିତାଃ ପଶ୍ଚିମାଂ ଦିଶମ୍ ।
ବଶିଷ୍ଠଃ କାଶ୍ୟପୋଽଥାତ୍ରି ର୍ବିଶ୍ୱାମିତ୍ରଃ ସଗୌତମଃ । ୫ ।
ଜମଦଗ୍ନି ର୍ଭରଦ୍ୱାଜସ୍ତେଽପି ସପ୍ତର୍ଷୟସ୍ତଥା ।
ଉଦୀଚ୍ୟାଂ ଦିଶି ସପ୍ତୈତେ ନିତ୍ୟମେବ ନିବାସିନଃ । ୬ ।
ସଂପ୍ରାପ୍ୟ ତେ ମହାତ୍ମାନୋ ରାଘବସ୍ୟ ନିବେଶନମ୍ ।
ବିଷ୍ଠିତାଃ ପ୍ରତିହାରାର୍ଥଂ ହୁତାଶନସମପ୍ରଭାଃ । ୭ ।
ବେଦବେଦାଙ୍ଗବିଦୁଷୋ ନାନାଶାସ୍ତ୍ରବିଶାରଦାଃ ।
ଦ୍ୱାଃସ୍ଥଂ ପ୍ରୋବାଚ ଧର୍ମାତ୍ମା ହ୍ୟଗସ୍ତ୍ୟୋ ମୁନିସତ୍ତମଃ । ୮ ।
ନିବେଦ୍ୟତାଂ ଦାଶରଥେ ର୍ଋଷୀନସ୍ମାନ୍ ସମାଗତାନ୍ ।
ପ୍ରତିହାରସ୍ତତସ୍ତୂର୍ଣ୍ଣମଗସ୍ତ୍ୟବଚନାଦ୍ଦ୍ରୁତମ୍ । ୯ ।
ସମୀପଂ ରାଘବସ୍ୟାଶୁ ପ୍ରବିବେଶ ମହାତ୍ମନଃ ।
ନୟେଙ୍ଗିତଜ୍ଞଃ ସଦ୍‌ବୃତ୍ତୋ ଦକ୍ଷୋ ଧୈର୍ଯ୍ୟସମନ୍ୱିତଃ ।୧୦।
ସ ରାମଂ ଦୃଶ୍ୟ ସହସା ପୂର୍ଣ୍ଣଚନ୍ଦ୍ରସମପ୍ରଭମ୍ ।
ଅଗସ୍ତ୍ୟଂ କଥୟାମାସ ସଂପ୍ରାପ୍ତମୃଷିଭିଃ ସହ । ୧୧ ।
ଶ୍ରୁତ୍ୱା ପ୍ରାପ୍ତାନ୍ ମୁନୀଂସ୍ତାଂସ୍ତୁ ବାଲସୂର୍ଯ୍ୟସମପ୍ରଭାନ୍ ।
ପ୍ରତ୍ୟୁବାଚ ତତୋ ଦ୍ୱାଃସ୍ଥଂ ପ୍ରବେଶୟ ଯଥାସୁଖମ୍ । ୧୨ ।

---

ଯେଉଁମାନେ ପଶ୍ଚିମ ଦିଗରେ ରହୁଥିଲେ ଏବଂ ବଶିଷ୍ଠ, କଶ୍ୟପ, ଅତ୍ରି, ବିଶ୍ୱାମିତ୍ର, ଗୌତମ, ଜମଦଗ୍ନି ଏବଂ ଭରଦ୍ୱାଜ ଏହି ସାତ ଉତ୍ତରଦିଗବାସୀ ଋଷି ଉତ୍ତରଦିଗରୁ ଆସିଥିଲେ ।୨-୬। ଏହି ସବୁ ଅଗ୍ନିସଦୃଶ ତେଜସ୍ୱୀ ଋଷିମାନେ ରାମଙ୍କ ନିବାସରେ ଆସି ପହଞ୍ଚିଲେ ଏବଂ ଦ୍ୱାରୀମାନେ ସେମାନଙ୍କୁ ଆଦରପୂର୍ବକ ବସାଇଲେ । ୭। ଏ ସମସ୍ତେ ବେଦବେଦାଙ୍ଗରେ ପଣ୍ଡିତ ଥିଲେ ଏବଂ ନାନା ଶାସ୍ତ୍ରନିପୁଣ ଥିଲେ । ସେମାନଙ୍କ ମଧ୍ୟରୁ ମୁନିଶ୍ରେଷ୍ଠ ଧର୍ମାତ୍ମା ଅଗସ୍ତ୍ୟ ଦ୍ୱାରପାଳମାନଙ୍କୁ କହିଲେ ।୮। "ମହାରାଜ ରାମଚନ୍ଦ୍ରଙ୍କୁ ଜଣାଅ ଯେ ଆମେ ଋଷିମାନେ ସମସ୍ତେ ଆସିଛୁ ।" ଅଗସ୍ତିଙ୍କର ଏ କଥା ଶୁଣି ଦ୍ୱାରପାଳ ଅତି ଶୀଘ୍ର ମହାତ୍ମା ରାମଚନ୍ଦ୍ରଙ୍କ ନିକଟରେ ଆସି ପହଞ୍ଚିଲା । ସେହି ଦ୍ୱାରପାଳ ନୀତିମାନ୍, ସଦାଚାରୀ, ସଙ୍କେତ ବୁଝାଇବାରେ ଚତୁର ଏବଂ ଧୈର୍ଯ୍ୟବାନ୍ ଥିଲା । ୯-୧୦ । ପୂର୍ଣ୍ଣିମାର ଚନ୍ଦ୍ରସଦୃଶ ଦୀପ୍ତିମାନ୍ ରାମଚନ୍ଦ୍ରଙ୍କ ନିକଟକୁ ଯାଇ ସେ କହିଲା, "ମହାରାଜ ! ଋଷିଶ୍ରେଷ୍ଠ ଅଗସ୍ତ୍ୟ ପ୍ରଧାନ ଋଷିମାନଙ୍କ ସହିତ ଆସିଅଛନ୍ତି" । ୧୧ । ବାଲସୂର୍ଯ୍ୟ ସଦୃଶ ପ୍ରଭାବାନ୍ ସେ ସମସ୍ତ ଋଷିଙ୍କ ଆଗମନ କଥା ଶୁଣି ରାମ ଦ୍ୱାରପାଳକୁ କହିଲେ, "ତୁମେ ସେହି ଋଷିମାନଙ୍କୁ ଆଦରପୂର୍ବକ ଏଠାକୁ ନେଇଆସ" । ୧୨ ।

ତାନ୍ ସଂପ୍ରାପ୍ତାନ୍ ମୁନୀନ୍ ଦୃଷ୍ଟ୍ୱା ପ୍ରତ୍ୟୁତ୍ଥାୟ କୃତାଞ୍ଜଳିଃ ।
ପାଦ୍ୟାର୍ଘ୍ୟାଦିଭିରାନର୍ଚ୍ଚ୍ୟ ଗାଂ ନିବେଦ୍ୟ ଚ ସାଦରମ୍ ।୧୩।
ରାମୋଽଭିବାଦ୍ୟ ପ୍ରୟତ ଆସନାନ୍ୟାଦିଦେଶ ହ ।
ତେଷୁ କାଞ୍ଚନଚିତ୍ରେଷୁ ସ୍ୱାସ୍ତୀର୍ଣ୍ଣେଷୁ ସୁଖେଷୁ ଚ । ୧୪ ।
କୁଶାନ୍ତର୍ଧାନଦତ୍ତେଷୁ ମୃଗଚର୍ମଯୁତେଷୁ ଚ ।
ଯଥାର୍ହମୁପବିଷ୍ଟାସ୍ତେ ଆସନେଷୃଷିପୁଙ୍ଗବାଃ । ୧୫ ।
ରାମେଣ କୁଶଳଂ ପୃଷ୍ଟାଃ ସଶିଷ୍ୟା ସପୁରୋଗମାଃ ।
ମହର୍ଷୟୋ ବେଦବିଦୋ ରାମଂ ବଚନମବ୍ରୁବନ୍ ।
କୁଶଳଂ ନୋ ମହାବାହୋ ସର୍ବତ୍ର ରଘୁନନ୍ଦନ । ୧୬ ।
ତ୍ୱାଂ ତୁ ଦିଷ୍ଟ୍ୟା କୁଶଳିନଂ ପଶ୍ୟାମୋ ହତଶାତ୍ରବମ୍ ।
ଦିଷ୍ଟ୍ୟା ତ୍ୱୟା ହତୋ ରାଜନ୍ ରାବଣୋ ଲୋକରାବଣଃ । ୧୭ ।
ନ ହି ଭାରଃ ସ ତେ ରାମ ରାବଣଃ ପୁତ୍ରପୌତ୍ରବାନ୍ ।
ସଧନୁସ୍ତ୍ୱଂ ହି ଲୋକାଂସ୍ତ୍ରୀନ୍ ବିଜୟେଥା ନ ସଂଶୟଃ ।୧୮।

---

ଋଷିମାନେ ରାମଙ୍କ ନିକଟରେ ପହଞ୍ଚିବାର ଦେଖି ସେ ହାତଯୋଡ଼ି ଠିଆ ହୋଇଗଲେ । ସେ ସେହି ଋଷିମାନଙ୍କୁ ଅର୍ଘ୍ୟ ପାଦ୍ୟାଦିଦ୍ୱାରା ପୂଜାକରି ଏବଂ ଆଦର ସହିତ ପ୍ରତ୍ୟେକଙ୍କୁ ଗୋଦାନ ଦେଇ ଅତି ଭକ୍ତିଭାବରେ ସେମାନଙ୍କୁ ପ୍ରଣାମ କଲେ ଏବଂ ବସିବା ପାଇଁ ଆସନ ଦେଲେ । ସେସବୁ ଆସନ ସୁନାରେ ତିଆରି ହୋଇଥିଲା ଏବଂ ନାନାରଙ୍ଗରେ ଚିତ୍ରିତ ହୋଇ ସୁନ୍ଦର ଦେଖାଯାଉଥିଲା । କୁଶଯୁକ୍ତ ଓ ମୃଗଚର୍ମଯୁକ୍ତ ଆସନମାନଙ୍କରେ ସେହି ଶ୍ରେଷ୍ଠ ଋଷିମାନେ ବସିଗଲେ । ୧୩-୧୫ । ତଦନନ୍ତର ରାମ ଶିଷ୍ୟମାନଙ୍କ ସହିତ ସେହି ପ୍ରଧାନ ଋଷିମାନଙ୍କୁ ସେମାନଙ୍କର କୁଶଳାଦି ପଚାରିଲେ । ବେଦଜ୍ଞ ଋଷିମାନେ ରାମଙ୍କୁ କହିଲେ, "ହେ ମହାବାହୁ ରଘୁନନ୍ଦନ ! ଆମେ ସମସ୍ତେ କୁଶଳରେ ଅଛୁଁ । ୧୬ । ଶତ୍ରୁମାନଙ୍କୁ ସଂହାର କରିସାରି ତୁମେ କୁଶଳରେ ଥିବାର ଦେଖି ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦିତ ହୋଇଅଛୁ । ହେ ରାଜନ୍ ! ଏହା ଅତି ସୌଭାଗ୍ୟର କଥା ଯେ ଆପଣ ସବୁ ଲୋକକୁ ଡରାଉଥିବା ରାବଣକୁ ମାରିଦେଇ-ଅଛନ୍ତି । ୧୭ । ହେ ରାମ ! ଆପଣଙ୍କ ପକ୍ଷରେ ପୁତ୍ରପୌତ୍ରବାନ୍ ରାବଣକୁ ମାରିବା କିଛି ବଡ଼ କଥା ନୁହେଁ । କାରଣ ଆପଣ ହାତରେ ଧନୁ ଧରିଲେ ତିନିଲୋକଙ୍କୁ ମଧ୍ୟ ଜିଣିପାରନ୍ତି, ଏଥିରେ ସନ୍ଦେହ ନାହିଁ ।୧୮। ଏ ବଡ଼ ସୌଭାଗ୍ୟର କଥା ଯେ ତୁମେ

ଦିଷ୍ଟ୍ୟା ତ୍ୱୟା ହତୋ ରାମ ରାବଣୋ ରାକ୍ଷସେଶ୍ୱରଃ ।
ଦିଷ୍ଟ୍ୟା ବିଜୟିନଂ ତ୍ୱାଦ୍ୟ ପଶ୍ୟାମଃ ସହ ସୀତୟା । ୧୯ ।
ଲକ୍ଷ୍ମଣେନ ଚ ଧର୍ମାତ୍ମନ୍ ଭ୍ରାତ୍ରା ତ୍ୱଦ୍ଧିତକାରିଣା ।
ମାତୃଭିର୍ଭ୍ରାତୃସହିତଂ ପଶ୍ୟାମୋଽଦ୍ୟ ବୟଂ ନୃପ । ୨୦ ।
ଦିଷ୍ଟ୍ୟା ପ୍ରହସ୍ତୋ ବିକଟୋ ବିରୂପାକ୍ଷୋ ମହୋଦରଃ ।
ଅକମ୍ପନଶ୍ଚ ଦୁର୍ଦ୍ଧର୍ଷୋ ନିହତାସ୍ତେ ନିଶାଚରାଃ । ୨୧ ।
ଯସ୍ୟ ପ୍ରମାଣାଦ୍ ବିପୁଲଂ ପ୍ରମାଣଂ ନେହ ବିଦ୍ୟତେ ।
ଦିଷ୍ଟ୍ୟା ତେ ସମରେ ରାମ କୁମ୍ଭକର୍ଣ୍ଣୋ ନିପାତିତଃ । ୨୨ ।
ତ୍ରିଶିରାଶ୍ଚାତିକାୟଶ୍ଚ ଦେବାନ୍ତକନରାନ୍ତକୌ ।
ଦିଷ୍ଟ୍ୟା ତେ ନିହତା ରାମ ମହାବୀର୍ଯ୍ୟା ନିଶାଚରାଃ । ୨୩ ।
କୁମ୍ଭଶ୍ଚୈବ ନିକୁମ୍ଭଶ୍ଚ ରାକ୍ଷସୌ ଭୀମଦର୍ଶନୌ ।
ଦିଷ୍ଟ୍ୟା ତୌ ନିହତୌ ରାମ କୁମ୍ଭକର୍ଣ୍ଣସୁତୌ ମୃଧେ । ୨୪ ।
ଯୁଦ୍ଧୋନ୍ମତ୍ତଶ୍ଚ ମତ୍ତଶ୍ଚ କାଲାନ୍ତକଯମୋପମୌ ।
ଯଜ୍ଞକୋପଶ୍ଚ ବଲବାନ୍ ଧୂମ୍ରାକ୍ଷୋ ନାମ ରାକ୍ଷସଃ ।୨୫।
କୁର୍ବନ୍ତଃ କଦନଂ ଘୋରମେତେ ଶସ୍ତ୍ରାସ୍ତ୍ରପାରଗାଃ ।
ଅନ୍ତକପ୍ରତିମୈର୍ବାଣୈର୍ଦିଷ୍ଟ୍ୟା ବିନିହତାସ୍ତ୍ୱୟା ୨୬ ।

---

ରାକ୍ଷସେଶ୍ୱର ରାବଣକୁ ମାରିପକାଇଅଛ ଏବଂ ସୌଭାଗ୍ୟକ୍ରମେ ଆଜ ସୀତାଙ୍କ ସହିତ ତୁମକୁ ବିଜୟୀ ହୋଇଥିବାର ଦେଖୁଅଛୁଁ । ୧୯ । ହେ ଧର୍ମାତ୍ମନ୍, ରାଜନ୍! ତୁମର ହିତକାରୀ ଭାଇ ଲକ୍ଷ୍ମଣ, ମାତୃଗଣ ତଥା ଅନ୍ୟ ବନ୍ଧୁମାନଙ୍କ ସହିତ ତୁମକୁ ଆଜ ଆମେ କୁଶଳରେ ରହିଥିବାର ଦେଖୁଅଛୁଁ । ୨୦ । ଭାଗ୍ୟକ୍ରମେ ତୁମେ ବିକଟ, ବିରୂପାକ୍ଷ, ମହୋଦର ଏବଂ ଅକମ୍ପନ ଆଦି ରାକ୍ଷସମାନଙ୍କୁ ମାରି ଦେଇଅଛ । ୨୧ । ଯାହା ତୁଲ୍ୟ ବିଶାଳକାୟ ଅନ୍ୟ ବ୍ୟକ୍ତି ଏ ଭୂମଣ୍ଡଳରେ ନ ଥିଲା, ସେହି କୁମ୍ଭକର୍ଣ୍ଣଙ୍କୁ ଯୁଦ୍ଧରେ ତୁମେ ମାରିପକାଇଅଛ । ୨୨ । ତ୍ରିଶିରା, ଅତିକାୟ, ଦେବାନ୍ତକ ଏବଂ ନରାନ୍ତକ ପ୍ରଭୃତି ମହାବଳବାନ୍ ରାକ୍ଷସମାନଙ୍କୁ ତୁମେ ଭାଗ୍ୟକ୍ରମେ ମାରି ଦେଇଅଛ ।୨୩। ଭାଗ୍ୟକ୍ରମେ କୁମ୍ଭକର୍ଣ୍ଣର ଦୁଇ ପୁତ୍ର ଭୀଷଣାକୃତି କୁମ୍ଭ ଓ ନିକୁମ୍ଭଙ୍କୁ ତୁମେ ଯୁଦ୍ଧରେ ନିହତ କରିଅଛ । ୨୪ । ଯୁଦ୍ଧୋନ୍ମତ୍ତ, ମତ୍ତ, ବଳବାନ୍ ଯଜ୍ଞକୋପ ଏବଂ ଧୂମ୍ରାକ୍ଷ ପ୍ରଭୃତି ଅସ୍ତ୍ରଶସ୍ତ୍ରନିପୁଣ ରାକ୍ଷସମାନେ ଲୋକଙ୍କୁ ଭୀଷଣ ନିର୍ଯ୍ୟାତନା ଦେଉଥିଲେ । ଭାଗ୍ୟକ୍ରମେ ସେମାନେ ତୁମଦ୍ୱାରା ନିହତ ହୋଇଅଛନ୍ତି ।୨୫-୨୬। ଦେବତାମାନଙ୍କର

ଦିଷ୍ଟ୍ୟା ତ୍ୱଂ ରାକ୍ଷସେନ୍ଦ୍ରେଣ ଦ୍ୱନ୍ଦ୍ୱଯୁଦ୍ଧମୁପାଗତଃ ।
ଦେବତାନାମବଧ୍ୟେନ ବିଜୟଂ ପ୍ରାପ୍ତବାନସି । ୨୭ ।
ସଂଖ୍ୟେ ତସ୍ୟ ନ କିଂଚିତ୍ତୁ ରାବଣସ୍ୟ ପରାଭବଃ ।
ଦ୍ୱନ୍ଦ୍ୱଯୁଦ୍ଧମନୁପ୍ରାପ୍ତୋ ଦିଷ୍ଟ୍ୟା ତେ ରାବଣିର୍ହତଃ । ୨୮ ।
ଦିଷ୍ଟ୍ୟା ତସ୍ୟ ମହାବାହୋ କାଲସ୍ୟେବାଭିଧାବତଃ ।
ମୁକ୍ତଃ ସୁରରିପୋର୍ବୀର ପ୍ରାପ୍ତଶ୍ଚ ବିଜୟସ୍ତ୍ୱୟା । ୨୯ ।
ଅଭିନନ୍ଦାମ ତେ ସର୍ବେ ସଂଶ୍ରୁତ୍ୟେନ୍ଦ୍ରଜିତୋ ବଧମ୍ ।
ସୋଽବଧ୍ୟଃ ସର୍ବଭୂତାନାଂ ମହାମାୟାଧରୋ ଯୁଧି । ୩୦ ।
ବିସ୍ମୟସ୍ତ୍ୱେଷ ଚାସ୍ମାକଂ ତଂ ଶ୍ରୁତ୍ୱେନ୍ଦ୍ରଜିତଂ ହତମ୍ ।
ଏତେ ଚାନ୍ୟେ ଚ ବହବୋ ରାକ୍ଷସାଃ କାମରୂପିଣଃ ।
ଦିଷ୍ଟ୍ୟା ତ୍ୱୟା ହତା ବୀରା ରଘୂଣାଂ କୁଲବର୍ଧନ । ୩୧ ।
ଦତ୍ତ୍ୱା ପୁଣ୍ୟାମିମାଂ ବୀର ସୌମ୍ୟାମଭୟଦକ୍ଷିଣାମ୍ ।
ଦିଷ୍ଟ୍ୟା ବର୍ଧସି କାକୁତ୍ସ୍ଥ ଜୟେନାମିତ୍ରକର୍ଶନ । ୩୨ ।
ଶ୍ରୁତ୍ୱା ତୁ ତେଷାଂ ବଚନମୃଷୀଣାଂ ଭାବିତାତ୍ମନାମ୍ ।
ବିସ୍ମୟଂ ପରମଂ ଗତ୍ୱା ରାମଃ ପ୍ରାଞ୍ଜଲିରବ୍ରବୀତ୍ । ୩୩ ।

---

ଅବଧ୍ୟ ରାକ୍ଷସରାଜ ରାବଣ ସହିତ ଦ୍ୱନ୍ଦ୍ୱ ଯୁଦ୍ଧ କରି ତୁମେ ଯେ ବିଜୟ ଲାଭ କରିଅଛ ଏହା ଅତି ସୌଭାଗ୍ୟର କଥା । ୨୭ । କିନ୍ତୁ ହେ ବୀର ! ଯୁଦ୍ଧରେ ରାବଣକୁ ଜିଣିବା ଅପେକ୍ଷା ରାବଣପୁତ୍ର ଇନ୍ଦ୍ରଜିତକୁ ମାରିବା ଅତି କଠିନ ଥିଲା । ସେହି ଇନ୍ଦ୍ରଜିତକୁ ଯେ ତୁମେ ଦ୍ୱନ୍ଦ୍ୱ ଯୁଦ୍ଧରେ ମାରିଦେଲ ଏହା ଅତି ସୌଭାଗ୍ୟର ବିଷୟ । ୨୮ । କାଳସଦୃଶ ପ୍ରଧାବିତ ହେଉଥିବା ସେହି ଦେବଶତ୍ରୁଠାରୁ ବଞ୍ଚି ତୁମେ ବିଜୟୀ ହୋଇଅଛ । ସେହି ଇନ୍ଦ୍ରଜିତର ବଧ ଶୁଣି ଆମେ ସମସ୍ତେ ଅତିଶୟ ଆନନ୍ଦିତ ହୋଇଅଛୁଁ । କାରଣ ସେ ଯୁଦ୍ଧରେ ବଡ଼ ମାୟା ରଚନା କରୁଥିଲା ଏବଂ ତାକୁ କୌଣସି ପ୍ରାଣୀ ମାରିପାରି ନ ଥିଲେ ।୨୯-୩୦। ସେହି ଇନ୍ଦ୍ରଜିତ ନିହତ ହେବାର ଶୁଣି ଆମ୍ଭମାନଙ୍କ ମନରେ ବିସ୍ମୟ ଜାତ ହୋଇଅଛି । ହେ ରଘୁକୁଳବର୍ଦ୍ଧନ ! ଏମାନେ ଓ ଅନେକ କାମରୂପୀ ରାକ୍ଷସବୀର ସୌଭାଗ୍ୟକ୍ରମେ ତୁମଦ୍ୱାରା ନିହତ ହୋଇ ଅଛନ୍ତି । ୩୧ । ହେ କାକୁତ୍ସ୍ଥ ! ହେ ଶତ୍ରୁକର୍ଶନ ! ଆମ ସମସ୍ତଙ୍କୁ ଏପରି ଅଭୟ ଦାନକରି ତୁମର ସମୃଦ୍ଧି ହେଉଥିବାର ଦେଖି ଆମମାନଙ୍କ ମନରେ ଯେ ଆନନ୍ଦ ଜାତ ହୋଇଅଛି ତାଠାରୁ ବଳି ଆଉ ଅଧିକ କଅଣ ହୋଇପାରେ !" । ୩୨। ସେହି ଆତ୍ମଦର୍ଶୀ ମୁନିମାନଙ୍କର ଏପରି କଥା ଶୁଣି ରାମ ଅତିଶୟ ବିସ୍ମିତ ହୋଇ ହାତଯୋଡ଼ି

ଭଗବନ୍ତଃ କୁମ୍ଭକର୍ଣଂ ରାବଣଂ ଚ ନିଶାଚରମ୍ ।
ଅତିକ୍ରମ୍ୟ ମହାବୀର୍ଯୌ କିଂ ପ୍ରଶଂସଥ ରାବଣିମ୍ । ୩୪ ।
ମହୋଦରଂ ପ୍ରହସ୍ତଂ ଚ ବିରୂପାକ୍ଷଂ ଚ ରାକ୍ଷସମ୍ ।
ମତ୍ତୋନ୍ମତ୍ତୌ ଚ ଦୁର୍ଧର୍ଷୌ ଦେବାନ୍ତକନରାନ୍ତକୌ ।
ଅତିକ୍ରମ୍ୟ ମହାବୀର୍ଯାନ୍ କିଂ ପ୍ରଶଂସଥ ରାବଣିମ୍ । ୩୫ ।
ଅତିକାୟଂ ତ୍ରିଶିରସଂ ଧୂମ୍ରାକ୍ଷଂ ଚ ନିଶାଚରମ୍ ।
ଅତିକ୍ରମ୍ୟ ମହାବୀର୍ଯାନ୍ କିଂ ପ୍ରଶଂସଥ ରାବଣିମ୍ । ୩୬ ।
କୀଦୃଶୋ ବୈ ପ୍ରଭାବୋଽସ୍ୟ କିଂ ବଲଂ କଃ ପରାକ୍ରମଃ ।
କେନ ବା କାରଣେନୈଷ ରାବଣାଦତିରିଚ୍ୟତେ । ୩୭ ।
ଶକ୍ୟଂ ଯଦି ମୟା ଶ୍ରୋତୁଂ ନ ଖଲ୍ୱାଜ୍ଞାପୟାମି ବଃ ।
ଯଦି ଗୁହ୍ୟଂ ନ ଚେଦ୍ୱକ୍ତୁଂ ଶ୍ରୋତୁମିଚ୍ଛାମି କଥ୍ୟତାମ୍ । ୩୮ ।
ଶକ୍ରୋଽପି ବିଜିତସ୍ତେନ କଥଂ ଲବ୍ଧବରଶ୍ଚ ସଃ ।
କଥଂ ଚ ବଲବାନ୍ ପୁତ୍ରୋ ନ ପିତା ତସ୍ୟ ରାବଣଃ । ୩୯ ।

---

ସେମାନଙ୍କୁ କହିଲେ । ୩୩ । "ହେ ଭଗବାନ୍ ! ମହାବଳବାନ୍ ରାବଣ ଏବଂ କୁମ୍ଭକର୍ଣ୍ଣଙ୍କୁ ଛାଡ଼ି ଆପଣମାନେ ରାବଣପୁତ୍ର ଇନ୍ଦ୍ରଜିତକୁ କାହିଁକି ପ୍ରଶଂସା କରୁଅଛନ୍ତି ? । ୩୪ । ମହୋଦର, ପ୍ରହସ୍ତ, ବିରୂପାକ୍ଷ, ମତ୍ତ, ଉନ୍ମତ୍ତ, ଦେବାନ୍ତକ ଏବଂ ନରାନ୍ତକ ଏହି ବୀର୍ଯ୍ୟବାନ୍ ରାକ୍ଷସମାନଙ୍କୁ ବାଦ ଦେଇ ଆପଣମାନେ କାହିଁକି ଇନ୍ଦ୍ରଜିତର ପ୍ରଶଂସା କରୁଅଛନ୍ତି ? ।୩୫। ଅତିକାୟ, ତ୍ରିଶିରା, ଧୂମ୍ରାକ୍ଷ ଆଦି ବଳବାନ୍ ରାକ୍ଷସମାନଙ୍କୁ ଛାଡ଼ି ଆପଣମାନେ କାହିଁକି ଇନ୍ଦ୍ରଜିତର ଏତେ ପ୍ରଶଂସା କରୁଅଛନ୍ତି ? । ୩୬ । ଇନ୍ଦ୍ରଜିତର ପ୍ରଭାବ, ବଳ ଏବଂ ପରାକ୍ରମ କିପରି ଥିଲା ? କି ହେତୁରୁ ସେ ରାବଣଠାରୁ ମଧ୍ୟ ବଡ଼ ଥିଲା; ଯଦି ଏ କଥା ମୋର ଶୁଣିବାର ଯୋଗ୍ୟ ଅଟେ ଏବଂ ଯଦି ତାହା ଗୋପନୀୟ ନୁହେଁ, ତେବେ ସେ କଥା ଆପଣମାନେ ମୋତେ କହନ୍ତୁ । ଏହା ଶୁଣିବାକୁ ମୋର ଇଚ୍ଛା ହେଉଅଛି । ମୁଁ ଆପଣମାନଙ୍କୁ ପ୍ରାର୍ଥନା କରୁଛି, ଏହା ମୋର ଆଦେଶ ନୁହେ । ୩୭-୩୮ । ସେ ଇନ୍ଦ୍ରଙ୍କୁ କିପରି ଜିଣିଥିଲା ଓ ତାକୁ କିପରି ବର ମିଳିଥିଲା, ପୁତ୍ର କାହିଁକି ଏପରି ବଳବାନ୍ ଥିଲା ଓ କାହିଁକି ତାର ପିତା ସେପରି ବଳବାନ୍ ନ ଥିଲା, ସେସବୁ କଥା ଆପଣମାନେ ମୋତେ କହନ୍ତୁ । ୩୯ । ଇନ୍ଦ୍ରଜିତ ନିଜର ପିତାଠାରୁ ଯୁଦ୍ଧରେ କାହିଁକି ଅଧିକ

କଥଂ ପିତୁଶ୍ଚାଭ୍ୟଧିକୋ ମହାହବେ
ଶକ୍ରସ୍ୟ ଜେତା ହ୍ୟ କଥଂ ସ ରାକ୍ଷସଃ ।
ବରାଶ୍ଚ ଲବ୍ଧାଃ କଥୟସ୍ୱ ମେଽଦ୍ୟ
ତତ୍ ପୃଚ୍ଛତଶ୍ଚାସ୍ୟ ମୁନୀନ୍ଦ୍ର ସର୍ବମ୍ । ୪୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତ୍ସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ରାମପ୍ରଶ୍ନୋ ନାମ ପ୍ରଥମଃ ସର୍ଗଃ ।

---

# ଦ୍ୱିତୀୟଃ ସର୍ଗଃ

## ପୌଲସ୍ତ୍ୟୋତ୍ପତ୍ତିଃ

ତସ୍ୟ ତଦ୍ ବଚନଂ ଶ୍ରୁତ୍ୱା ରାଘବସ୍ୟ ମହାତ୍ମନଃ ।
କୁମ୍ଭଯୋନିର୍ମହାତେଜା ରାମମେତଦୁବାଚ ହ । ୧ ।
ଶୃଣୁ ରାମ ଯଥାବୃତ୍ତଂ ତସ୍ୟ ତେଜୋବଲଂ ମହତ୍ ।
ଜଘାନ ଶତ୍ରୂନ୍ ଯେନାସୌ ନ ଚ ବଧ୍ୟଃ ସ ଶତ୍ରୁଭିଃ । ୨ ।
ତାବତ୍ତେ ରାବଣସ୍ୟେଦଂ କୁଲଂ ଜନ୍ମ ଚ ରାଘବ ।
ବରପ୍ରଦାନଂ ଚ ତଥା ତସ୍ମୈ ଦତ୍ତଂ ବ୍ରବୀମି ତେ । ୩ ।

---

ପରାକ୍ରମୀ ହେଲା, କପରି ସେ ଇନ୍ଦ୍ରଙ୍କୁ ଜିଣିଲା ଓ କପରି ସେ ବର ପାଇଲା, ହେ ମୁନିଗଣ ! ମୁଁ ଆପଣମାନଙ୍କୁ ସେ କଥା ପଚାରୁଛି, ଆପଣମାନେ ମୋର ପ୍ରଶ୍ନର ଉତ୍ତର ଦିଅନ୍ତୁ" । ୪୦ ।

---

## ୨ୟ ସର୍ଗ

### ( ପୌଲସ୍ତ୍ୟଙ୍କର ଜନ୍ମ )

ମହାତ୍ମା ରାମଙ୍କର ଏ ପ୍ରଶ୍ନ ଶୁଣି ମହାତେଜସ୍ୱୀ କୁମ୍ଭଯୋନି ଅଗସ୍ତ୍ୟ ତାଙ୍କୁ କହିଲେ । ୧ । "ହେ ରାମ ! ଯେଉଁ ହେତୁରୁ ଇନ୍ଦ୍ରଜିତର ତେଜ ଓ ବଳ ଅଧିକ ଥିଲା ଏବଂ ସେ ଶତ୍ରୁମାନଙ୍କୁ ମାରି ପାରୁଥିଲା; ମାତ୍ର ଶତ୍ରୁମାନେ ତାକୁ ମାରିପାରୁ ନ ଥିଲେ, ସେ ବୃତ୍ତାନ୍ତ ଶୁଣ । ହେ ରାଘବ ! ମୁଁ ପ୍ରଥମେ ତୁମକୁ ରାବଣର ଜନ୍ମ ଏବଂ ତାର ବରପ୍ରାପ୍ତି ବୃତ୍ତାନ୍ତ ଶୁଣାଉଅଛି । ୩ । ପୂର୍ବେ ସତ୍ୟଯୁଗରେ ବ୍ରହ୍ମାଙ୍କର ପୁଲସ୍ତ୍ୟ

ପୁରା କୃତଯୁଗେ ରାମ ପ୍ରଜାପତିସୁତଃ ପ୍ରଭୁଃ ।
ପୁଲସ୍ତ୍ୟୋ ନାମ ବ୍ରହ୍ମର୍ଷିଃ ସାକ୍ଷାଦିବ ପିତାମହଃ । ୪ ।
ନାନୁକୀର୍ତ୍ତ୍ୟା ଗୁଣାସ୍ତସ୍ୟ ଧର୍ମତଃ ଶୀଳତସ୍ତଥା ।
ପ୍ରଜାପତେଃ ପୁତ୍ର ଇତି ବକ୍ତୁଂ ଶକ୍ୟଂ ହି ନାମତଃ । ୫ ।
ପ୍ରଜାପତିସୁତତ୍ୱେନ ଦେବାନାଂ ବଲ୍ଲଭୋ ହି ସଃ ।
ଇଷ୍ଟଃ ସର୍ବସ୍ୟ ଲୋକସ୍ୟ ଗୁଣୈଃ ଶୁଭ୍ରୈର୍ମହାମତିଃ । ୬ ।
ସ ତୁ ଧର୍ମପ୍ରସଙ୍ଗେନ ମେରୋଃ ପାର୍ଶ୍ୱେ ମହାଗିରେଃ ।
ତୃଣବିନ୍ଦ୍ୱାଶ୍ରମଂ ଗତ୍ୱା ନ୍ୟବସନ୍ମୁନିପୁଙ୍ଗବଃ । ୭ ।
ତପସ୍ତେପେ ସ ଧର୍ମାତ୍ମା ସ୍ୱାଧ୍ୟାୟନିୟତେନ୍ଦ୍ରିୟଃ ।
ଗତ୍ୱାଶ୍ରମପଦଂ ତସ୍ୟ ବିଘ୍ନଂ କୁର୍ବନ୍ତି କନ୍ୟକାଃ । ୮ ।
ଦେବପନ୍ନଗକନ୍ୟାଶ୍ଚ ରାଜର୍ଷି ତନୟାଶ୍ଚ ଯାଃ ।
କ୍ରୀଡ଼ନ୍ତ୍ୟୋଽପ୍ସରସଶ୍ଚୈବ ତଂ ଦେଶମୁପପେଦିରେ ।୯ ।
ସର୍ବର୍ତ୍ତୁଷୂପଭୋଗ୍ୟତ୍ୱାଦ୍ରମ୍ୟତ୍ୱାତ୍ କାନନସ୍ୟ ଚ ।
ନିତ୍ୟଶସ୍ତାସ୍ତୁ ତଂ ଦେଶଂ ଗତ୍ୱା କ୍ରୀଡ଼ନ୍ତି କନ୍ୟକାଃ । ୧୦ ।

---

ନାମକ ଏକ ପୁତ୍ର ଜନ୍ମ ହୋଇଥିଲେ । ବ୍ରହ୍ମର୍ଷି ପୁଲସ୍ତ୍ୟ ସାକ୍ଷାତ୍ ବ୍ରହ୍ମାଙ୍କ ସଦୃଶ ହୋଇଯାଇଥିଲେ ।୪। ତାଙ୍କର ଧର୍ମ ଏବଂ ଶୀଳ ଆଦି ଗୁଣର ବର୍ଣ୍ଣନା କରିବା ଅସମ୍ଭବ ଅଟେ । ତାଙ୍କର ଗୁଣକୁ ଜାଣିବା ପାଇଁ ତାଙ୍କର ନାମ ଗ୍ରହଣ କରିବା, ଏବଂ ସେ ପ୍ରଜାପତିଙ୍କର ପୁତ୍ର ଥିଲେ ଏହା କହିଦେବା ଯଥେଷ୍ଟ ଅଟେ । ୫ । ସେହି ମହାମତି ପୁଲସ୍ତ୍ୟ ପ୍ରଜାପତିଙ୍କର ପୁତ୍ର ଥିଲେ । ଅତଏବ ସବୁ ଦେବତା ତାଙ୍କୁ ସ୍ନେହ କରୁଥିଲେ । ନିଜର ନିର୍ମଳ ଗୁଣ ହେତୁରୁ ସେ ସମସ୍ତଙ୍କର ମିତ୍ର ହୋଇଯାଇଥିଲେ ।୬। ଧର୍ମ ସାଧନ କରିବା ଉଦ୍ଦେଶ୍ୟରେ ସେହି ମୁନିଶ୍ରେଷ୍ଠ ମେରୁପର୍ବତ ନିକଟରେ ତୃଣବିନ୍ଦୁ ଋଷିଙ୍କ ଆଶ୍ରମରେ ଯାଇ ରହିବାକୁ ଲାଗିଲେ ।୭। ସେଠାରେ ଧର୍ମାତ୍ମା ପୁଲସ୍ତ୍ୟ ଇନ୍ଦ୍ରିୟ-ମାନଙ୍କୁ ବଶୀଭୂତ କରି ତପ ଓ ସ୍ୱାଧ୍ୟାୟରେ ନିମଗ୍ନ ରହିଲେ । ମାତ୍ର କନ୍ୟାମାନେ ସେଠାକୁ ଯାଇ ତାଙ୍କର ତପ ଓ ସ୍ୱାଧ୍ୟାୟରେ ବିଘ୍ନ କରିବାକୁ ଲାଗିଲେ । ୮ । ଦେବ, ନାଗ ଏବଂ ରାଜର୍ଷିକନ୍ୟାମାନେ ତଥା ଅପ୍ସରାମାନେ ସେଠାରେ ଯାଇ କ୍ରୀଡ଼ା କରିବାକୁ ଲାଗିଲେ । ୯ । ଏକେ ତ ସେହି ବନ ଅତିଶୟ ରମଣୀୟ ଥିଲା; ତାଛଡ଼ା ସବୁ ଋତୁରେ ସେ ବନ ବିଶେଷ ଉପଭୋଗ୍ୟ ଥିଲା । ଏହି ହେତୁରୁ ସେ କନ୍ୟାମାନେ ସେଠାକୁ ଯାଇ ସେଠାରେ ଏକତ୍ର ହେଉଥିଲେ ଏବଂ କ୍ରୀଡ଼ା କରୁଥିଲେ । ୧୦ ।

ଦେଶସ୍ୟ ରମଣୀୟତ୍ୱାତ୍ ପୁଲସ୍ତ୍ୟୋ ଯତ୍ର ସ ଦ୍ୱିଜଃ ।
ଗାୟନ୍ତ୍ୟୋ ବାଦୟନ୍ତ୍ୟଶ୍ଚ ଲାସୟନ୍ତ୍ୟସ୍ତଥୈବ ଚ । ୧୧ ।
ମୁନେସ୍ତପସ୍ୱିନସ୍ତସ୍ୟ ବିଘ୍ନଂ ଚକ୍ରୁରନିନ୍ଦିତାଃ ।
ଅଥ କ୍ରୁଦ୍ଧୋ ମହାତେଜା ବ୍ୟାଜହାର ମହାମୁନିଃ । ୧୨ ।
ଯା ମେ ଦର୍ଶନମାଗଚ୍ଛେତ୍ ସା ଗର୍ଭଂ ଧାରୟିଷ୍ୟତି ।
ତାସ୍ତୁ ସର୍ବାଃ ପ୍ରତିଶ୍ରୁତ୍ୟ ତସ୍ୟ ବାକ୍ୟଂ ମହାତ୍ମନଃ । ୧୩ ।
ବ୍ରହ୍ମଶାପଭୟାଦ୍ଭୀତାସ୍ତଂ ଦେଶଂ ନୋପଚକ୍ରମୁଃ ।
ତୃଣବିନ୍ଦୋସ୍ତୁ ରାଜର୍ଷେସ୍ତନୟା ନ ଶୃଣୋତି ତତ୍ । ୧୪ ।
ଗତ୍ୱାଶ୍ରମପଦଂ ତତ୍ର ବିଚଚାର ସୁନିର୍ଭୟା ।
ନ ସାପଶ୍ୟତ୍ ସ୍ଥିତା ତତ୍ର କାଂଚିଦଭ୍ୟାଗତାଂ ସଖୀମ୍ । ୧୫ ।
ତସ୍ମିନ୍ କାଲେ ମହାତେଜାଃ ପ୍ରାଜାପତ୍ୟୋ ମହାନୃଷିଃ ।
ସ୍ୱାଧ୍ୟାୟମକରୋତ୍ତତ୍ର ତପସା ଭାବିତଃ ସ୍ୱୟମ୍ । ୧୬ ।
ସା ତୁ ବେଦଶ୍ରୁତିଂ ଶ୍ରୁତ୍ୱା ଦୃଷ୍ଟ୍ୱା ବୈ ତପସୋ ନିଧିମ୍ ।
ଅଭବତ୍ ପାଣ୍ଡୁଦେହା ସା ସୁବ୍ୟଞ୍ଜିତଶରୀରଜା । ୧୭ ।

---

ସେହି ପୁଲସ୍ତ୍ୟ ଋଷି ଯେଉଁଠାରେ ରହୁଥିଲେ ସେ ସ୍ଥାନ ବିଶେଷ ରମଣୀୟ ଥିବାରୁ ଏହି କନ୍ୟାମାନେ ଯାଇ ସେଠାରେ ଗାନ କରୁଥିଲେ, ବାଦ୍ୟ ବଜାଉଥିଲେ ଏବଂ ନୃତ୍ୟ କରୁଥିଲେ । ୧୧ । ଏହିପ୍ରକାରେ ସେହି ସୁନ୍ଦରୀ କନ୍ୟାମାନେ ଯେତେବେଳେ ତପସ୍ୱୀ ମୁନିଙ୍କର ତପସ୍ୟାରେ ବିଘ୍ନ କଲେ ସେତେବେଳେ ମହାମୁନି ପୁଲସ୍ତ୍ୟ କ୍ରୁଦ୍ଧ ହୋଇ କହିଲେ । ୧୨ । "ଯେ କନ୍ୟା ମୋର ଚକ୍ଷୁସମକ୍ଷରେ ପଡ଼ିବ ସେ ଗର୍ଭବତୀ ହୋଇଯିବ ।" ଋଷିଙ୍କର ମୁଖରୁ ଏହି ବାକ୍ୟ ଶୁଣି ସେମାନେ ସମସ୍ତେ ବ୍ରହ୍ମଶାପ ଭୟରେ ଭୀତ ହୋଇ ଆଉ ସେ ଆଶ୍ରମକୁ ଗଲେ ନାହିଁ ; କିନ୍ତୁ ରାଜର୍ଷି ତୃଣବିନ୍ଦୁଙ୍କର କନ୍ୟା ପୁଲସ୍ତ୍ୟଙ୍କର ଏହି ଉକ୍ତି ଶୁଣି ମାନିଲେ ନାହିଁ । ୧୩-୧୪ । ଅତଏବ ସେ ପୁଲସ୍ତ୍ୟଙ୍କର ଆଶ୍ରମକୁ ଯାଇ ନିର୍ଭୟରେ ବିଚରଣ କରିବାକୁ ଲାଗିଲେ । ମାତ୍ର ସେଠାରେ ସେ ତାଙ୍କର କୌଣସି ସହଚରୀକୁ ଦେଖି ପାରିଲେ ନାହିଁ । ୧୫ । ସେହି ସମୟରେ ପ୍ରଜାପତିଙ୍କର ପୁତ୍ର ମହାତେଜସ୍ୱୀ ପୁଲସ୍ତ୍ୟ ତପସ୍ୟାରେ ନିମଗ୍ନ ହୋଇ ବେଦାଧ୍ୟୟନରେ ନିରତ ଥିଲେ । ୧୬ । ସେହି ରାଜର୍ଷି-କନ୍ୟା ବେଦଧ୍ୱନି ଶୁଣିବା ଇଚ୍ଛାରେ ସେହି ତପସ୍ୱୀଙ୍କୁ ଦର୍ଶନ କରିବାମାତ୍ରେ ତାଙ୍କର ଶରୀର ପାଣ୍ଡୁରବର୍ଣ୍ଣ ହୋଇଗଲା ଏବଂ ଶରୀରରେ ଗର୍ଭସଞ୍ଚାରର ଲକ୍ଷଣ ପ୍ରକାଶିତ

ବଭୂବ ଚ ସମୁଦ୍ୱିଗ୍ନା ଦୃଷ୍ଟ୍ୱା ତଦ୍ଦୋଷମାତ୍ମନଃ ।
ଇଦଂ ମେ କିଂ ନ୍ୱିତି ଜ୍ଞାତ୍ୱା ପିତୁର୍ଗତ୍ୱାଶ୍ରମେ ସ୍ଥିତା ।୧୮।
ତାଂ ତୁ ଦୃଷ୍ଟ୍ୱା ତଥାଭୂତାଂ ତୃଣବିନ୍ଦୁରଥାବ୍ରବୀତ୍ ।
କିଂ ତ୍ୱମେତତ୍ତ୍ୱସଦୃଶଂ ଧାରୟସ୍ୟାତ୍ମନୋ ବପୁଃ ।୧୯।
ସା ତୁ କୃତ୍ୱାଞ୍ଜଳିଂ ଦୀନା କନ୍ୟୋବାଚ ତପୋଧନମ୍ ।
ନ ଜାନେ କାରଣଂ ତାତ ଯେନ ମେ ରୂପମୀଦୃଶମ୍ ।୨୦।
କିଂ ତୁ ପୂର୍ବଂ ଗତାସ୍ମ୍ୟେକା ମହର୍ଷେର୍ଭାବିତାତ୍ମନଃ ।
ପୁଲସ୍ତ୍ୟସ୍ୟାଶ୍ରମଂ ଦିବ୍ୟମନ୍ୱେଷ୍ଟୁଂ ସ୍ୱସଖୀଜନମ୍ ।୨୧।
ନ ଚ ପଶ୍ୟାମ୍ୟହଂ ତତ୍ର କାଂଚିଦଭ୍ୟାଗତାଂ ସଖୀମ୍ ।
ରୂପସ୍ୟ ତୁ ବିପର୍ଯ୍ୟାସଂ ଦୃଷ୍ଟ୍ୱା ତ୍ରାସାଦିହାଗତା ।୨୨।
ତୃଣବିନ୍ଦୁସ୍ତୁ ରାଜର୍ଷିସ୍ତପସା ଦ୍ୟୋତିତପ୍ରଭଃ ।
ଧ୍ୟାନଂ ବିବେଶ ତଚ୍ଚାପି ହ୍ୟପଶ୍ୟଦୃଷିକର୍ମଜମ୍ ।୨୩।
ସ ତୁ ବିଜ୍ଞାୟ ତଂ ଶାପଂ ମହର୍ଷେର୍ଭାବିତାତ୍ମନଃ ।
ଗୃହୀତ୍ୱା ତନୟାଂ ଗତ୍ୱା ପୁଲସ୍ତ୍ୟମିଦମବ୍ରବୀତ୍ ।୨୪।

---

ହେଲା । ୧୭ । ନିଜ ଶରୀରରେ ଏପ୍ରକାରର ବିକାର ଦେଖି ସେ ବିଶେଷ ଉଦ୍‌ବିଗ୍ନ ହୋଇ କହିଉଠିଲେ, "ଏ କଣ ହେଲା !" ତଦନନ୍ତର ପ୍ରକୃତ କଥା ଜାଣିପାରି ସେ ପିତାଙ୍କ ଆଶ୍ରମକୁ ଫେରିଗଲେ । ୧୮ । କିନ୍ତୁ ତୃଣବିନ୍ଦୁ ତାଙ୍କୁ ଦେଖି ଏବଂ ପ୍ରକୃତ କଥା ଜାଣିପାରି ତାଙ୍କୁ କହିଲେ "ତୁ ନିଜର କୁମାରୀ ଅବସ୍ଥାର ବିରୁଦ୍ଧ ଏପରି ରୂପ କିପରି ଧାରଣ କଲୁ ?" । ୧୯ । ସେହି କନ୍ୟା ଦୁଃଖିତ ହୋଇ ନିଜର ତପସ୍ୱୀ ପିତାଙ୍କୁ କରଯୋଡ଼ି କହିଲେ, "ହେ ତାତ ! କି ହେତୁରୁ ମୋର ଏପରି ରୂପ ହେଲା ତାହା ମୁଁ ମଧ୍ୟ ଜାଣିପାରୁ ନାହିଁ । ୨୦ । କିନ୍ତୁ ଏହା ହେବା ପୂର୍ବରୁ ମୁଁ ମୋର ନିଜର ସଖୀମାନଙ୍କୁ ଖୋଜି ଖୋଜି ବ୍ରହ୍ମଚର୍ଯ୍ୟାପରାୟଣ ପୁଲସ୍ତ୍ୟ ମହର୍ଷିଙ୍କ ଆଶ୍ରମକୁ ଏକାକୀ ଯାଇଥିଲି । ୨୧ । ସେଠାରେ ମୋତେ ନିଜର କୌଣସି ସହଚରୀ ଦେଖାଗଲେ ନାହିଁ; କିନ୍ତୁ ଯେତେବେଳେ ମୋର ନିଜର ରୂପ ଏପରି ବଦଳିଯିବାର ଦେଖିଲି ସେତେବେଳେ ମୁଁ ଭୟଭୀତ ହୋଇ ଏଠାକୁ ପଳାଇ ଆସିଲି" । ୨୨ । ତାପରେ ତପପ୍ରଭାବଯୁକ୍ତ ରାଜର୍ଷି ତୃଣବିନ୍ଦୁ ଧ୍ୟାନକରି ଦିବ୍ୟଦୃଷ୍ଟିରେ ସମସ୍ତ କଥା ଜାଣିଗଲେ । ୨୩ । ବ୍ରହ୍ମଚର୍ଯ୍ୟାପରାୟଣ ମହର୍ଷି ପୁଲସ୍ତ୍ୟଙ୍କ ଶାପର ବୃତ୍ତାନ୍ତ ଜାଣି ତୃଣବିନ୍ଦୁ ନିଜର କନ୍ୟାଙ୍କୁ ସଙ୍ଗରେ ଧରି ସେହି ମୁନିଙ୍କ

ଭଗବଂସ୍ତନୟାଂ ମେ ତ୍ୱଂ ଗୁଣୈଃ ସ୍ୱୈରେବ ଭୂଷିତାମ୍ ।
ଭିକ୍ଷାଂ ପ୍ରତିଗୃହାଣେମାଂ ମହର୍ଷେ ସ୍ୱୟମୁଦ୍ୟତାମ୍ ।୨୫।
ତପଶ୍ଚରଣଯୁକ୍ତସ୍ୟ ଶ୍ରାମ୍ୟମାଣେନ୍ଦ୍ରିୟସ୍ୟ ତେ ।
ଶୁଶ୍ରୂଷଣପରା ନିତ୍ୟଂ ଭବିଷ୍ୟତି ନ ସଂଶୟଃ । ୨୬ ।
ତଂ ବ୍ରୁବାଣଂ ତୁ ତଦ୍ ବାକ୍ୟଂ ରାଜର୍ଷିଂ ଧାର୍ମିକଂ ତଦା ।
ଜିଘୃକ୍ଷୁରବ୍ରବୀତ୍ କନ୍ୟାଂ ବାଢ଼ମିତ୍ୟେବ ସ ଦ୍ୱିଜଃ । ୨୭ ।
ଦତ୍ତ୍ୱା ସ ତୁ ଯଥାନ୍ୟାୟଂ ସ୍ୱମାଶ୍ରମପଦଂ ଗତଃ ।
ସାପି ତତ୍ରାବସତ୍ କନ୍ୟା ତୋଷୟନ୍ତୀ ପତିଂ ଗୁଣୈଃ । ୨୮ ।
ତସ୍ୟାସ୍ତୁ ଶୀଲବୃତ୍ତାଭ୍ୟାଂ ତୁତୋଷ ମୁନିପୁଙ୍ଗବଃ ।
ପ୍ରୀତଃ ସ ତୁ ମହାତେଜା ବାକ୍ୟମେତଦୁବାଚ ହ । ୨୯ ।
ପରିତୁଷ୍ଟୋଽସ୍ମି ସୁଶ୍ରୋଣି ଗୁଣାନାଂ ସଂପଦା ଭୃଶମ୍ ।
ତସ୍ମାଦ୍ଦେବି ଦଦାମ୍ୟଦ୍ୟ ପୁତ୍ରମାତ୍ମସମଂ ତବ ।
ଉଭୟୋର୍ବଂଶକର୍ତାରଂ ପୌଲସ୍ତ୍ୟ ଇତି ବିଶ୍ରୁତମ୍ । ୩୦ ।
ଯସ୍ମାତ୍ତୁ ବିଶ୍ରୁତୋ ବେଦସ୍ତ୍ୱୟୈଷୋଽଧ୍ୟୟତୋ ମମ ।
ତସ୍ମାତ୍ସ ବିଶ୍ରବା ନାମ ଭବିଷ୍ୟତି ନ ସଂଶୟଃ । ୩୧ ।

---

ନିକଟକୁ ଗଲେ ଏବଂ ତାଙ୍କୁ କହିଲେ । ୨୪ । "ହେ ଭଗବନ୍ ! ନିଜର ଗୁଣରେ ଭୂଷିତ ଏବଂ ନିଜେ ନିଜେ ଆସିଥିବା ମୋର ଏହି କନ୍ୟାକୁ ଆପଣ ଭିକ୍ଷାରୂପେ ଗ୍ରହଣ କରନ୍ତୁ । ୨୫ । ଆପଣ ଯେତେବେଳେ ତପସ୍ୟା କରି ଶ୍ରାନ୍ତ ହୋଇପଡ଼ିବେ, ସେତେବେଳେ ଏ ନିଶ୍ଚୟ ଆପଣଙ୍କର ସର୍ବଦା ଶୁଶ୍ରୂଷାପରାୟଣା ହୋଇ ରହିଥିବ, ଏଥିରେ ସନ୍ଦେହ ନାହିଁ" । ୨୬ । ଅପ୍ରମେୟ ବ୍ରାହ୍ମଣଶ୍ରେଷ୍ଠ ଧାର୍ମିକ ରାଜର୍ଷି ତୃଣବିନ୍ଦୁଙ୍କର ଏ କଥା ଶୁଣି ସେ କନ୍ୟାକୁ ଗ୍ରହଣ କରିବାକୁ ସ୍ୱୀକୃତ ହୋଇ କହିଲେ, "ଆଚ୍ଛା, ତାହାହିଁ ହେଉ" ।୨୭। ନିଜ କନ୍ୟାଙ୍କୁ ଯଥାବିଧି ସମର୍ପଣ କରିଦେଇ ତୃଣବିନ୍ଦୁ ଆପଣା ଆଶ୍ରମକୁ ଫେରିଗଲେ । ସେହି କନ୍ୟା ମଧ୍ୟ ନିଜର ଗୁଣରେ ପତିଙ୍କୁ ସନ୍ତୁଷ୍ଟ କରି ସେହିଠାରେ ରହିବାକୁ ଲାଗିଲେ । ୨୮ । ମହାତେଜସ୍ୱୀ ମୁନିଶ୍ରେଷ୍ଠ ପୁଲସ୍ତ୍ୟ ସେହି କନ୍ୟାଙ୍କ ସ୍ୱଭାବ ଓ ବ୍ୟବହାରରେ ସନ୍ତୁଷ୍ଟ ହୋଇ ତାଙ୍କୁ କହିଲେ ।୨୯। "ହେ ସୁଶ୍ରୋଣି ! ମୁଁ ତୁମ ଗୁଣ ଦେଖି ଅତ୍ୟନ୍ତ ପ୍ରସନ୍ନ ହୋଇଅଛି । ଅତଏବ ହେ ଦେବି ! ଆଜ ମୁଁ ତୁମକୁ ଆପଣା ତୁଲ୍ୟ ଏକ ପୁତ୍ର ଦାନକରୁଅଛି । ସେ ଦୁଇ ବଂଶର ବର୍ଦ୍ଧନକାରୀ ହେବ ଏବଂ ପୌଲସ୍ତ୍ୟ ନାମରେ ବିଖ୍ୟାତ ହେବ । ୩୦ । ତୁମେ ମୋର ବେଦଧ୍ୱନି ଶ୍ରବଣକରି ଗର୍ଭଧାରଣ କରିଅଛ । ଅତଏବ

ଏବମୁକ୍ତା ତୁ ସା ଦେବୀ ପ୍ରହୃଷ୍ଟେନାନ୍ତରାତ୍ମନା ।
ଅଚିରେଣୈବ କାଲେନାସୂତ ବିଶ୍ରବସଂ ସୁତମ୍ ।
ତ୍ରିଷୁ ଲୋକେଷୁ ବିଖ୍ୟାତଂ ଯଶୋଧର୍ମସମନ୍ୱିତମ୍ । ୩୨ ।
ଶ୍ରୁତିମାନ୍ ସମଦର୍ଶୀ ଚ ବ୍ରତାଚାରରତସ୍ତଥା ।
ପିତେବ ତପସା ଯୁକ୍ତୋ ହ୍ୟଭବଦ୍ ବିଶ୍ରବା ମୁନିଃ । ୩୩ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ପୌଲସ୍ତ୍ୟୋତ୍ପତ୍ତିର୍ନାମ ଦ୍ୱିତୀୟଃ ସର୍ଗଃ ।

---

# ତୃତୀୟଃ ସର୍ଗଃ

## ବୈଶ୍ରବଣଲୋକପାଲପଦଲଙ୍କାପ୍ରାପ୍ତିଃ

ଅଥ ପୁତ୍ରଃ ପୁଲସ୍ତ୍ୟସ୍ୟ ବିଶ୍ରବା ମୁନିପୁଙ୍ଗବଃ ।
ଅଚିରେଣୈବ କାଲେନ ପିତେବ ତପସି ସ୍ଥିତଃ । ୧ ।
ସତ୍ୟବାନ୍ ଶୀଲବାନ୍ ଦାନ୍ତଃ ସ୍ୱାଧ୍ୟାୟନିରତଃ ଶୁଚିଃ ।
ସର୍ବଭୋଗେଷ୍ୱସଂସକ୍ତୋ ନିତ୍ୟଧର୍ମପରାୟଣଃ । ୨ ।

---

ଏହାର ନାମ ବିଶ୍ରବା ହେବ, ଏଥିରେ ସନ୍ଦେହ ନାହିଁ" ।୩୧। ସେହି ଦେବୀ ଏପ୍ରକାର ବର ଲାଭକରି ମନରେ ଅତ୍ୟନ୍ତ ଆନନ୍ଦିତ ହେଲେ । ଅଳ୍ପଦିନ ପରେ ତାଙ୍କର ତ୍ରିଲୋକବିଖ୍ୟାତ ଯଶସ୍ୱୀ ଏବଂ ଧର୍ମଶୀଳ ବିଶ୍ରବା ନାମକ ପୁତ୍ର ଜାତହେଲେ ।୩୨ । ବେଦଜ୍ଞ ଓ ସମଦର୍ଶୀ ବିଶ୍ରବା ମୁନି ବ୍ରତାଚରଣରେ ରତ ହୋଇ ନିଜର ପିତାଙ୍କ ସଦୃଶ ତପଶ୍ଚରଣ କରିବାକୁ ଲାଗିଲେ । ୩୩ ।

---

# ୩ୟ ସର୍ଗ

## (କୁବେରଙ୍କର ଲୋକପାଳପଦ ଓ ଲଙ୍କାପ୍ରାପ୍ତି)

ଅଳ୍ପଦିନ ମଧ୍ୟରେ ପୁଲସ୍ତ୍ୟଙ୍କର ପୁତ୍ର ମୁନିଶ୍ରେଷ୍ଠ ବିଶ୍ରବା ନିଜର ପିତାଙ୍କ ସଦୃଶ ତପସ୍ୟା କରିବାକୁ ଲାଗିଲେ । ୧ । ବିଶ୍ରବା ମୁନି ସତ୍ୟବାଦୀ, ଚରିତ୍ରବାନ୍, ସଂଯତ, ବେଦାଧ୍ୟୟନପରାୟଣ, ପବିତ୍ର, ସକଳ ଭୋଗରହିତ ଏବଂ ଧର୍ମାଚରଣରେ ସର୍ବଦା ତତ୍ପର ଥିଲେ । ୨ । ମହାମୁନି ଭରଦ୍ୱାଜ ବିଶ୍ରବାଙ୍କୁ ଏପରି ଚରିତ୍ରବାନ୍

ଜ୍ଞାତ୍ୱା ତସ୍ୟ ତୁ ତଦ୍ ବୃତ୍ତଂ ଭରଦ୍ୱାଜୋ ମହାମୁନିଃ ।
ଦଦୌ ବିଶ୍ରବସେ ଭାର୍ଯାଂ ସ୍ୱସୁତାଂ ଦେବବର୍ଣିନୀମ୍ ।୩।
ପ୍ରତିଗୃହ୍ୟ ତୁ ଧର୍ମିଣୀଂ ଭରଦ୍ୱାଜସୁତାଂ ତଦା ।
ପ୍ରଜାନ୍ୱେଷିକୟା ବୁଦ୍ଧ୍ୟା ଶ୍ରେୟୋ ହ୍ୟସ୍ୟ ବିଚିନ୍ତୟନ୍ । ୪ ।
ମୁଦା ପରମୟା ଯୁକ୍ତୋ ବିଶ୍ରବା ମୁନିପୁଙ୍ଗବଃ ।
ସ ତସ୍ୟାଂ ବୀର୍ଯସଂପନ୍ନମପତ୍ୟଂ ପରମାଦ୍ଭୁତମ୍ । ୫ ।
ଜନୟାମାସ ଧର୍ମଜ୍ଞଃ ସର୍ବୈର୍ବ୍ରହ୍ମଗୁଣୈର୍ୟୁତମ୍ ।
ତସ୍ମିନ୍ ଜାତେ ତୁ ସଂହୃଷ୍ଟଃ ସଂବଭୂବ ପିତାମହଃ । ୬ ।
ଦୃଷ୍ଟ୍ୱା ଶ୍ରେୟସ୍କରୀଂ ବୁଦ୍ଧିଂ ଧନାଧ୍ୟକ୍ଷୋ ଭବିଷ୍ୟତି ।
ନାମ ତସ୍ୟାକରୋତ୍ ପ୍ରୀତଃ ସାର୍ଧଂ ଦେବର୍ଷିଭିସ୍ତଦା । ୭ ।
ଯସ୍ମାଦ୍ ବିଶ୍ରବସୋଽପତ୍ୟଂ ସାଦୃଶ୍ୟାଦ୍ ବିଶ୍ରବା ଇବ ।
ତସ୍ମାଦ୍ ବୈଶ୍ରବଣୋ ନାମ ଭବିଷ୍ୟତ୍ୟେଷ ବିଶ୍ରୁତଃ । ୮ ।
ସ ତୁ ବୈଶ୍ରବଣସ୍ତତ୍ର ତପୋବନଗତସ୍ତଦା ।
ଅବର୍ଧତାହୁତିହୁତୋ ମହାତେଜା ଯଥାନଳଃ । ୯ ।

---

ଦେଖି ନିଜର ଦେବବର୍ଣ୍ଣିନୀ ନାମକ କନ୍ୟାଙ୍କୁ ତାହାଙ୍କୁ ଭାର୍ଯ୍ୟାରୂପେ ପ୍ରଦାନ କଲେ । ୩ । ଧର୍ମାନୁସାରେ ଭରଦ୍ୱାଜଙ୍କର କନ୍ୟାଙ୍କ ସହିତ ବିବାହ କରି ସନ୍ତାନ ପ୍ରାପ୍ତି ଇଚ୍ଛାକରି ବିଶ୍ରବା ମୁନି ତାଙ୍କର ମଙ୍ଗଳ କରିବାକୁ ଲାଗିଲେ । ୪ । ଅତିଶୟ ଆନନ୍ଦିତ ହୋଇ ମୁନିଶ୍ରେଷ୍ଠ ବିଶ୍ରବା ନିଜର ଭାର୍ଯ୍ୟାଙ୍କ ଗର୍ଭରେ ବଳବାନ୍ ଏବଂ ପରମ ଅଦ୍ଭୁତ ଏପରି ଏକ ପୁତ୍ରଜାତ କଲେ, ଯାହାଠାରେ ବ୍ରାହ୍ମଣୋଚିତ ସମସ୍ତ ଗୁଣ ବିଦ୍ୟମାନ ଥିଲା । ଏହାଙ୍କର ଜନ୍ମ ହେବାରେ ତାଙ୍କର ପିତାମହ ପୁଲସ୍ତ୍ୟ ଅତିଶୟ ଆନନ୍ଦିତ ହେଲେ । ୫-୬ । ସେ ନିଜର ନାତିର କଲ୍ୟାଣକାରିଣୀ ବୁଦ୍ଧି ଦେଖି କହିଲେ, "ଏହି ବାଳକ ଧନାଧ୍ୟକ୍ଷ ହେବ" । ସେ ଅତ୍ୟନ୍ତ ଆନନ୍ଦିତ ହୋଇ ଦେବର୍ଷିମାନଙ୍କ ସହିତ ତାର ନାମକରଣ କଲେ ।୭। ସେ କହିଲେ, "ଏହି ବାଳକ ବିଶ୍ରବାଙ୍କଠାରୁ ଉତ୍ପନ୍ନ ହୋଇଅଛି ଏବଂ ସେ ତାଙ୍କରହିଁ ସଦୃଶ ହୋଇଅଛି । ଅତଏବ ଏ ବୈଶ୍ରବଣ ନାମରେ ବିଖ୍ୟାତ ହେବ" । ୮ । ସେହି ତପୋବନରେ ରହି ଏହି ବୈଶ୍ରବଣ ଆହୁତି ଦିଆ ହୋଇଥିବା ଅଗ୍ନି ସଦୃଶ ବଢ଼ିବାକୁ ଲାଗିଲେ ଏବଂ ମହାତେଜସ୍ୱୀ ହୋଇ ଉଠିଲେ । ୯ । ଆଶ୍ରମରେ ରହିବା ସମୟରେ ସେହି

ତସ୍ୟାଶ୍ରମପଦସ୍ଥସ୍ୟ ବୁଦ୍ଧିର୍ଜଜ୍ଞେ ମହାତ୍ମନଃ ।
ଚରିଷ୍ୟେ ପରମଂ ଧର୍ମଂ ଧର୍ମୋ ହି ପରମା ଗତିଃ ।୧୦।
ସ ତୁ ବର୍ଷସହସ୍ରାଣି ତପସ୍ତପ୍ତ୍ୱା ମହାବନେ ।
ୟନ୍ତ୍ରିତୋ ନିୟମୈରୁଗ୍ରୈଶ୍ଚକାର ସୁମହତ୍ତପଃ ।୧୧।
ପୂର୍ଣେ ବର୍ଷସହସ୍ରାନ୍ତେ ତଂ ତଂ ବିଧିମକଳ୍ପୟତ୍ ।
ଜଲାଶୀ ମାରୁତାହାରୋ ନିରାହାରସ୍ତଥୈବ ଚ ।
ଏବଂ ବର୍ଷସହସ୍ରାଣି ଜଗ୍ମୁସ୍ତାନ୍ୟେକବର୍ଷବତ୍ ।୧୨।
ଅଥ ପ୍ରୀତୋ ମହାତେଜାଃ ସେନ୍ଦ୍ରୈଃ ସୁରଗଣୈଃ ସହ ।
ଗତ୍ୱା ତସ୍ୟାଶ୍ରମପଦଂ ବ୍ରହ୍ମେଦଂ ବାକ୍ୟମବ୍ରବୀତ୍ ।୧୩।
ପରିତୁଷ୍ଟୋଽସ୍ମି ତେ ବତ୍ସ କର୍ମଣାନେନ ସୁବ୍ରତ ।
ବରଂ ବୃଣୀଷ୍ୱ ଭଦ୍ରଂ ତେ ବରାର୍ହସ୍ତ୍ୱଂ ମହାମତେ ।୧୪।
ଅଥାବ୍ରବୀଦ୍ ବୈଶ୍ରବଣଃ ପିତାମହମୁପସ୍ଥିତମ୍ ।
ଭଗବଁଲ୍ଲୋକପାଲତ୍ୱମିଚ୍ଛେୟଂ ବିତ୍ତରକ୍ଷଣମ୍ ।୧୫।
ଅଥାବ୍ରବୀଦ୍ ବୈଶ୍ରବଣଂ ପରିତୁଷ୍ଟେନ ଚେତସା ।
ବ୍ରହ୍ମା ସୁରଗଣୈଃ ସାର୍ଧଂ ବାଢମିତ୍ୟେବ ହୃଷ୍ଟବତ୍ ।୧୬।

---

ମହାତ୍ମାଙ୍କ ମନରେ ଏହି ଭାବ ଜାତ ହେଲା ଯେ "ଧର୍ମହିଁ ପରମଗତି ଅଟେ । ଅତଏବ ମୁଁ ଧର୍ମାଚରଣ ଅର୍ଥାତ୍ ତପସ୍ୟା କରିବି" ।୧୦। ଏହି ବିଚାରକରି ସେ କଠୋର ନିୟମରେ ସହିତ କଠୋର ତପସ୍ୟା କରିବାକୁ ଲାଗିଲେ । ହଜାରେ ବର୍ଷ ବିତିଯିବା ପରେ ସେ କେବେ ବା କେବଳ ଜଳ ପାନକରି, କେବେ ବା ପବନ ଆହାର କରି ଏବଂ କେବେ ବା ନିରାହାର ରହି ତପସ୍ୟା କରୁଥିଲେ । ଏହିପ୍ରକାରରେ ତାଙ୍କର ଏକ ହଜାର ବର୍ଷ ଏକ ବର୍ଷପରି ବିତିଗଲା ।୧୨। ଅନନ୍ତର ବ୍ରହ୍ମା ତାଙ୍କର ତପସ୍ୟାରେ ପ୍ରସନ୍ନ ହୋଇ ଇନ୍ଦ୍ରାଦି ସମସ୍ତ ଦେବତାଙ୍କ ସହିତ ତାଙ୍କ ଆଶ୍ରମରେ ଯାଇ ପହଞ୍ଚିଲେ ଏବଂ ତାଙ୍କୁ ଏ କଥା କହିଲେ ।୧୩। "ହେ ସୁବ୍ରତ ! ହେ ବତ୍ସ ! ତୁମର ଏ ତପସ୍ୟା ଦ୍ୱାରା ମୁଁ ତୁମ ଉପରେ ପ୍ରସନ୍ନ ହୋଇଅଛି । ତୁମେ ବରଲାଭ କରିବାର ଯୋଗ୍ୟ ହୋଇଅଛ । ଅତଏବ ତୁମେ କଣ ବର ମାଗୁଛ ମାଗ" ।୧୪। ନିଜର ସମ୍ମୁଖରେ ବ୍ରହ୍ମାଙ୍କୁ ଉପସ୍ଥିତ ହେବାର ଦେଖି ବୈଶ୍ରବଣ ତାଙ୍କୁ କହିଲେ, "ହେ ଭଗବନ୍ ! ମୁଁ ଲୋକପାଳ ହୁଏ ଓ ମୋ ପାଖରେ ସମସ୍ତ ଧନ ଗଚ୍ଛିତ ରହୁ" ।୧୫। ବ୍ରହ୍ମା ସମସ୍ତ ଦେବଙ୍କ ସହିତ ପ୍ରସନ୍ନମନରେ ବୈଶ୍ରବଣଙ୍କ କଥାକୁ ଆନନ୍ଦରେ ସ୍ୱୀକାର କରି କହିଲେ, "ତାହାହିଁ ହେଉ" ।୧୬।

ଅହଂ ବୈ ଲୋକପାଲାନାଂ ଚତୁର୍ଥଂ ସ୍ରଷ୍ଟୁମୁଦ୍ୟତଃ ।
ଯମେନ୍ଦ୍ରବରୁଣାନାଂ ଚ ପଦଂ ଯତ୍ତବ ଚେପ୍ସିତମ୍ । ୧୭ ।
ତଦ୍‌ଗଚ୍ଛ ତ୍ୱଂ ହି ଧର୍ମଜ୍ଞ ନିଧୀଶତ୍ୱମବାପ୍ନୁହି ।
ଶକ୍ରାମ୍ବୁପଯମାନାଂ ଚ ଚତୁର୍ଥସ୍ତ୍ୱଂ ଭବିଷ୍ୟସି । ୧୮ ।
ଏତଚ୍ଚ ପୁଷ୍ପକଂ ନାମ ବିମାନଂ ସୂର୍ଯସଂନିଭମ୍ ।
ପ୍ରତିଗୃହ୍ଣୀଷ୍ୱ ଯାନାର୍ଥଂ ତ୍ରିଦଶୈଃ ସମତାଂ ବ୍ରଜ । ୧୯ ।
ସ୍ୱସ୍ତି ତେଽସ୍ତୁ ଗମିଷ୍ୟାମଃ ସର୍ବ ଏବ ଯଥାଗତମ୍ ।
କୃତକୃତ୍ୟା ବୟଂ ତାତ ଦତ୍ତ୍ୱା ତବ ବରଦ୍ୱୟମ୍ । ୨୦ ।
ଇତ୍ୟୁକ୍ତ୍ୱା ସ ଗତୋ ବ୍ରହ୍ମା ସ୍ୱସ୍ଥାନଂ ତ୍ରିଦଶୈଃ ସହ ।
ଗତେଷୁ ବ୍ରହ୍ମପୂର୍ବେଷୁ ଦେବେଷ୍ୱଥ ନଭଃସ୍ଥଲମ୍ । ୨୧ ।
ଧନେଶଃ ପିତରଂ ପ୍ରାହଃ ପ୍ରାଞ୍ଜଲିଃ ପ୍ରୟତାତ୍ମବାନ୍ ।
ନିବାସନଂ ନ ମେ ଦେବୋ ବିଦଧେ ସ ପ୍ରଜାପତିଃ । ୨୨ ।
ଭଗବଁଲ୍ଲବ୍ଧବାନସ୍ମି ବରମିଷ୍ଟଂ ପିତାମହାତ୍ ।
ତଂ ପଶ୍ୟ ଭଗବନ୍ କଂଚନ୍ନିବାସଂ ସାଧୁ ମେ ପ୍ରଭୋ ।
ନ ଚ ପୀଡ଼ା ଭବେଦ୍ୟତ୍ର ପ୍ରାଣିନୋ ଯସ୍ୟ କସ୍ୟଚିତ୍ । ୨୩ ।

---

ସେ କହିଲେ, "ହେ ବତ୍ସ ! ମୁଁ ତ ଚତୁର୍ଥ ଲୋକପାଳ ସୃଷ୍ଟି କରିବାକୁ ଉଦ୍ୟତ ଥିଲି । ହେ ଧର୍ମଜ୍ଞ ! ଯମ, ଇନ୍ଦ୍ର ଓ ବରୁଣଙ୍କ ସମାନ ଲୋକପାଳ ହେବା ପାଇଁ ତୁମ୍ଭର ଯେଉଁ ଇଚ୍ଛା ଅଛି, ତଦନୁଯାୟୀ ତୁମେ ସମସ୍ତ ନିଧିର ସ୍ୱାମିପଦ ଲାଭକରି ଇନ୍ଦ୍ରାଦି ଲୋକପାଳମାନଙ୍କ ମଧ୍ୟରେ ଚତୁର୍ଥ ଲୋକପାଳ ହେବ । ୧୭-୧୮ । ଏହି ଯେଉଁ ସୂର୍ଯ୍ୟସଦୃଶ ଦେଦୀପ୍ୟମାନ ପୁଷ୍ପକବିମାନ, ଏହାକୁ ତୁମେ ଯାନସଦୃଶ ଗ୍ରହଣକର । ଏହା ଦ୍ୱାରା ତୁମେ ଦେବତାମାନଙ୍କ ସହିତ ସମାନତ୍ୱ ଲାଭ କରି ପାରିବ । ୧୯ । ତୁମର କଲ୍ୟାଣ ହେଉ । ଏବେ ଆମେମାନେ ଆପଣା ସ୍ଥାନକୁ ଯାଉଅଛୁଁ । ବର୍ତ୍ତମାନ ତୁମ୍ଭକୁ ଏହି ବର ଦାନକରି ଆମ୍ଭେମାନେ କୃତକୃତ୍ୟ ହୋଇଅଛୁଁ" ।୨୦। ଏହା କହି ଦେବତାମାନଙ୍କ ସହ ବ୍ରହ୍ମା ସେଠାରୁ ନିଜସ୍ଥାନକୁ ଚାଲିଗଲେ । ବ୍ରହ୍ମାଦି ଦେବତାମାନେ ଯେତେବେଳେ ଆକାଶମଣ୍ଡଳରେ ଚାଲିଗଲେ, ସେତେବେଳେ ଧନେଶ ବୈଶ୍ରବଣ ସଂଯତ ହୋଇ କରଯୋଡ଼ି ନିଜର ପିତାଙ୍କୁ କହିଲେ "ହେ ଭଗବନ୍ ! ମୁଁ ପିତାମହ ବ୍ରହ୍ମାଙ୍କଠାରୁ ଅଭୀଷ୍ଟ ବର ପାଇଅଛି; ମାତ୍ର ସେ ମୋର ରହିବା ନିମନ୍ତେ କୌଣସି ବ୍ୟବସ୍ଥା କରିଦେଇ ନାହାନ୍ତି । ଅତଏବ ହେ ପ୍ରଭୋ ! ଆପଣ ମୋ ଲାଗି ଏପରି ଏକ ସ୍ଥାନ ସ୍ଥିର କରିଦିଅନ୍ତୁ, ଯେଉଁଠାରେ

ଏବମୁକ୍ତସ୍ତୁ ପୁତ୍ରେଣ ବିଶ୍ରବା ମୁନିପୁଙ୍ଗବଃ ।
ବଚନଂ ପ୍ରାହ ଧର୍ମଜ୍ଞଃ ଶ୍ରୂୟତାମିତି ସତ୍ତମଃ । ୨୪ ।
ଦକ୍ଷିଣସ୍ୟୋଦଧେସ୍ତୀରେ ତ୍ରିକୂଟୋ ନାମ ପର୍ବତଃ ।
ତସ୍ୟାଗ୍ରେ ତୁ ବିଶାଲା ସା ମହେନ୍ଦ୍ରସ୍ୟ ପୁରୀ ଯଥା । ୨୫ ।
ଲଙ୍କା ନାମ ପୁରୀ ରମ୍ୟା ନିର୍ମିତା ବିଶ୍ୱକର୍ମଣା ।
ରାକ୍ଷସାନାଂ ନିବାସାର୍ଥଂ ଯଥେନ୍ଦ୍ରସ୍ୟାମରାବତୀ । ୨୬ ।
ତତ୍ର ତ୍ୱଂ ବସ ଭଦ୍ରଂ ତେ ଲଙ୍କାୟାଂ ନାତ୍ର ସଂଶୟଃ ।
ହେମପ୍ରାକାରପରିଖା ଯନ୍ତ୍ରଶସ୍ତ୍ରସମାବୃତା । ୨୭ ।
ରମଣୀୟା ପୁରୀ ସା ହି ରୁକ୍ମବୈଦୂର୍ଯତୋରଣା ।
ରାକ୍ଷସୈଃ ସା ପରିତ୍ୟକ୍ତା ପୁରା ବିଷ୍ଣୁଭୟାର୍ଦ୍ଦିତୈଃ । ୨୮ ।
ଶୂନ୍ୟା ରକ୍ଷୋଗଣୈଃ ସର୍ବୈ ରସାତଳତଳଂ ଗତୈଃ ।
ଶୂନ୍ୟା ସମ୍ପ୍ରତି ଲଙ୍କା ସା ପ୍ରଭୁସ୍ତସ୍ୟା ନ ବିଦ୍ୟତେ । ୨୯ ।

---

ରହିବାରେ ମୋର କୌଣସି କଷ୍ଟ ବା ପୀଡ଼ା ନ ହେବ ।” ପୁତ୍ର ଏହି ପ୍ରକାରେ କହିବାରୁ ମୁନିଶ୍ରେଷ୍ଠ ବିଶ୍ରବା ନିଜ ପୁତ୍ରକୁ କହିଲେ, “ହେ ଧର୍ମଜ୍ଞ, ହେ ଶ୍ରେଷ୍ଠ ! ମୁଁ ତୁମ ରହିବା ନିମନ୍ତେ ସ୍ଥାନ କହି ଦେଉଅଛୁ, ଶୁଣ । ୨୧-୨୪ । ଦକ୍ଷିଣ ସମୁଦ୍ର ତଟରେ ତ୍ରିକୂଟ ନାମକ ଏକ ପର୍ବତ ଅଛି । ସେହି ପର୍ବତର ଶିଖର ଦେଶରେ ଇନ୍ଦ୍ରଙ୍କର ଅମରାବତୀ ପୁରୀସଦୃଶ ଏକ ବିଶାଳ ନଗରୀ ଅଛି । ୨୫ । ସେହି ରମଣୀୟ ନଗରୀର ନାମ ଲଙ୍କା ଅଟେ ଏବଂ ବିଶ୍ୱକର୍ମା ତାହାକୁ ନିର୍ମାଣ କରିଛନ୍ତି । ବିଶ୍ୱକର୍ମା ରାକ୍ଷସମାନଙ୍କର ରହିବା ନିମନ୍ତେ ଇନ୍ଦ୍ରଙ୍କର ଅମରାବତୀ ସଦୃଶ ଏହି ପୁରୀକୁ ନିର୍ମାଣ କରିଅଛନ୍ତି । ୨୬ । ସେହି ଲଙ୍କାପୁରୀରେ ତୁମେ ଯାଇ ରହ । ତୁମର ସେଠାରେ ମଙ୍ଗଳ ହେବ, ଏଥିରେ ସନ୍ଦେହ ନାହିଁ । ସେହି ନଗରୀର ପ୍ରାଚୀରର କାନ୍ଥମାନ ସୁନାରେ ତିଆରି ହୋଇଅଛି ଏବଂ ତାର ଚାରି ପାଖରେ ଖାଇ ଖୋଳା ହୋଇଅଛି ଏବଂ ତାହା ଯନ୍ତ୍ର ଓ ଶସ୍ତ୍ରମାନଙ୍କରେ ପୂର୍ଣ୍ଣ ହୋଇଅଛି । ୨୭ । ସେହି ଲଙ୍କାପୁରୀ ଅତିଶୟ ରମଣୀୟ ଅଟେ । ଏହାର ଫାଟକ ସୁବର୍ଣ୍ଣନିର୍ମିତ ଓ ସେଥିରେ ବୈଦୁର୍ଯ୍ୟ ମଣିର ତୋରଣମାନ ଖଞ୍ଜାହୋଇଅଛି । ପ୍ରଥମେ ଏଠାରେ ରାକ୍ଷସମାନେ ରହୁଥିଲେ, ମାତ୍ର ବିଷ୍ଣୁଙ୍କ ଭୟରେ ସେମାନେ ସେଠାରୁ ପଳାଇଯାଇ-ଅଛନ୍ତି । ୨୮ । ରାକ୍ଷସମାନେ ସେ ସ୍ଥାନକୁ ଶୂନ୍ୟ କରି ଦେଇ ରସାତଳରେ ଯାଇ ରହିଅଛନ୍ତି । ଅତଏବ ସେ ନଗରୀ ଶୂନ୍ୟ ହୋଇ ପଡ଼ିଅଛି ଏବଂ ତାର କେହି ପ୍ରଭୁ

ସ ତ୍ୱଂ ତତ୍ର ନିବାସାୟ ଗଚ୍ଛ ପୁତ୍ର ଯଥାସୁଖମ୍ ।
ନିର୍ଦ୍ଦୋଷସ୍ତତ୍ର ତେ ବାସୋ ନ ବାଧା ତତ୍ର କସ୍ୟଚିତ୍ । ୩୦ ।
ଏତଚ୍ଛ୍ରୁତ୍ୱା ସ ଧର୍ମାତ୍ମା ଧର୍ମିଷ୍ଠଂ ବଚନଂ ପିତୁଃ ।
ନିବାସୟାମାସ ତଦା ଲଙ୍କାଂ ପର୍ବତମୂର୍ଦ୍ଧନି । ୩୧ ।
ନୈର୍ଋତାନାଂ ସହସ୍ରୈସ୍ତୁ ହୃଷ୍ଟୈଃ ପ୍ରମୁଦିତୈଃ ସହ ।
ଅଚିରେଣୈବ କାଲେନ ସମ୍ପୂର୍ଣ୍ଣା ତସ୍ୟ ଶାସନାତ୍ । ୩୨ ।
ସ ତୁ ତତ୍ରାବସତ୍ ପ୍ରୀତୋ ଧର୍ମାତ୍ମା ନୈର୍ଋତର୍ଷଭଃ ।
ସମୁଦ୍ରପରିଖାୟାଂ ତୁ ଲଙ୍କାୟାଂ ବିଶ୍ରବାତ୍ମଜଃ । ୩୩ ।
କାଲେ କାଲେ ତୁ ଧର୍ମାତ୍ମା ପୁଷ୍ପକେଣ ଧନେଶ୍ୱରଃ ।
ଅଭ୍ୟାଗଚ୍ଛଦ୍ ବିନୀତାତ୍ମା ପିତରଂ ମାତରଂ ଚ ହି । ୩୪ ।
ସ ଦେବଗନ୍ଧର୍ବଗଣୈରଭିଷ୍ଟୁତ-
ସ୍ତଥାପ୍ସରୋନୃତ୍ୟବିଭୂଷିତାଲୟଃ ।
ଗଭସ୍ତିଭିଃ ସୂର୍ଯ୍ୟ ଇବାବଭାସୟନ୍
ପିତୁଃ ସମୀପଂ ପ୍ରୟଯୌ ସ ବିତ୍ତପଃ । ୩୫ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ରାବଣତପସ୍ୟା ନାମ ତୃତୀୟଃ ସର୍ଗଃ ।

---

ନାହିଁ । ୨୯ । ହେ ପୁତ୍ର ! ତୁମେ ସେଠାକୁ ଯାଇ ସୁଖରେ ରହ । ତୁମର ସେଠାରେ ରହିବାରେ କୌଣସି ଦୋଷ ନାହିଁ ଏବଂ ତଦ୍ଦ୍ୱାରା କାହାର କୌଣସି ପ୍ରକାର କଷ୍ଟ ହେବ ନାହିଁ"। ୩୦ । ଧର୍ମାତ୍ମା ବୈଶ୍ରବଣ ନିଜର ପିତା ବିଶ୍ରବାଙ୍କର ଏହି ଧର୍ମିଷ୍ଠ ବଚନ ଶୁଣି ତ୍ରିକୂଟ ପର୍ବତ ଉପରେ ନିର୍ମିତ ହୋଇଥିବା ଲଙ୍କାପୁରୀରେ ଯାଇ ବାସକଲେ । ୩୧ । ସଦା ଆନନ୍ଦିତ ରହୁଥିବା ସହସ୍ର ସହସ୍ର ଯକ୍ଷ ସେଠାରେ ଯାଇ ବାସକଲେ । ବୈଶ୍ରବଣଙ୍କ ଶାସନରେ ଅଳ୍ପଦିନ ମଧ୍ୟରେ ସେହି ଲଙ୍କାପୁରୀ ସବୁପ୍ରକାରେ ପରିପୂର୍ଣ୍ଣ ହୋଇଗଲା । ୩୨ । ବିଶ୍ରବା ମୁନିଙ୍କର ଧର୍ମାତ୍ମା ପୁତ୍ର ଯକ୍ଷରାଜ ବୈଶ୍ରବଣ ସମୁଦ୍ରର ପରିଖାଦ୍ୱାରା ଚତୁର୍ଦ୍ଦିଗରେ ବେଷ୍ଟିତ ହୋଇଥିବା ଲଙ୍କାପୁରୀରେ ଆନନ୍ଦରେ ଯାଇ ବାସକଲେ । ଧର୍ମାତ୍ମା ଧନେଶ୍ୱର ବୈଶ୍ରବଣ ସମସ୍ତ ସମୟରେ ପୁଷ୍ପକବିମାନରେ ବସି ବିନୀତଭାବରେ ନିଜର ମାତା ଓ ପିତାଙ୍କ ନିକଟକୁ ଯାଉଥିଲେ । ୩୪ । ଦେବ ଓ ଗନ୍ଧର୍ବମାନଙ୍କର ସ୍ତୁତି ଶୁଣି ଏବଂ ଅପ୍ସରାମାନଙ୍କର ନୃତ୍ୟଦ୍ୱାରା ନିଜର ଭବନକୁ ବିଭୂଷିତ କରି ତଥା ସୂର୍ଯ୍ୟଙ୍କ କିରଣ ସଦୃଶ ଦେଦୀପ୍ୟମାନ ଧନାଧିପ ବୈଶ୍ରବଣ ନିଜର ପିତା ବିଶ୍ରବା ମୁନିଙ୍କ ନିକଟକୁ ଯାତାୟାତ କରୁଥିଲେ । ୩୫ ।

# ଚତୁର୍ଥଃ ସର୍ଗଃ

## ରାବଣାଦପୂର୍ବତନରାକ୍ଷସୋତ୍ପତ୍ତିକଥନମ୍ ।

ଶ୍ରୁତ୍ୱାଗସ୍ତ୍ୟେରିତଂ ବାକ୍ୟଂ ରାମୋ ବିସ୍ମୟମାଗତଃ ।
କଥମାସୀତ୍ତୁ ଲଙ୍କାୟାଂ ସଂଭବୋ ରକ୍ଷସାଂ ପୁରା । ୧ ।
ତତଃ ଶିରଃ କମ୍ପୟିତ୍ୱା ତ୍ରେତାଗ୍ନିସମବିଗ୍ରହମ୍ ।
ତମଗସ୍ତ୍ୟଂ ମୁହୁର୍ଦୃଷ୍ଟ୍ୱା ସ୍ମୟମାନୋଽଭ୍ୟଭାଷତ । ୨ ।
ଭଗବନ୍ ପୂର୍ବମପ୍ୟେଷା ଲଙ୍କାସୀତ୍ ପିଶିତାଶିନାମ୍ ।
ଶ୍ରୁତ୍ୱେଦଂ ଭଗବଦ୍ବାକ୍ୟଂ ଜାତୋ ମେ ବିସ୍ମୟଃ ପରଃ ।୩।
ପୁଲସ୍ତ୍ୟବଂଶାଦୁଦ୍ଭୂତା ରାକ୍ଷସା ଇତି ନଃ ଶ୍ରୁତମ୍ ।
ଇଦାନୀମନ୍ୟତଶ୍ଚାପି ସମ୍ଭବଃ କୀର୍ତିତସ୍ତ୍ୱୟା । ୪ ।
ରାବଣାତ୍ କୁମ୍ଭକର୍ଣାଚ ପ୍ରହସ୍ତାଦ୍ ବିକଟାଦପି ।
ରାବଣସ୍ୟ ଚ ପୁତ୍ରେଭ୍ୟଃ କିଂ ନୁ ତେ ବଲବତ୍ତରାଃ । ୫ ।

---

# ୪ର୍ଥ ସର୍ଗ

( ରାବଣର ପୂର୍ବତନ ରାକ୍ଷସମାନଙ୍କ ଜନ୍ମବୃତ୍ତାନ୍ତ )

ଅଗସ୍ତିଙ୍କଠାରୁ କଥିତ ଏହି ବୃତ୍ତାନ୍ତ ଶୁଣି ରାମ ବିସ୍ମିତ ହୋଇଗଲେ ଯେ ଲଙ୍କାରେ କୁବେରଙ୍କର ବାସକରିବା ପୂର୍ବରୁ ମଧ୍ୟ ରାକ୍ଷସମାନଙ୍କର ସେଠାରେ ରହିବା କିପରି ସମ୍ଭବ ହୋଇଥିଲା ।୧। ଅନନ୍ତର ରାମ ବାରମ୍ବାର ମସ୍ତକ ହଲାଇ ଏବଂ ତିନି ଅଗ୍ନିଙ୍କ ସଦୃଶ ଦେହ ଧାରଣ କରିଥିବା ଅଗସ୍ତିଙ୍କ ଆଡ଼କୁ ଚାହିଁ ବିସ୍ମିତ ହୋଇ ତାଙ୍କୁ କହିଲେ । ୨ । ''ହେ ଭଗବନ୍! ଆଗରୁ ମଧ୍ୟ ଏହି ଲଙ୍କାପୁରୀରେ ରାକ୍ଷସମାନେ ବାସ କରୁଥିଲେ, ଆପଣଙ୍କଠାରୁ ଏ କଥା ଶୁଣି ମୋ ମନରେ ବିଶେଷ ବିସ୍ମୟ ଜାତ ହୋଇଅଛି । ୩ । କାରଣ ଆମ୍ଭେମାନେ ଆଗରୁ ଶୁଣିଥିଲୁ ଯେ ପୁଲସ୍ତ୍ୟଙ୍କ ବଂଶରୁହିଁ ରାକ୍ଷସମାନଙ୍କର ଉତ୍ପତ୍ତି ହୋଇଅଛି; କିନ୍ତୁ ଏବେ ଆପଣଙ୍କର କଥାରୁ ଜଣାପଡ଼ୁଛି ଯେ ରାକ୍ଷସମାନଙ୍କର ଉତ୍ପତ୍ତି ଅନ୍ୟ କାହାଠାରୁ ମଧ୍ୟ ହୋଇଅଛି । ୪ । ଏହି ପୂର୍ବର ରାକ୍ଷସମାନେ କଅଣ ରାବଣ, କୁମ୍ଭକର୍ଣ୍ଣ, ପ୍ରହସ୍ତ, ବିକଟ ଓ ରାବଣର ପୁତ୍ରମାନଙ୍କଠାରୁ ମଧ୍ୟ ବଳି ବଳବାନ୍ ଥିଲେ ? । ୫ । ହେ ବ୍ରହ୍ମନ୍! ଏହି ଦମସ୍ତଙ୍କର

କ ଏଷାଂ ପୂର୍ବକୋ ବ୍ରହ୍ମନ୍ କଂ ନାମା ଚ ବଲୋତ୍କଟଃ ।
ଅପରାଧଂ ଚ କଂ ପ୍ରାପ୍ୟ ବିଷ୍ଣୁନା ଦ୍ରାବିତାଃ କଥମ୍ । ୬ ।
ଏତଦ୍‌ବିସ୍ତରତଃ ସର୍ବଂ କଥୟସ୍ୱ ମମାନଘ ।
କୌତୂହଲମିଦଂ ମହ୍ୟଂ ନୁଦ ଭାନୁର୍ଯଥା ତମଃ । ୭ ।
ରାଘବସ୍ୟ ବଚଃ ଶ୍ରୁତ୍ୱା ସଂସ୍କାରାଲଙ୍କୃତଂ ଶୁଭମ୍ ।
ଈଷଦ୍‌ବିସ୍ମାୟମାନସ୍ତମଗସ୍ତ୍ୟଃ ପ୍ରାହ ରାଘବମ୍ । ୮ ।
ପ୍ରଜାପତିଃ ପୁରା ସୃଷ୍ଟ୍ୱା ହ୍ୟପଃ ସଲିଲସମ୍ଭବଃ ।
ତାସାଂ ଗୋପାୟନେ ସତ୍ତ୍ୱାନସୃଜତ୍ ପଦ୍ମସଂଭବଃ । ୯ ।
ତେ ସତ୍ତ୍ୱାଃ ସତ୍ତ୍ୱକର୍ତାରଂ ବିନୀତବଦୁପସ୍ଥିତାଃ ।
କିଂ କୁର୍ମ ଇତି ଭାଷନ୍ତଃ କ୍ଷୁତ୍‌ପିପାସାଭୟାର୍ଦ୍ଦିତାଃ । ୧୦ ।
ପ୍ରଜାପତିସ୍ତୁ ତାନ୍ୟାହ ସତ୍ତ୍ୱାନି ପ୍ରହସନ୍ନିବ ।
ଆଭାଷ୍ୟ ବାଚଂ ଯତ୍ନେନ ରକ୍ଷଧ୍ୱମିତି ମାନଦଃ । ୧୧ ।
ରକ୍ଷାମେତି ଚ ତତ୍ରାନ୍ୟେ ଯକ୍ଷାମ ଇତି ଚାପରେ ।
ଭୁଙ୍କ୍ଷିତାଭୁଙ୍କ୍ଷିତୈରୁକ୍ତସ୍ତତସ୍ତାନାହ ଭୂତକୃତ୍ । ୧୨ ।

---

ମୂଳ ପୂର୍ବପୁରୁଷ କେଉଁ ମହା ବଳବାନ୍ ବ୍ୟକ୍ତି ଥିଲେ ଏବଂ ତାଙ୍କର ନାମ କଅଣ ଥିଲା ? ସେ ବିଷ୍ଣୁଙ୍କଠାରେ କି ଅପରାଧ କରିଥିଲେ ଯେ ବିଷ୍ଣୁ ସେମାନଙ୍କୁ ସେଠାରୁ ମାରି ତଡ଼ିଦେଇଥିଲେ ? ହେ ନିଷ୍ପାପ ! ଏହି ସମସ୍ତ ବୃତ୍ତାନ୍ତ ଆପଣ ମୋତେ ବିସ୍ତୃତଭାବରେ କହନ୍ତୁ ଏବଂ ସୂର୍ଯ୍ୟ ଅନ୍ଧକାର ଦୂର କଲାଭଳି ମୋର ଏହି କୌତୂହଳ ଦୂର କରନ୍ତୁ" । ୭ । ରାମଙ୍କର ଏହି ଶୁଦ୍ଧ ଏବଂ ଅଳଙ୍କାରଯୁକ୍ତ ବଚନ ଶୁଣି ଅଗସ୍ତ୍ୟ ଟିକିଏ ବିସ୍ମିତ ହୋଇ ରାମଙ୍କୁ କହିଲେ । ୮ । ହେ ରାମ ! ପଦ୍ମରୁ ଉତ୍ପନ୍ନ ହୋଇ ବ୍ରହ୍ମା ସର୍ବପ୍ରଥମେ ଜଳ ସୃଷ୍ଟିକଲେ ଏବଂ ସେହି ଜଳରକ୍ଷା ନିମନ୍ତେ ସେ ଅନେକ ଜଳଜନ୍ତୁ ସୃଷ୍ଟିକଲେ । ୯ । ସେହି ସବୁ ଜୀବ ବିନୀତଭାବରେ ସୃଷ୍ଟିକର୍ତ୍ତାଙ୍କ ପାଖରେ ଯାଇ ଉଭା ହେଲେ ଏବଂ କହିଲେ, "ଆମ୍ଭେମାନେ କଣ କରିବୁ ?" ସେତେବେଳେ ସେମାନେ କ୍ଷୁଧା ଓ ପିପାସା ଭୟରେ ବିକଳ ହୋଇପଡ଼ିଥିଲେ । ୧୦ । ମାନଦ ପ୍ରଜାପତି ଟିକିଏ ହସି ସେ ସମସ୍ତଙ୍କୁ କହିଲେ, "ହେ ପ୍ରାଣିଗଣ ! ତୁମ୍ଭେମାନେ ଯତ୍ନପୂର୍ବକ ରକ୍ଷାକର" । ୧୧ । ସେମାନଙ୍କ ମଧ୍ୟରୁ କେତେକ ପ୍ରାଣୀ କହିଲେ, "ଆମ୍ଭେମାନେ ସମସ୍ତଙ୍କୁ ରକ୍ଷା କରିବୁ" ଓ ଅନ୍ୟମାନେ କହିଲେ, "ଆମ୍ଭେମାନେ ଯଜ୍ଞଦ୍ୱାରା [illegible] ଉତ୍ତରୋତ୍ତର ବୃଦ୍ଧି ସାଧନ କରିବୁ । ୧୨ ।

ରକ୍ଷାମେତି ଚ ଯୈରୁକ୍ତଂ ରାକ୍ଷସାସ୍ତେ ଭବନ୍ତୁ ବଃ ।
ଯକ୍ଷାମ ଇତି ଯୈରୁକ୍ତଂ ଯକ୍ଷା ଏବ ଭବନ୍ତୁ ବଃ । ୧୩ ।
ତତ୍ର ହେତିଃ ପ୍ରହେତିଶ୍ଚ ଭ୍ରାତରୌ ରାକ୍ଷସାଧିପୌ ।
ମଧୁକୈଟଭସଂକାଶୌ ବଭୂବତୁରରିଂଦମୌ । ୧୪ ।
ପ୍ରହେତିର୍ଧାର୍ମିକସ୍ତତ୍ର ତପୋବନଗତସ୍ତଦା ।
ହେତିର୍ଦାରକ୍ରିୟାର୍ଥେ ତୁ ପରଂ ଯତ୍ନମଥାକରୋତ୍ । ୧୫ ।
ସ କାଲଭଗିନୀଂ କନ୍ୟାଂ ଭୟାଂ ନାମ ଭୟାବହାମ୍ ।
ଉଦାବହଦମେୟାତ୍ମା ସ୍ୱୟମେବ ମହାମତିଃ । ୧୬ ।
ସ ତସ୍ୟାଂ ଜନୟାମାସ ହେତୀ ରାକ୍ଷସପୁଙ୍ଗବଃ ।
ପୁତ୍ରଂ ପୁତ୍ରବତାଂ ଶ୍ରେଷ୍ଠୋ ବିଦ୍ୟୁତ୍କେଶ ଇତି ଶ୍ରୁତମ୍ । ୧୭ ।
ବିଦ୍ୟୁତ୍କେଶୋ ହେତିପୁତ୍ରଃ ସ ଦୀପ୍ତାର୍କସମପ୍ରଭଃ ।
ବ୍ୟବର୍ଧତ ମହାତେଜାସ୍ତୋୟମଧ୍ୟ ଇବାମ୍ବୁଜମ୍ । ୧୮ ।
ସ ଯଦା ଯୌବନଂ ଭଦ୍ରମନୁପ୍ରାପ୍ତୋ ନିଶାଚରଃ ।
ତତୋ ଦାରକ୍ରିୟାଂ ତସ୍ୟ କର୍ତୁଂ ବ୍ୟବସିତଃ ପିତା । ୧୯ ।

---

ଏହିପରି ଭୋକିଲା ଓ ଅଭୋକିଲା ଜନ୍ତୁମାନଙ୍କର ସେ କଥା ଶୁଣି ବ୍ରହ୍ମା କହିଲେ, "ତୁମ ଭିତରୁ ଯେଉଁମାନେ କହିଲେ ରକ୍ଷାକରିବେ ସେମାନେ 'ରାକ୍ଷସ' ହେବେ ଏବଂ ଯେଉଁମାନେ କହିଲେ ବୃଦ୍ଧି ସାଧନ କରିବେ ସେମାନେ 'ଯକ୍ଷ' ହେବେ । ୧୩ । ରାକ୍ଷସମାନଙ୍କ ମଧ୍ୟରେ ହେତି ଏବଂ ପ୍ରହେତି ନାମକ ଦୁଇଭାଇ ଜାତ ହେଲେ । ସେ ଦୁଇ ଭାଇ ମଧୁ ଓ କୈଟଭଙ୍କ ସଦୃଶ ଶତ୍ରୁନାଶକାରୀ ଥିଲେ। ସେ ଦୁହେଁ ରାକ୍ଷସମାନଙ୍କର ରାଜା ହେଲେ । ୧୪ । ପ୍ରହେତି ଧାର୍ମିକସ୍ୱଭାବ ହୋଇଥିବାରୁ ତପସ୍ୟା କରିବା ପାଇଁ ବନକୁ ଚାଲିଗଲା । କିନ୍ତୁ ହେତି ବିବାହ କରିବା ନିମନ୍ତେ ବିଶେଷ ଯତ୍ନକରିବାକୁ ଲାଗିଲା । ୧୫ । ମହାବୁଦ୍ଧିମାନ୍ ଉଚ୍ଚହୃଦୟ ହେତି ନିଜେ କାଳଙ୍କ ନିକଟକୁ ଯାଇ ତାହାର ମହାଭୟଙ୍କରୀ ଭୟା ନାମକ ଭଗିନୀକୁ ବିବାହ କଲା । ୧୬ । ତଦନନ୍ତର ପୁତ୍ରବାନ୍‌ମାନଙ୍କ ମଧ୍ୟରେ ଶ୍ରେଷ୍ଠ ସେହି ରାକ୍ଷସଶ୍ରେଷ୍ଠ ହେତି ସେହି ସ୍ତ୍ରୀର ଗର୍ଭରେ ବିଦ୍ୟୁତ୍‌କେଶ ନାମକ ବିଖ୍ୟାତ ପୁତ୍ର ଜନ୍ମକଲା । ୧୭ । ମହାତେଜସ୍ୱୀ ହେତିର ପୁତ୍ର ବିଦ୍ୟୁତ୍କେଶ ସୂର୍ଯ୍ୟଙ୍କ ସଦୃଶ ଅତ୍ୟନ୍ତ ତେଜସ୍ୱୀ ହୋଇ ଜଳମଧ୍ୟରେ ଜାତହୋଇଥିବା କମଳ ସଦୃଶ ଉତ୍ତରୋତ୍ତର ବଢ଼ିବାକୁ ଲାଗିଲା । ୧୮ । ସେହି ରାକ୍ଷସ ବିଦ୍ୟୁତ୍କେଶ ଯୌବନପ୍ରାପ୍ତ ହେବା ଉତ୍ତାରୁ ତାର ପିତା ହେତି ତାକୁ ବିବାହ ଦେବା ପାଇଁ ଉଦ୍ୟମ କଲା । ୧୯ ।

ସନ୍ଧ୍ୟାସ୍ତ୍ୱାସ୍ତନୟାଂ ସୋଽଥ ସନ୍ଧ୍ୟାତୁଲ୍ୟାଂ ପ୍ରଭାବତଃ ।
ବରୟାମାସ ପୁତ୍ରାର୍ଥଂ ହେତୀ ରାକ୍ଷସପୁଙ୍ଗବଃ । ୨୦ ।
ଅବଶ୍ୟମେବ ଦାତବ୍ୟା ପରସ୍ମୈ ସେତି ସନ୍ଧ୍ୟୟା ।
ଚନ୍ତୟିତ୍ୱା ସୁତା ଦତ୍ତା ବିଦ୍ୟୁତ୍କେଶାୟ ରାଘବ । ୨୧ ।
ସନ୍ଧ୍ୟାୟାସ୍ତନୟାଂ ଲବ୍ଧା ବିଦ୍ୟୁତ୍କେଶୋ ନିଶାଚରଃ ।
ରମତେ ସ ତୟା ସାର୍ଧଂ ପୌଲୋମ୍ୟା ମଘବାନିବ । ୨୨ ।
କେନଚିତ୍ତ୍ୱଥ କାଲେନ ରାମ ସାଲକଟଙ୍କଟା ।
ବିଦ୍ୟୁତ୍କେଶାଦ୍ଗର୍ଭମାପ ଘନରାଜିରିବାର୍ଣବାତ୍ । ୨୩ ।
ତତଃ ସା ରାକ୍ଷସୀ ଗର୍ଭଂ ଘନଗର୍ଭସମପ୍ରଭମ୍ ।
ପ୍ରସୂତା ମନ୍ଦରଂ ଗତ୍ୱା ଗଙ୍ଗା ଗର୍ଭମିବାଗ୍ନିଜମ୍ । ୨୪ ।
ତମୁତ୍ସୃଜ୍ୟ ତୁ ସା ଗର୍ଭଂ ବିଦ୍ୟୁତ୍କେଶରତାର୍ଥିନୀ ।
ରେମେ ତୁ ସାର୍ଧଂ ପତିନା ବିସୃଜ୍ୟ ସୁତମାତ୍ମଜମ୍ । ୨୫ ।
ଉତ୍ସୃଷ୍ଟସ୍ତୁ ତଦା ଗର୍ଭୋ ଘନଶବ୍ଦସମସ୍ୱନଃ ।
ତୟୋତ୍ସୃଷ୍ଟଃ ସ ତୁ ଶିଶୁଃ ଶରଦର୍କସମଦ୍ୟୁତିଃ ।
ନିଧାୟାସ୍ୟେ ସ୍ୱୟଂ ମୁଷ୍ଟିଂ ରୁରୋଦ ଶନୈସ୍ତଦା । ୨୬ ।

---

ଅନନ୍ତର • ସେହି ରାକ୍ଷସଶ୍ରେଷ୍ଠ ହେତି ସନ୍ଧ୍ୟାସଦୃଶ ପ୍ରଭାଶାଳିନୀ ସନ୍ଧ୍ୟାର କନ୍ୟାକୁ ନିଜର ପୁତ୍ର ବିଦ୍ୟୁତ୍କେଶ ନିମନ୍ତେ ସନ୍ଧ୍ୟାଙ୍କଠାରୁ ବରଣକଲ । ୨୦ । ହେ ରାଘବ ! "କନ୍ୟାକୁ ଅବଶ୍ୟ କାହାକୁ ଦେବାକୁ ହେବ", ଏହା ଭାବିକି ସନ୍ଧ୍ୟା ବିଦ୍ୟୁତ୍କେଶଙ୍କୁ ନିଜକନ୍ୟାକୁ ଦେଇଦେଲ । ୨୧ । ସନ୍ଧ୍ୟାର କନ୍ୟାକୁ ପାଇ ରାକ୍ଷସ ବିଦ୍ୟୁତ୍କେଶ, ଇନ୍ଦ୍ର ଇନ୍ଦ୍ରାଣୀଙ୍କ ସହ ବିହାର କଲପରି, ତାହା ସହିତ ବିହାର କରିବାକୁ ଲଗିଲ ।୨୨। ହେ ରାମ ! ବିଦ୍ୟୁତ୍କେଶର ପତ୍ନୀ ସାଲକଟଙ୍କଟା କିଛିଦିନ ପରେ ନିଜର ପତିଙ୍କ ଆଡ଼ୁ ମେଘରାଶି ସମୁଦ୍ରଜଳରୁ ଗର୍ଭଧାରଣ କଲପରି ଗର୍ଭଧାରଣ କଲ ।୨୩। ସେହି ରାକ୍ଷସୀ ଗଙ୍ଗା ଅଗ୍ନିଙ୍କଠାରୁ ଧାରଣକରିଥିବା ଗର୍ଭରୁ ଯେପରି ବାଳକ ଜନ୍ମ କରିଥିଲେ, ସେହିପରି ମେଘବର୍ଣ୍ଣ ସଦୃଶ ଏକ ବାଳକ ମନ୍ଦର ପର୍ବତ ଉପରେ ଯାଇ ଜନ୍ମକଲ । ୨୪ । ସାଲକଟଙ୍କଟା ନିଜର ସେହି ପୁତ୍ରକୁ ସେଠାରେ ଛାଡ଼ିଦେଇ ସେହି ରାକ୍ଷସ ବିଦ୍ୟୁତ୍କେଶ ସହିତ ସମ୍ଭୋଗ ଇଚ୍ଛାରେ ପୁଣି ପତି ପାଖରେ ଯାଇ ବିହାର କରିବାକୁ ଲଗିଲ । ୨୫ । ସେହିପରି ତ୍ୟକ୍ତ ବାଳକ ମେଘସଦୃଶ ଶବ୍ଦ କରିବାକୁ ଲଗିଲ । ଶରତ୍କାଳୀନ ସୂର୍ଯ୍ୟସଦୃଶ ଦୀପ୍ତିମାନ୍ ସେହି ତ୍ୟକ୍ତ ଶିଶୁ ନିଜର ମୁହଁରେ ହାତ ମୁଠାକୁ ରଖି ଧୀରେ ଧୀରେ ରୋଦନ କରିବାକୁ ଲଗିଲ ।୨୬।

ତତୋ ବୃଷଭମାସ୍ଥାୟ ପାର୍ବତ୍ୟା ସହିତଃ ଶିବଃ ।
ବାୟୁମାର୍ଗେଣ ଗଚ୍ଛନ୍ ବୈ ଶୁଶ୍ରାବ ରୁଦିତସ୍ୱନମ୍ । ୨୭ ।
ଅପଶ୍ୟଦୁମୟା ସାର୍ଧଂ ରୁଦନ୍ତଂ ରାକ୍ଷସାତ୍ମଜମ୍ ।
କାରୁଣ୍ୟଭାବାତ୍ ପାର୍ବତ୍ୟା ଭବସ୍ତ୍ରିପୁରସୂଦନଃ । ୨୮ ।
ତଂ ରାକ୍ଷସାତ୍ମଜଂ ଚକ୍ରେ ମାତୁରେବ ବୟଃସମମ୍ ।
ଅମରଂ ଚୈବ ତଂ କୃତ୍ୱା ମହାଦେବୋଽକ୍ଷରୋଽବ୍ୟୟଃ । ୨୯
ପୁରମାକାଶଗଂ ପ୍ରାଦାତ୍ ପାର୍ବତ୍ୟାଃ ପ୍ରିୟକାମ୍ୟୟା ।
ଉମୟାପି ବରୋ ଦତ୍ତୋ ରାକ୍ଷସାନାଂ ନୃପାତ୍ମଜ । ୩୦ ।
ସଦ୍ୟୋପଲବ୍ଧିର୍ଗର୍ଭସ୍ୟ ପ୍ରସୂତିଃ ସଦ୍ୟ ଏବ ଚ ।
ସଦ୍ୟ ଏବ ବୟଃପ୍ରାପ୍ତିର୍ମାତୁରେବ ବୟଃସମମ୍ । ୩୧ ।

ତତଃ ସୁକେଶୋ ବରଦାନଗର୍ବିତଃ
ଶ୍ରିୟଂ ପ୍ରଭୋଃ ପ୍ରାପ୍ୟ ହରସ୍ୟ ପାର୍ଶ୍ୱତଃ ।
ଚଚାର ସର୍ବତ୍ର ମହାନ୍ ମହାମତିଃ
ଖଗଂ ପୁରଂ ପ୍ରାପ୍ୟ ପୁରନ୍ଦରୋ ଯଥା । ୩୨ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ରାବଣାଦିପୂର୍ବତନରାକ୍ଷସୋତ୍ପତ୍ତିକଥନଂ ନାମ ଚତୁର୍ଥଃ ସର୍ଗଃ ।

---

ସେତେବେଳେ ବୃଷଭ ଉପରେ ଆରୋହଣ କରି ଶିବ ଓ ପାର୍ବତୀ ଆକାଶ-ମାର୍ଗରେ ସେହି ବାଟରେ ଯାଉଥିଲେ । ସେମାନେ ଯାଉ ଯାଉ ସେହି ବାଳକର ରୋଦନ ଶବ୍ଦ ଶୁଣିଲେ ।୨୭। ସେହି କ୍ରନ୍ଦନଶୀଳ ରାକ୍ଷସଶିଶୁକୁ ଶିବ ଓ ପାର୍ବତୀ ଦୁହେଁ ଦେଖିଲେ । ପାର୍ବତୀଙ୍କ କଥାରେ ଦୟାପରବଶ ହୋଇ ତ୍ରିପୁରସୁରିହନ୍ତ୍ୟାକାରୀ ମହାଦେବ ସେହି ରାକ୍ଷସପୁତ୍ରର ବୟସ ତାର ମାତାର ବୟସ ସଙ୍ଗେ ସମାନ କରିଦେଲେ ଓ ତାକୁ ଅମର କରିଦେଲେ । ତଦନନ୍ତର ଅକ୍ଷୟ ଏବଂ ଅବ୍ୟୟ ମହାଦେବ ପାର୍ବତୀଙ୍କୁ ଖୁସିକରିବା ପାଇଁ ତାହାକୁ ଆକାଶମାର୍ଗଗାମୀ ଏକ ନଗର-ସଦୃଶ ବିମାନ ମଧ୍ୟ ଦେଇଦେଲେ । ହେ ରାଜପୁତ୍ର ! ପାର୍ବତୀ ମଧ୍ୟ ରାକ୍ଷସମାନଙ୍କୁ ବର ଦେଲେ । ସେ ବରଦେଲେ ଯେ ରାକ୍ଷସୀମାନେ ଗର୍ଭଧାରଣ କରିବାମାତ୍ରେ ବାଳକ ଜାତହେବ ଓ ସେହି ବାଳକ ତତ୍‌କ୍ଷଣାତ୍ ନିଜର ମାତାର ସମାନ ବୟସ ଲାଭକରିବ । ୨୮-୩୧ । ହେ ରାମ ! ସୁକେଶ ନାମକ ବିଦ୍ୟୁତ୍‌କେଶର ପୁତ୍ର ମହାଦେବଙ୍କଠାରୁ ବରଲାଭକରି ଅତିଶୟ ଗର୍ବିତ ହୋଇଗଲା । ସେ ସେହି ଆକାଶଗାମୀ ବିମାନ ଏବଂ ଲକ୍ଷ୍ମୀଙ୍କୁ ପାଇ; ଇନ୍ଦ୍ର ଆକାଶମାର୍ଗରେ ବିଚରଣ କଲାଭଳି ସେହି ବିମାନରେ ବସି ସର୍ବତ୍ର ବିଚରଣ କରିବାକୁ ଲାଗିଲା । ୩୨ ।

# ପଞ୍ଚମଃ ସର୍ଗଃ

## ମାଲ୍ୟବଦାଦ୍ୟପତ୍ୟୋତ୍ପତ୍ତିଃ

ସୁକେଶଂ ଧାର୍ମିକଂ ଦୃଷ୍ଟ୍ୱା ବରଲବ୍ଧଂ ଚ ରାକ୍ଷସମ୍ ।
ଗ୍ରାମଣୀର୍ନାମ ଗନ୍ଧର୍ବୋ ବିଶ୍ୱାବସୁସମପ୍ରଭଃ । ୧ ।
ତସ୍ୟ ଦେବବତୀ ନାମ ଦ୍ୱିତୀୟା ଶ୍ରୀରିବାତ୍ମଜା ।
ତ୍ରିଷୁ ଲୋକେଷୁ ବିଖ୍ୟାତା ରୂପଯୌବନଶାଳିନୀ । ୨ ।
ତାଂ ସୁକେଶାୟ ଧର୍ମେଣ ଦଦୌ ରକ୍ଷଃ ଶ୍ରିୟଂ ଯଥା ।
ବରଦାନକୃତୈଶ୍ୱର୍ଯ୍ୟଂ ସା ତଂ ପ୍ରାପ୍ୟ ପତିଂ ପ୍ରିୟମ୍ । ୩ ।
ଆସୀଦ୍ଦେବବତୀ ତୁଷ୍ଟା ଧନଂ ପ୍ରାପ୍ୟେବ ନିର୍ଧନଃ ।
ସ ତୟା ସହ ସଂଯୁକ୍ତୋ ରରାଜ ରଜନୀଚରଃ । ୪ ।
ଅଞ୍ଜନାଦଭିନିଷ୍କ୍ରାନ୍ତଃ କରେଣ୍ୱେବ ମହାଗଜଃ ।
ଦେବବତ୍ୟାଂ ସୁକେଶସ୍ତୁ ଜନୟାମାସ ରାଘବ ।
ତ୍ରୀନ୍ ପୁତ୍ରାନ୍ ଜନୟାମାସ ତ୍ରେତାଗ୍ନିସମବିଗ୍ରହାନ୍ । ୫ ।

---

## ୫ମ ସର୍ଗ

(ମାଲ୍ୟବାନ୍ ଆଦିଙ୍କର ସନ୍ତାନଜନ୍ମ)

ସୁକେଶକୁ ବରଦାନ ପାଇଥିବାର ଓ ଧାର୍ମିକ ହୋଇଥିବାର ଦେଖି ବିଶ୍ୱାବସୁଙ୍କ ସଦୃଶ ତେଜସ୍ୱୀ ଗ୍ରାମଣୀ ନାମକ ଗନ୍ଧର୍ବ ନିଜର ଦେବବତୀ ନାମକ ଦ୍ୱିତୀୟ ଲକ୍ଷ୍ମୀ ସଦୃଶୀ ଯୁବତୀ ଓ ତିନିଲୋକରେ ବିଖ୍ୟାତ ସୁନ୍ଦରୀ କନ୍ୟାକୁ ଧର୍ମାତ୍ମା ରାକ୍ଷସ ସୁକେଶକୁ ରାଜଲକ୍ଷ୍ମୀ ସଦୃଶ ଦେଇଦେଲେ । ଶିବଙ୍କଠାରୁ ବରଦାନ ପାଇ ସୁକେଶ ଐଶ୍ୱର୍ଯ୍ୟବାନ୍ ହୋଇଥିବାରୁ ଏପରି ପ୍ରିୟପତିକୁ ପାଇ, ନିର୍ଦ୍ଧନ ପୁରୁଷ ଧନ ପାଇବାପରି ଦେବବତୀ ଅତ୍ୟନ୍ତ ପ୍ରସନ୍ନ ହେଲ ଏବଂ ରାକ୍ଷସ ସୁକେଶ ମଧ୍ୟ ତାହା ସହିତ ମିଳିତ ହୋଇ ବିଶେଷ ଶୋଭା ପାଇଲା । ୧-୪ । ଅଞ୍ଜନ ନାମକ ଗଜଠାରୁ ଉତ୍ପନ୍ନ ହୋଇଥିବା ମହାଗଜ ପତ୍ନୀ ସହିତ ଶୋଭାପାଇବା ପରି ସେ ଦେବବତୀ ସହ ଶୋଭା ପାଇଲା । ହେ ରାଘବ ! ତଦନନ୍ତର ସୁକେଶ ଦେବବତୀ ଗର୍ଭରେ ଅଗ୍ନିଙ୍କ ସଦୃଶ ଶରୀରଧାରୀ ତିନି ପୁତ୍ର ଜନ୍ମକଲା । ୫ । ବଳବାନ୍‌ମାନଙ୍କ ମଧ୍ୟରେ ଶ୍ରେଷ୍ଠ

ମାଲ୍ୟବନ୍ତଂ ସୁମାଳିଂ ଚ ମାଳିଂ ଚ ବଳିନାଂ ବରମ୍ ।
ତ୍ରୀଂସ୍ତ୍ରିନେତ୍ରସମାନ୍ ପୁତ୍ରାନ୍ ରାକ୍ଷସାନ୍ ରାକ୍ଷସାଧିପଃ । ୬ ।
ତ୍ରୟୋ ଲୋକା ଇବାବ୍ୟଗ୍ରାଃ ସ୍ଥିତା ସ୍ତ୍ରୟ ଇବାଗ୍ନୟଃ ।
ତ୍ରୟୋ ମନ୍ତ୍ରା ଇବାତ୍ୟୁଗ୍ରାସ୍ତ୍ରୟୋ ଘୋରା ଇବାମୟାଃ । ୭ ।
ତ୍ରୟଃ ସୁକେଶସ୍ୟ ସୁତାସ୍ତ୍ରେତାଗ୍ନିସମତେଜସଃ ।
ବିବୃଦ୍ଧିମଗମଂସ୍ତତ୍ର ବ୍ୟାଧୟୋପେକ୍ଷିତା ଇବ । ୮ ।
ବରପ୍ରାପ୍ତିଂ ପିତୁସ୍ତେ ତୁ ଜ୍ଞାତ୍ୱୈଶ୍ୱର୍ଯ୍ୟଂ ତପୋବଲାତ୍ ।
ତପସ୍ତପ୍ତୁଂ ଗତା ମେରୁଂ ଭ୍ରାତରଃ କୃତନିଶ୍ଚୟାଃ । ୯ ।
ପ୍ରଗୃହ୍ୟ ନିୟମାନ୍ ଘୋରାନ୍ ରାକ୍ଷସା ନୃପସତ୍ତମ ।
ବିଚେରୁସ୍ତେ ତପୋ ଘୋରଂ ସର୍ବଭୂତଭୟାବହମ୍ । ୧୦ ।
ସତ୍ୟାର୍ଜବଶମୋପେତୈସ୍ତପୋଭିରତଦୁଷ୍କରୈଃ ।
ସନ୍ତାପୟନ୍ତସ୍ତ୍ରୀଁଲ୍ଲୋକାନ୍ ସଦେବାସୁରମାନୁଷାନ୍ । ୧୧ ।
ତତୋ ବିଭୁଶ୍ଚତୁର୍ବକ୍ତ୍ରୋ ବିମାନବରମାସ୍ଥିତଃ ।
ସୁକେଶପୁତ୍ରାନାମନ୍ତ୍ର୍ୟ ବରଦୋଽସ୍ମୀତ୍ୟଭାଷତ । ୧୨ ।

---

ସେହି ତିନି ପୁତ୍ରଙ୍କର ନାମ ଥିଲା ମାଲ୍ୟବାନ୍, ସୁମାଳୀ ଓ ମାଳୀ । ରାକ୍ଷସରାଜ ସୁକେଶ ତିନି ଅଗ୍ନି ସଦୃଶ ଏହି ତିନି ପୁତ୍ର ଜନ୍ମକରିଥିଲା । ୬ । ସୁକେଶର ତିନେତ୍ର ତୁଲ୍ୟ ଏହି ତିନି ପୁତ୍ର ବ୍ୟଗ୍ରତାରହିତ ତିନି ଲୋକପରି; ଗାର୍ହପତ୍ୟାଦି ତିନି ଅଗ୍ନିଙ୍କର ସଦୃଶ ଅଥବା ତିନି ବେଦ ସଦୃଶ ଅଥବା ବାତ, ପିତ୍ତ ଓ କଫ ସଦୃଶ ଉଗ୍ର ଓ ଭୟଙ୍କର ଥିଲେ । ୭ । ସୁକେଶର ଏହି ତିନି ଅଗ୍ନି ସଦୃଶ ତେଜସ୍ୱୀ ପୁତ୍ର, ଉପେକ୍ଷା କରିବା ଦ୍ୱାରା ରୋଗ ବଢ଼ିବାପରି, ବୃଦ୍ଧି ପାଇବାକୁ ଲାଗିଲେ ।୮। ଏହି ତିନି ଭାଇ ପିତାଙ୍କର ବରପ୍ରାପ୍ତି ଏବଂ ତଦ୍ଦ୍ୱାରା ଲାଭ ହୋଇଥିବା ଐଶ୍ୱର୍ଯ୍ୟକୁ ଦେଖି ମେରୁ ପର୍ବତ ଉପରେ ଯାଇ ତପସ୍ୟା କରିବାକୁ ନିଶ୍ଚୟ କଲେ । ୯ । ହେ ନୃପଶ୍ରେଷ୍ଠ ! ସେହି ତିନି ରାକ୍ଷସ ସେତେବେଳେ କଠୋର ନିୟମ ପାଳନ କରିବାକୁ ନିଷ୍ଠାପୂର୍ବକ ସମସ୍ତ ପ୍ରାଣୀଙ୍କର ଭୟ ଉତ୍ପାଦନକାରୀ ଘୋର ତପ କରିବାକୁ ଲାଗିଲେ । ୧୦ ।"ସତ୍ୟ, ସରଳତା ଏବଂ ଇନ୍ଦ୍ରିୟସଂଯମ ଆଦି ନିୟମ ପାଳନକରି ସେ ତିନି ଜଣ ପୃଥିବୀ ପୃଷ୍ଠରେ ଦୁର୍ଲ୍ଲଭ ଘୋର ତପ କଲେ । ଏହି ଘୋର ତପଦ୍ୱାରା ସେମାନେ ଦେବତା ଓ ମନୁଷ୍ୟମାନଙ୍କ ସହିତ ତିନି ଲୋକକୁ ସନ୍ତାପିତ କରିବାକୁ ଲାଗିଲେ ।୧୧। ଅନନ୍ତର ବିଭୁ ଚତୁର୍ମୁଖ ବ୍ରହ୍ମା ଶ୍ରେଷ୍ଠ ବିମାନରେ ବସି ସେଠାକୁ ଆସିଲେ ଏବଂ ସୁକେଶର ପୁତ୍ରମାନଙ୍କୁ ସମ୍ବୋଧନ କରି କହିଲେ, "ମୁଁ ତୁମ୍ଭମାନଙ୍କୁ ବରଦାନ କରିବାକୁ

ବ୍ରହ୍ମାଣଂ ବରଦଂ ଜ୍ଞାତ୍ୱା ସେନ୍ଦ୍ରୈର୍ଦେବଗଣୈର୍ବୃତମ୍ ।
ଊଚୁଃ ପ୍ରାଞ୍ଜଲୟଃ ସର୍ବେ ବେପମାନା ଇବ ଦ୍ରୁମାଃ । ୧୩ ।
ତପସାରାଧିତୋ ଦେବ ଯଦି ନୋ ଦିଶସେ ବରମ୍ ।
ଅଜେୟାଃ ଶତ୍ରୁହନ୍ତାରସ୍ତଥୈବ ଚିରଜୀବିନଃ ।
ପ୍ରଭବିଷ୍ଣବୋ ଭବାମେତି ପରସ୍ପରମନୁବ୍ରତାଃ ।୧୪ ।
ଏବଂ ଭବିଷ୍ୟତୀତ୍ୟୁକ୍ତ୍ୱା ସୁକେଶତନୟାନ୍ ବିଭୁଃ ।
ସ ଯଯୌ ବ୍ରହ୍ମଲୋକାୟ ବ୍ରହ୍ମା ବ୍ରାହ୍ମଣବତ୍ସଲଃ । ୧୫ ।
ବରଂ ଲବ୍ଧ୍ୱା ତୁ ତେ ସର୍ବେ ରାମ ରାତ୍ରିଂଚରାସ୍ତଦା ।
ସୁରାସୁରାନ୍ ପ୍ରବାଧନ୍ତେ ବରଦାନସୁନିର୍ଭୟାଃ । ୧୬ ।
ତୈର୍ବାଧ୍ୟମାନାସ୍ତ୍ରିଦଶାଃ ସର୍ଷିସଙ୍ଘାଃ ସଚାରଣାଃ ।
ତ୍ରାତାରଂ ନାଧିଗଚ୍ଛନ୍ତି ନିରୟସ୍ଥା ଯଥା ନରାଃ । ୧୭ ।
ଅଥ ତେ ବିଶ୍ୱକର୍ମାଣଂ ଶିଳ୍ପିନାଂ ବରମବ୍ୟୟମ୍ ।
ଊଚୁଃ ସମେତ୍ୟ ସଂହୃଷ୍ଟା ରାକ୍ଷସା ରଘୁସତ୍ତମ । ୧୮ ।

---

ଆସିଅଛି" । ୧୨ । ଇନ୍ଦ୍ରାଦି ଦେବତାମାନଙ୍କ ସହିତ ବ୍ରହ୍ମା ବରଦେବା ପାଇଁ ଉଦ୍ୟତ ହୋଇଥିବାର ଦେଖି ସେ ରାକ୍ଷସମାନେ ବୃକ୍ଷସଦୃଶ ଥରଥର କମ୍ପିତ ହୋଇ ତାଙ୍କୁ କରଯୋଡ଼ି କହିଲେ ।୧୩। "ହେ ଦେବ ! ତପସ୍ୟାରେ ଆରାଧନା କରିବା ଦ୍ୱାରା ଯଦି ଆପଣ ଆମ୍ଭମାନଙ୍କୁ ବର ଦେବାପାଇଁ ଆଦେଶ କରୁଛନ୍ତି, ତେବେ ଆମେ ବରମାଗୁଛୁ ଯେ ଆମ୍ଭମାନଙ୍କ ପରସ୍ପର ମଧ୍ୟରେ ସର୍ବଦା ପ୍ରୀତି ରହିଥିବ, କେହି ଆମକୁ ଜିଣିପାରିବ ନାହିଁ, ଆମେ ନିଜର ଶତ୍ରୁକୁ ସଂହାର କରିବୁ, ଆମେ ଅଜେୟ ଓ ଅମର ହେବୁଁ ।୧୪ । ଏଥି ଉତ୍ତରରୁ ବ୍ରାହ୍ମଣବତ୍ସଳ ପ୍ରଭୁ ବ୍ରହ୍ମା କହିଲେ, "ତାହାହିଁ ହେବ ।" ତଦନନ୍ତର ସୁକେଶର ପୁତ୍ରମାନଙ୍କୁ ଏହି ବର ଦେଇ ବ୍ରହ୍ମା ବ୍ରହ୍ମଲୋକକୁ ଚାଲିଗଲେ । ୧୫ । ହେ ରାମ ! ଏହିପ୍ରକାରେ ସେହି ରାକ୍ଷସମାନେ ବରଦାନ ପାଇ ଅତ୍ୟନ୍ତ ନିର୍ଭୀକ ହୋଇ ଦେବତା ଓ ମନୁଷ୍ୟମାନଙ୍କୁ ପ୍ରପୀଡ଼ିତ କରିବାକୁ ଲାଗିଲେ । ସେମାନଙ୍କ ଦ୍ୱାରା ପ୍ରପୀଡ଼ିତ ହୋଇ ଦେବତା, ମହର୍ଷି ଓ ଚାରଣମାନେ ଅନାଥ-ସଦୃଶ ତ୍ରାଣକର୍ତ୍ତା ଖୋଜିବାକୁ ଲାଗିଲେ । ମାତ୍ର ନରକର ପ୍ରାଣୀମାନଙ୍କୁ ଯେପରି କୌଣସି ଉଦ୍ଧାରକର୍ତ୍ତା ମିଳେ ନାହିଁ, ସେହିପରି ସେମାନଙ୍କୁ କେହି ରକ୍ଷକ ମିଳିଲେ ନାହିଁ । ହେ ରଘୁଶ୍ରେଷ୍ଠ ! ସେହି ରାକ୍ଷସମାନେ ଆନନ୍ଦହୃଦୟରେ ଶିଳ୍ପୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ଚିରଜୀବୀ ବିଶ୍ୱକର୍ମାଙ୍କ ନିକଟକୁ ଯାଇ କହିଲେ ।୧୬-୧୮। "ପରାକ୍ରମୀ,

ଓଜସ୍ତେଜୋବଲବତାଂ ମହତାମାତ୍ମତେଜସା ।
ଗୃହକର୍ତ୍ତା ଭବାନେବ ଦେବାନାଂ ହୃଦୟେପ୍ସିତମ୍ । ୧୯ ।
ଅସ୍ମାକମପି ତାବତ୍ତ୍ୱଂ ଗୃହଂ କୁରୁ ମହାମତେ ।
ହିମବନ୍ତମୁପାଶ୍ରିତ୍ୟ ମେରୁଂ ମନ୍ଦରମେବ ବା । ୨୦ ।
ମହେଶ୍ୱରଗୃହପ୍ରଖ୍ୟଂ ଗୃହଂ ନଃ କ୍ରିୟତାଂ ମହତ୍ ।
ବିଶ୍ୱକର୍ମା ତତସ୍ତେଷାଂ ରାକ୍ଷସାନାଂ ମହାଭୁଜଃ । ୨୧ ।
ନିବାସଂ କଥୟାମାସ ଶକ୍ରସ୍ୟେବାମରାବତୀମ୍ ।
ଦକ୍ଷିଣସ୍ୟୋଦଧେସ୍ତୀରେ ତ୍ରିକୂଟୋ ନାମ ପର୍ବତଃ । ୨୨ ।
ସୁବେଲ ଇତି ଚାପ୍ୟନ୍ୟୋ ଦ୍ୱିତୀୟସ୍ତତ୍ର ସତ୍ତମାଃ ।
ଶିଖରେ ତସ୍ୟ ଶୈଳସ୍ୟ ମଧ୍ୟମେଽମ୍ବୁଦସନ୍ନିଭେ । ୨୩ ।
ଶକୁନୈରପି ଦୁଷ୍ପ୍ରାପେ ଟଙ୍କଚ୍ଛିନ୍ନଚତୁର୍ଦ୍ଦିଶି ।
ତ୍ରିଂଶଦ୍ୟୋଜନବିସ୍ତୀର୍ଣ୍ଣା ଶତଯୋଜନମାୟତା । ୨୪ ।
ସ୍ୱର୍ଣ୍ଣପ୍ରାକାରସଂବୀତା ହେମତୋରଣସଂବୃତା ।
ମୟା ଲଙ୍କେତି ନଗରୀ ଶକ୍ରାଜ୍ଞପ୍ତେନ ନିର୍ମିତା । ୨୫ ।

---

ତେଜସ୍ୱୀ ଓ ବଳବାନ୍ ଦେବତାମାନଙ୍କର ଅଭିଳାଷ ଅନୁସାରେ ତୁମେ ସେମାନଙ୍କ ପାଇଁ ଗୃହ ନିର୍ମାଣ କରିଥାଅ । ଅତଏବ ହେ ମହାମତେ ! ଆମ୍ଭମାନଙ୍କ ପାଇଁ ମଧ୍ୟ ତୁମେ ହିମାଳୟ ଉପରେ ବା ମେରୁ ପର୍ବତ ଉପରେ ଅଥବା ମନ୍ଦରପର୍ବତ ଉପରେ ଏକ ଗୃହ ନିର୍ମାଣ କରିଦିଅ । ୧୯-୨୦ । ଶିବଙ୍କର ଭବନସଦୃଶ ଆମ୍ଭମାନଙ୍କର ଭବନକୁ ଖୁବ ବିଶାଳ କରି ନିର୍ମାଣ କର ।” ଅନନ୍ତର ମହାବାହୁ ବିଶ୍ୱକର୍ମା ସେହି ରାକ୍ଷସମାନଙ୍କର ରହିବା ନିମନ୍ତେ ଇନ୍ଦ୍ରଙ୍କର ଅମରାବତୀ ସଦୃଶ ଏକ ଗୃହରେ ନିବାସ କରିବା ପାଇଁ ଦକ୍ଷିଣ ସମୁଦ୍ର ତଟରେ ତ୍ରିକୂଟ ନାମକ ଏକ ପର୍ବତକୁ ନିର୍ଦ୍ଦେଶ କରିଦେଲେ । ୨୧-୨୨ । ସେ କହିଲେ, "ସୁବେଳ ନାମକ ଅନ୍ୟ ଉତ୍ତମ ପର୍ବତ ଅଛି । ସେହି ପର୍ବତର ମଝିରେ ଥିବା ଶିଖର ଅତି ଉଚ୍ଚ ଏବଂ ଏକ ବୃହତ୍ ମେଘଖଣ୍ଡ ସଦୃଶ ଦେଖାଯାଏ । ୨୩ । ତାହା ଉପରକୁ ଉଡ଼ିକରି ପକ୍ଷୀମାନେ ମଧ୍ୟ ଯାଇପାରନ୍ତି ନାହିଁ । କାରଣ ତାହାର ଚତୁର୍ଦ୍ଦିଗ ଟଙ୍କଭୂମିଦ୍ୱାରା ବିଚ୍ଛିନ୍ନ ହୋଇଅଛି । ତାହା ଉପରେ ନିର୍ମିତ ହୋଇଥିବା ନଗରୀ ତିରିଶ ଯୋଜନ ଓସାର ଓ ଶହେ ଯୋଜନ ଲମ୍ବ ଅଟେ । ୨୪ । ଏହାର ପ୍ରାଚୀରର କାନ୍ଥ ସୁନାରେ ତିଆରି ହୋଇଛି ଏବଂ ତାହା ସୁବର୍ଣ୍ଣ ତୋରଣସଦୃଶ ନିର୍ମିତ ହୋଇଛି । ଏହି ସୁବର୍ଣ୍ଣ ପୁରୀକୁ

ତସ୍ୟାଂ ବସତ ଦୁର୍ଦ୍ଧର୍ଷା ଯୂୟଂ ରାକ୍ଷସପୁଙ୍ଗବାଃ ।
ଅମରାବତୀମାସାଦ୍ୟ ସେନ୍ଦ୍ରା ଇବ ଦିବୌକସଃ । ୨୬ ।
ଲଙ୍କାଦୁର୍ଗଂ ସମାସାଦ୍ୟ ରାକ୍ଷସୈର୍ବହୁଭିର୍ବୃତାଃ ।
ଭବିଷ୍ୟଥ ଦୁରାଧର୍ଷାଃ ଶତ୍ରୂଣାଂ ଶତ୍ରୁସୂଦନାଃ । ୨୭ ।
ବିଶ୍ୱକର୍ମବଚଃ ଶ୍ରୁତ୍ୱା ତତସ୍ତେ ରାକ୍ଷସୋତ୍ତମାଃ ।
ସହସ୍ରାନୁଚରା ଭୂତ୍ୱା ଗତ୍ୱା ତାମବସନ୍ ପୁରୀମ୍ । ୨୮ ।
ଦୃଢ଼ପ୍ରାକାରପରିଖାଂ ହୈମୈର୍ଗୃହଶତୈର୍ବୃତାମ୍ ।
ଲଙ୍କାମବାପ୍ୟ ତେ ହୃଷ୍ଟା ନ୍ୟବସନ୍ ରଜନୀଚରାଃ । ୨୯ ।
ଏତସ୍ମିନ୍ନେବ କାଲେ ତୁ ଯଥାକାମଂ ଚ ରାଘବ ।
ନର୍ମଦା ନାମ ଗନ୍ଧର୍ବୀ ବଭୂବ ରଘୁନନ୍ଦନ । ୩୦ ।
ତସ୍ୟାଃ କନ୍ୟାତ୍ରୟଂ ହ୍ୟାସୀଦ୍ଧ୍ରୀଶ୍ରୀକୀର୍ତ୍ତିସମଦ୍ୟୁତି ।
ଜ୍ୟେଷ୍ଠକ୍ରମେଣ ସା ତେଷାଂ ରାକ୍ଷସାନାମରାକ୍ଷସୀ । ୩୧ ।
କନ୍ୟାସ୍ତାଃ ପ୍ରଦଦୌ ହୃଷ୍ଟା ପୂର୍ଣଚନ୍ଦ୍ରନିଭାନନାଃ ।
ତ୍ରୟାଣାଂ ରାକ୍ଷସେନ୍ଦ୍ରାଣାଂ ତିସ୍ରୋ ଗନ୍ଧର୍ବକନ୍ୟକାଃ । ୩୨ ।

---

ମୁଁ ଇନ୍ଦ୍ରଙ୍କ ଆଜ୍ଞାରେ ନିର୍ମାଣ କରିଥିଲି । ୨୫ । ହେ ଦୁର୍ଦ୍ଧର୍ଷ ରାକ୍ଷସଗଣ ! ଯେପରି ଇନ୍ଦ୍ରାଦି ଦେବତାମାନେ ଅମରାବତୀରେ ରହିଥାନ୍ତି ସେହିପରି ତୁମ୍ଭେମାନେ ଯାଇ ସେହି ଲଙ୍କାଦୁର୍ଗରେ ବାସକର । ହେ ଶତ୍ରୁସଂହାରକାରୀ ରାକ୍ଷସଗଣ ! ତୁମେ ବହୁ ରାକ୍ଷସପରିବେଷ୍ଟିତ ହୋଇ ଲଙ୍କାରେ ବାସକଲେ ଶତ୍ରୁଙ୍କଦ୍ୱାରା ଦୁର୍ଜେୟ ହୋଇଯିବ" ।୨୬-୨୭। ବିଶ୍ୱକର୍ମାଙ୍କର ଏକଥା ଶୁଣି ସେହି ରାକ୍ଷସୋତ୍ତମମାନେ ସହସ୍ର ଅନୁଚର ସଙ୍ଗରେ ଧରି ସେହି ପୁରୀରେ ଯାଇ ବାସକଲେ । ୨୮ । ଦୃଢ଼ ପ୍ରାଚୀର ଓ ପରିଖାଯୁକ୍ତ ତଥା ଶତ ଶତ ସୁବର୍ଣ୍ଣ ଗୃହରେ ଭୂଷିତ ଲଙ୍କାରେ ଯାଇ ସେହି ରାକ୍ଷସମାନେ ବାସକଲେ ।୨୯। ହେ ରଘୁନନ୍ଦନ ! ଇତିମଧ୍ୟରେ ନର୍ମଦା ନାମକ ଏକ ଗନ୍ଧର୍ବୀ ଆପଣା ଇଚ୍ଛାରେ ଜାତହେଲା । ୩୦ । ତାହାର ତିନି କନ୍ୟା ଥିଲେ । ସେମାନେ କାନ୍ତିରେ ହ୍ରୀ, ଶ୍ରୀ ଏବଂ କୀର୍ତ୍ତିସଦୃଶ ଥିଲେ । ସେ ଗନ୍ଧର୍ବୀ ନିଜର ସେହି ତିନି କନ୍ୟାଙ୍କୁ ଜ୍ୟେଷ୍ଠାଦିକ୍ରମରେ ସେହି ତିନି ରାକ୍ଷସଙ୍କୁ ଦେଇଦେଲା । ୩୧ । ପୂର୍ଣ୍ଣିମା ଚନ୍ଦ୍ରସଦୃଶ ମୁଖବିଶିଷ୍ଟ ତିନି ଗନ୍ଧର୍ବକନ୍ୟାଙ୍କୁ ସେହି ଗନ୍ଧର୍ବୀ ଆନନ୍ଦ ମନରେ ସେହି ତିନି ରାକ୍ଷସଶ୍ରେଷ୍ଠଙ୍କୁ ଦେଇଦେଲା । ୩୨ ! ସେହି ମହାଭାଗା ଉତ୍ତରଫାଲ୍ଗୁନୀ

ଦତ୍ତ୍ୱା ମାତ୍ୱା ମହାଭାଗା ନକ୍ଷତ୍ରେ ଭଗଦୈବତେ ।
କୃତଦାରାସ୍ତୁ ତେ ରାମ ସୁକେଶତନୟାସ୍ତଦା । ୩୩ ।
ଚିକ୍ରୀଡ଼ୁଃ ସହ ଭାର୍ଯାଭିରପ୍ସରୋଭିରିବାମରାଃ ।
ତତୋ ମାଲ୍ୟବତୋ ଭାର୍ଯା ସୁନ୍ଦରୀ ନାମ ସୁନ୍ଦରୀ । ୩୪ ।
ସ ତସ୍ୟାଂ ଜନୟାମାସ ଯଦପତ୍ୟଂ ନିବୋଧ ତତ୍ ।
ବଜ୍ରମୁଷ୍ଟିର୍ବିରୂପାକ୍ଷୋ ଦୁର୍ମୁଖଶ୍ଚୈବ ରାକ୍ଷସଃ । ୩୫ ।
ସୁପ୍ତଘ୍ନୋ ଯଜ୍ଞକୋପଶ୍ଚ ମତ୍ତୋନ୍ମତ୍ତୌ ତଥୈବ ଚ ।
ଅନଲା ଚାଭବତ୍ କନ୍ୟା ସୁନ୍ଦର୍ଯାଂ ରାମ ସୁନ୍ଦରୀ । ୩୬ ।
ସୁମାଲିନୋଽପି ଭାର୍ଯାସୀତ୍ ପୂର୍ଣଚନ୍ଦ୍ରନିଭାନନା ।
ନାମ୍ନା କେତୁମତୀ ନାମ ପ୍ରାଣେଭ୍ୟୋଽପି ଗରୀୟସୀ । ୩୭ ।
ସୁମାଲୀ ଜନୟାମାସ ଯଦପତ୍ୟଂ ନିଶାଚରଃ ।
କେତୁମତ୍ୟାଂ ମହାରାଜ ତନ୍ନିବୋଧାନୁପୂର୍ବଶଃ । ୩୮ ।
ପ୍ରହସ୍ତୋଽକମ୍ପନଶ୍ଚୈବ ବିକଟଃ କାଲକାର୍ମୁକଃ ।
ଧୂମ୍ରାକ୍ଷଶ୍ଚୈବ ଦଣ୍ଡଶ୍ଚ ସୁପାର୍ଶ୍ୱଶ୍ଚ ମହାବଲଃ । ୩୯ ।
ସଂହ୍ରାଦଃ ପ୍ରଘସଶ୍ଚୈବ ଭାସକର୍ଣଶ୍ଚ ରାକ୍ଷସଃ ।
ରାକା ପୁଷ୍ପୋତ୍କଟା ଚୈବ କୈକସୀ ଚ ଶୁଚିସ୍ମିତା ।
କୁମ୍ଭୀନସୀ ଚ ଇତ୍ୟେତେ ସୁମାଲେଃ ପ୍ରସବାଃ ସ୍ମୃତାଃ । ୪୦ ।

---

ନକ୍ଷତ୍ରରେ ବିବାହ କରାଇଥିଲା । ହେ ରାମ ! ସୁକେଶର ପୁତ୍ରମାନେ ଭାର୍ଯ୍ୟାମାନଙ୍କସହ, ଦେବତାମାନେ ଅପ୍ସରାଙ୍କ ସହିତ ବିହାର କଲାପରି ବିହାର କରିବାକୁ ଲାଗିଲେ । ଅନନ୍ତର ମାଲ୍ୟବାନ ତାର ନିଜର ସୁନ୍ଦରୀ ନାମ୍ନୀ ସ୍ତ୍ରୀଠାରୁ ଯେଉଁ ଯେଉଁ ପୁତ୍ରମାନଙ୍କୁ ଜାତକଲା, ହେ ରାମ ! ସେମାନଙ୍କ ନାମ ମୁଁ ତୁମକୁ କହୁଛି । ବଜ୍ରମୁଷ୍ଟି, ବିରୂପାକ୍ଷ, ଦୁର୍ମୁଖ, ସୁପ୍ତଘ୍ନ, ଯଜ୍ଞକୋପ, ମତ୍ତ, ଉନ୍ମତ୍ତ, ମାଲ୍ୟବାନଙ୍କର ଏହି ସାତ ପୁତ୍ର ଜାତ ହୋଇଥିଲେ । ଅନଳା ନାମକ ଏକ ସୁନ୍ଦରୀ କନ୍ୟା ମଧ୍ୟ ସେହି ସୁନ୍ଦରୀର ଗର୍ଭରୁ ମାଲ୍ୟବାନ୍ ଔରସରେ ଜାତ ହୋଇଥିଲା । ୩୩-୩୬ । ସୁମାଲୀର ଭାର୍ଯ୍ୟା ମଧ୍ୟ ପୂର୍ଣ୍ଣିମା ଚନ୍ଦ୍ରସଦୃଶ ସୁନ୍ଦର ମୁଖବିଶିଷ୍ଟା ଥିଲା । ହେ ରାମ ! ତାର ନାମ କେତୁମତୀ ଥିଲା ଏବଂ ସେ ତାର ପତିର ପ୍ରାଣରୁ ବଳି ପ୍ରିୟତମା ଥିଲା । ୩୭ । ହେ ମହାରାଜ ! ସୁମାଳୀ ନିଜର ଭାର୍ଯ୍ୟା କେତୁମତୀ ଗର୍ଭରେ ଯେଉଁ ସନ୍ତାନମାନଙ୍କୁ ଜନ୍ମ କରିଥିଲା, ମୁଁ ଏବେ ସେମାନଙ୍କର ନାମ ଯଥାକ୍ରମରେ ତୁମକୁ ଶୁଣାଉଅଛି । ୩୮ । ପ୍ରହସ୍ତ, ଅକମ୍ପନ, ବିକଟ, କାଳକାର୍ମୁକ, ଧୂମ୍ରାକ୍ଷ, ଦଣ୍ଡ, ମହାବଳ ସୁପାର୍ଶ୍ୱ, ସଂହ୍ରାଦ, ପ୍ରଘସ ଏବଂ ଭାସକର୍ଣ୍ଣ ଏମାନେ ମହାବଳୀ ସୁମାଳୀର ପୁତ୍ର ହେଲେ ।

ମାଲେସ୍ତୁ ବସୁଧା ନାମ ଗନ୍ଧର୍ବୀ ରୂପଶାଳିନୀ ।
ଭାର୍ଯାସୀତ୍ ପଦ୍ମପତ୍ରାକ୍ଷୀ ସ୍ୱକ୍ଷୀ ଯକ୍ଷୀ ବରୋପମା । ୪୧ ।
ସୁମାଲେରନୁଜସ୍ତସ୍ୟାଂ ଜନୟାମାସ ଯତ୍ ପ୍ରଭୋ ।
ଅପତ୍ୟଂ କଥ୍ୟମାନଂ ତୁ ମୟା ତ୍ୱଂ ଶୃଣୁ ରାଘବ । ୪୨ ।
ଅନଲଶ୍ଚାନଲଶ୍ଚୈବ ହରଃ ସମ୍ପାତିରେବ ଚ ।
ଏତେ ବିଭୀଷଣାମାତ୍ୟା ମାଲେୟାସ୍ତୁ ନିଶାଚରାଃ । ୪୩ ।
ତତସ୍ତୁ ତେ ରାକ୍ଷସପୁଙ୍ଗବାସ୍ତ୍ରୟୋ
ନିଶାଚରୈଃ ପୁତ୍ରଶତୈଶ୍ଚ ସଂବୃତାଃ ।
ସୁରାନ୍ ସହେନ୍ଦ୍ରାନୃଷିନାଗଯକ୍ଷାନ୍
ବବାଧିରେ ତାନ୍ ବହୁବୀର୍ଯଦର୍ପିତାଃ । ୪୪ ।
ଜଗଦ୍ଭ୍ରମନ୍ତୋଽନିଲବଦ୍ଦୁରାସଦା
ରଣେଷୁ ମୃତ୍ୟୁପ୍ରତିମାନତେଜସଃ ।
ବରପ୍ରଦାନାଦତିଗର୍ବିତା ଭୃଶମ୍
କ୍ରତୁକ୍ରିୟାଣାଂ ପ୍ରଶମଙ୍କରାଃ ସଦା । ୪୫ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ମାଲ୍ୟବଦାଦ୍ୟପତ୍ୟୋତ୍ପତ୍ତିର୍ନାମ ପଞ୍ଚମଃ ସର୍ଗଃ ।

---

ସୁମାଳୀ ଏହାଛଡ଼ା କୁମ୍ଭୀନସୀ, କୈକସୀ, ରକା ଏବଂ ପୂର୍ବୋକ୍ତ ଏହି କନ୍ୟାମାନଙ୍କୁ ମଧ୍ୟ ଜନ୍ମ କରିଥିଲା । ୪୦ । ଅତି ରୂପବତୀ ବସୁଧା ନାମକ ଗନ୍ଧର୍ବୀ ମାଳୀ ରାକ୍ଷସର ଭାର୍ଯ୍ୟା ଥିଲା । ତାର ନେତ୍ର ପଦ୍ମସଦୃଶ ହୋଇଥିବାରୁ ସେ ଏକ ଶ୍ରେଷ୍ଠ ଯକ୍ଷୀ ସଦୃଶ ହୋଇଥିଲା । ୪୧ । ହେ ପ୍ରଭୁ ରାଘବ ! ସୁମାଳୀର ସାନ ଭାଇ ମାଳୀ ସେହି ସ୍ତ୍ରୀର ଗର୍ଭରେ ଯେଉଁ ସନ୍ତାନମାନଙ୍କୁ ଜନ୍ମ କରିଥିଲା ମୁଁ ସେମାନଙ୍କର ନାମ କହୁଛି ତୁମ୍ଭେ ଶୁଣ । ୪୨ । ଅନଲ, ଅନିଲ, ହର, ସମ୍ପାତି, ଏମାନେ ମାଳୀର ପୁତ୍ର ଥିଲେ ଏବଂ ଏହି ଚାରି ଜଣ ବିଭୀଷଣଙ୍କର ମନ୍ତ୍ରୀ ହୋଇଥିଲେ । ୪୩ । ରାକ୍ଷସମାନଙ୍କ ମଧ୍ୟରେ ଶ୍ରେଷ୍ଠ ସେହି ତିନି ରାକ୍ଷସଙ୍କର ପରିବାର ବହୁତ ବଡ଼ ହୋଇଗଲା । ସେହି ତିନିଜଣ ରାକ୍ଷସ ନିଜର ପୁତ୍ରମାନଙ୍କ ସହିତ ଇନ୍ଦ୍ରାଦି ସମସ୍ତ ଦେବତା, ଋଷି, ନାଗ ଓ ଯକ୍ଷମାନଙ୍କୁ ନିଜର ବଳରେ ଦୃପ୍ତ ହୋଇ ଉତ୍ପୀଡ଼ିତ କରିବାକୁ ଲାଗିଲେ । । ୪୪ । ସେହି ସବୁ ଦୁର୍ଦ୍ଧର୍ଷ ରାକ୍ଷସ ବାୟୁସଦୃଶ ସଂସାରରେ ସର୍ବତ୍ର ଭ୍ରମଣ କରୁଥିଲେ । ସେହି ରାକ୍ଷସମାନେ ସଂଗ୍ରାମ କ୍ଷେତ୍ରରେ କାଳସଦୃଶ ଅମିତତେଜସ୍ୱୀ ହୋଇଯାଉଥିଲେ ଏବଂ ବରଲାଭ ହେତୁ ଅତ୍ୟନ୍ତ ଗର୍ବିତ ହୋଇ ସର୍ବଦା ଯଜ୍ଞକ୍ରିୟାମାନଙ୍କୁ ନଷ୍ଟ କରି ଦେଉଥିଲେ । ୪୫ ।

# ଷଷ୍ଠଃ ସର୍ଗଃ

## ବିଷ୍ଣୁମାଲ୍ୟବଦାଦ୍ୟୁଦ୍ଧମ୍

ତୈର୍ବଧ୍ୟମାନା ଦେବାଶ୍ଚ ଋଷୟଶ୍ଚ ତପୋଧନାଃ ।
ଭୟାର୍ତ୍ତାଃ ଶରଣଂ ଜଗ୍ମୁର୍ଦେବଦେବଂ ମହେଶ୍ୱରମ୍ । ୧ ।
ଜଗତ୍ସୃଷ୍ଟ୍ୟନ୍ତକର୍ତ୍ତାରମଜମବ୍ୟକ୍ତରୂପିଣମ୍ ।
ଆଧାରଂ ସର୍ବଲୋକାନାମାରାଧ୍ୟଂ ପରମଂ ଗୁରୁମ୍ । ୨ ।
ତେ ସମେତ୍ୟ ତୁ କାମାରିଂ ତ୍ରିପୁରାରିଂ ତ୍ରିଲୋଚନମ୍ ।
ଉଚୁଃ ପ୍ରାଞ୍ଜଲୟୋ ଦେବା ଭୟଗଦ୍‌ଗଦଭାଷିଣଃ । ୩ ।
ସୁକେଶପୁତ୍ରୈର୍ଭଗବନ୍ ପିତାମହବରୋଦ୍ଧତୈଃ ।
ପ୍ରଜାଧ୍ୟକ୍ଷ ପ୍ରଜାଃ ସର୍ବା ବାଧ୍ୟନ୍ତେ ରିପୁବାଧନୈଃ ।
ଶରଣ୍ୟାନ୍ୟଶରଣ୍ୟାନି ହ୍ୟାଶ୍ରମାଣି କୃତାନି ନଃ ।
ସ୍ୱର୍ଗାଚ୍ଚ ଦେବାନ୍ ପ୍ରଚ୍ୟାବ୍ୟ ସ୍ୱର୍ଗେ କ୍ରୀଡ଼ନ୍ତି ଦେବବତ୍ । ୫ ।

---

# ଷଷ୍ଠ ସର୍ଗ

## (ବିଷ୍ଣୁ ଓ ମାଲ୍ୟବାନ୍ ପ୍ରଭୃତିଙ୍କର ଯୁଦ୍ଧ)

ସେହି ରାକ୍ଷସମାନଙ୍କଦ୍ୱାରା ନିର୍ଯ୍ୟାତିତ ହୋଇ ଦେବତା ଓ ତପସ୍ୱୀ ଋଷିମାନେ ଭୟାର୍ତ୍ତ ହୋଇ ଦେବଦେବ ମହାଦେବଙ୍କୁ ଶରଣ ଗଲେ । ୧ । ସେଉଁ ମହାଦେବ ଏହି ସଂସାରର ରଚନାକର୍ତ୍ତା ଓ ତାହାର ବିନାଶକର୍ତ୍ତା ତଥା ସମସ୍ତ ଲୋକଙ୍କର ଆଧାର ଅଟନ୍ତି ଏବଂ ଯେ ଜନ୍ମରହିତ, ଅବ୍ୟକ୍ତ ରୂପ, ଆରାଧନାଯୋଗ୍ୟ, ପରମ ଗୁରୁ ଅଟନ୍ତି ସେମାନେ ସେହି ଶଙ୍କରଙ୍କର ଶରଣାଗତ ହେଲେ । ୨ । ସେହି ତ୍ରିପୁରାରି ଏବଂ ତ୍ରିଲୋଚନ, କାମଶତ୍ରୁ ମହାଦେବଙ୍କ ନିକଟକୁ ସମସ୍ତ ଦେବତା ଗଲେ ଏବଂ ହାତଯୋଡ଼ି ଭୟଗଦ୍‌ଗଦ୍ ସ୍ୱରରେ କହିଲେ । ୩ । "ହେ ଭଗବନ୍ ! ହେ ପ୍ରଜାଧ୍ୟକ୍ଷ ! ଶତ୍ରୁମାନଙ୍କର ନିର୍ଯ୍ୟାତନାକାରୀ ସୁକେଶର ପୁତ୍ରମାନେ ବ୍ରହ୍ମାଙ୍କଠାରୁ ବର ପାଇ ଉଦ୍ଧତ ହୋଇ ସମସ୍ତ ଜୀବଙ୍କୁ ପୀଡ଼ା ଦେଉଅଛନ୍ତି । ୪ । ଆମର ଘର ଏବଂ ଆଶ୍ରମକୁ ସେମାନେ ଭାଙ୍ଗିରୁଜି ପକାଇଅଛନ୍ତି ଏବଂ ସ୍ୱର୍ଗରୁ ଆମ୍ଭମାନଙ୍କୁ ତଡ଼ିଦେଇ ସେଠାରେ ଦେବତାମାନଙ୍କ ପରି ସେମାନେ କ୍ରୀଡ଼ା କରୁଅଛନ୍ତି । ୫ ।

ଅହଂ ବିଷ୍ଣୁରହଂ ରୁଦ୍ରୋ ବ୍ରହ୍ମାହଂ ଦେବରାଡ଼ହମ୍ ।
ଅହଂ ଯମଶ୍ଚ ବରୁଣଶ୍ଚନ୍ଦ୍ରୋଽହଂ ରବିରପ୍ୟହମ୍ । ୬ ।
ଇତି ମାଲୀ ସୁମାଲୀ ଚ ମାଲ୍ୟବାଂଶ୍ଚୈବ ରାକ୍ଷସାଃ ।
ବାଧନ୍ତେ ସମରୋଦ୍ଧର୍ଷା ଯେ ଚ ତେଷାଂ ପୁରଃସରାଃ । ୭ ।
ତନ୍ନୋ ଦେବ ଭୟାର୍ତ୍ତାନାମଭୟଂ ଦାତୁମର୍ହସି ।
ଅଶିବଂ ବପୁରାସ୍ଥାୟ ଜହି ବୈ ଦେବକଣ୍ଟକାନ୍ । ୮ ।
ଇତ୍ୟୁକ୍ତସ୍ତୁ ସୁରୈଃ ସର୍ବୈଃ କପର୍ଦ୍ଦୀ ନୀଲଲୋହିତଃ ।
ସୁକେଶଂ ପ୍ରତି ସାପେକ୍ଷଃ ପ୍ରାହ ଦେବଗଣାନ୍ ପ୍ରଭୁଃ ।୯।
ଅହଂ ତାନ୍ନ ହନିଷ୍ୟାମି ମମାବଧ୍ୟା ହି ତେଽସୁରାଃ ।
କିନ୍ତୁ ମନ୍ତ୍ରଂ ପ୍ରଦାସ୍ୟାମି ଯୋ ବୈ ତାନ୍ନିହନିଷ୍ୟତି । ୧୦ ।
ଏତମେବ ସମୁଦ୍ୟୋଗଂ ପୁରସ୍କୃତ୍ୟ ମହର୍ଷୟଃ ।
ଗଚ୍ଛଧ୍ୱଂ ଶରଣଂ ବିଷ୍ଣୁଂ ହନିଷ୍ୟତି ସ ତାନ୍ ପ୍ରଭୁଃ । ୧୧ ।
ତତସ୍ତୁ ଜୟଶବ୍ଦେନ ପ୍ରତିନନ୍ଦ୍ୟ ମହେଶ୍ୱରମ୍ ।
ବିଷ୍ଣୋଃ ସମୀପମାଜଗ୍ମୁର୍ନିଶାଚରଭୟାର୍ଦ୍ଦିତାଃ । ୧୨ ।

---

ମୁଁ ବିଷ୍ଣୁ, ମୁଁ ରୁଦ୍ର, ମୁଁ ବ୍ରହ୍ମା, ମୁଁ ଇନ୍ଦ୍ର, ମୁଁ ଯମ, ମୁଁ ବରୁଣ, ମୁଁ ଚନ୍ଦ୍ର, ମୁଁ ସୂର୍ଯ୍ୟ—ଏହି ପ୍ରକାରେ ମାଲୀ ସୁମାଲୀ ଓ ମାଲ୍ୟବାନ୍ କହୁଛନ୍ତି ଏବଂ ଯୁଦ୍ଧରେ ଉତ୍ସାହିତ ହୋଇ ସେମାନେ ଓ ସେମାନଙ୍କର ପୁରୋଗାମୀ ଅନ୍ୟ ରାକ୍ଷସମାନେ ସମସ୍ତଙ୍କୁ ଉତ୍ପୀଡ଼ିତ କରୁଛନ୍ତି । ୬-୭ । ଅତଏବ ହେ ଦେବ ! ଭୟପ୍ରପୀଡ଼ିତ ଆମ୍ଭମାନଙ୍କୁ ଆପଣ ଅଭୟଦାନ କରନ୍ତୁ । ଆପଣ ଭୟଙ୍କର ରୂପ ଧାରଣକରି ସେହି ଦେବକଣ୍ଟକମାନଙ୍କୁ ବିନାଶ କରନ୍ତୁ" । ୮ । ସେହି ସକଳ ଦେବତାଙ୍କର ଏହି ପ୍ରାର୍ଥନା ଶୁଣି କପର୍ଦ୍ଦୀ ନୀଲଲୋହିତ ମହାଦେବ ସୁକେଶର ପକ୍ଷ ନେଇ ଦେବତାମାନଙ୍କୁ କହିଲେ । ୯ । "ହେ ଦେବଗଣ ! ମୁଁ ସେ ରାକ୍ଷସମାନଙ୍କୁ ମାରିବି ନାହିଁ; କାରଣ ସେମାନେ ମୋର ଅବଧ୍ୟ ଅଟନ୍ତି । ମାତ୍ର ସେମାନଙ୍କୁ ଯେ ମାରିବ ସେ ଉପାୟ ମୁଁ ତୁମ୍ଭମାନଙ୍କୁ ବତାଇ ଦେଉଅଛି । ୧୦ । ହେ ମହର୍ଷିଗଣ ! ଏହି ଦେବତାମାନଙ୍କୁ ସଙ୍ଗରେ ନେଇ ତୁମ୍ଭେମାନେ ଭଗବାନ୍ ବିଷ୍ଣୁଙ୍କର ଶରଣାପନ୍ନ ହୁଅ, ସେହି ପ୍ରଭୁ ଏମାନଙ୍କୁ ନାଶ କରିବେ" । ୧୧ । ଅନନ୍ତର ସେମାନେ ଜୟଜୟକାର ଶବ୍ଦ ଦ୍ୱାରା ମହାଦେବଙ୍କୁ ଅଭିନନ୍ଦନ କରି ରାକ୍ଷସମାନଙ୍କ ଭୟରେ ପ୍ରପୀଡ଼ିତ ହୋଇ ସମସ୍ତେ ବିଷ୍ଣୁଙ୍କ ପାଖରେ

**ଶଙ୍ଖଚକ୍ରଧରଂ ଦେବଂ ପ୍ରଣମ୍ୟ ବହୁମାନ୍ୟ ଚ ।**
**ଊଚୁଃ ସଂଭ୍ରାନ୍ତବଦ୍‌ବାକ୍ୟଂ ସୁକେଶତନୟାନ୍ ପ୍ରତି । ୧୩ ।**
**ସୁକେଶତନୟୈର୍ଦ୍ଦେବ ତ୍ରିଭିସ୍ତ୍ରେତାଗ୍ନି ସଂନିଭୈଃ ।**
**ଆକ୍ରମ୍ୟ ବରଦାନେନ ସ୍ଥାନାନ୍ୟପହୃତାନି ନଃ । ୧୪ ।**
**ଲଙ୍କା ନାମ ପୁରୀ ଦୁର୍ଗା ତ୍ରିକୂଟଶିଖରେ ସ୍ଥିତା ।**
**ତତ୍ର ସ୍ଥିତାଃ ପ୍ରବାଧନ୍ତେ ସର୍ବାନ୍ନଃ କ୍ଷଣଦାଚରାଃ । ୧୫ ।**
**ସ ତ୍ୱମସ୍ମଦ୍ଧିତାର୍ଥାୟ ଜହି ତାନ୍ ମଧୁସୂଦନ ।**
**ଶରଣଂ ତ୍ୱାଂ ବୟଂ ପ୍ରାପ୍ତାଗତିର୍ଭବ ସୁରେଶ୍ୱର । ୧୬ ।**
**ରାକ୍ଷସାନ୍ ସମରେ ଦୁଷ୍ଟାନ୍ ସାନୁବନ୍ଧାନ୍ ମଦୋଦ୍ଧତାନ୍ ।**
**ଚକ୍ରକୃତ୍ତାସ୍ୟକମଲାନ୍ନିବେଦୟ ଯମାୟ ବୈ । ୧୭ ।**
**ଭୟେଷ୍ୱଭୟଦୋଽସ୍ମାକଂ ନାନ୍ୟୋଽସ୍ତି ଭବତା ବିନା ।**
**ନୁଦ ତ୍ୱଂ ନୋ ଭୟଂ ଦେବ ନୀହାରମିବ ଭାସ୍କରଃ ।୧୮।**
**ଇତ୍ୟେବଂ ଦୈବତୈରୁକ୍ତୋ ଦେବଦେବୋ ଜନାର୍ଦ୍ଦନଃ ।**
**ଅଭୟଂ ଭୟଦୋଽରୀଣାଂ ଦତ୍ତ୍ୱା ଦେବାନୁବାଚ ହ । ୧୯ ।**

---

ଯାଇ ପହଞ୍ଚିଲେ । ୧୨ । ଶଙ୍ଖଚକ୍ରଧାରୀ ଭଗବାନ୍ ବିଷ୍ଣୁଙ୍କୁ ବିଶେଷ ଆଦର ସହିତ ପ୍ରଣାମକରି ଦେବତାମାନେ ସୁକେଶର ପୁତ୍ରମାନଙ୍କ ବିଷୟରେ ଭୟବିହ୍ୱଳିତ-ଭାବରେ କହିଲେ । ୧୩ । "ହେ ଦେବ ! ତିନି ଅଗ୍ନିଙ୍କ ସଦୃଶ ଅତ୍ୟନ୍ତ ତେଜସ୍ୱୀ ସୁକେଶର ତିନି ପୁତ୍ର ବରଦାନ ପାଇ ଆମ୍ଭମାନଙ୍କର ସ୍ଥାନ ଛଡ଼ାଇ ନେଇଅଛନ୍ତି ।୧୪। ସେହି ରାକ୍ଷସମାନେ ତ୍ରିକୂଟ ପର୍ବତ ଶିଖର ଉପରେ ନିର୍ମିତ ହୋଇଥିବା ଲଙ୍କାପୁରୀରେ ରହି ଆମ ସମସ୍ତଙ୍କୁ ପ୍ରପୀଡ଼ିତ କରୁଅଛନ୍ତି । ୧୫ । ଅତଏବ ହେ ମଧୁସୂଦନ ! ଆମ୍ଭମାନଙ୍କର ହିତ ନିମନ୍ତେ ଆପଣ ସେମାନଙ୍କୁ ବଧକରନ୍ତୁ । ହେ ସୁରେଶ୍ୱର ! ଆମ୍ଭେମାନେ ଆପଣଙ୍କର ଶରଣାପନ୍ନ ହୋଇଅଛୁ, ଅତଏବ ଆପଣ ଆମ୍ଭମାନଙ୍କୁ ରକ୍ଷାକରନ୍ତୁ । ୧୬ । ହେ ଦେବ ! ଆପଣ ଏହି ମଦୋନ୍ମତ୍ତ ଦୁଷ୍ଟ ରାକ୍ଷସମାନଙ୍କର ପଦ୍ମସଦୃଶ ମୁଖକୁ ସେମାନଙ୍କ ଅନୁଚରମାନଙ୍କ ସହିତ ଯୁଦ୍ଧରେ ଚକ୍ରରେ ଛେଦନକରି ଯମଙ୍କୁ ଅର୍ପଣ କରନ୍ତୁ ।୧୭। ଆପଣଙ୍କ ଛଡ଼ା ଆମ୍ଭମାନଙ୍କର ଅନ୍ୟ କେହି ଅଭୟଦାତା ନାହାନ୍ତି । ସୂର୍ଯ୍ୟ ତୁଷାରକୁ ନଷ୍ଟ କରିଦେଲାପରି ଆପଣ ଆମ୍ଭମାନଙ୍କର ଭୟ ଅପନୋଦନ କରନ୍ତୁ" ।୧୮। ଦେବତାମାନେ ଏ ପ୍ରକାର କହିବାରୁ ଶତ୍ରୁମାନଙ୍କର ଭୟପ୍ରଦାନକାରୀ ଦେବଦେବ ଭଗବାନ୍ ଜନାର୍ଦ୍ଦନ ସେମାନଙ୍କୁ ଅଭୟ ଦେଇ

ସୁକେଶଂ ରାକ୍ଷସଂ ଜାନେ ଈଶାନବରଦର୍ପିତମ୍ ।
ତାଂଶ୍ଚାସ୍ୟ ତନୟାଞ୍ଜାନେ ଯେଷାଂ ଜ୍ୟେଷ୍ଠଃ ସ ମାଲ୍ୟବାନ୍ ।୨୦
ତାନହଂ ସମତିକ୍ରାନ୍ତମର୍ଯ୍ୟାଦାନ୍ ରାକ୍ଷସାଧମାନ୍ ।
ନିହନିଷ୍ୟାମି ସଂକ୍ରୁଦ୍ଧଃ ସୁରା ଭବତ ବିଜ୍ୱରାଃ । ୨୧ ।
ଇତ୍ୟୁକ୍ତାସ୍ତେ ସୁରାଃ ସର୍ବେ ବିଷ୍ଣୁନା ପ୍ରଭବିଷ୍ଣୁନା ।
ଯଥାବାସଂ ଯଯୁର୍ହୃଷ୍ଟାଃ ପ୍ରଶଂସନ୍ତୋ ଜନାର୍ଦ୍ଦନମ୍ । ୨୨ ।
ବିବୁଧାନାଂ ସମୁଦ୍ୟୋଗଂ ମାଲ୍ୟବାଂସ୍ତୁ ନିଶାଚରଃ ।
ଶ୍ରୁତ୍ୱା ତୌ ଭ୍ରାତରୌ ବୀରାବିଦଂ ବଚନମବ୍ରବୀତ୍ । ୨୩ ।
ଅମରା ଋଷୟଶ୍ଚୈବ ସଂଗମ୍ୟ କିଲ ଶଙ୍କରମ୍ ।
ଅସ୍ମଦ୍ବଧଂ ପରୀପ୍ସନ୍ତ ଇଦଂ ବଚନମବ୍ରୁବନ୍ । ୨୪ ।
ସୁକେଶତନୟା ଦେବ ବରଦାନବଲୋଦ୍ଧତାଃ ।
ବାଧନ୍ତେଽସ୍ମାନ୍ ସମୁଦ୍ଧୃପ୍ତା ଘୋରରୂପା ପଦେ ପଦେ । ୨୫ ।
ରାକ୍ଷସୈରଭିଭୂତାଃ ସ୍ମ ନ ଶକ୍ତାଃ ସ୍ମ ପ୍ରଜାପତେ ।
ସ୍ୱେଷୁ ସଦ୍ମସୁ ସଂସ୍ଥାତୁଂ ଭୟାତ୍ତେଷାଂ ଦୁରାତ୍ମନାମ୍ । ୨୬ ।

---

କହିଲେ । ୧୯ । "ଶିବଙ୍କ ବରରେ ଦର୍ପିତ ସୁକେଶ ରାକ୍ଷସକୁ ମୁଁ ଜାଣେ ଓ ତାହାର ପୁତ୍ରମାନଙ୍କୁ ମଧ୍ୟ ମୁଁ ଜାଣେ । ମାଲ୍ୟବାନ୍ ସେମାନଙ୍କ ମଧ୍ୟରେ ଶ୍ରେଷ୍ଠ ଅଟେ ।୨୦। ମର୍ଯ୍ୟାଦାଲଙ୍ଘନକାରୀ ସେହି ରାକ୍ଷସାଧମମାନଙ୍କୁ ମୁଁ ଅତିଶୟ କ୍ରୁଦ୍ଧ ହୋଇ ବିନାଶ କରିବି । ହେ ଦେବଗଣ ! ତୁମ୍ଭେମାନେ ନିଶ୍ଚିନ୍ତ ହୁଅ" । ୨୧ । ମହାପ୍ରତାପଶାଳୀ ବିଷ୍ଣୁ ଏପରି କହିବା ଉତ୍ତାରୁ ଦେବତାମାନେ ଅତିଶୟ ଆନନ୍ଦିତ ହେଲେ ଏବଂ ଭଗବାନ୍ ଜନାର୍ଦ୍ଦନଙ୍କ ପ୍ରଶଂସା କରି କରି ନିଜ ନିଜ ସ୍ଥାନକୁ ଚାଲିଗଲେ । ୨୨ । ଦେବତାମାନଙ୍କର ଏହି ଉଦ୍ଯୋଗର ସମ୍ବାଦ ପାଇ ମାଲ୍ୟବାନ୍ ନିଜର ଦୁଇ ବୀର ଭାଇଙ୍କୁ କହିଲା । ୨୩ । "ଦେବତା ଓ ଋଷିମାନେ ମିଳିତ ହୋଇ ଆମ୍ଭମାନଙ୍କୁ ବଧକରାଇବା କାମନାରେ ଶିବଙ୍କ ନିକଟକୁ ଯାଇ ତାଙ୍କୁ କହିଲେ । ୨୩ । "ହେ ଦେବ ! ସୁକେଶର ଭୟଙ୍କର ରୂପଧାରୀ ପୁତ୍ରମାନେ ବରଦାନ ପାଇ ଅତିଶୟ ଉଦ୍ଧତ ହୋଇ ଆମ୍ଭମାନଙ୍କୁ ପ୍ରତି ମୁହୂର୍ତ୍ତରେ ଉତ୍ପୀଡ଼ିତ କରୁଅଛନ୍ତି । ୨୫ । ହେ ପ୍ରଜାପତେ ! ସେହି ଦୁରାତ୍ମାମାନଙ୍କର ଉତ୍ପାତ ଓ ଭୟ ହେତୁରୁ ଆମ୍ଭେମାନେ ନିଜ ନିଜ ଘରେ ରହି ପାରୁନାହୁଁ । ୨୬ । ଅତଏବ ହେ ତ୍ରିଲୋଚନ ! ଆମ୍ଭମାନଙ୍କର

ତଦସ୍ମାକଂ ହିତାର୍ଥାୟ ଜହି ତାଂସ୍ତୁ ତ୍ରିଲୋଚନ ।
ରାକ୍ଷସାନ୍ ହୁଂକୃତେନୈବ ଦହ ପ୍ରଦହତାଂ ବର । ୨୭ ।
ଇତ୍ୟେବଂ ତ୍ରିଦଶୈରୁକ୍ତୋ ନିଶମ୍ୟାନ୍ଧକସୂଦନଃ ।
ଶିରଃ କରଂ ଚ ଧୁନ୍ୱାନ ଇଦଂ ବଚନମବ୍ରବୀତ୍ । ୨୮ ।
ଅବଧ୍ୟା ମମ ତେ ଦେବାଃ ସୁକେଶତନୟା ରଣେ ।
ମନ୍ତ୍ରଂ ତୁ ବଃ ପ୍ରଦାସ୍ୟାମି ଯସ୍ତାନ୍ ବୈ ନିହନିଷ୍ୟତି । ୨୯।
ଯୋଽସୌ ଚକ୍ରଗଦାପାଣିଃ ପୀତବାସା ଜନାର୍ଦନଃ ।
ହରିର୍ନାରାୟଣଃ ଶ୍ରୀମାନ୍ ଶରଣଂ ତଂ ପ୍ରପଦ୍ୟଥ । ୩୦ ।
ହରାଦବାପ୍ୟ ତେ ମନ୍ତ୍ରଂ କାମାରିମଭିବାଦ୍ୟ ଚ ।
ନାରାୟଣାଲୟଂ ପ୍ରାପ୍ୟ ତସ୍ମୈ ସର୍ବଂ ନ୍ୟବେଦୟନ୍ । ୩୧ ।
ତତୋ ନାରାୟଣେନୋକ୍ତା ଦେବା ଇନ୍ଦ୍ରପୁରୋଗମାଃ ।
ସୁରାରୀଂସ୍ତାନ୍ ହନିଷ୍ୟାମି ସୁରା ଭବତ ବିଜ୍ୱରାଃ । ୩୨ ।
ଦେବାନାଂ ଭୟଭୀତାନାଂ ହରିଣା ରାକ୍ଷସର୍ଷଭୌ ।
ପ୍ରତିଜ୍ଞାତୋ ବଧୋଽସ୍ମାକଂ ଚିନ୍ତ୍ୟତାଂ ଯଦତ୍ର କ୍ଷମମ୍ । ୩୩ ।

---

ଅତଏବ ନିମନ୍ତେ ଆପଣ ସେମାନଙ୍କୁ ବିନାଶ କରନ୍ତୁ । ହେ ଭସ୍ମକାରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ! ଆପଣ ହୁଙ୍କାର ଦ୍ୱାରା ସେମାନଙ୍କୁ ଭସ୍ମ କରିଦିଅନ୍ତୁ" ।୨୭। ଅନ୍ଧକାସୁରବଧକାରୀ ମହାଦେବ ଦେବତାମାନଙ୍କର ଏହି କଥା ଶୁଣି ନିଜ ମୁଣ୍ଡ ଓ ହାତ ହଲାଇ କହିଲେ ।୨୮। "ହେ ଦେବଗଣ ! ମୁଁ ଯୁଦ୍ଧରେ ସୁକେଶର ପୁତ୍ରମାନଙ୍କୁ ମାରିପାରିବି ନାହିଁ; କିନ୍ତୁ ଯେ ସେମାନଙ୍କୁ ମାରିପାରିବ ମୁଁ ସେ ବିଷୟ ତୁମ୍ଭମାନଙ୍କୁ ବତାଉଅଛି । ୨୯ । ଯେଉଁ ଚକ୍ରଗଦାଧାରୀ ପୀତବସ୍ତ୍ରପରିହିତ ନାରାୟଣ ଜନାର୍ଦ୍ଦନ ଭଗବାନ୍ ବିଷ୍ଣୁ ଅଛନ୍ତି, ତୁମ୍ଭେମାନେ ତାଙ୍କର ଶରଣାପନ୍ନ ହୁଅ" । ୩୦ । ମହାଦେବ ବତାଇଥିବା ଏହି ଉପାୟ ଶୁଣି ଏବଂ ତାଙ୍କୁ ପ୍ରଣାମକରି ସେହି ଦେବତାମାନେ ସମସ୍ତେ ବିଷ୍ଣୁଙ୍କର ଆବାସ ବୈକୁଣ୍ଠରେ ପହଞ୍ଚିଲେ ଏବଂ ନାରାୟଣଙ୍କୁ ସମସ୍ତ ବୃତ୍ତାନ୍ତ କହିଲେ । ୩୧ । ସେତେବେଳେ ନାରାୟଣ ଇନ୍ଦ୍ରପ୍ରମୁଖ ଦେବଗଣଙ୍କୁ କହିଲେ, "ମୁଁ ଦେବତାମାନଙ୍କର ଶତ୍ରୁ ସେହି ରାକ୍ଷସମାନଙ୍କୁ ନିଶ୍ଚୟ ମାରିବି । ତୁମ୍ଭେମାନେ ସମସ୍ତେ ନିଶ୍ଚିନ୍ତ ହୁଅ" । ୩୨ । ହେ ରାକ୍ଷସଶ୍ରେଷ୍ଠଦ୍ୱୟ ! ଭୟଭୀତ ଦେବତାମାନଙ୍କ ନିକଟରେ ଭଗବାନ୍ ନାରାୟଣ ଆମ୍ଭମାନଙ୍କୁ ମାରିଦେବାର ପ୍ରତିଜ୍ଞା କରିଅଛନ୍ତି । ବର୍ତ୍ତମାନ ଆମ୍ଭେମାନେ କଅଣ କରିପାରିବା ଚିନ୍ତାକର ।୩୩। ବିଷ୍ଣୁଙ୍କ ହାତରେ

ହିରଣ୍ୟକଶିପୋ ମୃତ୍ୟୁରନ୍ୟେଷାଂ ଚ ସୁରଦ୍ୱିଷାମ୍ ।
ଦୁଃଖଂ ନାରାୟଣଂ ଜେତୁଂ ଯୋ ନୋ ହନ୍ତୁମଭୀପ୍ସତି । ୩୪ ।
ତତଃ ସୁମାଲୀ ମାଲୀ ଚ ଶ୍ରୁତ୍ୱା ମାଲ୍ୟବତୋ ବଚଃ ।
ଊଚତୁର୍ଭ୍ରାତରଂ ଜ୍ୟେଷ୍ଠମଶ୍ୱିନାବିବ ବାସବମ୍ । ୩୫ ।
ସ୍ୱଧୀତଂ ଦତ୍ତମିଷ୍ଟଂ ଚୈଶ୍ୱର୍ଯ୍ୟଂ ପରିପାଳିତମ୍ ।
ଆୟୁର୍ନିରାମୟଂ ପ୍ରାପ୍ତଂ ସୁଧର୍ମଃ ସ୍ଥାପିତଃ ପଥି । ୩୬ ।
ଦେବସାଗରମକ୍ଷୋଭ୍ୟଂ ଶସ୍ତ୍ରୈଃ ସମବଗାହ୍ୟ ଚ ।
ଜିତା ଦ୍ୱିଷୋ ହ୍ୟପ୍ରତିମାସ୍ତନ୍ନୋ ମୃତ୍ୟୁକୃତଂ ଭୟମ୍ । ୩୭ ।
ନାରାୟଣଶ୍ଚ ରୁଦ୍ରଶ୍ଚ ଶକ୍ରଶ୍ଚାପି ଯମସ୍ତଥା ।
ଅସ୍ମାକଂ ପ୍ରମୁଖେ ସ୍ଥାତୁଂ ସର୍ବେ ବିଭ୍ୟତି ସର୍ବଦା । ୩୮ ।
ବିଷ୍ଣୋର୍ଦ୍ୱେଷସ୍ୟ ନାସ୍ତ୍ୟେବ କାରଣଂ ରାକ୍ଷସେଶ୍ୱର ।
ଦେବାନାମେବ ଦୋଷେଣ ବିଷ୍ଣୋଃ ପ୍ରଚଳିତଂ ମନଃ । ୩୯ ।
ତସ୍ମାଦଦ୍ୟ ସମୁଦ୍ୟୁକ୍ତାଃ ସର୍ବସୈନ୍ୟସମାବୃତାଃ ।
ଦେବାନେବ ଜିଘାଂସାମ ଯେଭ୍ୟୋ ଦୋଷଃ ସମୁତ୍ଥିତଃ ।୪୦।

---

ହିରଣ୍ୟକଶିପୁ ଏବଂ ଅନ୍ୟ ଦେବଶତ୍ରୁ ରାକ୍ଷସମାନଙ୍କର ମୃତ୍ୟୁ ହୋଇଅଛି । ଯେଉଁ ନାରାୟଣ ବିଷ୍ଣୁ ଆମ୍ଭମାନଙ୍କୁ ବଧ କରିବାକୁ ଇଚ୍ଛା କରୁଛନ୍ତି, ତାଙ୍କୁ ଜୟକରିବା କଷ୍ଟକର ଅଟେ" । ୩୪ । ମାଲ୍ୟବାନ୍‌ର ଏ କଥା ଶୁଣି ମାଳୀ ଓ ସୁମାଳୀ ଦୁହେଁ, ଅଶ୍ୱିନୀକୁମାରଦ୍ୱୟ ଇନ୍ଦ୍ରଙ୍କୁ କହିଲପରି ଜ୍ୟେଷ୍ଠ ଭ୍ରାତାକୁ କହିଲେ । ୩୫ । "ଆମ୍ଭେମାନେ ବିଧିପୂର୍ବକ ବେଦପାଠ କରିଥାଉଁ, ଦାନ ଦେଇଥାଉଁ, ଯଜ୍ଞ କରିଥାଉଁ ଓ ଐଶ୍ୱର୍ଯ୍ୟ ବୃଦ୍ଧିକରି ତାହା ଭୋଗ କରିଥାଉଁ । ଆମ୍ଭେମାନେ ଦୀର୍ଘ ଆୟୁ ଏବଂ ନୀରୋଗତା ଲାଭ କରିଥାଉଁ ଏବଂ ଉତ୍ତମ ଧର୍ମସ୍ଥାପନ କରିଥାଉଁ । ୩୬ । ଦେବରୂପୀ ଅକ୍ଷୋଭ୍ୟ ସମୁଦ୍ରକୁ ଆମ୍ଭେମାନେ କ୍ଷୁବ୍ଧ କରିଥାଉଁ ଏବଂ ବଡ଼ ବଡ଼ ଶତ୍ରୁଙ୍କୁ ପରାଜିତ କରିଥାଉଁ । ସୁତରାଂ ଆମ୍ଭମାନଙ୍କର ମୃତ୍ୟୁଭୟ ଆଦୌ ନାହିଁ । ୩୭। ନାରାୟଣ, ରୁଦ୍ର ଏବଂ ଯମ ମଧ୍ୟ ଆମ୍ଭମାନଙ୍କ ସମ୍ମୁଖରେ ତିଷ୍ଠିବା ପାଇଁ ସର୍ବଦା ଭୟ କରନ୍ତି । ୩୮ । ହେ ରାକ୍ଷସଶ୍ରେଷ୍ଠ ! ବିଷ୍ଣୁଙ୍କର ଆମ୍ଭମାନଙ୍କ ପ୍ରତି ଦ୍ୱେଷ କରିବାର ମଧ୍ୟ କୌଣସି କାରଣ ନାହିଁ । କେବଳ ଦେବତାମାନଙ୍କ ଦୋଷରେ ବିଷ୍ଣୁଙ୍କର ମନ ଆମ୍ଭମାନଙ୍କ ପ୍ରତି ବିଚଳିତ ହୋଇ ଯାଇଅଛି । ୩୯ । ଅତଏବ ଆମେ ସମସ୍ତେ ଅନ୍ୟାନ୍ୟ ରାକ୍ଷସମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ, ଯେଉଁ ଦେବତାମାନଙ୍କ ଦୋଷରୁ ଏ ଅବସ୍ଥା ଘଟିଛି ସେମାନଙ୍କୁ ଆଜ ମାରିପକାଇବା" ।୪୦ ।

ଏବଂ ସମନ୍ତ୍ର୍ୟ ବଳନଃ ସର୍ବେ ସର୍ବେ ସୈନ୍ୟସମାବୃତାଃ ।
ଉଦ୍ୟୋଗଂ ଘୋଷୟିତ୍ୱା ତୁ ସର୍ବେ ନୈରୃତପୁଙ୍ଗବାଃ । ୪୧ ।
ଯୁଦ୍ଧାୟ ନିର୍ୟୟୁଃ କ୍ରୁଦ୍ଧା ଜମ୍ଭବୃତ୍ରବଳା ଇବ ।
ଇତି ତେ ରାମ ସଂମନ୍ତ୍ର୍ୟ ସର୍ବୋଦ୍ୟୋଗେନ ରାକ୍ଷସାଃ । ୪୨ ।
ଯୁଦ୍ଧାୟ ନିର୍ୟୟୁଃ ସର୍ବେ ମହାକାୟା ମହାବଳାଃ ।
ସ୍ୟନ୍ଦନୈର୍ବାରଣୈଶ୍ଚୈବ ହୟୈଶ୍ଚ ଗିରିସନ୍ନିଭୈଃ । ୪୩ ।
ଖରୈର୍ଗୋଭିରଥୋଷ୍ଟ୍ରୈଶ୍ଚ ଶିଂଶୁମାରୈର୍ଭୁଜଙ୍ଗମୈଃ ।
ମକରୈଃ କଚ୍ଛପୈର୍ମୀନୈର୍ବିହଙ୍ଗୈର୍ଗରୁଡୋପମୈଃ । ୪୪ ।
ସିଂହୈର୍ବ୍ୟାଘ୍ରୈର୍ବରାହୈଶ୍ଚ ସୃମରୈଶ୍ଚମରୈରପି ।
ତ୍ୟକ୍ତ୍ୱା ଲଙ୍କାଂ ଗତାଃ ସର୍ବେ ରାକ୍ଷସା ବଳଗର୍ବିତାଃ । ୪୫ ।
ପ୍ରୟାତା ଦେବଲୋକାୟ ଯୋଦ୍ଧୁଂ ଦୈବତଶତ୍ରବଃ ।
ଲଙ୍କାବିପର୍ଯ୍ୟୟଂ ଦୃଷ୍ଟ୍ୱା ଯାନି ଲଙ୍କାଲୟାନ୍ୟଥ । ୪୬ ।
ଭୂତାନି ଭୟଦର୍ଶୀନି ବିମନସ୍କାନି ସର୍ବଶଃ ।
ରଥୋତ୍ତମୈରୁହ୍ୟମାନାଃ ଶତଶୋଽଥ ସହସ୍ରଶଃ । ୪୭ ।

---

ଏହି ପ୍ରକାର ମନ୍ତ୍ରଣା କରି ଏବଂ ଯୁଦ୍ଧ ଘୋଷଣାକରି ସେନା ସହିତ ବଳବାନ୍ ରାକ୍ଷସମାନେ ଦେବତାମାନଙ୍କ ଉଦ୍ଦେଶ୍ୟରେ ଯୁଦ୍ଧଯାତ୍ରା କଲେ । ହେ ରାମ ! ଏହି ପ୍ରକାରେ ସେହି ରାକ୍ଷସମାନେ ସମସ୍ତ ପ୍ରକାରେ ପ୍ରସ୍ତୁତ ହୋଇ କ୍ରୋଧରେ ଜମ୍ଭ, ବୃତ୍ରାସୁର ଆଦି ଯେପରି ଭାବରେ ଯୁଦ୍ଧକରିବାକୁ ବାହାରିଥିଲେ ସେହିପରି ବାହାରିଲେ । ସେହି ମହାକାୟ ଓ ମହାବଳବାନ୍ ରାକ୍ଷସମାନେ ରଥ, ହାତୀ ଓ ପର୍ବତ ପରି ଉଚ୍ଚ ଘୋଡ଼ାରେ ଚଢ଼ି ଯୁଦ୍ଧ କରିବାକୁ ବାହାରିଲେ । ବହୁ ରାକ୍ଷସ, ଗଧ, ବଳଦ, ଓଟ, ଶିଶୁମାର, ସର୍ପ, କୁମ୍ଭୀର, କଚ୍ଛପ, ମତ୍ସ୍ୟ ଏବଂ ଗରୁଡ ସଦୃଶ ବିଶାଳ ପକ୍ଷୀ, ସିଂହ, ବ୍ୟାଘ୍ର, ବରାହ, ସୃମର ଓ ଚମରମାନଙ୍କ ଉପରେ ଆରୋହଣ କରି, ସେହି ରାକ୍ଷସମାନେ ବଳଦୃପ୍ତ ହୋଇ ଲଙ୍କା ଛାଡ଼ି ବାହାରିଲେ । ଏହି ଦେବଶତ୍ରୁମାନେ ଯେତେବେଳେ ଯୁଦ୍ଧ କରିବାପାଇ ଦେବଲୋକକୁ ଯାତ୍ରାକଲେ, ସେତେବେଳେ ଲଙ୍କାର ଅନ୍ୟ ଅଧିବାସୀମାନେ ଲଙ୍କାରେ ବିଶେଷ ବିପର୍ଯ୍ୟୟ ଦେଖି ପାରିଲେ ।୪୬। ସେତେବେଳେ ଲଙ୍କାରେ ଯେତେ ଭୟଦର୍ଶୀ ପ୍ରାଣୀ ଥିଲେ, ସମସ୍ତେ ଦୁଃଖିତ ହୋଇପଡ଼ିଲେ । ଶ୍ରେଷ୍ଠ ରଥ ଉପରେ ଚଢ଼ି ଶହ ଶହ, ହଜାର ହଜାର

ପ୍ରୟାତା ରାକ୍ଷସାସ୍ତୂର୍ଣଂ ଦେବଲୋକଂ ପ୍ରଯତ୍ନତଃ ।
ରାକ୍ଷସାମେବ ମାର୍ଗେଣ ଦୈବତାନ୍ୟପଚକ୍ରମୁଃ । ୪୮ ।
ଭୂତାନ୍ ଭୟଦର୍ଶୀନି ବମନସ୍ଥାନି ସର୍ବଶଃ ।
ଭୌମାଶ୍ଚୈବାନ୍ତରୀକ୍ଷାଶ୍ଚ କାଳାଜ୍ଞପ୍ତା ଭୟାବହାଃ । ୪୯ ।
ଉତ୍ପାତା ରାକ୍ଷସେନ୍ଦ୍ରାଣାମଭାବାୟ ସମୁତ୍ଥିତାଃ ।
ଅସ୍ଥୀନି ମେଘା ବବୃଷୁରୁଷ୍ଣଂ ଶୋଣିତମେବ ଚ । ୫୦ ।
ବେଲାଂ ସମୁଦ୍ରାଶ୍ଚୋତ୍କ୍ରାନ୍ତାଶ୍ଚେଲୁଶ୍ଚାପ୍ୟଥ ଭୂଧରାଃ ।
ଅଟ୍ଟହାସାନ୍ ବିମୁଞ୍ଚନ୍ତୋ ଘନନାଦସମସ୍ୱନାଃ । ୫୧ ।
ବାଶ୍ୟନ୍ତ୍ୟଶ୍ଚ ଶିବାସ୍ତତ୍ର ଦାରୁଣଂ ଘୋରଦର୍ଶନାଃ ।
ସଂପତନ୍ତ୍ୟଥ ଭୂତାନି ଦୃଶ୍ୟନ୍ତେ ଚ ଯଥାକ୍ରମମ୍ । ୫୨ ।
ଗୃଧ୍ରଚକ୍ରଂ ମହଚ୍ଚାତ୍ର ଜ୍ୱଳନୋଦ୍ଗାରିଭିର୍ମୁଖୈଃ ।
ରାକ୍ଷସାନାମୁପରି ଖେ ଭ୍ରମତେଽଲାତଚକ୍ରବତ୍ । ୫୩ ।
କପୋତା ରକ୍ତପାଦାଶ୍ଚ ଶାରିକା ବଦ୍ରୁତା ଯଯୁଃ ।
କାକା ବାଶ୍ୟନ୍ତି ତତ୍ରୈବ ବିଡ଼ାଲା ବୈ ଦ୍ୱିପାଦକାଃ । ୫୪ ।

---

ରାକ୍ଷସ ନିଃଶେଷ ସାବଧାନତା ସହିତ ଦେବଲୋକକୁ ଚାଲିଗଲେ । ରାକ୍ଷସମାନେ ଯେଉଁ ରାସ୍ତାରେ ଆକ୍ରମଣ କରିବାକୁ ଗଲେ ଲଙ୍କାବାସୀ ଦେବତାମାନେ ମଧ୍ୟ ସେହି ପଥରେ ଗଲେ । ୪୧-୪୮ । ସେତେବେଳେ ପ୍ରାଣିଗଣ ପ୍ରମାଦଗଣିଲେ ଏବଂ ସେମାନଙ୍କ ମନ ଅସ୍ଥିର ହେଲା । ପୃଥିବୀ ଉପରେ ଓ ଆକାଶରେ ଭୟଙ୍କର ଉତ୍ପାତମାନ ଦେଖାଗଲା । ୪୯ । ରାକ୍ଷସଶ୍ରେଷ୍ଠମାନଙ୍କର ବିନାଶକାରୀ ନାନା ଉତ୍ପାତ ଦେଖାଗଲା । ମେଘମାନେ ଉଷ୍ଣ ରକ୍ତ ଓ ଅସ୍ଥି ବୃଷ୍ଟି କରିବାକୁ ଲାଗିଲେ । ୫୦ । ସମୁଦ୍ର ନିଜର ବେଳା ଲଙ୍ଘନ କଲେ, ପର୍ବତମାନେ କମ୍ପିବାକୁ ଲାଗିଲେ ଏବଂ ମେଘସଦୃଶ ଶବ୍ଦ କରି ଅଟ୍ଟହାସ କଲେ । ୫୧ । ଭୟଙ୍କର-ରୂପୀ ଶୃଗାଳମାନେ ସେଠାରେ ଘୋର ଶବ୍ଦରେ ଚିତ୍କାର କରିବାକୁ ଲାଗିଲେ । ଭୟାନକ ଜନ୍ତୁଗଣ ଇତସ୍ତତଃ ହେବାର ଦେଖାଗଲେ । ୫୨ । ରାକ୍ଷସମାନଙ୍କ ଉପରେ ଆକାଶରେ ବଡ଼ ବଡ଼ ଗୃଧ୍ରମାନେ ମୁହଁରୁ ଅଗ୍ନିଜ୍ୱାଳା ଉଦ୍‌ଗିରଣ କରି ଆକାଶରେ ଘୂରିଆଡ଼େ କୁମ୍ଭାରଚକ ପରି ବୁଲିବାକୁ ଲାଗିଲେ । ୫୩ । କପୋତ, ହଂସ, ଏବଂ ଶାରୀମାନେ ଭୟଭୀତ ହୋଇ ଏଣେ ତେଣେ ଉଡ଼ିଲେ, କାକମାନେ ଚିତ୍କାର କରିବାକୁ ଲାଗିଲେ ଏବଂ ଦୁଇପାଦିଆ ବିଡ଼ାଲମାନେ ସେଠାରେ

ଉତ୍ପାତାଂସ୍ତାନନାଦୃତ୍ୟ ରାକ୍ଷସା ବଳଗର୍ବିତାଃ ।
ଯାନ୍ତ୍ୟେବ ନ ନିବର୍ତ୍ତନ୍ତେ ମୃତ୍ୟୁପାଶାବପାଶିତାଃ । ୫୫ ।
ମାଲ୍ୟବାଂଶ୍ଚ ସୁମାଲୀ ଚ ମାଲୀ ଚ ସୁମହାବଳାଃ ।
ଆସନ୍ ପୁରଃସରାସ୍ତେଷାଂ କ୍ରତୂନାମିବ ପାବକାଃ । ୫୬ ।
ମାଲ୍ୟବନ୍ତଂ ଚ ତେ ସର୍ବେ ମାଲ୍ୟବନ୍ତମିବାଚଲମ୍ ।
ନିଶାଚରା ହ୍ୟାଶ୍ରୟନ୍ତି ଧାତାରମିବ ଦେବତାଃ । ୫୭ ।
ତଦ୍ ବଲଂ ରାକ୍ଷସେନ୍ଦ୍ରାଣାଂ ମହାଭ୍ରଘନନାଦିତମ୍ ।
ଜୟେପ୍ସୟା ଦେବଲୋକଂ ଯଯୌ ମାଲିବଶେ ସ୍ଥିତମ୍ । ୫୮ ।
ରାକ୍ଷସାନାଂ ସମୁଦ୍ୟୋଗଂ ତଂ ତୁ ନାରାୟଣଃ ପ୍ରଭୁଃ ।
ଦେବଦୂତାଦୁପଶ୍ରୁତ୍ୟ ଚକ୍ରେ ଯୁଦ୍ଧେ ତଦା ମନଃ । ୫୯ ।
ସ ସଜ୍ଜାୟୁଧତୂଣୀରୋ ବୈନତେୟୋପରି ସ୍ଥିତଃ ।
ଆସଜ୍ୟ କବଚଂ ଦିବ୍ୟଂ ସହସ୍ରାର୍କସମଦ୍ୟୁତି । ୬୦ ।
ଆବଧ୍ୟ ଶରସଂପୂର୍ଣ୍ଣେ ଇଷୁଧୀ ବିମଲେ ତଦା ।
ଶ୍ରୋଣିସୂତ୍ରଂ ଚ ଖଡ୍ଗଂ ଚ ବିମଲଂ କମଲେକ୍ଷଣଃ । ୬୧ ।

---

ଦେଖାଗଲେ । ୫୪ । ମାତ୍ର ଏହି ସବୁ ଉତ୍ପାତକୁ କୌଣସି ପ୍ରକାର ଖାତିର ନ କରି ସେହି ବଳଦର୍ପୀ ରାକ୍ଷସମାନେ ଆଗକୁ ବଢ଼ିବାକୁ ଲାଗିଲେ, ଫେରିଲେ ନାହିଁ । କାରଣ ସେମାନେ ସେତେବେଳକୁ ମୃତ୍ୟୁପାଶରେ ଆବଦ୍ଧ ହୋଇ ଥିଲେ । ୫୫ । ଯଜ୍ଞରେ ପାବକାଗ୍ନି ଅଗ୍ରସ୍ଥାନ ଅଧିକାର କଲାପରି ମହାବଳବାନ୍ ମାଲ୍ୟବାନ୍, ସୁମାଲୀ ଓ ମାଲୀ ସେହି ରାକ୍ଷସମାନଙ୍କର ଅଗ୍ରଗାମୀ ହୋଇଥିଲେ ।୫୬। ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କୁ ଦେବତାମାନେ ଆଶ୍ରୟ କଲାପରି, ସେହି ସବୁ ରାକ୍ଷସ ମାଲ୍ୟବନ୍ତ ପର୍ବତ ସଦୃଶ ସେହି ମାଲ୍ୟବନ୍ତ ରାକ୍ଷସକୁ ଆଶ୍ରୟ କରିଥିଲେ । ୫୭ । ସେହି ରାକ୍ଷସ ବୀରମାନଙ୍କର ସେନା ମହାମେଘସଦୃଶ ଗର୍ଜନ କରି ମାଲୀ ରାକ୍ଷସର ଅଧୀନରେ ଜୟ ଅଭିଳାଷରେ ଦେବଲୋକକୁ ଗଲେ । ୫୮ । ଦେବଦୂତଙ୍କ ମୁଖରୁ ରାକ୍ଷସମାନଙ୍କର ଏହି ଯୁଦ୍ଧ ଉଦ୍ୟମର ବୃତ୍ତାନ୍ତ ଶୁଣି ଭଗବାନ୍ ନାରାୟଣ ମଧ୍ୟ ସେମାନଙ୍କ ସଙ୍ଗେ ଯୁଦ୍ଧ କରିବାକୁ ସଂକଳ୍ପ କଲେ । ୫୯ । ସବୁ ଆୟୁଧରେ ସୁସଜ୍ଜିତ ହୋଇ, ତୂଣୀର ଧାରଣକରି ସେ ଗରୁଡ଼ ଉପରେ ବସିଲେ । ସହସ୍ର ସୂର୍ଯ୍ୟ ସଦୃଶ ଦୀପ୍ତିଯୁକ୍ତ ଦିବ୍ୟକବଚ ଧାରଣ କରି, ଶରପୂର୍ଣ୍ଣ ନିର୍ମଳ ତୂଣୀର କାନ୍ଧରେ ବାନ୍ଧି ଓ କଟିସୂତ୍ର ଧାରଣ କରି କମଳଲୋଚନ ନାରାୟଣ

ଶଙ୍ଖଚକ୍ରଗଦାଶାର୍ଙ୍ଗଖଡ୍ଗାଖ୍ୟପ୍ରବରାୟୁଧାନ୍ ।
ସୁପର୍ଣଂ ଗିରିସଂକାଶଂ ବୈନତେୟମଥାସ୍ଥିତଃ । ୬୨ ।
ରାକ୍ଷସାନାମଭାବାୟ ଯଯୌ ତୂର୍ଣତରଂ ପ୍ରଭୁଃ ।
ସୁପର୍ଣପୃଷ୍ଠେ ସ ବଭୌ ଶ୍ୟାମଃ ପୀତାମ୍ବରୋ ହରିଃ ।
କାଞ୍ଚନସ୍ୟ ଗିରେଃ ଶୃଙ୍ଗେ ସତଡ଼ିତ୍ତୋୟଦୋ ଯଥା । ୬୩ ।

ସ ସିଦ୍ଧଦେବର୍ଷିମହୋରଗେନ୍ଦ୍ରୈ-
ର୍ଗନ୍ଧର୍ବଯକ୍ଷୈରୁପଗୀୟମାନଃ ।
ସମାସସାଦାସୁରସୈନ୍ୟଶତ୍ରୁଂ-
ଶ୍ଚକ୍ରାସିଶାର୍ଙ୍ଗାୟୁଧଶଙ୍ଖପାଣିଃ । ୬୪ ।
ସୁପର୍ଣପକ୍ଷାନିଲନୁନ୍ନପକ୍ଷମ୍
ଭ୍ରମତ୍ପତାକଂ ପ୍ରବିକୀର୍ଣଶସ୍ତ୍ରମ୍ ।
ଚଚାଲ ତଦ୍ରାକ୍ଷସରାଜସୈନ୍ୟମ୍
ଚଲୋପଲଂ ନୀଲ ଇବାଚଲେନ୍ଦ୍ରଃ । ୬୫ ।

---

ଏକ ଦୀପ୍ତିମାନ୍ ଖଡ୍ଗ ଧରିଲେ ।୬୦-୬୧। ଏହା ଛଡ଼ା ସେ ଶଙ୍ଖ,ଚକ୍ର,ଗଦା,ଶାରଙ୍ଗ ଧନୁ ଓ ଖଡ୍ଗ ଆଦି ଶ୍ରେଷ୍ଠ ଆୟୁଧମାନ ମଧ୍ୟ ଧାରଣ କରିଥିଲେ । ପ୍ରଭୁ ବିଷ୍ଣୁ ପର୍ବତାକାର ଗରୁଡ଼ ଉପରେ ଆରୋହଣ କରି ରାକ୍ଷସମାନଙ୍କୁ ବିନାଶ କରିବା ନିମନ୍ତେ ଅତି ସତ୍ୱର ବାହାରିଗଲେ । ଶ୍ୟାମଳବର୍ଣ୍ଣ ପୀତାମ୍ବର ହରି ଗରୁଡ଼ପୃଷ୍ଠରେ ଆରୋହଣ କରି ସୁମେରୁ ପର୍ବତସ୍ଥିତ ବିଦ୍ୟୁତ୍‌ଯୁକ୍ତ ମେଘ ସଦୃଶ ଶୋଭା ପାଇଲେ । ୬୨-୬୩ । ଅସୁରସେନାମାନଙ୍କର ଶତ୍ରୁ ଭଗବାନ୍ ବିଷ୍ଣୁ ଚକ୍ର, ଖଡ୍ଗ, ଶାରଙ୍ଗ ଧନୁ ଓ ଶଙ୍ଖ ଧାରଣ କରି ଶୀଘ୍ର ଯାଇ ଯୁଦ୍ଧକ୍ଷେତ୍ରରେ ଉପସ୍ଥିତ ହେଲେ । ସେତେବେଳେ ସିଦ୍ଧ, ଦେବର୍ଷି, ମହୋରଗ, ଗନ୍ଧର୍ବ ତଥା ଯକ୍ଷମାନେ ତାଙ୍କର ସ୍ତୁତି ଗାନକରିବାକୁ ଲାଗିଥିଲେ । ୬୪ । ଗରୁଡ଼ଙ୍କ ପକ୍ଷର ପବନଦ୍ୱାରା ରାକ୍ଷସସେନାର ପତାକାମାନ ଛିଣ୍ଡି ଉଡ଼ିଗଲା । ସୈନିକ-ମାନଙ୍କ ହାତରୁ ହତିଆର ଖସି ପଡ଼ିଲା ଏବଂ ନୀଳ ପର୍ବତର ଶିଖର ଯେପରି କମ୍ପିଉଠେ ସେହିପରି ରାକ୍ଷସରାଜ ସେନାର ରାକ୍ଷସ ବୀରମାନେ କମ୍ପି

ତତଃ ଶରୈଃ ଶୋଣିତମାଂସରୂଷିତୈ-
ର୍ଯୁଗାନ୍ତବୈଶ୍ୱାନରତୁଲ୍ୟବଗ୍ରହୈଃ ।
ନିଶାଚରାଃ ସଂପରିବାର୍ଯ ମାଧବମ୍
ବରାୟୁଧୈର୍ନିବିଭିଦୁଃ ସହସ୍ରଶଃ । ୨୬ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଯୁଦ୍ଧକାଣ୍ଡେ ବିଷ୍ଣୁମାଲ୍ୟବଦାଦିଯୁଦ୍ଧଂ ନାମ ଷଷ୍ଠଃ ସର୍ଗଃ ।

---

# ସପ୍ତମଃ ସର୍ଗଃ

## ମାଲିବଧଃ

ନାରାୟଣଗିରିଂ ତେ ତୁ ଗର୍ଜନ୍ତୋ ରାକ୍ଷସାମ୍ବୁଦାଃ ।
ଅବର୍ଷୁଃ ଶରବର୍ଷେଣ ବର୍ଷେଣେବାଦ୍ରିମମ୍ବୁଦାଃ । ୧ ।
ଶ୍ୟାମାବଦାତସ୍ତୈର୍ବିଷ୍ଣୁର୍ନୀଲୈର୍ନକ୍ତଂଚରୋତ୍ତମୈଃ ।
ବୃତୋଽଞ୍ଜନଗିରୀବାସୀଦ୍ ବର୍ଷମାଣୈଃ ପୟୋଧରୈଃ । ୨ ।

---

ଉଠିଲେ । ୨୫ । ତଦନନ୍ତର ସହସ୍ର ସହସ୍ର ରାକ୍ଷସ ମାଧବଙ୍କୁ ଘେରିଆଣ୍ଡୁ ଘେରିଯାଇ ରୁଧିର ଓ ମାଂସରେ ରଞ୍ଜିତ ହୋଇଥିବା, ପ୍ରଳୟକାଳୀନ ଅଗ୍ନି ସଦୃଶ ଦୀପ୍ତିମାନ୍, ତୀକ୍ଷ୍ଣ ଏବଂ ଶ୍ରେଷ୍ଠ ଆୟୁଧମାନ ତାଙ୍କୁ ବିନ୍ଧିବାକୁ ଲାଗିଲେ । ୨୬ ।

---

# ୭ମ ସର୍ଗ

## ( ମାଲିବଧ )

ଗର୍ଜନକାରୀ ସେହି ରାକ୍ଷସରୂପୀ ମେଘମାନେ ପର୍ବତରୂପୀ ନାରାୟଣଙ୍କ ଉପରେ, ପର୍ବତ ଉପରେ ମେଘ ଜଳ ବର୍ଷା କଲାପରି ଅସ୍ତ୍ରରୂପୀ ଜଳ ବୃଷ୍ଟି କରିବାକୁ ଲାଗିଲେ । ୧ । ଶ୍ୟାମ ଏବଂ ନୀଳବର୍ଣ୍ଣ ଶ୍ରୀ ନାରାୟଣ ସେହି ନୀଳରଙ୍ଗର କାନ୍ତିବିଶିଷ୍ଟ ରାକ୍ଷସମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ବର୍ଷଣକାରୀ ମେଘଦ୍ୱାରା ଅନ୍ୟାନ୍ୟ ପର୍ବତ ଆଚ୍ଛାଦିତ ହୋଇପଡ଼ିଲାପରି ଦେଖାଗଲେ । ୨ ।

ଶଲଭା ଇବ କେଦାରଂ ମଶକା ଇବ ପାବକମ୍ ।
ଯଥାମୃତ୍ତଘଟଂ ଦଂଶା ମକରା ଇବ ଚାର୍ଣ୍ଣବମ୍ । ୩ ।
ତଥା ରକ୍ଷୋଧନୁର୍ମୁକ୍ତା ବଜ୍ରାନିଲମନୋଜବାଃ ।
ହରିଂ ବିଶନ୍ତି ସ୍ମ ଶରା ଲୋକା ଇବ ବିପର୍ଯ୍ୟୟେ । ୪ ।
ସ୍ୟନ୍ଦନୈଃ ସ୍ୟନ୍ଦନଗତା ଗଜୈଶ୍ଚ ଗଜପୃଷ୍ଠଗାଃ ।
ଅଶ୍ୱାରୋହାସ୍ତଥାଶ୍ୱୈଶ୍ଚ ପାଦାତାଶ୍ଚାମ୍ବରେ ସ୍ଥିତାଃ । ୫ ।
ରାକ୍ଷସେନ୍ଦ୍ରା ଗିରିନିଭାଃ ଶରୈଃ ଶକ୍ତ୍ୟୃଷ୍ଟିତୋମରୈଃ ।
ନିରୁଚ୍ଛ୍ୱାସଂ ହରିଂ ଚକ୍ରୁଃ ପ୍ରାଣାୟାମା ଇବ ଦ୍ୱିଜମ୍ । ୬ ।
ନିଶାଚରୈସ୍ତାଡ଼୍ୟମାନୋ ମୀନୈରିବ ମହୋଦଧିଃ ।
ଶାର୍ଙ୍ଗମାୟମ୍ୟ ଦୁର୍ଧର୍ଷୋ ରାକ୍ଷସେଭ୍ୟୋଽସୃଜଚ୍ଛରାନ୍ । ୭ ।
ଶରୈଃ ପୂର୍ଣ୍ଣାୟତୋତ୍ସୃଷ୍ଟୈର୍ବଜ୍ରକଳ୍ପୈର୍ମନୋଜବୈଃ ।
ଚିଚ୍ଛେଦ ବିଷ୍ଣୁର୍ନିଶିତୈଃ ଶତଶୋଽଥ ସହସ୍ରଶଃ । ୮ ।

---

ଯେପରି ଶସ୍ୟକ୍ଷେତ୍ରରେ ଝିଣ୍ଟିକାମାନେ, ଅଗ୍ନି ଉପରେ ମଶାମାନେ, ମଧୁଘଟ ଉପରେ ଡାଆଁଶମାନେ ଏବଂ ସମୁଦ୍ରରେ ମଗରମାନେ ଆସି ପଡ଼ନ୍ତି, ସେହିପରି ରାକ୍ଷସମାନଙ୍କ ଦ୍ୱାରା ନିକ୍ଷିପ୍ତ ବାୟୁସଦୃଶ ବେଗବାନ୍ ଓ ବଜ୍ରସଦୃଶ କଠୋର ବାଣମାନ ପ୍ରଳୟକାଳରେ ଜୀବମାନେ ଭଗବାନଙ୍କ ଶରୀରରେ ବିଲୀନ ହୋଇଗଲା ପରି ନାରାୟଣଙ୍କ ଶରୀରରେ ପ୍ରବେଶ କରୁଥିଲେ । ୩-୪ । ରାକ୍ଷସସେନାର ପର୍ବତାକାର ଯୋଦ୍ଧାମାନେ ରଥ ଉପରେ ଚଢ଼ି, ହାତୀ ଓ ଘୋଡ଼ାଙ୍କ ଉପରେ ଚଢ଼ି, ପାଦରେ ଭୂମି ଉପରେ ତଥା ଆକାଶରେ ରହି ବାଣ, ଶକ୍ତି, ଋଷ୍ଟି ଓ ତୋମର ବର୍ଷା କରି ନାରାୟଣଙ୍କୁ ଆଚ୍ଛାଦିତ କରିପକାଇଲେ । ଶସ୍ତ୍ରଦ୍ୱାରା ରାକ୍ଷସମାନେ ବିଷ୍ଣୁଙ୍କୁ ଏପରି ଆଚ୍ଛାଦିତ କରିଦେଲେ ଯେ ପ୍ରାଣାୟାମ କରିବା ସମୟରେ ବ୍ରାହ୍ମଣମାନେ ଶ୍ୱାସହୀନ ହେବା ପରି ସେ ଶ୍ୱାସରୁଦ୍ଧ ହୋଇପଡ଼ିଲେ । ୫-୬ । ମତ୍ସ୍ୟମାନଙ୍କର ବେଗକୁ ସମୁଦ୍ର ସହ୍ୟ କଲାପରି, ନାରାୟଣ ନିଶାଚର ରାକ୍ଷସମାନଙ୍କର ପ୍ରହାରକୁ ସହ୍ୟକରୁଥିଲେ । ତଦନନ୍ତର ଭଗବାନ୍ ବିଷ୍ଣୁ ଶାରଙ୍ଗ ଧନୁ ହାତରେ ଧରି ରାକ୍ଷସମାନଙ୍କ ଉପରକୁ ଶର ନିକ୍ଷେପ କରିବାକୁ ଆରମ୍ଭ କଲେ । ୭ । ବଜ୍ର ସଦୃଶ କଠୋର ଏବଂ ମନ ସଦୃଶ ବେଗବାନ୍ ତୀକ୍ଷ୍ଣ ଶର ଦ୍ୱାରା ଭଗବାନ୍ ବିଷ୍ଣୁ ଶତ ଶତ, ସହସ୍ର ସହସ୍ର ରାକ୍ଷସଙ୍କୁ କାଟିପକାଇଲେ । ୮ । ପବନ ଯେପରି ମେଘ ଅନ୍ଧାଡ଼-

ବିଦ୍ରାବ୍ୟ ଶରବର୍ଷେଣ ବର୍ଷଂ ବାୟୁରିବୋତ୍ଥିତମ୍ ।
ପାଞ୍ଚଜନ୍ୟଂ ମହାଶଙ୍ଖଂ ପ୍ରଦଧ୍ମୌ ପୁରୁଷୋତ୍ତମଃ । ୯ ।
ସୋଽମ୍ବୁଜୋ ହରିଣାଧ୍ମାତଃ ସର୍ବପ୍ରାଣେନ ଶଙ୍ଖରାଟ୍ ।
ରରାସ ଭୀମନିର୍ହ୍ରାଦସ୍ତ୍ରୈଲୋକ୍ୟଂ ବ୍ୟଥୟନ୍ନିବ । ୧୦ ।
ଶଙ୍ଖରାଜରବଃ ସୋଽଥ ତ୍ରାସୟାମାସ ରାକ୍ଷସାନ୍ ।
ମୃଗରାଜ ଇବାରଣ୍ୟେ ସମଦାନିବ କୁଞ୍ଜରାନ୍ । ୧୧ ।
ନ ଶେକୁରଶ୍ୱାଃ ସଂସ୍ଥାତୁଂ ବିମଦାଃ କୁଞ୍ଜରାଭବନ୍ ।
ସ୍ୟନ୍ଦନେଭ୍ୟଶ୍ଚ୍ୟୁତା ବୀରାଃ ଶଙ୍ଖରାବିତଦୁର୍ବଲାଃ । ୧୨ ।
ଶାର୍ଙ୍ଗଚାପବିନିର୍ମୁକ୍ତା ବଜ୍ରତୁଲ୍ୟାନନାଃ ଶରାଃ ।
ବିଦାର୍ଯ୍ୟ ତାନି ରକ୍ଷାଂସି ସୁପୁଙ୍ଖା ବିବିଶୁଃ କ୍ଷିତିମ୍ । ୧୩ ।
ଭିଦ୍ୟମାନାଃ ଶରୈଃ ସଂଖ୍ୟେ ନାରାୟଣକରଚ୍ୟୁତୈଃ ।
ନିପେତୂ ରାକ୍ଷସା ଭୂମୌ ଶୈଳା ବଜ୍ରହତା ଇବ । ୧୪ ।
ବ୍ରଣାନି ପରଗାତ୍ରେଭ୍ୟଃ ବିଷ୍ଣୁଚକ୍ରକୃତାନି ବୈ ।
ଅସୃକ୍ କ୍ଷରନ୍ତି ଧାରାଭିଃ ସ୍ୱର୍ଣଧାରା ଇବାଚଲାଃ । ୧୫ ।

---

ହଏ, ସେହିପରି ଭଗବାନ୍ ପୁରୁଷୋତ୍ତମ ଶରପ୍ରହାର ଦ୍ୱାରା ରାକ୍ଷସମାନଙ୍କୁ ଘଉଡ଼ାଇ ଦେଇ ନିଜର ମହାଶଙ୍ଖ ପାଞ୍ଚଜନ୍ୟ ବଜାଇଲେ । ୯ । ଜଳରୁ ଜାତ ସେହି ଉତ୍ତମ ଶଙ୍ଖକୁ ଭଗବାନ୍ ବିଷ୍ଣୁ ଯେତେବେଳେ ଖୁବ୍ ଯୋରରେ ବଜାଇଲେ ସେତେବେଳେ ସେହି ଶଙ୍ଖରାଜର ନାଦ ତିନି ଲୋକରେ ବ୍ୟାପିଗଲା ଏବଂ ତିନି ଲୋକବାସୀଙ୍କୁ ବ୍ୟଥିତ କରିପକାଇଲା । ୧୦ । ଅରଣ୍ୟରେ ସିଂହନାଦରେ ମଦୋନ୍ମତ୍ତ ହସ୍ତୀମାନେ ଭୟଭୀତ ହୋଇଗଲାପରି, ସେହି ମହାଶଙ୍ଖର ନାଦ ଶୁଣି ରାକ୍ଷସମାନେ ଭୟଭୀତ ହୋଇଗଲେ । ୧୧ । ସେତେବେଳେ ଅଶ୍ୱମାନେ ସେଠାରେ ତିଷ୍ଠିପାରିଲେ ନାହିଁ । ହାତୀମାନଙ୍କର ମଦମତ୍ତ ଭାବ ଦୂର ହୋଇଗଲା । ସେହି ଶଙ୍ଖଧ୍ୱନି ଶୁଣି ବୀରମାନେ ରଥରୁ ତଳକୁ ଗଡ଼ିପଡ଼ିଲେ । ୧୨ । ଶାରଙ୍ଗ ଧନୁରୁ ନିକ୍ଷିପ୍ତ ବଜ୍ରତୁଲ୍ୟ ମୁଖ ଓ ବଜ୍ରତୁଲ୍ୟ ପୁଙ୍ଖବିଶିଷ୍ଟ ଶରମାନ ରାକ୍ଷସମାନଙ୍କର ଶରୀରକୁ ଭେଦକରି ପୃଥିବୀତଳକୁ ପଶିଗଲେ । ୧୩ । ଏହିପରି ସେହି ଯୁଦ୍ଧରେ ନାରାୟଣଙ୍କର ହସ୍ତଚ୍ୟୁତ ଶର ଦ୍ୱାରା ଛିନ୍ନ ଭିନ୍ନ ହୋଇ ରାକ୍ଷସମାନେ ବଜ୍ରାହତ ଶୈଳପରି ଭୂମି ଉପରେ ପଡ଼ିଗଲେ । ୧୪ । ବିଷ୍ଣୁଙ୍କ ଚକ୍ରପ୍ରହାର ଦ୍ୱାରା ରାକ୍ଷସମାନଙ୍କର ଶରୀର କ୍ଷତ ହୋଇ ସେଥିରୁ ଗଳୁଥିବା ରକ୍ତଧାରା ପର୍ବତରୁ ନିର୍ଗତ ସ୍ୱର୍ଣ୍ଣଧାରାପରି ଦେଖାଗଲା । ୧୫ । ଶଙ୍ଖରାଜର ଧ୍ୱନି, ଶାର୍ଙ୍ଗ

ଶଙ୍ଖଶଜକରବଶ୍ଚାପି ଶାର୍ଙ୍ଗସ୍ୟପରବସ୍ତଥା ।
ରାକ୍ଷସାନାଂ ରବାଂଶ୍ଚାପି ଗ୍ରସତେ ବୈଷ୍ଣବୋ ରବଃ । ୧୬ ।
ତେଷାଂ ଶିରୋଧରାନ୍ ଧୃତାନ୍ ଶରଧ୍ୱଜଧନୂଂଷି ଚ ।
ରଥାନ୍ ପତାକାସ୍ତୂଣୀରାଂଶ୍ଚିଚ୍ଛେଦ ସ ହରିଃ ଶରୈଃ । ୧୭ ।
ସୂର୍ଯ୍ୟାଦିବ କରା ଘୋରା ଊର୍ମୟଃ ସାଗରାଦିବ ।
ପର୍ବତାଦିବ ନାଗେନ୍ଦ୍ରା ଧାରୌଘା ଇବ ଚାମ୍ବୁଦାତ୍ । ୧୮ ।
ତଥା ଶାର୍ଙ୍ଗବିନିର୍ମୁକ୍ତା ଶରା ନାରାୟଣେରିତାଃ ।
ନିର୍ଧାବନ୍ତୀଷବସ୍ତୂର୍ଣଂ ଶତଶୋଽଥ ସହସ୍ରଶଃ । ୧୯ ।
ଶରଭେଣ ଯଥା ସିଂହାଃ ସିଂହେନ ଦ୍ୱିରଦା ଯଥା ।
ଦ୍ୱିରଦେନ ଯଥା ବ୍ୟାଘ୍ରା ବ୍ୟାଘ୍ରେଣ ଦ୍ୱୀପିନୋ ଯଥା । ୨୦ ।
ଦ୍ୱୀପିନେବ ଯଥା ଶ୍ୱାନଃ ଶୁନା ମାର୍ଜାରକା ଯଥା ।
ମାର୍ଜାରେଣ ଯଥା ସର୍ପାଃ ସର୍ପେଣ ଚ ଯଥାଖବଃ । ୨୧ ।
ତଥା ତେ ରାକ୍ଷସାଃ ସର୍ବେ ବିଷ୍ଣୁନା ପ୍ରଭବିଷ୍ଣୁନା ।
ଦ୍ରବନ୍ତି ଦ୍ରାବିତାଶ୍ଚାନ୍ୟେ ଶାୟିତାଶ୍ଚ ମହୀତଲେ । ୨୨ ।
ରାକ୍ଷସାନାଂ ସହସ୍ରାଣି ନିହତ୍ୟ ମଧୁସୂଦନଃ ।
ବାରିଜଂ ପୂରୟାମାସ ତୋୟଦଂ ସୁରରାଡ଼ିବ । ୨୩ ।

---

ଧ୍ୱନି ତଥା ବିଷ୍ଣୁଙ୍କର ସିଂହନାଦ ରାକ୍ଷସମାନଙ୍କର ଗର୍ଜନକୁ ଗ୍ରାସକରିଦେଲା । ୧୬। ଭଗବାନ୍ ହରି ରାକ୍ଷସମାନଙ୍କର କମ୍ପିତ ଶିର, ଧ୍ୱଜ, ଧନୁ, ରଥ ଓ ପତାକା-ମାନଙ୍କୁ ଏବଂ ଶରତୂଣୀମାନଙ୍କୁ ନିଜର ତୀକ୍ଷ୍ଣ ଶର ଦ୍ୱାରା କାଟି ପକାଉଥିଲେ ।୧୭ । ଯେପରି ସୂର୍ଯ୍ୟଙ୍କ ରଶ୍ମିରୁ କିରଣ ଏବଂ ସମୁଦ୍ର ଜଳରୁ ତରଙ୍ଗ, ପର୍ବତରୁ ହସ୍ତିଶ୍ରେଣୀ ଓ ମେଘରୁ ଜଳଧାର ବାହାରେ, ସେହିପରି ଭଗବାନ୍ ବିଷ୍ଣୁଙ୍କର ଶାର୍ଙ୍ଗ ଧନୁରୁ ଶତଶତ, ସହସ୍ର ସହସ୍ର ବାଣ ଅତି ବେଗରେ ନିର୍ଗତ ହେଉଥିଲା । ୧୮-୧୯ । ଯେପରି ଶରଭଦ୍ୱାରା ସିଂହ, ସିଂହ ଦ୍ୱାରା ହାତୀ, ହାତୀ ଦ୍ୱାରା ବ୍ୟାଘ୍ର, ବ୍ୟାଘ୍ର ଦ୍ୱାରା ଦ୍ୱୀପୀ, ଦ୍ୱୀପୀ ଦ୍ୱାରା କୁକୁର, କୁକୁର ଦ୍ୱାରା ବିରାଡ଼ି ବିରାଡ଼ି ଦ୍ୱାରା ସର୍ପ ଏବଂ ସର୍ପ ଦ୍ୱାରା ମୂଷିକମାନେ ବିତାଡ଼ିତ ହୋଇ ପଳାଇଯାଆନ୍ତି,ସେହିପରି ଭଗବାନ୍ ବିଷ୍ଣୁଙ୍କ ଦ୍ୱାରା ଉପଦ୍ରୁତ ହୋଇ ସେହି ରାକ୍ଷସମାନେ ପଳାଇଗଲେ ଏବଂ ସେମାନଙ୍କ ମଧ୍ୟରୁ ଅନେକେ ନିର୍ଜୀବ ହୋଇ ଭୂମି ଉପରେ ଶୋଇଗଲେ । ୨୦-୨୨ । ସୁରରାଜ ଇନ୍ଦ୍ର ଗର୍ଜନ ଶବ୍ଦଦ୍ୱାରା ମେଘକୁ ପୂର୍ଣ୍ଣ କଲାପରି, ଭଗବାନ୍ ମଧୁସୂଦନ ସହସ୍ର ସହସ୍ର ରାକ୍ଷସଙ୍କୁ ମାରି ନିଜର ଶଙ୍ଖକୁ ବାୟୁପୂର୍ଣ୍ଣ କରି ବଜାଇଲେ । ୨୩ ।

ନାରାୟଣଶରଗ୍ରସ୍ତଂ ଶଙ୍ଖନାଦସୁବିହ୍ୱଳମ୍ ।
ଯଯୌ ଲଙ୍କାମଭିମୁଖଂ ପ୍ରଭଗ୍ନଂ ରାକ୍ଷସଂ ବଲମ୍ ।୨୪ ।
ପ୍ରଭଗ୍ନେ ରାକ୍ଷସବଲେ ନାରାୟଣଶରାହତେ ।
ସୁମାଲୀ ଶରବର୍ଷେଣ ନିବବାର ରଣେ ହରିମ୍ । ୨୫ ।
ସ ତୁ ତଂ ଛାଦୟାମାସ ନୀହାର ଇବ ଭାସ୍କରମ୍ ।
ରାକ୍ଷସାଃ ସତ୍ତ୍ୱସମ୍ପନ୍ନାଃ ପୁନର୍ଧୈର୍ଯ୍ୟଂ ସମାଦଧୁଃ । ୨୬ ।
ଅଥ ସୋଽଭ୍ୟପତଦ୍ରୋଷାଦ୍ରାକ୍ଷସୋ ବଲଦର୍ପିତଃ ।
ମହାନାଦଂ ପ୍ରକୁର୍ବାଣୋ ରାକ୍ଷସାନ୍ ଜୀବୟନ୍ନିବ । ୨୭ ।
ଉତ୍କ୍ଷିପ୍ୟ ଲମ୍ବାଭରଣଂ ଧୂନ୍ୱନ୍ କରମିବ ଦ୍ୱିପଃ ।
ରରାସ ରାକ୍ଷସୋ ହର୍ଷାତ୍ ସତଡ଼ିତ୍ତୋୟଦୋ ଯଥା । ୨୮ ।
ସୁମାଲେର୍ନର୍ଦତସ୍ତସ୍ୟ ଶିରୋ ଜ୍ୱଲିତକୁଣ୍ଡଲମ୍ ।
ଚିଚ୍ଛେଦ ଯନ୍ତୁରଶ୍ୱାଶ୍ଚ ଭ୍ରାନ୍ତାସ୍ତସ୍ୟ ତୁ ରକ୍ଷସଃ । ୨୯ ।
ତୈରଶ୍ୱୈର୍ଭ୍ରାମ୍ୟତେ ଭ୍ରାନ୍ତୈଃ ସୁମାଲୀ ରାକ୍ଷସେଶ୍ୱରଃ ।
ଇନ୍ଦ୍ରିୟାଶ୍ୱୈଃ ପରିଭ୍ରାନ୍ତୈର୍ଧୃତିହୀନୋ ଯଥା ନରଃ । ୩୦ ।

---

ବିଷ୍ଣୁଙ୍କର ଶରଘାତରେ ଉପଘାତ ହୋଇ ତଥା ଶଙ୍ଖଧ୍ୱନିରେ ବ୍ୟତିବ୍ୟସ୍ତ ହୋଇ ସେହି ରାକ୍ଷସସେନା ଲଙ୍କା ଆଡ଼କୁ ମୁହଁକରି ଇତସ୍ତତଃ ଛିନ୍ନଭିନ୍ନ ହୋଇ ପଳାୟନ କଲେ । ୨୪ । ନିଜର ସେନାକୁ ଛିନ୍ନ ଭିନ୍ନ ହୋଇ ପଳାଇବାର ଦେଖି, ସୁମାଲୀ ଶର ବର୍ଷାକରି ଭଗବାନ୍ ବିଷ୍ଣୁଙ୍କୁ ଯୁଦ୍ଧରେ ପ୍ରତିରୋଧ କଲା । ୨୫ । ସେ ବାଣ ବର୍ଷା କରି କୁହୁଡ଼ି ସୂର୍ଯ୍ୟଙ୍କୁ ଆଚ୍ଛାଦିତ କରିଦେଲପରି ଭଗବାନ୍ ବିଷ୍ଣୁଙ୍କୁ ଆଚ୍ଛାଦିତ କରିଦେଲା । ସୁମାଲୀର ଏ ପ୍ରକାର ପରାକ୍ରମ ଦେଖି ବଳବାନ୍ ରାକ୍ଷସ ସୈନିକମାନେ ପୁଣି ଧୈର୍ଯ୍ୟ ଧରିଲେ । ୨୬ । ସୁମାଲୀର ନିଜର ବଳବିଷୟରେ ବିଶେଷ ଅହଙ୍କାର ଥିଲା । ଅତଏବ ସେ ଅତି ଯୋରରେ ଗର୍ଜନକରି ମୃତପ୍ରାୟ ରାକ୍ଷସମାନଙ୍କୁ ପୁନର୍ଜୀବିତ କରି ଦେଇଥିଲା ।୨୭। ସେ ଆନନ୍ଦିତ ହୋଇ ଶୁଣ୍ଢ ହଲାଉଥିବା ହାତୀପରି ତାର ଅଳଙ୍କାରଭୂଷିତ ହାତକୁ ଉପରକୁ ଉଠାଇ ଘଡ଼ଘଡ଼ିଯୁକ୍ତ ମେଘ ସଦୃଶ ଗର୍ଜନ କରୁଥିଲା । ୨୮ । ସେତେବେଳେ ଭଗବାନ୍ ବିଷ୍ଣୁ ସୁମାଳୀର ସାରଥିର କୁଣ୍ଡଳଯୁକ୍ତ ଶିରକୁ କାଟିପକାଇଲେ । ସୁମାଳୀର ରଥର ଘୋଡ଼ାମାନେ ସାରଥିହୀନ ହୋଇ ନିଜ ଇଚ୍ଛାରେ ରଥକୁ ଯୁଦ୍ଧଭୂମିରେ ଏଣେ ତେଣେ ଟାଣି ବୁଲିବାକୁ ଲାଗିଲେ । ୨୯ । ଯେପରି ଅସଂଯମୀ ମନୁଷ୍ୟର ଇନ୍ଦ୍ରିୟମାନେ ତାହାର ବଶରେ ନ ରହି ନିଜର ଇଚ୍ଛାନୁସାରେ କର୍ମରେ ପ୍ରବୃତ୍ତ ହୁଅନ୍ତି, ସେହିପରି ସୁମାଳୀର ସାରଥିହୀନ ରଥର ଘୋଡ଼ାମାନେ ରଥକୁ ନେଇ ଇଚ୍ଛାନୁସାରେ ବୁଲିଲେ । ୩୦ ।

ତତୋ ବିଷ୍ଣୁଂ ମହାବାହୁଂ ପ୍ରାପତନ୍ତଂ ରଣାଜିରେ ।
ହୃତେ ସୁମାଲେରଶ୍ୱୈଶ୍ଚ ରଥେ ବିଷ୍ଣୁରଥଂ ପ୍ରତି ।
ମାଲୀ ଚାଭ୍ୟଦ୍ରବଦ୍ୟୁକ୍ତଃ ପ୍ରଗୃହ୍ୟ ସଶରଂ ଧନୁଃ । ୩୧ ।
ମାଲେର୍ଧନୁଶ୍ଚ୍ୟୁତା ବାଣାଃ କାର୍ତ୍ତସ୍ୱରବିଭୂଷିତାଃ ।
ବିବିଶୁର୍ହରିମାସାଦ୍ୟ କ୍ରୌଞ୍ଚଂ ପତ୍ରରଥା ଇବ । ୩୨ ।
ଅର୍ଦ୍ଦ୍ୟମାନଃ ଶରୈଃ ସୋଽଥ ମାଲିମୁକ୍ତୈଃ ସହସ୍ରଶଃ ।
ଚୁକ୍ଷୁଭେ ନ ରଣେ ବିଷ୍ଣୁର୍ଜିତେନ୍ଦ୍ରିୟ ଇବାଧିଭିଃ । ୩୩ ।
ଅଥ ମୌର୍ବୀସ୍ୱନଂ ଶ୍ରୁତ୍ୱା ଭଗବାନ୍ ଭୂତଭାବନଃ ।
ମାଲିନଂ ପ୍ରତି ବାଣୌଘାନ୍ ସସର୍ଜାରିନିଷୂଦନଃ । ୩୪ ।
ତେ ମାଲିଦେହମାସାଦ୍ୟ ବଜ୍ରବିଦ୍ୟୁତ୍ପ୍ରଭାଃ ଶରାଃ ।
ପିବନ୍ତି ରୁଧିରଂ ତସ୍ୟ ନାଗା ଇବ ସୁଧାରସମ୍ । ୩୫ ।
ମାଲିନଂ ବିମୁଖଂ କୃତ୍ୱା ଶଙ୍ଖଚକ୍ରଗଦାଧରଃ ।
ମାଲିମୌଳିଂ ଧ୍ୱଜଂ ଚାପଂ ବାଜିନଶ୍ଚାପ୍ୟପାତୟତ୍ । ୩୬ ।

---

ସୁମାଳୀର ଘୋଡ଼ାମାନେ ତାର ରଥକୁ ମହାବାହୁ ବିଷ୍ଣୁଙ୍କ ରଥ ସମ୍ମୁଖକୁ ନେଇଯିବାରୁ ସୁମାଳୀର ଭାଇ ମାଳୀ ଧନୁ ଶର ଧରି ରଣଭୂମିରେ ବିଷ୍ଣୁଙ୍କ ଆଡ଼କୁ ଧାଇଁଲା । ୩୧ । ମାଳୀର ଧନୁରୁ ନିକ୍ଷିପ୍ତ ସୁବର୍ଣ୍ଣଭୂଷିତ ଶରରାଜି, କ୍ରୌଞ୍ଚାଚଳରେ ପକ୍ଷୀମାନେ ପଶିଗଲାପରି ବିଷ୍ଣୁଙ୍କ ଶରୀରରେ ପ୍ରବେଶ କରିବାକୁ ଲାଗିଲା । ୩୨ । ଜିତେନ୍ଦ୍ରିୟ ପୁରୁଷ ଯେପରି ମାନସିକ ଦୁଶ୍ଚିନ୍ତାଦ୍ୱାରା କେବେ କ୍ଷୁବ୍ଧ ହୁଏ ନାହିଁ, ସେହିପରି ମାଳୀ ଦ୍ୱାରା ନିକ୍ଷିପ୍ତ ବହୁ ସହସ୍ର ଶରଦ୍ୱାରା ମଧ୍ୟ ବିଷ୍ଣୁ ଯୁଦ୍ଧରେ ଲେଶମାତ୍ର କ୍ଷୁବ୍ଧ ହେଲେ ନାହିଁ । ୩୩ । ତଦନନ୍ତର ଗଦାଧାରୀ, ଖଡ୍ଗଧାରୀ, ଭୂତଭାବନ, ଶତ୍ରୁହନ୍ତା, ଭଗବାନ୍ ବିଷ୍ଣୁ ଧନୁର ଟଙ୍କାର ଶବ୍ଦକରି ମାଳୀ ଉପରକୁ ବହୁ ଶର ନିକ୍ଷେପ କଲେ । ୩୪। ସେହି ବାଣସବୁ ବିଦ୍ୟୁତ୍ ଏବଂ ବଜ୍ର ସଦୃଶ ପ୍ରଭାବିଶିଷ୍ଟ ଥିଲା । ସେହି ଶରମାନ ମାଳୀର ଶରୀରରେ ପ୍ରବେଶକରି, ନାଗମାନେ ସୁଧାରସ ପାନକଲା ପରି ତାହାର ରସକୁ ଶୋଷି ନେଉଥିଲେ । ୩୫ । ଶଙ୍ଖ, ଚକ୍ର ଓ ଗଦାଧାରୀ ଭଗବାନ୍ ବିଷ୍ଣୁ, ମାଳୀକୁ ଯୁଦ୍ଧରେ ବିମୁଖ କରିଦେଇ ତାହାର ମୁକୁଟ, ଧ୍ୱଜ ଓ ଧନୁକୁ କାଟିପକାଇଲେ ଏବଂ ତାହାର ରଥର ଘୋଡ଼ାମାନଙ୍କୁ ମଧ୍ୟ ମାରି ଗଡ଼ାଇ ଦେଲେ । ୩୬ । ରଥହୀନ ହୋଇଯିବା ପରେ ନିଶାଚରଶ୍ରେଷ୍ଠ

ରଥସ୍ଥ ଗଦାଂ ଗୃହ୍ୟ ମାଲୀ ନକ୍ତଂଚରୋତ୍ତମଃ ।
ଆପୁପ୍ଲୁବେ ଗଦାପାଣିର୍ଗିର୍ୟଗ୍ରାଦିବ କେଶରୀ । ୩୭ ।
ଗଦୟା ଗରୁଡ଼େଶାନମୀଶାନମିବ ଚାନ୍ତକଃ ।
ଲଲାଟଦେଶେଽଭ୍ୟହନଦ୍ ବଜ୍ରେଣେନ୍ଦ୍ରୋ ଯଥାଚଲମ୍ । ୩୮ ।
ଗଦୟାଭିହତସ୍ତେନ ମାଲିନା ଗରୁଡ଼ୋ ଭୃଶମ୍ ।
ରଣାତ୍ ପରାଙ୍ମୁଖଂ ଦେବଂ କୃତବାନ୍ ବେଦନାତୁରଃ । ୩୯ ।
ପରାଙ୍ମୁଖେ କୃତେ ଦେବେ ମାଲିନା ଗରୁଡ଼େନ ବୈ ।
ଉଦତିଷ୍ଠନ୍ମହାଞ୍ଛବ୍ଦୋ ରକ୍ଷସାମଭିନର୍ଦତାମ୍ । ୪୦ ।
ରକ୍ଷସାଂ ରବତାଂ ରବଂ ଶ୍ରୁତ୍ୱା ହରିହୟାନୁଜଃ ।
ତିର୍ଯଗାସ୍ଥାୟ ସଂକ୍ରୁଦ୍ଧଃ ପକ୍ଷୀଶେ ଭଗବାନ୍ ହରିଃ । ୪୧ ।
ପରାଙ୍ମୁଖୋଽପ୍ୟୁତ୍ସସର୍ଜ ମାଲେଶ୍ଚକ୍ରଂ ଜିଘାଂସୟା ।
ତତ୍ ସୂର୍ଯମଣ୍ଡଳାଭାସଂ ସ୍ୱଭାସା ଭାସୟନ୍ନଭଃ । ୪୨ ।
କାଳଚକ୍ରନିଭଂ ଚକ୍ରଂ ମାଲେଃ ଶୀର୍ଷମପାତୟତ୍ ।
ତଚ୍ଛିରୋ ରାକ୍ଷସେନ୍ଦ୍ରସ୍ୟ ଚକ୍ରକୃତ୍ତଂ ବିଭୀଷଣମ୍ ।
ପପାତ ରୁଧିରୋଦ୍ଗାରି ପୁରା ରାହୁଶିରୋ ଯଥା । ୪୩ ।

---

ମାଳୀ ହାତରେ ଗଦା ଧରି ପର୍ବତଶିଖରରୁ ସିଂହ ଡେଇଁପଡ଼ିଲାପରି ନିଜ ରଥରୁ ଡେଇଁପଡ଼ିଲା ।୩୭। ଯେପରି ଶିବଙ୍କ ଉପରେ ଯମରାଜ ଅସ୍ତ୍ର ପ୍ରହାର କରିଥିଲେ, ଅଥବା ଇନ୍ଦ୍ର ଯେପରି ପର୍ବତ ଉପରେ ବଜ୍ର ପ୍ରହାର କରିଥିଲେ, ସେହିପରି ମାଳୀ ଗରୁଡ଼ର ଲଲାଟ ଉପରେ ଗଦା ପ୍ରହାର କଲା ।୩୮। ସେହି ଗଦା ପ୍ରହାରର ଯନ୍ତ୍ରଣାରେ ବିକଳ ହୋଇ ଗରୁଡ଼ ଭଗବାନ୍ ବିଷ୍ଣୁଙ୍କୁ ସେହି ଯୁଦ୍ଧରେ ବିମୁଖ କରିଦେଲା ।୩୯। ମାଳୀର ଗଦାପ୍ରହାରରେ ବିକଳ ହୋଇପଡ଼ିଥିବା ଗରୁଡ଼ ଦ୍ୱାରା ଭଗବାନ୍ ବିଷ୍ଣୁ ଯୁଦ୍ଧରେ ବିମୁଖ ହୋଇଯିବାରୁ ରାକ୍ଷସମାନଙ୍କ ମଧ୍ୟରେ ମହାଗର୍ଜନ ନାଦ ଉଠିଲା ।୪୦। ଗର୍ଜନକାରୀ ରାକ୍ଷସମାନଙ୍କର ସିଂହନାଦ ଶୁଣି ବିଷ୍ଣୁ ଅତିଶୟ କ୍ରୁଦ୍ଧ ହେଲେ । ଅନନ୍ତର ପକ୍ଷିରାଜ ଗରୁଡ଼ର ପିଠିଉପରେ ପଛଆଡ଼କୁ ମୁହଁ କରି ଭଗବାନ୍ ବିଷ୍ଣୁ ଗରୁଡ଼ ଦ୍ୱାରା ଯୁଦ୍ଧରେ ବିମୁଖ ହୋଇଥିଲେ ମଧ୍ୟ ମାଳୀକୁ ବଧକରିବା ପାଇଁ ଚକ୍ର ଚଳାଇଲେ । ସୂର୍ଯ୍ୟ କିରଣ ସଦୃଶ ପ୍ରକାଶମାନ ସେହି ଚକ୍ର ନିଜର ପ୍ରକାଶ ଦ୍ୱାରା ଆକାଶକୁ ଆଲୋକିତ କରି ମାଳୀର ମସ୍ତକକୁ କାଟି ଶରୀରରୁ ମସ୍ତକକୁ ପୃଥକ୍ କରିଦେଲା । ରାକ୍ଷସରାଜର ସେହି ଅତ୍ୟନ୍ତ ଭୀଷଣାକୃତି ମସ୍ତକ ଚକ୍ରରେ ଛିନ୍ନହୋଇ ରୁଧିର ଉଦ୍ଗାର କରି,ପୂର୍ବେ

ତତଃ ସୁରୈଃ ସୁସଂହୃଷ୍ଟୈଃ ସର୍ବପ୍ରାଣସମୀରିତଃ ।
ସିଂହନାଦରବୋନ୍ମୁକ୍ତଃ ସାଧୁ ଦେବେତି ବାଦିଭିଃ ।୪୪।
ମାଲିନଂ ନିହତଂ ଦୃଷ୍ଟ୍ୱା ସୁମାଲୀ ମାଲ୍ୟବାନପି ।
ସବଲୌ ଶୋକସଂତପ୍ତୌ ଲଙ୍କାମେବ ପ୍ରଧାବିତୌ ।୪୫।
ଗରୁଡ଼ସ୍ତୁ ସମାଶ୍ୱସ୍ତଃ ସଂନିବୃତ୍ୟ ଯଥା ପୁରା ।
ରାକ୍ଷସାନ୍ ଦ୍ରାବୟାମାସ ପକ୍ଷବାତେନ କୋପିତଃ ।୪୬।
ଚକ୍ରକୃତ୍ତାସ୍ୟକମଲା ଗଦାସଂଚୂର୍ଣ୍ଣିତୋରସଃ ।
ଲାଙ୍ଗଲଗ୍ଲପିତଗ୍ରୀବା ମୁସଲୈର୍ଭିନ୍ନମସ୍ତକାଃ ।୪୭।
କେଚଚ୍ଚୈବାସିନା ଛିନ୍ନାସ୍ତଥାନ୍ୟେ ଶରପୀଡ଼ିତାଃ ।
ନିପେତୁରମ୍ବରାତ୍ତୂର୍ଣ୍ଣଂ ରାକ୍ଷସାଃ ସାଗରାମ୍ଭସି ।୪୮।

ନାରାୟଣୋ ବାଣବରାଶନୀଭି-
ର୍ବିଦାରୟାମାସ ଧନୁର୍ବିମୁକ୍ତୈଃ ।
ନକ୍ତଂଚରାନ୍ ମୁକ୍ତବିଧୂତକେଶାନ୍
ଯଥାଶନୀଭିଃ ସତଡ଼ିନ୍ମହାଭ୍ରାଃ ।୪୯।

---

ରାକ୍ଷସର ମସ୍ତକ ଛିନ୍ନହେଲା ପରେ ଭୂମିରେ ପଡ଼ିଗଲା ।୪୩। ଏହା ଦେଖି ଦେବତାମାନେ ଅତ୍ୟନ୍ତ ଆନନ୍ଦିତ ହୋଇ 'ଧନ୍ୟ ବିଷ୍ଣୁଦେବ' ବୋଲି କହି ସମସ୍ତେ ମିଳି ଅତି ଯୋରରେ ସିଂହନାଦ କରିବାକୁ ଲାଗିଲେ ।୪୪। ମାଳୀକୁ ଏପ୍ରକାରେ ନିହତ ହେବାର ଦେଖି ସୁମାଳୀ ଏବଂ ମାଲ୍ୟବାନ୍ ଶୋକସନ୍ତପ୍ତ ହୋଇ ସେନାବଳ ସହିତ ଲଙ୍କାକୁ ପଳାୟନ କଲେ ।୪୫। ଗରୁଡ଼ ମଧ୍ୟ ସୁସ୍ଥ ହୋଇ ପୂର୍ବପରି ପୁଣି ରଣଭୂମିକୁ ଆସି କ୍ରୋଧରେ ନିଜର ପକ୍ଷର ପବନ ଦ୍ୱାରା ରାକ୍ଷସମାନଙ୍କୁ ଘଉଡ଼ାଇ ଦେବାକୁ ଲାଗିଲା ।୪୬। ବିଷ୍ଣୁ ବହୁ ରାକ୍ଷସଙ୍କର ମୁଖକମଳକୁ ଚକ୍ରଦ୍ୱାରା କାଟି-ପକାଇଲେ, କାହାର ବା ଛାତିକୁ ଗଦାଦ୍ୱାରା ଚୂର୍ଣ୍ଣ କରିଦେଲେ, କାହାର ବା ଗ୍ରୀବାଦେଶରେ ହଳ ଘୋସାରି ଦେଇ ତାକୁ ମାରିଦେଲେ ଏବଂ ଅନେକଙ୍କର ଶିରକୁ ମୁଷଳ ପ୍ରହାର ଦ୍ୱାରା ଛିନ୍ନଭିନ୍ନ କରି ଦେଲେ ।୪୭। ଅନେକଙ୍କୁ ତରବାରି ଦ୍ୱାରା ସେ କାଟି ପକାଇଲେ ଏବଂ ଅନେକଙ୍କୁ ବାଣଦ୍ୱାରା ଛିନ୍ନ କରି ପକାଇଲେ । ଏହି ପ୍ରକାରରେ ରାକ୍ଷସମାନେ ପ୍ରାଣହୀନ ହୋଇ ଆକାଶରୁ ସହସା ଖସି ସମୁଦ୍ର ଜଳରେ ଯାଇ ପଡ଼ିଲେ ।୪୮। ବିଦ୍ୟୁତ୍ ସହ ମହାମେଘ ଯେପରି ବଜ୍ର-ପ୍ରହାର ଦ୍ୱାରା ଫାଟିଯାଏ, ସେହିପରି ଭଗବାନ୍ ବିଷ୍ଣୁ ନିଜର ଧନୁରୁ ନିକ୍ଷିପ୍ତ ତୀକ୍ଷ୍ଣ-ଶରର ପ୍ରହାର ଦ୍ୱାରା ଉନ୍ମୁକ୍ତକେଶ ରାକ୍ଷସମାନଙ୍କୁ ବିଦାର୍ଣ୍ଣ କରିବାକୁ ଲାଗିଲେ ।୪୯।

ଭିନ୍ନାତପତ୍ରଂ ପତମାନମସ୍ତ୍ରମ୍
ଶରୈରପଧ୍ୱସ୍ତବିନୀତବେଷମ୍ ।
ବିନିଃସୃତାନ୍ତ୍ରଂ ଭୟଲୋଲନେତ୍ରମ୍
ବଲଂ ତଦୁନ୍ମତ୍ତତରଂ ବଭୂବ । ୫୦ ।
ସିଂହାର୍ଦ୍ଦିତାନାମିବ କୁଞ୍ଜରାଣାମ୍
ନିଶାଚରାଣାଂ ସହକୁଞ୍ଜରାଣାମ୍ ।
ରବାଶ୍ଚ ବେଗାଶ୍ଚ ସମଂ ବଭୂବୁଃ
ପୁରାଣସିଂହେନ ବିମର୍ଦ୍ଦିତାନାମ୍ । ୫୧ ।
ତେ ବାର୍ଯ୍ୟମାଣା ହରିବାଣଜାଲୈଃ
ସ୍ୱବାଣଜାଲାନି ସମୁତ୍ସୃଜନ୍ତଃ ।
ଧାବନ୍ତି ନକ୍ତଂଚରକାଳମେଘା
ବାୟୁପ୍ରଭିନ୍ନା ଇବ କାଳମେଘାଃ । ୫୨ ।
ଚକ୍ରପ୍ରହାରୈର୍ବିନିକୃତ୍ତଶୀର୍ଷା
ସଂଚୂର୍ଣ୍ଣିତାଙ୍ଗାଶ୍ଚ ଗଦାପ୍ରହାରୈଃ ।
ଅସିପ୍ରହାରୈର୍ଦ୍ୱିବିଧା ବିଭିନ୍ନାଃ
ପତନ୍ତି ଶୈଳା ଇବ ରାକ୍ଷସେନ୍ଦ୍ରାଃ । ୫୩ ।

---

ରାକ୍ଷସମାନଙ୍କ ମଧ୍ୟରୁ କାହାର କାହା'ର ଛତ୍ର ଛିନ୍ନଭିନ୍ନ ହୋଇଗଲା, କାହାର ବା ହାତରୁ ଅସ୍ତ୍ର ଖସିପଡ଼ିଲା, ଅନେକଙ୍କର ରୂପ ବିକଳାଙ୍ଗ ହୋଇଗଲା, ଅନେକଙ୍କର ଅନ୍ତନାଡ଼ି ବାହାରିପଡ଼ିଲା; ଅନେକଙ୍କର ଆଖିଡ଼ୋଳା ଭୟରେ ଲେଉଟି ପଡ଼ିଲା । ଏହି ପ୍ରକାରେ ସେ ରାକ୍ଷସସେନା ପାଗଳପ୍ରାୟ ହୋଇଗଲେ । ୫୦ । ନୃସିଂହ ଭଗବାନ୍‌ଙ୍କ ଦ୍ୱାରା ମର୍ଦ୍ଦିତ ହସ୍ତିରୂପୀ ରାକ୍ଷସମାନଙ୍କର ଘୋର ବେ ତଥା ହାତୀ-ମାନଙ୍କର ଚିତ୍କାର ଶବ୍ଦ ଓ ବେଗ ଏକସଙ୍ଗରେ ଉତ୍ପନ୍ନ ହେଲା । ୫୧ । ଯେପରି କାଳମେଘମାନେ ପବନଦ୍ୱାରା ବିକ୍ଷିପ୍ତ ହୋଇ ଉଡ଼ିଯାନ୍ତି; ସେହିପରି ରାକ୍ଷସ-ରୂପୀ କାଳମେଘମାନେ ବିଷ୍ଣୁଙ୍କର ବାଣରେ ଛିନ୍ନ ଭିନ୍ନ ହୋଇ ଏବଂ ଶର ବୃଷ୍ଟି କରି କରି ଲଙ୍କା ଆଡ଼କୁ ପଳାୟନ କଲେ ।୫୨। ସେହି ରାକ୍ଷସମାନେ ପଳାଇବାବେଳେ ପାହାଡ଼ପରି ଗଡ଼ି ପଡ଼ୁଥିଲେ । ସେମାନଙ୍କ ମଧ୍ୟରୁ କାହାର କାହାର ଶିର ଚକ୍ରରେ କଟିଯାଇଥିଲା ଏବଂ କାହାର ବା ଶରୀର ଗଦାରେ ଚୂର୍ଣ୍ଣ ହୋଇଯାଇଥିଲା । ୫୩ ।

ବଲମ୍ବମାନୈର୍ମଣିହାରକୁଣ୍ଡଳୈ-
ର୍ନିଶାଚରୈର୍ନୀଲବଲାହକୋପମୈଃ ।
ନିପାତ୍ୟମାନୈର୍ଦ୍ଦଦୃଶେ ନିରନ୍ତରମ୍
ନିପାତ୍ୟମାନୈରିବ ନୀଲପର୍ବତୈଃ । ୫୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ମାଲିବଧୋ ନାମ ସପ୍ତମଃ ସର୍ଗଃ ।

---

# ଅଷ୍ଟମଃ ସର୍ଗଃ

## ସୁମାଲ୍ୟାଦିନିଗ୍ରହଃ

ହନ୍ୟମାନେ ବଲେ ତସ୍ମିନ୍ ପଦ୍ମନାଭେନ ପୃଷ୍ଠତଃ ।
ମାଲ୍ୟବାନ୍ ସଂନିବୃତ୍ତୋଽଥ ବେଲାମେତ୍ୟ ଇବାର୍ଣବଃ । ୧ ।
ସଂରକ୍ତନୟନଃ କୋପାଚ୍ଚଲନ୍ମୌଳିର୍ନିଶାଚରଃ ।
ପଦ୍ମନାଭମିଦଂ ପ୍ରାହ ବଚନଂ ପୁରୁଷୋତ୍ତମମ୍ । ୨ ।

---

ମଣି, ହାର ଏବଂ କୁଣ୍ଡଳଦ୍ୱାରା ଶୋଭିତ ବଡ଼ ବଡ଼ ନୀଳମେଘଖଣ୍ଡ ସଦୃଶ ସେହି ନିଶାଚରମାନେ ରାକ୍ଷସମାନଙ୍କର ନୀଳପର୍ବତସଦୃଶ ଶରୀର ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇ ନିରନ୍ତର ତଳେ ପଡ଼ି ଗଡ଼ିଯାଉଥିବାର ଦେଖାଗଲା । ୫୪

---

## ୮ମ ସର୍ଗ

( ସୁମାଳୀ ପ୍ରଭୃତିଙ୍କ ପରାଜୟ )

ପଦ୍ମନାଭ ବିଷ୍ଣୁ, ରାକ୍ଷସ ସେନାକୁ ମାଡ଼ି ଘଉଡ଼ାଇ ଦେବା ଉତ୍ତାରୁ ମାଲ୍ୟବାନ୍ ଲଙ୍କାକୁ ପଳାଇଆସି, ସମୁଦ୍ର ନିକଟ ତଟରେ ପହଞ୍ଚି ପୁଣି ଫେରିଗଲାପରି ପୁନର୍ବାର ଯୁଦ୍ଧକ୍ଷେତ୍ରକୁ ଫେରିଗଲା । ୧ । ମାଲ୍ୟବାନ୍ ରାକ୍ଷସ କ୍ରୋଧରେ ଚକ୍ଷୁକୁ ରକ୍ତବର୍ଣ୍ଣ କରି ଏବଂ ମୁଣ୍ଡହଲାଇ ପୁରୁଷୋତ୍ତମ ପଦ୍ମନାଭଙ୍କୁ କହିଲା । ୨ ।

ନାରାୟଣ ନ ଜାନୀଷେ କ୍ଷାତ୍ରଧର୍ମଂ ପୁରାତନମ୍ ।
ଅଯୁଦ୍ଧମନସୋ ଭୀତାନସ୍ମାନ୍ ହଂସି ଯଥାଽନ୍ତରଃ । ୩ ।
ପରାଙ୍ମୁଖବଧଂ ପାପଂ ଯଃ କରୋତ୍ୟସୁରେଶ୍ୱରଃ ।
ସ ହନ୍ତା ନ ଗତଃ ସ୍ୱର୍ଗଂ ଲଭତେ ପୁଣ୍ୟକର୍ମଣାମ୍ ।୪।
ଯୁଦ୍ଧଶ୍ରଦ୍ଧାଥବା ତେଽସ୍ତି ଶଙ୍ଖଚକ୍ରଗଦାଧର ।
ଅହଂ ସ୍ଥିତୋଽସ୍ମି ପଶ୍ୟାମି ବଲଂ ଦର୍ଶୟ ଯତ୍ତବ । ୫ ।
ମାଲ୍ୟବନ୍ତଂ ସ୍ଥିତଂ ଦୃଷ୍ଟ୍ୱା ମାଲ୍ୟବନ୍ତମିବାଚଲମ୍ ।
ଉବାଚ ରାକ୍ଷସେନ୍ଦ୍ରଂ ତଂ ଦେବରାଜାନୁଜୋ ବଲୀ । ୬ ।
ଯୁଷ୍ମତ୍ତୋ ଭୟଭୀତାନାଂ ଦେବାନାଂ ବୈ ଭୟାଭୟମ୍ ।
ରାକ୍ଷସୋତ୍ସାଦନଂ ଦତ୍ତଂ ତଦେତଦନୁପାଲ୍ୟତେ । ୭ ।
ପ୍ରାଣୈରପି ପ୍ରିୟଂ କାର୍ଯ୍ୟଂ ଦେବାନାଂ ହି ସଦା ମୟା ।
ସୋଽହଂ ବୋ ନିହନିଷ୍ୟାମି ରସାତଳଗତାନପି । ୮ ।
ଦେବଦେବଂ ବ୍ରୁବାଣଂ ତଂ ରକ୍ତାମ୍ବୁରୁହଲୋଚନମ୍ ।
ଶକ୍ତ୍ୟା ବିଭେଦ ସଂକ୍ରୁଦ୍ଧୋ ରାକ୍ଷସେନ୍ଦ୍ରୋ ଭୁଜାନ୍ତରେ ।୯।

---

"ହେ ନାରାୟଣ ! ତୁମେ ପ୍ରାଚୀନ କ୍ଷାତ୍ର ଧର୍ମକୁ ଜାଣ ନାହିଁ । କାରଣ ତୁମେ ଯୁଦ୍ଧରୁ ଭୀତ ଓ ପ୍ରତ୍ୟାବୃତ୍ତ ହେଉଥିବା ଆମ୍ଭମାନଙ୍କୁ ଇତର କ୍ଷୁଦ୍ରଜନପରି ମାରି ପକାଉଅଛ । ୩ । ହେ ସୁରେଶ୍ୱର ! ଯୁଦ୍ଧରୁ ମୁହଁ ଫେରାଇଥିବା ଲୋକଙ୍କୁ ଯେ ମାରେ ସେ ପାପ କରେ । ସେପରି ହତ୍ୟାକାରୀ ବ୍ୟକ୍ତି ପୁଣ୍ୟକର୍ତ୍ତା-ମାନଙ୍କର ପ୍ରାପ୍ୟ ସ୍ୱର୍ଗକୁ ପାଇପାରେ ନାହିଁ । ୪ । ହେ ଶଙ୍ଖଚକ୍ରଗଦାଧର ! ଯଦି ତୁମ୍ଭର ଯୁଦ୍ଧ କରିବାକୁ ଆଗ୍ରହ ଥାଏ, ତେବେ ମୁଁ ତୁମ ଆଗରେ ଠିଆ ହୋଇ ରହିଅଛି, ତୁମ୍ଭର ଯାହା ବଳ ଅଛି ତାହା ଏବେ ଦେଖାଅ" । ୫ । ମାଲ୍ୟବାନ୍ ପର୍ବତ ସଦୃଶ ମାଲ୍ୟବାନ୍ ରାକ୍ଷସକୁ ଅଚଳଭାବରେ ଠିଆ ହୋଇଥିବାର ଦେଖି ସେହି ରାକ୍ଷସେନ୍ଦ୍ରକୁ ଇନ୍ଦ୍ରାନୁଜ ବଳବାନ୍ ବିଷ୍ଣୁ କହିଲେ । ୬ । "ତୁମ୍ଭମାନଙ୍କ ଭୟରେ ତ୍ରସ୍ତ ହୋଇଥିବା ଦେବତାମାନଙ୍କୁ ମୁଁ ରାକ୍ଷସ-ନାଶରୂପକ ଅଭୟ ଦାନ ଦେଇଅଛି । ସୁତରାଂ ମୁଁ ବର୍ତ୍ତମାନ ରାକ୍ଷସମାନଙ୍କୁ ବିନାଶ କରି ନିଜର ସେହି ପ୍ରତିଜ୍ଞାକୁ ପାଳନ କରୁଅଛି । ୭ । କାରଣ ମୁଁ ପ୍ରାଣ ଦେଇ ମଧ୍ୟ ସର୍ବଦା ଦେବତାମାନଙ୍କର ପ୍ରିୟକାର୍ଯ୍ୟ କରିବି । ଅତଏବ ମୁଁ ନିଶ୍ଚୟ ତୁମ୍ଭମାନଙ୍କୁ ମାରିବି । ତୁମ୍ଭେମାନେ ରସାତଳକୁ ଗଲେ ମଧ୍ୟ ତୁମ୍ଭମାନଙ୍କର ରକ୍ଷା ନାହିଁ" । ୮ । ରକ୍ତପଦ୍ମସଦୃଶନେତ୍ରବିଶିଷ୍ଟ ଦେବାଧିଦେବ ବିଷ୍ଣୁ ଏହିପରି କହୁଥିବାବେଳେ ରାକ୍ଷସଶ୍ରେଷ୍ଠ ମାଲ୍ୟବାନ ଅତିଶୟ କ୍ରୁଦ୍ଧ ହୋଇ ତାଙ୍କ ଛାତିରେ

ମାଲ୍ୟବଦ୍ଭୁଜନିର୍ମୁକ୍ତା ଶକ୍ତିର୍ଘଣ୍ଟାକୃତସ୍ୱନା ।
ହରେରୁରସି ବଭ୍ରାଜ ମେଘସ୍ଥେବ ଶତହ୍ରଦା । ୧୦ ।
ତତ୍ପସ୍ତାମେବ ଚୋତ୍କୃଷ୍ୟ ଶକ୍ତିଂ ଶକ୍ତିଧରପ୍ରିୟଃ ।
ମାଲ୍ୟବନ୍ତଂ ସମୁଦ୍ଦିଶ୍ୟ ଚକ୍ଷେପାମ୍ବୁରୁହେକ୍ଷଣଃ । ୧୧ ।
ସ୍କନ୍ଦୋତ୍ସୃଷ୍ଟେବ ସା ଶକ୍ତିର୍ଗୋବିନ୍ଦକରନିଃସୃତା ।
କାଙ୍କ୍ଷନ୍ତୀ ରାକ୍ଷସଂ ପ୍ରାୟାନ୍ମହୋଲ୍କେବାଞ୍ଜନାଚଲମ୍ । ୧୨ ।
ସା ତସ୍ୟୋରସି ବିସ୍ତୀର୍ଣେ ହାରଭାସାବଭାସିତେ ।
ଅପତଦ୍ରାକ୍ଷସେନ୍ଦ୍ରସ୍ୟ ଗିରିକୂଟ ଇବାଶନିଃ । ୧୩ ।
ତୟା ଭିନ୍ନତନୁତ୍ରାଣଃ ପ୍ରାବିଶଦ୍ ବିପୁଲଂ ତମଃ ।
ମାଲ୍ୟବାନ୍ ପୁନରାଶ୍ୱସ୍ତସ୍ତସ୍ଥୌ ଗିରିରିବାଚଳଃ । ୧୪ ।
ତତଃ କାର୍ଷ୍ଣାୟସଂ ଶୂଳଂ କଣ୍ଟକୈର୍ବହୁଭିର୍ବୃତମ୍ ।
ପ୍ରଗୃହ୍ୟାଭ୍ୟହନଦ୍ଦେବଂ ସ୍ତନୟୋରନ୍ତରେ ଦୃଢ଼ମ୍ । ୧୫ ।
ତଥୈବ ରଣରକ୍ତସ୍ତୁ ମୁଷ୍ଟିନା ବାସବାନୁଜମ୍ ।
ତାଡ଼ୟିତ୍ୱା ଧନୁର୍ମାତ୍ରମପକ୍ରାନ୍ତୋ ନିଶାଚରଃ । ୧୬ ।

---

ଏକ ଶକ୍ତି ଭେଦ କଲା । ୯ । ମାଲ୍ୟବାନ୍‌ର ହାତରୁ ନିକ୍ଷିପ୍ତ ସେହି ଶକ୍ତି ଘଣ୍ଟିର ଶବ୍ଦକରି ଭଗବାନ୍ ବିଷ୍ଣୁଙ୍କ ଛାତିରେ ଲାଗି ମେଘ ମଧ୍ୟରେ ବିଦ୍ୟୁତ୍ ଶୋଭା ପାଇଲାପରି ଶୋଭା ପାଇଲା । ୧୦ । ଶକ୍ତିଧାରୀ ଶିବଙ୍କର ପ୍ରିୟ ସେହି ଶକ୍ତିକୁ ପଦ୍ମଲୋଚନ ବିଷ୍ଣୁ ନିଜ ଛାତିରୁ ଉଠାଇ ନେଇ ପୁନଶ୍ଚ ତାକୁ ହିଁ ମାଲ୍ୟବାନ୍ ଉପରକୁ ନିକ୍ଷେପକଲେ । ୧୧ । ଭଗବାନ୍ ଗୋବିନ୍ଦଙ୍କ ହାତରୁ ନିର୍ଗତ ସେହି ଶକ୍ତି କାର୍ତ୍ତିକେୟଙ୍କ ଦ୍ୱାରା ନିକ୍ଷିପ୍ତ ଶକ୍ତିପରି ସେହି ରାକ୍ଷସକୁ ମାରିବାକୁ ଇଚ୍ଛା କରି, ଅଞ୍ଜନଗିରି ଉପରେ ଉଲ୍କାପାତ ହେଲାପରି ସେହି ରାକ୍ଷସ ଆଡ଼କୁ ଅଗ୍ରସର ହେଲା । ୧୨ । ସେହି ଶକ୍ତି ମାଲ୍ୟବାନ୍‌ର ହାରପ୍ରଭାରେ ଦୀପ୍ତିମାନ୍ ତାର ପ୍ରଶସ୍ତ ଛାତିରେ, ଇନ୍ଦ୍ରଙ୍କ ଗୃହୀତ ବଜ୍ର ପର୍ବତରେ ଆଘାତ କଲାପରି ଆଘାତ କଲା । ୧୩ । ସେହି ଶକ୍ତି ଲାଗିବା ଦ୍ୱାରା ମାଲ୍ୟବାନ୍‌ର କବଚ ଛିନ୍ନଭିନ୍ନ ହୋଇଗଲା ଏବଂ ସେ ଅତିଶୟ ମୋହାବିଷ୍ଟ ହୋଇପଡ଼ିଲା । କିଛିକାଳ ପରେ ସେ ପୁଣି ଚେତନା ଲାଭକରି ପର୍ବତସଦୃଶ ନିଶ୍ଚଳଭାବରେ ବିଷ୍ଣୁଙ୍କ ସମ୍ମୁଖରେ ଛିଡ଼ା ହୋଇ ରହିଲା । ୧୪ । ସେ ବହୁ କଣ୍ଟକବିଶିଷ୍ଟ କୃଷ୍ଣବର୍ଣ୍ଣ ଲୌହର ଏକ ଶୂଳ ଧରି ଖୁବ ଜୋରରେ ବିଷ୍ଣୁଙ୍କ ବକ୍ଷରେ ବିଦ୍ଧକଲା । ୧୫ । ସେହି ରଣପ୍ରିୟ ରାକ୍ଷସ ମାଲ୍ୟବାନ୍ ସେଥି ସଙ୍ଗେ ସଙ୍ଗେ ପୁନଶ୍ଚ ଇନ୍ଦ୍ରାନୁଜ ବିଷ୍ଣୁଙ୍କର ଛାତି ଉପରକୁ

ତତୋଽମ୍ବରେ ମହାନ୍ନାଦଃ ସାଧୁ ସାଧ୍ୱିତି ଚୋଦ୍‌ଗତଃ ।
ଆହତ୍ୟ ରାକ୍ଷସୋ ବିଷ୍ଣୁଂ ଗରୁଡ଼ଂ ଚାପ୍ୟତାଡ଼ୟତ୍ । ୧୭ ।
ବୈନତେୟସ୍ତତଃ କ୍ରୁଦ୍ଧଃ ପକ୍ଷବାତେନ ରାକ୍ଷସମ୍ ।
ବ୍ୟପୋହଦ୍ ବଲବାନ୍ ବାୟୁଃ ଶୁଷ୍କପର୍ଣଚୟଂ ଯଥା । ୧୮ ।
ଦ୍ୱିଜେନ୍ଦ୍ରପକ୍ଷବାତେନ ଦ୍ରାବିତଂ ଦୃଶ୍ୟ ପୂର୍ବଜମ୍ ।
ସୁମାଲୀ ସ୍ୱବଲୈଃ ସାର୍ଧଂ ଲଙ୍କାମଭିମୁଖୋ ଯଯୌ । ୧୯ ।
ପକ୍ଷବାତବଲୋଦ୍ଧୂତୋ ମାଲ୍ୟବାନପି ରାକ୍ଷସଃ ।
ସ୍ୱବଲେନ ସମାଗମ୍ୟ ଯଯୌ ଲଙ୍କାଂ ହ୍ରିୟା ବୃତଃ । ୨୦ ।
ଏବଂ ତେ ରାକ୍ଷସାସ୍ତେନ ହରିଣା କମଲେକ୍ଷଣ ।
ବହୁଶଃ ସଂୟୁଗେ ଭଗ୍ନା ହତପ୍ରବରନାୟକାଃ । ୨୧ ।
ଅଶକ୍ନୁବନ୍ତସ୍ତେ ବିଷ୍ଣୁଂ ପ୍ରତିଯୋଦ୍ଧୁଂ ଭୟାର୍ଦିତାଃ ।
ତ୍ୟକ୍ତ୍ୱା ଲଙ୍କାଂ ଗତା ବସ୍ତୁଂ ପାତାଲଂ ସହପତ୍ନୟଃ । ୨୨ ।
ସୁମାଲିନଂ ସମାସାଦ୍ୟ ରାକ୍ଷସଂ ରଘୁସତ୍ତମ ।
ସ୍ଥିତାଃ ପ୍ରଖ୍ୟାତବୀର୍ଯାସ୍ତେ ବଂଶେ ସାଲକଟଙ୍କଟେ । ୨୩ ।

---

ଏକ ମୂଥ ମାର ଶ୍ରୀହରିଙ୍କ ପଛକୁ ଘୁଞ୍ଚିଗଲା । ୧୬ । ତାହାର ଏହି ସାହସିକ କାର୍ଯ୍ୟ ଦେଖି ଆକାଶରେ ସାଧୁ ସାଧୁ ବୋଲି ମହାଶବ୍ଦ ଶୁଣାଗଲା । ରାକ୍ଷସ ମାଲ୍ୟବାନ୍ ବିଷ୍ଣୁଙ୍କୁ ଏହିପରି ଆଘାତ କରିସାରି ଗରୁଡ଼ ଉପରେ ମଧ୍ୟ ପ୍ରହାର କଲା । ୧୭ । ଅନନ୍ତର ବଲବାନ୍ ଗରୁଡ଼ ଅତିଶୟ କ୍ରୁଦ୍ଧ ହୋଇ, ପବନ ଶୁଖିଲା ପତ୍ରକୁ ଉଡ଼ାଇ ଦେଲାପରି ନିଜର ପକ୍ଷର ପବନଦ୍ୱାରା ରାକ୍ଷସକୁ ଉଡ଼ାଇଦେଲା । ୧୮ । ଗରୁଡ଼ର ପକ୍ଷଜାତ ପବନରେ ନିଜର ବଡ଼ ଭାଇ ମାଲ୍ୟବାନକୁ ବିତାଡ଼ିତ ହେବାର ଦେଖି ସୁମାଲୀ ନିଜର ସେନା ସହିତ ଲଙ୍କା ଆଡ଼କୁ ପଳାଇଗଲା । ୧୯ । ଗରୁଡ଼ର ପକ୍ଷବାତରେ ଉଡ଼ିଯାଇଥିବା ରାକ୍ଷସ ମାଲ୍ୟବାନ୍ ମଧ୍ୟ ଲଜ୍ଜିତ ହୋଇ ନିଜର ସେନା ସହିତ ଲଙ୍କାକୁ ଫେରି ପଳାଇଗଲା । ୨୦ । ପଦ୍ମନେତ୍ର ! ଏହିପ୍ରକାରେ ଭଗବାନ୍ ବିଷ୍ଣୁ ଯୁଦ୍ଧରେ ବହୁ ରାକ୍ଷସ ମାରିଲେ ଓ ସେମାନଙ୍କ ମୁଖ୍ୟ ନେତାମାନଙ୍କୁ ମାରିପକାଇଲେ ।୨୧। ସେହି ରାକ୍ଷସମାନେ ଭଗବାନ୍ ବିଷ୍ଣୁଙ୍କ ସହିତ ଯୁଦ୍ଧ କରିବାକୁ ଅସମର୍ଥ ହୋଇ ଏବଂ ବିଷ୍ଣୁଙ୍କ ବଳରେ ପ୍ରପୀଡ଼ିତ ହୋଇ ନିଜର ପତ୍ନୀମାନଙ୍କ ସହିତ ଲଙ୍କା ଛାଡ଼ି ପାତାଳରେ ଯାଇ ବାସ କରିବାକୁ ଲାଗିଲେ । ୨୨ । ହେ ରଘୁଶ୍ରେଷ୍ଠ ! ପ୍ରସିଦ୍ଧ ପରାକ୍ରମୀ ରାକ୍ଷସମାନେ ରାକ୍ଷସ ସୁମାଲୀକୁ ଆଶ୍ରୟ କରି ସେଠାରେ ସାଲକଟଙ୍କଟା ବଂଶ ସ୍ଥାପନ କରି ରହିବାକୁ ଲାଗିଲେ । ୨୩ । ତୁମେ ପୁଲସ୍ତ୍ୟ ବଂଶର

ଯେ ତ୍ୱୟା ନିହତାସ୍ତେ ତୁ ପୌଲସ୍ତ୍ୟା ନାମ ରାକ୍ଷସାଃ ।
ସୁମାଲୀ ମାଲ୍ୟବାନ୍ ମାଲୀ ଯେ ଚ ତେଷାଂ ପୁରଃସରାଃ ।
ସର୍ବେ ତେଭ୍ୟୋ ମହାଭାଗ ରାବଣାଦ୍ ବଲବତ୍ତରାଃ । ୨୪ ।
ନ ଚାନ୍ୟେନା ରାକ୍ଷସାନ୍ ହନ୍ତା ସୁରାରୀନ୍ ଦେବକଣ୍ଟକାନ୍ ।
ଋତେ ନାରାୟଣଂ ଦେବଂ ଶଙ୍ଖଚକ୍ରଗଦାଧରମ୍ । ୨୫ ।
ଭବାନ୍ନାରାୟଣୋ ଦେବଶ୍ଚତୁର୍ବାହୁଃ ସନାତନଃ ।
ରାକ୍ଷସାନ୍ ହନ୍ତୁମୁତ୍ପନ୍ନୋ ହ୍ୟଜେୟଃ ପ୍ରଭୁରବ୍ୟୟଃ । ୨୬
ନଷ୍ଟଧର୍ମବ୍ୟବସ୍ଥାତା କାଲେ କାଲେ ପ୍ରଜାକରଃ ।
ଉତ୍ପଦ୍ୟତେ ଦସ୍ୟୁବଧେ ଶରଣାଗତବତ୍ସଲଃ । ୨୭ ।

ଏଷା ମୟା ତବ ନରାଧିପ ରାକ୍ଷସାନା-
ମୁତ୍ପତ୍ତିରଦ୍ୟ କଥିତା ସକଲା ଯଥାବତ୍ ।
ଭୂୟୋ ନିବୋଧ ରଘୁସତ୍ତମ ରାବଣସ୍ୟ ।
ଜନ୍ମପ୍ରଭାବମତୁଲଂ ସସୁତସ୍ୟ ସର୍ବମ୍ । ୨୮ ।

---

ଯେଉଁ ରାକ୍ଷସମାନଙ୍କ ସଂହାର କରିଥିଲ ସେ ସମସ୍ତଙ୍କ ମଧ୍ୟରେ ମହାବଳବାନ୍ ସୁମାଲୀ, ମାଲ୍ୟବାନ୍ ଏବଂ ମାଲୀ ପ୍ରଧାନ ଥିଲେ । ଏ ସମସ୍ତେ ରାବଣଠାରୁ ମଧ୍ୟ ଅଧିକ ବଳବାନ୍ ଥିଲେ । ୨୪ । ଶଙ୍ଖଚକ୍ରଗଦାଧାରୀ ବିଷ୍ଣୁଙ୍କ ଛଡ଼ା ଅନ୍ୟ କେହି ଦେବତାମାନଙ୍କର ଶତ୍ରୁ ଏହି ରାକ୍ଷସମାନଙ୍କୁ ମାରି ପାରି ନ ଥାନ୍ତା । ୨୫ । ସ୍ୱୟଂ ତୁମେ ଚତୁର୍ଭୁଜ, ସନାତନ, ଅଜେୟ, ଅବିନାଶୀ ଏବଂ ସାକ୍ଷାତ୍ ନାରାୟଣ ଅଟ । ରାକ୍ଷସମାନଙ୍କୁ ବିନାଶ କରିବା ନିମନ୍ତେ ହିଁ ତୁମେ ଅବତାର ଗ୍ରହଣ କରିଅଛ । ୨୬ । ଧର୍ମବ୍ୟବସ୍ଥା ନଷ୍ଟ ହୋଇଗଲେ ତାର ସୁବ୍ୟବସ୍ଥା କରିବା ପାଇଁ ତଥା ପ୍ରଜାମାନଙ୍କ ରକ୍ଷା କରିବା ପାଇଁ ଏବଂ ଦସ୍ୟୁମାନଙ୍କ ବଧ କରିବା ପାଇଁ ଶରଣାଗତବତ୍ସଳ ଭଗବାନ୍ ଜନ୍ମ ଗ୍ରହଣ କରନ୍ତି । ୨୭ । ହେ ନରାଧିପ ! ଆଜି ମୁଁ ତୁମକୁ ସମସ୍ତ ରାକ୍ଷସଙ୍କର ଉତ୍ପତ୍ତିର କଥା ଯଥାବିଧିରେ ସବୁ ଶୁଣାଇଲି । ହେ ରଘୁଶ୍ରେଷ୍ଠ ! ମୁଁ ଏବେ ତୁମକୁ ରାବଣ ଏବଂ ତାର ପୁତ୍ର-ମାନଙ୍କର ଜନ୍ମବୃତ୍ତାନ୍ତ ଓ ଅତୁଳନୀୟ ବଳର ସମସ୍ତ ଘଟଣା ଶୁଣାଉଅଛି । ୨୮ ।

ଶରାସ୍ତ୍ରୁମାଲୀ ବ୍ୟଚରଦ୍‌ରସାତଲମ୍ ।
ସ ରାକ୍ଷସୋ ବିଷ୍ଣୁଭୟାର୍ଦ୍ଦିତସ୍ତଦା ।
ପ୍ରବ୍ରେଶ୍ଚ ପୌର୍ବେଶ୍ଚ ସମନ୍ୱିତୋ ବଳୀ
ତତସ୍ତୁ ଲଙ୍କାମବସଦ୍ଧନେଶ୍ୱରଃ । ୨୯ ।

ଇତି ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ସୁମାଲ୍ୟାଦିନିଗ୍ରହୋ ନାମ ଅଷ୍ଟମଃ ସର୍ଗଃ ।

---

# ନବମଃ ସର୍ଗଃ

## ରାବଣାଦ୍ୟୁତ୍ପତ୍ତିଃ

କସ୍ୟଚିତ୍ତ୍ୱଥ କାଲସ୍ୟ ସୁମାଲୀ ନାମ ରାକ୍ଷସଃ ।
ରସାତଲାନ୍ମର୍ତ୍ତ୍ୟଲୋକଂ ସର୍ବଂ ବୈ ବିଚଚାର ହ ।୧।
ନୀଲଜୀମୂତସଂକାଶସ୍ତପ୍ତକାଞ୍ଚନକୁଣ୍ଡଳଃ ।
କନ୍ୟାଂ ଦୁହିତରଂ ଗୃହ୍ୟ ବିନା ପଦ୍ମମିବ ଶ୍ରିୟମ୍ । ୨ ।

---

ସେତେବେଳେ ବିଷ୍ଣୁଙ୍କ ଭୟରେ ପ୍ରପୀଡ଼ିତ ହୋଇ ସୁମାଳୀ ପୁତ୍ର ପୌତ୍ରାଦି ପରିବାର ସହିତ ବହୁଦିନଯାଏ ରସାତଳରେ ବିଚରଣ କଲା । ସେତେବେଳେ କୁବେର ଯାଇ ଲଙ୍କାରେ ବାସ କରିବାକୁ ଲାଗିଲେ । ୨୯ ।

---

# ୯ମ ସର୍ଗ

## ( ରାବଣ ପ୍ରଭୃତିଙ୍କ ଉତ୍ପତ୍ତି )

କିଛିଦିନ ବାଦ ସୁମାଳୀ ନାମକ ରାକ୍ଷସ ରସାତଳରୁ ବାହାରି ମର୍ତ୍ତ୍ୟ-ଲୋକରେ ସର୍ବତ୍ର ବିଚରଣ କରିବାକୁ ଲାଗିଲା । ୧ । ନୀଳମେଘ ସଦୃଶ ତାହାର ଦେହର ଶ୍ୟାମଳବର୍ଣ୍ଣ ଥିଲା । ସେ ବିଶୁଦ୍ଧ ସୁବର୍ଣ୍ଣର କୁଣ୍ଡଳ କାନରେ ପିନ୍ଧିଥିଲା । ପଦ୍ମବିହୀନ ଲକ୍ଷ୍ମୀ ସଦୃଶ ନିଜର କୁମାରୀ କନ୍ୟାକୁ ସେ ସଙ୍ଗରେ ଧରିଥିଲା । ୨ ।

ରାକ୍ଷସେନ୍ଦ୍ରଃ ସ ତୁ ତଦା ବିଚରନ୍ ବୈ ମହୀତଳମ୍ ।
ତଦାପଶ୍ୟତ୍ ସ ଗଚ୍ଛନ୍ତଂ ପୁଷ୍ପକେଣ ଧନେଶ୍ୱରମ୍ । ୩ ।
ଗଚ୍ଛନ୍ତଂ ପିତରଂ ଦ୍ରଷ୍ଟୁଂ ପୁଲସ୍ତ୍ୟତନୟଂ ବିଭୁମ୍ ।
ତଂ ଦୃଷ୍ଟ୍ୱାମରସଂକାଶଂ ସ୍ୱଚ୍ଛନ୍ଦଂ ତପନୋପମମ୍ । ୪ ।
ରସାତଳଂ ପ୍ରବିଷ୍ଟଃ ସନ୍ ମର୍ତ୍ତ୍ୟଲୋକାତ୍ସବିସ୍ମୟଃ ।
ଇତ୍ୟେବଂ ଚିନ୍ତୟାମାସ ରାକ୍ଷସାନାଂ ମହାମତିଃ । ୫ ।
କିଂ କୃତଂ ଶ୍ରେୟ ଇତ୍ୟେବଂ ବର୍ଦ୍ଧେମହି କଥଂ ବୟମ୍ ।
ଅଥାବ୍ରବୀତ୍ ସୁତାଂ ରକ୍ଷଃ କୈକସୀଂ ନାମ ନାମତଃ । ୬ ।
ପୁତ୍ରି ପ୍ରଦାନକାଲୋଽୟଂ ଯୌବନଂ ତେଽତିବର୍ତ୍ତତେ ।
ପ୍ରତ୍ୟାଖ୍ୟାନାଚ୍ଚ ଭୀତୈସ୍ତ୍ୱଂ ନ ବରୈଃ ପ୍ରତିଗୃହ୍ୟସେ । ୭ ।
ତ୍ୱତ୍କୃତେ ଚ ବୟଂ ସର୍ବେ ଯନ୍ତ୍ରିତା ଧର୍ମବୁଦ୍ଧୟଃ ।
ତ୍ୱଂ ହି ସର୍ବଗୁଣୋପେତା ଶ୍ରୀଃ ସାକ୍ଷାଦିବ ପୁତ୍ରିକେ । ୮ ।
କନ୍ୟାପିତୃତ୍ୱଂ ଦୁଃଖଂ ହି ସର୍ବେଷାଂ ମାନକାଙ୍କ୍ଷିଣାମ୍ ।
ନ ଜ୍ଞାୟତେ ଚ କଃ କନ୍ୟାଂ ବରୟେଦିତି କନ୍ୟକେ । ୯ ।

---

ଏହି ପ୍ରକାରରେ ପୃଥିବୀରେ ବୁଲୁ ବୁଲୁ ସେହି ରାକ୍ଷସରାଜ ସୁମାଳୀ ପୁଷ୍ପକବିମାନରେ ଚଢ଼ି କୁବେରଙ୍କୁ ଯାଉଥିବାର ଦେଖିଲା । ୩ । କୁବେର ନିଜର ପିତା ଏବଂ ପୁଲସ୍ତ୍ୟଙ୍କର ପୁତ୍ର ବିଶ୍ରବା ମୁନିଙ୍କ ଦର୍ଶନ କରିବାକୁ ଯାଉଥିଲେ । ଦେବତା ସଦୃଶ ଏବଂ ସୂର୍ଯ୍ୟଙ୍କ ସଦୃଶ ସ୍ୱଚ୍ଛନ୍ଦରେ ତାଙ୍କୁ ଗମନ କରୁଥିବାର ଦେଖି ସୁମାଳୀ ବିସ୍ମିତ ହୋଇ ମର୍ତ୍ତ୍ୟ ଲୋକକୁ ଛାଡ଼ି ରସାତଳକୁ ଚାଲିଗଲା । ସେହି ମହାମତି ରାକ୍ଷସ ସେଠାରେ ଯାଇ ଚିନ୍ତା କରିବାକୁ ଲାଗିଲା । ୪-୫। 'ମୁଁ ଏପରି କି ଶ୍ରେଷ୍ଠ କର୍ମ କରିବି ଯଦ୍ୱାରା ଆମ୍ଭମାନଙ୍କର ଅଭିବୃଦ୍ଧି ହେବ' । ଅନନ୍ତର ସେ ରାକ୍ଷସ ନିଜର କନ୍ୟା କୈକସୀକୁ କହିଲା । ୬ । "ହେ ପୁତ୍ରି! ବର୍ତ୍ତମାନ ତୋତେ ବିବାହ ପ୍ରଦାନ କରିବାର ସମୟ ଉପସ୍ଥିତ ହୋଇଅଛି । ତୋର ଯୌବନ ଅତିବାହିତ ହୋଇ ଯାଉଅଛି । କାଳେ ମୁଁ ନାହିଁ କରିଦେବି ଏହି ଭୟରେ କୌଣସି ବିବାହାର୍ଥୀ ତୋତେ ମାଗିବାକୁ ମୋ ପାଖକୁ ଆସୁନାହାନ୍ତି । ୭ । ହେ ପୁତ୍ରି ! ତୁ ସାକ୍ଷାତ ଲକ୍ଷ୍ମୀଙ୍କ ସଦୃଶ ସମସ୍ତ ଗୁଣରେ ଭୂଷିତ ହୋଇଅଛୁ । ଅତଏବ ଆମେ ସମସ୍ତେ ଧର୍ମବୁଦ୍ଧିରେ ଆବଦ୍ଧ ହୋଇ ରହିଅଛୁ ଏବଂ ତୋର ଯୋଗ୍ୟ ବର ଖୋଜୁଅଛୁ । ୮ । ମାନୀ ଲୋକ ପକ୍ଷରେ କନ୍ୟାର ପିତା ହେବା ବଡ଼ ଦୁଃଖକର ଅଟେ । କାରଣ କନ୍ୟାର ବିବାହ କିପରି ବର ସହିତ ହେବ ତାହା କେହି ଆଗରୁ ଜାଣିପାରେ ନାହିଁ ।୯। ମାତୃକୁଳକୁ

ମାତୁଃ କୁଳଂ ପିତୃକୁଳଂ ଯତ୍ର ଚୈବ ପ୍ରଦୀୟତେ ।
କୁଳତ୍ରୟଂ ସଦା କନ୍ୟା ସଂଶୟେ ସ୍ଥାପ୍ୟ ତିଷ୍ଠତି ।୧୦।
ସା ତ୍ୱଂ ମୁନିବରଂ ଶ୍ରେଷ୍ଠଂ ପ୍ରଜାପତିକୁଲୋଦ୍ଭବମ୍ ।
ଭଜ ବିଶ୍ରବସଂ ପୁତ୍ରି ପୌଲସ୍ତ୍ୟଂ ବରୟ ସ୍ୱୟମ୍ ।୧୧।
ଈଦୃଶାସ୍ତେ ଭବିଷ୍ୟନ୍ତି ପୁତ୍ରାଃ ପୁତ୍ରି ନ ସଂଶୟଃ ।
ତେଜସା ଭାସ୍କରସମୋ ଯାଦୃଶୋଽୟଂ ଧନେଶ୍ୱରଃ ।୧୨।
ସା ତୁ ତଦ୍‌ବଚନଂ ଶ୍ରୁତ୍ୱା କନ୍ୟକା ପିତୃଗୌରବାତ୍ ।
ତତ୍ରୋପାଗମ୍ୟ ସା ତସ୍ଥୌ ବିଶ୍ରବା ଯତ୍ର ତପ୍ୟତେ ।୧୩।
ଏତସ୍ମିନ୍ନନ୍ତରେ ରାମ ପୁଲସ୍ତ୍ୟତନୟୋ ଦ୍ୱିଜଃ ।
ଅଗ୍ନିହୋତ୍ରମୁପାତିଷ୍ଠଚ୍ଚତୁର୍ଥ ଇବ ପାବକଃ ।୧୪।
ଅବିଚିନ୍ତ୍ୟ ତୁ ତାଂ ବେଲାଂ ଦାରୁଣାଂ ପିତୃଗୌରବାତ୍ ।
ଉପସୃତ୍ୟାଗ୍ରତସ୍ତସ୍ୟ ଚରଣାଧୋମୁଖୀ ସ୍ଥିତା ।୧୫।
ବିଲିଖନ୍ତୀ ମୁହୁର୍ଭୂମିମଙ୍ଗୁଷ୍ଠାଗ୍ରେଣ ଭାମିନୀ ।
ସ ତୁ ତାଂ ପ୍ରେକ୍ଷ୍ୟ ସୁଶ୍ରୋଣୀଂ ପୂର୍ଣ୍ଣଚନ୍ଦ୍ରନିଭାନନାମ୍ ।୧୬।

---

ପିତୃକୁଳକୁ ଏବଂ ଯେଉଁ କୁଳରେ କନ୍ୟାକୁ ଦିଆଯାଏ, ଏହି ତିନି କୁଳକୁ କନ୍ୟା ସର୍ବଦା ସଂଶୟରେ ପକାଇ ରଖେ ।୧୦। ଅତଏବ ତୁ ବ୍ରହ୍ମାଙ୍କ କୁଳରେ ଉତ୍ପନ୍ନ, ପୁଲସ୍ତ୍ୟଙ୍କର ପୁତ୍ର ବିଶ୍ରବା ମୁନିଙ୍କୁ ସ୍ୱୟଂ ଯାଇ ବରଣକର ।୧୧। ହେ ପୁତ୍ରି ! ଏପରି ବିବାହ କଲେ କୁବେର ଓ ସୂର୍ଯ୍ୟଙ୍କ ସଦୃଶ ତେଜସ୍ୱୀ ତୋର ପୁତ୍ରମାନେ ଜାତହେବେ" ।୧୨। ସେହି କନ୍ୟା ନିଜର ପିତାଙ୍କଠାରୁ ଏହି କଥା ଶୁଣି ଓ ନିଜର ପିତାଙ୍କ ଗୌରବ ରକ୍ଷାକରି ବିଶ୍ରବାମୁନି ଯେଉଁଠାରେ ତପସ୍ୟା କରୁଥିଲେ ସେହିଠାରେ ଯାଇ ଠିଆହୋଇ ରହିଲା ।୧୩। ହେ ରାମ ! ସେହି ସମୟରେ ପୁଲସ୍ତ୍ୟପୁତ୍ର ବ୍ରାହ୍ମଣଶ୍ରେଷ୍ଠ ବିଶ୍ରବା ମୁନି ଚତୁର୍ଥ ଅଗ୍ନି ସଦୃଶ ଅଗ୍ନିହୋତ୍ର ଯଜ୍ଞରେ ପ୍ରବୃତ୍ତ ଥିଲେ ।୧୪। କୈକସୀ ସେହି ଦାରୁଣ ପ୍ରଦୋଷକାଳ କଥା କିଛି ବିଚାର ନ କରି ନିଜର ପିତାଙ୍କ କଥାର ଗୌରବ ରକ୍ଷାକରି ମୁନିଙ୍କ ସମ୍ମୁଖରେ ଯାଇ ନିଜର ପାଦତଳକୁ ଦୃଷ୍ଟି ଅର୍ଥାତ୍ ମୁହଁପୋତି ଠିଆହେଲା ।୧୫। ସେହି ଦୀପ୍ତିମନ୍ତା କନ୍ୟା ବାରମ୍ବାର ନିଜର ପାଦର ଅଙ୍ଗୁଷ୍ଠର ଅଗ୍ରଭାଗ ଦ୍ୱାରା ଭୂମିକୁ ଖୋଳୁଥିଲା । ସେହି ସମୟରେ ପୂର୍ଣ୍ଣଚନ୍ଦ୍ରମୁଖୀ ସେହି ପରମସୁନ୍ଦରୀଙ୍କୁ ଦେଖି

ଅବ୍ରବୀତ୍ ପରମୋଦାରୋ ଦୀପ୍ୟମାନାଂ ସ୍ୱତେଜସା ।
ଭଦ୍ରେ କସ୍ୟାସି ଦୁହିତା କୁତୋ ବା ତ୍ୱମିହାଗତା ।
କିଂ କାର୍ଯ୍ୟଂ କସ୍ୟ ବା ହେତୋସ୍ତତ୍ତ୍ୱତୋ ବ୍ରୂହି ଶୋଭନେ ।୧୭।
ଏବମୁକ୍ତା ତୁ ସା କନ୍ୟା କୃତାଞ୍ଜଳିରଥାବ୍ରବୀତ୍ ।
ଆତ୍ମପ୍ରଭାବେଣ ମୁନେ ଜ୍ଞାତୁମର୍ହସି ମେ ମତମ୍ । ୧୮ ।
କିଂ ତୁ ମାଂ ବିଦ୍ଧି ବ୍ରହ୍ମର୍ଷେ ଶାସନାତ୍ ପିତୁରାଗତା ।
କୈକସୀ ନାମ ନାମ୍ନାହଂ ଶେଷଂ ତ୍ୱଂ ଜ୍ଞାତୁମର୍ହସି । ୧୯ ।
ସ ତୁ ଗତ୍ୱା ମୁନିର୍ଧ୍ୟାନଂ ବାକ୍ୟମେତଦୁବାଚ ହ ।
ବିଜ୍ଞାତଂ ତେ ମୟା ଭଦ୍ରେ କାରଣଂ ଯନ୍ମନୋଗତମ୍ । ୨୦ ।
ସୁତାଭିଲାଷୋ ମତ୍ତସ୍ତେ ମତ୍ତମାତଙ୍ଗଗାମିନି ।
ଦାରୁଣାୟାଂ ତୁ ବେଳାୟାଂ ଯସ୍ମାତ୍ତ୍ୱଂ ମାମୁପସ୍ଥିତା । ୨୧ ।
ଶୃଣୁ ତସ୍ମାତ୍ ସୁତାନ୍ ଭଦ୍ରେ ଯାଦୃଶାନ୍ ଜନୟିଷ୍ୟସି ।
ଦାରୁଣାନ୍ ଦାରୁଣାକାରାନ୍ ଦାରୁଣାଭିଜନପ୍ରିୟାନ୍ । ୨୨ ।
ପ୍ରସବିଷ୍ୟସି ସୁଶ୍ରୋଣି ରାକ୍ଷସାନ୍ କ୍ରୂରକର୍ମଣଃ ।
ସା ତୁ ତଦ୍ବଚନଂ ଶ୍ରୁତ୍ୱା ପ୍ରଣିପତ୍ୟାବ୍ରବୀଦ୍ ବଚଃ । ୨୩ ।

---

ପରମ ଉଦାର ବିଶ୍ରବା ମୁନି ନିଜର ତେଜରେ ଦେଦୀପ୍ୟମାନ ହେଉଥିବା ସେହି କନ୍ୟାକୁ କହିଲେ, "ହେ ସୁନ୍ଦରି ! ତୁମେ କାହାର କନ୍ୟା, କି ହେତୁରୁ ଏବଂ କି ଉଦ୍ଦେଶ୍ୟରେ ଏଠାକୁ ଆସିଅଛ ?"। ୧୬-୧୭ । ମୁନି ଏପରି କହିବା ଉତ୍ତାରୁ ସେହି କନ୍ୟା କର ଯୋଡ଼ି କହିଲି, "ହେ ମୁନେ ! ଆପଣ ତ ନିଜର ତପସ୍ୟା ପ୍ରଭାବରେ ମୋର ମନର କଥା ଜାଣିପାରନ୍ତି । ୧୮ । କିନ୍ତୁ ହେ ବ୍ରହ୍ମର୍ଷେ ! ଆପଣ ଜାଣନ୍ତୁ ଯେ ମୁଁ ମୋର ପିତାଙ୍କର ଆଦେଶରେ ଏଠାକୁ ଆସିଅଛି ଓ ମୋର ନାମ କୈକସୀ ! ଅବଶିଷ୍ଟ କଥା ଆପଣ ନିଜେ ଜାଣିପାରନ୍ତି" । ୧୯ । ଅନନ୍ତର ବିଶ୍ରବା ମୁନି ଧ୍ୟାନକରି ଏବଂ ତାହାର ଆସିବାର ପ୍ରୟୋଜନ ଜାଣି ତାକୁ କହିଲେ, "ହେ ଭଦ୍ରେ ! ମୁଁ ତୁମ ମନକଥା ଜାଣିଗଲି । ୨୦ । ହେ ମତ୍ତଗଜେନ୍ଦ୍ରଗାମିନି ! ମୋ ଆଡ଼ୁ ପୁତ୍ର ଉତ୍ପାଦନ କରାଇବା ତୁମର ଅଭିଳାଷ ଅଛି; କିନ୍ତୁ ତୁମେ କୁସମୟରେ ମୋ ପାଖକୁ ଆସିଥିବାରୁ, ହେ ଭଦ୍ରେ ! ତୁମେ କି ପ୍ରକାର ପୁତ୍ର ଜନ୍ମକରିବ ତାହା ମୋଠାରୁ ଶୁଣ । ତୁମର ପୁତ୍ରମାନେ ବଡ଼ କ୍ରୂରକର୍ମା ହେବେ, ସେମାଙ୍କର ଆକୃତି ମଧ୍ୟ ଭୟଙ୍କର ହେବ ଏବଂ କ୍ରୂରକର୍ମା ବନ୍ଧୁମାନଙ୍କ ପ୍ରତି ହିଁ ସେମାନଙ୍କର ପ୍ରୀତି ହେବ । ୨୧-୨୨ । ହେ ସୁଶ୍ରୋଣି ! ତୁମେ କ୍ରୂରକର୍ମକାରୀ ରାକ୍ଷସମାନଙ୍କୁ ଜନ୍ମକରିବ ।" ବିଶ୍ରବାଙ୍କର କଥା ଶୁଣି କୈକସୀ ତାଙ୍କୁ ପ୍ରଣାମ କରି

ଭଗବନ୍ନୀଦୃଶାନ୍ ପୁତ୍ରାଂସ୍ତ୍ୱତ୍ତୋଽହଂ ବ୍ରହ୍ମବାଦନଃ ।
ନେଚ୍ଛାମି ସୁଦୁରାଚାରାନ୍ ପ୍ରସାଦଂ କର୍ତ୍ତୁମର୍ହସି । ୨୪ ।
କନ୍ୟୟା ତ୍ୱେବମୁକ୍ତସ୍ତୁ ବିଶ୍ରବା ମୁନିପୁଙ୍ଗବଃ ।
ଉବାଚ କୈକସୀଂ ଭୂୟଃ ପୂର୍ଣେନ୍ଦୁରିବ ରୋହିଣୀମ୍ । ୨୫ ।
ପଶ୍ଚିମୋ ଯସ୍ତବ ସୁତୋ ଭବିଷ୍ୟତି ଶୁଭାନନେ ।
ମମ ବଂଶାନୁରୂପଃ ସ ଧର୍ମାତ୍ମା ଚ ଭବିଷ୍ୟତି । ୨୬ ।
ଏବମୁକ୍ତା ତୁ ସା କନ୍ୟା ରାମ କାଲେନ କେନଚିତ୍ ।
ଜନୟାମାସ ବୀଭତ୍ସଂ ରକ୍ଷୋରୂପଂ ସୁଦାରୁଣମ୍ । ୨୭ ।
ଦଶଗ୍ରୀବଂ ମହାଦଂଷ୍ଟ୍ରଂ ନୀଳାଞ୍ଜନଚୟୋପମମ୍ ।
ତାମ୍ରୋଷ୍ଠଂ ବିଂଶତିଭୁଜଂ ମହାସ୍ୟଂ ଦୀପ୍ତମୂର୍ଧଜମ୍ । ୨୮ ।
ତସ୍ମିନ୍ ଜାତେ ତୁ ତତ୍କାଲେ ସଜ୍ୱାଲକବଲାଃ ଶିବାଃ ।
କ୍ରବ୍ୟାଦାଶ୍ଚାପସବ୍ୟାନି ମଣ୍ଡଲାନି ପ୍ରଚକ୍ରମୁଃ । ୨୯ ।
ବବର୍ଷ ରୁଧିରଂ ଦେବୋ ମେଘାଶ୍ଚ ଖରନିସ୍ୱନାଃ ।
ପ୍ରବଭୌ ନ ଚ ସୂର୍ଯ୍ୟୋ ବୈ ମହୋଲ୍‌କାଶ୍ଚାପତନ୍ ଭୁବି ।୩୦।

---

କହିଲ । ୨୩ । "ହେ ଭଗବନ୍ ! ଆପଣଙ୍କ ପରି ବ୍ରହ୍ମବାଦୀଙ୍କଠାରୁ ମୁଁ ଏପରି ଦୁରାଚାରୀ ପୁତ୍ର ଜନ୍ମ କରିବାକୁ ଚାହୁଁନାହିଁ । ଅତଏବ ଆପଣ ମୋ ପ୍ରତି ଅନୁଗ୍ରହ କରନ୍ତୁ" । ୨୪ । ମୁନିଶ୍ରେଷ୍ଠ ବିଶ୍ରବା ସେ କନ୍ୟାର ଏହି କଥା ଶୁଣି ଚନ୍ଦ୍ର ରୋହିଣୀକୁ କହିଲପରି କୈକସୀକୁ କହିଲେ । ୨୫ । "ହେ ଶୁଭାନନେ ! ତୁମ୍ଭର ଯେ ଶେଷ ପୁତ୍ର ଜାତ ହେବ ସେ ମୋର ବଂଶାନୁରୂପ ଧର୍ମାତ୍ମା ହେବ" ।୨୬। ହେ ରାମ ! ବିଶ୍ରବା ମୁନି ସେ କନ୍ୟାକୁ ଏହି ପ୍ରକାର କହିଲେ । ତଦନନ୍ତର କିଛିକାଳ ପରେ ସେ ଅତି ଭୟଙ୍କର ଏବଂ ବୀଭତ୍ସ ବିକଟରୂପୀ ପୁତ୍ର ଜାତକଲା । ୨୭ । ତାହାର ଦଶଟି ମୁଣ୍ଡ ଥିଲ ଏବଂ ଦାନ୍ତଗୁଡ଼ିକ ଅତି ବଡ଼ ବଡ଼ ଥିଲା । ତାହାର ଶରୀରର ରଙ୍ଗ ନୀଳକଜ୍ଜଳ ବର୍ଣ୍ଣପରି ହୋଇଥିଲ, ଆକାର ପର୍ବତସଦୃଶ ହୋଇଥିଲ ଓଠ ତମ୍ବାପରି ରକ୍ତବର୍ଣ୍ଣ ଥିଲ ଏବଂ ତାର କୋଡ଼ିଏଟି ବାହୁ ଥିଲା । ତାର ମୁହଁ ଖୁବ ବଡ଼ ଥିଲା ଏବଂ ମୁଣ୍ଡର ବାଳ ଚକଚକ୍ୟଶାଳୀ ଥିଲା । ୨୮ । ସେ ଜନ୍ମହେବା- ମାତ୍ରେ ଶୃଗାଳମାନେ ଜ୍ୱାଳା ଉଦ୍‌ଗିରଣ କରିବାକୁ ଲଗିଲେ ! ମାଂସାହାରୀ ଜୀବଜନ୍ତୁ- ମାନେ ବାମ ଆଡ଼କୁ ପ୍ରଦକ୍ଷିଣ କରି ଚକ୍ରାକାରରେ ବୁଲିବାକୁ ଲଗିଲେ । ୨୯ । ବୃଷ୍ଟିଦେବ ରୁଧିର ବର୍ଷା କରିବାକୁ ଲଗିଲେ । ମେଘମାନେ ଅତିଘୋରରବରେ ଗର୍ଜନ

ଚକମ୍ପେ ଜଗତୀ ଚୈବ ବବୁର୍ବାତାଃ ସୁଦାରୁଣାଃ ।
ଅକ୍ଷୋଭ୍ୟଃ କ୍ଷୁଭିତଶ୍ଚୈବ ସମୁଦ୍ରଃ ସରିତାଂ ପତିଃ । ୩୧ ।
ଅଥ ନାମାକରୋତ୍ତସ୍ୟ ପିତାମହସମଃ ପିତା ।
ଦଶଗ୍ରୀବଃ ପ୍ରସୂତୋଽୟଂ ଦଶଗ୍ରୀବୋ ଭବିଷ୍ୟତି । ୩୨ ।
ତସ୍ୟ ତ୍ୱନନ୍ତରଂ ଜାତଃ କୁମ୍ଭକର୍ଣୋ ମହାବଳଃ ।
ପ୍ରମାଣାଦ୍ ଯସ୍ୟ ବିପୁଳଂ ପ୍ରମାଣଂ ନେହ ବିଦ୍ୟତେ । ୩୩।
ତତଃ ଶୂର୍ପଣଖା ନାମ ସଂଜଜ୍ଞେ ବିକୃତାନନା ।
ବିଭୀଷଣଶ୍ଚ ଧର୍ମାତ୍ମା କୈକସ୍ୟାଃ ପଶ୍ଚିମଃ ସୁତଃ । ୩୪ ।
ତସ୍ମିଞ୍ଜାତେ ମହାସତ୍ତ୍ୱେ ପୁଷ୍ପବର୍ଷଂ ପପାତ ହ ।
ନଭଃସ୍ଥାନେ ଦୁନ୍ଦୁଭୟୋ ଦେବାନାଂ ପ୍ରାଣଦଂସ୍ତଦା ।
ବାକ୍ୟଂ ଚୈବାନ୍ତରିକ୍ଷେ ଚ ସାଧୁ ସାଧ୍ୱିତି ତତ୍ତଥା । ୩୫ ।
ତୌ ତୁ ତତ୍ର ମହାରଣ୍ୟେ ବବୃଧାତେ ମହୌଜସୌ ।
ତେଷାଂ କ୍ରୂରୋ ଦଶଗ୍ରୀବୋ ଲୋକୋଦ୍‌ବେଗକରୋଽଭବତ୍ ॥
କୁମ୍ଭକର୍ଣଃ ପ୍ରମତ୍ତସ୍ତୁ ମହର୍ଷୀନ୍ ଧର୍ମବତ୍ସଲାନ୍ ।
ତ୍ରୈଲୋକ୍ୟଂ ଭକ୍ଷୟନ୍ନିତ୍ୟାସଂତୁଷ୍ଟୋ ବିଚଚାର ହ । ୩୬

---

କରିବାକୁ ଲାଗିଲେ । ସୂର୍ଯ୍ୟଙ୍କର ପ୍ରକାଶ ମନ୍ଦପଡ଼ିଗଲା, ଆକାଶରୁ ବଡ଼ ବଡ଼ ଉଲ୍‌କା-ମାନ ପୃଥିବୀ ଉପରେ ପଡ଼ିବାକୁ ଲାଗିଲେ । ୩୦ । ପୃଥିବୀ ଦୋହଲିବାକୁ ଲାଗିଲା । ଦାରୁଣ ପବନ ବହିବାକୁ ଲାଗିଲା । ଅକ୍ଷୋଭ୍ୟ ନଦୀପତି ସମୁଦ୍ର ମଧ୍ୟ କ୍ଷୁଭିତ ହୋଇଗଲା । ୩୧ । ଅନନ୍ତର ପିତାମହ ବ୍ରହ୍ମାଙ୍କ ସଦୃଶ ପ୍ରଭାବଶାଳୀ ତାର ପିତା ତାର ନାମକରଣ କଲେ । ସେ କହିଲେ, "ଏହି ପିଲା ଦଶଟି ମୁଣ୍ଡ ଥାଇ ଜାତ ହୋଇ-ଅଛି । ଅତଏବ ଏହାର ନାମ ଦଶଗ୍ରୀବ ହେବ" । ୩୨ । ତଦନନ୍ତର କୈକସୀର ଗର୍ଭରୁ ମହାବଳୀ କୁମ୍ଭକର୍ଣ୍ଣ ଜାତହେଲା । ତା ସଦୃଶ ଲମ୍ବ ଓ ଓସାରର ଅନ୍ୟ କୌଣସି ପ୍ରାଣୀ ଏ ଜଗତରେ ନ ଥିଲା । ୩୩ । ତଦନନ୍ତର ବିକୃତବଦନା ସୂର୍ପଣଖା ନାମରେ କନ୍ୟା ଜାତହେଲା । କୈକସୀର ଶେଷ ପୁତ୍ର ଧର୍ମାତ୍ମା ବିଭୀଷଣ ଜନ୍ମହେଲେ । ୩୪ । ଧର୍ମାତ୍ମା ବିଭୀଷଣ ଯେଉଁ ସମୟରେ ଜନ୍ମହେଲେ ସେତେବେଳେ ଆକାଶରୁ ପୁଷ୍ପବୃଷ୍ଟି ହେଲା । ଦେବତାମାନେ ଦୁନ୍ଦୁଭି ବଜାଇଲେ । ଆକାଶରେ ବାରମ୍ବାର ସାଧୁ ସାଧୁ ଶୁଣାଗଲା । ୩୫ । ସେହି ମହାରଣ୍ୟରେ ସେହି ଦୁଇ ମହାତେଜସ୍ୱୀ ଭାଇ ବଢ଼ିବାକୁ ଲାଗିଲେ । ସେମାନଙ୍କ ମଧ୍ୟରେ ଦଶଗ୍ରୀବ ଅତି କ୍ରୂର ଏବଂ ଲୋକମାନଙ୍କ ମଧ୍ୟରେ ଉଦ୍‌ବେଗକାରୀ ହୋଇଥିଲା । ୩୬ । କୁମ୍ଭକର୍ଣ୍ଣ ପ୍ରମତ୍ତ ହୋଇ ଧର୍ମବତ୍ସଳ ମହର୍ଷି-ମାନଙ୍କୁ ନିତ୍ୟ ଭକ୍ଷଣକରି ମଧ୍ୟ ଅସନ୍ତୁଷ୍ଟ ହୋଇ ତ୍ରିଲୋକରେ ବିଚରଣ କରିବାକୁ

ବିଭୀଷଣସ୍ତୁ ଧର୍ମାତ୍ମା ନିତ୍ୟଂ ଧର୍ମେ ବ୍ୟବସ୍ଥିତଃ ।
ସ୍ୱାଧ୍ୟାୟନିୟତାହାର ଉବାସ ବିଜିତେନ୍ଦ୍ରିୟଃ । ୩୮ ।
ଅଥ ବୈଶ୍ରବଣୋ ଦେବସ୍ତତ୍ର କାଲେନ କେନଚିତ୍ ।
ଆଗତଃ ପିତରଂ ଦ୍ରଷ୍ଟୁଂ ପୁଷ୍ପକେଣ ଧନେଶ୍ୱରଃ । ୩୯ ।
ତଂ ଦୃଷ୍ଟ୍ୱା କୈକସୀ ତତ୍ର ଜ୍ୱଲନ୍ତମିବ ତେଜସା ।
ଆଗମ୍ୟ ରାକ୍ଷସୀ ତତ୍ର ଦଶଗ୍ରୀବମୁବାଚ ହ । ୪୦ ।
ପୁତ୍ର ବୈଶ୍ରବଣଂ ପଶ୍ୟ ଭ୍ରାତରଂ ତେଜସା ବୃତମ୍ ।
ଭ୍ରାତୃଭାବେ ସମେ ଚାପି ପଶ୍ୟାତ୍ମାନଂ ତ୍ୱମୀଦୃଶମ୍ । ୪୧ ।
ଦଶଗ୍ରୀବ ତଥା ଯତ୍ନଂ କୁରୁଷ୍ୱାମିତବିକ୍ରମ ।
ଯଥା ତ୍ୱମପି ମେ ପୁତ୍ର ଭବ ବୈଶ୍ରବଣୋପମଃ । ୪୨ ।
ମାତୁସ୍ତଦ୍‌ବଚନଂ ଶ୍ରୁତ୍ୱା ଦଶଗ୍ରୀବଃ ପ୍ରତାପବାନ୍ ।
ଅମର୍ଷମତୁଲଂ ଲେଭେ ପ୍ରତିଜ୍ଞାଂ ଚାକରୋତ୍ତଦା । ୪୩ ।
ସତ୍ୟଂ ତେ ପ୍ରତିଜାନାମି ଭ୍ରାତୃତୁଲ୍ୟୋଽଧିକୋଽପି ବା ।
ଭବିଷ୍ୟାମ୍ୟୋଜସା ଚୈବ ସଂତାପଂ ତ୍ୟଜ ହୃଦ୍‌ଗତମ୍ । ୪୪ ।

---

ଲାଗିଲା । ୩୭ । ବିଭୀଷଣ ସଦା ଧର୍ମରେ ରହି ସଂଯତ ଆହାର କରୁଥିଲେ ଏବଂ ବେଦାଧ୍ୟୟନ କରୁଥିଲେ । ସେ ଜିତେନ୍ଦ୍ରିୟ ହୋଇ କାଳ କଟାଉଥିଲେ । ୩୮ । ଅନନ୍ତର କିଛିଦିନ ବାଦ୍ ଦିନେ ପୁଷ୍ପକ ବିମାନରେ ବସି ବୈଶ୍ରବଣ କୁବେର ନିଜର ପିତାଙ୍କୁ ଦେଖିବା ପାଇଁ ଆସିଥିଲେ । ୩୯ । କୁବେରଙ୍କୁ ନିଜର ତେଜରେ ପ୍ରଜ୍ୱଳିତ ହେଉଥିବାର ଦେଖି ରାକ୍ଷସୀ କୈକସୀ ସେଠାକୁ ଆସି ନିଜର ପୁତ୍ର ଦଶଗ୍ରୀବକୁ କହିଲା । ୪୦ । "ହେ ପୁତ୍ର ! ନିଜର ଭାଇ ବୈଶ୍ରବଣ କୁବେରଙ୍କୁ ଦେଖ । ସେ କିପରି ତେଜରେ ଦେଦୀପ୍ୟମାନ ହେଉଛନ୍ତି । ତୁମେ ଦୁହେଁ ଏକା ଭାଇ ହୋଇଥିଲେ ମଧ୍ୟ ତୁ ନିଜକୁ ଜାଣି ଦେଖ, ତୁ କିପରି ହୋଇଛୁ । ୪୧ । ଅତଏବ ହେ ଦଶଗ୍ରୀବ ! ତୁ ଏପରି ଯତ୍ନକର ଯେପରିକି ତୁ ମଧ୍ୟ କୁବେରଙ୍କ ସଦୃଶ ହୋଇଯିବୁ" ।୪୨। ଦଶଗ୍ରୀବ ମାତାଙ୍କର ଏହି କଥା ଶୁଣି ଭାଇ କୁବେରଙ୍କର ଐଶ୍ୱର୍ଯ୍ୟ ଦେଖି ବିଶେଷ ଈର୍ଷାନ୍ୱିତ ହେଲା ଏବଂ ସେତେବେଳେ ସଙ୍ଗେ ସଙ୍ଗେ ପ୍ରତିଜ୍ଞା କଲା । ୪୩ । ହେ ମାତଃ ! ମୁଁ ତୁମ ନିକଟରେ ପ୍ରତିଜ୍ଞା କରୁଛି ଯେ ମୁଁ ମଧ୍ୟ ନିଜର ପରାକ୍ରମରେ ମୋର ଭାଇ କୁବେରଙ୍କ ସମାନ ବା ତାଙ୍କଠାରୁ ଅଧିକ ହୋଇଯିବି । ଅତଏବ ତୁମେ ମନରୁ ସନ୍ତାପ ଦୂର କର" । ୪୪ । ସେହି କ୍ରୋଧ

ତତସ୍ତେନୈବ କୋପେନ ଦଶଗ୍ରୀବଃ ସହାନୁଜଃ ।
ଚିକୀର୍ଷୁର୍ଦୁଷ୍କରଂ କର୍ମ ତପସେ ଧୃତମାନସଃ । ୪୫ ।
ପ୍ରାପ୍ସ୍ୟାମି ତପସା କାମମିତି କୃତ୍ୱାଧ୍ୟବସ୍ୟ ଚ ।
ଆଗଚ୍ଛଦାତ୍ମସିଦ୍ଧ୍ୟର୍ଥଂ ଗୋକର୍ଣସ୍ୟାଶ୍ରମଂ ଶୁଭମ୍ ।୪୬।
ସ ରାକ୍ଷସସ୍ତତ୍ର ସହାନୁଜସ୍ତଦା
ତପଶ୍ଚକାରାତୁଲମୁଗ୍ରବିକ୍ରମଃ ।
ଅତୋଷୟଚ୍ଚାପି ପିତାମହଂ ବିଭୁମ୍
ଦଦୌ ସ ତୁଷ୍ଟଶ୍ଚ ବରାଞ୍ଜୟାବହାନ୍ । ୪୭ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ରାବଣାଦ୍ୟୁତ୍ପତ୍ତିର୍ନାମ ନବମଃ ସର୍ଗଃ ।

---

ହେତୁରୁ ଦଶଗ୍ରୀବ ମନରେ ତପସ୍ୟା କରିବାପାଇଁ ସଙ୍କଳ୍ପ କରି ନିଜର କନିଷ୍ଠ ଭାଇମାନଙ୍କୁ ସଙ୍ଗେ ଧରି କଠୋର ତପସ୍ୟା କରିବାପାଇଁ ଉଦ୍ୟତ ହେଲା ।୪୫। ସେ ନିଜର ମନରେ ନିଶ୍ଚୟ କଲା ଯେ ମୁଁ ନିଜର ତପସ୍ୟାଦ୍ୱାରା ଅଭୀଷ୍ଟ ଲାଭ କରିବି । ଅତଏବ ସିଦ୍ଧି ପ୍ରାପ୍ତି ନିମନ୍ତେ ସେ ଗୋକର୍ଣ୍ଣ ନାମକ ଏକ ଶୁଦ୍ଧ ଆଶ୍ରମକୁ ଆସିଲା । । ୪୬ । ଦଶଗ୍ରୀବ ନିଜର ସାନ ଭାଇମାନଙ୍କ ସହିତ ଅତି ଉଗ୍ର ତପସ୍ୟା କଲା ଏବଂ ନିଜର ତପସ୍ୟା ବଳରେ ବ୍ରହ୍ମାଙ୍କୁ ପ୍ରସନ୍ନ କରାଇଲା । ତାହା ଫଳରେ ବ୍ରହ୍ମା ତାଙ୍କୁ ଜୟପ୍ରଦାନକାରୀ ଅଭୀଷ୍ଟ ବର ଦେଲେ । ୪୭ ।

# ଦଶମଃ ସର୍ଗଃ

## ରାବଣାଦବରଦାନମ୍

ଅଥାବ୍ରବୀନ୍ମୁନିଂ ରାମଃ କଥଂ ତେ ଭ୍ରାତରୌ ବନେ ।
କୀଦୃଶଂ ତୁ ତଦା ବ୍ରହ୍ମଂସ୍ତପସ୍ତେପୁର୍ମହାବଲାଃ । ୧ ।
ଅଗସ୍ତ୍ୟସ୍ତ୍ୱବ୍ରବୀତ୍ତତ୍ର ରାମଂ ସୁପ୍ରୀତମାନସମ୍ ।
ତାଂସ୍ତାନ୍ ଧର୍ମବିଧୀଂସ୍ତତ୍ର ଭ୍ରାତରସ୍ତେ ସମାବିଶନ୍ । ୨ ।
କୁମ୍ଭକର୍ଣସ୍ତତୋ ଯତ୍ତୋ ନିତ୍ୟଧର୍ମପଥେ ସ୍ଥିତଃ ।
ତତାପ ଗ୍ରୀଷ୍ମକାଲେ ତୁ ପଞ୍ଚାଗ୍ନୀନ୍ ପରିତଃ ସ୍ଥିତଃ । ୩ ।
ମେଘାମ୍ବୁସିକ୍ତୋ ବର୍ଷାସୁ ବୀରାସନମସେବତ ।
ନିତ୍ୟଂ ଚ ଶିଶିରେ କାଲେ ଜଲମଧ୍ୟପ୍ରତିଶ୍ରୟଃ । ୪ ।
ଏବଂ ବର୍ଷସହସ୍ରାଣି ଦଶ ତସ୍ୟାତ୍ୟଗଚ୍ଛନ୍ମୁଃ ।
ଧର୍ମେ ପ୍ରୟତମାନସ୍ୟ ସତ୍ପଥେ ନିଷ୍ଠିତସ୍ୟ ଚ । ୫ ।

---

# ୧୦ମ ସର୍ଗ

## ( ରାବଣାଦିଙ୍କର ବରଲାଭ )

ଅନନ୍ତର ରାମ ଅଗସ୍ତ୍ୟ ଋଷିଙ୍କୁ କହିଲେ, "ହେ ବ୍ରହ୍ମନ୍ ! ସେହି ମହାବଳୀ ତିନିଭାଇ କିପରି ତପସ୍ୟା କଲେ ସେ କଥା କହନ୍ତୁ" । ୧ । ଏହା ଶୁଣି ଅଗସ୍ତ୍ୟ ପ୍ରସନ୍ନ ହୋଇ ପ୍ରୀତମନା ରାମଙ୍କୁ କହିଲେ, ସେହି ତିନି ଭାଇ ଯେଉଁଠାରେ ଗୋକର୍ଣ୍ଣା-ଶ୍ରମରେ ସମସ୍ତ ଧର୍ମବିଧି ପାଳନ କରି ତପସ୍ୟା ଆରମ୍ଭ କଲେ । ୨ । କୁମ୍ଭକର୍ଣ୍ଣ ତପୋଧର୍ମ ନିୟମାନୁସାରେ ସର୍ବଦା ସଂଯତ ହୋଇ ଧର୍ମପଥରେ ରହି, ଗ୍ରୀଷ୍ମ ସମୟରେ ନିଜର ଚାରିପାଖରେ ଅଗ୍ନି ଜାଳି, ପଞ୍ଚାଗ୍ନି ତପସ୍ୟା କରୁଥିଲା (ଚାରିପାଖରେ ଅଗ୍ନି ଓ ଉପରେ ସୂର୍ଯ୍ୟ; ଏହାକୁ ପଞ୍ଚାଗ୍ନି କହନ୍ତି) । ୩ । ବର୍ଷା-ଋତୁରେ ସେ ବୀରାସନରେ ବସି ବୃଷ୍ଟିଜଳ ସହ୍ୟ କରୁଥିଲା ଏବଂ ଶୀତକାଳରେ ଜଳ ମଧ୍ୟରେ ପଶି ତପସ୍ୟା କରୁଥିଲା । ୪ । ଏହି ପ୍ରକାରେ ତପସ୍ୟା କରି କରି ସେ ଦଶ ହଜାର ବର୍ଷ ବିତାଇଦେଲା । ଏ ସମୟରେ ସେ ସର୍ବଦା ତପସ୍ୟାଧର୍ମର ନିୟମାନୁସାରେ ତଥା ଧର୍ମମାର୍ଗରେ ରହି କେବଳ ତପସ୍ୟାହିଁ କରୁଥିଲା । ୫ ।

ବିଭୀଷଣସ୍ତୁ ଧର୍ମାତ୍ମା ନିତ୍ୟଂ ଧର୍ମପରଃ ଶୁଚିଃ ।
ପଞ୍ଚ ବର୍ଷସହସ୍ରାଣି ପାଦେନୈକେନ ତସ୍ଥିବାନ୍ । ୬ ।
ସମାପ୍ତେ ନିୟମେ ତସ୍ୟ ନନୃତୁଶ୍ଚାପ୍ସରୋଗଣାଃ ।
ପପାତ ପୁଷ୍ପବର୍ଷଂ ଚ କ୍ଷୁଭିତାଶ୍ଚାପି ଦେବତାଃ । ୭ ।
ପଞ୍ଚ ବର୍ଷସହସ୍ରାଣି ସୂର୍ଯ୍ୟଂ ଚୈବାନ୍ୱବର୍ତ୍ତତ ।
ତସ୍ଥୌ ଚୋର୍ଦ୍ଧ୍ୱଶିରୋବାହୁଃ ସ୍ୱାଧ୍ୟାୟେ ଧୃତମାନସଃ । ୮ ।
ଏବଂ ବିଭୀଷଣସ୍ୟାପି ସ୍ୱର୍ଗସ୍ଥସ୍ୟେବ ନନ୍ଦନେ ।
ଦଶ ବର୍ଷସହସ୍ରାଣି ଗତାନି ନିୟତାତ୍ମନଃ । ୯ ।
ଦଶ ବର୍ଷସହସ୍ରାଣି ନିରାହାରୋ ଦଶାନନଃ ।
ପୂର୍ଣ୍ଣେ ବର୍ଷସହସ୍ରେ ତୁ ଶିରଶ୍ଚାଗ୍ନୌ ଜୁହାବ ସଃ । ୧୦ ।
ଏବଂ ବର୍ଷସହସ୍ରାଣି ନବ ତସ୍ୟାତିଚକ୍ରମୁଃ ।
ଶିରାଂସି ନବ ଚାପ୍ୟସ୍ୟ ପ୍ରବିଷ୍ଟାନି ହୁତାଶନମ୍ । ୧୧ ।
ଅଥ ବର୍ଷସହସ୍ରେ ତୁ ଦଶମେ ଦଶମଂ ଶିରଃ ।
ଛେତ୍ତୁକାମେ ଦଶଗ୍ରୀବେ ପ୍ରାପ୍ତସ୍ତତ୍ର ପିତାମହଃ । ୧୨ ।

---

ଧର୍ମାତ୍ମା ବିଭୀଷଣ ସର୍ବଦା ଧର୍ମରେ ତତ୍ପର ରହି ଏବଂ ପବିତ୍ର ହୋଇ ପାଞ୍ଚ ସହସ୍ର ବର୍ଷ ପର୍ଯ୍ୟନ୍ତ ଗୋଟିଏ ପାଦରେ ଭୂମିରେ ଠିଆ ହୋଇ ତପସ୍ୟା କରୁଥିଲେ । ୬ । ଯେତେବେଳେ ବିଭୀଷଣଙ୍କର ତପ ଅନୁଷ୍ଠାନ ପୂର୍ଣ୍ଣ ହେଲା, ସେତେବେଳେ ଅପ୍ସରା-ମାନେ ନୃତ୍ୟ କରିବାକୁ ଲାଗିଲେ, ଆକାଶରୁ ପୁଷ୍ପବୃଷ୍ଟି ପଡ଼ିଲା ଏବଂ ଦେବତା-ମାନେ ବିଚଳିତ ହୋଇପଡ଼ିଲେ । ୭ । ପୁଣି ବିଭୀଷଣ ପାଞ୍ଚ ହଜାର ବର୍ଷ ପର୍ଯ୍ୟନ୍ତ ଉପରକୁ ଦୁଇ ବାହୁ ଓ ମସ୍ତକ ଟେକି ସୂର୍ଯ୍ୟଙ୍କ ଆଡ଼କୁ ଚାହିଁ ରହିଲେ ଏବଂ ବେଦପାଠ କରିବାକୁ ଲାଗିଲେ । ୮ । ଏହି ପ୍ରକାର ସଂଯତ ମନରେ ତପ କରି କରି ବିଭୀଷଣଙ୍କର ନନ୍ଦନବନରେ ସ୍ୱର୍ଗବାସୀମାନଙ୍କ ସମସ୍ତ ବିତିଗଲାପରି ଦଶହଜାର ବର୍ଷ ବିତିଗଲା । ୯ । ଦଶଗ୍ରୀବ ମଧ୍ୟ ନିରାହାର ରହି ଦଶ ହଜାର ବର୍ଷ ପର୍ଯ୍ୟନ୍ତ ତପସ୍ୟା କଲା । ତପସ୍ୟା କରି କରି ଏକସହସ୍ର ବର୍ଷ ପୂର୍ଣ୍ଣ ହୋଇଗଲେ ସେ ନିଜର ଗୋଟିଏ ଗୋଟିଏ ମସ୍ତକ କାଟି ଅଗ୍ନିରେ ଆହୁତି ଦେଉଥିଲା ।୧୦। ଏହି ପ୍ରକାର ତପସ୍ୟା କରି କରି ତାହାର ନଅ ହଜାର ବର୍ଷ ବିତିଗଲା ଏବଂ ସେ ନିଜର ମସ୍ତକମାନଙ୍କରୁ ନଅଟି ମସ୍ତକ ଅଗ୍ନିରେ ହୋମ କରିଦେଲା । ୧୧ । ଯେତେବେଳେ ଦଶ ହଜାର ବର୍ଷ ପୂର୍ଣ୍ଣ ହେଲା, ସେତେବେଳେ ସେ ନିଜର ଶେଷ ଶିରଟି କାଟିବାକୁ ଯାଉଥିବା ସମୟରେ ପିତାମହ ବ୍ରହ୍ମା ସେଠାରେ ଆସି ଉପସ୍ଥିତ ହେଲେ । ୧୨ । ପିତାମହ

ପିତାମହସ୍ତୁ ସୁପ୍ରୀତଃ ସାର୍ଦ୍ଧଂ ଦୈବତୈରୁପସ୍ଥିତଃ ।
ତବ ତାବଦ୍ଦଶଗ୍ରୀବ ପ୍ରୀତୋଽସ୍ମିତ୍ୟଭ୍ୟଭାଷତଃ । ୧୩ ।
ଶୀଘ୍ରଂ ବରୟ ଧର୍ମଜ୍ଞ ବରୋ ଯସ୍ତେଽଭିକାଙ୍‌କ୍ଷିତଃ ।
ତଂ ତେ କାମଂ କରୋମ୍ୟଦ୍ୟ ନ ବୃଥା ତେ ପରିଶ୍ରମଃ । ୧୪ ।
ଅଥାବ୍ରବୀତ୍ ଦଶଗ୍ରୀବଃ ପ୍ରହୃଷ୍ଟେନାନ୍ତରାତ୍ମନା ।
ପ୍ରଣମ୍ୟ ଶିରସା ଦେବଂ ହର୍ଷଗଦ୍‌ଗଦୟା ଗିରା । ୧୫ ।
ଭଗବନ୍ ପ୍ରାଣିନାଂ ନିତ୍ୟଂ ନାନ୍ୟତ୍ର ମରଣାଦ୍ଭୟମ୍ ।
ନାସ୍ତି ମୃତ୍ୟୁସମଃ ଶତ୍ରୁରମରତ୍ୱମହଂ ବୃଣେ । ୧୬ ।
ଏବମୁକ୍ତସ୍ତଦା ବ୍ରହ୍ମା ଦଶଗ୍ରୀବମୁବାଚ ହ ।
ନାସ୍ତି ସର୍ବାମରତ୍ୱଂ ତେ ବରମନ୍ୟଂ ବୃଣୀଷ୍ୱ ମେ । ୧୭ ।
ଏବମୁକ୍ତେ ତଦା ରାମ ବ୍ରହ୍ମଣା ଲୋକକର୍ତ୍ତୃଣା ।
ଦଶଗ୍ରୀବ ଉବାଚେଦଂ କୃତାଞ୍ଜଳିରଥାଗ୍ରତଃ । ୧୮ ।
ସୁପର୍ଣ୍ଣନାଗଯକ୍ଷାଣାଂ ଦୈତ୍ୟଦାନବରକ୍ଷସାମ୍ ।
ଅବଧ୍ୟୋଽହଂ ପ୍ରଜାଧ୍ୟକ୍ଷ ଦେବତାନାଂ ଚ ଶାଶ୍ୱତ । ୧୯ ।

---

ବ୍ରହ୍ମା ଅତିଶୟ ପ୍ରୀତ ହୋଇ ଦେବଗଣଙ୍କ ସହିତ ସେଠାରେ ଉପସ୍ଥିତ ହୋଇ କହିଲେ, "ହେ ଦଶଗ୍ରୀବ ! ମୁଁ ତୁମ ପ୍ରତି ପ୍ରସନ୍ନ ହୋଇଅଛି । ୧୩ । ହେ ଧର୍ମଜ୍ଞ ! ତୁମ୍ଭର ଯେ ବର ମାଗିବାର ଅଛି ତାହା ଶୀଘ୍ର ମାଗ; ମୁଁ ଆଜ ତୁମଲାଗି କଅଣ କରିବ ଯଦ୍ୱାରା ତୁମ୍ଭର ପରିଶ୍ରମ ବ୍ୟର୍ଥ ନ ହେବ ?" ।୧୪। ଏହା ଶୁଣି ରାବଣ ହର୍ଷିତ ମନରେ ବ୍ରହ୍ମାଙ୍କୁ ମୁଣ୍ଡ ନୁଆଁଇ ପ୍ରଣାମ କରି ହର୍ଷଗଦ୍‌ଗଦ ଭାଷାରେ କହିଲା । । ୧୫ । "ହେ ଭଗବନ୍ ! ପ୍ରାଣୀମାନଙ୍କୁ ମୃତ୍ୟୁଭୟ ଯେପରି ଉତ୍ପୀଡ଼ିତ କରେ ଅନ୍ୟ କୌଣସି ଭୟ ସେପରି କରେ ନାହିଁ । କାରଣ ମୃତ୍ୟୁସଦୃଶ ଅନ୍ୟ ଶତ୍ରୁ ନାହିଁ । ଅତଏବ ମୁଁ ଅମର ହେବାକୁ ବର ମାଗୁଛି" । ୧୬ । ଏହା ଶୁଣି ବ୍ରହ୍ମା କହିଲେ, "ପୂର୍ଣ୍ଣ ଅମରତ୍ୱ ତୁମକୁ ମିଳିପାରିବ ନାହିଁ । ସୁତରାଂ ତୁମେ ଅନ୍ୟ କୌଣସି ବର ମାଗ" । ୧୭ । ହେ ରାମ ! ଲୋକକର୍ତ୍ତା ବ୍ରହ୍ମା ଏହା କହିବାରୁ ଦଶଗ୍ରୀବ ତାଙ୍କ ସମ୍ମୁଖରେ ଠିଆ ହୋଇ ହାତ ଯୋଡ଼ି କହିଲା । ୧୮ । "ହେ ପ୍ରଜାଧ୍ୟକ୍ଷ ! ଗରୁଡ଼, ସର୍ପ, ଯକ୍ଷ, ଦୈତ୍ୟ, ଦାନବ, ରାକ୍ଷସ ଓ ଦେବତାମାନଙ୍କ ଠାରୁ ମୋତେ ଚିରକାଳ ନିମନ୍ତେ ଅବଧ୍ୟ କରିଦିଅ ।୧୯। ହେ ଦେବପୂଜିତ !

ନ ହି ଚିନ୍ତା ମମାନ୍ୟେଷୁ ପ୍ରାଣିଷ୍ୱମରପୂଜିତ ।
ତୃଣଭୂତା ହି ତେ ମନ୍ୟେ ପ୍ରାଣିନୋ ମାନୁଷାଦୟଃ । ୨୦ ।
ଏବମୁକ୍ତସ୍ତୁ ଧର୍ମାତ୍ମା ଦଶଗ୍ରୀବେଣ ରକ୍ଷସା ।
ଉବାଚ ବଚନଂ ଦେବଃ ସହ ଦେବୈଃ ପିତାମହଃ । ୨୧ ।
ଭବିଷ୍ୟତ୍ୟେବମେତତ୍ତେ ବଚୋ ରାକ୍ଷସପୁଙ୍ଗବ ।
ଏବମୁକ୍ତ୍ୱା ତୁ ତଂ ରାମ ଦଶଗ୍ରୀବଂ ପିତାମହଃ । ୨୨ ।
ଶୃଣୁ ଚାପି ବରୋ ଭୂୟଃ ପ୍ରୀତସ୍ୟେହ ଶୁଭୋ ମମ ।
ହୁତାନି ଯାନି ଶୀର୍ଷାଣି ପୂର୍ବମଗ୍ନୌ ତ୍ୱୟାନଘ । ୨୩ ।
ପୁନସ୍ତାନି ଭବିଷ୍ୟନ୍ତି ତଥୈବ ତବ ରାକ୍ଷସ ।
ବିତରାମୀହ ତେ ସୌମ୍ୟ ବରଂ ଚାନ୍ୟଂ ଦୁରାସଦମ୍ । ୨୪ ।
ଛନ୍ଦତସ୍ତବ ରୂପଂ ଚ ମନସା ଯଦ୍ୟଥେପ୍ସିତମ୍ ।
ଭବିଷ୍ୟତି ନ ସନ୍ଦେହୋ ମଦ୍ ବରାତ୍ତବ ରାକ୍ଷସ । ୨୫ ।
ଏବଂ ପିତାମହୋକ୍ତସ୍ୟ ଦଶଗ୍ରୀବସ୍ୟ ରକ୍ଷସଃ ।
ଅଗ୍ନୌ ହୁତାନି ଶୀର୍ଷାଣି ପୁନସ୍ତାନ୍ୟୁତ୍ଥିତାନି ଚ । ୨୬ ।
ଏବମୁକ୍ତ୍ୱା ତୁ ତଂ ରାମ ଦଶଗ୍ରୀବଂ ପିତାମହଃ ।
ବିଭୀଷଣମଥୋବାଚ ବାକ୍ୟଂ ଲୋକପିତାମହଃ । ୨୭ ।

---

ମାନଙ୍କ ଛଡ଼ା ଅନ୍ୟ ପ୍ରାଣୀମାନଙ୍କଠାରେ ମୋର ଅନ୍ୟ କୌଣସି ଚିନ୍ତା ନାହିଁ । ମନୁଷ୍ୟାଦି ଅନ୍ୟ ପ୍ରାଣୀମାନଙ୍କୁ ମୁଁ ତୃଣବତ୍ ଜ୍ଞାନକରେ ।" ରାକ୍ଷସ ଦଶଗ୍ରୀବ ଏପରି କହିବାରୁ ଧର୍ମାତ୍ମା ପିତାମହ ବ୍ରହ୍ମା ଦେବତାମାନଙ୍କ ସହିତ ତାଙ୍କୁ ଏହି କଥା କହିଲେ । ୨୧ । "ହେ ରାକ୍ଷସଶ୍ରେଷ୍ଠ ! ତୁମେ ଯାହା କହିଲ ସେ କଥା ସେହିପରି ହେବ ।" ହେ ରାମ ! ବ୍ରହ୍ମା ଦଶଗ୍ରୀବକୁ ଏହା କହି ପୁଣି କହିଲେ, "ହେ ନିଷ୍ପାପ ! ମୁଁ ତୁମ ଉପରେ ବିଶେଷ ପ୍ରସନ୍ନ ହୋଇଅଛି; ସୁତରାଂ ନିଜଆଡ଼ୁ ତୁମକୁ ବର ଦେଉଅଛି ଯେ ତୁମେ ନିଜର ଯେଉଁ ଶିରମାନଙ୍କୁ କାଟି ଅଗ୍ନିରେ ବଳି ଦେଇଛ, ହେ ରାକ୍ଷସ ! ତୁମର ସେହି ଶିରଗୁଡ଼ିକ ପୁଣି ପୂର୍ବବତ୍ ହୋଇଯିବ । ହେ ସୌମ୍ୟ ! ମୁଁ ଆଉ ଗୋଟିଏ ଦୁର୍ଲଭ ବର ତୁମକୁ ଦେଉଅଛି ।୨୨-୨୪ । ତୁମେ ଯେତେବେଳେ ଯେଉଁ ରୂପ ଧାରଣ କରିବାକୁ ଇଚ୍ଛାକରିବ, ସେତେବେଳେ ତୁମର ସେହିପରି ରୂପ ମୋ ପ୍ରଭାବରୁ ହୋଇଯିବ" ।୨୫ । ପିତାମହ ଏପରି କହିବା ଉତ୍ତାରୁ ରାକ୍ଷସ ଦଶଗ୍ରୀବର ଅଗ୍ନିରେ ଆହୁତ ହୋଇଥିବା ଶିରଗୁଡ଼ିକ ପୁଣି ଗଜୁରି ଉଠିଲା । ୨୬ । ହେ ରାମ ! ଲୋକପିତାମହ ବ୍ରହ୍ମା ଏହିପ୍ରକାର ଦଶଗ୍ରୀବକୁ କହିସାରି

ବିଭୀଷଣ ତୁଷ୍ଟୋ ବତ୍ସ ଧର୍ମସଂହିତବୁଦ୍ଧିନା ।
ପରିତୁଷ୍ଟୋଽସ୍ମି ଧର୍ମାତ୍ମନ୍ ବରଂ ବରୟ ସୁବ୍ରତ । ୨୮ ।
ବିଭୀଷଣସ୍ତୁ ଧର୍ମାତ୍ମା ବଚନଂ ପ୍ରାହ ସାଞ୍ଜଳିଃ ।
ବୃତଃ ସର୍ବଗୁଣୈର୍ନିତ୍ୟଂ ଚନ୍ଦ୍ରମା ରଶ୍ମିଭିର୍ଯଥା । ୨୯ ।
ଭଗବନ୍ କୃତକୃତ୍ୟୋଽହଂ ଯନ୍ମେ ଲୋକଗୁରୁଃ ସ୍ୱୟମ୍ ।
ପ୍ରୀତେନ ଯଦି ଦାତବ୍ୟୋ ବରୋ ମେ ଶୃଣୁ ସୁବ୍ରତ ।୩୦ ।
ପରମାପଦ୍‌ଗତସ୍ୟାପି ଧର୍ମେ ମମ ମତିର୍ଭବେତ୍ ।
ଅଶିକ୍ଷିତଂ ଚ ବ୍ରହ୍ମାସ୍ତ୍ରଂ ଭଗବନ୍ ପ୍ରତିଭାତୁ ମେ । ୩୧ ।
ଯା ଯା ମେ ଜାୟତେ ବୁଦ୍ଧିର୍ୟେଷୁ ଯେଷ୍ୱାଶ୍ରମେଷୁ ଚ ।
ସା ସା ଭବତୁ ଧର୍ମିଷ୍ଠା ତଂ ତୁ ଧର୍ମଂ ଚ ପାଲୟେ ।
ଏଷ ମେ ପରମୋଦାର ବରଃ ପରମକୋ ମତଃ । ୩୨ ।
ନ ହି ଧର୍ମାଭିରକ୍ତାନାଂ ଲୋକେ କିଂଚନ ଦୁର୍ଲଭମ୍ ।
ପନଃ ପ୍ରଜାପତିଃ ପ୍ରୀତୋ ବିଭୀଷଣମୁବାଚ ହ । ୩୩ ।

---

ପୁଣି ବିଭୀଷଣଙ୍କୁ କହିଲେ ।୨୭। "ହେ ବତ୍ସ ବିଭୀଷଣ ! ତୁମ୍ଭର ଧର୍ମପରାୟଣ ବୁଦ୍ଧିରେ ମୁଁ ଅତିଶୟ ସନ୍ତୁଷ୍ଟ ହୋଇଅଛି । ଅତଏବ ହେ ଧର୍ମାତ୍ମନ୍, ହେ ସୁବ୍ରତ ! ତୁମେ ବର ମାଗ" । ୨୮ । ଚନ୍ଦ୍ର ଯେପରି ନିଜର ରଶ୍ମିଦ୍ୱାରା ବେଷ୍ଟିତ ହୋଇ ରହିଥାନ୍ତି, ସେହିପରି ସର୍ବଦା ସବୁ ଗୁଣରେ ପରିବେଷ୍ଟିତ ଧର୍ମାତ୍ମା ବିଭୀଷଣ କର ଯୋଡ଼ି କହିଲେ । ୨୯ । "ହେ ଭଗବନ୍ ! ଯେତେବେଳେ ସବୁ ଲୋକର ଗୁରୁ ସ୍ୱୟଂ ବ୍ରହ୍ମା ମୋ ପ୍ରତି ସନ୍ତୁଷ୍ଟ ହୋଇଛନ୍ତି, ସେତେବେଳେ ମୁଁ ସର୍ବଭାବରେ ସିଦ୍ଧକାମ ହୋଇଅଛି । ହେ ସୁବ୍ରତ ! ଯଦି ଆପଣ ମୋ ଉପରେ ପ୍ରସନ୍ନ ହୋଇଅଛନ୍ତି ଏବଂ ମୋତେ ବର ଦେବାକୁ ଇଚ୍ଛା କରୁଅଛନ୍ତି ତେବେ ଆପଣ ମୋତେ ଏହି ବର ଦିଅନ୍ତୁ ଯେ ଘୋର ବିପଦରେ ପଡ଼ିଲେ ମଧ୍ୟ ମୋର ମନ ସର୍ବଦା ଧର୍ମରେ ଅଟଳ ରହିବ । ହେ ଭଗବନ୍ ! କାହାରିଠାରୁ ଶିକ୍ଷା ନ ପାଇ ମଧ୍ୟ ମୋତେ ବ୍ରହ୍ମାସ୍ତ୍ର ପ୍ରୟୋଗର ଶିକ୍ଷା ଜଣାପଡ଼ିଯାଉ । ୩୦-୩୧ । ଯେଉଁ ଆଶ୍ରମରେ ମୁଁ ରହିବି ସେହି ଆଶ୍ରମୋଚିତ ଧର୍ମ ପାଳନ କରିବାରେ ମୋର ନିଷ୍ଠା ଜାତ ହେଉ । ହେ ପରମୋଦାର ! ଏହାହିଁ ମୋର ସର୍ବୋତ୍କୃଷ୍ଟ ଅଭୀଷ୍ଟ ଅଟେ । ୩୨ । କାରଣ ଯାହାର ଧର୍ମ ପ୍ରତି ଅନୁରାଗ ଥାଏ ସେ ବ୍ୟକ୍ତିର ଏ ସଂସାରରେ କିଛିମାତ୍ର ଦୁର୍ଲଭ ହୁଏ ନାହିଁ" । ପ୍ରଜାପତି (ବ୍ରହ୍ମା ଏହା ଶୁଣି ପ୍ରସନ୍ନ

ଧର୍ମିଷ୍ଠସ୍ତ୍ୱଂ ଯଥା ବତ୍ସ ତଥା ଚୈତଦ୍ଭବିଷ୍ୟତି ।
ଯସ୍ମାଦ୍ରାକ୍ଷସଯୋନୌ ତେ ଜାତସ୍ୟାମିତ୍ରନାଶନ । ୩୪ ।
ନାଧର୍ମେ ଜାୟତେ ବୁଦ୍ଧିରମରତ୍ୱଂ ଦଦାମି ତେ ।
ଇତ୍ୟୁକ୍ତ୍ୱା କୁମ୍ଭକର୍ଣାୟ ବରଂ ଦାତୁମୁପସ୍ଥିତମ୍ । ୩୫ ।
ପ୍ରଜାପତିଂ ସୁରାଃ ସର୍ବେ ବାକ୍ୟଂ ପ୍ରାଞ୍ଜଳୟୋଽବ୍ରୁବନ୍ ।
ନ ତାବତ୍ କୁମ୍ଭକର୍ଣାୟ ପ୍ରଦାତବ୍ୟୋ ବରସ୍ତ୍ୱୟା । ୩୬।
ଜାନୀଷେ ହି ଯଥା ଲୋକାଂସ୍ତ୍ରାସୟତ୍ୟେଷ ଦୁର୍ମତିଃ ।
ନନ୍ଦନେଽପ୍ସରସଃ ସପ୍ତ ମହେନ୍ଦ୍ରାନୁଚରା ଦଶ । ୩୭ ।
ଅନେନ ଭକ୍ଷିତା ବ୍ରହ୍ମନ୍ନୃଷୟୋ ମାନୁଷାସ୍ତଥା ।
ଅଲବ୍ଧବରପୂର୍ବେଣ ଯତ୍ କୃତଂ ରାକ୍ଷସେନ ତୁ । ୩୮ ।
ତଦେଷ ବରଲବ୍ଧଃ ସ୍ୟାଦ୍ଭକ୍ଷୟେଦ୍ଭୁବନତ୍ରୟମ୍ ।
ବରବ୍ୟାଜେନ ମୋହୋଽସ୍ମୈ ଦୀୟତାମମିତପ୍ରଭ । ୩୯ ।
ଲୋକାନାଂ ସ୍ୱସ୍ତି ଚୈବଂ ସ୍ୟାଦ୍ଭବେଦସ୍ୟ ଚ ସମ୍ମତିଃ ।
ଏବମୁକ୍ତଃ ସୁରୈର୍ବ୍ରହ୍ମାଚିନ୍ତୟତ୍ ପଦ୍ମସଂଭବଃ । ୪୦ ।

---

ହୋଇ ପୁଣି ବିଭୀଷଣଙ୍କୁ କହିଲେ ।୩୩। "ହେ ବତ୍ସ ! ତୁମେ ଯେପରି ଧର୍ମିଷ୍ଠ, ସେଥିରେ ତୁମେ ଯାହା କହିଲ ତାହାହିଁ ହେବ । ହେ ଶତ୍ରୁନାଶନ ! ତୁମେ ରାକ୍ଷସ-କୁଳରେ ଜନ୍ମ ହୋଇ ମଧ୍ୟ ତୁମ୍ଭର ବୁଦ୍ଧି ଅଧର୍ମ ପ୍ରତି ଆସକ୍ତ ନୁହେଁ । ଅତଏବ ମୁଁ ତୁମକୁ ଅମରତ୍ୱ ପ୍ରଦାନ କରୁଅଛି" । ଏହା କହି ବ୍ରହ୍ମା କୁମ୍ଭକର୍ଣ୍ଣକୁ ବର ଦେବା ପାଇଁ ବାହାରିଲେ । ୩୪-୩୫ । ସେତେବେଳେ ଦେବତାମାନେ ସମସ୍ତେ କର ଯୋଡ଼ି ପ୍ରଜାପତିଙ୍କୁ କହିଲେ, "ହେ ବ୍ରହ୍ମନ୍ ! ଆପଣ କୁମ୍ଭକର୍ଣ୍ଣକୁ ବର ଦିଅନ୍ତୁ ନାହିଁ ।୩୬। କାରଣ ଆପଣ ଜାଣନ୍ତି ଯେ କୌଣସି ବର ନ ପାଇ ମଧ୍ୟ ଏହି ଦୁର୍ମତି ତିନି ଲୋକକୁ ଭୟତ୍ରସ୍ତ କରାଉଅଛି । ନନ୍ଦନବନରେ ସାତ ଅପ୍ସରା ଏବଂ ଇନ୍ଦ୍ରଙ୍କର ଦଶ ଅନୁଚରଙ୍କୁ ଏ ଗ୍ରାସ କରିପକାଇଅଛି । ହେ ବ୍ରହ୍ମନ୍ ! ଋଷି ଓ ମନୁଷ୍ୟମାନଙ୍କୁ ମଧ୍ୟ ଏ ଗ୍ରାସ କରିଦେଇଅଛି । ବର ନ ପାଇ ମଧ୍ୟ ଯେବେ ଏ ରାକ୍ଷସ ଏପରି କାର୍ଯ୍ୟ କରୁଛି, ତେବେ ଏ ବର ପାଇଲେ ତିନି ଭୁବନକୁ ଖାଇ ପକାଇବ । ଅତଏବ ହେ ଅମିତପ୍ରଭ ! ଆପଣ ବର ଛଳନାରେ ଏହାକୁ ମୋହ ହିଁ ପ୍ରଦାନ କରନ୍ତୁ ।୩୭-୩୯। ଏହାଦ୍ୱାରା ଲୋକଙ୍କର କଲ୍ୟାଣ ହେବ । ଏହାର ନିଜର ମନ ମଧ୍ୟ ମାନିଯିବ" । ଦେବତାମାନେ ଏପ୍ରକାର କହିବାରୁ ପଦ୍ମଯୋନି ବ୍ରହ୍ମା

ଚିନ୍ତିତା ଚୈପତସ୍ତେଽସ୍ୟ ପାର୍ଶ୍ୱେଦେବୀ ସରସ୍ୱତୀ ।
ପ୍ରାଞ୍ଜଳିଃ ସା ତୁ ପାର୍ଶ୍ୱସ୍ଥା ବାକ୍ୟଂ ପ୍ରାହ ସରସ୍ୱତୀ । ୪୧ ।
ଇୟମସ୍ମ୍ୟାଗତା ଦେବ କିଂ କାର୍ଯଂ କରବାଣ୍ୟହମ୍ ।
ପ୍ରଜାପତିସ୍ତୁ ତାଂ ପ୍ରାପ୍ତାଂ ପ୍ରାହ ବାକ୍ୟଂ ସରସ୍ୱତୀମ୍ ।୪୨।
ବାଣି ତ୍ୱଂ ରାକ୍ଷସେନ୍ଦ୍ରାସ୍ୟେ ଭବ ଯା ଦେବତେପ୍‌ସିତା ।
ତଥେତ୍ୟୁକ୍ତା ପ୍ରବିଷ୍ଟା ସା ପ୍ରଜାପତିରଥାବ୍ରବୀତ୍ । ୪୩ ।
କୁମ୍ଭକର୍ଣ ମହାବାହୋ ବରଂ ବରୟ ଯୋ ମତଃ ।
କୁମ୍ଭକର୍ଣସ୍ତୁ ତଦ୍ୱାକ୍ୟଂ ଶ୍ରୁତ୍ୱା ବଚନମବ୍ରବୀତ୍ ।୪୪।
ସ୍ୱପ୍ତୁଂ ବର୍ଷାଣ୍ୟନେକାନି ଦେବଦେବ ମମେପ୍‌ସିତମ୍ ।
ଏବମସ୍ତ୍ୱିତି ତଂ ଚୋକ୍ତ୍ୱା ପ୍ରାୟାଦ୍ ବ୍ରହ୍ମା ସୁରୈଃ ସମମ୍ ।୪୫।
ଦେବୀ ସରସ୍ୱତୀ ଚୈବ ରାକ୍ଷସଂ ତଂ ଜହୌ ପୁନଃ ।
ବ୍ରହ୍ମଣା ସହ ଦେବେଷୁ ଗତେଷୁ ଚ ନଭଃସ୍ଥଳମ୍ । ୪୬ ।
ବିମୁକ୍ତୋଽସୌ ସରସ୍ୱତ୍ୟା ସ୍ୱାଂ ସଞ୍ଜ୍ଞାଂ ଚ ତତୋ ଗତଃ ।
କୁମ୍ଭକର୍ଣସ୍ତୁ ଦୁଷ୍ଟାତ୍ମା ଚିନ୍ତୟାମାସ ଦୁଃଖିତଃ । ୪୭ ।

---

ଚିନ୍ତା କଲେ । ୪୦ । ବ୍ରହ୍ମା ଚିନ୍ତା କରିବାମାତ୍ରେ ସରସ୍ୱତୀ ଦେବୀ ତାଙ୍କ ପାଖରେ ଆସି ଉପସ୍ଥିତ ହେଲେ ଏବଂ କର ଯୋଡ଼ି ତାଙ୍କ ନିକଟରେ ଉଭା ହୋଇ କହିଲେ । ୪୧ । "ହେ ଦେବ ! ହେଇଟି ମୁଁ ଆସିଯାଇଅଛି । ମୋତେ କଅଣ କରିବାକୁ ହେବ କହନ୍ତୁ ।" ସରସ୍ୱତୀ ଆସି ଉପସ୍ଥିତ ହୋଇଥିବାର ଦେଖି ବ୍ରହ୍ମା ତାଙ୍କୁ କହିଲେ । ୪୨ । "ହେ ବାଗ୍‌ଦେବି ! ଦେବତାମାନଙ୍କ କାମନାନୁସାରେ ତୁମେ ଏହି ରାକ୍ଷସର କଣ୍ଠରେ ବସି ତାହାକୁ ବତାଇଦିଅ" । ସରସ୍ୱତୀ ଯେ ଆଜ୍ଞା ବୋଲି କହି କୁମ୍ଭକର୍ଣ୍ଣର କଣ୍ଠରେ ପ୍ରବେଶ କଲେ । ଅନନ୍ତର ପ୍ରଜାପତି ବ୍ରହ୍ମା କୁମ୍ଭକର୍ଣ୍ଣକୁ କହିଲେ । ୪୩ । "ହେ ମହାବାହୋ ! କୁମ୍ଭକର୍ଣ୍ଣ ତୁମ୍ଭର ଯାହା ଇଚ୍ଛା ତାହା ମାଗ" । ବ୍ରହ୍ମାଙ୍କର ଏକଥା ଶୁଣି କୁମ୍ଭକର୍ଣ୍ଣ କହିଲା; "ହେ ଦେବଦେବ ! ମୋର ଇଚ୍ଛା ମୁଁ ଅନେକ ବର୍ଷ ଯାଏ ଶୋଇରହିବି" । ବ୍ରହ୍ମା ତାକୁ ତଥାସ୍ତୁ କହି ଦେବତାମାନଙ୍କ ସହ ସେଠାରୁ ଚାଲିଗଲେ । ୪୫ । ସରସ୍ୱତୀ ଦେବୀ ତା ପରେ ତାକୁ ଛାଡ଼ି ବାହାରିଗଲେ । ଦେବତାମାନଙ୍କ ସହିତ ବ୍ରହ୍ମା ମଧ୍ୟ ଆକାଶମଣ୍ଡଳକୁ ଚାଲିଗଲେ । ୪୬ । ଯେତେବେଳେ ସରସ୍ୱତୀ ଦେବୀ କୁମ୍ଭକର୍ଣ୍ଣକୁ ଛାଡ଼ି ଚାଲିଗଲେ ସେତେବେଳେ ସେହି ଦୁଷ୍ଟାତ୍ମା କୁମ୍ଭକର୍ଣ୍ଣ ଦୁଃଖିତ ହୋଇ ଚିନ୍ତା କରିବାକୁ

ଈଦୃଶଂ କିମିଦଂ ବାକ୍ୟଂ ମମାଦ୍ୟ ବଦନାଚ୍ଚ୍ୟୁତମ୍ ।
ଅହଂ ବ୍ୟାମୋହିତୋ ଦେବୈରିତି ମନ୍ୟେ ତଦାଗତୈଃ ।୪୮।
ଏବଂ ଲବ୍‌ଧବରାଃ ସର୍ବେ ଭ୍ରାତରୋ ଦୀପ୍ତତେଜସଃ ।
ଶ୍ଳେଷ୍ମାତକବନଂ ଗତ୍ୱା ତତ୍ର ତେ ନ୍ୟବସନ୍ ସୁଖମ୍ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ରାବଣାଦିବରଦାନଂ ନାମ ଦଶମଃ ସର୍ଗଃ

---

# ଏକାଦଶଃ ସର୍ଗଃ

## ରାବଣଲଙ୍କାପ୍ରାପ୍ତିଃ

ସୁମାଲୀ ବରଲବ୍ଧାଂସ୍ତୁ ଜ୍ଞାତ୍ୱା ଚୈତାନ୍ନିଶାଚରାନ୍ ।
ଉଦତିଷ୍ଠଦ୍ଭୟଂ ତ୍ୟକ୍ତ୍ୱା ସାନୁଗଃ ସ ରସାତଳାତ୍ ।୧।
ମାରୀଚଶ୍ଚ ପ୍ରହସ୍ତଶ୍ଚ ବିରୂପାକ୍ଷୋ ମହୋଦରଃ ।
ଉଦତିଷ୍ଠନ୍ ସୁସଂରବ୍ଧାଃ ସଚିବାସ୍ତସ୍ୟ ରକ୍ଷସଃ ।୨।

---

ଲାଗିଲା । ୪୭ । ଆଜ ମୋ ମୁହଁରୁ ଏପରି କି କଥା ବାହାରିଗଲା । ମୋର ମନେହୁଏ ଯେ ସେତେବେଳେ ଦେବତାମାନେ ଆସି ମୋତେ ମୋହିତ କରି ଦେଇଥିଲେ । ୪୮। ଏହି ପ୍ରକାରେ ସେହି ଦିବ୍ୟତେଜସ୍ୱୀ ଭାଇମାନେ ବର ପାଇ ଶ୍ଳେଷ୍ମାତକ (ବାହାଡ଼ା) ବନକୁ ଯାଇ ସେଠାରେ ସୁଖରେ ବାସ କରିବାକୁ ଲାଗିଲେ ।୪୯।

---

# ୧୧ଶ ସର୍ଗ

## ( ରାବଣର ଲଙ୍କାପ୍ରାପ୍ତି )

ସୁମାଳୀ ଏହି ରାକ୍ଷସମାନଙ୍କର ବରପ୍ରାପ୍ତି କଥା ଜାଣି ଭୟ ଛାଡ଼ି ଅନୁଚର-ମାନଙ୍କ ସହିତ ପାତାଳରୁ ଉଠି ଆସିଲା । ୧ । ସୁମାଳୀର ମନ୍ତ୍ରୀ ମାରୀଚ, ବିରୂପାକ୍ଷ, ପ୍ରହସ୍ତ ଓ ମହୋଦର ପ୍ରଭୃତି ମଧ୍ୟ ଅତ୍ୟନ୍ତ ଉତ୍ସାହିତ ହୋଇ ପାତାଳରୁ ବାହାରିଲେ । ୨ । ସୁମାଳୀ ନିଜର ରାକ୍ଷସଶ୍ରେଷ୍ଠ [illegible]ଙ୍କ ସଙ୍ଗରେ ଧରି

ସୁମାଳୀ ସଚିବୈଃ ସାର୍ଧଂ ବୃତୋ ରାକ୍ଷସପୁଙ୍ଗବୈଃ ।
ଅଭିଗମ୍ୟ ଦଶଗ୍ରୀବଂ ପରିଷ୍ୱଜ୍ୟେଦମବ୍ରବୀତ୍ ।୩।
ଦିଷ୍ଟ୍ୟା ତେ ବତ୍ସ ସଂପ୍ରାପ୍ତଶ୍ଚିନ୍ତିତୋଽୟଂ ମନୋରଥଃ ।
ଯସ୍ତ୍ୱଂ ତ୍ରିଭୁବନଶ୍ରେଷ୍ଠାଲ୍ଲବଧବାନ୍ ବରମୁତ୍ତମମ୍ ।୪।
ଯତ୍କୃତେ ଚ ବୟଂ ଲଙ୍କାଂ ତ୍ୟକ୍ତ୍ୱା ଯାତା ରସାତଳମ୍ ।
ତଦ୍‌ଗତଂ ନୋ ମହାବାହୋ ମହଦ୍‌ବିଷ୍ଣୁକୃତଂ ଭୟମ୍ ।୫।
ଅସକୃତ୍ତଦ୍ଭୟାଦ୍ଭୀତାଃ ପରିତ୍ୟଜ୍ୟ ସ୍ୱମାଳୟମ୍ ।
ବିଦ୍ରୁତାଃ ସହିତାଃ ସର୍ବେ ପ୍ରବିଷ୍ଟାଃ ସ୍ମ ରସାତଳମ୍ ।୬।
ଅସ୍ମଦୀୟା ଚ ଲଙ୍କେୟଂ ନଗରୀ ରାକ୍ଷସୋଚିତା ।
ନିବେଶିତା ତବ ଭ୍ରାତ୍ରା ଧନାଧ୍ୟକ୍ଷେଣ ଧୀମତା ।୭।
ଯଦି ନାମାତ୍ର ଶକ୍ୟଂ ସ୍ୟାତ୍ସାମ୍ନା ଦାନେନ ବାନଘ ।
ତରସା ବା ମହାବାହୋ ପ୍ରତ୍ୟାନେତୁଂ କୃତଂ ଭବେତ୍ ।୮।
ତ୍ୱଂ ଚ ଲଙ୍କେଶ୍ୱରସ୍ତାତ ଭବିଷ୍ୟସି ନ ସଂଶୟଃ ।
ତ୍ୱୟା ରାକ୍ଷସବଂଶୋଽୟଂ ନିମଗ୍ନୋଽପି ସମୁଦ୍ଧୃତଃ ।୯।

---

ଦଶଗ୍ରୀବ ନିକଟକୁ ଗଲା ଏବଂ ତାକୁ କୁଣ୍ଢାଇ ପକାଇ କହିଲା ।୩। "ହେ ବତ୍ସ ! ସୌଭାଗ୍ୟର କଥା ଯେ ତୁମ୍ଭର ବାଞ୍ଛିତ ମନୋରଥ ତୁମେ ପାଇଅଛ । ତୁମେ ତ୍ରିଭୁବନଶ୍ରେଷ୍ଠ ବ୍ରହ୍ମାଙ୍କଠାରୁ ଉତ୍ତମ ବର ଲାଭ କରିଅଛ ।୪। ଯେଉଁ ଭୟରେ ଆମେ ସମସ୍ତେ ଲଙ୍କା ଛାଡ଼ି ରସାତଳକୁ ପଳାଇ ଯାଇଥିଲୁ, ହେ ମହାବାହୋ ! ସେହି ବିଷ୍ଣୁକୃତ ମହାଭୟ ଆମର ଦୂର ହୋଇଯାଇଅଛି ।୫। ତାଙ୍କର ଭୟରେ ଆମେ ସମସ୍ତେ ବହୁବାର ଖିନ୍ନ ହୋଇ ନିଜର ଘରଦ୍ୱାର ଛାଡ଼ି ପଳାଇ ଯାଇଥିଲୁ ଏବଂ ରସାତଳରେ ଯାଇ ପ୍ରବେଶ କରିଥିଲୁ ।୬। ଏହି ଲଙ୍କା ଆମ୍ଭମାନଙ୍କରହିଁ ଅଟେ । ରାକ୍ଷସମାନେ ସେଥିରେ ରହୁଥିଲେ । କିନ୍ତୁ ଏବେ ତୁମ୍ଭର ବୁଦ୍ଧିମାନ୍ ଭାଇ କୁବେର ତାହାକୁ ଅଧିକାର କରି ନେଇଅଛନ୍ତି ।। ।ହେ ନିଷ୍ପାପ, ହେ ମହାବାହୋ ! ତୁମେ ଯଦି ସାମ, ଦାନ କିମ୍ବା ବଳପ୍ରୟୋଗ ଦ୍ୱାରା ସେହି ଲଙ୍କାକୁ ଫେରାଇ ଆଣିପାରିବ, ତେବେ ଗୋଟିଏ ବଡ଼ କାମ କରିବ ।୮। ହେ ବତ୍ସ ! ତୁମେ ଲଙ୍କାର ଅଧୀଶ୍ୱର ହେବ, ଏଥିରେ ସନ୍ଦେହ ନାହିଁ । ଏତଦ୍ୱାରା ତୁମେ ବୁଡ଼ିଯାଇଥିବା ରାକ୍ଷସକୁଳକୁ ଉଦ୍ଧାର କରିବ ।୯। ହେ ମହାବଳ ! ତୁମେ

ସର୍ବେଷାଂ ନଃ ପ୍ରଭୁଶ୍ଚୈବ ଭବିଷ୍ୟସି ମହାବଲ ।
ଅଥାବ୍ରବୀଦ୍ଦଶଗ୍ରୀବୋ ମାତାମହମୁପସ୍ଥିତମ୍ । ୧୦ ।
ବିତ୍ତେଶୋ ଗୁରୁରସ୍ମାକଂ ନାର୍ହସେ ବକ୍ତୁମୀଦୃଶମ୍ ।
ସାମ୍ନାପି ରାକ୍ଷସେନ୍ଦ୍ରେଣ ପ୍ରତ୍ୟାଖ୍ୟାତୋ ଗରୀୟସା । ୧୧ ।
କିଂଚିନ୍ନାହ ତଦା ରକ୍ଷୋ ଜ୍ଞାତ୍ୱା ତସ୍ୟ ଚିକୀର୍ଷିତମ୍ ।
କସ୍ୟଚିତ୍ତ୍ୱଥ କାଲସ୍ୟ ବସନ୍ତଂ ରାବଣଂ ତତଃ ।୧୨ ।
ଉକ୍ତବନ୍ତଂ ତଥା ବାକ୍ୟଂ ଦଶଗ୍ରୀବଂ ନିଶାଚରଃ ।
ପ୍ରହସ୍ତଃ ପ୍ରଶ୍ରିତଂ ବାକ୍ୟମିଦମାହ ସକାରଣମ୍ । ୧୩ ।
ଦଶଗ୍ରୀବ ମହାବାହୋ ନାର୍ହସ୍ତ୍ୱଂ ବକ୍ତୁମୀଦୃଶମ୍ ।
ସୌଭ୍ରାତ୍ରଂ ନାସ୍ତି ଶୂରାଣାଂ ଶୃଣୁ ଚେଦଂ ବଚୋ ମମ । ୧୪ ।
ଅଦିତିଶ୍ଚ ଦିତିଶ୍ଚୈବ ଭଗିନ୍ୟୌ ସହିତେ ହିତେ ।
ଭାର୍ଯେ ପରମରୂପିଣ୍ୟୌ କଶ୍ୟପସ୍ୟ ପ୍ରଜାପତେଃ । ୧୫ ।
ଅଦିତିର୍ଜନୟାମାସ ଦେବାଂସ୍ତ୍ରିଭୁବନେଶ୍ୱରାନ୍ ।
ଦିତିସ୍ତ୍ୱଜନୟତ୍ ପୁତ୍ରାନ୍ କଶ୍ୟପସ୍ୟାତ୍ମସମ୍ଭବାନ୍ । ୧୬ ।
ଦୈତ୍ୟାନାଂ କିଲ ଧର୍ମଜ୍ଞ ପୁରୀୟଂ ସବନାର୍ଣବା ।
ସପର୍ବତା ମହୀ ବୀର ତେଽଭବନ୍ ପ୍ରଭବିଷ୍ଣବଃ । ୧୭ ।

---

ଆମ ସମସ୍ତଙ୍କର ପ୍ରଭୁ ହେବ ।” ଅନନ୍ତର ଦଶଗ୍ରୀବ ନିଜର ମାତାମହ ସୁମାଳୀଙ୍କୁ କହିଲା । ୧୦ । ଧନେଶ କୁବେର ଆମ୍ଭମାନଙ୍କର ଜ୍ୟେଷ୍ଠ ଭ୍ରାତା ଓ ଗୁରୁ ଅଟନ୍ତି । ଅତଏବ ତୁମେ ଏପରି କଥା କହିବା ଉଚିତ ନୁହେ ।” ରାକ୍ଷସେନ୍ଦ୍ର ରାବଣ ଏହିପରି ଗୁରୁତର ସାମଶାନ୍ତ ଦ୍ୱାରା ସୁମାଳୀର ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଦେବାରୁ ରାକ୍ଷସ ସୁମାଳୀ ତାହାର ମନର କଥା ଜାଣି ଆଉ କିଛି କହିଲା ନାହିଁ । କିଛିକ୍ଷଣ ପରେ ରାବଣ ସେହିଠାରେ ବସିଥିବାବେଳେ ପ୍ରହସ୍ତ ତାହାକୁ ବିମୀତଭାବରେ ଯୁକ୍ତିଯୁକ୍ତ ବାକ୍ୟରେ କହିଲା, “ହେ ମହାବାହୁ, ହେ ଦଶଗ୍ରୀବ ! ତୁମେ ଏପରି କହିବା ଉଚିତ ନୁହେ । ବୀରମାନଙ୍କ ସହିତ ବୀରମାନଙ୍କର ଭ୍ରାତୃଭାବ ନାହିଁ । ମୁଁ ଯାହା କହୁଛି ସେକଥା ଶୁଣ । ୧୧-୧୪ । ଅଦିତି ଏବଂ ଦିତି ଦୁଇ ଭଉଣୀ ପରସ୍ପରର ହିତାକାଙ୍କ୍ଷିଣୀ ଥିଲେ । ଏହି ଦୁଇ ପରମରୂପବତୀ ଭଗିନୀ କଶ୍ୟପ ପ୍ରଜାପତିଙ୍କର ଭାର୍ଯ୍ୟା ଥିଲେ । ୧୫ । ଅଦିତି ତିନି ଭୁବନର ସ୍ୱାମୀ ଦେବତାମାନଙ୍କୁ ଜନ୍ମକରିଥିଲେ ଏବଂ ଦିତି କଶ୍ୟପଙ୍କ ଔରସରୁ ଦୈତ୍ୟମାନଙ୍କୁ ଜନ୍ମକରିଥିଲେ ।୧୬। ହେ ଧର୍ମଜ୍ଞ ! ପୂର୍ବକାଳରେ ସାଗର,ବନ ଓ ପର୍ବତ ସହିତ ଏହି ଲଙ୍କାପୁରୀ ଏବଂ ସମଗ୍ର

ନିହତ୍ୟ ତାଂସ୍ତୁ ସମରେ ବିଷ୍ଣୁନା ପ୍ରଭବିଷ୍ଣୁନା ।
ଦେବାନାଂ ବଶମାନୀତଂ ତ୍ରୈଲୋକ୍ୟମିଦମବ୍ୟୟମ୍ । ୧୮ ।
ଦୈତ୍ୟଦେବକୋ ଭବାନେବ କରିଷ୍ୟତି ବିପର୍ଯ୍ୟୟମ୍ ।
ସୁରାସୁରୈରାଚରିତଂ ତତ୍ କୁରୁଷ୍ୱ ବଚୋ ମମ । ୧୯ ।
ଏବମୁକ୍ତୋ ଦଶଗ୍ରୀବଃ ପ୍ରହୃଷ୍ଟେନାନ୍ତରାତ୍ମନା ।
ଚିନ୍ତୟିତ୍ୱା ମୁହୂର୍ତ୍ତଂ ବୈ ବାଢ଼ମିତ୍ୟେବ ସୋଽବ୍ରବୀତ୍ । ୨୦ ।
ସ ତୁ ତେନୈବ ହର୍ଷେଣ ତସ୍ମିନ୍ନହନି ବୀର୍ଯ୍ୟବାନ୍ ।
ବନଂ ଗତ୍ୱୋ ଦଶଗ୍ରୀବଃ ସହ ତୈଃ କ୍ଷଣଦାଚରୈଃ । ୨୦ ।
ତ୍ରିକୂଟସ୍ଥଃ ସ ତୁ ତଦା ଦଶଗ୍ରୀବୋ ନିଶାଚରଃ ।
ପ୍ରେଷୟାମାସ ଦୌତ୍ୟେନ ପ୍ରହସ୍ତଂ ବାକ୍ୟକୋବିଦମ୍ । ୨୨ ।
ପ୍ରହସ୍ତ ଶୀଘ୍ରଂ ଗଚ୍ଛ ତ୍ୱଂ ବ୍ରୂହି ନୈଋତପୁଙ୍ଗବମ୍ ।
ବଚସା ମମ ବିତ୍ତେଶଂ ସାମପୂର୍ବମିଦଂ ବଚଃ । ୨୩ ।
ଇୟଂ ଲଙ୍କାପୁରୀ ରାଜନ୍ ରାକ୍ଷସାନାଂ ମହାତ୍ମନାମ୍ ।
ତ୍ୱୟା ନିବେଶିତା ସୌମ୍ୟ ନୈତଦ୍ୟୁକ୍ତଂ ତବାନଘ । ୨୪ ।

---

ପୃଥିବୀ ଦୈତ୍ୟମାନଙ୍କ ଅଧିକାରରେ ଥିଲା । ୧୭ । କିନ୍ତୁ ପ୍ରଭାବଶାଳୀ ବିଷ୍ଣୁ ଯୁଦ୍ଧରେ ଦୈତ୍ୟମାନଙ୍କୁ ସଂହାର କରି ଏହି ଅବ୍ୟୟ ତିନି ଲୋକକୁ ଦେବତାମାନଙ୍କର ବଶୀଭୂତ କରାଇଦେଲେ । ୧୮ । ଅତଏବ ତୁମେ କେବଳ ଯେ ଏପରି ଉଲଟ-ପାଲଟ କରିଦେବ ତାହା ନୁହେଁ, ଯେଉଁ କାର୍ଯ୍ୟ ସୁର ଓ ଅସୁରମାନେ ସର୍ବଦା କରି ଆସୁଛନ୍ତି, ମୋ କଥା ମାନି ତୁମେ ତାହା ହିଁ କର” । ୧୯ । ପ୍ରହସ୍ତ ଏପରି କହିବାରୁ ଦଶଗ୍ରୀବ ରାବଣ ହର୍ଷିତ ଅନ୍ତଃକରଣରେ ମୁହୂର୍ତ୍ତେ ଚିନ୍ତା କରି ତଥାସ୍ତୁ ବୋଲି କହିଲା । ୨୦ । ଏହାପରେ ବୀର୍ଯ୍ୟବାନ୍ ରାବଣ ଆନନ୍ଦରେ ସେହିଦିନ ନିଶାଚରମାନଙ୍କ ସହିତ ଲଙ୍କାସମୀପସ୍ଥ ବନକୁ ଯାଇ ତ୍ରିକୂଟ ପର୍ବତ ଉପରେ ରହିଲା । ତଦନନ୍ତର ରାକ୍ଷସ ଦଶଗ୍ରୀବ ବାକ୍ୟବିଶାରଦ ପ୍ରହସ୍ତକୁ ନିଜର ଦୂତ କରି ପଠାଇଲା । ୨୧-୨୨ । ସେ ପ୍ରହସ୍ତକୁ କହିଲା, “ହେ ପ୍ରହସ୍ତ ! ତୁମେ ଶୀଘ୍ର ସେହି ଯକ୍ଷପୁଙ୍ଗବ, ଧନେଶ କୁବେରଙ୍କ ନିକଟକୁ ଯାଇ ମୋ କଥାନୁସାରେ ଏହି କଥା ବୁଝାଇକରି କହିବ । ୨୩ । “ହେ ରାଜନ୍ ! ଏହି ଲଙ୍କାପୁରୀ ମହାତ୍ମା ରାକ୍ଷସ-ମାନଙ୍କରହିଁ ଅଟେ । ହେ ସୌମ୍ୟ ! ତୁମେ ଏହାକୁ ଅଧିକାର କରି ନେଇଅଛ । ହେ ନିଷ୍ପାପ ! ତୁମ ପକ୍ଷରେ ଏହା ଉଚିତ ନୁହେଁ । ୨୪ । ହେ ଅତୁଳବିକ୍ରମ !

ତଦ୍ଭବାନ୍ ଯଦି ନୋ ହ୍ୟଦ୍ୟ ଦଦ୍ୟାଦତୁଲବିକ୍ରମ ।
କୃତା ଭବେନ୍ମମ ପ୍ରୀତିର୍ଧର୍ମଶ୍ଚୈବାନୁପାଳିତଃ । ୨୫ ।
ସ ତୁ ଗତ୍ୱା ପୁରୀଂ ଲଙ୍କାଂ ଧନଦେନ ସୁରକ୍ଷିତାମ୍ ।
ଅବ୍ରବୀତ୍ ପରମୋଦାରଂ ବିତ୍ତପାଳମିଦଂ ବଚଃ । ୨୬ ।
ପ୍ରେଷିତୋଽହଂ ତବ ଭ୍ରାତ୍ରା ଦଶଗ୍ରୀବେଣ ସୁବ୍ରତ ।
ତ୍ୱତ୍ସମୀପଂ ମହାବାହୋ ସର୍ବଶସ୍ତ୍ରଭୃତାଂ ବର । ୨୭ ।
ତଚ୍ଛ୍ରୂୟତାଂ ମହାପ୍ରାଜ୍ଞ ସର୍ବଶାସ୍ତ୍ରବିଶାରଦ ।
ବଚନଂ ମମ ବିତ୍ତେଶ ଯଦ୍ ବ୍ରବୀତି ଦଶାନନଃ । ୨୮ ।
ଇୟଂ କିଲ ପୁରୀ ରମ୍ୟା ସୁମାଲିପ୍ରମୁଖୈଃ ପୁରା ।
ଭୁକ୍ତପୂର୍ବା ବିଶାଳାକ୍ଷ ରାକ୍ଷସୈର୍ଭୀମବିକ୍ରମୈଃ । ୨୯ ।
ତେନ ବିଜ୍ଞାପ୍ୟତେ ସୋଽୟଂ ସାମ୍ପ୍ରତଂ ବିଶ୍ରବାତ୍ମଜ ।
ତଦେଷା ଦୀୟତାଂ ତାତ ଯାଚତସ୍ତସ୍ୟ ସାମତଃ । ୩୦ ।
ପ୍ରହସ୍ତାଦଭିସଂଶ୍ରୁତ୍ୟ ଦେବୋ ବୈଶ୍ରବଣୋ ବଚଃ ।
ପ୍ରତ୍ୟୁବାଚ ପ୍ରହସ୍ତଂ ତଂ ବାକ୍ୟଂ ବାକ୍ୟବିଶାରଦଃ । ୩୧ ।
ଦତ୍ତା ମମେୟଂ ପିତ୍ରା ତୁ ଲଙ୍କା ଶୂନ୍ୟା ନିଶାଚରୈଃ ।
ନିବାସିତା ଚ ମେ ଯକ୍ଷୈର୍ଦାନମାନାଦିଭିର୍ଗୁଣୈଃ । ୩୨ ।

---

ତୁମେ ଆଜହିଁ ଏ ଲଙ୍କାପୁରୀକୁ ଆମକୁ ଫେରାଇଦିଅ । ତୁମେ ଏହା କଲେ ମୋର ବିଶେଷ ପ୍ରୀତି ହେବ ଏବଂ ଧର୍ମର ମଧ୍ୟ ରକ୍ଷା ହେବ" । ୨୫ । ପ୍ରହସ୍ତ ପରମୋଦାର ଧନେଶ କୁବେରଙ୍କ ଦ୍ୱାରା ସୁରକ୍ଷିତ ଲଙ୍କାପୁରୀକୁ ଯାଇ ଏହି କଥା କହିଲା ।୨୬। "ହେ ସୁବ୍ରତ ! ହେ ମହାବାହୋ ! ସମସ୍ତ ଶସ୍ତ୍ରଧାରୀଙ୍କ ମଧ୍ୟରେ ଶ୍ରେଷ୍ଠ ତୁମ୍ଭର ଭ୍ରାତା ଦଶଗ୍ରୀବ ମୋତେ ତୁମ ନିକଟକୁ ପଠାଇଅଛନ୍ତି । ୨୭ । ସୁତରାଂ ହେ ମହାପ୍ରାଜ୍ଞ ସର୍ବଶାସ୍ତ୍ରବିଶାରଦ ଧନେଶ ! ଦଶାନନ ଯାହା କହିଛନ୍ତି ମୋଠାରୁ ସେ କଥା ଶୁଣ । ୨୮ । ହେ ବିଶାଳାକ୍ଷ ! ପୂର୍ବେ ଏହି ରମଣୀୟ ଲଙ୍କାପୁରୀ ମହାପରାକ୍ରମୀ ସୁମାଳୀ ପ୍ରଭୃତି ରାକ୍ଷସମାନଙ୍କ ଅଧିକାରରେ ଥିଲା । ୨୯ । ଅତଏବ ହେ ଭ୍ରାତ ! ହେ ବିଶ୍ରବାନନ୍ଦନ ! ଏହାକୁ ଆପଣ ବର୍ତ୍ତମାନ ଫେରାଇ ଦିଅନ୍ତୁ । ସେ ଆପଣଙ୍କୁ ଶାନ୍ତିପୂର୍ଣ୍ଣଭାବରେ ଏହି ପ୍ରାର୍ଥନା କରିଅଛନ୍ତି" । ୩୦ । ବଚନବିଶାରଦ ବିଶ୍ରବାନନ୍ଦନ କୁବେର ପ୍ରହସ୍ତଠାରୁ ଏହି କଥା ଶୁଣି ଉତ୍ତରରେ ତାକୁ କହିଲେ ।୩୧। "ନିଶାଚରମାନଙ୍କ ଦ୍ୱାରା ଶୂନ୍ୟ ହୋଇଥିବା ଏହି ଲଙ୍କାପୁରୀକୁ ମୋର ପିତା ମୋତେ ଦେଇଅଛନ୍ତି । ମୁଁ ଦାନମାନାଦି ଗୁଣ ଦ୍ୱାରା ଯକ୍ଷମାନଙ୍କୁ ଆଣି ଏଠାରେ ବସାଇ-

ବ୍ରୂହି ଗଚ୍ଛ ଦଶଗ୍ରୀବଂ ପୁରଂ ରାଜ୍ୟଂ ଚ ଯନ୍ମମ ।
ତବାପ୍ୟେତନ୍ମହାବାହୋ ଭୁଙ୍‌କ୍ଷ୍ୱ ରାଜ୍ୟମକଣ୍ଟକମ୍ । ୩୩।
ଅବିଭକ୍ତଂ ତ୍ୱୟା ସାର୍ଧଂ ରାଜ୍ୟଂ ଯଚ୍ଚାପି ମେ ବସୁ ।
ଏବମୁକ୍ତ୍ୱା ଧନାଧ୍ୟକ୍ଷୋ ଜଗାମ ପିତୁରନ୍ତିକମ୍ । ୩୪ ।
ଅଭିବାଦ୍ୟ ଗୁରୁଂ ପ୍ରାହ ରାବଣସ୍ୟ ଯଦୀପ୍ସିତମ୍ ।
ଏଷ ତାତ ଦଶଗ୍ରୀବୋ ଦୂତଂ ପ୍ରେଷିତବାନ୍ ମମ । ୩୫।
ଦୀୟତାଂ ନଗରୀ ଲଙ୍କା ପୂର୍ବଂ ରକ୍ଷୋଗଣୋଷିତା ।
ମୟାତ୍ର ଯଦନୁଷ୍ଠେୟଂ ତନ୍ମମାଚକ୍ଷ୍ୱ ସୁବ୍ରତ । ୩୬ ।
ବ୍ରହ୍ମର୍ଷିସ୍ତ୍ୱେବମୁକ୍ତୋଽସୌ ବିଶ୍ରବା ମୁନିପୁଙ୍ଗବଃ ।
ପ୍ରାଞ୍ଜଳିଂ ଧନଦଂ ପ୍ରାହ ଶୃଣୁ ପୁତ୍ର ବଚୋ ମମ । ୩୭ ।
ଦଶଗ୍ରୀବୋ ମହାବାହୁରୁକ୍ତବାନ୍ ମମ ସନ୍ନିଧୌ ।
ମୟା ନିର୍ଭର୍ତ୍ସିତଶ୍ଚାସୀଦ୍ ବହୁଶୋକ୍ତଃ ସୁଦୁର୍ମତିଃ । ୩୮ ।
ସ କ୍ରୋଧେନ ମୟା ଚୋକ୍ତୋ ଧ୍ୱଂସସେ ଚ ପୁନଃ ପୁନଃ ।
ଶ୍ରେୟୋଽଭିଯୁକ୍ତଂ ଧର୍ମ୍ୟଂ ଚ ଶୃଣୁ ପୁତ୍ର ବଚୋ ମମ ।୩୯।

---

ଅଛି । ୩୨ । ସୁତରାଂ ତୁମେ ଯାଇ ଦଶଗ୍ରୀବଙ୍କୁ କହିଦିଅ ଯେ ଏହି ନଗରୀ ଏବଂ ରାଜ୍ୟ ଯାହା କିଛି ମୋର ଅଛି ସେ ସମସ୍ତ ତୁମ୍ଭରହିଁ ଅଟେ । ଅତଏବ ହେ ମହାବାହୋ ! ତୁମେ ଯଦି ଚାହିଁ ତେବେ ନିଷ୍କଣ୍ଟକଭାବରେ ଏ ରାଜ୍ୟ ଭୋଗକର । ୩୩। କାରଣ ଏ ରାଜ୍ୟ ଏବଂ ମୋର ଯେ ସମସ୍ତ ଧନ ଐଶ୍ୱର୍ଯ୍ୟ ଅଛି ତାହା ତୁମ ଓ ମୋ ମଧ୍ୟରେ ଅଲଗା ଅଲଗା କରି ହୋଇ ନାହିଁ; ଅର୍ଥାତ୍ ଦୁହିଁଙ୍କର ଏକତ୍ର ହୋଇଅଛି ।" ଧନେଶ କୁବେର ପ୍ରହସ୍ତକୁ ଏହା କହିସାରି ନିଜର ପିତାଙ୍କ ନିକଟକୁ ଗଲେ । ୩୪ । ସେ ଗୁରୁ ପିତୃଦେବଙ୍କୁ ପ୍ରଣାମ କରି ଦଶଗ୍ରୀବର ଅଭିପ୍ରାୟ ଜଣାଇ କହିଲେ, "ହେ ଜନକ ! ଦଶଗ୍ରୀବ ମୋ ନିକଟକୁ ଏକ ଦୂତ ପଠାଇଥିଲା । ୩୫ । ସେ ମୋତେ କହିଲା ଯେ ପୂର୍ବରୁ ରାକ୍ଷସମାନେ ବାସ କରି ରହିଥିବା ଏହି ଲଙ୍କାପୁରୀକୁ ତୁମେ ଦେଇଦିଅ । ହେ ସୁବ୍ରତ ! ଏପରି ଅବସ୍ଥାରେ ମୋର କଅଣ କର୍ତ୍ତବ୍ୟ ତାହା ମୋତେ କହନ୍ତୁ" । ୩୬ । ଏଥିଉତ୍ତରୁ ମୁନିପୁଙ୍ଗବ ବ୍ରହ୍ମର୍ଷି ବିଶ୍ରବା ହାତ ଯୋଡ଼ି ରହିଥିବା କୁବେରଙ୍କୁ କହିଲେ, 'ହେ ପୁତ୍ର ! ମୋର କଥା ଶୁଣ । ୩୭ । ଦଶଗ୍ରୀବ ଏକଥା ମୋତେ ବି କହିଥିଲା; ମାତ୍ର ମୁଁ ସେ ଦୁର୍ମତିକୁ ନାନା ପ୍ରକାରେ ଏଥିପାଇଁ ଭର୍ତ୍ସନା କରିଥିଲି ।୩୮। ମୁଁ କ୍ରୋଧରେ ତାକୁ ବାରମ୍ବାର କହିଥିଲି ଯେ ତୁ ଧ୍ୱଂସ ହୋଇଯିବୁ । ହେ ପୁତ୍ର ! ଏବେ ତୁମେ ମୋର କଲ୍ୟାଣକାରୀ ଧର୍ମଯୁକ୍ତ କଥା ଶୁଣ । ୩୯ ।

ବରପ୍ରଦାନାତ୍ସଂମୂଢ଼ୋ ମାନ୍ୟାମାନ୍ୟାନ୍ ସ ଦୁର୍ମତିଃ ।
ନ ବେତ୍ତି ମମ ଶାପାଚ୍ଚ ପ୍ରକୃତିଂ ଦାରୁଣାଂ ଗତଃ । ୪୦ ।
ତସ୍ମାଦ୍ ଗଚ୍ଛ ମହାବାହୋ କୈଳାସଂ ଧରଣୀଧରମ୍ ।
ନିବେଶୟସ୍ୱ ନିବାସାର୍ଥଂ ତ୍ୟକ୍ତ୍ୱା ଲଙ୍କାଂ ସହାନୁଗଃ । ୪୧ ।
ତତ୍ର ମନ୍ଦାକିନୀ ରମ୍ୟା ନଦୀନାମୁତ୍ତମା ନଦୀ ।
କାଞ୍ଚନୈଃ ସୂର୍ଯ୍ୟସଂକାଶୈଃ ପଙ୍କଜୈଃ ସଂବୃତୋଦକା । ୪୨ ।
କୁମୁଦୈରୁତ୍ପଲୈଶ୍ଚୈବ ତଥାନ୍ୟୈଶ୍ଚ ସୁଗନ୍ଧିଭିଃ ।
ତତ୍ର ଦେବାଃ ସଗନ୍ଧର୍ବାଃ ସାପ୍ସରୋରଗକିନ୍ନରାଃ । ୪୩ ।
ବିହାରଶୀଳାଃ ସତତଂ ରମନ୍ତେ ସର୍ବଦାଶ୍ରିତାଃ ।
ନ ହି କ୍ଷମଂ ତବାନେନ ବୈରଂ ଧନଦ ରକ୍ଷସା ।
ଜାନୀଷେ ହି ଯଥାନେନ ଲବ୍ଧଃ ପରମକୋ ବରଃ । ୪୪ ।
ଏବମୁକ୍ତୋ ଗୃହୀତ୍ୱାଶୁ ତଦ୍‌ବଚଃ ପିତୃଗୌରବାତ୍ ।
ସଦାରପୁତ୍ରଃ ସାମାତ୍ୟଃ ସବାହନଧନୋ ଗତଃ । ୪୫ ।
ପ୍ରହସ୍ତୋଽଥ ଦଶଗ୍ରୀବଂ ଗତ୍ୱା ବଚନମବ୍ରବୀତ୍ ।
ପ୍ରହୃଷ୍ଟାତ୍ମା ମହାତ୍ମାନଂ ସହାମାତ୍ୟଂ ସହାନୁଜମ୍ । ୪୬ ।

---

ସେ ଦୁର୍ମତି ବ୍ରହ୍ମାଙ୍କଠାରୁ ବର ପାଇ ମୋହାବିଷ୍ଟ ହୋଇ ଯାଇଅଛି । ସେ ମାନ୍ୟ ଏବଂ ଅମାନ୍ୟ କିଛି ବିଚାର କରିପାରୁ ନାହିଁ । ମୋର ଶାପଦ୍ୱାରା ତାର ସ୍ୱଭାବ ଅତିଶୟ ଦାରୁଣ ହୋଇ ଯାଇଅଛି । ୪୦ । ଅତଏବ ବର୍ତ୍ତମାନ ତୁମେ ନିଜର ଅନୁଚରମାନଙ୍କ ସହିତ ଯାଇ କୈଳାସ ପର୍ବତ ଉପରେ ବାସକର ଏବଂ ସେଠାରେ ନିଜର ବାସ ନିମନ୍ତେ ପୁରୀ ନିର୍ମାଣ କର; ଲଙ୍କାକୁ ଛାଡ଼ି ସେଠାକୁ ଚାଲିଯାଅ । ୪୧ । ସେଠାରେ ସବୁ ନଦୀ ମଧ୍ୟରେ ଶ୍ରେଷ୍ଠ ଓ ରମଣୀୟ ମନ୍ଦାକିନୀ ନଦୀ ବହୁଅଛି । ସେହି ନଦୀର ଜଳ ସୂର୍ଯ୍ୟସଦୃଶ ଚାକଚକ୍ୟଶାଳୀ ସୁବର୍ଣ୍ଣ ପଦ୍ମରେ ପୂର୍ଣ୍ଣ ହୋଇଅଛି ! ୪୨ । କୁମୁଦ, ନୀଳୋତ୍ପଳ ଏବଂ ଅନ୍ୟ ସୁଗନ୍ଧ ପୁଷ୍ପରାଶି ମଧ୍ୟ ସେ ନଦୀରେ ପରିପୂର୍ଣ୍ଣ ହୋଇ ରହିଅଛି । ସେଠାରେ ବିହାରଶୀଳ ଦେବତା, ଗନ୍ଧର୍ବ, ଅପ୍ସରା, ନାଗ ଏବଂ କିନ୍ନରମାନେ ସର୍ବଦା ରମଣ କରୁଅଛନ୍ତି । ହେ ଧନଦ ! ତୁମେ ସେହି ରାକ୍ଷସ ସହିତ ଶତ୍ରୁତା କରିବାକୁ ସମର୍ଥ ହେବ ନାହିଁ; କାରଣ ତୁମେ ତ ଜାଣ, ସେ ସର୍ବୋତ୍କୃଷ୍ଟ ବର ପାଇ ସାରିଅଛି" । ୪୩-୪୪ । ଏହା ଶୁଣି କୁବେର ପିତାଙ୍କ କଥାର ଗୌରବ ରକ୍ଷାକରି ପତ୍ନୀ, ପୁତ୍ର, ମନ୍ତ୍ରୀ, ବାହନ ଓ ଧନ ସାଙ୍ଗରେ ଧରି କୈଳାସକୁ ଚାଲିଗଲେ । ୪୫ । ପ୍ରହସ୍ତ ହର୍ଷିତମନରେ ଯାଇ ମନ୍ତ୍ରୀ ଓ ଅନୁଚରମାନଙ୍କ ସହିତ

ଶୂନ୍ୟା ସା ନଗରୀ ଲଙ୍କା ତ୍ୟକ୍ତ୍ୱେନାଂ ଧନଦୋ ଗତଃ ।
ପ୍ରବିଶ୍ୟ ତାଂ ସହାସ୍ମାଭିଃ ସ୍ୱଧର୍ମଂ ପ୍ରତିପାଲୟ ।୪୭।
ଏବମୁକ୍ତୋ ଦଶଗ୍ରୀବଃ ପ୍ରହସ୍ତେନ ମହାବଲଃ ।
ବିବେଶ ନଗରୀଂ ଲଙ୍କାଂ ଭ୍ରାତୃଭିଃ ସବଲାନୁଗୈଃ ।୪୮।
ଧନଦେନ ପରିତ୍ୟକ୍ତାଂ ସୁବିଭକ୍ତମହାପଥାମ୍ ।
ଆରୁରୋହ ସ ଦେବାରିଃ ସ୍ୱର୍ଗଂ ଦେବାଧିପୋ ଯଥା ।୪୯।
ସ ଚାଭିଷିକ୍ତଃ କ୍ଷଣଦାଚରୈସ୍ତଦା
ନିବେଶୟାମାସ ପୁରୀଂ ଦଶାନନଃ ।
ନିକାମପୂର୍ଣ୍ଣା ଚ ବଭୂବ ସା ପୁରୀ
ନିଶାଚରୈର୍ନୀଲବଲାହକୋପମୈଃ ।୫୦।
ଧନେଶ୍ୱରସ୍ତ୍ୱଥ ପିତୃବାକ୍ୟଗୌରବା-
ନ୍ନ୍ୟବେଶୟଚ୍ଛଶିବିମଲେ ଗିରୌ ପୁରୀମ୍ ।
ସ୍ୱଲଙ୍କୃତୈର୍ଭବନବରୈର୍ବିଭୂଷିତାମ୍
ପୁରନ୍ଦରସ୍ୟେବ ତଦାମରାବତୀମ୍ ।୫୧।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ରାବଣ ଲଙ୍କାପ୍ରାପ୍ତିର୍ନାମୈକାଦଶଃ ସର୍ଗଃ ।

---

ବସିଥିବା ମହାତ୍ମା ଦଶଗ୍ରୀବଙ୍କୁ କହିଲା ।୪୬। "ଲଙ୍କାନଗରୀ ବର୍ତ୍ତମାନ ଶୂନ୍ୟ ହୋଇ ଯାଇଅଛି, କୁବେର ତାହାକୁ ଛାଡ଼ି ଯାଇଅଛନ୍ତି । ଅତଏବ ଆପଣ ଆମ୍ଭମାନଙ୍କ ସହିତ ସେଠାରେ ପ୍ରବେଶ କରି ସେଠାରେ ନିଜର ରାଜଧର୍ମ ପରିପାଳନ କରନ୍ତୁ" ।୪୭। ମହାବଳବାନ୍ ରାବଣ ପ୍ରହସ୍ତର ଏହି କଥା ଶୁଣି ନିଜର ଭାଇ ଓ ଅନୁଚରମାନଙ୍କ ସହିତ ଲଙ୍କାନଗରୀରେ ଯାଇ ପ୍ରବେଶ କଲା ।୪୮। କୁବେରଙ୍କ ଦ୍ୱାରା ପରିତ୍ୟକ୍ତ ଏବଂ ସୁନ୍ଦର ସଡ଼କ ଦ୍ୱାରା ଶୋଭିତ ଲଙ୍କାପୁରୀରେ ଦେବଶତ୍ରୁ ରାବଣ ସ୍ୱର୍ଗରେ ଇନ୍ଦ୍ର ପ୍ରବେଶ କଲାପରି, ଯାଇ ପ୍ରବେଶ କଲା ।୪୯। ଲଙ୍କାପୁରୀରେ ପ୍ରବେଶ କରାଇ ରାକ୍ଷସମାନେ ରାବଣକୁ ରାଜପଦରେ ଅଭିଷିକ୍ତ କରାଇଲେ । ତା ପରେ ଦଶାନନ ସେହି ଲଙ୍କାପୁରୀକୁ ପୁଣି ବସାଇଲା । ନୀଳମେଘ ସଦୃଶ ଶରୀରଧାରୀ ନିଶାଚରମାନଙ୍କ ଦ୍ୱାରା ସେହି ଲଙ୍କାପୁରୀ ପୂର୍ଣ୍ଣ ହୋଇଗଲା ।୫୦। କୁବେର ମଧ୍ୟ ନିଜର ପିତାଙ୍କ ଆଜ୍ଞା ମାନି କୈଳାସ ପର୍ବତ ଉପରେ ଅତି ସୁନ୍ଦର ଓ ଶୋଭମାନ ଗୃହମାନଙ୍କ ସହିତ ଅତି ମନୋହର ଅଳକାପୁରୀ ବସାଇଲେ । ତାହା ସ୍ୱର୍ଗରେ ଇନ୍ଦ୍ର ବସାଇବା ଅମରାବତୀ ସଦୃଶ ହୋଇଥିଲା ।୫୧।

# ଦ୍ୱାଦଶଃ ସର୍ଗଃ

## ରାବଣାଦିବିବାହଃ

ରାକ୍ଷସେନ୍ଦ୍ରୋଽଭିଷିକ୍ତସ୍ତୁ ଭ୍ରାତୃଭ୍ୟାଂ ସହିତସ୍ତଦା ।
ତତଃ ପ୍ରଦାନଂ ରାକ୍ଷସ୍ୟା ଭଗିନ୍ୟାଃ ସମଚିନ୍ତୟତ୍ । ୧ ।
ସ୍ୱସାରଂ କାଲକେୟାୟ ଦାନବେନ୍ଦ୍ରାୟ ରାକ୍ଷସୀମ୍ ।
ଦଦୌ ସୂର୍ପଣଖାଂ ନାମ ବିଦ୍ୟୁଜ୍ଜିହ୍ୱାୟ ନାମତଃ । ୨ ।
ଅଥ ଦତ୍ତ୍ୱା ସ୍ୱୟଂ ରକ୍ଷୋ ମୃଗୟାମଟତେ ସ୍ମ ତତ୍ ।
ତତ୍ରାପଶ୍ୟତ୍ତତୋ ରାମ ମୟଂ ନାମ ଦିତେଃ ସୁତମ୍ । ୩ ।
କନ୍ୟାସହାୟଂ ତଂ ଦୃଷ୍ଟ୍ୱା ଦଶଗ୍ରୀବୋ ନିଶାଚରଃ ।
ଅପୃଚ୍ଛତ୍ କୋ ଭବାନେକୋ ନିର୍ମାନୁଷ୍ୟମୃଗେ ବନେ ।୪ ।
ଅନୟା ମୃଗଶାବାକ୍ଷ୍ୟା କିମର୍ଥଂ ସହ ତିଷ୍ଠସି ।
ମୟସ୍ତ୍ୱଥାବ୍ରବୀଦ୍ରାମ ପୃଚ୍ଛନ୍ତଂ ତଂ ନିଶାଚରମ୍ । ୫ ।
ଶ୍ରୂୟତାଂ ସର୍ବମାଖ୍ୟାସ୍ୟେ ଯଥାବୃତ୍ତମିଦଂ ମମ ।
ହେମା ନାମାପ୍ସରା ସ୍ତାତ ଶ୍ରୁତପୂର୍ବା ଯଦି ତ୍ୱୟା । ୬ ।

---

# ୧୨ଶ ସର୍ଗ

## ( ରାବଣ, କୁମ୍ଭକର୍ଣ୍ଣ ଓ ବିଭୀଷଣାଦିଙ୍କ ବିବାହ )

ରାବଣ ରାଜପଦରେ ଅଭିଷିକ୍ତ ହେବା ଉତ୍ତାରୁ ନିଜର ଭାଇମାନଙ୍କ ସହିତ ନିଜର ଭଗିନୀ ରାକ୍ଷସୀ ଶୂର୍ପଣଖାର ବିବାହ ବିଷୟରେ ଚିନ୍ତାକଲା । ୧ । ତଦନନ୍ତର ରାବଣ କାଲକେୟ ବଂଶର ଦାନବେନ୍ଦ୍ର ବିଦ୍ୟୁଜ୍ଜିହ୍ୱ ନାମକ ରାକ୍ଷସକୁ ନିଜର ଭଗିନୀ ଶୂର୍ପଣଖାକୁ ପ୍ରଦାନ କଲା । ୨ । ହେ ରାମ ! ଏହିପ୍ରକାରେ ନିଜର ଭଗ୍ନୀକୁ ପ୍ରଦାନ କରି ସାରି ରାବଣ ମୃଗୟା କରୁ କରୁ ଦିତିଙ୍କ ପୁତ୍ର ମୟକୁ ଦେଖିଲା । ୩ । ରାବଣ ମୟକୁ ଗୋଟିଏ କନ୍ୟା ସହିତ ଦେଖି ପଚାରିଲା, "ଆପଣ କିଏ ? ମନୁଷ୍ୟରହିତ ମୃଗପୂର୍ଣ୍ଣ ବନରେ ଆପଣ ଏକାକୀ କାହିଁକି ବୁଲୁଛନ୍ତି ? ।୪। ଏହି ମୃଗନୟନାର ସଙ୍ଗେ ତୁମେ କାହିଁକି ଅଛ ?" ହେ ରାମ ! ରାବଣ ଏହିପ୍ରକାରେ ପଚାରିବାରୁ ସେତେବେଳେ ମୟ ତାକୁ କହିଲା ।୫। "ମୁଁ ମୋର ସମସ୍ତ ବୃତ୍ତାନ୍ତ ଯଥାଯଥଭାବରେ କହୁଛି, ଶୁଣ । ହେ ବତ୍ସ ! ତୁମେ ହୁଏତ ପୂର୍ବରୁ ଶୁଣିଥିବ, ହେମା ନାମକ ଏକ ଅପ୍ସରା ଥିଲା । ୬ ।

**ଦୈବତୈର୍ମମ ସା ଦତ୍ତା ପୌଲୋମୀବ ଶତକ୍ରତୋଃ ।**
**ତସ୍ୟାଂ ସକ୍ତମନାସ୍ତାତ ଦଶ ବର୍ଷଶତାନ୍ୟହମ୍ ।୭।**
**ସା ଚ ଦୈବତକାର୍ଯ୍ୟେଣ ଗତା ବର୍ଷାଂଶ୍ଚତୁର୍ଦଶ ।**
**ତସ୍ୟାଃ କୃତେ ଚ ହେମାୟାଃ ସର୍ବଂ ହେମମୟଂ ପୁରମ୍ ।୮।**
**ବଜ୍ରବୈଦୂର୍ଯ୍ୟଚିତ୍ରଂ ଚ ମାୟୟା ନିର୍ମିତଂ ମୟା ।**
**ତତ୍ରାହମବସଂ ଦୀନସ୍ତୟା ହୀନଃ ସୁଦୁଃଖିତଃ ।୯।**
**ତସ୍ମାତ୍ ପୁରାଦ୍ଦୁହିତରଂ ଗୃହୀତ୍ୱା ବନମାଗତଃ ।**
**ଇୟଂ ମମାତ୍ମଜା ରାଜଂସ୍ତସ୍ୟାଃ କୁକ୍ଷୌ ବିବର୍ଧିତା ।୧୦।**
**ଭର୍ତ୍ତାରମନୟା ସାର୍ଧମସ୍ୟାଃ ପ୍ରାପ୍ତୋଽସ୍ମି ମାର୍ଗିତୁମ୍ ।**
**କନ୍ୟାପିତୃତ୍ୱଂ ଦୁଃଖଂ ହି ସର୍ବେଷା ମାନକାଙ୍କ୍ଷିଣାମ୍ ।୧୧।**
**କନ୍ୟା ହି ଦ୍ୱେ କୁଲେ ନିତ୍ୟଂ ସଂଶୟେ ସ୍ଥାପ୍ୟ ତିଷ୍ଠତି ।**
**ପୁତ୍ରଦ୍ୱୟଂ ମମାପ୍ୟସ୍ୟାଂ ଭାର୍ଯ୍ୟାୟାଂ ସଂବଭୂବ ହ ।୧୨।**
**ମାୟାବୀ ପ୍ରଥମସ୍ତାତ ଦୁନ୍ଦୁଭିସ୍ତଦନନ୍ତରଃ ।**
**ଏବଂ ତେ ସର୍ବମାଖ୍ୟାତଂ ଯଥା ତତ୍ତ୍ୱେନ ପୃଚ୍ଛତଃ ।୧୩।**

---

ଇନ୍ଦ୍ରଙ୍କୁ ଯେପରି ଶଚୀ ପ୍ରଦତ୍ତ ହୋଇଥିଲେ ସେହିପରି ଦେବତାମାନେ ସେହି ହେମାକୁ ମୋତେ ଦେଇଥିଲେ । ମୁଁ ଏକ ହଜାର ବର୍ଷ ପର୍ଯ୍ୟନ୍ତ ତାହା ପ୍ରତି ଆସକ୍ତ ରହିଥିଲି ସେ ଦେବତାମାନଙ୍କ କାର୍ଯ୍ୟରେ ୧୪ବର୍ଷ କାଳ ମୋ ପାଖରୁ ଚାଲିଗଲା ୬-୭ । ସେହି ହେମାଙ୍କନିମନ୍ତେ ଲାଗି ମୁଁ ମୋର ସମସ୍ତ ପୁରକୁ ସ୍ୱର୍ଣ୍ଣମୟ କରି ତିଆରି କରି ଏବଂ ହୀରକ ଓ ବୈଦୂର୍ଯ୍ୟ ମଣିଦ୍ୱାରା ବିଭୂଷିତ କରି ମାୟାରେ ନିର୍ମାଣ କରିଥିଲି । ମୁଁ ତାଠାରୁ ବିରହରେ ସେଠାରେ ଏକାକୀ ଅତିଦୁଃଖରେ ବାସ କରୁଥିଲି । ୮-୯ । ମୁଁ ସେହି ନଗରୀରୁ ନିଜର କନ୍ୟାକୁ ସଙ୍ଗରେ ନେଇ ଏଠାକୁ ଆସିଅଛି । ହେ ରାଜନ୍! ମୋର ଏହି କନ୍ୟା ସେହି ଅପ୍ସରା ଗର୍ଭରୁ ଉତ୍ପନ୍ନ ହୋଇ ବଢ଼ିଅଛି । ୧୦ । ମୁଁ ଏହାକୁ ସଙ୍ଗରେ ଧରି ଏହାଲାଗି ବର ଖୋଜିବା ଲାଗି ଆସିଅଛି । ମାନୀ ବ୍ୟକ୍ତିମାନଙ୍କ ପକ୍ଷରେ କନ୍ୟାର ପିତା ହେବା ଦୁଃଖକର ଅଟେ ।୧୧। କାରଣ କନ୍ୟା ମାତୃକୁଳ ଓ ପିତୃକୁଳ ଦୁଇ କୁଳକୁ ସନ୍ଦେହରେ ପକାଇଥାଏ । ମୋର ଏହି ଭାର୍ଯ୍ୟାର ଗର୍ଭରେ ଦୁଇଟି ପୁତ୍ର ମଧ୍ୟ ଜାତ ହୋଇଥିଲେ । ୧୨ । ସେମାନଙ୍କ ମଧ୍ୟରେ ଜ୍ୟେଷ୍ଠର ନାମ ମାୟାବୀ ଓ କନିଷ୍ଠର ନାମ ଦୁନ୍ଦୁଭି ଅଟେ । ହେ ତାତ ! ତୁମେ ପଚାରିବାରୁ ମୁଁ ସମସ୍ତ କଥା ଯଥାଯଥଭାବରେ ତୁମକୁ କହିଦେଲି । ୧୩ । ହେ ତାତ ! ଆପଣ କିଏ

ତ୍ୱାମିଦାନୀଂ କଥଂ ତାତ ଜାନୀୟାଂ କୋ ଭବାନ୍ନିତି ।
ଏବମୁକ୍ତଂ ତୁ ତଦ୍ରକ୍ଷୋ ବନୀତମିଦମବ୍ରବୀତ୍ । ୧୪ ।
ଅହଂ ପୌଲସ୍ତ୍ୟତନୟୋ ଦଶଗ୍ରୀବଶ୍ଚ ନାମତଃ ।
ମୁନେର୍ବିଶ୍ରବସୋ ଯସ୍ତୁ ତୃତୀୟୋ ବ୍ରହ୍ମଣୋଽଭବତ୍ । ୧୫ ।
ଏବମୁକ୍ତସ୍ତଦା ରାମ ରାକ୍ଷସେନ୍ଦ୍ରେଣ ଦାନବଃ ।
ମହର୍ଷେସ୍ତନୟଂ ଜ୍ଞାତ୍ୱା ମୟୋ ହର୍ଷମୁପାଗତଃ । ୧୬ ।
ଦାତୁଂ ଦୁହିତରଂ ତସ୍ମୈ ରୋଚୟାମାସ ତତ୍ର ବୈ ।
କରେଣ ତୁ କରଂ ତସ୍ୟା ଗ୍ରାହୟିତ୍ୱା ମୟସ୍ତଦା । ୧୭ ।
ପ୍ରହସନ୍ ପ୍ରାହ ଦୈତ୍ୟେନ୍ଦ୍ରୋ ରାକ୍ଷସେନ୍ଦ୍ରମିଦଂ ବଚଃ ।
ଇୟଂ ମମାତ୍ମଜା ରାଜନ୍ ହେମୟାପ୍ସରସା ଧୃତା । ୧୮ ।
କନ୍ୟା ମନ୍ଦୋଦରୀ ନାମ ପତ୍ନ୍ୟର୍ଥଂ ପ୍ରତିଗୃହ୍ୟତାମ୍ ।
ବାଢ଼ମିତ୍ୟେବ ତଂ ରାମ ଦଶଗ୍ରୀବୋଽଭ୍ୟଭାଷତ । ୧୯ ।
ପ୍ରଜ୍ୱାଲ୍ୟ ତତ୍ର ଚୈବାଗ୍ନିମକରୋତ୍ ପାଣିସଂଗ୍ରହମ୍ ।
ସ ହି ତସ୍ୟ ମୟୋ ରାମ ଶାପାଭିଜ୍ଞସ୍ତପୋଧନାତ୍ ।୨୦।

---

ମୁଁ ଏ କଥା କପରି ଜାଣିବି ?” ମୟ ଏହିପ୍ରକାରେ କହିବାରୁ ରାକ୍ଷସ ରାବଣ ବିନୀତଭାବରେ କହିଲା ।୧୪। “ମୋର ନାମ ଦଶଗ୍ରୀବ ଅଟେ । ମୁଁ ପୁଲସ୍ତ୍ୟ ମୁନିଙ୍କ ବଂଶରେ ଜାତ ହୋଇଅଛି ଏବଂ ବିଶ୍ରବା ମୁନିଙ୍କର ପୁତ୍ର ଅଟେ । ବିଶ୍ରବା ବ୍ରହ୍ମାଙ୍କର ତୃତୀୟ ପୁରୁଷ ଅର୍ଥାତ୍ ପୌତ୍ର ଅଟନ୍ତି” । ୧୫ । ରାକ୍ଷସେନ୍ଦ୍ର ଦଶଗ୍ରୀବ ଏପ୍ରକାର କହିବା ଉତ୍ତାରୁ ଦାନବଶ୍ରେଷ୍ଠ ମୟ ଦଶଗ୍ରୀବକୁ ଏକ ମହର୍ଷିଙ୍କର ପୁତ୍ର ବୋଲି ଜାଣି ଆପଣା କନ୍ୟାକୁ ତାକୁ ଦେବାକୁ ପସନ୍ଦ କଲା । ଅନନ୍ତର ମୟ ଦଶଗ୍ରୀବ ହାତରେ ନିଜର କନ୍ୟାର ହାତ ଧରାଇ ଦେଇ ଈଷତ୍ ହାସ୍ୟକରି ତାହାକୁ କହିଲା, “ହେ ରାଜନ୍ ! ଏ ମୋର କନ୍ୟା ଅଟେ ଏବଂ ହେମା ନାମକ ଅପ୍ସରାର ଗର୍ଭରୁ ଜାତ ହୋଇଅଛି । ୧୬-୧୮ । ଏହାର ନାମ ମନ୍ଦୋଦରୀ ଅଟେ । ଏହାକୁ ତୁମେ ପତ୍ନୀରୂପେ ଗ୍ରହଣ କର ।” ହେ ରାମ ! ଏଥିଉତ୍ତାରୁ ଦଶଗ୍ରୀବ କହିଲା, “ତାହାହିଁ ହେଉ” । ୧୯ । ସେହିଠାରେ ଅଗ୍ନି ପ୍ରଜ୍ୱଳିତ କରି ରାବଣ ମନ୍ଦୋଦରୀର ପାଣିଗ୍ରହଣ କଲା । ହେ ରାମ ! ଅବଶ୍ୟ ମୟକୁ ଜଣା ଥିଲା ଯେ ତପସ୍ୱୀ ବିଶ୍ରବା ଦଶଗ୍ରୀବକୁ ଶାପ ଦେଇଅଛନ୍ତି । ତଥାପି ତାହାକୁ ବ୍ରହ୍ମାଙ୍କ କୁଳରେ ଜାତ ହୋଇ-ଥିବାର ଜାଣି ସେ ତାହା ସହିତ ନିଜର କନ୍ୟାକୁ ବିବାହ କରିଦେଲା । ୨୦-୨୧ ।

ବଦ୍ଧ୍ୱା ତେନ ସା ଦତ୍ତା ତସ୍ୟ ପୈତାମହଂ କୁଳମ୍ ।
ଅମୋଘାଂ ତସ୍ୟ ଶକ୍ତିଂ ଚ ପ୍ରଦଦୌ ପରମାଦ୍ଭୁତାମ୍ । ୨୧
ପରେଣ ତପସା ଲବ୍‌ଧାଂ ଜଘ୍ନିବାଁଲ୍ଲକ୍ଷ୍ମଣଂ ଯୟା ।
ଏବଂ ସ୍ୱୀକୃତଦାରୋ ବୈ ଲଙ୍କାୟା ଈଶ୍ୱରଃ ପ୍ରଭୁଃ । ୨୨।
ଗତ୍ୱା ତୁ ନଗରୀଂ ଭାର୍ଯ୍ୟେ ଭ୍ରାତୃଭ୍ୟାଂ ସମୁପାହରତ୍
ବୈରୋଚନସ୍ୟ ଦୌହିତ୍ରୀଂ ବଜ୍ରଜ୍ୱାଲେତି ନାମତଃ । ୨୩ ।
ତାଂ ଭାର୍ଯ୍ୟାଂ କୁମ୍ଭକର୍ଣ୍ଣସ୍ୟ ରାବଣଃ ସମକଳ୍ପୟତ୍ ।
ଗନ୍ଧର୍ବରାଜସ୍ୟ ସୁତାଂ ଶୈଳୂଷସ୍ୟ ମହାତ୍ମନଃ । ୨୪ ।
ସରମାଂ ନାମ ଧର୍ମଜ୍ଞାଂ ଲେଭେ ଭାର୍ଯ୍ୟାଂ ବିଭୀଷଣଃ ।
ତୀରେ ତୁ ସରସୋ ବୈ ତୁ ସଂଜଜ୍ଞେ ମାନସସ୍ୟ ହି । ୨୫ ।
ସରସ୍ତଦା ମାନସଂ ତୁ ବବୃଧେ ଜଲଦାଗମେ ।
ମାତ୍ରା ତୁ ତସ୍ୟାଃ କନ୍ୟାୟାଃ ସ୍ନେହେନାକ୍ରନ୍ଦିତଂ ବଚଃ । ୨୬
ସରୋ ମା ବର୍ଦ୍ଧୟସ୍ୱେତି ତତଃ ସା ସରମାଭବତ୍ ।
ଏବଂ ତେ କୃତଦାରା ବୈ ରେମିରେ ତତ୍ର ରାକ୍ଷସାଃ । ୨୭ ।
ସ୍ୱାଂ ସ୍ୱାଂ ଭାର୍ଯ୍ୟାମୁପାଗମ୍ୟ ଗନ୍ଧର୍ବା ଇବ ନନ୍ଦନେ ।
ତତୋ ମନ୍ଦୋଦରୀ ପୁତ୍ରଂ ମେଘନାଦମଜୀଜନତ୍ । ୨୮ ।

---

ମୟ ଦାନବ ଉତ୍କୃଷ୍ଟ ତପସ୍ୟା ଦ୍ୱାରା ଲାଭକରିଥିବା ଏକ ପରମ ଅଦ୍ଭୁତ ଅମୋଘ ଶକ୍ତି ରାବଣଙ୍କୁ ଦେଇଥିଲା ଏବଂ ରାବଣ ଏହି ଶକ୍ତି ଲକ୍ଷ୍ମଣଙ୍କୁ ପ୍ରହାର କରିଥିଲା । ଏହି ପ୍ରକାରେ ଭାର୍ଯ୍ୟା ଗ୍ରହଣକରି ଲଙ୍କାର ପ୍ରଭୁ ରାକ୍ଷସରାଜ ରାବଣ ଲଙ୍କାକୁ ଯାଇ ନିଜର ଦୁଇ ଭାଇଙ୍କ ବିବାହ ପାଇଁ ଦୁଇଟି ଭାର୍ଯ୍ୟା ସଂଗ୍ରହକଲା । ସେଥିରୁ ଗୋଟିଏ ଥିଲା ବୈରୋଚନଙ୍କର ପୌତ୍ରୀ ବଜ୍ରଜ୍ୱାଳା । ରାବଣ ବଜ୍ରଜ୍ୱାଳାକୁ କୁମ୍ଭକର୍ଣ୍ଣ ସହିତ ଏବଂ ଗନ୍ଧର୍ବରାଜ ଶୈଳୂଷଙ୍କ କନ୍ୟା ସରମାଙ୍କୁ ବିଭୀଷଣଙ୍କ ସହିତ ବିବାହ କରାଇଲା । ସରମା ବଡ଼ ଧର୍ମଜ୍ଞା ଥିଲେ । ସେ ମାନସ ସରୋବର ତୀରରେ ଜନ୍ମ ହୋଇଥିଲେ । ୨୨-୨୫ । ବର୍ଷାକାଳରେ ଯେତେବେଳେ ମାନସ ସରୋବରର ଜଳ ବଢ଼ିବାକୁ ଲାଗିଲା, ସେତେବେଳେ ସେହି କନ୍ୟା ସରମାର ମାତା ସ୍ନେହବଶତଃ ଚିତ୍କାରକରି କହିଥିଲେ ।୨୬। "ହେ ସରୋବର ! ତୁ ବଢ଼ ନାହିଁ ।" ଏହେତୁରୁ ସେହି କନ୍ୟାର ନାମ 'ସରମା' ହେଲା । ଏହିପରିଭାବରେ ବିବାହ କରି ସେ ରାକ୍ଷସମାନେ ସେଠାରେ ସ୍ୱ ସ୍ୱ ଭାର୍ଯ୍ୟାମାନଙ୍କ ସହିତ ଗନ୍ଧର୍ବମାନେ ନନ୍ଦନ ବନରେ ବିହାର କଲାପରି ବିହାର କରିବାକୁ ଲାଗିଲେ । ଅନନ୍ତର ମନ୍ଦୋଦରୀ ମେଘନାଦ ନାମକ ପୁତ୍ର

ସ ଏଷ ଇନ୍ଦ୍ରଜିନ୍ନାମ ଯୁଷ୍ମାଭିରଭିଧୀୟତେ ।
ଜାତମାତ୍ରେଣ ହି ପୁରା ତେନ ରାବଣସୂନୁନା । ୨୯ ।
ରୁଦତା ସୁମହାନ୍ ମୁକ୍ତୋ ନାଦୋ ଜଲଧରୋପମଃ ।
ଜଡ଼ୀକୃତା ଚ ସା ଲଙ୍କା ତସ୍ୟ ନାଦେନ ରାଘବ । ୩୦ ।
ପିତା ତସ୍ୟାକରୋନ୍ନାମ ମେଘନାଦ ଇତି ସ୍ୱୟମ୍ ।
ସୋଽବର୍ଧତ ତଦା ରାମ ରାବଣାନ୍ତଃପୁରେ ଶୁଭେ । ୩୧ ।
ରକ୍ଷମାଣୋ ବରସ୍ତ୍ରୀଭିଶ୍ଛନ୍ନଃ କାଷ୍ଠୈରିବାନଲଃ ।
ମାତାପିତ୍ରୋର୍ମହାହର୍ଷଂ ଜନୟନ୍ ରାବଣାତ୍ମଜଃ । ୩୨ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ରାବଣାଦିବିବାହୋ ନାମ ଦ୍ୱାଦଶଃ ସର୍ଗଃ ।

---

# ତ୍ରୟୋଦଶଃ ସର୍ଗଃ

## ଧନଦଦୂତହନନମ୍

ଅଥ ଲୋକେଶ୍ୱରୋତ୍ସୃଷ୍ଟା ତତ୍ର କାଲେନ କେନଚିତ୍ ।
ନିଦ୍ରା ସମଭବତ୍ତୀବ୍ରା କୁମ୍ଭକର୍ଣସ୍ୟ ରୂପିଣୀ । ୧ ।

---

ଜନ୍ମକଲେ ।୨୭-୨୮। ସେହି ମେଘନାଦକୁ ତୁମ୍ଭେମାନେ ସମସ୍ତେ ଇନ୍ଦ୍ରଜିତ ନାମ ଡାକୁଥାଅ । ହେ ରାମ ! ସେହି ରାବଣପୁତ୍ର ଜନ୍ମ ହେବାମାତ୍ରେ ମେଘସଦୃଶ ଗର୍ଜନ କରିଥିଲା ଏବଂ ସେହି ଗର୍ଜନଶବ୍ଦରେ ସମସ୍ତ ଲଙ୍କାବାସୀ ସ୍ତମ୍ଭୀଭୂତ ହୋଇଯାଇଥିଲେ । ୨୯-୩୦ । ସେହି ହେତୁରୁ ତାର ପିତା ରାବଣ ନିଜେ ତାର ନାମ ମେଘନାଦ ଦେଇଥିଲା । ହେ ରାମ ! ମେଘନାଦ ରାବଣର ଶୁଭ ଅନ୍ତଃପୁରରେ ବଢ଼ିବାକୁ ଲାଗିଲା ।୩୧। ଶ୍ରେଷ୍ଠ ସ୍ତ୍ରୀମାନଙ୍କ ଦ୍ୱାରା ପାଳିତ ହୋଇ କାଷ୍ଠ ଦ୍ୱାରା ଆଚ୍ଛାଦିତ ଅଗ୍ନି ସଦୃଶ ମାତାପିତାଙ୍କର ହର୍ଷବର୍ଦ୍ଧନ କରି ରାବଣପୁତ୍ର ଇନ୍ଦ୍ରଜିତ ବଢ଼ିବାକୁ ଲାଗିଲା । ୩୨ ।

---

## ୧୩ଶ ସର୍ଗ

### ( କୁବେରଦୂତବଧ )

କିଛିଦିନ ଉତ୍ତାରୁ ବ୍ରହ୍ମାଙ୍କର ବରଦାନ ଅନୁସାରେ କୁମ୍ଭକର୍ଣ୍ଣକୁ ମୂର୍ତ୍ତିମତୀ ଘୋର ନିଦ୍ରା ଘୋଟିଗଲା । ୧ । ସେହି ସମୟରେ ପାଖରେ ବସିଥିବା ନିଜର ଭାଇକୁ

ତତୋ ଭ୍ରାତରମାସୀନଂ କୁମ୍ଭକର୍ଣୋଽବ୍ରବୀଦ୍ ବଚଃ ।
ନିଦ୍ରା ମାଂ ବାଧତେ ରାଜନ୍ କାରୟସ୍ୱ ମମାଲୟମ୍ । ୨ ।
ବିନିଯୁକ୍ତାସ୍ତତୋ ରାଜ୍ଞା ଶିଳ୍ପିନୋ ବିଶ୍ୱକର୍ମବତ୍ ।
ଅକୁର୍ବନ୍ କୁମ୍ଭକର୍ଣସ୍ୟ କୈଳାସସମମାଲୟମ୍ । ୩ ।
ବିସ୍ତୀର୍ଣଂ ଯୋଜନଂ ଶୁଭ୍ରଂ ତତୋ ଦ୍ୱିଗୁଣମାୟତମ୍ ।
ଦର୍ଶନୀୟଂ ନିରାବାଧଂ କୁମ୍ଭକର୍ଣସ୍ୟ ଚକ୍ରିରେ । ୪ ।
ସ୍ଫାଟିକୈଃ କାଞ୍ଚନୈଶ୍ଚିତ୍ରୈଃ ସ୍ତମ୍ଭୈଃ ସର୍ବତ୍ର ଶୋଭିତମ୍ ।
ବୈଦୂର୍ୟକୃତସୋପାନଂ କିଙ୍କିଣୀଜାଲକଂ ତଥା । ୫ ।
ଦାନ୍ତତୋରଣବିନ୍ୟସ୍ତଂ ବଜ୍ରସ୍ଫଟିକବେଦିକମ୍ ।
ମନୋହରଂ ସର୍ବସୁଖଂ କାରୟାମାସ ରାକ୍ଷସଃ । ୬ ।
ସର୍ବତ୍ର ସୁଖଦଂ ନିତ୍ୟଂ ମେରୋଃ ପୁଣ୍ୟାଂ ଗୁହାମିବ ।
ତତ୍ର ନିଦ୍ରାସମାବିଷ୍ଟଃ କୁମ୍ଭକର୍ଣୋ ମହାବଲଃ ।
ବହୂନ୍ୟବ୍ଦସହସ୍ରାଣି ଶୟାନୋ ନ ପ୍ରବୁଧ୍ୟତେ । ୭ ।

---

କୁମ୍ଭକର୍ଣ୍ଣ କହିଲା "ହେ ରାଜନ୍ ! ମୋତେ ନିଦ୍ରା ବିଶେଷ କଷ୍ଟ ଦେଉଅଛି; ସୁତରାଂ ମୋ ନିମନ୍ତେ ଗୋଟିଏ ଘର କରିଦିଅ" । ୨ । ଏହା ଶୁଣି ରାବଣ ବିଶ୍ୱକର୍ମା ସଦୃଶ ଶିଳ୍ପୀମାନଙ୍କୁ ନିଯୁକ୍ତ କରାଇଲେ ଓ ସେମାନେ କୁମ୍ଭକର୍ଣ୍ଣ ପାଇଁ କୈଳାସ ସଦୃଶ ଏକ ଗୃହ ନିର୍ମାଣ କଲେ । ୩ । ସେମାନେ ଏକଯୋଜନବିସ୍ତୃତ ଏବଂ ତାର ଦୁଇଗୁଣ ଦୀର୍ଘ ଏକ ସୁନ୍ଦରଶୁଭ୍ର,ସବୁପ୍ରକାର ବାଧାରହିତ ଗୃହ କୁମ୍ଭକର୍ଣ୍ଣ ପାଇଁ ନିର୍ମାଣ କଲେ । ୪ । ସେଥିରେ ସର୍ବତ୍ର ସ୍ଫଟିକ ଏବଂ ସୁବର୍ଣ୍ଣର ଖଚିତ ସ୍ତମ୍ଭମାନ ଶୋଭା ପାଉଥିଲା । ସେହି ଗୃହର ସୋପାନଗୁଡ଼ିକ ବୈଦୂର୍ଯ୍ୟରେ ତିଆରି ହୋଇଥିଲା ଏବଂ ତାହାର ଦ୍ୱାରର ତୋରଣଗୁଡ଼ିକ ହାତିଦାନ୍ତରେ ତିଆରି ହୋଇଥିଲା । ସେଥିରେ ଛୋଟ ଛୋଟ ଘଣ୍ଟିମାନ ଲାଗିଥିଲା । ସେହି ଗୃହରେ ହୀରା ଓ ସ୍ଫଟିକର ବେଦିମାନ ତିଆରି ହୋଇଥିଲା । ଏହିପ୍ରକାରେ ରାବଣ ଏକ ମନୋହର ଏବଂ ସର୍ବସୁଖକର ଗୃହ ନିର୍ମାଣ କରାଇଲା ।୫-୬। ସେହି ଗୃହର ସବୁ ଅଂଶ ସବୁ ଋତୁରେ ସୁଖକର ଓ ସୁନ୍ଦର ହୋଇଥିଲା ଏବଂ ତାହା ମେରୁ ପର୍ବତର ପବିତ୍ର ଗୁହା ତୁଲ୍ୟ ହୋଇଥିଲା । ମହାବଳୀ କୁମ୍ଭକର୍ଣ୍ଣ ସେଠାରେ ନିଦ୍ରାରେ ଆଚ୍ଛନ୍ନ ହୋଇ ଶୋଇ ରହିଲା । ସେ ବହୁ ସହସ୍ର ବର୍ଷ ପର୍ଯ୍ୟନ୍ତ ସେଠାରେ ଶୋଇ ରହିଲା ଓ ଆଉ

ନିଦ୍ରାଭିଭୂତେ ତୁ ତଦା କୁମ୍ଭକର୍ଣେ ଦଶାନନଃ ।
ଦେବର୍ଷିଯକ୍ଷଗନ୍ଧର୍ବାନ୍ ସଂଜଘ୍ନେ ହି ନିରଙ୍କୁଶଃ । ୮ ।
ଉଦ୍ୟାନାନି ଚ ଚିତ୍ରାଣି ନନ୍ଦନାଦୀନି ଯାନି ଚ ।
ତାନି ଗତ୍ୱା ସୁସଂକ୍ରୁଦ୍ଧୋ ଭିନତ୍ତି ସ୍ମ ଦଶାନନଃ । ୯ ।
ନଦୀଂ ଗଜ ଇବ କ୍ରୀଡ଼ନ୍ ବୃକ୍ଷାନ୍ ବାୟୁରିବ କ୍ଷିପନ୍ ।
ନଗାନ୍ ବଜ୍ର ଇବୋତ୍ସୃଷ୍ଟୋ ବିଧ୍ୱଂସୟତି ରାକ୍ଷସଃ । ୧୦ ।
ତଥାବୃତ୍ତଂ ତୁ ବିଜ୍ଞାୟ ଦଶଗ୍ରୀବଂ ଧନେଶ୍ୱରଃ ।
କୁଳାନୁରୂପଂ ଧର୍ମଜ୍ଞୋ ବୃତ୍ତଂ ସଂସ୍ମୃତ୍ୟ ଚାତ୍ମନଃ । ୧୧ ।
ସୌଭ୍ରାତ୍ରଦର୍ଶନାର୍ଥଂ ତୁ ଦୂତଂ ବୈଶ୍ରବଣସ୍ତଦା ।
ଲଙ୍କାଂ ସଂପ୍ରେଷୟାମାସ ଦଶଗ୍ରୀବସ୍ୟ ବୈ ହିତମ୍ । ୧୨ ।
ସ ଗତ୍ୱା ନଗରୀଂ ଲଙ୍କାମାସସାଦ ବିଭୀଷଣମ୍ ।
ମାନିତସ୍ତେନ ଧର୍ମେଣ ପୃଷ୍ଟଶ୍ଚାଗମନଂ ପ୍ରତି । ୧୩ ।
ପୃଷ୍ଟ୍ୱା ଚ କୁଶଳଂ ରାଜ୍ଞୋ ଜ୍ଞାତୀନାଂ ଚ ବିଭୀଷଣଃ ।
ସଭାୟାଂ ଦର୍ଶୟାମାସ ତମାସୀନଂ ଦଶାନନମ୍ । ୧୪ ।

---

ଉଠିଲା ନାହିଁ । ୭ । କୁମ୍ଭକର୍ଣ୍ଣ ନିଦ୍ରାଭିଭୂତ ହୋଇ ଶୋଇଥିବା ସମୟରେ ରାବଣ ନିରଙ୍କୁଶଭାବରେ ଦେବତା, ଋଷି ଓ ଯକ୍ଷମାନଙ୍କୁ ସଂହାର କରିବାକୁ ଲାଗିଲା । ୮ । ଦଶାନନ ରାବଣ ଅତ୍ୟନ୍ତ କ୍ରୁଦ୍ଧ ହୋଇ ଦେବତାମାନଙ୍କର ନନ୍ଦନାଦି ସୁନ୍ଦର ଉଦ୍ୟାନମାନଙ୍କ ଭିତରେ ପଶି ତାହାକୁ ଛାରଖାର କରିପକାଉଥିଲା । ୯ । ରାବଣ ନଦୀରେ ଗଜସଦୃଶ କ୍ରୀଡ଼ା କରୁଥିଲା, ବୃକ୍ଷମାନଙ୍କୁ ବାୟୁ ସଦୃଶ ଓ ପର୍ବତମାନଙ୍କୁ ବଜ୍ର ସଦୃଶ ଧ୍ୱସ୍ତବିଧ୍ୱସ୍ତ କରିପକାଉଥିଲା । ୧୦ । ଧର୍ମଜ୍ଞ ଧନେଶ୍ୱର ରାବଣର ଏହି କାର୍ଯ୍ୟକଳାପ ଶୁଣି ଏବଂ ନିଜର ଓ କୁଳର ଆଚାର ସ୍ମରଣ କରି ନିଜର ଭ୍ରାତୃ-ମର୍ଯ୍ୟାଦା ଦେଖାଇବା ପାଇଁ ଲଙ୍କାକୁ ତାହାର ହିତ ନିମନ୍ତେ ନିଜର ଦୂତ ପଠାଇଲେ । ୧୧-୧୨ । ସେହି ଦୂତ ଲଙ୍କାକୁ ଯାଇ ପ୍ରଥମେ ବିଭୀଷଣଙ୍କୁ ଦେଖାକଲା । ବିଭୀଷଣ ତାହାକୁ ଯଥାବିଧି ସମ୍ମାନକରି ତାହାଙ୍କ ଆଗମନର କାରଣ ପଚାରିଲେ । ୧୩ । ବିଭୀଷଣ ରାଜା କୁବେରଙ୍କର ଓ ତାହାଙ୍କ ପରିବାରର କୁଶଳାଦି ପଚାରିସାରି ରାଜସଭାକୁ ତାକୁ ନେଇଗଲେ ଏବଂ ସେଠାରେ ସିଂହାସନରେ ବସିଥିବା ରାବଣ ସହିତ ସାକ୍ଷାତ କରାଇଦେଲେ । ୧୪ । ସେହି ଦୂତ ନିଜ ତେଜରେ ଦେଦୀପ୍ୟମାନ

ସ ଦୃଷ୍ଟ୍ୱା ତତ୍ର ରାଜାନଂ ଦୀପ୍ୟମାନଂ ସ୍ୱତେଜସା ।
ଜୟେନ ବାଗ୍ଭି ସଂପୂଜ୍ୟ ତୂଷ୍ଣୀଂ ସମଭିବର୍ତ୍ତତ । ୧୫ ।
ତଂ ତତୋତ୍ତମପର୍ଯ୍ୟଙ୍କେ ବରାସ୍ତରଣଶୋଭିତେ ।
ଉପବିଷ୍ଟଂ ଦଶଗ୍ରୀବଂ ଦୂତୋ ବାକ୍ୟମଥାବ୍ରବୀତ୍ । ୧୬ ।
ରାଜନ୍ ବଦାମି ତେ ସର୍ବଂ ଭ୍ରାତା ତବ ଯଦବ୍ରବୀତ୍ ।
ଉଭୟୋଃ ସଦୃଶଂ ବୀର ବୃତ୍ତସ୍ୟ ଚ କୁଲସ୍ୟ ଚ ।୧୭।
ସାଧୁ ପର୍ଯ୍ୟାପ୍ତମେତାବତ୍ କୃତଶ୍ଚାରିତ୍ରସଂଗ୍ରହଃ ।
ସାଧୁଧର୍ମେ ବ୍ୟବସ୍ଥାନଂ କ୍ରିୟତାଂ ଯଦି ଶକ୍ୟତେ । ୧୮ ।
ଦୃଷ୍ଟଂ ମେ ନନ୍ଦନଂ ଭଗ୍ନମୃଷୟୋ ନିହତାଃ ଶ୍ରୁତାଃ ।
ଦେବତାନାଂ ସମୁଦ୍ୟୋଗସ୍ତ୍ୱତ୍ତୋ ରାଜନ୍ ମମ ଶ୍ରୁତଃ । ୧୯ ।
ନିରାକୃତଶ୍ଚ ବହୁଶସ୍ତ୍ୱୟାହଂ ରାକ୍ଷସାଧିପ ।
ସାପରାଧୋଽପି ବାଲୋ ହି ରକ୍ଷିତବ୍ୟଃ ସ୍ୱବାନ୍ଧବୈଃ । ୨୦ ।
ଅହଂ ତୁ ହିମବତ୍‌ପୃଷ୍ଠଂ ଗତୋ ଧର୍ମମୁପାସିତୁମ୍ ।
ରୌଦ୍ରଂ ବ୍ରତଂ ସମାସ୍ଥାୟ ନିୟତୋ ନିୟତେନ୍ଦ୍ରିୟଃ । ୨୧ ।

---

ହୋଇଥିବା ରାବଣକୁ ଦେଖି, "ତୁମ୍ଭର ଜୟ ହେଉ" ବୋଲି କହି ଅଭିବାଦନ କରି ତୁନି ହୋଇ ଠିଆ ହୋଇ ରହିଲା । ୧୫ । ବହୁମୂଲ୍ୟ ଶଯ୍ୟାରେ ଆଚ୍ଛାଦିତ ପଲଙ୍କ ଉପରେ ବସିଥିବା ଦଶଗ୍ରୀବକୁ ଦୂତ କହିଲା । ୧୬ । ହେ ରାଜନ୍ ! ଆପଣଙ୍କର ଭ୍ରାତା କୁବେର ମାତା ଏବଂ ପିତାଙ୍କର କୁଳର ଅନୁରୂପ ଯେଉଁ ସନ୍ଦେଶ ଆପଣଙ୍କଠାକୁ ପଠାଇଛନ୍ତି ତାହା ମୁଁ ଆପଣଙ୍କୁ କହୁଅଛି । ୧୭ । ତୁମେ ଏପର୍ଯ୍ୟନ୍ତ ଯାହା କିଛି କରିଛ ତାହା ଯଥେଷ୍ଟ ହୋଇଅଛି । ବର୍ତ୍ତମାନ ଓ ଭବିଷ୍ୟତରେ ଏପରି କାର୍ଯ୍ୟ କର ଯଦ୍ଦ୍ୱାରା ନିଜର ଚରିତ୍ର ସୁଧୁରିବ ଏବଂ ଧର୍ମରେ ତୁମେ ଅଟଳ ରହିବ । ଯଦି ପାର ଏହି କାର୍ଯ୍ୟମାନ କର । ୧୮ । ହେ ରାଜନ୍ ! ତୁମ୍ଭ ଦ୍ୱାରା ଧ୍ୱସ୍ତବିଧ୍ୱସ୍ତ ହୋଇଥିବା ନନ୍ଦନ ବନକୁ ମୁଁ ଦେଖିଅଛି ଏବଂ ଋଷିମାନେ ନିହତ ହୋଇଥିବା ସମ୍ବାଦ ମଧ୍ୟ ଶୁଣିଅଛି । ସେଥି ସଙ୍ଗେ ସଙ୍ଗେ ତୁମ୍ଭ ବିରୋଧରେ ଦେବତାମାନେ ଯେଉଁ ଉଦ୍‌ଯୋଗ କରୁଛନ୍ତି ତାର ସମାଚାର ମଧ୍ୟ ମୁଁ ଶୁଣିଛି ।୧୯। ହେ ରାକ୍ଷସରାଜ ! ଯଦିଓ ତୁମେ ବାରମ୍ବାର ମୋର ନିରାଦର କରିଅଛ ତଥାପି ସେହି ନିରାଦରକାରୀ ବାଳକକୁ ରକ୍ଷାକରିବା ତାହାର ନିଜର ବନ୍ଧୁମାନଙ୍କର କର୍ତ୍ତବ୍ୟ ଅଟେ । ୨୦ । ମୁଁ ହିମାଳୟ ପର୍ବତ ଉପରକୁ ଯାଇ ସେଠାରେ ଜିତେନ୍ଦ୍ରିୟ ହୋଇ ଏବଂ ତପସ୍ୟାର ନିୟମ ପାଳନକରି ମହାଦେବଙ୍କୁ ସନ୍ତୁଷ୍ଟ କରିବା ପାଇଁ ନିଜ

ତତ୍ର ଦେବୋ ମୟା ଦୃଷ୍ଟଃ ସହ ଦେବ୍ୟାମଯା ପ୍ରଭୁଃ ।
ସବ୍ୟଂ ଚକ୍ଷୁର୍ମୟା ଦୈବାତ୍ତତ୍ର ଦେବ୍ୟାଂ ନିପାତିତମ୍ । ୨୨ ।
କା ନ୍ୱିୟଂ ସ୍ୟାଦିତି ଶୁଭା ନ ଖଲ୍ୱନ୍ୟେନ ହେତୁନା ।
ରୂପଂ ହ୍ୟନୁପମଂ କୃତ୍ୱା ରୁଦ୍ରାଣୀ ତତ୍ର ତିଷ୍ଠତି । ୨୩ ।
ଦେବ୍ୟା ଦିବ୍ୟପ୍ରଭାବେଣ ଦଗ୍ଧଂ ସବ୍ୟଂ ମମେକ୍ଷଣମ୍ ।
ରେଣୁଧ୍ୱସ୍ତମିବ ଜ୍ୟୋତିଃ ପିଙ୍ଗଳତ୍ୱମୁପାଗତମ୍ । ୨୪ ।
ତତୋଽହମନ୍ୟଦ୍ୱିସ୍ତୀର୍ଣ୍ଣ ଗତ୍ୱା ତସ୍ୟ ଗିରେସ୍ତଟମ ।
ତୂଷ୍ଣୀଂ ବର୍ଷଶତାନ୍ୟଷ୍ଟୌ ସମାଧରଂ ମହାବ୍ରତମ୍ । ୨୫ ।
ସମାପ୍ତେ ନିୟମେ ତସ୍ମିଂସ୍ତତ୍ର ଦେବୋ ମହେଶ୍ୱରଃ ।
ପ୍ରୀତଃ ପ୍ରୀତେନ ମନସା ପ୍ରାହ ବାକ୍ୟମିଦଂ ପ୍ରଭୁଃ । ୨୬ ।
ପୈଙ୍ଗଲ୍ୟଂ ଯଦବାପ୍ତଂ ହି ଦେବ୍ୟା ରୂପନିରୀକ୍ଷଣାତ୍ । ୨୭ ।
ପ୍ରୀତୋଽସ୍ମି ତବ ଧର୍ମଜ୍ଞ ତପସା ତେନ ସୁବ୍ରତ ।
ମୟା ଚୈତଦ୍ ବ୍ରତଂ ଚୀର୍ଣ୍ଣଂ ତ୍ୱୟା ଚୈବ ଧନାଧିପ । ୨୮ ।
ତୃତୀୟଃ ପୁରୁଷୋ ନାସ୍ତି ଯଶ୍ଚରେଦ୍ ବ୍ରତମୀଦୃଶମ୍ ।
ବ୍ରତଂ ସୁଦୁଶ୍ଚରଂ ହ୍ୟେତନ୍ମୟା ହ୍ୟୁତ୍ପାଦିତଂ ପୁରା । ୨୯ ।

---

କାମରେ ଲାଗିରହିଅଛୁ । ୨୧ । ସେଠାରେ ପାର୍ବତୀ ଓ ଶିବଙ୍କ ସହିତ ମୋର ଦେଖା ହେଲା । ଦୈବଯୋଗରେ ମୋର ଦକ୍ଷିଣ ଚକ୍ଷୁ ଦେବୀ ପାର୍ବତୀଙ୍କ ଉପରେ ପଡ଼ିଗଲା । ୨୨ । ଏ କଏ ବୋଲି ତାଙ୍କୁ ମୁଁ କେବଳ ଦେଖିବାକୁ ଚାହିଁଥିଲି । ଏହା ଛଡ଼ା ମୁଁ ତାଙ୍କୁ ଚାହିଁବାର ଅନ୍ୟ କାରଣ ନ ଥିଲା । ଦେବୀ ପାର୍ବତୀ ଅନୁପମ ରୂପ ଧାରଣ କରି ସେଠାରେ ରହିଥିଲେ ।୨୩ । ସେହି ଦେବୀଙ୍କର ଦିବ୍ୟ ପ୍ରଭାବରେ ମୋର ବାମଚକ୍ଷୁ ଦଗ୍ଧ ହୋଇଗଲା । ଧୂଳିରେ ଆଚ୍ଛାଦିତ ହୋଇଥିବା ଜ୍ୟୋତିପରି ମୋର ସେ ଆଖି ପିଙ୍ଗଳବର୍ଣ୍ଣ ହୋଇଗଲା । ୨୪ । ତଦନନ୍ତର ମୁଁ ସେହି ପାହାଡ଼ର ଏକ ବିସ୍ତୀର୍ଣ୍ଣ ପାର୍ଶ୍ୱକୁ ଯାଇ ସେଠାରେ ଆଠ ଶହ ବର୍ଷ ପର୍ଯ୍ୟନ୍ତ ମୌନ ମହାବ୍ରତ ଧାରଣ କରି ବସିରହିଲି । ୨୫ । ମୋର ଏ ବ୍ରତ ନିୟମ ପୂର୍ଣ୍ଣ ହେବା ଉତ୍ତାରୁ ଭଗବାନ୍ ମହେଶ୍ୱର ପ୍ରସନ୍ନମନରେ ମୋତେ କହିଲେ । ୨୬ । 'ହେ ସୁବ୍ରତ ! ଦେବୀଙ୍କର ରୂପକୁ ଚାହିଁବା ହେତୁରୁ ତୁମର ଚକ୍ଷୁ ପିଙ୍ଗଳବର୍ଣ୍ଣ ହୋଇଯାଇଛି । ଯାହା ହେଉ, ହେ ଧର୍ମଜ୍ଞ ! ତୁମର ଏ ତପସ୍ୟାରେ ମୁଁ ପ୍ରୀତ ହୋଇଅଛି । ହେ ଧନାଧିପ ! ମୁଁ ଏ ବ୍ରତ ପୂର୍ଣ୍ଣ କରିଥିଲି ଏବଂ ତୁମେ ପୁଣି ଏହା ନିର୍ବାହ କଲ ।୨୭-୨୮। ଏପରି ବ୍ରତ ଆଚରଣ କରିବା ଭଳି ତୃତୀୟ ପୁରୁଷ ଆଉ କେହି ନାହିଁ । ପୂର୍ବ କାଳରେ ମୁଁ ଏହି ଦୁଷ୍କର ବ୍ରତ ସମ୍ପାଦନ କରିଥିଲି । ୨୯ । ହେ ସୌମ୍ୟ,

ତତ୍ସଖିତ୍ୱଂ ମୟା ସୌମ୍ୟ ରୋଚୟସ୍ୱ ଧନେଶ୍ୱର ।
ତପସା ନିର୍ଜିତଶ୍ଚାହଂ ସଖା ମମ ଭବାନଘ । ୩୦ ।
ଦେବ୍ୟା ଦଗ୍ଧଂ ପ୍ରଭାବେଣ ଯଚ୍ଚ ସବ୍ୟଂ ତବେକ୍ଷଣମ୍ ।
ଏକାକ୍ଷିପିଙ୍ଗଲେତ୍ୟେବଂ ନାମ ସ୍ଥାସ୍ୟତି ଶାଶ୍ୱତମ୍ । ୩୧ ।
ଏବଂ ତେନ ସଖିତ୍ୱଂ ଚ ପ୍ରାପ୍ୟ ନୁଜ୍ଞାଂ ଚ ଶଙ୍କରାତ୍ ।
ଆଗତ୍ୟ ଚ ଶ୍ରୁତୋଽଦ୍ୟଂ ମେ ତବ ପାପବିନିଶ୍ଚୟଃ । ୩୨ ।
ତଦଧର୍ମିଷ୍ଠସଂଯୋଗାନ୍ନିବର୍ତ୍ତ କୁଳଦୂଷଣାତ୍ ।
ଚିନ୍ତ୍ୟତେ ହି ବଧୋପାୟଃ ସର୍ଷିସଙ୍ଘୈଃ ସୁରୈସ୍ତବ । ୩୩ ।
ଏବମୁକ୍ତୋ ଦଶଗ୍ରୀବଃ କ୍ରୁଦ୍ଧଃ ସଂରକ୍ତଲୋଚନଃ ।
ହସ୍ତୌ ଦନ୍ତାଂଶ୍ଚ ସଂପୀଡ୍ୟ ବାକ୍ୟମେତଦୁବାଚ ହ । ୩୪ ।
ବିଜ୍ଞାତଂ ତେ ମୟା ଦୂତ ବାକ୍ୟଂ ଯଦ୍ୟ ପ୍ରଭାଷସେ ।
ନୈବ ତ୍ୱମସି ନୈବାସୌ ଭ୍ରାତା ଯେନାସି ପ୍ରେଷିତଃ । ୩୫ ।
ହିତଂ ନୈଷ ମମୈତଦ୍ଧି ବ୍ରବୀତି ଧନରକ୍ଷକଃ ।
ମହେଶ୍ୱରସଖିତ୍ୱଂ ତୁ ମୂଢ଼ ଶ୍ରାବୟସେ କିଲ । ୩୬ ।

---

ହେ ଧନେଶ୍ୱର ! ତୁମେ ଆଜଠାରୁ ମୋ ସଙ୍ଗରେ ମିତ୍ରତା କର । ହେ ନିଷ୍ପାପ ! ତପସ୍ୟାଦ୍ୱାରା ତୁମେ ମୋତେ ଜିଣିଅଛ । ଅତଏବ ତୁମେ ମୋର ସଖା ହୁଅ । ୩୦ । ତୁମ୍ଭର ବାମଚକ୍ଷୁ ଦେବୀ ପାର୍ବତୀଙ୍କ ପ୍ରଭାବରେ ଦଗ୍ଧ ହୋଇଯାଇଥିବାରୁ ତୁମେ ପିଙ୍ଗଳାକ୍ଷ ନାମରେ ଚିରସ୍ଥାୟୀ ହୋଇ ରହିବ' । ୩୧ । ଏହିପ୍ରକାରେ ମୋର ଓ ଶିବଙ୍କର ମୈତ୍ରୀ ହୋଇଗଲା ଏବଂ ମୁଁ ଶିବଙ୍କର ଅନୁମତି ନେଇ ଫେରି ଆସି ତୁମ୍ଭର ଏ ପାପସଙ୍କଳ୍ପ କଥା ଶୁଣିଲି । ୩୨ । ଅତଏବ ତୁମେ ଏହି କୁଳକଳଙ୍କକାରୀ ଅନର୍ଥରୁ ନିବୃତ୍ତ ହୁଅ । ଦେବତା ଓ ଋଷିମାନେ ମିଳି ତୁମ୍ଭର ବଧର ଉପାୟ ଚିନ୍ତା କରୁଅଛନ୍ତି" । ୩୩ । କୁବେରଙ୍କର ଏ କଥା ଶୁଣି ଦଶଗ୍ରୀବର ଚକ୍ଷୁ କ୍ରୋଧରେ ରକ୍ତବର୍ଣ୍ଣ ହୋଇଗଲା ଏବଂ ସେ ଦାନ୍ତ କଡ଼ମଡ଼ କରି ଓ ହାତକୁ ମୁଷ୍ଟିବଦ୍ଧ କରି କ୍ରୋଧରେ କହିଲା । ୩୪ । "ହେ ଦୂତ ! ତୁ ଯେଉଁ କଥା ସବୁ କହିଲୁ ସେ ସମସ୍ତ ମୁଁ ବୁଝିଗଲି । ଏବେ ତୁ ନିଜେ ବା ମୋର ଯେଉଁ ଭାଇ ତୋତେ ଏଠାକୁ ପଠାଇଛନ୍ତି, ତୁମେ କେହି ବଞ୍ଚି ରହିପାରିବ ନାହିଁ । ୩୫ । ଧନରକ୍ଷାକାରୀ କୁବେର ଯାହା ସବୁ କହିଲେ ସେଥିରେ ମୋର କୌଣସି ହିତ ହୋଇ ପାରିବ ନାହିଁ । ରେ ମୂଢ଼ ! ତୁ ମୋତେ କୁବେରଙ୍କର ଶିବଙ୍କ ସହିତ

ନଚେଦଂ କ୍ଷମଣୀୟଂ ମେ ଯଦେତଦ୍ଭାଷିତଂ ତ୍ୱୟା ।
ଯଦେତଦ୍ଭାବନ୍ନୟା କାଲଂ ଦୂତ ତସ୍ୟ ତୁ ମର୍ଷିତମ୍ । ୩୭ ।
ନ ହନ୍ତବ୍ୟୋ ଗୁରୁର୍ଜ୍ୟେଷ୍ଠୋ ମୟା ଯ ଇତ ମନ୍ୟତେ ।
ତସ୍ୟ ତ୍ୱିଦାନୀଂ ଶ୍ରୁତ୍ୱା ମେ ବାକ୍ୟମେଷା କୃତା ମତଃ ।୩୮।
ତ୍ରୀ ଲ୍ଲୋକାନପି ଜେଷ୍ୟାମି ବାହୁବୀର୍ଯ୍ୟମୁପାଶ୍ରିତଃ ।
ଏତନ୍ମୁହୂର୍ତ୍ତମେବାହଂ ତସ୍ୟୈକସ୍ୟ ତୁ ବୈ କୃତେ ।୩୯ ।
ଚତୁରୋ ଲୋକପାଲାଂସ୍ତାନ୍ନୟିଷ୍ୟାମି ଯମକ୍ଷୟମ୍ ।
ଏବମୁକ୍ତ୍ୱା ତୁ ଲଙ୍କେଶୋ ଦୂତଂ ଖଡ୍ଗେନ ଜଘ୍ନିବାନ୍ । ୪୦ ।
ଦଦୌ ଭକ୍ଷୟିତୁଂ ହ୍ୟେନଂ ରାକ୍ଷସାନାଂ ଦୁରାତ୍ମନାମ୍ ।
ତତଃ କୃତସ୍ୱସ୍ତ୍ୟୟନୋ ରଥମାରୁହ୍ୟ ରାବଣଃ ।
ତ୍ରୈଲୋକ୍ୟବିଜୟାକାଙ୍କ୍ଷୀ ଯଯୌ ଯତ୍ର ଧନେଶ୍ୱରଃ । ୪୧ ।

ଇତ୍ୟାର୍ଷେ ଶ୍ରୀମଦ୍‌ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ଧନଦଦୂତହନନଂ ନାମ ତ୍ରୟୋଦଶଃ ସର୍ଗଃ ।

---

ମିଥ୍ୟା କଥା ଶୁଣାଉଛୁ । ୩୭ । ତୁ ଯେଉଁ ସବୁ କଥା କହିଲୁ ତାହା ମୁଁ କଦାପି କ୍ଷମା କରି ପାରିବି ନାହିଁ । ରେ ଦୂତ ! ମୁଁ ଯେ ଏତେବେଳଯାଏ ଚୁପ୍ ରହି ଏ ସବୁ କଥା ସହିଲି, ତାର କାରଣ ହେଉଛି ମୁଁ ତାହାକୁ ଜ୍ୟେଷ୍ଠ ଭ୍ରାତା ଗୁରୁ ହେତୁ ଅବଧ୍ୟ ବୋଲି ମନେକରେ । ବର୍ତ୍ତମାନ ତାଙ୍କର କଥା ଶୁଣି ମୁଁ ମନରେ ସ୍ଥିର-ସଙ୍କଳ୍ପ କରିଅଛି । ୩୭-୩୮ । ମୁଁ ନିଜର ବାହୁବଳରେ ତିନି ଲୋକକୁ ଜୟ କରିବି ଏବଂ ଏକମାତ୍ର କୁବେରଙ୍କ ନିମିତ୍ତହିଁ ଏହି ମୁହୂର୍ତ୍ତରେ ତାହା କରିବି । ୩୯ । ମୁଁ ଚାରି ଲୋକପାଳଙ୍କୁ ଯମପୁରକୁ ପଠାଇଦେବି ।" ଲଙ୍କାଧିପତି ରାବଣ ଏହା କହି ଦୂତକୁ ଖଡ୍ଗରେ ହାଣି ପକାଇଲା । ୪୦ । ସେ ତାହାର ମୃତ ଦେହକୁ ଦୁରାତ୍ମା ରାକ୍ଷସମାନଙ୍କୁ ଭକ୍ଷଣ କରିବାପାଇଁ ଦେଇଦେଲା । ତଦନନ୍ତର ରାବଣ ତିନି ଲୋକକୁ ଜିଣିବାକୁ ଇଚ୍ଛା କରି ସ୍ୱସ୍ତ୍ୟୟନାଦି କର୍ମ ସମ୍ପାଦନ କଲା ଏବଂ ରଥ ଉପରେ ଚଢ଼ି କୁବେର ଯେଉଁଠାରେ ଥିଲେ ସେଠାକୁ ବାହାରିଗଲା । ୪୧ ।

# ଚତୁର୍ଦ୍ଦଶଃ ସର୍ଗଃ

## ଯକ୍ଷରକ୍ଷୋଯୁଦ୍ଧମ୍

ତତସ୍ତୁ ସଚିବୈଃ ସାର୍ଦ୍ଧଂ ଷଡ୍‌ଭିର୍ନିତ୍ୟଂ ବଲୋଦ୍ଧତୈଃ ।
ମହୋଦରପ୍ରହସ୍ତାଭ୍ୟାଂ ମାରୀଚଶୁକସାରଣୈଃ । ୧ ।
ଧୂମ୍ରାକ୍ଷେଣ ଚ ବୀରେଣ ନିତ୍ୟଂ ସମରଗୃଧ୍ନୁନା
ସଂବୃତଃ ପ୍ରଯଯୌ ଶ୍ରୀମାନ୍ କ୍ରୋଧାଲ୍ଲୋକାନ୍ ଦହନ୍ନିବ । ୨
ପୁରାଣି ସ ନଦୀଃ ଶୈଳାନ୍ ବନାନ୍ୟୁପବନାନି ଚ ।
ଅତିକ୍ରମ୍ୟ ମୁହୂର୍ତ୍ତେନ କୈଳାସଂ ଗିରିମାଗମତ୍ । ୩ ।
ସଂନିବିଷ୍ଟଂ ଗିରୌ ତସ୍ମିନ୍ ରାକ୍ଷସେନ୍ଦ୍ରଂ ନିଶମ୍ୟ ତୁ ।
ଯୁଦ୍ଧେଽଭ୍ୟର୍ଥକୃତୋତ୍ସାହଂ ଦୁରାତ୍ମାନଂ ସମନ୍ତ୍ରିଣମ୍ । ୪ ।
ଯକ୍ଷା ନ ଶେକୁଃ ସଂସ୍ଥାତୁଂ ପ୍ରମୁଖେ ତସ୍ୟ ରକ୍ଷସଃ ।
ରାଜ୍ଞୋ ଭ୍ରାତେତି ବିଜ୍ଞାୟ ଗତା ଯତ୍ର ଧନେଶ୍ୱରଃ । ୫ ।
ତେ ଗତ୍ୱା ସର୍ବମାଚଖ୍ୟୁର୍ଭ୍ରାତୁସ୍ତସ୍ୟ ଚିକୀର୍ଷିତମ୍ ।
ଅନୁଜ୍ଞାତା ଯଯୁର୍ହୃଷ୍ଟା ଯୁଦ୍ଧାୟ ଧନଦେନ ତେ । ୬ ।

---

## ୧୪ଶ ସର୍ଗ

( ଯକ୍ଷ ଓ ରାକ୍ଷସଙ୍କ ମଧ୍ୟରେ ଯୁଦ୍ଧ )

ରାବଣ କ୍ରୋଧପୂର୍ଣ୍ଣ ହୋଇ ନିତ୍ୟବଳଦୃପ୍ତ ଯୁଦ୍ଧପ୍ରିୟ ମହୋଦର, ପ୍ରହସ୍ତ, ମାରୀଚ, ଶୁକ, ସାରଣ ଏବଂ ଧୂମ୍ରାକ୍ଷ ନାମକ ନିଜର ଛଅ ମନ୍ତ୍ରୀଙ୍କୁ ସଙ୍ଗରେ ଧରି ତିନି ଲୋକକୁ ଭସ୍ମ କରିଦେଲାପରି ହୋଇ ନଗର, ନଦୀ, ପର୍ବତ ଏବଂ ଉପବନ ମୁହୂର୍ତ୍ତକ ମଧ୍ୟରେ ପାରିହୋଇ କୈଳାସ ପର୍ବତ ଉପରେ ଯାଇ ପହଞ୍ଚିଲା । ୧-୩ । ଯକ୍ଷମାନେ ଯେତେବେଳେ ଶୁଣିଲେ ଦୁର୍ମତି ରାକ୍ଷସେନ୍ଦ୍ର ରାବଣ ମନ୍ତ୍ରୀମାନଙ୍କ ସହିତ ଯୁଦ୍ଧ କରିବା କାମନାରେ ଉତ୍ସାହିତ ହୋଇ ସେହି ପର୍ବତ ଶିଖର ଉପରେ ଆସି ପହଞ୍ଚିଛି, ସେତେବେଳେ ସେମାନେ ଡରିଗଲେ ଏବଂ ତା ସମ୍ମୁଖରେ ଠିଆ ହୋଇ ପାରିଲେ ନାହିଁ । ସେମାନେ ରାବଣ କୁବେରଙ୍କର ଭାଇ ବୋଲି ଜାଣି କୁବେର ଯେଉଁଠାରେ ଥିଲେ ସେହିଠାକୁ ଗଲେ । ୪-୫ । ସେଠାରେ ଯାଇ ଯକ୍ଷମାନେ କୁବେରଙ୍କୁ ତାଙ୍କ ଭ୍ରାତା ରାବଣର ସମସ୍ତ ବୃତ୍ତାନ୍ତ କହିଲେ । ସମସ୍ତ ଘଟଣା ଜାଣିଲା ଉତ୍ତାରୁ କୁବେର ସେହି ଯକ୍ଷମାନଙ୍କୁ ଯୁଦ୍ଧ କରିବାକୁ ଆଜ୍ଞାଦେଲେ ଓ ସେମାନେ ଆନନ୍ଦିତ ହୋଇ ଯୁଦ୍ଧ କରିବାକୁ ବାହାରି ଗଲେ । ୬ ।

**ତତୋ ବଳାନାଂ ସଂକ୍ଷୋଭଃ ସାଗରସ୍ୟେବ ବର୍ଧତଃ**
**ତସ୍ୟ ନୈଋତରାଜସ୍ୟ ଶୈଳଂ ସଂଚାଳୟନ୍ନିବ । ୭ ।**
**ତତୋ ଯୁଦ୍ଧଂ ସମଭବଦ୍ ଯକ୍ଷରାକ୍ଷସସଂକୁଳମ୍ ।**
**ବ୍ୟଥିତାଶ୍ଚାଭବଂସ୍ତତ୍ର ସଚିବା ରାକ୍ଷସସ୍ୟ ତେ । ୮ ।**
**ସ ଦୃଷ୍ଟ୍ବା ତାଦୃଶଂ ସୈନ୍ୟଂ ଦଶଗ୍ରୀବୋ ନିଶାଚରଃ ।**
**ହର୍ଷନାଦାନ୍ ବହୂନ୍ କୃତ୍ବା ସକ୍ରୋଧାଦଭ୍ୟଧାବତ । ୯ ।**
**ଯେ ତୁ ତେ ରାକ୍ଷସେନ୍ଦ୍ରସ୍ୟ ସଚିବା ଘୋରବିକ୍ରମାଃ ।**
**ତେଷାଂ ସହସ୍ରମେକୈକୋ ଯକ୍ଷାଣାଂ ସମଯୋଧୟତ୍ । ୧୦ ।**
**ତତୋ ଗଦାଭିର୍ମୁସଲୈରସିଭିଃ ଶକ୍ତିତୋମରୈଃ ।**
**ହନ୍ୟମାନୋ ଦଶଗ୍ରୀବସ୍ତତ୍ସୈନ୍ୟଂ ସମଗାହତ । ୧୧ ।**
**ସ ନିରୁଚ୍ଛ୍ୱାସବତ୍ତତ୍ର ବଧ୍ୟମାନୋ ଦଶାନନଃ ।**
**ବର୍ଷଦ୍ଭିରିବ ଜୀମୂତୈର୍ଧାରାଭିରବରୁଧ୍ୟତ । ୧୨ ।**
**ନ ଚକାର ବ୍ୟଥାଂ ଚୈବ ଯକ୍ଷଶସ୍ତ୍ରୈଃ ସମାହତଃ ।**
**ମହୀଧର ଇବାମ୍ଭୋଦୈର୍ଧାରାଶତସମୁକ୍ଷିତଃ । ୧୩ ।**

---

ଯକ୍ଷମାନେ ଆଜ୍ଞା ପାଇଁ ପ୍ରଫୁଲ୍ଲମନରେ ଯୁଦ୍ଧ କରିବାକୁ ବାହାରିଲେ ।୬। ସେହିବେଳେ ରାକ୍ଷସରାଜର ସେନା ମଧ୍ୟରେ ଏପରି ହଲଚଲ ଜାତ ହେଲା, ଯହିଁ ଯେପରି ସମୁଦ୍ର ଉଚ୍ଛୁଳି ଉଠିଲା ଓ କୈଳାସ ପର୍ବତ ଥରି ଉଠିଲା ପରି ଜଣା ପଡ଼ିଲା । ୭ । ତଦନନ୍ତର ଯକ୍ଷ ଏବଂ ରାକ୍ଷସମାନଙ୍କ ମଧ୍ୟରେ ମହାଭୟଙ୍କର ଯୁଦ୍ଧ ଲାଗିଗଲା । ସେ ଯୁଦ୍ଧରେ ରାବଣର ମନ୍ତ୍ରୀମାନେ ବ୍ୟଥିତ ହୋଇ ଉଠିଲେ । ୮ । ରାକ୍ଷସ ଦଶଗ୍ରୀବ ନିଜ ସୈନ୍ୟର ଏପରି ଅବସ୍ଥା ଦେଖି ବାରମ୍ବାର ସିଂହନାଦ କରି କ୍ରୋଧରେ ଦୌଡ଼ି ଆସିଲା । ୯ । ରାକ୍ଷସରାଜ ରାବଣର ଯେଉଁ ମହାପରାକ୍ରମୀ ମନ୍ତ୍ରୀମାନେ ଥିଲେ ସେମାନଙ୍କ ଭିତରୁ ଜଣେ ଜଣେ ହଜାରେ ହଜାରେ ଯକ୍ଷସୈନ୍ୟଙ୍କ ସହିତ ଯୁଦ୍ଧ କରିବାକୁ ଲାଗିଲେ । ୧୦ । ଗଦା, ମୁଷଳ, ଖଡ୍ଗ, ଶକ୍ତି ଏବଂ ତୋମର ପ୍ରହାର ସହିନେଇ ରାବଣ ଯକ୍ଷ ସେନାଙ୍କ ଭିତରେ ପଶିଗଲା । ୧୧ । ମେଘରୁ ବର୍ଷୁଥିବା ଜଳପରି ନିରନ୍ତର ଶସ୍ତ୍ରବୃଷ୍ଟିରେ ଆହତ ହୋଇ ରାବଣ ଟିକିଏ ଦମ ନେବାକୁ ବି ସମୟ ପାଇଲା ନାହିଁ । ୧୨ । ମେଘ ଯେପରି ଜଳବୃଷ୍ଟି କରି ପର୍ବତକୁ ବୁଡ଼ାଇଦିଏ, ସେହିପରି ରାବଣ ଯକ୍ଷମାନଙ୍କ ଶସ୍ତ୍ରାଘାତରେ ରକ୍ତରେ ଗାଧୋଇ ପଡ଼ିଥିଲା, ତଥାପି ସେ ଯକ୍ଷମାନଙ୍କର ଅସଂଖ୍ୟ ଶସ୍ତ୍ରପ୍ରହାରକୁ କିଛିମାତ୍ର ଖାତିର କରି ନ ଥିଲା । ୧୩ ।

ସ ଦୁରାତ୍ମା ସମୁଦ୍ୟମ୍ୟ କାଲଦଣ୍ଡୋପମାଂ ଗଦାମ୍ ।
ପ୍ରବିବେଶ ତତଃ ସୈନ୍ୟଂ ନୟନ୍ ଯକ୍ଷାନ୍ ଯମକ୍ଷୟମ୍ । ୧୪ ।
ସ କକ୍ଷମିବ ବିସ୍ତୀର୍ଣ୍ଣଂ ଶୁଷ୍କେନ୍ଧନମିବାକୁଳମ୍ ।
ବାତେନାଗ୍ନିରିବାଦୀପ୍ତୋ ଯକ୍ଷସୈନ୍ୟଂ ଦଦାହ ତତ୍ । ୧୫ ।
ତୈସ୍ତୁ ତସ୍ୟ ମହାମାତ୍ୟୈର୍ମହୋଦରଶୁକାଦିଭିଃ ।
ଅଲ୍ପାବଶେଷାସ୍ତେ ଯକ୍ଷାଃ କୃତା ବାତୈରିବାମ୍ବୁଦାଃ । ୧୬ ।
କେଚିତ୍ ପ୍ରହାହତା ଭଗ୍ନାଃ ପତିତାଃ ସମରକ୍ଷିତୌ ।
ଓଷ୍ଠାଂଶ୍ଚ ଦଶନୈସ୍ତୀକ୍ଷ୍ଣୈରଦଶନ୍ କୁପିତା ରଣେ । ୧୭ ।
ଶ୍ରାନ୍ତାଶ୍ଚାନ୍ୟୋଽନ୍ୟମାଲିଙ୍ଗ୍ୟ ଭ୍ରଷ୍ଟଶସ୍ତ୍ରା ରଣାଜିରେ ।
ସୀଦନ୍ତି ଚ ତଦା ଯକ୍ଷାଃ କୂଲା ଇବ ଜଲେନ ହ । ୧୮ ।
ହତାନାଂ ଗଚ୍ଛତାଂ ସ୍ୱର୍ଗଂ ଯୁଧ୍ୟତାଂ ପୃଥିବୀତଲେ ।
ପ୍ରେକ୍ଷତାମୃଷିସଙ୍ଘାନାଂ ନ ବଭୂବାନ୍ତରଂ ଦିବି । ୧୯ ।

---

ମହାବଳୀ ରାବଣ କାଳଦଣ୍ଡ ସଦୃଶ ଆପଣା ଗଦାକୁ ଉଠାଇ ଏବଂ ଶତ୍ରୁସୈନ୍ୟଙ୍କ ମଧ୍ୟରେ ପ୍ରବେଶ କରି ଅନେକ ଯକ୍ଷଙ୍କୁ ମାରିପକାଇଲା । ୧୪ । ପ୍ରବଳ ପବନରେ ଜଳି ଉଠି ଅଗ୍ନି ଯେପରି ଶୁଖିଲା ତୃଣ ଏବଂ କାଠକୁ ଭସ୍ମ କରି-ପକାଏ, ସେହିପ୍ରକାରେ ରାବଣ ମଧ୍ୟ ଯକ୍ଷସେନାଙ୍କୁ ଭସ୍ମ କରିବାକୁ ଲାଗିଲା । ୧୫ । ପବନ ବହିଲେ ମେଘମାନେ ଯେପରି ଇତସ୍ତତଃ ହୋଇଯାନ୍ତି, ସେହିପରି ମହୋଦର, ଶୁକ ପ୍ରଭୃତି ମନ୍ତ୍ରୀମାନେ ଯକ୍ଷମାନଙ୍କୁ ମାରି ଛିନ୍ନଭିନ୍ନ କରି ସେମାନଙ୍କ ସଂଖ୍ୟା ବହୁତ କମାଇଦେଲେ । ୧୬ । ସେମାନଙ୍କ ଭିତରୁ କେହି କେହି ଶସ୍ତ୍ରର ପ୍ରହାରରେ ଭାଙ୍ଗିଯାଇ ପୃଥିବୀ ଉପରେ ପଡ଼ିଗଲେ ଏବଂ ଅନେକେ କ୍ରୋଧରେ ଦାନ୍ତ ଏବଂ ଓଠ ଚୋବାଇବାକୁ ଲାଗିଲେ । ୧୭ । ଯକ୍ଷମାନେ ଲଢ଼ି ଲଢ଼ି ଏତେ ଥକିଗଲେ ଯେ ରଣଭୂମିରେ ପରସ୍ପରକୁ କୁଣ୍ଢେଇ ଧରିବାକୁ ଲାଗିଲେ । ସେମାନଙ୍କର ହତିଆର ସବୁ ହାତରୁ ଖସିପଡ଼ିଲା । ସେମାନେ ପ୍ରହାର ଖାଇ ଖାଇ,ପାଣି ଭିଜିଁବାରେ ନଦୀତଟର ଅଡ଼ା ଭୁସୁଡ଼ିପଡ଼ିଲା ପରି ଭୂଇଁରେ ପଡ଼ିବାକୁ ଲାଗିଲେ । ୧୮ । ବହୁ ଯକ୍ଷ ରଣକ୍ଷେତ୍ରରେ ଦଉଡ଼ୁଥିଲେ, ଅନେକେ ଲଢ଼ୁଥିଲେ, ଅନେକେ ଶତ୍ରୁଙ୍କଦ୍ୱାରା ମୃତ ହୋଇ ସ୍ୱର୍ଗକୁ ଚାଲି ଯାଉଥିଲେ । ଯୋଦ୍ଧାମାନଙ୍କ ଦ୍ୱାରା ପୂରିଯାଇଥିବାରୁ ପୃଥିବୀରେ ଟିକିଏ ହେଲେ ସ୍ଥାନ ନ ଥିଲା ଏବଂ ଯୁଦ୍ଧ ଦେଖିବାକୁ ଆସିଥିବା ଋଷିମାନେ ପୂରି ଯାଇଥିବାରୁ ଆକାଶରେ ମଧ୍ୟ ଟିକିଏ ହେଲେ ସ୍ଥାନ ନ ଥିଲା । ୧୯ ।

ଭଗ୍ନାଂସ୍ତୁ ତାନ୍ ସମାଲକ୍ଷ୍ୟ ଯକ୍ଷେନ୍ଦ୍ରାଂସ୍ତୁ ମହାବଳାନ୍ ।
ଧନାଧକ୍ଷୋ ମହାବାହୁଃ ପ୍ରେଷୟାମାସ ଯକ୍ଷକାନ୍ । ୨୦ ।
ଏତସ୍ମିନ୍ନନ୍ତରେ ରାମ ବିସ୍ତୀର୍ଣ୍ଣବଲବାହନଃ ।
ଅଗମତ୍ ସୁମହାନ୍ ଯକ୍ଷୋ ନାମ୍ନା ସଂଯୋଧକଣ୍ଟକଃ । ୨୧ ।
ତେନ ଚକ୍ରେଣ ମାରୀଚୋ ବିଷ୍ଣୁନେବ ରଣେ ହତଃ ।
ପତିତୋ ଭୂତଲେ ଶୈଳାତ୍ କ୍ଷୀଣପୁଣ୍ୟ ଇବାମ୍ବରାତ୍ । ୨୨ ।
ସସଂଜ୍ଞସ୍ତୁ ମୁହୂର୍ତ୍ତେନ ସ ବିଶ୍ରମ୍ୟ ନିଶାଚରଃ ।
ତଂ ଯକ୍ଷଂ ଯୋଧୟାମାସ ସ ଚ ଭଗ୍ନଃ ପ୍ରଦୁଦ୍ରୁବେ । ୨୩ ।
ତତଃ କାଞ୍ଚନଚିତ୍ରାଙ୍ଗଂ ବୈଦୂର୍ଯ୍ୟରଜତୋକ୍ଷିତମ୍ ।
ମର୍ଯ୍ୟାଦାଂ ପ୍ରତିହାରାଣାଂ ତୋରଣାନ୍ତରମାବିଶତ୍ । ୨୪ ।
ତଂ ତୁ ରାଜନ୍ ଦଶଗ୍ରୀବଂ ପ୍ରବିଶନ୍ତଂ ନିଶାଚରମ୍ ।
ସୂର୍ଯ୍ୟଭାନୁରିତି ଖ୍ୟାତୋ ଦ୍ୱାରପାଳୋ ନ୍ୟବାରୟତ୍ । ୨୫ ।
ସ ବାର୍ଯ୍ୟମାଣୋ ଯକ୍ଷେଣ ପ୍ରବିବେଶ ନିଶାଚରଃ ।
ଯଦା ତୁ ବାରିତୋ ରାମ ନ ବ୍ୟତିଷ୍ଠତ୍ସ ରାକ୍ଷସଃ । ୨୬ ।

---

ପ୍ରଥମରୁ ପଠାଯାଇଥିବା ଯକ୍ଷମାନେ ରାକ୍ଷସମାନଙ୍କ ଦ୍ୱାରା ନିପାତିତ ହେବାର ଦେଖି ମହାବଳବାନ୍ କୁବେର ଆହୁରି ଅନେକ ଯକ୍ଷଙ୍କୁ ରାକ୍ଷସମାନଙ୍କ ସହିତ ଲଢ଼ିବା-ପାଇଁ ପଠାଇଲେ । ୨୦ । ହେ ରାମ ! ଇତ୍ୟବସରରେ କୁବେର ପଠାଇଥିବା ସଂଯୋଧକଣ୍ଟକ ନାମକ ଯକ୍ଷ ଏକ ବିଶାଳ ସେନା ଓ ବାହନମାନଙ୍କୁ ସଙ୍ଗରେ ଧରି ଯୁଦ୍ଧଭୂମିରେ ଆସି ପହଞ୍ଚିଲା । ୨୧ । ବିଷ୍ଣୁଙ୍କ ସୁଦର୍ଶନଚକ୍ର ପରି ସେହି ଯକ୍ଷର ଚକ୍ର ପ୍ରହାରରେ ମାରୀଚ ରାକ୍ଷସ ଆକାଶରୁ କ୍ଷୀଣପୁଣ୍ୟ ନକ୍ଷତ୍ରପରି ପାହାଡ଼ ଉପରୁ ପୃଥିବୀତଳକୁ ଗଡ଼ିପଡ଼ିଲା । ୨୨ । ମୁହୂର୍ତ୍ତକ ପରେ ମାରୀଚ ସଚେତ ହୋଇ ଟିକିଏ ବିଶ୍ରାମ କରି ପୁଣି ସେ ଯକ୍ଷ ସହିତ ଯୁଦ୍ଧ କଲା ଏବଂ ତାହାକୁ ମାରି ଘଉଡ଼ାଇ ଦେଲା । ୨୩। ତଦନନ୍ତର ରାବଣ ସୁନା, ରୂପା, ମଣି ଆଦି ଦ୍ୱାରା ବିଭୂଷିତ କୁବେରଙ୍କ ସୁନ୍ଦର ଫାଟକ ଭିତରେ ପ୍ରବେଶ କଲା । ସେହିସବୁ ତୋରଣ ଉପରେ ଦ୍ୱାରପାଳମାନେ ଜଗି ରହିଥିଲେ । ୨୪ । ହେ ରାଜନ୍ ! ରାବଣ ଯେତେବେଳେ ସେ ଫାଟକ ଭିତରେ ପ୍ରବେଶ କଲା, ସେତେବେଳେ ସୂର୍ଯ୍ୟଭାନୁ ନାମକ ଦ୍ୱାରପାଳ ତାହାକୁ ରୋକିଦେଲା । ୨୫। ରୋକିଲେ ମଧ୍ୟ ରାବଣ ତାହା ନ ମାନି ଦ୍ୱାର ଭିତରେ ପ୍ରବେଶ କରିବାକୁ ଲାଗିଲା । ହେ ରାମ ! ଦ୍ୱାରପାଳର ବାରଣ ନ ମାନି ରାବଣ

ତତସ୍ତୋରଣମୁତ୍ପାଟ୍ୟ ତେନ ଯକ୍ଷେଣ ତାଡ଼ିତଃ ।
ରୁଧିରଂ ପ୍ରସ୍ରବନ୍ ଭାତି ଶୈଳୋ ଧାତୁସ୍ରବୈରିବ । ୨୭ ।
ସ ଶୈଳଶିଖରାଭେଣ ତୋରଣେନ ସମାହତଃ ।
ଜଗାମ ନ କ୍ଷିତିଂ ବୀରୋ ବରଦାନାତ୍ ସ୍ୱୟମ୍ଭୁବଃ । ୨୮ ।
ତେନୈବ ତୋରଣେନାଥ ଯକ୍ଷସ୍ତେନାଭିତାଡ଼ିତଃ ।
ନାଦୃଶ୍ୟତ ତଦା ଯକ୍ଷୋ ଭସ୍ମୀକୃତତନୁସ୍ତଦା । ୨୯ ।
ତତଃ ପ୍ରଦୁଦ୍ରୁବୁଃ ସର୍ବେ ଦୃଷ୍ଟ୍ୱା ରକ୍ଷଃପରାକ୍ରମମ୍ ।
ତତୋ ନଦୀର୍ଗୁହାଶ୍ଚୈବ ବିବିଶୁର୍ଭୟପୀଡ଼ିତାଃ ।
ତ୍ୟକ୍ତପ୍ରହରଣାଃ ଶ୍ରାନ୍ତା ବିବର୍ଣବଦନାସ୍ତଦା । ୩୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ଯକ୍ଷରକ୍ଷୋଯୁଦ୍ଧଂ ନାମ ଚତୁର୍ଦଶଃ ସର୍ଗଃ ।

---

---

ଯେତେବେଳେ ନ ଅଟକଲା ଓ ଭିତରକୁ ପ୍ରବେଶକଲା, ସେତେବେଳେ ସେ ଦ୍ୱାରପାଳ ଯକ୍ଷ ସେହି ଦ୍ୱାରର ତୋରଣକୁ ଉପାଡ଼ି ତାହାଦ୍ୱାରା ରାବଣକୁ ପ୍ରହାର କରିବାକୁ ଲାଗିଲା । ଗେରୁ ଧାର ବହିଲେ ପର୍ବତ ଯେପରି ଦେଖାଯାଏ, ସେତେବେଳେ ସେହି ତୋରଣ ଆଘାତରେ ରାବଣ ସେହିପରି ରକ୍ତସ୍ନାନ ହୋଇ ଯାଇଥିଲା । । ୨୬-୨୭ । ପର୍ବତଶିଖର ପରି ଆକାରବିଶିଷ୍ଟ ସେ ତୋରଣର ଆଘାତରେ ମଧ୍ୟ ରାବଣ ଯେ ଭୂଇଁରେ ପଡ଼ି ନ ଗଲା, ତାହାର କାରଣ ବ୍ରହ୍ମାଙ୍କର ତାକୁ ବରଦାନ । ପୁଣି ରାବଣ ସେହି ତୋରଣରେ ସେ ଦ୍ୱାରପାଳ ଯକ୍ଷକୁ ପ୍ରହାର କଲା । ସେ ପ୍ରହାରରେ ଯକ୍ଷ ଏପରି ଭସ୍ମୀଭୂତ ହୋଇଗଲା ଯେ ତାର ନାମ ଚିହ୍ନ ମଧ୍ୟ ରହିଲା ନାହିଁ । ୨୮-୨୯ । ରାବଣର ଏପ୍ରକାର ପରାକ୍ରମ ଦେଖି ସବୁ ଯକ୍ଷ ସେଠାରୁ ପଳାଇଗଲେ । ଭୟରେ ସେମାନଙ୍କ ମଧ୍ୟରୁ କେହି କେହି ପର୍ବତଗୁହାରେ ଏବଂ କେହି କେହି ନଦୀ ଭିତରେ ଯାଇ ଲୁଚିଗଲେ । ସେମାନେ ହତିଆର ଫୋପାଡ଼ି ଦେଇଥିଲେ ଏବଂ ଲଢ଼ି ଲଢ଼ି ଥକି ଯାଇଥିବାରୁ ସେମାନଙ୍କ ବର୍ଣ୍ଣ ଫିକା ପଡ଼ିଯାଇଥିଲା । ୩୦ ।

---

# ପଞ୍ଚଦଶଃ ସର୍ଗଃ

## ପୁଷ୍ପକହରଣମ୍

ତତସ୍ତାଁଲ୍ଲକ୍ଷ୍ୟ ବିତ୍ରସ୍ତାନ୍ ଯକ୍ଷେନ୍ଦ୍ରାଂଶ୍ଚ ସହସ୍ରଶଃ ।
ଧନାଧ୍ୟକ୍ଷୋ ମହାଯକ୍ଷଂ ମାଣିଚରମଥାବ୍ରବୀତ୍ ।୧।
ରାବଣଂ ଜହି ଯକ୍ଷେନ୍ଦ୍ର ଦୁର୍ବୃତ୍ତଂ ପାପଚେତସମ୍ ।
ଶରଣଂ ଭବ ବୀରାଣାଂ ଯକ୍ଷାଣାଂ ଯୁଦ୍ଧଶାଳିନାମ୍ ।୨।
ଏବମୁକ୍ତୋ ମହାବାହୁର୍ମାଣିଭଦ୍ରଃ ସୁଦୁର୍ଜୟଃ ।
ବୃତୋ ଯକ୍ଷସହସ୍ରୈସ୍ତୁ ଚତୁର୍ଭିଃ ସମଯୋଧୟତ୍ ।୩।
ତେ ଗଦାମୁସଲପ୍ରାସୈଃ ଶକ୍ତିତୋମରମୁଦ୍ଗରୈଃ ।
ଅଭିଘ୍ନନ୍ତସ୍ତଦା ଯକ୍ଷା ରାକ୍ଷସାନ୍ ସମୁପାଦ୍ରବନ୍ ।୪।
କୁର୍ବନ୍ତସ୍ତୁମୁଲଂ ଯୁଦ୍ଧଂ ଚରନ୍ତଃ ଶ୍ୟେନବଲ୍ଲଘୁ ।
ବାଢ଼ଂ ପ୍ରଯଚ୍ଛ ନେଚ୍ଛାମି ଦୀୟତାମିତି ଭାଷିଣଃ ।୫।
ତତୋ ଦେବାଃ ସଗନ୍ଧର୍ବା ଋଷୟୋ ବ୍ରହ୍ମବାଦିନଃ ।
ଦୃଷ୍ଟ୍ୱା ତତ୍ତୁମୁଲଂ ଯୁଦ୍ଧଂ ପରଂ ବିସ୍ମୟମାଗମନ୍ ।୬।

---

## ୧୫ଶ ସର୍ଗ

### ( ପୁଷ୍ପକବିମାନହରଣ )

ହଜାର ହଜାର ପରାକ୍ରମୀ ଯକ୍ଷଙ୍କୁ ଭୟଭୀତ ଦେଖି କୁବେର ମାଣିଚର ନାମକ ମହାଯକ୍ଷଙ୍କୁ କହିଲେ ।୧। "ହେ ଯକ୍ଷେନ୍ଦ୍ର ! ଏହି ଦୁଷ୍ଟ ଏବଂ ପାପୀ ରାବଣକୁ ମାରି ଯୁଦ୍ଧପ୍ରିୟ ବୀର ଯକ୍ଷମାନଙ୍କୁ ରକ୍ଷାକର" ।୨। ଏ କଥା ଶୁଣି ଦୁର୍ଜେୟ ମାଣିଭଦ୍ର ଯକ୍ଷ ଚାରିହଜାର ଯକ୍ଷସେନାଙ୍କୁ ଧରି ରାକ୍ଷସମାନଙ୍କ ସହିତ ଯୁଦ୍ଧ କରିବାକୁ ଲାଗିଲେ ।୩। ଯକ୍ଷମାନେ ଗଦା, ମୁଷଳ, ଶକ୍ତି ଏବଂ ମୁଦ୍‌ଗର ପ୍ରହାର କରି ରାକ୍ଷସମାନଙ୍କ ଉପରେ ଆକ୍ରମଣ କରିବାକୁ ଲାଗିଲେ ।୪। ସେମାନେ ମହା-ଭୟଙ୍କର ଯୁଦ୍ଧ କଲେ । "ଆଚ୍ଛା, ମୋ ସାଙ୍ଗରେ ଯୁଦ୍ଧ କର" ଇତ୍ୟାଦି ଖାଟେସଚ ଡାକ ଦେଇ ଯକ୍ଷ ଓ ରାକ୍ଷସମାନେ ଶୀଘ୍ରଗାମୀ ବାଜପକ୍ଷୀପରି ମଣ୍ଡଳାକାରରେ ବୁଲି ଲଢ଼ିବାକୁ ଲାଗିଲେ ।୫। ବ୍ରହ୍ମବାଦୀ ଋଷି, ଦେବତା ଏବଂ ଗନ୍ଧର୍ବମାନେ ସେହି ତୁମୁଳ ଯୁଦ୍ଧ ଦେଖି ଅତିଶୟ ବିସ୍ମିତ ହେଲେ ।୬। କିନ୍ତୁ ପ୍ରହସ୍ତ ହଜାରେ ଯକ୍ଷଙ୍କୁ ଓ

ଯକ୍ଷାଣାଂ ତୁ ପ୍ରହସ୍ତେନ ସହସ୍ରଂ ନିହତଂ ରଣେ ।
ମହୋଦରେଣ ଗୃନିନ୍ଦ୍ୟଂ ସହସ୍ରମପରଂ ହତମ୍ । ୭ ।
କ୍ରୁଦ୍ଧେନ ଚ ତଦା ରାଜନ୍ ମାରୀଚେନ ଯୁଯୁତ୍ସୁନା ।
ନିମେଷାନ୍ତରମାତ୍ରେଣ ଦ୍ୱେ ସହସ୍ରେ ନିପାତିତେ । ୮ ।
କ୍ୱ ଚ ଯକ୍ଷାର୍ଜବଂ ଯୁଦ୍ଧଂ କ୍ୱ ଚ ମାୟାବଲାଶ୍ରୟମ୍ ।
ରକ୍ଷସାଂ ପୁରୁଷବ୍ୟାଘ୍ର ତେନ ତେଽଭ୍ୟଧିକା ଯୁଧି । ୯ ।
ଧୂମ୍ରାକ୍ଷେଣ ସମାଗମ୍ୟ ମାଣିଭଦ୍ରୋ ମହାରଣେ ।
ମୁସଲେନୋରସି କ୍ରୋଧାତ୍ତାଡ଼ିତୋ ନ ଚ କମ୍ପିତଃ । ୧୦ ।
ତତୋ ଗଦାଂ ସମାବିଧ୍ୟ ମାଣିଭଦ୍ରେଣ ରାକ୍ଷସଃ ।
ଧୂମ୍ରାକ୍ଷସ୍ତାଡ଼ିତୋ ମୂର୍ଦ୍ଧ୍ନି ବିହ୍ୱଳଃ ସ ପପାତ ହ ।୧୧ ।
ଧୂମ୍ରାକ୍ଷଂ ତାଡ଼ିତଂ ଦୃଷ୍ଟ୍ୱା ପତନ୍ତଂ ଶୋଣିତୋକ୍ଷିତମ୍ ।
ଅଭ୍ୟଧାବତ ସଂଗ୍ରାମେ ମାଣିଭଦ୍ରଂ ଦଶାନନଃ । ୧୨ ।
ତଂ କ୍ରୁଦ୍ଧମଭିଧାବନ୍ତଂ ମାଣିଭଦ୍ରୋ ଦଶାନନମ୍ ।
ଶକ୍ତିଭିସ୍ତାଡ଼ୟାମାସ ତିସୃଭିର୍ଯକ୍ଷପୁଙ୍ଗବଃ । ୧୩ ।
ତାଡ଼ିତୋ ମାଣିଭଦ୍ରସ୍ୟ ମୁକୁଟେ ପ୍ରାହରଦ୍ରଣେ ।
ତସ୍ୟ ତେନ ପ୍ରହାରେଣ ମୁକୁଟଂ ପାର୍ଶ୍ୱମାଗତମ୍ । ୧୪ ।

---

ମହୋଦର ମଧ୍ୟ ହଜାରେ ଯକ୍ଷଙ୍କୁ ମାରିପକାଇଲା । ହେ ରାଜନ ! ନିମେଷ ମାତ୍ରକରେ କ୍ରୋଧପୂର୍ଣ୍ଣ ହୋଇ ଯୁଦ୍ଧ କରି ମାରୀଚ ଦୁଇ ହଜାର ଯକ୍ଷଙ୍କୁ ମାରି ପକାଇଦେଲା । ୭-୮ । ହେ ପୁରୁଷବ୍ୟାଘ୍ର ! ରାକ୍ଷସମାନଙ୍କ ଯୁଦ୍ଧ ମାୟାବଳରେ ହୁଏ ଏବଂ ଯକ୍ଷମାନଙ୍କର ଯୁଦ୍ଧ ନିଷ୍କପଟରେ ହୁଏ । ଅତଏବ ଏ ଦୁହିଁଙ୍କର ଯୁଦ୍ଧରେ ରାକ୍ଷସମାନେ ଯକ୍ଷମାନଙ୍କ ଠାରୁ ଅଧିକ ପ୍ରବଳ ଥିଲେ । ୯ । କଳିସମସ୍ତ ପରେ ଧୂମ୍ରାକ୍ଷ କ୍ରୋଧପୂର୍ଣ୍ଣ ହୋଇ ମାଣିଭଦ୍ରର ବକ୍ଷରେ ଏକ ମୁଷଳ ପ୍ରହାର କଲା; କିନ୍ତୁ ସେ ଏ ପ୍ରହାରରେ ଟିକିଏହେଲେ ଟଳିଲା ନାହିଁ । ୧୦ । ମାଣିଭଦ୍ର ଗଦା ଉଠାଇ ଧୂମ୍ରାକ୍ଷର ମୁଣ୍ଡ ଉପରକୁ ମାଇଲା । ସେ ପ୍ରହାରରେ ଧୂମ୍ରାକ୍ଷ ବିହ୍ୱଳ ହୋଇ ତଳେ ପଡ଼ିଗଲା । ୧୧ । ଗଦାପ୍ରହାରେ ତାଡ଼ିତ ଏବଂ ରକ୍ତରେ ସଦବୁଡ଼ ହୋଇଥିବା ଧୂମ୍ରାକ୍ଷକୁ ଭୂମି ଉପରେ ପଡ଼ିଯିବାର ଦେଖି ରାବଣ ମାଣିଭଦ୍ର ସମ୍ମୁଖକୁ ଲଢ଼ିବାକୁ ଗଲା । ୧୨ । ଯକ୍ଷଶ୍ରେଷ୍ଠ ମାଣିଭଦ୍ର କ୍ରୋଧାନ୍ୱିତ ହୋଇ ଆପଣା ଆଡ଼କୁ ଧାଉଁଥିବା ରାବଣକୁ ତିନିଗୋଟି ଶକ୍ତି ପ୍ରହାର କଲା । ୧୩ । ରାବଣ ସେହି ଶକ୍ତିର ପ୍ରହାରଦ୍ୱାରା ପୀଡ଼ିତ ହୋଇ ମାଣିଭଦ୍ରର ମୁକୁଟ ଉପରକୁ ପ୍ରହାର କଲା । ସେହି ପ୍ରହାରଦ୍ୱାରା

ତତଃ ସଂଯୁଧ୍ୟମାନେନ ବକ୍ଷସ୍ତବ୍ୱୋ ନ ବ୍ୟକମ୍ପତ ।
ତଦା ପ୍ରଭୃତ ଯକ୍ଷୋଽସୌ ପାର୍ଶ୍ୱମୌଳିରତି ସ୍ମୃତଃ । ୧୫ ।
ତସ୍ମିଂସ୍ତୁ ବିମୁଖେ ଯକ୍ଷେ ମାଣିଭଦ୍ରେ ମହାତ୍ମନି ।
ସନ୍ନାଦଃ ସୁମହାନ୍ ରାଜଂସ୍ତସ୍ମିଂଶ୍ଚୈଳେଽଭ୍ୟବର୍ତ୍ତତ । ୧୬ ।
ତତୋ ଦୂରାତ୍ ପ୍ରଦଦୃଶେ ଧନାଧ୍ୟକ୍ଷୋ ଗଦାଧରଃ ।
ଶୁକ୍ରପ୍ରୋଷ୍ଠପଦାଭ୍ୟାଂ ଚ ଶଙ୍ଖପଦ୍ମସମାବୃତଃ । ୧୭ ।
ସ ଦୃଷ୍ଟ୍ୱା ଭ୍ରାତରଂ ସଂଖ୍ୟେ ଶାପାଦ୍ବିଭ୍ରଷ୍ଟଗୌରବମ୍ ।
ଉବାଚ ବଚନଂ ଧୀମାନ୍ ଯୁକ୍ତଂ ପୈତାମହେ କୁଲେ । ୧୮ ।
ଯନ୍ମୟା ବାର୍ଯମାଣସ୍ତ୍ୱଂ ନାବଗଚ୍ଛସି ଦୁର୍ମତେ ।
ପଶ୍ଚାଦସ୍ୟ ଫଲଂ ପ୍ରାପ୍ୟ ଜ୍ଞାସ୍ୟସେ ନିରୟଂ ଗତଃ । ୧୯ ।
ଯୋ ହି ମୋହାଦ୍ବିଷଂ ପୀତ୍ୱା ନାବଗଚ୍ଛତି ଦୁର୍ମତିଃ ।
ସ ତସ୍ୟ ପରିଣାମାନ୍ତେ ଜାନୀତେ କର୍ମଣଃ ଫଲମ୍ । ୨୦ ।
ଦୈବତାନି ନାଭିନନ୍ଦନ୍ତି ଧର୍ମଯୁକ୍ତେନ କେନଚିତ୍ ।
ଯେନ ତ୍ୱମୀଦୃଶଂ ଭାବଂ ନୀତଃ ସନ୍ନାବବୁଧ୍ୟସେ । ୨୧ ।

---

ଯକ୍ଷର ମୁକୁଟ ଗୋଟାଏ ପାଖକୁ ଢଳିପଡ଼ିଲା । ୧୪ । ତଥାପି ସେ ଯୁଦ୍ଧ କରିବାକୁ ଲାଗିଲା, କିନ୍ତୁ ବିଚଳିତ ହେଲା ନାହିଁ । ସେହିଦିନଠାରୁ ସେ ଯକ୍ଷର ନାମ ପାର୍ଶ୍ୱମୌଳି ହେଲା । ୧୫ । ସେହି ମହାବଳବାନ୍ ମାଣିଭଦ୍ର ଯକ୍ଷ ଯୁଦ୍ଧରେ ପରାସ୍ତ ହୋଇଯିବାରୁ ହେ ରାଜନ୍ ! କୈଳାସ ପର୍ବତ ଉପରେ ରାକ୍ଷସମାନଙ୍କର ମହା ସିଂହନାଦ ଜାତ ହେଲା ।୧୬। ଯେତେବେଳେ ସମସ୍ତଙ୍କ ହାତରେ ଗଦା ଧରି କୁବେର ମଧ୍ୟ ଦେଖାପଡ଼ିଲେ । ତାଙ୍କ ସାଙ୍ଗରେ ତାଙ୍କର ଧନରକ୍ଷାକାରୀ ଦୁଇ ମନ୍ତ୍ରୀ ଶୁକ୍ର ଓ ପ୍ରୋଷ୍ଠପଦ ଥିଲେ । ପଦ୍ମ ଏବଂ ଶଙ୍ଖ ନାମକ ଦୁଇ ଧନାଧିକାରୀ ଦେବତା ମଧ୍ୟ ତାଙ୍କ ସାଙ୍ଗରେ ଥିଲେ । ୧୭ । ସେ ନିଜର ସାନ ଭାଇ ରାବଣକୁ ଦେଖିଲେ । ରାବଣ ନିଜର ପିତାଙ୍କ ଶାପରେ ଅଭିଶପ୍ତ ଥିବାରୁ ଜ୍ୟେଷ୍ଠଭ୍ରାତାଙ୍କୁ ପ୍ରଣାମାଦି କରିବାର ଶିଷ୍ଟାଚାର ରକ୍ଷା କଲା ନାହିଁ । ରାବଣକୁ ଦେଖି କୁବେର ପିତାମହ ବ୍ରହ୍ମାଙ୍କ କୁଳୋଚିତ ଯୁକ୍ତିଯୁକ୍ତ ବଚନରେ କହିଲେ । ୧୮ । "ରେ ଦୁର୍ମତି ! ମୁଁ ବାରଣ କଲେ ହେଁ ତୁ ମୋ କଥା ମାନିଲୁ ନାହିଁ, ଏହାର ଫଳ ପାଇ ତୁ ଯେତେବେଳେ ନରକକୁ ଯିବୁ ସେତେବେଳେ ସବୁ କଥା ଜାଣିପାରିବୁ । ୧୯ । ଯେଉଁ ଦୁର୍ବୁଦ୍ଧି ଲୋକ ମୋହବଶରୁ ବିଷପାନ କରେ ତାହାକୁ ପରେ ତାହାର ସେହି କର୍ମର ଫଳ ଜଣାପଡ଼େ । ୨୦ । ତୁ କୌଣସି ଧର୍ମଯୁକ୍ତ କାର୍ଯ୍ୟ କରି ନ ଥିବାରୁ ଦେବତାମାନେ ତୋ ପ୍ରତି ପ୍ରସନ୍ନ ନୁହନ୍ତି । ସେହି ହେତୁରୁ ତୋର ବୁଦ୍ଧି ଏପରି ଭ୍ରଷ୍ଟ ହୋଇଯାଇଛି; ମାତ୍ର ଏ କଥା ତୁ

ମାତରଂ ପିତରଂ ଯୋ ହି ଅଗ୍ରଜଂ ଚାବମନ୍ୟତେ ।
ସ ପଶ୍ୟତି ଫଳଂ ତସ୍ୟ ପ୍ରେତରାଜବଶଂ ଗତଃ । ୨୨ ।
ଅଧ୍ରୁବେ ହି ଶରୀରେ ଯୋ ନ କରୋତି ତପୋଽର୍ଜନମ୍ ।
ସ ପଶ୍ଚାତ୍ତପ୍ୟତେ ମୂଢ଼ୋ ମୃତୋ ଦୃଷ୍ଟ୍ୱାତ୍ମନୋ ଗତିମ୍ । ୨୩ ।
ଧର୍ମାଦ୍ରାଜ୍ୟଂ ଧନଂ ସୌଖ୍ୟମଧର୍ମାଦ୍ଦୁଃଖମେବ ଚ ।
ତସ୍ମାଦ୍ଧର୍ମଂ ସୁଖାର୍ଥାୟ କୁର୍ଯ୍ୟାତ୍ ପାପଂ ବିସର୍ଜୟେତ୍ । ୨୪ ।
ପାପସ୍ୟ ହି ଫଳଂ ଦୁଃଖଂ ତଦ୍ଭୋକ୍ତବ୍ୟମିହାତ୍ମନା ।
ତସ୍ମାଦାତ୍ମାପଘାତାର୍ଥଂ ମୂଢ଼ଃ ପାପଂ କରିଷ୍ୟତି । ୨୫ ।
କସ୍ୟଚିନ୍ନ ହି ଦୁର୍ବୁଦ୍ଧେଶ୍ଛନ୍ଦତୋ ଜାୟତେ ମତିଃ ।
ଯାଦୃଶଂ କୁରୁତେ କର୍ମ ତାଦୃଶଂ ଫଳମଶ୍ନୁତେ । ୨୬ ।
ବୁଦ୍ଧିଂ ରୂପଂ ବଳଂ ପୁତ୍ରାନ୍ ବିତ୍ତଂ ଧୀରତ୍ୱମେବ ଚ ।
ପ୍ରାପ୍ନୁବନ୍ତି ନରା ଲୋକେ ନିର୍ଜିତଂ ପୁଣ୍ୟକର୍ମଭିଃ । ୨୭ ।
ଏବଂ ନିରୟଗାମୀ ତ୍ୱଂ ଯସ୍ୟ ତେ ମତିରୀଦୃଶୀ ।
ନ ତ୍ୱାଂ ସମଭିଭାଷିଷ୍ୟେଽସଦ୍‌ବୃତ୍ତେଷ୍ୱେଷ ନିର୍ଣ୍ୟଃ । ୨୮ ।

---

ନିଜେ ବୁଝିପାରୁ ନାହୁଁ ।୨୧ । ଯେଉଁ ଲୋକ ମାତା, ପିତା, ବ୍ରାହ୍ମଣ ଏବଂ ଗୁରୁଙ୍କର ଅପମାନ କରେ, ସେ ଯେତେବେଳେ ଯାଇ ପ୍ରେତରାଜ ଯମଙ୍କ କବଳରେ ପଡ଼େ, ସେତେବେଳେ ତାକୁ ନିଜର କରିଥିବା କାର୍ଯ୍ୟର ଫଳ ଜଣାପଡ଼େ । ୨୨ । ଯେଉଁ ଲୋକ ଏହି ନଶ୍ୱର ଶରୀରରେ ତପ ଅର୍ଜନ ନ କରେ, ସେ ମୂଢ଼ ମରିବା ପରେ ନିଜର କର୍ମଲବ୍ଧ ଗତିପାଇଁ ସନ୍ତାପିତ ହୁଏ ।୨୩। ଧର୍ମରୁ ରାଜ୍ୟ, ଧନ ଓ ସୁଖ-ଲାଭ ହୁଏ ଏବଂ ଅଧର୍ମରୁ ଦୁଃଖ ମିଳେ । ସେଥିପାଇଁ ସୁଖଲାଭ ନିମନ୍ତେ ଲୋକେ ଧର୍ମ ଆଚରଣ କରନ୍ତୁ ଏବଂ ପାପକୁ ବିସର୍ଜନ କରନ୍ତୁ । ୨୪ । ପାପର ଫଳ ଦୁଃଖ ଅଟେ ଏବଂ ଲୋକ ତାହା ଇହଲୋକରେ ଭୋଗକରେ । ତେଣୁ ନିଜର ସର୍ବନାଶ କରିବା ପାଇଁ ମୂଢ଼ ବ୍ୟକ୍ତି ପାପାଚରଣ କରେ । ୨୫ । କୌଣସି ଦୁର୍ବୁଦ୍ଧି ଲୋକର କଦାପି ଆପେ ଆପେ ସୁମତି ଜାତ ହୁଏ ନାହିଁ । ସେ ଯେପରି କର୍ମ କରେ ସେହିପରି ଫଳ ଭୋଗକରେ । ୨୬ । ସବୁ ଲୋକେ ନିଜର ପୁଣ୍ୟ କର୍ମଦ୍ୱାରା ବୁଦ୍ଧି, ରୂପ, ବଳ, ପୁତ୍ର, ସମ୍ପତ୍ତି ଏବଂ ଧୀରତା ଲାଭକରନ୍ତି । ୨୭ । କିନ୍ତୁ ତୁ ନରକଗାମୀ ଅଟୁ, ସୁତରାଂ ତୋର ବୁଦ୍ଧି ଏପରି ହୋଇଯାଇଅଛି । ଅତଏବ ମୁଁ ତୋ ସଙ୍ଗରେ ଅଧିକ କଥାବାର୍ତ୍ତା କରିବି ନାହିଁ; କାରଣ ବୁଦ୍ଧିମାନ୍ ଲୋକ ଅସଦାଚାରୀ ଲୋକ ସହିତ ଅଧିକ କଥାବାର୍ତ୍ତା କରେ ନାହିଁ” । ୨୮ । ଏହା କହି କୁବେରର ଦୂତ ରାବଣର ମାଆରୁଢ଼

ଏବମୁକ୍ତାସ୍ତତସ୍ତେନ ତସ୍ୟାମାତ୍ୟାଃ ସମାହତାଃ ।
ମାରୀଚପ୍ରମୁଖାଃ ସର୍ବେ ବିମୁଖା ବିପ୍ରଦୁଦ୍ରୁବୁଃ । ୨୯ ।
ତତସ୍ତେନ ଦଶଗ୍ରୀବୋ ଯକ୍ଷେନ୍ଦ୍ରେଣ ମହାତ୍ମନା ।
ଗଦୟାଭିହତୋ ମୂର୍ଦ୍ଧ୍ନି ନ ଚ ସ୍ଥାନାତ୍ ପ୍ରକମ୍ପିତଃ । ୩୦ ।
ତତସ୍ତୌ ରାମ ନିଘ୍ନନ୍ତୌ ତଦାନ୍ୟୋଽନ୍ୟଂ ମହାମୃଧେ ।
ନ ବିହ୍ୱଲୌ ନ ଚ ଶ୍ରାନ୍ତୌ ବଭୂବତୁରମର୍ଷଣୌ । ୩୧ ।
ଆଗ୍ନେୟମସ୍ତ୍ରଂ ତସ୍ମୈ ସ ମୁମୋଚ ଧନଦସ୍ତଦା ।
ରାକ୍ଷସେନ୍ଦ୍ରୋ ବାରୁଣେନ ତଦସ୍ତ୍ରଂ ପ୍ରତ୍ୟବାରୟତ୍ । ୩୨ ।
ତତୋ ମାୟାଂ ପ୍ରବିଷ୍ଟୋଽସୌ ରାକ୍ଷସୀଂ ରାକ୍ଷସେଶ୍ୱରଃ ।
ରୂପାଣାଂ ଶତସାହସ୍ରଂ ବିନାଶାୟ ଚକାର ଚ । ୩୩ ।
ବ୍ୟାଘ୍ରୋ ବରାହୋ ଜୀମୂତଃ ପର୍ବତଃ ସାଗରୋ ଦ୍ରୁମଃ ।
ଯକ୍ଷୋ ଦୈତ୍ୟସ୍ୱରୂପୀ ଚ ସୋଽଦୃଶ୍ୟତ ଦଶାନନଃ । ୩୪ ।
ବହୂନି ଚ କରୋତି ସ୍ମ ଦୃଶ୍ୟନ୍ତେ ନ ତ୍ୱସୌ ତତଃ ।
ପ୍ରତିଗୃହ୍ୟ ତତୋ ରାମ ମହଦସ୍ତ୍ରଂ ଦଶାନନଃ । ୩୫ ।

---

ମନ୍ତ୍ରୀମାନଙ୍କୁ ଏପରି ପ୍ରହାର କଲେ ଯେ ସେମାନେ ଆହତ ହୋଇ ଯୁଦ୍ଧକ୍ଷେତ୍ର ପଳାଇଗଲେ । ୨୯ । ଅନନ୍ତର ମହାବଳବାନ୍ ଯକ୍ଷରାଜ କୁବେର ରାବଣର ମସ୍ତକ ଉପରେ ଗଦା ପ୍ରହାର କଲେ; ମାତ୍ର ରାବଣ ସେଥିରେ ନିଜ ସ୍ଥାନରୁ ଟିକିଏ ହେଲେ ହଲଚଲ ହେଲା ନାହିଁ । ୩୦ । ହେ ରାମ ! ସେତେବେଳେ ଯକ୍ଷ ଏବଂ ରାକ୍ଷସ ଦୁହେଁ ପରସ୍ପରକୁ ପ୍ରହାର କରିବାରେ ଲାଗିଲେ । ସେ ଦୁହିଁଙ୍କ ଭିତରୁ କେହି ଜଣେ ହେଲେ ବିଚଳିତ ବା ଶ୍ରାନ୍ତ ହୋଇପଡ଼ିଲେ ନାହିଁ ।୩୧। କୁବେର ରାବଣ ଉପରକୁ ଆଗ୍ନେୟ ଅସ୍ତ୍ର ପ୍ରୟୋଗ କଲେ, ମାତ୍ର ରାକ୍ଷସରାଜ ରାବଣ ବାରୁଣାସ୍ତ୍ର ଦ୍ୱାରା ତାହାକୁ ଶାନ୍ତ କରିଦେଲା । ୩୨ । ତଦନନ୍ତର ରାବଣ ରାକ୍ଷସୀ ମାୟା ବିସ୍ତାର କରି କୁବେରଙ୍କୁ ବିନାଶ କରିବା ନିମନ୍ତେ ଶହ ଶହ ହଜାର ହଜାର ପ୍ରକାର ରୂପ ଧାରଣକଲା ।୩୩। ରାବଣ ସେତେବେଳେ ବ୍ୟାଘ୍ର, ବରାହ, ମେଘ, ପର୍ବତ, ସାଗର, ବୃକ୍ଷ, ଯକ୍ଷ, ଏବଂ ଦୈତ୍ୟ ରୂପରେ ଦେଖାଗଲା । ୩୪ । ସେତେବେଳେ ରାବଣ ଏହିପରି ବହୁ ରୂପରେ ଦେଖାଗଲା, ମାତ୍ର ନିଜର ପ୍ରକୃତ ରୂପକୁ ଅଦୃଶ୍ୟ ରଖିଥିଲା । ହେ ରାମ ! ତଦନନ୍ତର ରାବଣ ଏକ ବିଶାଳ ଅସ୍ତ୍ର ଧରି କୁବେରଙ୍କର ମହାଗଦାକୁ ଭାଙ୍ଗିଦେଲା ଏବଂ ତାହା ତାଙ୍କର ମସ୍ତକରେ ପ୍ରହାର କଲା । ୩୫ । କୁବେର ତାହାର ସେହି

ଜଘାନ ମୂର୍ଦ୍ଧ୍ନି ଧନଦଂ ବ୍ୟାବିଧ୍ୟ ମହତୀଂ ଗଦାମ୍ ।
ଏବଂ ସ ତେନାଭିହତୋ ବିହ୍ୱଳଃ ଶୋଣିତୋକ୍ଷିତଃ ।
କୃତ୍ତମୂଳ ଇବାଶୋକୋ ନିପପାତ ଧନାଧିପଃ ॥ ୩୬ ।
ତତଃ ପଦ୍ମାଦିଭିସ୍ତତ୍ର ନିଧିଭିଃ ସ ତଦାବୃତଃ ।
ଧନଦୋଚ୍ଛ୍ୱାସିତସ୍ତୈସ୍ତୁ ବନମାନୀୟ ନନ୍ଦନମ୍ । ୩୭ ।
ନିର୍ଜିତ୍ୟ ରାକ୍ଷସେନ୍ଦ୍ରସ୍ତଂ ଧନଦଂ ହୃଷ୍ଟମାନସଃ ।
ପୁଷ୍ପକଂ ତସ୍ୟ ଜଗ୍ରାହ ବିମାନଂ ଜୟଲକ୍ଷଣମ୍ । ୩୭ ।
କାଞ୍ଚନସ୍ତମ୍ଭସମ୍ବୀତଂ ବୈଦୂର୍ଯ୍ୟମଣିତୋରଣମ୍ ।
ମୁକ୍ତାଜାଲପ୍ରତିଚ୍ଛନ୍ନଂ ସର୍ବକାମଫଳପ୍ରଦମ୍ । ୩୯ ।
ମନୋଜବଂ କାମଗମଂ କାମରୂପଂ ବିହଙ୍ଗମମ୍ ।
ମଣିକାଞ୍ଚନସୋପାନଂ ତପ୍ତକାଞ୍ଚନବେଦିକମ୍ । ୪୦ ।
ଦେବୋପବାହ୍ୟମକ୍ଷୟ୍ୟଂ ସଦା ଦୃଷ୍ଟିମନଃସୁଖମ୍ ।
ବହ୍ୱାଶ୍ଚର୍ଯ୍ୟଂ ଭକ୍ତିଚିତ୍ରଂ ବ୍ରହ୍ମଣା ପରିନିର୍ମିତମ୍ । ୪୧ ।

---

ପ୍ରହାରରେ ବିହ୍ୱଳ ହୋଇପଡ଼ିଲେ । ତାଙ୍କ ଦେହରୁ ରକ୍ତଧାର ବହିବାକୁ ଲାଗିଲା ଏବଂ ମୂଳରୁ କଟିଯାଇଥିବା ଅଶୋକ ବୃକ୍ଷ ପରି ସେ ପଡ଼ିଗଲେ । ୩୬ । ଅନନ୍ତର ପଦ୍ମାଦି ଧନ ଦେବତାମାନେ କୁବେରଙ୍କୁ ଉଠାଇ ନନ୍ଦନବନକୁ ନେଇଗଲେ ଏବଂ ସେଠାରେ ତାଙ୍କୁ ସଚେତ କରାଇଲେ । ୩୭ । ଏହିପ୍ରକାରେ ରାବଣ ଧନେଶ୍ୱର କୁବେରଙ୍କୁ ପରାଜିତ କରି ହର୍ଷିତମନରେ ଜୟ ଚିହ୍ନସ୍ୱରୂପ ତାଙ୍କର ପୁଷ୍ପକ ବିମାନକୁ ଛଡ଼ାଇ ନେଲା । ୩୮ । ପୁଷ୍ପକ ବିମାନରେ ସୁନାର ସ୍ତମ୍ଭମାନ ଥିଲା ଏବଂ ତାହାର ତୋରଣରେ ବୈଦୂର୍ଯ୍ୟ ମଣି ଲଗାଯାଇଥିଲା, ତାହା ଉପରେ ମୁକ୍ତାର ଜାଲ ବିଛାଯାଇଥିଲା ଏବଂ ସେଥିରେ ସବୁ ଋତୁରେ ଫଳପ୍ରଦାନକାରୀ ବୃକ୍ଷମାନ ରହିଥିଲା । ୩୯ । ତାହାର ଗତି ମନସଦୃଶ ଚଞ୍ଚଳ ଥିଲା, ସେ ଇଚ୍ଛାନୁସାରେ ଚାଲୁଥିଲା ଏବଂ କାମରୂପୀ ପକ୍ଷୀ ସଦୃଶ ଉଡ଼ିଯାଉଥିଲା । ସେଥିରେ ସୁନା ଓ ମଣି-ମଣ୍ଡିତ ସୋପାନମାନ ଥିଲା ଏବଂ ତାହାର ବେଦି ସୁନାରେ ତିଆରି ହୋଇଥିଲା । ୪୦ । ତାହା ଦେବତାମାନଙ୍କର ବସିବାର ଯୋଗ୍ୟ, ବିନାଶରହିତ ତଥା ମନ ଓ ନେତ୍ରର ସୁଖଦାୟକ ଥିଲା । ସେଥିରେ ଖୁବ୍ ଅଦ୍ଭୁତ କାରିଗରି କରାହୋଇଥିଲା । ବ୍ରହ୍ମାଙ୍କ ଆଜ୍ଞାରେ ବିଶ୍ୱକର୍ମା ତାହାକୁ ନିର୍ମାଣ କରିଥିଲେ । ୪୧ । ନିଜସ୍ୱ ବିମାନ

ନିର୍ମିତଂ ସର୍ବକାମୈସ୍ତୁ ମନୋହରମନୁତ୍ତମମ୍ ।
ନ ତୁ ଶୀତଂ ନ ଚୋଷ୍ଣଂ ଚ ସର୍ବର୍ତୁସୁଖଦଂ ଶୁଭମ୍ ।୪୨।
ସ ତଂ ରାଜା ସମାରୁହ୍ୟ କାମଗଂ ବୀର୍ଯ୍ୟନିର୍ଜିତମ୍ ।
ଜିତଂ ତ୍ରିଭୁବନଂ ମେନେ ଦର୍ପୋତ୍ସେକାତ୍ସୁଦୁର୍ମତିଃ ।
ଜିତ୍ୱା ବୈଶ୍ରବଣଂ ଦେବଂ କୈଳାସାତ୍ସମବାତରତ୍ ।୪୩।
ସ୍ୱ ତେଜସା ବିପୁଲମବାପ୍ୟ ତଂ ଜୟମ୍
ପ୍ରତାପବାନ୍ ବିମଲକିରୀଟହାରବାନ୍ ।
ରରାଜ ବୈ ପରମବିମାନମାସ୍ଥିତୋ
ନିଶାଚରଃ ସଦସି ଗତୋ ଯଥାନଲଃ ।୪୪।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ପୁଷ୍ପକହରଣଂ ନାମ ପଞ୍ଚଦଶଃ ସର୍ଗଃ ।

---

ସମସ୍ତ ମନୋରଥ ପୂରଣ କରୁଥିଲା ଏବଂ ତାହା ଅନୁପମ ଥିଲା, ତାହା ବିଶେଷ ଥଣ୍ଡା ବା ବିଶେଷ ଗରମ ନ ଥିଲା, ସୁତରାଂ ସେହି ଶୁଭ ବିମାନ ସବୁ ଋତୁରେ ସୁଖଦାୟକ ହୋଇଥିଲା ।୪୨। ଦୁର୍ମତି ରାବଣ ସେହି ବିମାନରେ ଆରୋହଣ କରି ଗର୍ବରେ ନିଜ ମନରେ ସ୍ଥିର କରିନେଲା ଯେ ସେ ତିନି ଲୋକକୁ ଜିଣି ପାଇଅଛି । ସେ ଏହିପ୍ରକାର କୁବେରଙ୍କ୍ ଜୟକରି କୈଳାସ ପର୍ବତରୁ ତଳକୁ ଓହ୍ଲାଇ ଆସିଲା ।୪୩। ପ୍ରତାପୀ ରାକ୍ଷସ ରାବଣ ନିଜର ବଳ ପରାକ୍ରମ ଦ୍ୱାରା ସେହି ବିପୁଳ ଜୟଲାଭ କରି, ବିମଳ ମୁକୁଟ ଏବଂ ହାରରେ ଶୋଭମାନ ଉତ୍ତମ ବିମାନ ଉପରେ ଆରୋହଣ କରି ଯଜ୍ଞବେଦିସ୍ଥିତ ଅଗ୍ନିଙ୍କ ସଦୃଶ ଶୋଭମାନ ହେଲା ।୪୪।

# ଷୋଡ଼ଶଃ ସର୍ଗଃ

## ରାବଣନାମପ୍ରାପ୍ତିଃ

ସ ଜିତ୍ୱା ଧନଦଂ ରାମ ଭ୍ରାତରଂ ରାକ୍ଷସାଧିପଃ ।
ମହାସେନପ୍ରସୂତିଂ ତଦ୍ ଯଯୌ ଶରଣଂ ମହତ୍ । ୧ ।
ଅଥାପଶ୍ୟଦ୍ଦଶଗ୍ରୀବୋ ରୌକ୍ମଂ ଶରବଣଂ ମହତ୍ ।
ଗଭସ୍ତିଜାଲସଂବୀତଂ ଦ୍ୱିତୀୟମିବ ଭାସ୍କରମ୍ ।୨ ।
ସ ପର୍ବତଂ ସମାରୁହ୍ୟ କଂଚିଦ୍ରମ୍ୟବନାନ୍ତରମ୍ ।
ଅପଶ୍ୟତ୍ ପୁଷ୍ପକଂ ତତ୍ର ରାମ ବିଷ୍ଟମ୍ଭିତଂ ତଦା । ୩ ।
ବିଷ୍ଟବ୍ଧଂ ପୁଷ୍ପକଂ ଦୃଷ୍ଟ୍ୱା ହ୍ୟଗମଂ କାମଗଂ କୃତମ୍ ।
ଅଚିନ୍ତୟଦ୍ରାକ୍ଷସେନ୍ଦ୍ରଃ ସଚିବୈସ୍ତୈଃ ସମାବୃତଃ । ୪ ।
କିଂ ନିମିତ୍ତଂ ଚେଚ୍ଛୟା ମେ ନେଦଂ ଗଚ୍ଛତି ପୁଷ୍ପକମ୍ ।
ପର୍ବତସ୍ୟୋପରିସ୍ଥସ୍ୟ କର୍ମେଦଂ କସ୍ୟଚିଦ୍ଭବେତ୍ । ୫ ।
ତତୋଽବ୍ରବୀତ୍ତଦା ରାମ ମାରୀଚୋ ବୁଦ୍ଧିକୋବିଦଃ ।
ନେଦଂ ନିଷ୍କାରଣଂ ରାଜନ୍ ପୁଷ୍ପକଂ ଯନ୍ନ ଗଚ୍ଛତି । ୬ ।

---

## ୧୬ଶ ସର୍ଗ

( ଦଶଗ୍ରୀବର 'ରାବଣ' ନାମପ୍ରାପ୍ତି )

ହେ ରାମ ! ରାବଣ ଆପଣାର ଭାଇ କୁବେରଙ୍କୁ ଏହିପ୍ରକାରେ ଜିଣି କାର୍ତ୍ତିକେୟଙ୍କ ଉତ୍ପତ୍ତିସ୍ଥାନ ଶରବଣରେ ଯାଇ ପଶିଗଲା । ୧ । ସେଠାରେ ଯାଇ ସେ ଦେଖିଲା ଯେ ସେହି ସ୍ୱର୍ଣ୍ଣବର୍ଣ୍ଣର ଶରବଣ ବଡ଼ ବିଚିତ୍ର ଅଟେ । ଏହା କିରଣଯୁକ୍ତ ହୋଇ ଏକ ଦ୍ୱିତୀୟ ସୂର୍ଯ୍ୟପରି ଜାଜ୍ୱଲ୍ୟମାନ ହେଉଅଛି । ୨ । ହେ ରାମ ! ସେ ପର୍ବତରେ ଆରୋହଣ କରି ଗୋଟିଏ ସୁନ୍ଦର ବନ ମଧ୍ୟ ଦେଖିଲା ଏବଂ ସେଠାରେ ପୁଷ୍ପକବିମାନ ଅଟକିଗଲା, ଆଉ ଚାଲିଲା ନାହିଁ । ୩ । ପୁଷ୍ପକ କାହିଁକି ଅଟକିଗଲା ଏବଂ ଏହା ଇଚ୍ଛାଗାମୀ ହୋଇ ନିର୍ମିତ ହୋଇଥିଲେ ସୁଦ୍ଧା କାହିଁକି ଚାଲୁ ନାହିଁ ଏ କଥା ରାକ୍ଷସେନ୍ଦ୍ର ରାବଣ ମନ୍ତ୍ରିପରିବେଷ୍ଟିତ ହୋଇ ଚିନ୍ତା କରିବାକୁ ଲାଗିଲା ।୪। "ମୋର ଏହି ପୁଷ୍ପକ ବିମାନ କାହିଁକି ମୋ ଇଚ୍ଛାନୁସାରେ ଗତି କରୁ ନାହିଁ ? ଏହା ନିଶ୍ଚୟ ପର୍ବତ ଉପରେ ରହିଥିବା କୌଣସି ବ୍ୟକ୍ତିର କାର୍ଯ୍ୟ ଅଟେ" । ୫ । ଅନନ୍ତର ହେ ରାମ ! ବୁଦ୍ଧିନିପୁଣ ମାରୀଚ କହିଲା, "ହେ ରାଜନ ! ପୁଷ୍ପକ ଯେ ଚାଲୁ ନାହିଁ, ଏହା

ଅଥବା ପୁଷ୍ପକମିଦଂ ଧନଦାନ୍ନାନ୍ୟବାହନମ୍ ।
ଅତୋ ନିଃସ୍ପନ୍ଦମଭବଦ୍ଧନାଧ୍ୟକ୍ଷବିନାକୃତମ୍ । ୭ ।
ଇତି ବାକ୍ୟାନ୍ତରେ ତସ୍ୟ କରାଳଃ କୃଷ୍ଣପିଙ୍ଗଳଃ ।
ବାମନୋ ବିକଟୋ ମୁଣ୍ଡୀ ନନ୍ଦୀ ହ୍ରସ୍ୱଭୁଜୋ ବଲୀ । ୮ ।
ତତଃ ପାର୍ଶ୍ୱମୁପାଗମ୍ୟ ଭବସ୍ୟାନୁଚରୋଽବ୍ରବୀତ୍ ।
ନନ୍ଦୀଶ୍ୱରୋ ବଚଶ୍ଚେଦଂ ରାକ୍ଷସେନ୍ଦ୍ରମଶଙ୍କିତଃ । ୯ ।
ନିବର୍ତସ୍ୱ ଦଶଗ୍ରୀବ ଶୈଳେ କ୍ରୀଡ଼ତି ଶଙ୍କରଃ ।
ସୁପର୍ଣନାଗଯକ୍ଷାଣାଂ ଦେବଗନ୍ଧର୍ବରକ୍ଷସାମ୍ । ୧୦ ।
ସର୍ବେଷାମେବ ଭୂତାନାମଗମ୍ୟଃ ପର୍ବତଃ କୃତଃ ।
ଇତି ନିବର୍ତସ୍ୱ ଦୁର୍ବୁଦ୍ଧେ ମା ବିନାଶମବାପ୍ସ୍ୟସି ।
ଇତି ନନ୍ଦିବଚଃ ଶ୍ରୁତ୍ୱା କ୍ରୋଧାତ୍ କମ୍ପିତକୁଣ୍ଡଳଃ । ୧୧ ।
ରୋଷାତ୍ତୁ ତାମ୍ରନୟନଃ ପୁଷ୍ପକାଦବରୁହ୍ୟ ସଃ ।
କୋଽୟଂ ଶଙ୍କର ଇତ୍ୟୁକ୍ତ୍ୱା ଶୈଳମୂଳମୁପାଗତଃ । ୧୨ ।
ସୋଽପଶ୍ୟନ୍ନନ୍ଦିନଂ ତତ୍ର ଦେବସ୍ୟାଦୂରତଃ ସ୍ଥିତମ୍ ।
ଦୀପ୍ତଂ ଶୂଳମବଷ୍ଟଭ୍ୟ ଦ୍ୱିତୀୟମିବ ଶଙ୍କରମ୍ ।୧୩।

---

କଦାପି ବିନା କାରଣରେ ନୁହେଁ । ୭ । ସମ୍ଭବ ହୋଇପାରେ ସେ କୁବେରଙ୍କ ଛଡ଼ା ଅନ୍ୟ କାହାରିକୁ ଏ ବିମାନ ନ ଏ ନାହିଁ; ସୁତରାଂ କୁବେର ନ ଥିବାରୁ ଏହା ନିଶ୍ଚଳ ହୋଇ ଯାଇଅଛି" । ୭ । ଇତିମଧ୍ୟରେ ଅତିକରାଳରୂପୀ, କୃଷ୍ଣ ଓ ପିଙ୍ଗଳବର୍ଣ୍ଣ, ବାମନ ପରି ଖର୍ବକାୟ ନନ୍ଦୀଶ୍ୱର ସେଠାରେ ଦେଖାଗଲେ । ସେ ବଡ଼ ବିକଟ ଥିଲେ । ତାଙ୍କ ମୁଣ୍ଡ ଲଣ୍ଡା ହୋଇଥିଲା ଓ ତାଙ୍କର ବାହୁଗୁଡ଼ିକ ଛୋଟ ଛୋଟ ହୋଇଥିଲା । ସେ ସର୍ବଦା ଶିବଙ୍କ ସେବାରେ ନିଯୁକ୍ତ ରହୁଥିଲେ । ସେ ରାବଣ ନିକଟକୁ ଯାଇ ନିର୍ଭୀକଭାବରେ ତାକୁ କହିଲେ । ୮-୯ । "ହେ ଦଶଗ୍ରୀବ ! ଶିବ ପର୍ବତ ଉପରେ କ୍ରୀଡ଼ା କରୁଅଛନ୍ତି; ଅତଏବ ତୁ ଏଠାରୁ ଫେରିଯାଅ । ଗରୁଡ଼, ନାଗ, ଯକ୍ଷ, ଦେବତା, ଗନ୍ଧର୍ବ ଏବଂ ରାକ୍ଷସ କୌଣସି ପ୍ରାଣୀ ଏ ପର୍ବତ ଉପରକୁ ଯାଇ ପାରିବେ ନାହିଁ ।" ନନ୍ଦୀଙ୍କର ଏ କଥା ଶୁଣି ରାବଣର କୁଣ୍ଡଳ କ୍ରୋଧରେ ଦୋହଲିଗଲା, ତାର ଆଖି ତାମ୍ରବର୍ଣ୍ଣ ହୋଇଗଲା ଏବଂ ସେ ପୁଷ୍ପକ ବିମାନରୁ ଓହ୍ଲାଇ ପଡ଼ି "କିଏ ରେ ସେ ଶଙ୍କର ?" ଏହା କହି ପର୍ବତର ମୂଳଦେଶକୁ ଆସିଲା । ୧୦-୧୨ । ରାବଣ ଦେଖିଲା ଯେ ସେଠାରେ ନନ୍ଦୀ ଏକ ଚକଚକିଆ ଶୂଳ ଉଠାଇ ଦ୍ୱିତୀୟ ମହାଦେବଙ୍କ ପରି ଶଙ୍କରଙ୍କ ନିକଟରେ ଛିଡ଼ା ହୋଇଛନ୍ତି । ୧୩ ।

ତଂ ଦୃଷ୍ଟ୍ୱା ବାନରମୁଖମବଜ୍ଞାୟ ସ ରାକ୍ଷସଃ ।
ପ୍ରହାସଂ ମୁମୁଚେ ତତ୍ର ସତୋୟ ଇବ ତୋୟଦଃ । ୧୪ ।
ତଂ କ୍ରୁଦ୍ଧୋ ଭଗବାନ୍ନନ୍ଦୀ ଶଙ୍କରସ୍ୟାପରା ତନୁଃ ।
ଅବ୍ରବୀତ୍ତତ୍ର ତଦ୍ରକ୍ଷୋ ଦଶାନନମୁପସ୍ଥିତମ୍ । ୧୫ ।
ଯସ୍ମାଦ୍‌ବାନରରୂପଂ ମାମବଜ୍ଞାୟ ଦଶାନନ ।
ଅଶନୀପାତସଂକାଶମୁପହାସଂ ପ୍ରମୁକ୍ତବାନ୍ । ୧୬ ।
ତସ୍ମାନ୍ମଦ୍ରୂପସଂପନ୍ନା ମଦ୍‌ବୀର୍ଯସମତେଜସଃ ।
ଉତ୍ପତ୍ସ୍ୟନ୍ତି ବଧାର୍ଥଂ ହି କୁଳସ୍ୟ ତବ ବାନରାଃ । ୧୭ ।
ନଖଦଂଷ୍ଟ୍ରାୟୁଧାଃ କ୍ରୂରା ମନଃସମ୍ପାତରଂହସଃ ।
ଯୁଦ୍ଧୋନ୍ମତ୍ତା ବଲୋଦ୍ରିକ୍ତାଃ ଶୈଳା ଇବ ବିସର୍ପିଣଃ । ୧୮ ।
ତେ ତବ ପ୍ରବଲଂ ଦର୍ପମୁତ୍ସେଧଂ ଚ ପୃଥଗ୍‌ବିଧମ୍ ।
ବ୍ୟପନେଷ୍ୟନ୍ତି ସଂଭୂୟ ସହାମାତ୍ୟସୁତସ୍ୟ ଚ । ୧୯ ।
କିଂ ତ୍ୱିଦାନୀଂ ମୟା ଶକ୍ୟଂ ହନ୍ତୁଂ ତ୍ୱାଂ ହେ ନିଶାଚର ।
ନ ହନ୍ତବ୍ୟୋ ହତସ୍ତ୍ୱଂ ହି ପୂର୍ବମେବ ସ୍ୱକର୍ମଭିଃ । ୨୦ ।

---

ନନ୍ଦୀଙ୍କର ବାନରସଦୃଶ ମୁଖ ଦେଖି ରାବଣ ତାଙ୍କୁ ଅପମାନ କରି ମେଘ ଗର୍ଜିଲ୍ପରି ଅଟ୍ଟହାସ୍ୟ କଲା । ୧୪ । ଶିବଙ୍କର ସାକ୍ଷାତ୍ ଦ୍ୱିତୀୟ ମୂର୍ତ୍ତି ନନ୍ଦୀ ରାବଣକୁ ହସିବାର ଦେଖି ଅତିଶୟ କ୍ରୁଦ୍ଧ ହେଲେ ଏବଂ ସେଠାରେ ଉପସ୍ଥିତ ଥିବା ରାବଣକୁ କହିଲେ । ୧୫ । "ହେ ଦଶାନନ ! ତୁ ମୋର ବାନର ରୂପକୁ ଅବଜ୍ଞା କରି ବଜ୍ରପାତତୁଲ୍ୟ ଅଟ୍ଟହାସ କଲୁ; ସୁତରାଂ ମୋ ସଦୃଶ ପରାକ୍ରମୀ ଓ ମୋ'ପରି ରୂପବିଶିଷ୍ଟ ତେଜସ୍ୱୀ ବାନରମାନେ ତୋର ବଂଶର ମୂଳୋଚ୍ଛେଦ କରିବାପାଇଁ ଉତ୍ପନ୍ନ ହେବେ । ୧୬-୧୭ । ନଖ ଓ ଦାନ୍ତକୁ ଅସ୍ତ୍ରସ୍ୱରୂପ ବ୍ୟବହାର କରୁଥିବା ବାନରମାନେ ମନସଦୃଶ ଶୀଘ୍ରଗାମୀ, ଯୁଦ୍ଧୋନ୍ମତ୍ତ ଓ ପର୍ବତସଦୃଶ ବିଶାଳ ଶରୀରଧାରୀ ଏବଂ ବଳବାନ୍ ହେବେ । ୧୮ । ତୋର ଏହି ପ୍ରବଳ ଅହଙ୍କାର ଏବଂ ଶାରୀରିକ ବଳର ଗର୍ବକୁ ସେମାନେ ଦୂର କରିଦେବେ; କେବଳ ତୋର ନୁହେଁ, ତୋର ମନ୍ତ୍ରୀ ଓ ପୁତ୍ରମାନଙ୍କ ଦର୍ପକୁ ମଧ୍ୟ ଖର୍ବ କରିଦେବେ । ୧୯ । ହେ ରାକ୍ଷସ ! ଯଦିଓ ତୋତେ ମୁଁ ଏହି ମୁହୂର୍ତ୍ତରେ ମାରିଦେଇପାରନ୍ତି, ତଥାପି ମୁଁ ତୋତେ ମାରିବାକୁ ଯାଉ ନାହିଁ, କାରଣ ତୁ ନିଜର ଦୁଷ୍କର୍ମ ଦ୍ୱାରା ଏହା ଆଗରୁହିଁ ମରିଯାଇଛୁ" । ୨୦ ।

ଇତ୍ୟୁଦୀରିତବାକ୍ୟେ ତୁ ଦେବେ ତସ୍ମିନ୍ ମହାତ୍ମନି ।
ଦେବଦୁନ୍ଦୁଭୟୋ ନେଦୁଃ ପୁଷ୍ପବୃଷ୍ଟିଶ୍ଚ ଖାଚ୍ୟୁତା ।୨୧।
ଅଚିନ୍ତୟିତ୍ୱା ସ ତଦା ନନ୍ଦିବାକ୍ୟଂ ମହାବଳଃ ।
ପର୍ବତଂ ତୁ ସମାସାଦ୍ୟ ବାକ୍ୟମାହ ଦଶାନନଃ ।୨୨।
ପୁଷ୍ପକସ୍ୟ ଗତିଶ୍ଛିନ୍ନା ଯତ୍କୃତେ ମମ ଗଚ୍ଛତଃ ।
ତମିମଂ ଶୈଳମୁନ୍ମୂଳଂ କରୋମି ତବ ଗୋପତେ ।୨୩।
କେନ ପ୍ରଭାବେଣ ଭବୋ ନିତ୍ୟଂ କ୍ରୀଡ଼ତି ରାଜବତ୍ ।
ବିଜ୍ଞାତବ୍ୟଂ ନ ଜାନୀତେ ଭୟସ୍ଥାନମୁପସ୍ଥିତମ୍ ।୨୪।
ଏବମୁକ୍ତ୍ୱା ତତୋ ରାମ ଭୁଜାନ୍ ବିକ୍ଷିପ୍ୟ ପର୍ବତେ ।
ତୋଳୟାମାସ ତଂ ଶୈଳଂ ସ ଶୈଳଃ ସମକମ୍ପତ ।୨୫।
ଚାଳନାତ୍ ପର୍ବତସ୍ୟୈବ ଗଣା ଦେବସ୍ୟ କମ୍ପିତାଃ ।
ଚଚାଳ ପାର୍ବତୀ ଚାପି ତଦାଶ୍ଳିଷ୍ଟା ମହେଶ୍ୱରମ୍ ।୨୬।
ତତୋ ରାମ ମହାଦେବୋ ଦେବାନାଂ ପ୍ରବରୋ ହରଃ ।
ପାଦାଙ୍ଗୁଷ୍ଠେନ ତଂ ଶୈଳଂ ପୀଡ଼ୟାମାସ ଲୀଳୟା ।୨୭।

---

ମହାତ୍ମା ନନ୍ଦୀଶ୍ୱର ଏହି କଥା କହିବା ମାତ୍ରେ ଦେବତାମାନେ ଦୁନ୍ଦୁଭିନାଦ କଲେ ଏବଂ ଆକାଶରୁ ପୁଷ୍ପବୃଷ୍ଟି ହେଲା ।୨୧। ମହାବଳବାନ୍ ରାବଣ ନନ୍ଦୀଶ୍ୱରଙ୍କ ଶାପକୁ ଖାତିର ନ କରି ପର୍ବତ ନିକଟକୁ ଯାଇ ଏ କଥା କହିଲା ।୨୨। "ହେ ବୃଷଭପତି ରୁଦ୍ର! ତୁମ୍ଭର ଯେଉଁ ପର୍ବତ ଲାଗି ମୋର ପୁଷ୍ପକ ବିମାନର ଗତି ବନ୍ଦ ହୋଇଗଲା ସେ ପର୍ବତକୁ ମୁଁ ଉପାଡ଼ି ଫୋପାଡ଼ି ଦେଉଅଛି ।୨୩। ଶିବ କି ବଳରେ ରାଜାଙ୍କ ପରି ନିତ୍ୟ କ୍ରୀଡ଼ା କରୁଅଛନ୍ତି ? କଅଣ ତାଙ୍କୁ ଜଣା ନାହିଁ ଯେ ତାଙ୍କ ଲାଗି ଭୟର କାରଣ ଉପସ୍ଥିତ ହେଲାଣି ?"।୨୪। ହେ ରାମ ! ଏହା କହି ରାବଣ ତତ୍କ୍ଷଣାତ୍ ନିଜର ଭୁଜଦ୍ୱାରା ପର୍ବତକୁ କୁଣ୍ଢାଇ ଧରି ଟେକିଲା ଏବଂ ପର୍ବତ ଦୋହଲିଗଲା ।୨୫। ପର୍ବତ ଦୋହଲିଯିବାରୁ ମହାଦେବଙ୍କର ଗଣମାନେ ସମସ୍ତେ କମ୍ପିଗଲେ, ପାର୍ବତୀ ମଧ୍ୟ ଥରିଯାଇ ମହାଦେବଙ୍କ ଶରୀରକୁ କୁଣ୍ଢାଇ ପକାଇଲେ ।୨୬। ହେ ରାମ ! ତଦନନ୍ତର ଦେବତାମାନଙ୍କ ମଧ୍ୟରେ ଅତି ଶ୍ରେଷ୍ଠ ମହାଦେବ ବିଶେଷ କୌଣସି ପ୍ରୟାସ ନ କରି ନିଜର ଗୋଡ଼ର ଆଙ୍ଗୁଠିଦ୍ୱାରା ସେହି ପର୍ବତକୁ ଦାବିଦେଲେ ।୨୭।

ପୀଡ଼ିତାସ୍ତୁ ତତସ୍ତସ୍ୟ ଶୈଲସ୍ୟାଧୋଗତା ଭୁଜାଃ ।
ଦୃଷ୍ଟ୍ୱା ତାଶ୍ଚାଭବଂସ୍ତତ୍ର ସଚିବାସ୍ତସ୍ୟ ରକ୍ଷସଃ । ୨୮ ।
ରକ୍ଷସା ତେନ ରୋଷାଚ୍ଚ ଭୁଜାନାଂ ପୀଡ଼ନାତ୍ତଦା ।
ମୁକ୍ତୋ ବିରାବଃ ସହସା ତ୍ରୈଲୋକ୍ୟଂ ଯେନ କମ୍ପିତମ୍ । ୨୯ ।
ମେନିରେ ବଜ୍ରନିଷ୍ପେଷଂ ତସ୍ୟାମାତ୍ୟା ଯୁଗକ୍ଷୟେ ।
ତଦା ବର୍ତ୍ମସୁ ଚଳିତା ଦେବା ଇନ୍ଦ୍ରପୁରୋଗମାଃ । ୩୦ ।
ସମୁଦ୍ରାଶ୍ଚାପି ସଂକ୍ଷୁବ୍ଧାଶ୍ଚଳିତାଶ୍ଚାପି ପର୍ବତାଃ ।
ଯକ୍ଷା ବିଦ୍ୟାଧରାଃ ସିଦ୍ଧାଃ କିମେତଦିତି ଚାବ୍ରୁବନ୍ । ୩୧ ।
ଅଥ ତେ ମନ୍ତ୍ରିଣସ୍ତସ୍ୟ ବିକ୍ରୋଶନ୍ତମଥାବ୍ରୁବନ୍ ।
ତୋଷୟସ୍ୱ ମହାଦେବଂ ନୀଲକଣ୍ଠମୁମାପତିମ୍ ।
ତମୃତେ ଶରଣଂ ନାନ୍ୟଂ ପଶ୍ୟାମୋଽତ୍ର ଦଶାନନ । ୩୨ ।
ସ୍ତୁତିଭିଃ ପ୍ରଣତୋ ଭୂତ୍ୱା ତମେବ ଶରଣଂ ବ୍ରଜ ।
କୃପାଳୁଃ ଶଙ୍କରସ୍ତୁଷ୍ଟଃ ପ୍ରସାଦଂ ତେ ବିଧାସ୍ୟତି । ୩୩ ।
ଏବମୁକ୍ତସ୍ତଦାମାତ୍ୟୈସ୍ତୁଷ୍ଟାବ ବୃଷଭଧ୍ୱଜମ୍ ।
ସାମଭିର୍ବିବିଧୈଃ ସ୍ତୋତ୍ରୈଃ ପ୍ରଣମ୍ୟ ସ ଦଶାନନଃ ।
ସଂବତ୍ସର ସହସ୍ରଂ ତୁ ରୁଦତୋ ରକ୍ଷସୋ ଗତମ୍ । ୩୪ ।

---

ପର୍ବତକୁ ଦାବିଦେବାରୁ ରାବଣର ସ୍ତମ୍ଭସଦୃଶ ଭୁଜମାନ ପର୍ବତତଳେ ଚପି ହୋଇଗଲା । ଏହା ଦେଖି ରାବଣର ମନ୍ତ୍ରୀମାନେ ବିସ୍ମିତ ହୋଇଗଲେ ।୨୮। ତତ୍ପରେ କ୍ରୋଧରେ ନିଜର ବାହୁପୀଡ଼ାରେ ଦଶଗ୍ରୀବ ଏପରି ଘୋର ଚିତ୍କାର କଲା ଯେ ତଦ୍ଦ୍ୱାରା ତିନି ଲୋକ ଥରିଉଠିଲା ।୨୯। ରାବଣର ମନ୍ତ୍ରୀମାନେ ଏହି ଶବ୍ଦକୁ ଶୁଣି ଜାଣିଲେ ଯେ ପ୍ରଳୟକାଳରେ ସତେ ଯେପରି ବଜ୍ରପାତ ଦ୍ୱାରା ଏ ଶବ୍ଦ ହେଉଛି । ଇନ୍ଦ୍ରାଦି ଦେବତାମାନେ ନିଜ ମାର୍ଗରୁ ବିଚଳିତ ହୋଇଗଲେ ।୩୦। ସମୁଦ୍ର ଚହଲି ଉଠିଲା ଏବଂ ପର୍ବତମାନେ ବି କମ୍ପିଉଠିଲେ । ଯକ୍ଷ, ବିଦ୍ୟାଧର ଏବଂ ସିଦ୍ଧମାନେ ବିସ୍ମିତ ହୋଇ କହିବାକୁ ଲାଗିଲେ, "ଏ କଅଣ ହେଲା" ।୩୧। ଦଶାନନର ମନ୍ତ୍ରୀମାନେ ତାକୁ କହିଲେ, "ହେ ଦଶାନନ ! ତୁମେ ଉମାପତି ମହାଦେବଙ୍କୁ ପ୍ରସନ୍ନ କରଅ । ତାଙ୍କ ଛଡ଼ା ତୁମର ଅନ୍ୟ କୌଣସି ରକ୍ଷାର ଉପାୟ ଆମ୍ଭମାନଙ୍କୁ ଦେଖାଯାଉ ନାହିଁ ।୩୨। ତୁମେ ନମ୍ର ହୋଇ ତାଙ୍କୁ ସ୍ତୁତି କର ଏବଂ ତାଙ୍କୁ ଶରଣ ପଶ । ମହାଦେବ ବଡ଼ କୃପାଳୁ । ସେ ସନ୍ତୁଷ୍ଟ ହୋଇ ତୁମ ପ୍ରତି ପ୍ରସନ୍ନ ହୋଇଯିବେ" ।୩୩। ଏହିପ୍ରକାରେ ମନ୍ତ୍ରୀମାନଙ୍କ କଥା ଶୁଣି ଦଶାନନ ଶିବଙ୍କୁ ପ୍ରଣାମ କଲା ଏବଂ ସାମବେଦର ବିବିଧ ମନ୍ତ୍ରଦ୍ୱାରା ତାଙ୍କର ସ୍ତୁତି କରିବାକୁ ଲାଗିଲା । ଏହିରୂପେ

ତତଃ ପ୍ରୀତୋ ମହାଦେବଃ ଶୈଳାଗ୍ରେ ବଷ୍ଟିତଃ ପ୍ରଭୁଃ ।
ମୁକ୍ତ୍ୱା ଚୈସ୍ୟ ଭୁଜାନ୍ ରାମ ପ୍ରାହ ବାକ୍ୟଂ ଦଶାନନମ୍ । ୩୫ ।
ପ୍ରୀତୋଽସ୍ମି ତବ ବୀର୍ଯସ୍ୟ ଶୌଣ୍ଡୀର୍ଯାଚ୍ଚ ଦଶାନନ ।
ଶୈଳାକ୍ରାନ୍ତେନ ଯୋ ମୁକ୍ତସ୍ତ୍ୱୟା ରାବଃ ସୁଦାରୁଣଃ । ୩୬ ।
ଯସ୍ମାଲ୍ଲୋକତ୍ରୟଂ ଚୈତଦ୍ରାବିତଂ ଭୟମାଗତମ୍ ।
ତସ୍ମାତ୍ତ୍ୱଂ ରାବଣୋ ନାମ ନାମ୍ନା ରାଜନ୍ ଭବିଷ୍ୟସି । ୩୭ ।
ଦେବତା ମାନୁଷା ଯକ୍ଷା ଯେ ଚାନ୍ୟେ ଜଗତୀତଲେ ।
ଏବଂ ତ୍ୱାମଭିଧାସ୍ୟନ୍ତି ରାବଣଂ ଲୋକରାବଣମ୍ । ୩୮ ।
ଗଚ୍ଛ ପୌଲସ୍ତ୍ୟ ବିସ୍ରବ୍ଧଂ ପଥା ଯେନ ତ୍ୱମିଚ୍ଛସି । ୪୦ ।
ମୟା ଚୈବାଭ୍ୟନୁଜ୍ଞାତୋ ରାକ୍ଷସାଧିପ ଗମ୍ୟତାମ୍ ।୩୯।
ଏବମୁକ୍ତସ୍ତୁ ଲଙ୍କେଶଃ ଶମ୍ଭୁନା ସ୍ୱୟମବ୍ରବୀତ୍ ।
ପ୍ରୀତୋ ଯଦି ମହାଦେବ ବରଂ ମେ ଦେହି ଯାଚତଃ ।୪୦ ।
ଅବଧ୍ୟତ୍ୱଂ ମୟା ପ୍ରାପ୍ତଂ ଦେବଗନ୍ଧର୍ବଦାନବୈଃ ।
ରାକ୍ଷସୈର୍ଗୁହ୍ୟକୈର୍ନାଗୈର୍ଯେଚାନ୍ୟେ ବଲବତ୍ତରାଃ । ୪୧ ।

---

ରୋଦନ ଅବସ୍ଥାରେ ଦଶାନନର ହଜାରେ ବର୍ଷ ବିତିଗଲା । ୩୪ । ତା ପରେ ସେହି ଶୈଳ ଉପରେ ଥିବା ମହାଦେବ ରାବଣଠାରେ ସନ୍ତୁଷ୍ଟ ହୋଇ ଓ ସେ ପର୍ବତ ଚାପରୁ ତାର ବାହୁକୁ ମୁକ୍ତ କରିଦେଲେ । ତା ପରେ ସେ ଦଶାନନକୁ କହିଲେ । ୩୫ । "ହେ ବୀର ଦଶାନନ ! ମୁଁ ତୁମର ବୀରତ୍ୱ ଦେଖି ତୁମ ଉପରେ ସନ୍ତୁଷ୍ଟ ହୋଇଅଛି । ପର୍ବତର ଚାପରେ ତୁମ ଭୁଜ ଚିପିହୋଇ ଗଲାବେଳେ, ତୁମେ ଯେଉଁ ଭୀଷଣ ଚିତ୍କାର କଲ ତାକୁ ଶୁଣି ତିନିଲୋକ ଥରିଉଠିଲା । ଅତ ଏବ ଆଜିଠାରୁ ତୁମର ନାମ 'ରାବଣ' ହେବ ।୩୬-୩୭। ଦେବତା, ମନୁଷ୍ୟ, ଯକ୍ଷ ଏବଂ ଅନ୍ୟ ଯେଉଁ ପ୍ରାଣୀ ପୃଥିବୀ ଉପରେ ଅଛନ୍ତି ସେମାନେ ତୁମଙ୍କୁ ଲୋକଭୟକାରୀ 'ରାବଣ' ବୋଲି ଡାକିବେ । ୩୮ । ହେ ପୁଲସ୍ତ୍ୟନନ୍ଦନ ! ଏବେ ତୁମେ ଯେଉଁ ବାଟରେ ଇଚ୍ଛାକରୁଛ ସେ ବାଟରେ ଚାଲିଯାଅ । ମୁଁ ଅନୁମତି ଦେଉଛି, ତୁମେ ସ୍ୱଆଡେ଼ ଇଚ୍ଛା ସେଆଡେ଼ ଯାଅ" । ୩୯ । ମହାଦେବ ଏପରି କହିବା ଉତ୍ତାରୁ ଲଙ୍କେଶ୍ୱର ରାବଣ କହିଲା, "ହେ ମହାଦେବ ! ଆପଣ ଯଦି ମୋ ଉପରେ ପ୍ରସନ୍ନ ହୋଇଛନ୍ତି, ତେବେ ମୁଁ ଯେଉଁ ବର ମାଗୁଛି ତାହା ଦିଅନ୍ତୁ ।୪୦। ହେ ପ୍ରଭୋ ! ଦେବତା, ଗନ୍ଧର୍ବ, ଦାନବ, ରାକ୍ଷସ, ଗୁହ୍ୟକ, ନାଗ ତଥା ଅନ୍ୟ ବଳବାନ୍ ପ୍ରାଣୀମାନଙ୍କ ଦ୍ୱାରା ମୁଁ ଅବଧ୍ୟ ଅଟେ । ୪୧ । ଆଉ ମନୁଷ୍ୟକୁ ମୁଁ ମୋଟେ

ମାନୁଷାନ୍ନ ଗଣେ ଦେବ ସ୍ୱଳ୍ପାସ୍ତେ ମମ ସମ୍ମତାଃ ।
ଦୀର୍ଘମାୟୁଶ୍ଚ ମେ ପ୍ରାପ୍ତଂ ବ୍ରହ୍ମଣସ୍ତ୍ରିପୁରାନ୍ତକ । ୪୨ ।
ବାଞ୍ଛିତଂ ଚାୟୁଷଃ ଶେଷଂ ଶସ୍ତ୍ରଂ ତ୍ୱଂ ଚ ପ୍ରଯଚ୍ଛ ମେ ।
ଏବମୁକ୍ତସ୍ତତସ୍ତେନ ରାବଣେନ ସ ଶଙ୍କରଃ । ୪୩ ।
ଦଦୌ ଖଡ୍‌ଗଂ ମହାଦୀପ୍ତଂ ଚନ୍ଦ୍ରହାସମିତି ଶ୍ରୁତମ୍ ।
ଆୟୁଷଶ୍ଚାବଶେଷଂ ଚ ଦଦୌ ଭୂତପତିସ୍ତଦା । ୪୪ ।
ଦତ୍ତ୍ୱୋବାଚ ତତଃ ଶମ୍ଭୁର୍ନାବଜ୍ଞେୟମିଦଂ ତ୍ୱୟା ।
ଅବଜ୍ଞାତଂ ଯଦି ହି ତେ ମାମେବୈଷ୍ୟତ୍ୟସଂଶୟଃ । ୪୫ ।
ଏବଂ ମହେଶ୍ୱରେଣୈବ କୃତନାମା ସ ରାବଣଃ ।
ଅଭିବାଦ୍ୟ ମହାଦେବମାରୁରୋହାଥ ପୁଷ୍ପକମ୍ । ୪୬ ।
ତତୋ ମହୀତଲେ ରାମ ପର୍ଯ୍ୟକ୍ରାମ ରାବଣଃ ।
କ୍ଷତ୍ରିୟାନ୍ ସୁମହାବୀର୍ଯାନ୍ ବାଧମାନ ଇତସ୍ତତଃ । ୪୭ ।
କେଚିତ୍ତେଜସ୍ୱିନଃ ଶୂରାଃ କ୍ଷତ୍ରିୟା ଯୁଦ୍ଧଦୁର୍ମଦାଃ ।
ତଚ୍ଛାସନମକୁର୍ବନ୍ତୋ ବିନେଶୁଃ ସପରିଚ୍ଛଦାଃ । ୪୮ ।

---

ଗଣେ ନାହିଁ । ହେ ତ୍ରିପୁରାନ୍ତକ ! ବ୍ରହ୍ମାଙ୍କଠାରୁ ମୁଁ ଦୀର୍ଘାୟୁ ମଧ୍ୟ ପ୍ରାପ୍ତ ହୋଇଅଛି । ଏବେ ମୋର ଯେଉଁ ଆୟୁ ଅବଶିଷ୍ଟ ଅଛି ତାହା ମୋର କୌଣସି କର୍ମଦ୍ୱାରା ନଷ୍ଟ ନ ହେଉ । ତା ଛଡ଼ା ଆପଣ ମୋତେ ଗୋଟିଏ ଶସ୍ତ୍ର ମଧ୍ୟ ଦିଅନ୍ତୁ” । ୪୨ । ରାବଣ ମହାଦେବଙ୍କୁ ଏପ୍ରକାର କହିବାରୁ ସେ ଚନ୍ଦ୍ରହାସ ନାମକ ଏକ ମହାଦୀପ୍ତିମନ୍ତ ତରବାରି ରାବଣକୁ ଦେଲେ । ୪୩ । ଭୂତନାଥ ମହାଦେବ ରାବଣର ପ୍ରାର୍ଥନା ଅନୁସାରେ ତାକୁ ଅବଶିଷ୍ଟ ଆୟୁ ମଧ୍ୟ ଦେଇଦେଲେ ।୪୪। ମହାଦେବ କହିଲେ, “ଏହା ପ୍ରତି ତୁ କୌଣସି ପ୍ରକାର ଅବଜ୍ଞା କରିବୁ ନାହିଁ, ଯେବେ ଅବଜ୍ଞା କରୁ ତେବେ ତାହା ମୋ ପାଖକୁ ଫେରି ଆସିବ, ଏଥିରେ ସନ୍ଦେହ ନାହିଁ” । ୪୫ । ମହାଦେବଙ୍କ ଠାରୁ ଏପ୍ରକାର ନିଜର ‘ରାବଣ’ ନାମ ପାଇ ଏବଂ ତାଙ୍କୁ ପ୍ରଣାମ କରି ଦଶଗ୍ରୀବ ପୁଷ୍ପକ ବିମାନ ଉପରେ ବସିଲା । ୪୬ । ହେ ରାମ ! ତଦନନ୍ତର ରାବଣ ଭୂମଣ୍ଡଳ ପ୍ରଦକ୍ଷିଣ କରି ବଡ଼ ବଳବାନ୍ ଓ ପରାକ୍ରମଶାଳୀ କ୍ଷତ୍ରିୟଙ୍କୁ ନିର୍ଯ୍ୟାତନା କରିବାକୁ ଲାଗିଲା । ୪୭ । କେତେ ତେଜସ୍ୱୀ ବୀର ଏବଂ ଯୁଦ୍ଧରେ ଦୁର୍ମଦ କ୍ଷତ୍ରିୟ ତାହାର

ଅପରେ ଦୁର୍ଜୟଂ ରକ୍ଷୋ ଜାନନ୍ତଃ ପ୍ରାଜ୍ଞସମ୍ମତାଃ ।
ଜିତାଃ ସ୍ମ ଇତ୍ୟଭାଷନ୍ତ ରାକ୍ଷସଂ ବଳଦର୍ପିତମ୍ । ୪୯ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଯୁଦ୍ଧକାଣ୍ଡେ ରାବଣନାମପ୍ରାପ୍ତିର୍ନାମ ଷୋଡ଼ଶଃ ସର୍ଗଃ ।

---

# ସପ୍ତଦଶଃ ସର୍ଗଃ

## ବେଦବତୀଶାପଃ

ଅଥ ରାଜନ୍ ମହାବାହୁର୍ବିଚରନ୍ ସ ମହୀତଳେ ।
ହିମବଦ୍ବନମାସାଦ୍ୟ ପରିଚକ୍ରାମ ରାବଣଃ । ୧ ।
ତତ୍ରାପଶ୍ୟତ୍ ସ ବୈ କନ୍ୟାଂ କୃଷ୍ଣାଜିନଜଟାଧରାମ୍ ।
ଆର୍ଷେଣ ବିଧିନା ଚୈନାଂ ଦୀପ୍ୟନ୍ତୀଂ ଦେବତାମିବ । ୨ ।
ସ ଦୃଷ୍ଟ୍ୱା ରୂପସମ୍ପନ୍ନାଂ କନ୍ୟାଂ ତାଂ ସୁମହାବ୍ରତାମ୍ ।
କାମମୋହପରୀତାତ୍ମା ପପ୍ରଚ୍ଛ ପ୍ରହସନ୍ନିବ । ୩ ।

---

ଆଦେଶ ନ ମାନବାରୁ ସପରିଚ୍ଛଦରେ ନିହତ ହେଲେ । ୪୮ । ଅନ୍ୟ ଚତୁର ରାଜାମାନେ ବଳଗର୍ବିତ ରାବଣକୁ ଦୁର୍ଜେୟ ଜାଣି ନିଜର ହାର ମାନିନେଲେ । ୪୯ ।

---

## ୧୭ଶ ସର୍ଗ

### (ବେଦବତୀଙ୍କ ଶାପ)

"ହେ ରାମ ! ମହାବଳୀ ରାବଣ ଏହିପ୍ରକାରେ ବୁଲି ବୁଲି ଦିନେ ହିମାଳୟ ପର୍ବତର ବନ ମଧ୍ୟରେ ପହଞ୍ଚିଲା ଏବଂ ସେଠାରେ ବିଚରଣ କରିବାକୁ ଲାଗିଲା । ୧ । ସେଠାରେ ସେ ଗୋଟିଏ କନ୍ୟାକୁ ଦେଖିଲା । ସେ ମୃଗଚର୍ମ ପିନ୍ଧି ତପସ୍ୟାନୁଷ୍ଠାନରେ ନିରତ ଏବଂ ସାକ୍ଷାତ୍ ଦେବକନ୍ୟା ସଦୃଶ ଦେଦୀପ୍ୟମାନ ଥିଲା । ୨ । ସେହି ସୁନ୍ଦରୀ ଏବଂ ମହାବ୍ରତଧାରିଣୀ କନ୍ୟାକୁ ଦେଖି ରାବଣ କାମରେ ପୀଡ଼ିତ ହୋଇ ହସି ହସି ତାକୁ ପଚାରିଲା । ୩ । "ହେ ଭଦ୍ରେ ! ତୁମେ ବର୍ତ୍ତମାନ ଯେ କର୍ମ କରୁଅଛ ତାହା

କିମିଦଂ ବର୍ତ୍ତସେ ଭଦ୍ରେ ବିରୁଦ୍ଧଂ ଯୌବନସ୍ୟ ତେ ।
ନ ହି ଯୁକ୍ତା ତବୈତସ୍ୟ ରୂପସ୍ୟ ତପସଃ କ୍ରିୟା । ୪ ।
ରୂପଂ ତେଽନୁପମଂ ଭୀରୁ କାମୋନ୍ମାଦକରଂ ନୃଣାମ୍ ।
ନ ଯୁକ୍ତଂ ତପସି ସ୍ଥାତୁଂ ନିର୍ଗତୋ ହ୍ୟେଷ ନିର୍ଣ୍ଣୟଃ । ୫ ।
କସ୍ୟାସି କିମିଦଂ ଭଦ୍ରେ କଶ୍ଚ ଭର୍ତ୍ତା ବରାନନେ ।
ଯେନ ସଂଭଜ୍ୟସେ ଭୀରୁ ସ ନରଃ ପୁଣ୍ୟଭାଗ୍ ଭୁବି । ୬ ।
ପୃଚ୍ଛତଃ ଶଂସ ମେ ସର୍ବଂ କସ୍ୟ ହେତୋଃ ପରିଶ୍ରମଃ ।
ଏବମୁକ୍ତା ତୁ ସା କନ୍ୟା ରାବଣେନ ଯଶସ୍ୱିନୀ । ୭ ।
ଅବ୍ରବୀଦ୍ ବିଧିବତ୍ କୃତ୍ୱା ତସ୍ୟାତିଥ୍ୟଂ ତପୋଧନା ।
କୁଶଧ୍ୱଜୋ ମମ ପିତା ବ୍ରହ୍ମର୍ଷିରମିତପ୍ରଭଃ । ୮ ।
ବୃହସ୍ପତିସୁତଃ ଶ୍ରୀମାନ୍ ବୁଦ୍ଧ୍ୟା ତୁଲ୍ୟୋ ବୃହସ୍ପତେଃ ।
ତସ୍ୟାହଂ କୁର୍ବତୋ ନିତ୍ୟଂ ବେଦାଭ୍ୟାସଂ ମହାତ୍ମନଃ ।
ସଂଭୂତା ବାଙ୍ମୟୀ କନ୍ୟା ନାମ୍ନା ବେଦବତୀ ସ୍ମୃତା । ୯ ।
ତତୋ ଦେବାଃ ସଗନ୍ଧର୍ବା ଯକ୍ଷରାକ୍ଷସପନ୍ନଗାଃ ।
ତେଽପି ଗତ୍ୱା ହି ପିତରଂ ବରଣଂ ରୋଚୟନ୍ତି ମେ । ୧୦ ।

---

ତୁମ୍ଭର ଏ ଯୌବନର ବିରୁଦ୍ଧ ଅଟେ, ବିଶେଷତଃ ଏ ଆଚରଣ ତୁମ୍ଭର ଏ ରୂପର ଯୋଗ୍ୟ ନୁହେ । ୪ । ହେ ଭୀରେ ! ତୁମ୍ଭର ଏ ସୌନ୍ଦର୍ଯ୍ୟ ମନୁଷ୍ୟଙ୍କୁ କାମୋନ୍ମତ୍ତ କରୁଅଛି, ସୁତରାଂ ତୁମେ ନିଜର ଏ ତପସ୍ୟା କରିବା ସଙ୍କଳ୍ପକୁ ପରିତ୍ୟାଗ କର । ୫ । ହେ ଭଦ୍ରେ ! ତୁମେ କାହାର କନ୍ୟା ? ଏ କଣ କରୁଛ ? ହେ ବରାନନେ ! ତୁମ୍ଭର ପତି କିଏ ? ହେ ଭୀରୁ ! ତୁମ ସହିତ ଯେ ସମ୍ଭୋଗ କରିବ ସେ ବ୍ୟକ୍ତି ଏ ପୃଥିବୀରେ ବଡ଼ ପୁଣ୍ୟବାନ୍ ଅଟେ । ୬ । ମୁଁ ତୁମକୁ ପଚାରୁଛି, ସମସ୍ତ ବୃତ୍ତାନ୍ତ କହ; ତୁମେ କି ଉଦ୍ଦେଶ୍ୟରେ ଏତେ ପରିଶ୍ରମ କରୁଛ ?" ରାବଣ ଏପରି ପଚାରିବାରୁ ସେ ଯଶସ୍ୱିନୀ ତପସ୍ୱିନୀ କନ୍ୟା ରାବଣର ବିଧିବତ୍ ଆତିଥ୍ୟ କରି କହିଲା, "ବୃହସ୍ପତିଙ୍କ ପୁତ୍ର, ବୁଦ୍ଧିରେ ବୃହସ୍ପତିଙ୍କ ସମାନ, ଅମିତପ୍ରଭାବାନ୍ କୁଶଧ୍ୱଜ ନାମକ ବ୍ରହ୍ମର୍ଷି ମୋର ପିତା ଅଟନ୍ତି । ୭-୮ । ସେ ମହାତ୍ମା ନିତ୍ୟ ବେଦାଭ୍ୟାସ କରୁଥିଲେ । ମୁଁ ତାଙ୍କର ବାଣୀରୂପା କନ୍ୟା ଓ ମୋର ନାମ ବେଦବତୀ ଅଟେ ।୯। ଦେବତା, ଗନ୍ଧର୍ବ, ଯକ୍ଷ, ରାକ୍ଷସ ଏବଂ ନାଗମାନେ ମୋର ପିତାଙ୍କ ପାଖକୁ ଯାଇ ମୋତେ ବିବାହ କରିବାକୁ ପ୍ରବର୍ତ୍ତାଇଲେ । ୧୦ । ହେ ରକ୍ଷଶ୍ରେଷ୍ଠ ! ମୋ ପିତା

ନ ଚ ମାଂ ସ ପିତା ତେଭ୍ୟୋ ଦତ୍ତବାନ୍ ରାକ୍ଷସର୍ଷଭ ।
କାରଣଂ ତଦ୍‌ବଦିଷ୍ୟାମି ନିଶାଚର ନିଶାମୟ । ୧୧ ।
ପିତୁସ୍ତୁ ମମ ଜାମାତା ବିଷ୍ଣୁଃ କିଲ ସୁରେଶ୍ବରଃ ।
ଅଭିପ୍ରେତସ୍ତ୍ରିଲୋକେଶସ୍ତସ୍ମାନ୍ନାନ୍ୟସ୍ୟ ମେ ପିତା । ୧୨ ।
ଦାତୁମିଚ୍ଛତି ତସ୍ମୈ ତୁ ତଚ୍ଛ୍ରୁତ୍ୱା ବଲଦର୍ପିତଃ ।
ଦମ୍ଭୁର୍ନାମ ତତୋ ରାଜା ଦୈତ୍ୟାନାଂ କୁପିତୋଽଭବତ୍ ।୧୩ ।
ତେନ ରାତ୍ରୌ ଶୟାନୋ ମେ ପିତା ପାପେନ ହିଂସିତଃ । ୧୪ ।
ତତୋ ମେ ଜନନୀ ଦୀନା ତଚ୍ଛରୀରଂ ପିତୁର୍ମମ ।
ପରିଷ୍ୱଜ୍ୟ ମହାଭାଗା ପ୍ରବିଷ୍ଟା ହବ୍ୟବାହନମ୍ ।୧୫ ।
ତତୋ ମନୋରଥଂ ସତ୍ୟଂ ପିତୁର୍ନାରାୟଣଂ ପ୍ରତି ।
କରୋମୀତି ତମେବାହଂ ହୃଦୟେନ ସମୁଦ୍‌ବହେ । ୧୬ ।
ଇତି ପ୍ରତିଜ୍ଞାମାରୁହ୍ୟ ଚରାମି ବିପୁଲଂ ତପଃ ।
ଏତତ୍ତେ ସର୍ବମାଖ୍ୟାତଂ ମୟା ରାକ୍ଷସପୁଙ୍ଗବ । ୧୭ ।
ନାରାୟଣୋ ମମ ପତିର୍ନତ୍ୱନ୍ୟଃ ପୁରୁଷୋତ୍ତମାତ୍ ।
ଆଶ୍ରୟେ ନିୟମଂ ଘୋରଂ ନାରାୟଣପରୀପ୍ସୟା । ୧୮ ।

---

ସେମାନଙ୍କ ସହିତ ମୋର ବିବାହ ଦେଲେ ନାହିଁ । ହେ ନିଶାଚର ! ତାର କାରଣ ମୁଁ କହୁଛି ଶୁଣ । ୧୧ । ମୋର ପିତା ଚାହୁଁଥିଲେ ଯେ ତାଙ୍କର ଜାମାତା ସୁରେଶ୍ବର ବିଷ୍ଣୁ ହେବେ । ଅତଏବ ଅନ୍ୟ କାହାରି ସହିତ ସେ ମୋର ବିବାହ ଚାହୁଁ ନ ଥିଲେ । ୧୨ । ପିତା ଯେତେବେଳେ ବିଷ୍ଣୁଙ୍କ ସହିତ ମୋର ବିବାହ ଦେବାକୁ ଇଚ୍ଛା ପ୍ରକାଶ କଲେ, ସେତେବେଳେ ସେ କଥା ଶୁଣି ବଳଦର୍ପିତ ଦୈତ୍ୟେନ୍ଦ୍ର ଦମ୍ଭୁ ଅତିଶୟ କୁପିତ ହେଲା । ୧୩ । ଦିନେ ରାତିରେ ମୋର ପିତା ଶୋଇଥିବା ବେଳେ ସେ ଦୈତ୍ୟ ଆସି ତାଙ୍କୁ ମାରିଦେଲା । ୧୪ । ଅନନ୍ତର ମୋର ଦୁଃଖିନୀ ମହାଭାଗା ମାତା ପିତାଙ୍କର ଶବକୁ ଧରି ଅଗ୍ନିରେ ପ୍ରବେଶ କଲେ । ୧୫ । ସେତେବେଳେ ମୁଁ ଭାବିଲି ଯେ ନାରାୟଣଙ୍କ ବିଷୟରେ ମୋର ପିତାଙ୍କର ଯେଉଁ ସଙ୍କଳ୍ପ ଥିଲା ତାହାକୁ ମୁଁ ପୂର୍ଣ୍ଣ କରିବି । ଏହା ସ୍ଥିର କରି ମୁଁ ହୃଦୟର ସହିତ ସେ କାମନାକୁ ପୂର୍ଣ୍ଣ କରିବାରେ ଲାଗିରହିଛି । ୧୬ । ହେ ରାକ୍ଷସଶ୍ରେଷ୍ଠ । ଏହି ପ୍ରତିଜ୍ଞାନୁସାରେ ମୁଁ ଏହି କଠୋର ତପ କରୁଅଛି । ମୁଁ ସବୁ କଥା ତୁମ୍ଭଙ୍କୁ କହିଲି ।୧୭। ଶ୍ରୀ ନାରାୟଣହିଁ ମୋର ପତି ଅଟନ୍ତି । ସେହି ପୁରୁଷୋତ୍ତମଙ୍କୁ ଛାଡ଼ି ଅନ୍ୟ କେହି ମୋର ପତି ହୋଇ ନ ପାରନ୍ତି । ଅତଏବ ଶ୍ରୀ ନାରାୟଣଙ୍କୁ ପତିରୂପେ ପାଇବା ଲାଗି ମୁଁ ଏହି ଘୋର

ବାଢ଼ମେତତ୍ତ୍ୱଂ ହି ମେ ରାଜନ୍ ଗଚ୍ଛ ପୌଲସ୍ତ୍ୟନନ୍ଦନ ।
ଜାନାମି ତପସା ସର୍ବଂ ତ୍ରୈଲୋକ୍ୟେ ଯଦ୍ଧି ବର୍ତ୍ତତେ । ୧୯ ।
ସୋଽବ୍ରବୀଦ୍ରାବଣୋ ଭୂୟସ୍ତାଂ କନ୍ୟାଂ ସୁମହାବ୍ରତାମ୍ ।
ଅବରୁହ୍ୟ ବିମାନାଗ୍ରାତ୍ କନ୍ଦର୍ପଶରପୀଡ଼ିତଃ । ୨୦ ।
ଅବଲିପ୍ତାସି ସୁଶ୍ରୋଣି ଯସ୍ୟାସ୍ତେ ମତିରୀଦୃଶୀ ।
ବୃଦ୍ଧାନାଂ ମୃଗଶାବାକ୍ଷି ଭ୍ରାଜତେ ପୁଣ୍ୟସଞ୍ଚୟଃ । ୨୧ ।
ତ୍ୱଂ ସର୍ବଗୁଣସମ୍ପନ୍ନା ନାର୍ହସେ ବକ୍ତୁମୀଦୃଶମ୍ ।
ତ୍ରୈଲୋକ୍ୟସୁନ୍ଦରୀ ଭୀରୁ ଯୌବନଂ ତେଽତିବର୍ତ୍ତତେ । ୨୨ ।
ଅହଂ ଲଙ୍କାପତିର୍ଭଦ୍ରେ ଦଶଗ୍ରୀବ ଇତି ଶ୍ରୁତଃ ।
ତସ୍ୟ ମେ ଭବ ଭାର୍ଯ୍ୟା ତ୍ୱଂ ଭୁଙ୍‌କ୍ଷ୍ୱ ଭୋଗାନ୍ ଯଥାସୁଖମ୍ । ୨୩ ।
କଶ୍ଚ ତାବଦସୌ ଯଂ ତ୍ୱଂ ବିଷ୍ଣୁରିତ୍ୟଭିଭାଷସେ ।
ବୀର୍ଯ୍ୟେଣ ତପସା ଚୈବ ଭୋଗେନ ଚ ବଲେନ ଚ ।
ନ ମୟାସୌ ସମୋ ଭଦ୍ରେ ଯଂ ତ୍ୱଂ କାମୟସେଽଙ୍ଗନେ । ୨୪ ।
ଇତ୍ୟୁକ୍ତବତି ତସ୍ମିଂସ୍ତୁ ବେଦବତ୍ୟଥ ସାବ୍ରବୀତ୍ ।
ମାମୈବମିତି ସା କନ୍ୟା ତମୁବାଚ ନିଶାଚରମ୍ । ୨୫ ।

---

ତପସ୍ୟା କରୁଅଛି ।୧୮। ହେ ରାଜନ୍ ! ମୁଁ ତୁମ୍ଭଙ୍କୁ ଜାଣିଗଲି ଯେ ତୁମେ ପୌଲସ୍ତ୍ୟ-ନନ୍ଦନ ଅଟ । ଏବେ ତୁମେ ଏଠାରୁ ଚାଲିଯାଅ । ମୁଁ ନିଜର ତପୋବଳରେ ତ୍ରିଭୁବନରେ ଯାହା କିଛି ହେଉଅଛି ସେ ସବୁ ଜାଣୁଅଛି" ।୧୯। ଏହା ଶୁଣି କାମବାଣରେ ପୀଡ଼ିତ ରାବଣ ବିମାନରୁ ଓହ୍ଲାଇ ମହାବ୍ରତଧାରିଣୀ ସେହି କନ୍ୟାଙ୍କୁ କହିଲା । ୨୦ । "ହେ ସୁଶ୍ରୋଣି ! ତୁମ ନିଜର ରୂପର ଗର୍ବ ରହିଅଛି । ସେଥିଲାଗି ତୁମେ ଜାଣୁ ନାହିଁ ଯେ ତୁମ୍ଭର କଅଣ କରିବା ଉଚିତ ବା କଅଣ କରିବା ଉଚିତ ନୁହେ । ସେହିହେତୁରୁ ତୁମ୍ଭର ଏପରି ବୁଦ୍ଧି ହେଉଛି । ହେ ମୃଗଶାବାକ୍ଷି ! ତପସ୍ୟାଦି ପୁଣ୍ୟପ୍ରଦ କାର୍ଯ୍ୟ କରିବା ବୃଦ୍ଧର ଉପଯୁକ୍ତ ଅଟେ ।୨୧। ତୁମେ ସର୍ବଗୁଣସମ୍ପନ୍ନା ଅଟ । ତୁମ୍ଭର ଏପରି କହିବା ଠିକ ନୁହେ । ତୁମେ ତ ତ୍ରୈଲୋକ୍ୟସୁନ୍ଦରୀ ଅଟ । ହେ ଭୀରୁ ! ତୁମ୍ଭର ଏ ଯୌବନ ଅତିକ୍ରାନ୍ତ ହୋଇ ଯାଉଅଛି । ୨୨ । ହେ ଭଦ୍ରେ ! ମୁଁ ଲଙ୍କାପତି ଦଶଗ୍ରୀବ ଅଟେ । ତୁମେ ମୋର ଭାର୍ଯ୍ୟା ହୋଇ ଯଥେଷ୍ଟ ସୁଖ ଭୋଗକର ।୨୩। ହେ ଭଦ୍ରେ ! ତୁମେ ଯେଉଁ ବିଷ୍ଣୁ କଥା କହୁଛ ସେ କିଏ ? ତୁମେ ଯାହାକୁ ଚାହୁଁଛ, ସେ ଯେ ହେଉ, କିନ୍ତୁ ପରାକ୍ରମ, ତପସ୍ୟା, ଭୋଗ ଏବଂ ବଳରେ ମୋ ସଙ୍ଗେ କଦାପି ସମାନ ହୋଇ ପାରିବ ନାହିଁ" । ୨୪ । ରାବଣ ଏପରି କହିବାରୁ ବେଦବତୀ ତାକୁ କହିଲେ,

ତ୍ରୈଲୋକ୍ୟାଧିପତିଂ ବିଷ୍ଣୁଂ ସର୍ବଲୋକନମସ୍କୃତମ୍ ।
ତ୍ୱଦୃତେ ରାକ୍ଷସେନ୍ଦ୍ର ।ନ୍ୟଃ କୋଽବମନ୍ୟେତ ବୁଦ୍ଧିମାନ୍ ।୨୬।
ଏବମୁକ୍ତସ୍ତୟା ତତ୍ର ବେଦବତ୍ୟା ନିଶାଚରଃ ।
ମୂର୍ଧଜେଷୁ ତଦା କନ୍ୟାଂ କରାଗ୍ରେଣ ପରାମୃଶତ୍ । ୨୭ ।
ତତୋ ବେଦବତୀ କ୍ରୁଦ୍ଧା କେଶାନ୍ ହସ୍ତେନ ସାଚ୍ଛିନତ୍ ।
ଅସିର୍ଭୂତ୍ୱା କରସ୍ତସ୍ୟାଃ କେଶାଂଶ୍ଛିନ୍ନାଂସ୍ତଦାକରୋତ୍ ।୨୮।
ସା ଜ୍ୱଲନ୍ତୀବ ରୋଷେଣ ଦହନ୍ତୀବ ନିଶାଚରମ୍ ।
ଉବାଚାଗ୍ନିଂ ସମାଧାୟ ମରଣାୟ କୃତତ୍ୱରା । ୨୯ ।
ଧର୍ଷିତାୟାସ୍ତ୍ୱୟାନାର୍ଯ ନ ମେ ଜୀବିତମିଷ୍ୟତେ ।
ରକ୍ଷସ୍ତସ୍ମାତ୍ ପ୍ରବେକ୍ଷ୍ୟାମି ପଶ୍ୟତସ୍ତେ ହୁତାଶନମ୍ । ୩୦ ।
ଯସ୍ମାତ୍ତୁ ଧର୍ଷିତା ଚାହଂ ତ୍ୱୟା ପାପାତ୍ମନା ବନେ ।
ତସ୍ମାତ୍ତବ ବଧାର୍ଥଂ ହି ସମୁତ୍ପତ୍ସ୍ୟେ ହ୍ୟହଂ ପୁନଃ । ୩୧ ।
ନ ହି ଶକ୍ୟଂ ସ୍ତ୍ରିୟା ହନ୍ତୁଂ ପୁରୁଷଃ ପାପନିଶ୍ଚୟଃ ।
ଶାପେ ତ୍ୱୟି ମୟୋତ୍ସୃଷ୍ଟେ ତପଶ୍ଚ ବ୍ୟୟିତୋ ଭବେତ୍ ।୩୨।

---

"ତୁମେ ବିଷ୍ଣୁଙ୍କ ବିଷୟରେ ଏପରି କଥା କହ ନାହିଁ । ୨୫ । ଭଗବାନ୍ ବିଷ୍ଣୁ ତ୍ରିଲୋକାଧିପତି ଅଟନ୍ତି ଏବଂ ସମସ୍ତଙ୍କର ପୂଜ୍ୟ ଅଟନ୍ତି । ତୁମ ଛଡ଼ା ଅନ୍ୟ କେଉଁ ବୁଦ୍ଧିମାନ୍ ଲୋକ ତାଙ୍କର ଏ ପ୍ରକାର ଅପମାନ କରିବେ ନାହିଁ" । ୨୬ । ବେଦବତୀଙ୍କର ଏ କଥା ଶୁଣି ରାବଣ ନିଜ ହାତରେ ତାଙ୍କର କେଶ ଆଉଁସିଲା ।୨୭। ଏଥିଉତ୍ତାରୁ ବେଦବତୀ କ୍ରୋଧରେ ନିଜ ହାତରେ ନିଜ କେଶ କାଟିପକାଇଲେ । ସେତେବେଳେ ତାଙ୍କ ହାତ ତରବାରି ସଦୃଶ ହୋଇ ଯାଇଥିଲା । ୨୮ । ବେଦବତୀ କ୍ରୋଧରେ ପ୍ରଜ୍ୱଳିତ ହୋଇ ମରଣ ନିମନ୍ତେ ଆତୁର ହୋଇ ଅଗ୍ନି ଜାଳି ରାବଣକୁ ଭସ୍ମ କରିଦେଲା ପରି କହିଲେ ।୨୯। "ହେ ଅନାର୍ଯ୍ୟ ! ତୁ ମୋର ଅଙ୍ଗ ସ୍ପର୍ଶ କରିଛୁ, ସୁତରାଂ ମୁଁ ଆଉ ବଞ୍ଚିରହିବାକୁ ଚାହୁଁ ନାହିଁ । ମୁଁ ଏବେ ତୋହରି ସମ୍ମୁଖରେ ଅଗ୍ନିରେ ପ୍ରବେଶ କରୁଛି । ୩୦ । ତୁ ପାପାତ୍ମା ମୋର କେଶକୁ ସ୍ପର୍ଶକରି ଏ ବନ-ମଧ୍ୟରେ ମୋତେ ଅପମାନିତ କରିଅଛୁ । ଅତଏବ ତୋତେ ବଧ କରିବା ନିମନ୍ତେ ମୁଁ ପୁଣି ଉତ୍ପନ୍ନ ହେବି । ୩୧ । କାରଣ ପାପୀ ପୁରୁଷକୁ ମାରିବାକୁ ସ୍ତ୍ରୀଲୋକ ସମର୍ଥ ନୁହେଁ; ଆଉ ମୁଁ ଯଦି ତୋତେ ଶାପ ଦିଏ, ତେବେ ମୋର ତପସ୍ୟାରେ ହାନିହେବ ।୩୨। ମୁଁ ଯଦି କୌଣସି ସୁକୃତ କରିଥାଏଁ, ଦାନ ଦେଇଥାଏଁ, ହୋମ

ଯଦ୍ୟସ୍ତି ମୟା କିଂଚିତ୍ କୃତଂ ଦତ୍ତଂ ହୁତଂ ତଥା ।
ତସ୍ମାତ୍ତ୍ୱୟୋନିଜା ସାଧ୍ୱୀ ଭବେୟଂ ଧର୍ମିଣଃ ସୁତା । ୩୩ ।
ଏବମୁକ୍ତ୍ୱା ପ୍ରବିଷ୍ଟା ସା ଜ୍ୱଳିତଂ ଜାତବେଦସମ୍ ।
ପପାତ ଚ ଦିବୋ ଦିବ୍ୟା ପୁଷ୍ପବୃଷ୍ଟିଃ ସମନ୍ତତଃ । ୩୪ ।
ସୈଷା ଜନକରାଜସ୍ୟ ପ୍ରସୂତା ତନୟା ପ୍ରଭୋ ।
ତବ ଭାର୍ଯା ମହାବାହୋ ବିଷ୍ଣୁସ୍ତ୍ୱଂ ହି ସନାତନଃ । ୩୫ ।
ପୂର୍ବଂ କ୍ରୋଧହତଃ ଶତ୍ରୁର୍ୟୟାସୌ ନିହତସ୍ତ୍ୱୟା । ୩୬ ।
ଉପାଶ୍ରୟିତ୍ୱା ଶୈଳାଭସ୍ତବ ବୀର୍ଯମମାନୁଷମ୍ ।
ଏବମେଷା ମହାଭାଗା ମର୍ତ୍ତ୍ୟେଷୂତ୍ପଦ୍ୟତେ ପୁନଃ । ୩୭ ।
କ୍ଷେତ୍ରେ ହଲମୁଖୋତ୍କୃଷ୍ଟେ ବେଦ୍ୟାମଗ୍ନିଶିଖୋପମା ।
ଏଷା ବେଦବତୀ ନାମ ପୂର୍ବମାସୀତ୍ କୃତେ ଯୁଗେ । ୩୮ ।
ତ୍ରେତା ଯୁଗମନୁପ୍ରାପ୍ୟ ବଧାର୍ଥଂ ତସ୍ୟ ରକ୍ଷସଃ ।
ଉତ୍ପନ୍ନା ମୈଥିଲକୁଲେ ଜନକସ୍ୟ ମହାତ୍ମନଃ । ୩୮ ।

ଇତି ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ବେଦବତୀଶାପୋ ନାମ ସପ୍ତଦଶଃ ସର୍ଗଃ ।

---

କରିଥାଏଁ, ତେବେ ମୁଁ କୌଣସି ଧର୍ମାତ୍ମାଙ୍କ ଘରେ ଅଯୋନିଜା ହୋଇ ଜନ୍ମହେବି" । ୩୩ । ଏହା କହି ବେଦବତୀ ପ୍ରଜ୍ୱଳିତ ଅଗ୍ନିକୁ ଡେଇଁପଡ଼ିଲେ । ସେତେବେଳେ ଚାରି ଦିଗର ପାଖରେ ଆକାଶରୁ ଦିବ୍ୟ ପୁଷ୍ପବୃଷ୍ଟି ହେଲା । ୩୪ । ହେ ପ୍ରଭୋ ! ସେହି ବେଦବତୀ ଜନକ ରାଜାଙ୍କ ଘରେ କନ୍ୟାରୂପେ ଉତ୍ପନ୍ନ ହୋଇ ତୁମ୍ଭର ଭାର୍ଯ୍ୟା ହୋଇଛନ୍ତି । ହେ ମହାବାହୋ ! ତୁମେହିଁ ସେହି ସନାତନ ବିଷ୍ଣୁ ଭଗବାନ୍ ଅଟ । ୩୫ । ବେଦବତୀ ତ ନିଜର କ୍ରୋଧରେ ରାବଣକୁ ମାରି ସାରିଛନ୍ତି । ଯେ ବର୍ତ୍ତମାନ ତୁମ୍ଭର ଅଲୌକିକ ବଳର ଆଶ୍ରୟ ନେଇ ସେହି ପର୍ବତ ସଦୃଶ ଶତ୍ରୁକୁ ନାଶ କରିଦେଇଛନ୍ତି । ସେହି ମହାଭାଗା ବେଦବତୀ ବେଦି-ମଧ୍ୟରେ ଥିବା ଅଗ୍ନିଶିଖା ସଦୃଶ ଭବିଷ୍ୟତ କଳ୍ପରେ ଲଙ୍ଗଳକର୍ଷିତ କ୍ଷେତ୍ରରୁ ସେହି-ପ୍ରକାରେ ପୁଣି ଉତ୍ପନ୍ନ ହେବେ । ହେ ରାଜନ୍ ! ପ୍ରଥମେ ସତ୍ୟ ଯୁଗରେ ଏ ବେଦବତୀ ନାମରେ ବିଖ୍ୟାତ ଥିଲେ । ବର୍ତ୍ତମାନ ଏ ତ୍ରେତା ଯୁଗରେ ରାକ୍ଷସକୁଳକୁ ସଂହାର କରିବା ନିମନ୍ତେ ମୈଥିଳକୁଳରେ ମହାତ୍ମା ଜନକଙ୍କର କନ୍ୟା ହୋଇଛନ୍ତି । ୩୮ ।

# ଅଷ୍ଟାଦଶଃ ସର୍ଗଃ

## ମରୁତ୍ତଦ୍ଵିଜୟଃ

ପ୍ରବିଷ୍ଟାୟାଂ ହୁତାଶଂ ତୁ ବେଦବତ୍ୟାଂ ସ ରାବଣଃ ।
ପୁଷ୍ପକଂ ତୁ ସମାରୁହ୍ୟ ପରିଚକ୍ରାମ ମେଦିନୀମ୍ । ୧ ।
ତତୋ ମରୁତ୍ତଂ ନୃପତିଂ ଯଜନ୍ତଂ ସହ ଦୈବତୈଃ ।
ଉଶୀରବୀଜମାସାଦ୍ୟ ଦଦର୍ଶ ସ ତୁ ରାବଣଃ । ୨ ।
ସଂବର୍ତ୍ତୋ ନାମ ବ୍ରହ୍ମର୍ଷିଃ ସାକ୍ଷାଦ୍ଭ୍ରାତା ବୃହସ୍ପତେଃ ।
ଯାଜୟାମାସ ଧର୍ମଜ୍ଞଃ ସର୍ବୈ ର୍ଦେବଗଣୈର୍ବୃତଃ । ୩ ।
ଦୃଷ୍ଟ୍ୱା ଦେବାସ୍ତୁ ତଦ୍ରକ୍ଷୋ ବରଦାନେନ ଦୁର୍ଜୟମ୍ ।
ତିର୍ଯଗ୍ୟୋନିଂ ସମାବିଷ୍ଟାସ୍ତସ୍ୟ ଦର୍ଶନଭୀରବଃ । ୪ ।
ଇନ୍ଦ୍ରୋ ମୟୂରଃ ସଂବୃତ୍ତୋ ଧର୍ମରାଜସ୍ତୁ ବାୟସଃ ।
କୃକଲାସୋ ଧନାଧ୍ୟକ୍ଷୋ ହଂସଶ୍ଚ ବରୁଣୋଽଭବତ୍ । ୫ ।
ଅନ୍ୟେଷ୍ୱପି ଗତେଷ୍ୱେବଂ ଦେବେଷ୍ୱରିନିଷୂଦନ ।
ରାବଣଃ ପ୍ରାବିଶଦ୍ ଯଜ୍ଞଂ ସାରମେୟ ଇବାଶୁଚିଃ । ୬ ।

---

## ୧୮ଶ ସର୍ଗ

### (ମରୁତ୍ତବିଜୟ)

ବେଦବତୀ ଅଗ୍ନିରେ ପ୍ରବେଶ କରିବା ପରେ ରାବଣ ପୁଷ୍ପକ ବିମାନରେ ବସି ପୃଥିବୀର ଚାରିଆଡ଼େ ବିଚରଣ କରିବାକୁ ଲାଗିଲା । ୧ । ସେ ଉଶୀରବୀଜ ନାମକ ଦେଶରେ ଯାଇ ପହଞ୍ଚି ସେଠାରେ ମରୁତ୍ତ ନାମକ ରାଜାଙ୍କୁ ଦେବତାମାନଙ୍କ ସହିତ ଯଜ୍ଞ କରୁଥିବାର ଦେଖିଲା ।୨। ବୃହସ୍ପତିଙ୍କର ଭ୍ରାତୃତୁଲ୍ୟ ଧର୍ମଜ୍ଞ ସମ୍ବର୍ତ୍ତ ନାମା ବ୍ରହ୍ମର୍ଷି ଦେବତାମାନଙ୍କ ସହିତ ରାଜା ମରୁତ୍ତଙ୍କ ଦ୍ୱାରା ଯଜ୍ଞ କରାଉଥିଲେ ।୩। ବରଦାନ ହେତୁ ଅଜେୟ ରାକ୍ଷସ ରାବଣକୁ ଦେଖି ତାହାର ନିର୍ଯାତନା ଭୟରେ ଦେବଗଣ ପକ୍ଷୀ ଓ ସରୀସୃପ ରୂପ ଧାରଣକଲେ ।୪। ସେତେବେଳେ ଇନ୍ଦ୍ର ମୟୂର ହୋଇଗଲେ, ଧର୍ମରାଜ କାକ ହୋଇଗଲେ, କୁବେର ଏଣ୍ଡୁଅ ହୋଇଗଲେ ଓ ବରୁଣ ହଂସରୂପ ଧାରଣ କଲେ । ୫ । ହେ ଶତ୍ରୁଘାତକ ! ଅନ୍ୟ ଦେବତାମାନେ ମଧ୍ୟ ଏହିପରି ପକ୍ଷୀମାନଙ୍କର ରୂପ ଧାରଣ କଲେ । ତା ପରେ ଅପବିତ୍ର ଶ୍ୱାନ ସଦୃଶ ରାବଣ ଯଜ୍ଞଶାଳା

ସ ଚ ରାଜାନମାସାଦ୍ୟ ରାବଣୋ ରାକ୍ଷସାଧିପଃ ।
ପ୍ରାହ ଯୁଦ୍ଧଂ ପ୍ରୟଚ୍ଛେତି ନିର୍ଜିତୋଽସ୍ମୀତି ବା ବଦ ।୭।
ତତୋ ମରୁତ୍ତୋ ନୃପତିଃ କୋ ଭବାନିତ୍ୟୁବାଚ ତମ୍ ।
ଅପହାସଂ ତତୋ ମୁକ୍ତ୍ୱା ରାବଣୋ ବାକ୍ୟମବ୍ରବୀତ୍ ।୮।
ଅକୁତୂହଲଭାବେନ ପ୍ରୀତୋଽସ୍ମି ତବ ପାର୍ଥିବ ।
ଧନଦସ୍ୟାନୁଜଂ ଯୋ ମାଂ ନାବଗଚ୍ଛସି ରାବଣମ୍ ।୯।
ତ୍ରିଷୁ ଲୋକେଷୁ କୋଽନ୍ୟୋଽସ୍ତି ଯୋ ନ ଜାନାତି ମେ ବଲମ୍ ।
ଭ୍ରାତରଂ ଯେନ ନିର୍ଜିତ୍ୟ ବିମାନମିଦମାହୃତମ୍ ।୧୦।
ତତୋ ମରୁତ୍ତଃ ସ ନୃପସ୍ତଂ ରାବଣମଥାବ୍ରବୀତ୍ ।
ଧନ୍ୟଃ ଖଲୁ ଭବାନ୍ ଯେନ ଜ୍ୟେଷ୍ଠୋ ଭ୍ରାତା ରଣେ ଜିତଃ ।
ନ ତ୍ୱୟା ସଦୃଶଃ ଶ୍ଲାଘ୍ୟସ୍ତ୍ରିଷୁ ଲୋକେଷୁ ବିଦ୍ୟତେ ।୧୧।
କଂ ତ୍ୱଂ ପ୍ରାକ୍‌କେବଲଂ ଧର୍ମଂ ଚରିତ୍ୱା ଲବ୍‌ଧବାନ୍ ବରମ୍ ।
ଶ୍ରୁତପୂର୍ବଂ ହି ନ ମୟା ଭାଷସେ ଯାଦୃଶଂ ସ୍ୱୟମ୍ ।୧୨।
ତିଷ୍ଠେଦାନୀଂ ନ ମେ ଜୀବନ୍ ପ୍ରତିଯାସ୍ୟସି ଦୁର୍ମତେ ।
ଅଦ୍ୟ ତ୍ୱାଂ ନିଶିତୈର୍ବାଣୈଃ ପ୍ରେଷୟାମି ଯମକ୍ଷୟମ୍ ।୧୩।

---

ଭିତରେ ପଶିଗଲା ।୬। ସେଠାକୁ ଯାଇ ସେ ରାଜା ମରୁତ୍ତଙ୍କୁ କହିଲା, "ହୁଏ ତ ତୁମେ ମୋ ସହିତ ଯୁଦ୍ଧକର, ନ ହେଲେ 'ପରାଜିତ ହେଲି' ବୋଲି କହ" ।୭। ରାଜା ମରୁତ୍ତ ରାବଣଙ୍କୁ ପଚାରିଲେ, "ଆପଣ କିଏ ?" ଅନନ୍ତର ରାବଣ ଅଟ୍ଟହାସ୍ୟ କରି କହିଲା ।୮। "ହେ ରାଜନ୍ ! ମୁଁ ତୁମ୍ଭର ଏହି ସରଳ ଭାବ ଦେଖି ପ୍ରସନ୍ନ ହୋଇଅଛି, କାରଣ ତୁମେ ଧନଦ କୁବେରଙ୍କ ସାନ ଭାଇ ରାବଣକୁ ଚିହ୍ନୁ ନାହିଁ ।୯। ତିନି ଲୋକରେ ଏପରି କିଏ ଅଛି, ଯେ ମୋର ବଳପରାକ୍ରମକୁ ନ ଜାଣେ ? ଯେଉଁ ରାବଣ ନିଜର ବଡ଼ ଭାଇ କୁବେରଙ୍କୁ ପରାସ୍ତ କରି ତାଙ୍କର ଏ ବିମାନକୁ ଛଡ଼ାଇ ଆଣିଛି, ତାକୁ କିଏ ନ ଜାଣେ ?" ।୧୦। ତା ପରେ ରାଜା ମରୁତ୍ତ ରାବଣକୁ କହିଲେ, "ଆପଣ ଧନ୍ୟ ଯେ ବଡ଼ ଭାଇଙ୍କୁ ଯୁଦ୍ଧରେ ପରାସ୍ତ କରିଦେଇଛନ୍ତି । ବାସ୍ତବରେ ଆପଣଙ୍କପରି ଶ୍ଲାଘ୍ୟ ପୁରୁଷ ତିନି ଲୋକରେ କେହି ନାହିଁ ।୧୧। ପୂର୍ବେ ଆପଣ ଏପରି କି ଧର୍ମକାର୍ଯ୍ୟ କରିଥିଲେ ଯଦ୍ଦ୍ୱାରା ଆପଣଙ୍କୁ ବର ମିଳିଲା । ଆପଣ ନିଜ ବିଷୟରେ ଯେପରି କହିଲେ, ମୁଁ ସେପରି ଆଗରୁ କିଛି ଶୁଣି ନ ଥିଲି ? ।୧୨। ହେ ଦୁର୍ମତେ ! ରହ, ତୁ ମୋ ସମ୍ମୁଖକୁ ଆସି ପ୍ରାଣ ଘେନି ଫେରି ଯାଇ ପାରିବୁ ନାହିଁ । ମୁଁ ଆଜି ତୀକ୍ଷ୍ଣ ଶରଦ୍ୱାରା ତୋତେ ଯମାଳୟକୁ ପ୍ରେରଣ କରିବି" ।୧୩।

ତତଃ ଶରାସନଂ ଗୃହ୍ୟ ସାଯ୍ୟକାଂଶ୍ଚ ନରାଧିପଃ ।
ରଣାଯ୍ୟ ନର୍ଯଯୌ କ୍ରୁଦ୍ଧଃ ସଂବର୍ତ୍ତୋ ମାର୍ଗମାବୃଣୋତ୍ ।୧୪।
ସୋଽବ୍ରବୀତ୍ ସ୍ନେହସଂଯୁକ୍ତଂ ମରୁତ୍ତଂ ତଂ ମହାନୃଷିଃ ।
ଶ୍ରୋତବ୍ୟଂ ଯଦି ମଦ୍‌ବାକ୍ୟଂ ସଂପ୍ରହାରେ ନ ତେ କ୍ଷମଃ ।୧୫।
ମାହେଶ୍ୱରମିଦଂ ସତ୍ରମସମାପ୍ତଂ କୁଲଂ ଦହେତ୍ ।
ଦୀକ୍ଷିତସ୍ୟ କୁତୋ ଯୁଦ୍ଧଂ କ୍ରୋଧିତ୍ୱଂ ଦୀକ୍ଷିତେ କୁତଃ ।୧୬।
ସଂଶୟଶ୍ଚ ଜୟେ ନିତ୍ୟଂ ରାକ୍ଷସଶ୍ଚ ସୁଦୁର୍ଜୟଃ ।
ସ ନିବୃତ୍ତୋ ଗୁରୋର୍ବାକ୍ୟାନ୍ମରୁତ୍ତଃ ପୃଥିବୀପତିଃ ।
ବିସୃଜ୍ୟ ସଶରଂ ଚାପଂ ସ୍ୱସ୍ଥୋ ମଖମୁଖୋଽଭବତ୍ ।୧୭।
ତତସ୍ତଂ ନିର୍ଜିତଂ ମତ୍ୱା ଘୋଷୟାମାସ ବୈ ଶୁକଃ ।
ରାବଣୋ ଜୟତୀତ୍ୟୁଚ୍ଚୈର୍ହର୍ଷାନ୍ନାଦଂ ବିମୁକ୍ତବାନ୍ ।୧୮।
ତାନ୍ ଭକ୍ଷୟିତ୍ୱା ତତ୍ରସ୍ଥାନ୍ ମହର୍ଷୀନ୍ ଯଜ୍ଞମାଗତାନ୍ ।
ବିତୃପ୍ତୋ ରୁଧିରୈସ୍ତେଷାଂ ପୁନଃ ସଂପ୍ରଯଯୌ ମହୀମ୍ ।୧୯।
ରାବଣେ ତୁ ଗତେ ଦେବାଃ ସେନ୍ଦ୍ରାଶ୍ଚୈବ ଦିବୌକସଃ ।
ତତଃ ସ୍ୱାଂ ଯୋନିମାସାଦ୍ୟ ତାନି ସତ୍ତ୍ୱାନି ଚାବ୍ରୁବନ୍ ।୨୦।

---

ଅନନ୍ତର ରାଜା ମରୁତ୍ତ ଧନୁ ଓ ବାଣ ଗ୍ରହଣକରି କ୍ରୋଧରେ ଯୁଦ୍ଧ କରିବାକୁ ବାହାରି ପଡ଼ିଲେ; କିନ୍ତୁ ସଂବର୍ତ୍ତ ମହର୍ଷି ତାଙ୍କର ପଥରୋଧ କରି ଛିଡ଼ା ହୋଇ ଗଲେ ।୧୪। ସଂବର୍ତ୍ତ ମୁନି ସ୍ନେହଯୁକ୍ତ ବଚନରେ ରାଜା ମରୁତ୍ତଙ୍କୁ କହିଲେ, "ତୁମେ ମୋ କଥା ମାନିବା ଉଚିତ । ରାବଣ ସହିତ ଯୁଦ୍ଧ କରିବା ତୁମ୍ଭର ମଙ୍ଗଳଜନକ ହେବ ନାହିଁ ।୧୫। ଏହି ମାହେଶ୍ୱର ଯଜ୍ଞ ସମାପ୍ତ ନ ହେଲେ ତାହା କୁଳକୁ ଦଗ୍ଧ କରିଦିଏ । ଯଜ୍ଞରେ ଦୀକ୍ଷିତ ହୋଇଥିବା ପୁରୁଷ ପକ୍ଷରେ ଯୁଦ୍ଧ କରିବା ଅଥବା କ୍ରୋଧ କରିବା ଉଚିତ ନୁହେଁ ।୧୬। ଯୁଦ୍ଧରେ ଜିଣିବା ସର୍ବଦା ସନ୍ଦେହଜନକ, ବିଶେଷତଃ ରାବଣକୁ ଜିଣିବା ବଡ଼ କଷ୍ଟକର ।" ଗୁରୁଙ୍କ କଥା ମାନି ରାଜା ମରୁତ୍ତ ଯୁଦ୍ଧ ସଂକଳ୍ପ ତ୍ୟାଗକରି ଧନୁ ଓ ବାଣ ଛାଡ଼ିଦେଇ ମନ ସ୍ଥିରକରି ପୁଣି ଯଜ୍ଞକର୍ମରେ ପ୍ରବୃତ୍ତ ହେଲେ ।୧୭। ତା ପରେ ରାବଣର ମନ୍ତ୍ରୀ ଶୁକ ରାଜା ମରୁତ୍ତ ପରାସ୍ତ ହେଲେ ବୋଲି ବିଚାରି ରାବଣଙ୍କର ଜୟ ଘୋଷଣା କରି ହର୍ଷନାଦ କଲା ।୧୮। ଯଜ୍ଞକୁ ଆସିଥିବା ଋଷିମାନଙ୍କୁ ଭକ୍ଷଣ କରି ଏବଂ ସେମାନଙ୍କର ରକ୍ତ ପାନକରି ତୁଷ୍ଟ ହୋଇ ରାବଣ ପୁଣି ପୃଥିବୀମଣ୍ଡଳରେ ବିଚରଣ କରିବାକୁ ଲାଗିଲା ।୧୯। ରାବଣ ଚାଲିଯିବା ପରେ ଇନ୍ଦ୍ରାଦି ଦେବତାମାନେ ପୁଣି ନିଜ ନିଜ ରୂପ ଧାରଣକରି ସେହି ପ୍ରାଣୀମାନଙ୍କୁ କହିଲେ ।୨୦।

ହର୍ଷାତ୍ତଦା ବ୍ରବୀଦ୍‌ଦେନ୍ଦ୍ରୋ ମୟୂରଂ ନୀଲବର୍ହିଣମ୍ ।
ପ୍ରୀତୋଽସ୍ମି ତବ ଧର୍ମଜ୍ଞ ଭୁଜଙ୍ଗାଦ୍ଧି ନ ତେ ଭୟମ୍ । ୨୧ ।
ଇଦଂ ନେତ୍ରସହସ୍ରଂ ତୁ ଯତ୍ତ୍ୱଦ୍‌ବର୍ହେ ଭବିଷ୍ୟତି ।
ବର୍ଷମାଣେ ମୟି ମୁଦଂ ପ୍ରାପ୍‌ସ୍ୟସେ ପ୍ରୀତିଲକ୍ଷଣାମ୍ । ୨୨ ।
ଏବମିନ୍ଦ୍ରୋ ବରଂ ପ୍ରାଦାନ୍ମୟୂରସ୍ୟ ସୁରେଶ୍ୱରଃ । ୨୩ ।
ନୀଲାଃ କିଲ ପୁରା ବର୍ହା ମୟୂରାଣାଂ ନରାଧିପ ।
ସୁରାଧିପାଦ୍ ବରଂ ପ୍ରାପ୍ୟ ଗତାଃ ସର୍ବେଽପି ବର୍ହିଣଃ । ୨୪।
ଧର୍ମରାଜୋଽବ୍ରବୀଦ୍ରାମ ପ୍ରାଗ୍‌ବଂଶେ ବାୟସଂ ସ୍ଥିତମ୍ ।
ପକ୍ଷିଂସ୍ତବାସ୍ମି ସୁପ୍ରୀତଃ ପ୍ରୀତସ୍ୟ ବଚନଂ ଶୃଣୁ । ୨୫ ।
ଯଥାନ୍ୟୈର୍ବିବିଧୈ ରୋଗୈଃ ପୀଡ୍ୟନ୍ତେ ପ୍ରାଣିନୋ ମୟା ।
ତେ ନ ତେ ପ୍ରଭବିଷ୍ୟନ୍ତି ମୟି ପ୍ରୀତେ ନ ସଂଶୟଃ । ୨୬ ।
ମୃତ୍ୟୁତସ୍ତେ ଭୟଂ ନାସ୍ତି ବରାନ୍ମମ ବିହଙ୍ଗମ ।
ଯାବତ୍ତ୍ୱାଂ ନ ବଧିଷ୍ୟନ୍ତି ନରାସ୍ତାବଦ୍ଭବିଷ୍ୟସି । ୨୭ ।

---

ହର୍ଷିତ ହୋଇ ଇନ୍ଦ୍ର ନୀଳବର୍ଣ୍ଣ ମୟୂରକୁ କହିଲେ, ‘‘ହେ ଧର୍ମଜ୍ଞ ! ମୁଁ ତୁମ ଉପରେ ପ୍ରସନ୍ନ ହୋଇଛି । ଅତଏବ ମୁଁ ବର ଦେଉଛି ଯେ ତୁମ୍ଭର ସର୍ପଙ୍କଠାରୁ କୌଣସି ଭୟ ରହିବ ନାହିଁ ।୨୧। ହେ ମୟୂର ! ମୋର ଏହି ସହସ୍ର ନେତ୍ର ତୁମ୍ଭର ଚନ୍ଦ୍ରକାରେ ସୁଶୋଭିତ ହେବ । ମୁଁ ଯେତେବେଳେ ଜଳ ବୃଷ୍ଟି କରିବ ସେତେବେଳେ ମୋର ପ୍ରୀତିର ଚିହ୍ନସ୍ୱରୂପ ତୁମ୍ଭର ଆନନ୍ଦ ଜାତ ହେବ’’ । ୨୨ । ସୁରେଶ୍ୱର ଇନ୍ଦ୍ର ମୟୂରକୁ ଏପ୍ରକାର ବର ପ୍ରଦାନ କଲେ । ହେ ରାଜନ୍ ! ପୂର୍ବକାଳରେ ମୟୂରମାନଙ୍କ ପୁଚ୍ଛ ନୀଳବର୍ଣ୍ଣ ଥିଲା, କିନ୍ତୁ ବରଦାନ ଦ୍ୱାରା ସେମାନଙ୍କ ପୁଚ୍ଛ ବିଭିନ୍ନ ରଙ୍ଗ ହୋଇଗଲା । ଇନ୍ଦ୍ରଙ୍କଠାରୁ ବର ପାଇ ମୟୂରଗଣ ସେଠାରୁ ଚାଲିଗଲେ । ୨୩-୨୪ । ହେ ରାମ ! ତଦନନ୍ତର ଧର୍ମରାଜ ପ୍ରାଗ୍‌ବଂଶ ନାମକ ଯଜ୍ଞଶାଳାରେ ବସିଥିବା କାକକୁ କହିଲେ, ‘‘ହେ ପକ୍ଷିନ୍ ! ମୁଁ ତୁମ ଉପରେ ପ୍ରସନ୍ନ ହୋଇଅଛି, ଅତଏବ ତୁମେ ମୋ କଥା ଶୁଣ । ୨୫ । ମୁଁ ଅନ୍ୟ ପ୍ରାଣୀମାନଙ୍କୁ ନାନାପ୍ରକାର ରୋଗରେ ପୀଡ଼ିତ କରେ, ମାତ୍ର ମୁଁ ତୁମ ଉପରେ ପ୍ରୀତ ହୋଇଥିବାରୁ ତୁମ ଶରୀରରେ କେବେ କୌଣସି ରୋଗର ପ୍ରଭାବ ପଡ଼ିବ ନାହିଁ, ଏଥିରେ ସନ୍ଦେହ ନାହିଁ ।୨୬। ହେ ପକ୍ଷିନ୍ ! ମୋର ବରଦାନ ହେତୁ ତୁମ୍ଭର ମୃତ୍ୟୁଠାରୁ ଭୟ ରହିବ ନାହିଁ । କୌଣସି ମନୁଷ୍ୟ ତୁମକୁ ନ ମାରିବା ଯାଏ ତୁମେ ଜୀବିତ ରହିଥିବ । ୨୭ । ମୋର ରାଜ୍ୟରେ ଯେତେ

ଏତେ ମଦ୍‌ବିଷୟସ୍ଥା ବୈ ମାନବାଃ କ୍ଷୁଭୟାର୍ଦ୍ଦିତାଃ ।
ତ୍ୱୟି ଭୁକ୍ତେ ତୁ ତୃପ୍ତାସ୍ତେ ଭବିଷ୍ୟନ୍ତି ସବାନ୍ଧବାଃ । ୨୮ ।
ବରୁଣସ୍ତ୍ୱବ୍ରବୀଦ୍ଧଂସଂ ଗଙ୍ଗାତୋୟବିହାରଣମ୍ ।
ଶ୍ରୂୟତାଂ ପ୍ରୀତିସଂଯୁକ୍ତଂ ବଚଃ ପତ୍ରରଥେଶ୍ୱର । ୨୯ ।
ବର୍ଣ୍ଣୋ ମନୋହରଃ ସୌମ୍ୟ ଚନ୍ଦ୍ରମଣ୍ଡଳସନ୍ନିଭଃ ।
ଭବିଷ୍ୟତି ତବୋଦଗ୍ରଃ ଶୁଦ୍ଧଫେନସମପ୍ରଭଃ । ୩୦ ।
ମଚ୍ଛରୀରଂ ସମାସାଦ୍ୟ କାନ୍ତୋ ନିତ୍ୟଂ ଭବିଷ୍ୟସି ।
ପ୍ରାପ୍ସ୍ୟସେ ଚାତୁଲାଂ ପ୍ରୀତିମେତନ୍ମେ ପ୍ରୀତିଲକ୍ଷଣମ୍ । ୩୧ ।
ହଂସାନାଂ ହି ପୁରା ରାମ ନୀଳବର୍ଣ୍ଣଃ ସପାଣ୍ଡୁରଃ ।
ପକ୍ଷା ନୀଳାଗ୍ରସଂବୀତାଃ କ୍ରୋଡ଼ାଃ ଶଷ୍ପାଗ୍ରନିର୍ମଳାଃ । ୩୨ ।
ଅଥାବ୍ରବୀଦ୍ ବୈଶ୍ରବଣଃ କୃକଲାସଂ ଗିରୌ ସ୍ଥିତମ୍ ।
ହୈରଣ୍ୟଂ ସଂପ୍ରୟଚ୍ଛାମି ବର୍ଣ୍ଣଂ ପ୍ରୀତସ୍ତବାପ୍ୟହମ୍ । ୩୩ ।
ସଦ୍ରବ୍ୟଂ ଚ ଶିରୋ ନିତ୍ୟଂ ଭବିଷ୍ୟତି ତବାକ୍ଷୟମ୍ ।
ଏଷ କାଞ୍ଚନକୋ ବର୍ଣ୍ଣୋ ମତ୍ପ୍ରୀତ୍ୟା ତେ ଭବିଷ୍ୟତି । ୩୪ ।

---

ମନୁଷ୍ୟ କ୍ଷୁଧାରେ ପୀଡ଼ିତ ହେବେ, ତୁମେ ତୃପ୍ତ ହୋଇଗଲେ, ସେ ସମସ୍ତେ ନିଜର ବନ୍ଧୁମାନଙ୍କ ସହିତ ତୃପ୍ତ ହୋଇଯିବେ" । ୨୮ । ତଦନନ୍ତର ବରୁଣ ଗଙ୍ଗାଜଳରେ ବିହାରକରୁଥିବା ହଂସକୁ କହିଲେ, "ହେ ପତ୍ରରଥେଶ୍ୱର ! ତୁମେ ମୋର ପ୍ରୀତିବଚନ ଶୁଣ । ୨୯ । ତୁମ୍ଭର ରଙ୍ଗ ମନୋହର, ସୁନ୍ଦର ଏବଂ ଚନ୍ଦ୍ରମଣ୍ଡଳ ସଦୃଶ ଶୁକ୍ଳ ହେବ ଏବଂ ତୁମ୍ଭର ଶରୀରର କାନ୍ତି ନିର୍ମଳ ଫେନସଦୃଶ ହେବ । ୩୦ । ମୋର ଶରୀର ଜଳ ଅଟେ, ସୁତରାଂ ସେ ଜଳକୁ ପାଇ ତୁମ୍ଭର ଶରୀର ଅତ୍ୟନ୍ତ ସୁନ୍ଦର ହୋଇଯିବ ଏବଂ ତୁମେ ଅତ୍ୟନ୍ତ ଆନନ୍ଦିତ ହେବ । ଏହାହିଁ ମୋର ପ୍ରୀତିର ଚିହ୍ନ ଅଟେ" ।୩୧। ହେ ରାମ ! ପ୍ରଥମରୁ ଏହି ହଂସମାନଙ୍କର ସର୍ବାଙ୍ଗ ନୀଳ ଓ ପାଣ୍ଡୁର ବର୍ଣ୍ଣ ଥିଲା; ପକ୍ଷର ଅଗ୍ରଭାଗ କଳା ଥିଲା ଏବଂ ପେଟତଳ ଘାସର ଅଗ୍ର ସଦୃଶ ଶ୍ୟାମଳବର୍ଣ୍ଣ ଓ ସ୍ୱଚ୍ଛ ହୋଇଥିଲା । ୩୨ । ଏହା ପରେ ପର୍ବତ ଉପରେ ବସିଥିବା କୃକଳାସ (ଏଣ୍ଡୁଅ)କୁ କୁବେର କହିଲେ, "ମୁଁ ତୁମ ଉପରେ ପ୍ରସନ୍ନ ହୋଇ ତୁମ୍ଭର ବର୍ଣ୍ଣକୁ ସୁବର୍ଣ୍ଣ ପରି କରିଦେଉଛି । ତୁମ୍ଭର ଶରୀର ସୁବର୍ଣ୍ଣବର୍ଣ୍ଣ ହୋଇଯିବ ଏବଂ ମୁଁ ପ୍ରସନ୍ନ ହୋଇଥିବାରୁ ତାହା ସେହିପରି ସ୍ୱର୍ଣ୍ଣବର୍ଣ୍ଣ ହୋଇ

ଏବଂ ଦତ୍ତ୍ୱା ବରାଂସ୍ତେଭ୍ୟସ୍ତସ୍ମିନ୍ ଯଜ୍ଞୋତ୍ସବେ ସୁରାଃ ।
ନିବୃତ୍ତାଃ ସହ ରାଜ୍ଞା ତେ ପୁନଃ ସ୍ୱଭବନଂ ଗତାଃ । ୩୫ ।

ଇତି ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ମରୁତ୍ତବିଜୟୋ ନାମାଷ୍ଟାଦଶଃ ସର୍ଗଃ ।

---

# ଏକୋନବିଂଶଃ ସର୍ଗଃ

## ଅନରଣ୍ୟଶାପଃ

ଅଥ ଜିତ୍ୱା ମରୁତ୍ତଂ ସ ପ୍ରଯଯୌ ରାକ୍ଷସାଧିପଃ ।
ନଗରାଣି ନରେନ୍ଦ୍ରାଣାଂ ଯୁଦ୍ଧକାଙ୍‌କ୍ଷୀ ଦଶାନନଃ । ୧।
ସମାସାଦ୍ୟ ତୁ ରାଜେନ୍ଦ୍ରାନ୍ ମହେନ୍ଦ୍ରବରୁଣୋପମାନ୍ ।
ଅବ୍ରବୀଦ୍ରାକ୍ଷସେନ୍ଦ୍ରସ୍ତୁ ଯୁଦ୍ଧଂ ମେ ଦୀୟତାମିତି । ୨ ।
ନିର୍ଜିତାଃ ସ୍ମେତି ବା ବ୍ରୂତ ଏଷ ମେ ହି ସୁନିଶ୍ଚୟଃ ।
ଅନ୍ୟଥା କୁର୍ବତାମେବଂ ମୋକ୍ଷୋ ନୈବୋପପଦ୍ୟତେ । ୩ ।

---

ଉଦ୍ଧବ" । ୩୩-୩୪ । ଦେବତାମାନେ ସେହି ପକ୍ଷୀମାନଙ୍କୁ ଏହି ପ୍ରକାର ବର ଦେଇ ରାଜା ମରୁତ୍ତଙ୍କର ଯଜ୍ଞୋତ୍ସବ ଶେଷ ହେବା ଉତ୍ତାରୁ ରାଜାଙ୍କ ସହିତ ଆପଣା ଆପଣା ଭବନକୁ ଚାଲିଗଲେ । ୩୫ ।

---

## ୧୯ଶ ସର୍ଗ

( ରାବଣ ପ୍ରତି ଅନରଣ୍ୟଙ୍କ ଶାପ )

ଅନନ୍ତର ରାଜା ମରୁତ୍ତଙ୍କୁ ଜୟକରି ରାକ୍ଷସରାଜ ରାବଣ ଯୁଦ୍ଧ କାମନାରେ ରାଜାମାନଙ୍କ ନଗରମାନ ଜୟ କରିବାକୁ ବାହାରିଲା । ୧ । ମହେନ୍ଦ୍ର ଏବଂ ବରୁଣଙ୍କ ସଦୃଶ ବଡ଼ ବଡ଼ ରାଜାମାନଙ୍କ ନିକଟକୁ ଯାଇ ରାବଣ ସେମାନଙ୍କୁ କହିଲା, "ତୁମେମାନେ ମୋ ସହିତ ଲଢ଼ । ୨ । ଅଥବା ମୋ ନିକଟରେ ପରାଜୟ ମାନି ନିଅ; କାରଣ ମୁଁ ସଂକଳ୍ପକରି ରଖିଛି ଯେ ଯେଉଁ ରାଜା ଏ ଦୁଇ କଥାରୁ ଗୋଟିଏ ସ୍ୱୀକାର ନ କରିବ ତାର କୌଣସି ପ୍ରକାର ମୁକ୍ତି ନାହିଁ" ।୩ । ରାବଣର କଥା ଶୁଣି ନିର୍ଭୀକ

ତତସ୍ତ୍ୱ ଭୀରବଃ ପ୍ରାଜ୍ଞାଃ ପାର୍ଥିବା ଧର୍ମନିଶ୍ଚୟାଃ ।
ମନ୍ତ୍ରୟିତ୍ୱା ତତୋଽନ୍ୟୋଽନ୍ୟଂ ରାଜାନଃ ସୁମହାବଲାଃ । ୪ ।
ନିର୍ଜିତାଃ ସ୍ମ ଇତ୍ୟବ୍ରୁବନ୍ ଜ୍ଞାତ୍ୱା ବରବଲଂ ରିପୋଃ ।
ଦୁଷ୍ୟନ୍ତଃ ସୁରଥୋ ଗାଧିର୍ଗୟୋ ରାଜା ପୁରୂରବାଃ । ୫ ।
ଏତେ ସର୍ବେଽବ୍ରୁବଂସ୍ତାତ ନିର୍ଜିତାଃ ସ୍ମ ପାର୍ଥିବାଃ ।
ଅଥାଯୋଧ୍ୟାଂ ସମାସାଦ୍ୟ ରାବଣୋ ରାକ୍ଷସାଧିପଃ । ୬ ।
ସୁଗୁପ୍ତାମନରଣ୍ୟେନ ଶକ୍ରେଣେବାମରାବତୀମ୍ ।
ସ ତଂ ପୁରୁଷଶାର୍ଦୂଲଂ ପୁରନ୍ଦରସମଂ ବଲେ । ୭ ।
ପ୍ରାହ ରାଜାନମାସାଦ୍ୟ ଯୁଦ୍ଧଂ ଦେହୀତି ରାବଣଃ ।
ନିର୍ଜିତୋଽସୀତି ବା ବ୍ରୂହି ତ୍ୱମେବଂ ମମ ଶାସନମ୍ । ୮ ।
ଅଯୋଧ୍ୟାଧିପତିସ୍ତସ୍ୟ ଶ୍ରୁତ୍ୱା ପାପାତ୍ମନୋ ବଚଃ ।
ଅନରଣ୍ୟସ୍ତୁ ସଂକ୍ରୁଦ୍ଧୋ ରାକ୍ଷସେନ୍ଦ୍ରମଥାବ୍ରବୀତ୍ । ୯ ।
ଦୀୟତେ ଦ୍ୱନ୍ଦ୍ୱଯୁଦ୍ଧଂ ତେ ରାକ୍ଷସାଧିପତେ ମୟା ।
ସଂତିଷ୍ଠ କ୍ଷିପ୍ରମାଯୁକ୍ତୋ ଭବ ଚୈବଂ ଭବାମ୍ୟହମ୍ । ୧୦ ।

---

ଧର୍ମାତ୍ମା ଓ ମହାବଳବାନ୍ ରାଜାମାନେ ଆପଣା ଭିତରେ ପରାମର୍ଶ କରି 'ଆମେ ସମସ୍ତେ ତୁମଠାରେ ହାରି ମାନୁଅଛୁ' ଏ କଥା କହିଲେ; କାରଣ ବରଦାନହେତୁ ଶତ୍ରୁର ବଳ ଅଧିକ ବୋଲି ସେମାନେ ଜାଣିଥିଲେ । ଏହିହେତୁ ରାଜା ଦୁଷ୍ୟନ୍ତ, ସୁରଥ, ଗାଧି, ଗୟ ଏବଂ ପୁରୂରବା ଆଦି ରାଜାମାନେ କହିଦେଲେ ଯେ "ଆମ୍ଭେମାନେ ତୁମଠାରେ ପରାସ୍ତ ହୋଇଅଛୁ" । ତଦନନ୍ତର ରାବଣ ଯାଇ ଅଯୋଧ୍ୟା ପୁରୀରେ ପହଞ୍ଚିଲା । ୪-୬ । ସେତେବେଳେ ଇନ୍ଦ୍ର ଅମରାବତୀକୁ ରକ୍ଷା କଲାପରି ମହାରାଜ ଅନରଣ୍ୟ ଅଯୋଧ୍ୟା ପୁରୀକୁ ରକ୍ଷା କରୁଥିଲେ । ରାବଣ ଇନ୍ଦ୍ରଙ୍କ ସଦୃଶ ବଳବାନ୍ ନୃପଶ୍ରେଷ୍ଠ ମହାରାଜ ଅନରଣ୍ୟଙ୍କ ନିକଟକୁ ଯାଇ କହିଲା, "ତୁମେ ହୁଏତ ମୋ ସହିତ ଯୁଦ୍ଧ କର, ନ ହେଲେ ହାରିଗଲି ବୋଲି କହ, ଏହାହିଁ ମୋର ତୁମ ପ୍ରତି ଆଦେଶ" । ୭-୮ । କିନ୍ତୁ ଅଯୋଧ୍ୟାପତି ମହାରାଜ ଅନରଣ୍ୟ ପାପୀ ରାକ୍ଷସରାଜ ରାବଣର ଏ କଥା ଶୁଣି କ୍ରୁଦ୍ଧ ହୋଇ କହିଲେ । ୯ । "ହେ ରାକ୍ଷସରାଜ ! ଉଠି ଠିଆହୁଅ, ମୁଁ ତୋ ସହିତ ଦ୍ୱନ୍ଦ୍ୱଯୁଦ୍ଧ କରିବି । ତୁ ସାବଧାନ ହୋଇଯା ଏବଂ ମୁଁ ମଧ୍ୟ ଲଢ଼ିବା ପାଇଁ ତତ୍ପର ହୋଇଯାଉଛି" । ୧୦ । ମହାରାଜ ଅନରଣ୍ୟ

ଅଥ ପୂର୍ବଂ ଶ୍ରୁତାର୍ଥେନ ସଜ୍ଜିତଂ ସୁମହଦ୍ ବଲମ୍ ।
ନିଷ୍କ୍ରାମତନ୍ନରେନ୍ଦ୍ରସ୍ୟ ବଲଂ ରକ୍ଷୋବଧୋଦ୍ୟତମ୍ ।୧୧।
ନାଗାନାଂ ଦଶସାହସ୍ରଂ ବାଜିନାଂ ନିୟୁତଂ ତଥା ।
ରଥାନାଂ ବହୁସାହସ୍ରଂ ପତ୍ତୀନାଂ ଚ ନରୋତ୍ତମ ।୧୨।
ମହୀଂ ସଂଛାଦ୍ୟ ନିଷ୍କ୍ରାନ୍ତଂ ସପଦାତରଥଂ ରଣେ ।
ତତଃ ପ୍ରବୃତ୍ତଂ ସୁମହଦ୍ ଯୁଦ୍ଧଂ ଯୁଦ୍ଧବିଶାରଦ ।୧୩।
ଅନରଣ୍ୟସ୍ୟ ନୃପତେ ରାକ୍ଷସେନ୍ଦ୍ରସ୍ୟ ଚାଦ୍ଭୁତମ୍ ।
ତଦ୍ରାବଣବଲଂ ପ୍ରାପ୍ୟ ବଲଂ ତସ୍ୟ ମହୀପତେଃ ।୧୪।
ପ୍ରାଣଶ୍ୟତ ତଦା ସର୍ବଂ ହବ୍ୟଂ ହୁତମିବାନଲେ ।
ଯୁଦ୍ଧ୍ୱା ଚ ସୁଚିରଂ କାଲଂ କୃତ୍ୱା ବିକ୍ରମମୁତ୍ତମମ୍ ।୧୫।
ପ୍ରଜ୍ୱଲନ୍ତଂ ସମାସାଦ୍ୟ କ୍ଷିପ୍ରମେବାବଶେଷିତମ୍ ।
ପ୍ରାବିଶତ୍ ସଙ୍କୁଲଂ ତତ୍ର ଶଲଭା ଇବ ପାବକମ୍ ।୧୬।
ନଶ୍ୟତ ସ୍ୱ ବଲଂ ତତ୍ର ହବ୍ୟଂ ହୁତମିବାନଲେ ।
ସୋଽପଶ୍ୟତ୍ତନ୍ନରେନ୍ଦ୍ରସ୍ତୁ ନଶ୍ୟମାନଂ ମହାବଲମ୍ ।
ମହାର୍ଣବଂ ସମାସାଦ୍ୟ ବନାପଗଶତଂ ଯଥା ।୧୭।

---

ପ୍ରଥମରୁ ରାବଣର ବୃତ୍ତାନ୍ତ ଶୁଣି ନିଜର ସେନା ସଜାଇ ରଖିଥିଲେ । ସେହି ସେନା ରାକ୍ଷସଙ୍କୁ ବଧ କରିବା ନିମନ୍ତେ ବାହାରିପଡ଼ିଲେ ।୧୧। ହେ ପୁରୁଷଶ୍ରେଷ୍ଠ ! ସେହି ସେନାରେ ଦଶହଜାର ହାତୀ, ଏକ ଲକ୍ଷ ଘୋଡ଼ା ଏବଂ ସହସ୍ର ସହସ୍ର ରଥ ଓ ପଦାତିକ ଥିଲେ ।୧୨। ସେମାନେ ପୃଥିବୀକୁ ଆଚ୍ଛାଦିତ କରି ଯୁଦ୍ଧ କରିବା ପାଇଁ ପଦାତିକ ସୈନ୍ୟ ଓ ରଥମାନଙ୍କ ସହିତ ବାହାରିଲେ । ହେ ଯୁଦ୍ଧବିଶାରଦ ! ଦୁଇ ଦଳରୁ ମହାଘୋର ଯୁଦ୍ଧ ହେବାକୁ ଲାଗିଲା ।୧୩। ମହାରାଜ ଅନରଣ୍ୟ ଓ ରାକ୍ଷସେନ୍ଦ୍ର ରାବଣଙ୍କ ମଧ୍ୟରେ ଅଦ୍ଭୁତ ଯୁଦ୍ଧ ଲାଗିଲା । ସେତେବେଳେ ମହାରାଜ ଅନରଣ୍ୟଙ୍କ ସେନା ରାବଣର ସେନାକୁ ଆକ୍ରମଣ କରି କିଛି ସମୟ ପର୍ଯ୍ୟନ୍ତ ଉତ୍ତମ ବିକ୍ରମ ପ୍ରକାଶକରି, ଅଗ୍ନିରେ ଆହୁତି ଦିଆ ହୋଇଥିବା ହୋମସାମଗ୍ରୀ ସଦୃଶ ଭସ୍ମ ହୋଇଗଲେ ।୧୪-୧୫। ପ୍ରଜ୍ୱଳିତ ଅଗ୍ନି ନିକଟକୁ ଯାଇ ପତଙ୍ଗମାନେ ଯେପରି ଭସ୍ମ ହୋଇଯାନ୍ତି, ସେହିପରି ରାବଣ ସହିତ ଲଢ଼ିକରି ମହାରାଜ ଅନରଣ୍ୟଙ୍କ ସେନା ବିନଷ୍ଟ ହୋଇଗଲେ ।୧୬। ମହାରାଜ ଅନରଣ୍ୟ ଦେଖିଲେ, ଅଗ୍ନିରେ ଆହୁତି ହେଲାପରି ତାଙ୍କର ସେନା ବିନଷ୍ଟ ହୋଇଯାଉଛି ଏବଂ ଶତ ଶତ ନଦୀ ଯେପରି

ତତଃ ଶକ୍ରଧନୁଃପ୍ରଖ୍ୟଂ ଧନୁର୍ବିସ୍ଫାରୟନ୍ ସ୍ୱୟମ୍ ।
ଆସସାଦ ନରେନ୍ଦ୍ରସ୍ତଂ ରାବଣଂ କ୍ରୋଧମୂର୍ଚ୍ଛିତଃ । ୧୮ ।
ଅନରଣ୍ୟେନ ତେଽମାତ୍ୟା ମାରୀଚଶୁକସାରଣାଃ ।
ପ୍ରହସ୍ତସହିତା ଭଗ୍ନା ବ୍ୟଦ୍ରବନ୍ତ ମୃଗା ଇବ । ୧୯ ।
ତତୋ ବାଣଶତାନ୍ୟଷ୍ଟୌ ପାତୟାମାସ ମୂର୍ଦ୍ଧନି ।
ତସ୍ୟ ରାକ୍ଷସରାଜସ୍ୟ ଇକ୍ଷ୍ୱାକୁକୁଳନନ୍ଦନଃ । ୨୦ ।
ତସ୍ୟ ବାଣାଃ ପତନ୍ତସ୍ତେ ଚକ୍ରିରେ ନ କ୍ଷତଂ କ୍ୱଚିତ୍ ।
ବାରିଧାରା ଇବାଭ୍ରେଭ୍ୟଃ ପତନ୍ତ୍ୟୋ ଗିରିମୂର୍ଦ୍ଧନି । ୨୧ ।
ତତୋ ରାକ୍ଷସରାଜେନ କ୍ରୁଦ୍ଧେନ ନୃପତିସ୍ତଦା ।
ତଳେନାଭିହତୋ ମୂର୍ଦ୍ଧ୍ନି ସ ରଥାନ୍ନିପପାତ ହ । ୨୨ ।
ସ ରାଜା ପତିତୋ ଭୂମୌ ବିହ୍ୱଳାଙ୍ଗଃ ପ୍ରବେପିତଃ ।
ବଜ୍ରଦଗ୍ଧ ଇବାରଣ୍ୟେ ସାଲୋ ନିପତିତୋ ଯଥା । ୨୩ ।
ତଂ ପ୍ରହସ୍ୟାବ୍ରବୀଦ୍ରକ୍ଷ ଇକ୍ଷ୍ୱାକୁଂ ପୃଥିବୀପତିମ୍ ।
କିମିଦାନୀଂ ଫଳଂ ପ୍ରାପ୍ତଂ ତ୍ୱୟା ମାଂ ପ୍ରତିଯୁଧ୍ୟତା । ୨୪ ।

---

ସମୁଦ୍ରରେ ପଡ଼ି ଲୀନ ହୋଇ ଯାଆନ୍ତି ସେହିପରି ତାଙ୍କର ସୈନ୍ୟବଳ କ୍ଷୟ ହୋଇଯାଉଅଛି । ୧୭ । ଏହା ଦେଖି ମହାରାଜ ଅନରଣ୍ୟ ନିଜେ ଇନ୍ଦ୍ରଧନୁ ତୁଲ୍ୟ ଆପଣାର ଧନୁକୁ ଟଙ୍କାର କ୍ରୋଧରେ ଜର୍ଜର ହୋଇ ରାବଣ ପାଖକୁ ଗଲେ । ୧୮ । ରାବଣର ମନ୍ତ୍ରୀ ମାରୀଚ, ଶୁକ, ସାରଣ ଓ ପ୍ରହସ୍ତଙ୍କୁ ଅନରଣ୍ୟ ପରାସ୍ତ କରିଦେଲେ ଏବଂ ସେମାନେ ଡର ମୃଗସଦୃଶ ପଳାଇଗଲେ । ୧୯ । ତଦନନ୍ତର ଇକ୍ଷ୍ୱାକୁକୁଳନନ୍ଦନ ମହାରାଜ ଅନରଣ୍ୟ ରାକ୍ଷସରାଜ ରାବଣର ମସ୍ତକକୁ ଆଠ ଶହ ବାଣ ମାରିଲେ ।୨୦। ବୃଷ୍ଟି ଧାରା ଯେପରି ମେଘରୁ ବାହାରି ପର୍ବତ ଶିଖର ଉପରେ ପଡ଼େ ଏବଂ ତଦ୍ଦ୍ୱାରା ପର୍ବତର କିଛି କ୍ଷତ ହୁଏ ନାହିଁ, ସେହିପରି ସେ ବାଣମାନ ରାକ୍ଷସର ମସ୍ତକ ଉପରେ ପଡ଼ି ମଧ୍ୟ ତାହାର କିଛି କ୍ଷତ କଲେ ନାହିଁ ।୨୧। ତା ପରେ ରାବଣ କ୍ରୋଧପୂର୍ଣ୍ଣ ହୋଇ ମହାରାଜ ଅନରଣ୍ୟଙ୍କ ମୁଣ୍ଡରେ ଏକ ଚାପୁଡ଼ା ମାରିଲା । ତାହାର ଆଘାତରେ ମହାରାଜ ଅନରଣ୍ୟ ଥର ଥର ଉଥଉପରୁ ଭୂତଳରେ ପଡ଼ିଗଲେ । ବଜ୍ର ଦ୍ୱାରା ଦଗ୍ଧ ହୋଇଥିବା ଶାଳବୃକ୍ଷପରି ସେ ଭୂମିରେ ପଡ଼ିଗଲେ । ୨୨-୨୩ । ତା ପରେ ରାବଣ ଇକ୍ଷ୍ୱାକୁକୁଳନନ୍ଦନ ଅନରଣ୍ୟଙ୍କୁ ହସିକରି କହିଲା, "ମୋ ସାଙ୍ଗରେ ଯୁଦ୍ଧ କରିବାର

ତ୍ରୈଲୋକ୍ୟେ ନାସ୍ତି ଯୋ ଦ୍ୱନ୍ଦ୍ୱଂ ମମ ଦଦ୍ୟାନ୍ନିଶାଧିପ ।
ଶଙ୍କେ ପ୍ରସକ୍ତୋ ଭୋଗେଷୁ ନ ଶୃଣୋଷି ବଲଂ ମମ ।୨୫।
ତସ୍ୟୈବଂ ବ୍ରୁବତୋ ରାଜା ମନ୍ଦାସୁର୍ବାକ୍ୟମବ୍ରବୀତ୍ ।
କିଂ ଶକ୍ୟମିହ କର୍ତ୍ତୁଂ ବୈ କାଲୋ ହି ଦୁରତିକ୍ରମଃ ।୨୬।
ନ ହ୍ୟହଂ ନିର୍ଜିତୋ ରକ୍ଷସ୍ତ୍ୱୟା ଚାତ୍ମପ୍ରଶଂସିନା ।
କାଲେନୈବ ବିପନ୍ନୋଽହଂ ହେତୁଭୂତସ୍ତୁ ମେ ଭବାନ୍ ।୨୭।
କିଂ ତ୍ୱିଦାନୀଂ ମୟା ଶକ୍ୟଂ କର୍ତ୍ତୁଂ ପ୍ରାଣପରିକ୍ଷୟେ ।
ନ ହ୍ୟହଂ ବିମୁଖୋ ରକ୍ଷୋ ଯୁଧ୍ୟମାନସ୍ତ୍ୱୟା ହତଃ ।୨୮।
ଇକ୍ଷ୍ୱାକୁପରିଭାବିତ୍ୱାଦ୍ ବଚୋ ବକ୍ଷ୍ୟାମି ରାକ୍ଷସ ।
ଯଦି ଦତ୍ତଂ ଯଦି ହୁତଂ ଯଦି ମେ ସୁକୃତଂ ତପଃ ।
ଯଦି ଗୁପ୍ତାଃ ପ୍ରଜାଃ ସମ୍ୟକ୍ ତଦା ସତ୍ୟଂ ବଚୋଽସ୍ତୁ ମେ ।୨୯।
ଉତ୍ପତ୍ସ୍ୟତେ କୁଲେ ହ୍ୟସ୍ମିନ୍ନିକ୍ଷ୍ୱାକୂଣାଂ ମହାତ୍ମନାମ୍ ।
ରାମୋ ଦାଶରଥିର୍ନାମ ଯସ୍ତେ ପ୍ରାଣାନ୍ ହରିଷ୍ୟତି ।୩୦।
ତତୋ ଜଲଧରୋଦଗ୍ରସ୍ତାଡ଼ିତୋ ଦେବଦୁନ୍ଦୁଭିଃ ।
ତସ୍ମିନ୍ନୁଦାହୃତେ ଶାପେ ପୁଷ୍ପବୃଷ୍ଟିଶ୍ଚ ଖାଚ୍ୟୁତା ।୩୧।

---

ଫଳ ଏବେ ପାଇଲୁ ତ ? ହେ ରାଜନ୍ ! ତିନ ଲୋକରେ ଏପରି କେହି ନାହାଁନ୍ତି, ଯେ ମୋ ସହିତ ଦ୍ୱନ୍ଦ୍ୱ ଯୁଦ୍ଧ କରିପାରିବ । ମୋର ଆଶଙ୍କା ହୁଏ ଯେ ତୁ ଆମୋଦ ପ୍ରମୋଦରେ ଲିପ୍ତ ଥାଇ ମୋର ବଳର ବୃତ୍ତାନ୍ତ ଶୁଣି ପାରି ନାହୁଁ” ।୨୫। ରାବଣ ଏପରି କହିବାରୁ ହୀନବଳ ମହାରାଜ ଅନରଣ୍ୟ କହିଲେ, “ବର୍ତ୍ତମାନ ମୁଁ ଆଉ କଅଣ କରିପାରିବି ? କାଳର ପ୍ରଭାବକୁ କେହି ଅତିକ୍ରମ କରିପାରିବ ନାହିଁ ।୨୬। ହେ ରାକ୍ଷସ ! ତୁ ନିଜ ମୁହଁରେ ନିଜର ପ୍ରଶଂସା ଗାଇ ମୋତେ ଜିତି ନାହୁଁ, କିନ୍ତୁ କାଳହିଁ ମୋତେ ଏପରି ବିପଦଗ୍ରସ୍ତ କରିଅଛି; ଅବଶ୍ୟ ତୁ ଏଥିରେ ନିମିତ୍ତମାତ୍ର ହୋଇଅଛୁ ।୨୭। ବର୍ତ୍ତମାନ ତ ମୋର ପ୍ରାଣକ୍ଷୟ ହୋଇ ଯାଉଅଛି; ସୁତରାଂ ମୁଁ ଏତେବେଳେ ଆଉ କଣ କରିପାରିବି; ମାତ୍ର ମୁଁ ଯୁଦ୍ଧରେ କେବେ ବିମୁଖ ହୋଇ ନାହିଁ, ବରଂ ଯୁଦ୍ଧ କରି କରି ତୋ ହାତରେ ନିହତ ହୋଇଅଛି ।୨୮। ହେ ରାକ୍ଷସ ! ତୁ ଯେ ଇକ୍ଷ୍ୱାକୁକୁଳର ଅବମାନନା କରିଅଛୁ, ତାହାର ବଦଳରେ ମୁଁ କହୁଛି ଯେ, ଯଦି ମୁଁ ଦାନ ଦେଇଛି, ହୋମ କରିଛି, ତପସ୍ୟା କରିଛି ଏବଂ ନ୍ୟାୟପୂର୍ବକ ପ୍ରଜାପାଳନ କରିଅଛି ତେବେ ମୋର ଏ ବଚନ ସତ୍ୟ ହେବ ।୨୯। ମହାତ୍ମା ଇକ୍ଷ୍ୱାକୁକୁଳରେ ଦଶରଥଙ୍କ ପୁତ୍ର ରାମ ଉତ୍ପନ୍ନ ହେବେ ଏବଂ ସେ ତୋତେ ବଧ କରିବେ” ।୩୦। ମହାରାଜ ଅନରଣ୍ୟଙ୍କ ମୁଖରୁ ଏପରି ବଚନ ବାହାରିବା ମାତ୍ରେ ମେଘଗର୍ଜନ ସଦୃଶ ଦେବଦୁନ୍ଦୁଭି ବାଜ-

ତତଃ ସ ରାଜା ରାଜେନ୍ଦ୍ର ଗତଃ ସ୍ଥାନଂ ତ୍ରିବିଷ୍ଟପମ୍ ।
ସ୍ୱର୍ଗତେ ଚ ନୃପେ ତସ୍ମିନ୍ ରାକ୍ଷସଃ ସୋଽପସର୍ପତ । ୩୨ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତସହସ୍ରିକାୟାମ୍
ସଂହିତାୟାଂ ଉତ୍ତରକାଣ୍ଡେ ଅନରଣ୍ୟଶାପୋ ନାମୈକୋନବିଂଶଃ ସର୍ଗଃ ।

---

# ବିଂଶଃ ସର୍ଗଃ

## ରାବଣସଂଧୁକ୍ଷଣମ୍

ତତୋ ବିତ୍ରାସୟନ୍ ମର୍ତ୍ତ୍ୟାନ୍ ପୃଥିବ୍ୟାଂ ରାକ୍ଷସାଧିପଃ ।
ଆସସାଦ ଘନେ ତସ୍ମିନ୍ନାରଦଂ ମୁନିପୁଙ୍ଗବମ୍ । ୧ ।
ତସ୍ୟାଭିବାଦନଂ କୃତ୍ୱା ଦଶଗ୍ରୀବୋ ନିଶାଚରଃ ।
ଅବ୍ରବୀତ୍ କୁଶଳଂ ପୃଷ୍ଟ୍ୱା ହେତୁମାଗମନସ୍ୟ ଚ । ୨ ।
ନାରଦସ୍ତୁ ମହାତେଜା ଦେବର୍ଷିରମିତପ୍ରଭଃ ।
ଅବ୍ରବୀନ୍ମେଘପୃଷ୍ଠସ୍ଥୋ ରାବଣଂ ପୁଷ୍ପକେ ସ୍ଥିତମ୍ । ୩ ।

---

ଉଠିଲା ଏବଂ ଆକାଶରୁ ପୁଷ୍ପ ବୃଷ୍ଟି ହେଲା । ୩୧ । ତଦନନ୍ତର ମହାରାଜ ଅନରଣ୍ୟ ସ୍ୱର୍ଗକୁ ଚାଲିଗଲେ ଏବଂ ତାହା ପରେ ରାବଣ ମଧ୍ୟ ସେଠାରୁ ଚାଲିଗଲା । ୩୨ ।

---

# ୨୦ଶ ସର୍ଗ

## ( ରାବଣର ଯୁଦ୍ଧଯାତ୍ରା )

ରାକ୍ଷସରାଜ ରାବଣ ପୃଥିବୀରେ ମନୁଷ୍ୟମାନଙ୍କୁ ଭୀତ କରାଇ ବିଚରଣ କରୁ କରୁ ମେଘପୃଷ୍ଠରେ ଆଗତ ମୁନିଶ୍ରେଷ୍ଠ ନାରଦଙ୍କୁ ଦେଖିଲା । ୧ । ରାବଣ ତାଙ୍କୁ ପ୍ରଣାମ କରି କୁଶଳ ବାର୍ତ୍ତା ଏବଂ ତାଙ୍କର ଆଗମନର କାରଣ ପଚାରିଲା । ୨ । ଅନୁପମ ପ୍ରଭାବବାନ୍ ମହାତେଜସ୍ୱୀ ଦେବର୍ଷି ନାରଦ ମେଘପୃଷ୍ଠରେ ରହି ପୁଷ୍ପକ ବିମାନରେ ବସିଥିବା ରାବଣକୁ କହିଲେ । ୩ । "ହେ ବିଶ୍ରବାନନ୍ଦନ, ସୌମ୍ୟ,

ରାକ୍ଷସାଧିପତେ ସୌମ୍ୟ ତସ୍ଥ ବିଶ୍ରବସଃ ସୁତ ।
ପ୍ରୀତୋଽସ୍ମ୍ୟଭିଜନୋପେତ ବିକ୍ରମୈରୂର୍ଜିତୈସ୍ତବ । ୪ ।
ବିଷ୍ଣୁନା ଦୈତ୍ୟଘାତୈଶ୍ଚ ଗନ୍ଧର୍ବୋରଗଧର୍ଷଣୈଃ ।
ତ୍ୱୟା ସମଂ ବିମର୍ଦ୍ଦୈଶ୍ଚ ଭୃଶଂ ହି ପରିତୋଷିତଃ । ୫ ।
କିଂଚିଦ୍ ବକ୍ଷ୍ୟାମି ତାବତ୍ତେ ଶ୍ରୋତବ୍ୟଂ ଶ୍ରୋଷ୍ୟସେ ଯଦି ।
ତନ୍ମେ ନିଗଦତସ୍ତାତ ସମାଧିଂ ଶ୍ରବଣେ କୁରୁ । ୬ ।
କିମୟଂ ବଧ୍ୟତେ ତାତ ତ୍ୱୟାବଧ୍ୟେନ ଦୈବତୈଃ ।
ହତ ଏବ ହ୍ୟୟଂ ଲୋକୋ ଯଦା ମୃତ୍ୟୁବଶଂ ଗତଃ । ୭ ।
ଦେବଦାନବଦୈତ୍ୟାନାଂ ଯକ୍ଷଗନ୍ଧର୍ବରକ୍ଷସାମ୍ ।
ଅବଧ୍ୟେନ ତ୍ୱୟା ଲୋକଃ କ୍ଲେଷ୍ଟୁଂ ଯୁକ୍ତୋ ନ ମାନୁଷଃ ।୮।
ନିତ୍ୟଂ ଶ୍ରେୟସି ସଂମୂଢ଼ଂ ମହଦ୍ଭିର୍ବ୍ୟସନୈର୍ବୃତମ୍ ।
ହନ୍ୟାତ୍ କସ୍ତାଦୃଶଂ ଲୋକଂ ଜରାବ୍ୟାଧିଶତୈର୍ୟୁତମ୍ । ୯ ।
ତୈସ୍ତୈରନିଷ୍ଟୋପଗମୈରଜସ୍ରଂ ଯତ୍ର କୁତ୍ର କଃ ।
ମତିମାନ୍ ମାନୁଷେ ଲୋକେ ଯୁଦ୍ଧେନ ପ୍ରଣୟୀ ଭବେତ୍ ।୧୦।

---

ରାକ୍ଷସରାଜ ! ଟିକିଏ ଠିଆହୁଅ । ମୁଁ ତୁମ୍ଭର ଓ ତୁମ ମନ୍ତ୍ରୀମାନଙ୍କର ବିକ୍ରମ ଦେଖି ବଡ଼ ପ୍ରସନ୍ନ ହୋଇଅଛି । ୪ । ବିଷ୍ଣୁ, ଦୈତ୍ୟମାନଙ୍କୁ ପରାଜିତ କରିବାରେ ମୁଁ ଯେପରି ସନ୍ତୁଷ୍ଟ ହୋଇଥିଲି ସେହିପରି ଗନ୍ଧର୍ବ ଓ ନାଗମାନଙ୍କୁ ପରାଜିତ କରିବା ହେତୁ ମୁଁ ତୁମ ଉପରେ ସନ୍ତୁଷ୍ଟ ଅଛି । ୫ । ବର୍ତ୍ତମାନ ମୁଁ ତୁମକୁ କିଛି କହିବାକୁ ଚାହୁଁଛି । ଯଦି ତୁମେ ଶୁଣିବ ତେବେ ତାହା କହିବି । ହେ ବତ୍ସ ! ମୁଁ କହିଲା-ବେଳେ ତୁମେ ଏକାଗ୍ରଚିତ୍ତ ହୋଇ ଶୁଣିବା ଦରକାର । ୬ । ହେ ତାତ ! ତୁମେ ତ ଦେବତାମାନଙ୍କ ଦ୍ୱାରା ଅବଧ୍ୟ ଅଟ, ଅତଏବ ଏ ବିଚରା ମନୁଷ୍ୟମାନଙ୍କୁ ତୁମେ କାହିଁକି ମାରୁଛ ? ସେମାନେ ତ ସ୍ୱୟଂ ମୃତ୍ୟୁର ବଶୀଭୂତ ହୋଇପଡ଼ିଛନ୍ତି । ୭ । ଅତଏବ ଦେବତା, ଦାନବ, ଦୈତ୍ୟ, ଯକ୍ଷ, ଗନ୍ଧର୍ବ ଓ ରାକ୍ଷସମାନଙ୍କ ଦ୍ୱାରା ଅବଧ୍ୟ ହୋଇ ତୁମେ ଏ ବିଚରା ମନୁଷ୍ୟମାନଙ୍କୁ କ୍ଲେଶ ଦେବା ଉଚିତ ନୁହେ । ୮ । ଏହି ମନୁଷ୍ୟ ତ ସର୍ବଦା ଅନେକ ବିପତ୍ତିରେ ବୁଡ଼ିରହିଛି । ମନୁଷ୍ୟ ନିଜର ଶ୍ରେୟରେ ବିହ୍ୱଳ ଥାଏ ଓ ନାନା ରୋଗରେ ବୁଡ଼ି ରହିଥାଏ । ସେ ଜରା ଏବଂ ଶତ ଶତ ବ୍ୟାଧି ଦ୍ୱାରା ଆକ୍ରାନ୍ତ ହୋଇ ରହିଅଛି । ଅତଏବ ଏପରି ଲୋକକୁ କିଏ ମାରିବାରେ କି ଲାଭ ? ମନୁଷ୍ୟ ସର୍ବଦା ସର୍ବତ୍ର ନାନା ଅନିଷ୍ଟଦ୍ୱାରା ପ୍ରପୀଡ଼ିତ ହୋଇ ରହିଅଛି । ଅତଏବ କେଉଁ ଜାଣିବା ଶୁଣିବା ଲୋକ ତାହା ସହିତ ଯୁଦ୍ଧ କରିବାକୁ ଆଗ୍ରହ କରିବ ?।୯-୧୦।

କ୍ଷୀୟମାଣଂ ଦୈବହତଂ କ୍ଷୁତ୍ପିପାସାଜରାଦିଭିଃ ।
ବିଷାଦଶୋକସଂମୂଢ଼ଂ ଲୋକଂ ତ୍ୱଂ କ୍ଷପୟସ୍ୱ ମା । ୧୧ ।
ପଶ୍ୟ ତାବନ୍ମହାବାହୋ ରାକ୍ଷସେଶ୍ୱର ମାନୁଷମ୍ ।
ମୂଢ଼ମେବଂ ବିଚିତ୍ରାର୍ଥଂ ଯସ୍ୟ ନ ଜ୍ଞାୟତେ ଗତିଃ । ୧୨ ।
କ୍ୱଚିଦ୍ୱାଦିତ୍ରନୃତ୍ୟାଦି ସେବ୍ୟତେ ମୁଦିତୈର୍ଜନୈଃ ।
ରୁଦ୍ୟତେ ଚାପରୈରାର୍ତ୍ତୈର୍ଧାରାଶ୍ରୁନୟନାନନୈଃ । ୧୩ ।
ମାତାପିତୃସୁତସ୍ନେହୈର୍ଭାର୍ଯାବନ୍ଧୁମନୋରମୈଃ ।
ମୋହିତୋଽୟଂ ଜନୋ ଧ୍ୱସ୍ତଃ କ୍ଲେଶଂ ସ୍ୱଂ ନାବବୁଧ୍ୟତେ ।୧୪।
ଅଲମେନଂ ପରିକ୍ଲିଶ୍ୟ ଲୋକଂ ମୋହନିରାକୃତମ୍ ।
ଜିତ ଏବ ତ୍ୱୟା ସୌମ୍ୟ ମର୍ତ୍ତ୍ୟଲୋକୋ ନ ସଂଶୟଃ । ୧୫ ।
ଅବଶ୍ୟମେଭିଃ ସର୍ବୈଶ୍ଚ ଗନ୍ତବ୍ୟଂ ଯମସାଦନମ୍ ।
ତନ୍ନିଗୃହ୍ଣୀଷ୍ୱ ପୌଲସ୍ତ୍ୟ ଯମଂ ପରପୁରଂଜୟ । ୧୬ ।
ତସ୍ମିଞ୍ଜିତେ ଜିତଂ ସର୍ବଂ ଭବତ୍ୟେବ ନ ସଂଶୟଃ ।
ଏବମୁକ୍ତସ୍ତୁ ଲଙ୍କେଶୋ ଦୀପ୍ୟମାନଂ ସ୍ୱତେଜସା । ୧୭ ।

---

କ୍ଷୁଧା, ପିପାସା, ବାର୍ଦ୍ଧକ୍ୟ ଏବଂ ଦୈବଦ୍ୱାରା ମନୁଷ୍ୟ ସର୍ବଦା କ୍ଷୟ ହୋଇଯାଉଛୁ । ସେ ସର୍ବଦା ଶୋକ ଏବଂ ବିଷାଦରେ କାତର ହୋଇ ରହିଅଛି, ସୁତରାଂ ତୁମେ ଏମାନଙ୍କୁ ବୃଥା କ୍ଷୟ କର ନାହିଁ । ୧୧ । ହେ ମହାବାହୁ ରାକ୍ଷସରାଜ ! ଦେଖ; ମନୁଷ୍ୟଜାତି ଏତେ ମୂଢ଼ ଯେ ସେ ନିଜର ସୁଖ ଦୁଃଖ ଭୋଗ କରିବାର ସମୟ ମଧ୍ୟ ଜାଣି ପାରେ ନାହିଁ ଏବଂ ନାନା ପ୍ରକାର ଅତିସାଧାରଣ ପୁରୁଷାର୍ଥରେ ଆସକ୍ତ ହୋଇ ରହିଥାଏ । ୧୨ । ଦେଖ କେଉଁଠାରେ ପ୍ରସନ୍ନ ମନରେ ବହୁତ ଲୋକ ନାଚ, ଗାନ ଆଦି କରୁଛନ୍ତି, ପୁଣି କେଉଁଠାରେ ଅନ୍ୟ ଲୋକେ ଦୁଃଖୀ ହୋଇ ନେତ୍ରରୁ ଅଶ୍ରୁ ବୁହାଉଛନ୍ତି । ୧୩ । ମାତା, ପିତା, ପୁତ୍ର, ସ୍ତ୍ରୀ ଏବଂ ଭାଇବନ୍ଧୁଙ୍କ ସ୍ନେହରେ ମନୁଷ୍ୟ ଜଡ଼ିତ ରହି ଓ ମୋହିତ ହୋଇ ନଷ୍ଟ ହୋଇଯାଉଛି, ତଥାପି ସେ ନିଜର କ୍ଳେଶକୁ ବୁଝି ପାରୁ ନାହିଁ । ୧୪ । ଅତଏବ ମୋହରେ ପଡ଼ି ସ୍ୱୟଂ ନଷ୍ଟ ହେଉଥିବା ମର୍ତ୍ତ୍ୟଲୋକକୁ ଦୁଃଖ ଦେଇ ତୁମେ କଅଣ ପାଇବ ? ହେ ସୌମ୍ୟ ! ଏ ସମଗ୍ର ମର୍ତ୍ତ୍ୟଲୋକକୁ ତୁମେ ଜିଣିସାରିଅଛ, ଏଥିରେ ସନ୍ଦେହ ନାହିଁ । ୧୫ । ଏ ମର୍ତ୍ତ୍ୟଲୋକର ସବୁ ଜୀବ ଅବଶ୍ୟ ଯମପୁରକୁ ଯିବେ । ଅତଏବ ହେ ଶତ୍ରୁପୁରଜୟକାରୀ ପୁଲସ୍ତ୍ୟପୌତ୍ର ! ତୁମେ ଯମପୁରକୁ ଯାଇ ଯମକୁ ପରାସ୍ତ କର ।୧୬। ସେହି ଯମକୁ ଜିଣିଲେ ଅନ୍ୟ ସମସ୍ତେ ବିଜିତ ହେବେ ଏଥିରେ ସନ୍ଦେହ ନାହିଁ" । ନାରଦ ଏପରି କହିବାରୁ ଲଙ୍କାଧିପତି ରାବଣ ନିଜ ତେଜରେ ଜାଜ୍ୱଲ୍ୟମାନ

ଅବ୍ରବୀନ୍ନାରଦଂ ତତ୍ର ସଂପ୍ରହୃଷ୍ୟାଭିବାଦ୍ୟ ଚ ।
ମହର୍ଷେ ଦେବଗନ୍ଧର୍ବବିହାରସମରପ୍ରିୟ । ୧୮ ।
ଅହଂ ସମୁଦ୍ୟତୋ ଗନ୍ତୁଂ ବିଜୟାର୍ଥଂ ରସାତଳମ୍ ।
ତତୋ ଲୋକତ୍ରୟଂ ଜିତ୍ୱା ସ୍ଥାପ୍ୟ ନାଗାନ୍ ସୁରାନ୍ ବଶେ ।୧୯।
ସମୁଦ୍ରମମୃତାର୍ଥଂ ଚ ମଥିଷ୍ୟାମି ରସାଲୟମ୍ ।
ଅଥାବ୍ରବୀଦ୍ଦଶଗ୍ରୀବଂ ନାରଦୋ ଭଗବାନୃଷିଃ । ୨୦ ।
କ୍ୱ ଖଲ୍ୱିଦାନୀଂ ମାର୍ଗେଣ ତ୍ୱୟା ହ୍ୟନ୍ୟେନ ଗମ୍ୟତେ ।
ଅୟଂ ଖଲୁ ସୁଦୁର୍ଗମ୍ୟଃ ପ୍ରେତରାଜପୁରଂ ପ୍ରତି ।
ମାର୍ଗୋ ଗଚ୍ଛତି ଦୁର୍ଧର୍ଷୋ ଯମସ୍ୟାମିତ୍ରକର୍ଶନ । ୨୧ ।
ସ ତୁ ଶାରଦମେଘାଭଂ ହାସଂ ମୁକ୍ତ୍ୱା ଦଶାନନଃ ।
ଉବାଚ କୃତମିତ୍ୟେବ ବଚନଂ ଚେଦମବ୍ରବୀତ୍ । ୨୨ ।
ତସ୍ମାଦେବମହଂ ବ୍ରହ୍ମନ୍ ବୈବସ୍ୱତବଧୋଦ୍ୟତଃ ।
ଗଚ୍ଛାମି ଦକ୍ଷିଣାମାଶାଂ ଯତ୍ର ସୂର୍ଯ୍ୟାତ୍ମଜୋ ନୃପଃ । ୨୩ ।
ମୟା ହି ଭଗବନ୍ କ୍ରୋଧାତ୍ ପ୍ରତିଜ୍ଞାତଂ ରଣାର୍ଥିନା ।
ଅବଜେଷ୍ୟାମି ଚତୁରୋ ଲୋକପାଲାନିତି ପ୍ରଭୋ । ୨୪ ।

---

ନାରଦଙ୍କୁ ପ୍ରଣାମ କରି ଈଷତ୍ ହାସ୍ୟକରି ତାଙ୍କୁ କହିଲା, "ହେ ମହର୍ଷେ, ହେ ଦେବ-ଗନ୍ଧର୍ବ-ଲୋକ-ବିହାରପ୍ରିୟ, ହେ ଯୁଦ୍ଧଦର୍ଶନପ୍ରିୟ ! ମୁଁ ବର୍ତ୍ତମାନ ବିଜୟାର୍ଥେ ରସାତଳକୁ ଯିବାକୁ ଉଦ୍ୟତ ହୋଇଅଛି । ତଦନନ୍ତର ତିନି ଲୋକକୁ ଜିଣି ନାଗ ଓ ଦେବତାମାନଙ୍କୁ ନିଜର ବଶୀଭୂତ କରିବି । ତଦନନ୍ତର ଅମୃତ ପାଇବା ନିମନ୍ତେ ମୁଁ ସମୁଦ୍ରକୁ ମନ୍ଥନ କରିବି" । ତା ପରେ ଭଗବାନ୍ ନାରଦ ଋଷି ଦଶଗ୍ରୀବକୁ କହିଲେ, "ଯଦି ତୁମ୍ଭର ରସାତଳକୁ ଯିବାର କଥା, ତେବେ ଅନ୍ୟ ମାର୍ଗରେ କାହିଁକି ଯାଉଅଛ ?।୧୮-୨୦। ହେ ଦୁର୍ଦ୍ଧର୍ଷ, ହେ ଶତ୍ରୁନାଶିନ୍ ! ଏହି ଅତ୍ୟନ୍ତ ଦୁର୍ଗମ ଯମପୁରୀର ମାର୍ଗ ପ୍ରେତରାଜର ସମ୍ମୁଖକୁ ଯାଇଅଛି" । ୨୧ । ଏହା ଶୁଣି ରାବଣ ଶରତ୍‌କାଳୀନ ମେଘସଦୃଶ ଖୁବ୍ ଜୋରରେ ହାସ୍ୟକରି ମାହାଧାତ୍ରିମାନ୍ ନାରଦଙ୍କୁ କହିଲା, "ଆଚ୍ଛା, ମୁଁ ସେହି ବାଟରେହିଁ ଯିବି । ୨୨ । ହେ ମହାବ୍ରହ୍ମନ୍ ! ମୁଁ ଏବେ ଯମକୁ ବଧ କରିବା ନିମନ୍ତେ ଦକ୍ଷିଣ ଦିଗର ମାର୍ଗରେ ଅଗ୍ରସର ହେଉଅଛି । ସୂର୍ଯ୍ୟପୁତ୍ର ଯମରାଜ ସେହିଠାରେ ରାଜା ହୋଇଥାଆନ୍ତି ।୨୩। ମୁଁ ଯୁଦ୍ଧ କରିବା ଇଚ୍ଛାରେ କ୍ରୋଧପୂର୍ଣ୍ଣ ହୋଇ ପ୍ରଥମେ ପ୍ରତିଜ୍ଞା କରିଥିଲି ଯେ ମୁଁ ଚାରି ଲୋକପାଳଙ୍କୁ ଜିଣିବି ।୨୪

ତଦେହ ପ୍ରସ୍ଥିତୋଽହଂ ବୈ ପ୍ରେତରାଜପୁରଂ ପ୍ରତି ।
ପ୍ରାଣିସଂକ୍ଲେଶକର୍ତାରଂ ଯୋଜୟିଷ୍ୟାମି ମୃତ୍ୟୁନା । ୨୫ ।
ଏବମୁକ୍ତ୍ୱା ଦଶଗ୍ରୀବୋ ମୁନିଂ ତମଭିବାଦ୍ୟ ଚ ।
ପ୍ରୟଯୌ ଦକ୍ଷିଣାମାଶାଂ ପ୍ରହୃଷ୍ଟଃ ସହ ମନ୍ତ୍ରିଭିଃ । ୨୬ ।
ନାରଦସ୍ତୁ ମହାତେଜା ମୁହୂର୍ତଂ ଧ୍ୟାନମାସ୍ଥିତଃ ।
ଚିନ୍ତୟାମାସ ବିପ୍ରେନ୍ଦ୍ରୋ ବିଧୂମ ଇବ ପାବକଃ । ୨୭ ।
ଯେନ ଲୋକାସ୍ତ୍ରୟଃ ସେନ୍ଦ୍ରାଃ କ୍ଲିଶ୍ୟନ୍ତେ ସଚରାଚରାଃ ।
କ୍ଷୀଣେ ଚାୟୁଷି ଧର୍ମେଣ ସ କାଲୋ ଜେଷ୍ୟତେ କଥମ୍ । ୨୮ ।
ସ୍ୱଦତ୍ତକୃତସାକ୍ଷୀ ଯୋ ଦ୍ୱିତୀୟ ଇବ ପାବକଃ ।
ଲବ୍ଧସଂଜ୍ଞା ବିଚେଷ୍ଟନ୍ତେ ଲୋକା ଯସ୍ୟ ମହାତ୍ମନଃ । ୨୯ ।
ଯସ୍ୟ ନିତ୍ୟଂ ତ୍ରୟୋ ଲୋକା ବିଦ୍ରବନ୍ତି ଭୟାର୍ଦିତାଃ ।
ତଂ କଥଂ ରାକ୍ଷସେନ୍ଦ୍ରୋଽସୌ ସ୍ୱୟମେବ ଗମିଷ୍ୟତି । ୩୦ ।
ଯୋ ବିଧାତା ଚ ଧାତା ଚ ସୁକୃତଂ ଦୁଷ୍କୃତଂ ତଥା ।
ତ୍ରୈଲୋକ୍ୟଂ ବିଜିତଂ ଯେନ ତଂ କଥଂ ବିଜୟିଷ୍ୟତେ ।
ଅପରଂ କିଂ ନୁ କୃତ୍ୱୈବ ବିଧାନଂ ସଂବିଧାସ୍ୟତି । ୩୧ ।

---

ଅତଏବ ମୁଁ ବର୍ତ୍ତମାନ ଯମରାଜପୁରକୁ ଯାଉଅଛି ; ପ୍ରାଣୀମାନଙ୍କୁ କ୍ଲେଶ ଦେଉଥିବା ଯମରାଜର ମୁଁ ମୃତ୍ୟୁ ବିଧାନ କରିବି" । ୨୫ । ଏହା କହି ଓ ନାରଦ ମୁନିଙ୍କୁ ପ୍ରଣାମ କରି ରାବଣ ନିଜର ମନ୍ତ୍ରୀମାନଙ୍କ ସହିତ ଦକ୍ଷିଣ ଦିଗ ଆଡ଼କୁ ଚାଲିଗଲେ । ୨୬ । ଧୂମହୀନ ଅଗ୍ନି ସଦୃଶ ବିପ୍ରେନ୍ଦ୍ର ନାରଦ ମୁହୂର୍ତ୍ତିକ ପର୍ଯ୍ୟନ୍ତ ଧ୍ୟାନମଗ୍ନ ରହି ଚିନ୍ତା କରିବାକୁ ଲାଗିଲେ । ୨୭ । ଯେ ଆୟୁ କ୍ଷୀଣ ହେଉଥିବାରୁ ଇନ୍ଦ୍ରଙ୍କ ସହିତ ତିନି ଲୋକକୁ କ୍ଲେଶ ଦେଉଅଛି, ସେହି କାଳକୁ କିପରି ଜିଣିହେବ ! । ୨୮ । ଯେଉଁ ଯମରାଜ ସ୍ୱୟଂ ଜଗତର ସାକ୍ଷୀ ଅଟନ୍ତି ଓ ଦ୍ୱିତୀୟ ଅଗ୍ନିଙ୍କ ସଦୃଶ ତେଜସ୍ୱୀ ଅଟନ୍ତି ଏବଂ ଯେଉଁ ମହାତ୍ମାଙ୍କ ପ୍ରଭାବରୁ ସମସ୍ତ ଲୋକ ସଚେତ ହୋଇ ସାଂସାରିକ କାର୍ଯ୍ୟ କରୁଅଛନ୍ତି ଏବଂ ଯାହାଙ୍କ ଭୟରେ ବ୍ୟାକୁଳ ହୋଇ ତିନି ଲୋକର ପ୍ରାଣୀମାନେ ପଳାଇ ଯାଉଛନ୍ତି, ସେହି ଯମରାଜଙ୍କ ନିକଟକୁ ଏ ରାକ୍ଷସଶ୍ରେଷ୍ଠ ରାବଣ ନିଜ ଇଚ୍ଛାନୁସାରେ କିପରି ଯାଇପାରିବ ? । ୨୯-୩୦ । ଯେ ସଂସାରର ଧାତା ଓ ବିଧାତା ଅଟନ୍ତି, ଯେ ପୁଣ୍ୟ ଏବଂ ପାପର ଫଳ ପ୍ରଦାନ କରନ୍ତି, ଯେ ତିନି ଲୋକକୁ ଜିଣିଅଛନ୍ତି, ସେହି ଯମରାଜଙ୍କୁ ଏ କିପରି ଜିଣିବ ; ପୁଣି ତାହାଙ୍କ ସହିତ ଲଢ଼ି ଏ ଆଉ ଅଧିକ କି କାର୍ଯ୍ୟ କରିବ ! । ୩୧ ।

**କୌତୂହଳସମୁତ୍ପନ୍ନୋ ଯାସ୍ୟାମି ଯମସାଦନମ୍ ।**
**ବିମର୍ଦ୍ଦଂ ଦ୍ରଷ୍ଟୁମନୟୋର୍ଯମରାକ୍ଷସୟୋଃ ସ୍ୱୟମ୍ । ୩୨ ।**

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତ୍ସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ରାବଣସନ୍ଧୁକ୍ଷଣଂ ନାମ ବିଂଶଃ ସର୍ଗଃ ।

---

# ଏକବିଂଶଃ ସର୍ଗଃ

## ଯମରାବଣଯୁଦ୍ଧମ୍

**ଏବଂ ସଂଚିନ୍ତ୍ୟ ବିପ୍ରେନ୍ଦ୍ରୋ ଜଗାମ ଲଘୁବିକ୍ରମଃ ।**
**ଆଖ୍ୟାତୁଂ ତଦ୍ ଯଥାବୃତ୍ତଂ ଯମସ୍ୟ ସଦନଂ ପ୍ରତି । ୧ ।**
**ଅପଶ୍ୟତ୍ ସ ଯମଂ ତତ୍ର ଦେବମଗ୍ନିପୁରସ୍କୃତମ୍ ।**
**ବିଧାନମୁପତିଷ୍ଠନ୍ତଂ ପ୍ରାଣିନୋ ଯସ୍ୟ ଯାଦୃଶମ୍ । ୨ ।**
**ସ ତୁ ଦୃଷ୍ଟ୍ୱା ଯମଃ ପ୍ରାପ୍ତଂ ମହର୍ଷିଂ ତତ୍ର ନାରଦମ୍ ।**
**ଅବ୍ରବୀତ୍ ସୁଖମାସୀନମର୍ଘ୍ୟମାବେଦ୍ୟ ଧର୍ମତଃ । ୩ ।**

---

ମୋ ମନରେ ବିଶେଷ କୌତୂହଳ ଜାତ ହୋଇଅଛି; ଅତଏବ ମୁଁ ସ୍ୱୟଂ ଯମରାଜ ରାବଣର ଯୁଦ୍ଧ ଦେଖିବା ପାଇଁ ଯମପୁରୀକୁ ଯାଉଅଛି । ୩୨ ।

---

# ୨୧ଶ ସର୍ଗ

## ( ଯମ ଓ ରାବଣଯୁଦ୍ଧ )

କ୍ଷିପ୍ରଗାମୀ ବିପ୍ରଶ୍ରେଷ୍ଠ ନାରଦ ଏହି ପ୍ରକାର ବିଚାର କରି ଯାହା ଯାହା ଘଟିଯାଇଛି ସେ ସମସ୍ତ ଯମରାଜଙ୍କୁ କହିବା ନିମନ୍ତେ ଶୀଘ୍ର ଯମପୁରୀ ଆଡ଼କୁ ଚାଲିଲେ । ୧ । ସେ ସେଠାରେ ଯାଇ ଦେଖିଲେ, ଯମରାଜ ଅଗ୍ନିଙ୍କୁ ସାକ୍ଷୀ କରି ଜୀବମାନଙ୍କ ପ୍ରତି ଯଥୋଚିତ ନ୍ୟାୟ ବ୍ୟବସ୍ଥା କରୁଅଛନ୍ତି । ୨ । ଦେବର୍ଷି ନାରଦଙ୍କୁ ଆସିବାର ଦେଖି ଯମରାଜ ଯଥାବିଧି ଅର୍ଘ୍ୟପ୍ରଦାନପୂର୍ବକ ତାଙ୍କୁ ଆସନରେ ବସାଇ କହିବାକୁ ଲାଗିଲେ । ୩ । "ହେ ମହର୍ଷେ ! ଆପଣଙ୍କର ସବୁ କୁଶଳ ତ,

କଚ୍ଚିତ୍ କ୍ଷେମଂ ନୁ ଦେବର୍ଷେ କଚ୍ଚିଦ୍ଧର୍ମୋ ନ ନଶ୍ୟତି ।
କିମାଗମନକୃତ୍ୟଂ ତେ ଦେବଗନ୍ଧର୍ବସେବିତ । ୪ ।
ଅବ୍ରବୀତ୍ତୁ ତଦା ବାକ୍ୟଂ ନାରଦୋ ଭଗବାନୃଷିଃ ।
ଶ୍ରୂୟତାମଭିଧାସ୍ୟାମି ବିଧାନଂ ଚ ବିଧୀୟତାମ୍ । ୫ ।
ଏଷ ନାମ୍ନା ଦଶଗ୍ରୀବଃ ପିତୃରାଜ ନିଶାଚରଃ ।
ଉପଯାତି ବଶଂ ନେତୁଂ ବିକ୍ରମୈସ୍ତ୍ୱାଂ ସୁଦୁର୍ଜୟମ୍ । ୬ ।
ଏତେନ କାରଣେନାହଂ ତ୍ୱରିତୋ ହ୍ୟାଗତଃ ପ୍ରଭୋ ।
ଦଣ୍ଡପ୍ରହରଣସ୍ୟାଦ୍ୟ ତବ କିଂ ନୁ ଭବିଷ୍ୟତି । ୭ ।
ଏତସ୍ମିନ୍ନନ୍ତରେ ଦୂରାଦଂଶୁମନ୍ତମିବୋଦିତମ୍ ।
ଦଦୃଶେ ଦୀପ୍ତମାୟାନ୍ତଂ ବିମାନଂ ତସ୍ୟ ରକ୍ଷସଃ । ୮ ।
ତଂ ଦେଶଂ ପ୍ରଭୟା ତସ୍ୟ ପୁଷ୍ପକସ୍ୟ ମହାବଲଃ ।
କୃତ୍ୱା ବିତିମିରଂ ସର୍ବଂ ସମୀପଂ ସୋଽଭ୍ୟବର୍ତ୍ତତ । ୯ ।
ସୋଽପଶ୍ୟତ୍ ସୁମହାବାହୁର୍ଦଶଗ୍ରୀବସ୍ତତସ୍ତତଃ ।
ପ୍ରାଣିନଃ ସୁକୃତଂ କର୍ମ ଭୁଞ୍ଜାନାଂଶ୍ଚୈବ ଦୁଷ୍କୃତମ୍ । ୧୦ ।

---

ଧର୍ମକାର୍ଯ୍ୟ କୌଣସି ପ୍ରକାରେ ନଷ୍ଟ ହେଉ ନାହିଁ ତ ? ହେ ଦେବଗନ୍ଧର୍ବପୂଜିତ ! ଆପଣଙ୍କର ଏଠାକୁ ଆସିବାର କାରଣ କଅଣ ?” ।୪। ଯମଙ୍କ କଥା ଶୁଣି ଭଗବାନ୍ ନାରଦ ଋଷି କହିଲେ, “ମୋର ଏଠାକୁ ଆସିବାର କାରଣ କହୁଛି ଶୁଣନ୍ତୁ ଏବଂ ତାହା ଶୁଣିବା ପରେ ଯାହା କର୍ତ୍ତବ୍ୟ ତାହା କରନ୍ତୁ । ୫ । ହେ ପିତୃରାଜ ! ଦୁର୍ଜେୟ ଦଶଗ୍ରୀବ ଆପଣଙ୍କୁ ବଳପ୍ରୟୋଗ ଦ୍ୱାରା ନିଜର ବଶରେ ରଖିବା ପାଇଁ ଏଠାକୁ ଆସୁଅଛି । ୬ । ହେ ପ୍ରଭୋ ! ଏହି ହେତୁରୁ ମୁଁ ଅତିଶୀଘ୍ର ଆପଣଙ୍କ ନିକଟକୁ ଆସିଅଛି । ଦେଖାଯାଉ, କାଳଦଣ୍ଡ ପରିଚାଳନାକାରୀ ଆପଣଙ୍କର ଜୟ ହେଉଛି କି ପରାଜୟ ହେଉଛି” । ୭ । ଇତିମଧ୍ୟରେ ସୂର୍ଯ୍ୟଙ୍କ ସଦୃଶ ଦେଦୀପ୍ୟମାନ ଦଶଗ୍ରୀବର ପୁଷ୍ପକବିମାନ ଆସିବାର ଦେଖାଗଲା । ୮ । ମହାବଳୀ ରାବଣ ନିଜର ବିମାନର ତେଜଦ୍ୱାରା ସେଠାର ଅନ୍ଧକାର ଦୂର କରି ଅତିନିକଟରେ ଆସି ପହଞ୍ଚିଲା । ୯ । ମହାବଳୀ ରାବଣ ଦେଖିଲା ଯେ ସେଠାରେ ସମସ୍ତ ପ୍ରାଣୀ ନିଜ ନିଜ ପାପ ପୁଣ୍ୟର ସୁଫଳ ଓ କୁଫଳ ଭୋଗ କରୁଛନ୍ତି । ୧୦ । ଯମରାଜଙ୍କ

ଅପଶ୍ୟତ୍ସୈନିକାଂସ୍ତାସ୍ୟ ଯମସ୍ୟାନୁଚରୈଃ ସହ ।
ଯମସ୍ୟ ପୁରୁଷୈରୁଗ୍ରୈର୍ଘୋରରୂପୈର୍ଭୟାନକୈଃ । ୧୧ ।
ଦଦର୍ଶ ବଧ୍ୟମାନାଂଶ୍ଚ କ୍ଲିଶ୍ୟମାନାଂଶ୍ଚ ଦେହିନଃ ।
କ୍ରୋଶତଶ୍ଚ ମହାନାଦଂ ତୀବ୍ରନିଷ୍ଟନତତ୍ପରାନ୍ । ୧୨ ।
କୃମିଭିର୍ଭକ୍ଷ୍ୟମାଣାଂଶ୍ଚ ସାରମେୟୈଶ୍ଚ ଦାରୁଣୈଃ ।
ଶ୍ରୋତ୍ରାୟାସକରା ବାଚୋ ବଦତଶ୍ଚ ଭୟାବହାଃ । ୧୩ ।
ସଂତାର୍ଯମାଣାନ୍ ବୈତରଣୀଂ ବହୁଶଃ ଶୋଣିତୋଦକାମ୍ ।
ବାଲୁକାସୁ ଚ ତପ୍ତାସୁ ତପ୍ୟମାନାନ୍ ମୁହୁର୍ମୁହୁଃ । ୧୪ ।
ଅସିପତ୍ରବନେ ଚୈବ ଭିଦ୍ୟମାନାନଧାର୍ମିକାନ୍ ।
ରୌରବେ କ୍ଷାରନଦ୍ୟାଂ ଚ କ୍ଷୁରଧାରାସୁ ଚୈବ ହି । ୧୫ ।
ପାନୀୟଂ ଯାଚମାନାଂଶ୍ଚ ତୃଷିତାନ୍ କ୍ଷୁଧିତାନପି ।
ଶବଭୂତାନ୍ କୃଶାନ୍ ଦୀନାନ୍ ବିବର୍ଣାନ୍ମୁକ୍ତମୂର୍ଧଜାନ୍ ।୧୬।
ମଳପଙ୍କଧରାନ୍ ଦୀନାନ୍ ରୁକ୍ଷାଂଶ୍ଚ ପରିଧାବତଃ ।
ଦଦର୍ଶ ରାବଣୋ ମାର୍ଗେ ଶତଶୋଽଥ ସହସ୍ରଶଃ । ୧୭ ।

---

ସୈନିକ ଓ ଅନୁଚରମାନଙ୍କୁ ମଧ୍ୟ ଦେଖିଲା । ଯମରାଜଙ୍କର ମହାଭୟଙ୍କର ଉଗ୍ର-ରୂପଧାରୀ ଅନୁଚରମାନେ ପ୍ରାଣୀମାନଙ୍କୁ ବାନ୍ଧି ମାରଧର କରୁଥିବାର ସେ ଦେଖିଲା । ତଦ୍ଦ୍ୱାରା ପ୍ରାଣୀମାନେ ମହାପୀଡ଼ିତ ହୋଇ ଅତି ଉଚ୍ଚସ୍ୱରରେ ରୋଦନ ଏବଂ ଚିତ୍କାର କରୁଥିଲେ । ୧୧-୧୨ । ସେମାନଙ୍କୁ ବିବିଧ ପ୍ରକାର ଛୋଟ ଛୋଟ କୀଟ ଏବଂ ବଡ଼ ନିଷ୍ଠୁର କୁକୁରମାନେ କାମୁଡ଼ି ଖାଇପକାଉଥିଲେ । ସେମାନେ ଏପରି ଚିତ୍କାର କରୁଥିଲେ ଯେ ଶୁଣିବା ଲୋକର ମନ ବିକଳ ହୋଇଯାଉଥିଲା । ୧୩ । ସେ ଦେଖିଲା ଯେ ବହୁତ ପ୍ରାଣୀ ଜଳ ପରିବର୍ତ୍ତେ ରକ୍ତରେ ପୂର୍ଣ୍ଣ ହୋଇଥିବା ଅତି ଗଭୀର ବୈତରଣୀ ନଦୀ ପାର ହେଉଛନ୍ତି ଏବଂ ତପ୍ତ ବାଲୁକା ଉପରେ ବାରମ୍ବାର ତାତି-ଯାଉଛନ୍ତି । ୧୪ । ଅନେକ ପାପୀ ଅସିପତ୍ର ବନରେ କଷ୍ଟ ହେଉଥିଲେ । ସେମାନେ ରୌରବ ନରକରେ ଖାରନଦୀରେ ଅଟକି ଯାଉଥିଲେ ଏବଂ ଖୁରଧାରରେ କଷ୍ଟ ହେଉଥିଲେ । ୧୫ । ସେମାନେ କ୍ଷୁଧା ଓ ପିପାସାରେ ପୀଡ଼ିତ ହୋଇ ପାଣି ମାଗୁଥିଲେ । ସେମାନେ ଶବସଦୃଶ ଦୁର୍ବଳ, ଦୁଃଖୀ ହୋଇ ବାଳ ମୁକୁଳା କରି ଓ କାଦୁଅରେ ସରବୁଡ଼ ହୋଇ ଦଉଡ଼ାଦଉଡ଼ି କରୁଥିବାରୁ, ସେମାନଙ୍କ ବର୍ଣ୍ଣ ଏକାବେଳକେ ବଦଳି ଯାଇଥିଲା । ରାବଣ ସେଠାରେ ଏହି ପ୍ରକାର ଶହ ଶହ

କାଂଶ୍ଚିଚ୍ଚ ଗୃହମୁଖ୍ୟେଷୁ ଗୀତବାଦିତ୍ରନିସ୍ୱନୈଃ ।
ପ୍ରମୋଦମାନାନଦ୍ରାକ୍ଷୀଦ୍ରାବଣଃ ସୁକୃତୈଃ ସ୍ୱକୈଃ । ୧୮ ।
ଗୋରସଂ ଗୋପ୍ରଦାତାରୋ ହ୍ୟନ୍ନଂ ଚୈବାନ୍ନଦାୟିନଃ ।
ଗୃହାଂଶ୍ଚ ଗୃହଦାତାରଃ ସ୍ୱକର୍ମଫଲମଶ୍ନତଃ । ୧୯ ।
ସୁବର୍ଣ୍ଣମଣିମୁକ୍ତାଭିଃ ପ୍ରମଦାଭିରଲଙ୍କୃତାନ୍ ।
ଧାର୍ମିକାନପରାଂସ୍ତତ୍ର ଦୀପ୍ୟମାନାନ୍ ସ୍ୱତେଜସା । ୨୦ ।
ଦଦର୍ଶ ସୁମହାବାହୂ ରାବଣୋ ରାକ୍ଷସାଧିପଃ ।
ତତସ୍ତାନ୍ ଭିଦ୍ୟମାନାଂଶ୍ଚ କର୍ମଭିର୍ଦୁଷ୍କୃତୈଃ ସ୍ୱକୈଃ । ୨୧ ।
ରାବଣୋ ମୋଚୟାମାସ ବିକ୍ରମେଣ ବଳାଦ୍ ବଲୀ ।
ପ୍ରାଣିନୋ ମୋଚିତାସ୍ତେନ ଦଶଗ୍ରୀବେଣ ରକ୍ଷସା । ୨୨ ।
ସୁଖମାପୁର୍ମୁହୂର୍ତ୍ତଂ ତେ ହ୍ୟତର୍କିତମଚିନ୍ତିତମ୍ ।
ପ୍ରେତେଷୁ ମୁଚ୍ୟମାନେଷୁ ରାକ୍ଷସେନ ବଲୀୟସା । ୨୩ ।
ପ୍ରେତଗୋପାଃ ସୁସଂକ୍ରୁଦ୍ଧା ରାକ୍ଷସେନ୍ଦ୍ରମଭିଦ୍ରବନ୍ ।
ତତୋ ହଲହଲାଶବ୍ଦଃ ସର୍ବଦିଗ୍ଭ୍ୟଃ ସମୁତ୍ଥିତଃ ।
ଧର୍ମରାଜସ୍ୟ ଯୋଧାନାଂ ଶୂରାଣାଂ ସଂପ୍ରଧାବତାମ୍ । ୨୪ ।

---

ଜୀବଙ୍କୁ ଦେଖିଲା । ୧୬-୧୭ । ରାବଣ ସେଠାରେ ଏପରି କେତେକ ପୁଣ୍ୟାତ୍ମାଙ୍କୁ ମଧ୍ୟ ଦେଖିଲା, ଯେଉଁମାନେ ଆପଣାର ପୁଣ୍ୟବଳରେ ସୁନ୍ଦର ସୁନ୍ଦର ଘରମାନଙ୍କରେ ରହୁଥିଲେ ଏବଂ ଗାନ ବାଦ୍ୟ ଆଦି ଶବ୍ଦରେ ଆନନ୍ଦ ଉପଭୋଗ କରୁଥିଲେ । ୧୮ । ଯେଉଁମାନେ ଗୋଦାନ, ଅନ୍ନଦାନ ଏବଂ ଗୃହଦାନ କରିଥିଲେ, ସେମାନେ ନିଜ ନିଜ ଦାନ ଅନୁସାରେ ଗୋରସ, ଅନ୍ନ ଏବଂ ଗୃହର ଆନନ୍ଦ ଉପଭୋଗ କରୁଥିଲେ । ୧୯ । ବହୁ ଧର୍ମାତ୍ମା ବ୍ୟକ୍ତି ସୁନା, ମଣି, ମୁକ୍ତା ଓ ସ୍ତ୍ରୀମାନଙ୍କୁ ପାଇ ବିହାର କରୁଥିଲେ ଏବଂ ନିଜର ତେଜରେ ଦୀପ୍ତିମାନ୍ ହେଉଥିଲେ । ୨୦ । ସେଠାରେ ସେହି ମହାବଳୀ ରାକ୍ଷସରାଜ ରାବଣ ଏହି ପ୍ରକାର ଦୃଶ୍ୟ ଦେଖିଲା । ତଦନନ୍ତର ନିଜର ପାପକର୍ମର ଫଳସ୍ୱରୂପ କଷ୍ଟ ହେଉଥିବା, ପ୍ରହାର ଖାଉଥିବା ପ୍ରାଣୀମାନଙ୍କୁ ମଧ୍ୟ ଦେଖିଲା । ମହାବଳବାନ୍ ରାବଣ ନିଜ ବଳପ୍ରଭାବରେ ସେମାନଙ୍କୁ ମୁକ୍ତ କରିଦେଲା । ରାକ୍ଷସ ଦଶଗ୍ରୀବ ଦ୍ୱାରା ମୁକ୍ତ ହୋଇ ସେହି ପ୍ରାଣୀମାନେ କିଛି ସମୟ ପର୍ଯ୍ୟନ୍ତ ଅତର୍କିତ ଅଚିନ୍ତ୍ୟ ସୁଖଭୋଗ କଲେ । ମହାବଳୀ ରାବଣ ଜୀବମାନଙ୍କୁ ମୁକ୍ତ କରିଦେବାର ଦେଖି ପ୍ରେତମାନଙ୍କୁ ଜଗିରହିଥିବା ଯମକିଙ୍କରମାନେ ଅତ୍ୟନ୍ତ କ୍ରୁଦ୍ଧ ହୋଇ ରାକ୍ଷସରାଜ ରାବଣକୁ ଆକ୍ରମଣ କଲେ । ଅନନ୍ତର ଚାରି ଦିଗରୁ ଧର୍ମରାଜଙ୍କ ବୀର ଯୋଦ୍ଧାମାନେ ଦଉଡ଼ୁଥିବାରୁ ଘୋର

ତେ ପ୍ରାସୈଃ ପରିଘୈଃ ଶୂଳୈର୍ମୁସଳୈଃ ଶକ୍ତିତୋମରୈଃ ।
ପୁଷ୍ପକଂ ସମବର୍ଷନ୍ତ ଶୂରାଃ ଶତସହସ୍ରଶଃ । ୨୫ ।
ତସ୍ୟାସନାନି ପ୍ରାସାଦାନ୍ ବେଦିକାସ୍ତୋରଣାନି ଚ ।
ପୁଷ୍ପକସ୍ୟ ବିଭଞ୍ଜୁସ୍ତେ ଶୀଘ୍ରଂ ମଧୁକରା ଇବ । ୨୬ ।
ଦେବନିଷ୍ଠାନଭୂତଂ ତଦ୍ ବିମାନଂ ପୁଷ୍ପକଂ ମୃଧେ ।
ଭଜ୍ୟମାନଂ ତଥୈବାସୀଦକ୍ଷୟ୍ୟଂ ବ୍ରହ୍ମତେଜସା । ୨୭ ।
ଅସଂଖ୍ୟା ସୁମହତ୍ୟାସୀତ୍ତସ୍ୟ ସେନା ମହାତ୍ମନଃ ।
ଶୂରାଣାମୁଗ୍ରଯାତୄଣାଂ ସହସ୍ରାଣି ଶତାନି ଚ । ୨୮ ।
ତତୋ ବୃକ୍ଷୈଶ୍ଚ ଶୈଳୈଶ୍ଚ ପ୍ରାସାଦାନାଂ ଶତୈସ୍ତଥା ।
ତତସ୍ତେ ସଚିବାସ୍ତସ୍ୟ ଯଥାକାମଂ ଯଥାବଲମ୍ । ୨୯ ।
ଅଯୁଧ୍ୟନ୍ତ ମହାବୀରାଃ ସ ଚ ରାଜା ଦଶାନନଃ ।
ତେ ତୁ ଶୋଣିତଦିଗ୍ଧାଙ୍ଗାଃ ସର୍ବଶସ୍ତ୍ରସମାହତାଃ । ୩୦ ।
ଅମାତ୍ୟା ରାକ୍ଷସେନ୍ଦ୍ରସ୍ୟ ଚକ୍ରୁରାୟୋଧନଂ ମହତ୍ ।
ଅନ୍ୟୋଽନ୍ୟଂ ତେ ମହାଭାଗା ଜଘ୍ନୁଃ ପ୍ରହରଣୈର୍ଭୃଶମ୍ । ୩୧ ।

---

କୋଳାହଳ ଦେଇ ଚାରିଆଡ଼େ ବ୍ୟାପ୍ତ ହୋଇଗଲା । ୨୧-୨୪ । ଶହ ଶହ ହଜାର ହଜାର ବୀର ପ୍ରାସ, ପରିଘ, ଶୂଳ, ମୂଷଳ, ଶକ୍ତି ଏବଂ ତୋମର ପୁଷ୍ପକ ବିମାନ ଉପରେ ବର୍ଷା କରିବାକୁ ଲାଗିଲେ । ୨୫ । ସେମାନେ ମହୁମାଛିପରି ଚାରିଆଡ଼ୁ ପୁଷ୍ପକବିମାନ ଉପରେ ଆସି ପଡ଼ିଲେ ଏବଂ ବିମାନର ବେଦି, ଅଟ୍ଟାଳିକା, ତୋରଣ ଏବଂ ଦ୍ୱାରକୁ ଧ୍ୱସ୍ତବିଧ୍ୱସ୍ତ କରିଦେଲେ ।୨୬। ସେହି ବିମାନ ସାଧାରଣ ବିମାନ ନ ଥିଲା; ସେଥିରେ ଏକପ୍ରକାର ଦେବତା ଥିଲେ, ଅତଏବ ତାହା ଏତେ ପ୍ରବଳ ଆଘାତ ପାଇ ମଧ ବ୍ରହ୍ମାଙ୍କ ତେଜବଳରୁ ପୂର୍ବବତ୍ ଅକ୍ଷୁଣ୍ଣ ରହିଥିଲା । ୨୭ । ମହାତ୍ମା ଧର୍ମରାଜଙ୍କ ସେନାରେ ଏକ ଲକ୍ଷ ମୁଖ୍ୟ ସୈନିକ ଥିଲେ; ମାତ୍ର ତାଙ୍କର ବିପୁଳ ସେନା ଅକଳନ୍ତା ଥିଲା । ୨୮ । ତଦନନ୍ତର ଯମରାଜଙ୍କ ସମସ୍ତ ମନ୍ତ୍ରୀ ଶହ ଶହ ଗଛ, ପାହାଡ଼, ପ୍ରାସ ଓ ଅସିମାନଙ୍କ ଦ୍ୱାରା ନିଜର ବଳାନୁରୂପ ଏବଂ ଇଚ୍ଛାନୁରୂପ ଯୁଦ୍ଧ କରିବାକୁ ଲାଗିଲେ । ୨୯ । ଏଣେ ରାବଣ ମଧ ସ୍ୱୟଂ ଯୁଦ୍ଧରେ ଲଢ଼ୁଥିଲା ଓ ଲଢ଼ି ଲଢ଼ି ତାର ମନ୍ତ୍ରୀମାନଙ୍କ ମଧ୍ୟରୁ ଅନେକେ ଶସ୍ତ୍ରଦ୍ୱାରା ଆହତ ହୋଇ ରକ୍ତରେ ବୁଡ଼ୁବୁଡ଼ୁ ହୋଇଗଲେ, ତଥାପି ସେ ଯୁଦ୍ଧ କରୁଥାଏ ।୩୦। ରାକ୍ଷସରାଜ ରାବଣ ଓ ତାହାର ମନ୍ତ୍ରୀମାନେ ଅନେକ ପ୍ରକାର ଅସ୍ତ୍ରଶସ୍ତ୍ର ଦ୍ୱାରା ପରସ୍ପରକୁ ପ୍ରହାର କରି ଘୋରଯୁଦ୍ଧ କରିବାକୁ ଲାଗିଲେ । ୩୧ । କିନ୍ତୁ ସମସ୍ତ

ଯମସ୍ୟ ଚ ମହାବାହୋ ରାବଣସ୍ୟ ଚ ମନ୍ତ୍ରିଣଃ ।
ଅମାତ୍ୟାଂସ୍ତାଂସ୍ତୁ ସଂତ୍ୟଜ୍ୟ ଯମଯୋଧା ମହାବଲାଃ । ୩୨ ।
ତମେବ ଚାଭ୍ୟଧାବନ୍ତ ଶୂଲବର୍ଷୈର୍ଦଶାନନମ୍ ।
ତତଃ ଶୋଣିତଦିଗ୍ଧାଙ୍ଗଃ ପ୍ରହାରୈର୍ଜର୍ଜରୀକୃତଃ ।
ଫୁଲ୍ଲାଶୋକ ଇବାଭାତି ପୁଷ୍ପକେ ରାକ୍ଷସାଧିପଃ । ୩୩ ।
ସ ତୁ ଶୂଲଗଦାପ୍ରାସାଞ୍ଛକ୍ତିତୋମରସାୟକାନ୍ ।
ମୁସଲାନି ଶିଲାବୃକ୍ଷାନ୍ମୁମୋଚାସ୍ତ୍ରବଲାଦ୍ ବଲୀ । ୩୪ ।
ତରୂଣାଂ ଚ ଶିଲାନାଂ ଚ ଶସ୍ତ୍ରାଣାଂ ଚାତିଦାରୁଣମ୍ ।
ଯମସୈନ୍ୟେଷୁ ତଦ୍ ବର୍ଷଂ ପପାତ ଧରଣୀତଲେ । ୩୫ ।
ତାଂସ୍ତୁ ସର୍ବାନ୍ ବିନିର୍ଭିଦ୍ୟ ତଦସ୍ତ୍ରମପହତ୍ୟ ଚ ।
ଜଘ୍ନୁସ୍ତେ ରାକ୍ଷସଂ ଘୋରମେକଂ ଶତସହସ୍ରଶଃ । ୩୬ ।
ପରିବାର୍ଯ୍ୟ ଚ ତଂ ସର୍ବେ ଶୈଲଂ ମେଘୋତ୍କରା ଇବ ।
ଭିନ୍ଦିପାଲୈଶ୍ଚ ଶୂଲୈଶ୍ଚ ନିରୁଚ୍ଛ୍ୱାସମପୋଥୟନ୍ । ୩୭ ।
ବିମୁକ୍ତକବଚଃ କ୍ରୁଦ୍ଧଃ ସିକ୍ତଃ ଶୋଣିତବିସ୍ରବୈଃ ।
ତତଃ ସ ପୁଷ୍ପକଂ ତ୍ୟକ୍ତ୍ୱା ପୃଥିବ୍ୟାମବତିଷ୍ଠତ । ୩୮ ।

---

ପରେ ଯମଙ୍କର ମହାବଳୀ ସୈନିକମାନେ ରାବଣର ମନ୍ତ୍ରୀମାନଙ୍କ ସହିତ ଯୁଦ୍ଧ କରିବା ଛାଡ଼ିଦେଇ ରାବଣ ଉପରେ ଆକ୍ରମଣ କରି ତା ଉପରେ ଶୂଳ ବୃଷ୍ଟି କରିବାକୁ ଲାଗିଲେ । ଯମକିଙ୍କରମାନଙ୍କର ସେହି ଶସ୍ତ୍ରପ୍ରହାରଦ୍ୱାରା ରାବଣର ଶରୀର ରକ୍ତରେ ଜର୍ଜରିତ ହୋଇଗଲା ଏବଂ ସେ ରକ୍ତରେ ଗାଧୋଇପଡ଼ିଲା । ସେତେବେଳେ ପୁଷ୍ପକବିମାନରେ ବସିରହି ରାବଣ ଏକ ପୁଷ୍ପିତ ଅଶୋକବୃକ୍ଷ ସଦୃଶ ଦେଖାଯାଉଥିଲା । ୩୨-୩୩ । ରାବଣ ମଧ୍ୟ ଶୂଳ, ଗଦା, ପ୍ରାସ, ଶକ୍ତି ତୋମର ଏବଂ ବାଣ ଚଳାଉଥିଲା । ସେ ଯମକିଙ୍କରମାନଙ୍କ ଉପରେ ଶିଳା ଓ ବୃକ୍ଷ ବୃଷ୍ଟି କରିବାକୁ ଲାଗିଲା ।୩୪। ଯମରାଜଙ୍କ ସେନା ଉପରେ ବୃକ୍ଷ ଏବଂ ପଥର ଅତି ଦାରୁଣଭାବରେ ବୃଷ୍ଟିହେବାକୁ ଲାଗିଲା ଓ ସୈନିକମାନେ ଧରାଶାୟୀ ହେବାକୁ ଲାଗିଲେ । ୩୫ । ତଥାପି ସେହି ବୃକ୍ଷାଦିକୁ କାଟି-ପକାଇ ଏବଂ ଅସ୍ତ୍ରଶସ୍ତ୍ରକୁ ରୋକିଦେଇ ଯମରାଜଙ୍କର ଶହ ଶହ ହଜାର ହଜାର ଯୋଦ୍ଧା ଏକସଙ୍ଗରେ ରାବଣ ଉପରେ ଶସ୍ତ୍ର ପ୍ରହାର କରିବାକୁ ଲାଗିଲେ ।୩୬। ଯେପରି ମେଘ ପର୍ବତକୁ ଘେରିଯାଏ ସେହିପରି ସେମାନେ ସମସ୍ତେ ରାବଣକୁ ଘେରିଯାଇ ତା ଉପରେ ସହସ୍ର ସହସ୍ର ଶୂଳ, ଭିନ୍ଦିପାଳ ଅବିରତ ବର୍ଷା କରିବାକୁ ଲାଗିଲେ ।୩୭। ସେହି ପ୍ରହାରଦ୍ୱାରା ରାବଣର କବଚ ଭାଙ୍ଗିଗଲା ଏବଂ ତାର ସର୍ବାଙ୍ଗରୁ ରୁଧିର ବହିବାକୁ ଲାଗିଲା । ପରେ ସେ କ୍ରୋଧରେ ପୁଷ୍ପକ ବିମାନକୁ ଛାଡ଼ି ପୃଥିବୀ ଉପରେ ଉଭା ହୋଇଗଲା । ୩୮ ।

ତତଃ ସ କାର୍ମୁକୀ ବାଣୀ ସମରେ ପରିବର୍ତ୍ତିତ ।
ଲବ୍ଧସଂଜ୍ଞୋ ମୁହୂର୍ତ୍ତେନ କ୍ରୁଦ୍ଧସ୍ତସ୍ଥୌ ଯଥାନ୍ତକଃ । ୩୯ ।
ତତଃ ପାଶୁପତଂ ଦିବ୍ୟମସ୍ତ୍ରଂ ସନ୍ଧାୟ କାର୍ମୁକେ ।
ତିଷ୍ଠ ତିଷ୍ଠେତି ତାନୁକ୍ତ୍ୱା ତଚ୍ଚାପଂ ବିଚକର୍ଷ ସଃ । ୪୦ ।
ଆକର୍ଣାତ୍ ସ ବିକୃଷ୍ୟାଥ ଚାପମିନ୍ଦ୍ରାରିରାହବେ ।
ମୁମୋଚ ତଂ ଶରଂ କ୍ରୁଦ୍ଧସ୍ତ୍ରିପୁରେ ଶଙ୍କରୋ ଯଥା । ୪୧ ।
ତସ୍ୟ ରୂପଂ ଶରସ୍ୟାସୀଦ୍ ବଧୂମଜ୍ୱାଲମଣ୍ଡଳମ୍ ।
ବନଂ ଦହିଷ୍ୟତୋ ଘର୍ମେ ଦାବାଗ୍ନେରିବ ମର୍ଚ୍ଛତଃ । ୪୨ ।
ଜ୍ୱାଲାମାଲୀ ସ ତୁ ଶରଃ କ୍ରବ୍ୟାଦାନୁଗତୋ ରଣେ ।
ମୁକ୍ତୋ ଗୁଲ୍ମାନ୍ ଦ୍ରୁମାଂଶ୍ଚାପି ଭସ୍ମ କୃତ୍ୱା ପ୍ରଧାବତି । ୪୩ ।
ତେ ତସ୍ୟ ତେଜସା ଦଗ୍ଧାଃ ସୈନ୍ୟା ବୈବସ୍ୱତସ୍ୟ ତୁ ।
ରଣେ ତସ୍ମିନ୍ନିପତିତା ଦାବଦଗ୍ଧା ନଗା ଇବ । ୪୪ ।
ତତସ୍ତୁ ସଚିବୈଃ ସାର୍ଦ୍ଧଂ ରାକ୍ଷସୋ ଭୀମବିକ୍ରମଃ ।
ନନାଦ ସୁମହାନାଦଂ କମ୍ପୟନ୍ନିବ ମେଦିନୀମ୍ । ୪୫ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ଯମରାବଣଯୁଦ୍ଧଂ ନାମୈକବିଂଶଃ ସର୍ଗଃ ।

---

କିନ୍ତୁ ସମସ୍ତ ରାବଣ ସମ୍ଭାଳିଗଲା ଏବଂ ମୁହୂର୍ତ୍ତିକ ପରେ ଚେତା ପାଇ କ୍ରୁଦ୍ଧ ହୋଇ ହାତରେ ଧନୁ ଓ ଶର ଧରି ଯମରାଜ ସଦୃଶ ଲଢ଼ିବାକୁ ତିଆର ହେଲା । ୩୯ । ତଦନନ୍ତର ସେ ଧନୁ ଧରି ଧନୁରେ ଦିବ୍ୟ ପାଶୁପତ ଅସ୍ତ୍ର ସନ୍ଧାନ କରି 'ରହ ରହ' ବୋଲି ଡାକିଦେଲା ଏବଂ ଧନୁର୍ଗୁଣକୁ କାନପର୍ଯ୍ୟନ୍ତ ଟାଣି ବାଣ ନିକ୍ଷେପ କଲା । ମହାଦେବ ଯେପରି ତ୍ରିପୁରାସୁରକୁ ବାଣ ମାରିଥିଲେ ସେହିପରି ରାବଣ ଯମରାଜଙ୍କ ସୈନିକଙ୍କ ଉପରେ ବାଣ ନିକ୍ଷେପ କଲା । ୪୦-୪୧ । ଧୂଆଁ ଏବଂ ଜ୍ୱାଳାଯୁକ୍ତ ସେହି ଅସ୍ତ୍ରର ରୂପ ଗ୍ରୀଷ୍ମକାଳରେ ବନଦହନକାରୀ ପ୍ରଜ୍ୱଳିତ ଦାବାଗ୍ନି ପରି ଦେଖାଗଲା ।୪୨। ଜ୍ୱାଳାମାଳାଯୁକ୍ତ ସେହି ଅସ୍ତ୍ର ବନ ଓ ବୃକ୍ଷକୁ ଭସ୍ମ କରି ଏବଂ ମାଂସଭକ୍ଷୀ ପକ୍ଷୀମାନଙ୍କୁ ପଛରେ ପକାଇ ଯମଙ୍କ ସେନା ଆଡ଼କୁ ଦଉଡ଼ିଲେ । ୪୩ । ସେହି ଅସ୍ତ୍ର ତେଜରେ ଯମରାଜଙ୍କ ସମସ୍ତ ବୀର ସୈନିକ ଭସ୍ମ ହୋଇ ଦାବଦଗ୍ଧ ବୃକ୍ଷସଦୃଶ ସେଠାରେ ଟଳିପଡ଼ିଲେ । ୪୪ । ଏହା ଦେଖି ଭୟଙ୍କର ବିକ୍ରମଶାଳୀ ରାକ୍ଷସ ରାବଣ ନିଜର ମନ୍ତ୍ରୀମାନଙ୍କ ସହିତ ପୃଥିବୀକୁ କମ୍ପମାନ କରି ଅତି ଘୋରରେ ଗର୍ଜନ କଲା । ୪୫ ।

---

# ଦ୍ୱାବିଂଶଃ ସର୍ଗଃ

## ଯମଜୟଃ

ସ ତସ୍ୟ ତୁ ମହାନାଦଂ ଶ୍ରୁତ୍ୱା ବୈବସ୍ୱତଃ ପ୍ରଭୁଃ ।
ଶତ୍ରୁଂ ବିଜୟିନଂ ମେନେ ସ୍ୱବଲସ୍ୟ ଚ ସଂକ୍ଷୟମ୍ ॥୧॥
ସ ହି ଯୋଧାନ୍ ହତାନ୍ ମତ୍ୱା କ୍ରୋଧସଂରକ୍ତଲୋଚନଃ ।
ଅବ୍ରବୀତ୍ୱରିତଂ ସୂତଂ ରଥୋଽସ୍ୟୁପନୀୟତାମ୍ ॥ ୨ ॥
ତସ୍ୟ ସୂତସ୍ତଦା ଦିବ୍ୟମୁପସ୍ଥାପ୍ୟ ମହାରଥମ୍ ।
ସ୍ଥିତଃ ସ ଚ ମହାତେଜା ହ୍ୟଧ୍ୟାରୋହତ ତଂ ରଥମ୍ ॥ ୩ ॥
ପାଶମୁଦ୍ଗରହସ୍ତଶ୍ଚ ମୃତ୍ୟୁସ୍ତସ୍ୟାଗ୍ରତଃ ସ୍ଥିତଃ ।
ଯେନ ସଂକ୍ଷିପ୍ୟତେ ସର୍ବଂ ତ୍ରୈଲୋକ୍ୟମିଦମବ୍ୟୟମ୍ ॥ ୪ ॥
କାଲଦଣ୍ଡସ୍ତୁ ପାର୍ଶ୍ୱସ୍ଥୋ ମୂର୍ତ୍ତିମାନସ୍ୟ ଚାଭବତ୍ ।
ଯମପ୍ରହରଣଂ ଦିବ୍ୟଂ ତେଜସା ଜ୍ୱଲଦଗ୍ନିମତ୍ ॥ ୫ ॥
ତସ୍ୟ ପାର୍ଶ୍ୱେଷୁ ନିଶ୍ଛିଦ୍ରାଃ କାଲପାଶାଃ ପ୍ରତିଷ୍ଠିତାଃ ।
ପାବକସ୍ପର୍ଶସଂକାଶଃ ସ୍ଥିତୋ ମୂର୍ତ୍ତଶ୍ଚ ମୁଦ୍ଗରଃ ॥ ୬ ॥

---

## ୨୨ଶ ସର୍ଗ

( ରାବଣ ଦ୍ୱାରା ଯମଜୟ )

ରାବଣର ଏହି ନାଦ ଶୁଣି ଯମରାଜ ବୁଝିଗଲେ ଯେ ରାବଣର ଜୟ ହେଲା ଏବଂ ମୋ ସେନା ନଷ୍ଟ ହୋଇଗଲେ । ୧ । ସେ ନିଜର ଯୋଦ୍ଧାମାନଙ୍କୁ ମରିଯାଇଥିବାର ଜାଣି କ୍ରୋଧରେ ରକ୍ତନେତ୍ର ହୋଇ ନିଜର ସାରଥିକୁ ରଥ ଯୋଚି ତୁରନ୍ତ ଆଣି ଉପସ୍ଥିତ କରିବାକୁ ଆଜ୍ଞା ଦେଲେ । ୨ । ସାରଥି ତାଙ୍କର ଦିବ୍ୟ ଓ ବିଶାଳ ରଥ ଆଣି ଠିଆ କରିଦେଲା । ମହାତେଜସ୍ୱୀ ଯମରାଜ ତାହା ଉପରେ ଆରୋହଣ କଲେ । ୩ । ଯେ ଏ ଚରାଚର ନିତ୍ୟ ଜଗତକୁ ସଂହାର କରନ୍ତି, ସେହି ମୃତ୍ୟୁଦେବ ମଧ୍ୟ ପାଶ ଏବଂ ମୁଦ୍ଗର ହାତରେ ଧରି ଯମରାଜାଙ୍କ ଆଗରେ ରଥରେ ବସିଲେ । ୪ । ପ୍ରଜ୍ୱଳିତ ହୋଇଥିବା ଅଗ୍ନିପରି ଦେଦୀପ୍ୟମାନ ଯମରାଜଙ୍କର କାଳଦଣ୍ଡ ଅସ୍ତ୍ର ମଧ୍ୟ ମୂର୍ତ୍ତିମାନ୍ ହୋଇ ତାହାଙ୍କ ପାଖରେ ରହିଲେ । ୫ । ଛିଦ୍ର ନ ଥିବା କାଳପାଶମାନେ ଏବଂ ତେଜସ୍ୱୀନ୍ ମୁଦ୍ଗର ମଧ୍ୟ ଯମରାଜଙ୍କ ନିକଟରେ ସାକ୍ଷାତ୍ ମୂର୍ତ୍ତିମାନ୍ ହୋଇ ରହିଲେ । ୬ । ସମସ୍ତ ଲୋକଙ୍କୁ

ତତୋ ଲୋକତ୍ରୟଂ କ୍ଷୁବ୍ଧମକମ୍ପନ୍ତ ଦିବୌକସଃ ।
କାଲଂ ଦୃଷ୍ଟ୍ୱା ତଥା କ୍ରୁଦ୍ଧଂ ସର୍ବଲୋକଭୟାବହମ୍ । ୭ ।
ତତୋ ପ୍ରଚୋଦୟନ୍ ସୂତସ୍ତାନଶ୍ୱାନ୍ ରୁଧିରପ୍ରଭାନ୍ ।
ପ୍ରୟଯୌ ଭୀମସଂନାଦୋ ଯତ୍ର ରକ୍ଷଃପତିଃ ସ୍ଥିତଃ । ୮ ।
ମୁହୂର୍ତ୍ତେନ ଯମଂ ତେ ତୁ ହୟା ହରିହୟୋପମାଃ ।
ପ୍ରାପୟନ୍ମନସସ୍ତୁଲ୍ୟା ଯତ୍ର ତତ୍ ପ୍ରସ୍ତୁତଂ ରଣମ୍ । ୯ ।
ଦୃଷ୍ଟ୍ୱା ତଥୈବ ବିକୃତଂ ରଥଂ ମୃତ୍ୟୁସମନ୍ୱିତମ୍ ।
ସଚିବା ରାକ୍ଷସେନ୍ଦ୍ରସ୍ୟ ସହସା ବିପ୍ରଦୁଦ୍ରୁବୁଃ । ୧୦ ।
ଲଘୁସତ୍ତ୍ୱତୟା ତେ ହି ନଷ୍ଟସଂଜ୍ଞା ଭୟାର୍ଦ୍ଦିତାଃ ।
ନେହ ଯୋଦ୍ଧୁଂ ସମର୍ଥାଃ ସ୍ମ ଇତ୍ୟୁକ୍ତ୍ୱା ପ୍ରୟଯୁର୍ଦ୍ଦିଶଃ । ୧୧ ।
ସ ତୁ ତଂ ତାଦୃଶଂ ଦୃଷ୍ଟ୍ୱା ରଥଂ ଲୋକଭୟାବହମ୍ ।
ନାକ୍ଷୁଭ୍ୟତ ଦଶଗ୍ରୀବୋ ନ ଚାପି ଭୟମାବିଶତ୍ । ୧୨ ।
ସ ତୁ ରାବଣମାସାଦ୍ୟ ବ୍ୟସୃଜଚ୍ଛକ୍ତିତୋମରାନ୍ ।
ଯମୋ ମର୍ମାଣି ସଂକ୍ରୁଦ୍ଧୋ ରାବଣସ୍ୟୋପକୃନ୍ତତ । ୧୩ ।

---

ଭୟଭୀତ କରୁଥିବା ଯମରାଜଙ୍କୁ ଏପ୍ରକାର କ୍ରୁଦ୍ଧ ଦେଖି ସେତେବେଳେ ତ୍ରିଲୋକ କମ୍ପିଉଠିଲା ଏବଂ ଦେବତାମାନେ ମଧ୍ୟ କମ୍ପିଉଠିଲେ । ୭ । ତଦନନ୍ତର ଯେତେବେଳେ ସାରଥି ଲାଲ ରଙ୍ଗର ଘୋଡ଼ାଙ୍କୁ ଦଉଡ଼ାଇଲା, ସେତେବେଳେ ସେ ରଥ ଘୋର ଶବ୍ଦକରି ରାକ୍ଷସରାଜ ରାବଣ ଥିବା ସ୍ଥାନକୁ ଚାଲିଲା । ୮ । ମନସଦୃଶ ବେଗଶାଳୀ ତଥା ଇନ୍ଦ୍ରଙ୍କ ଘୋଡ଼ାମାନଙ୍କ ସଦୃଶ ଘୋଡ଼ାମାନେ ମୁହୂର୍ତ୍ତକ ମଧ୍ୟରେ ଯମରାଜଙ୍କୁ ରଣକ୍ଷେତ୍ରରେ ପହଞ୍ଚାଇଦେଲେ । ୯ । ଯେଉଁ ବିକରାଳ ରଥରେ ସାକ୍ଷାତ୍ ମୃତ୍ୟୁଦେବ ବସିଥିଲେ ତାକୁ ଦେଖି ରାବଣର ମନ୍ତ୍ରୀମାନେ ଭୟଭୀତ ହୋଇ ପଳାଇଗଲେ । ୧୦ । ସେମାନଙ୍କର ସାହସ ଖୁବ୍ କମିଗଲା, ସେମାନେ ଭୟରେ ଅଚେତ ସଦୃଶ ହୋଇଗଲେ ଏବଂ କହିବାକୁ ଲାଗିଲେ 'ଏଠାରେ ଯୁଦ୍ଧ କରିବା ଆମ୍ଭମାନଙ୍କର ସାମର୍ଥ୍ୟର ବାହାରେ' । ଏହିପରି କହି ସେମାନେ ଏଣେ ତେଣେ ପଳାଇଗଲେ । ୧୧ । ମାତ୍ର ରାବଣ ସବୁ ଲୋକଙ୍କର ଭୟପ୍ରଦ ସେହି ରଥକୁ ଦେଖି ବିଚଳିତ ହେଲା ନାହିଁ । ୧୨ । ଯମରାଜ ରାବଣ ନିକଟରେ ପହଞ୍ଚି କ୍ରୋଧରେ ଶକ୍ତି ଏବଂ ତୋମର ଦ୍ୱାରା ତାର ମର୍ମସ୍ଥଳକୁ ବିଦୀର୍ଣ୍ଣ କରିବାକୁ ଲାଗିଲେ । ୧୩ ।

ମର୍ମସ୍ୱୁ ଛିଦ୍ୟମାନେଷୁ ରାବଣୋ ରାକ୍ଷସେଶ୍ୱରଃ ।
ଯଯୌ ସ୍ତବ୍ଧୋ ରୁଜଂ ଘୋରାଂ ଭିଦ୍ୟମାନ ଇବାଚଳଃ । ୧୪।
ରାବଣସ୍ତୁ ତତଃ ସ୍ୱସ୍ଥଃ ଶରବର୍ଷଂ ମୁମୋଚ ହ ।
ତସ୍ମିନ୍ ବୈବସ୍ୱତରଥେ ତୋୟବର୍ଷମିବାମ୍ବୁଦଃ । ୧୫ ।
ତତୋ ମହାଶକ୍ତିଶତୈଃ ପାତ୍ୟମାନୋ ମହୋରସି ।
ନାଶକ୍ନୋତ୍ ପ୍ରତିକର୍ତ୍ତୁଂ ସ ରାକ୍ଷସଃ ଶଲ୍ୟପୀଡ଼ିତଃ । ୧୬ ।
ଏବଂ ନାନାପ୍ରହରଣୈର୍ଯମେନାମିତ୍ରକର୍ଶିନା ।
ସପ୍ତରାତ୍ରଂ କୃତଃ ସଂଖ୍ୟେ ନ ଭଗ୍ନୋ ବିଜିତୋଽପି ବା । ୧୭ ।
ତଦାସୀତ୍ତୁମୁଳଂ ଯୁଦ୍ଧଂ ଯମରାକ୍ଷସୟୋର୍ଦ୍ୱୟୋଃ ।
ଜୟମାକାଙ୍କ୍ଷତୋର୍ବୀର ସମରେଷ୍ୱନିବର୍ତ୍ତିନୋଃ । ୧୮ ।
ତତୋ ଦେବାଃ ସଗନ୍ଧର୍ବାଃ ସିଦ୍ଧାଶ୍ଚ ପରମର୍ଷୟଃ ।
ପ୍ରଜାପତିଂ ପୁରସ୍କୃତ୍ୟ ସମେତାସ୍ତଦ୍ରଣାଜିରମ୍ । ୧୯ ।
ସଂବର୍ତ୍ତ ଇବ ଲୋକାନାଂ ଯୁଧ୍ୟତୋରଭବତ୍ତଦା ।
ରାକ୍ଷସାନାଂ ଚ ମୁଖ୍ୟସ୍ୟ ପ୍ରେତାନାମୀଶ୍ୱରସ୍ୟ ଚ । ୨୦ ।

---

ମର୍ମସ୍ଥଳମାନ ବିଦୀର୍ଣ୍ଣ ହୋଇଯିବାରୁ ରାକ୍ଷସେଶ୍ୱର ରାବଣ ଭୀଷଣ ପୀଡ଼ା ପାଇ ବିଦୀର୍ଣ୍ଣ ପର୍ବତ ପରି ସ୍ତବ୍ଧ ହୋଇଗଲା । ୧୪ । ରାବଣ ମଧ୍ୟ ସାବଧାନ ହୋଇ ଯମରାଜଙ୍କ ରଥ ଉପରେ ମେଘ ଜଳବୃଷ୍ଟି କଲାପରି ବାଣ ବୃଷ୍ଟିକଲା । ୧୫ । ଯମରାଜ ରାବଣର ଛାତିକୁ ଶତ ଶତ ବଡ଼ ବଡ଼ ଶକ୍ତି ମାଇଲେ । ତାର ଆଘାତରେ ରାବଣ ପୀଡ଼ିତ ହେଲା ଏବଂ ସେ ଶକ୍ତିକୁ ରୋକିବାକୁ କୌଣସି ଉପାୟ ଦେଖିପାରିଲା ନାହିଁ । ୧୬ । ଶତ୍ରୁସଂହାରକାରୀ ଯମରାଜ ଏହିପ୍ରକାର ଅନେକ ଅସ୍ତ୍ରଶସ୍ତ୍ର ପ୍ରହାର କରି ସାତ ଦିନ ସାତ ରାତି ଯୁଦ୍ଧ କଲେ ମଧ୍ୟ ରାବଣ ଭଗ୍ନ ବା ପରାସ୍ତ ହେଲା ନାହିଁ । ୧୭ । ହେ ବୀର ! ପରସ୍ପର ଜୟ ଆଶା କରି ଯମରାଜ ଓ ରାକ୍ଷସରାଜ ଦୁହେଁ ସମରଭୂମିରେ ଘୋର ଯୁଦ୍ଧ କରିବାକୁ ଲାଗିଲେ । ୧୮ । ତା ପରେ ଦେବତା, ଗନ୍ଧର୍ବ, ସିଦ୍ଧ ଏବଂ ମହର୍ଷିମାନେ ମିଳିତ ହୋଇ ବ୍ରହ୍ମାଙ୍କୁ ଅଗ୍ରଣୀ କରି ରଣକ୍ଷେତ୍ରରେ ଆସି ପହଞ୍ଚିଲେ । ୧୯ । ପ୍ରେତପତି ଯମରାଜ ଓ ରାକ୍ଷସରାଜ ରାବଣର ଏପରି ଘୋର ଯୁଦ୍ଧ ହେଲା ଯେ ପ୍ରଳୟକାଳ ଉପସ୍ଥିତ ହେଲାପରି ଜଣାଗଲା । ୨୦ ।

ରାକ୍ଷସେନ୍ଦ୍ରୋଽପି ବିସ୍ଫାର୍ଯ୍ୟ ଚାପମିନ୍ଦ୍ରାଶନିପ୍ରଭମ୍ ।
ନିରନ୍ତରମିବାକାଶଂ କୁର୍ବନ୍ ବାଣାଂସ୍ତତୋଽସୃଜତ୍ । ୨୧ ।
ମୃତ୍ୟୁଂ ଚତୁର୍ଭିର୍ବିଶିଖୈଃ ସୂତଂ ସପ୍ତଭିରର୍ଦ୍ଦୟତ୍ ।
ଯମଂ ଶତସହସ୍ରେଣ ଶୀଘ୍ରଂ ମର୍ମସ୍ୱତାଡ଼ୟତ୍ । ୨୨ ।
ତତଃ କ୍ରୁଦ୍ଧସ୍ୟ ବଦନାଦ୍ ଯମସ୍ୟ ସମଜାୟତ ।
ଜ୍ୱାଲାମାଲୀ ସନିଶ୍ୱାସଃ ସଧୂମଃ କୋପପାବକଃ । ୨୩ ।
ତଦାଶ୍ଚର୍ଯ୍ୟମଥୋ ଦୃଷ୍ଟ୍ୱା ଦେବଦାନବସନ୍ନିଧୌ ।
ପ୍ରହର୍ଷିତୌ ସୁସଂରବ୍ଧୌ ମୃତ୍ୟୁକାଲୌ ବଭୂବତୁଃ । ୨୪ ।
ତତୋ ମୃତ୍ୟୁଃ କ୍ରୁଦ୍ଧତରୋ ବୈବସ୍ୱତମଭାଷତ ।
ମୁଞ୍ଚ ମାଂ ସମରେ ଯାବଦ୍ଧନ୍ମୀମଂ ପାପରାକ୍ଷସମ୍ । ୨୫।
ନୈଷା ରକ୍ଷୋ ଭବେଦଦ୍ୟ ମର୍ଯ୍ୟାଦା ହି ନିସର୍ଗତଃ ।
ହିରଣ୍ୟକଶିପୁଃ ଶ୍ରୀମାନ୍ନମୁଚିଃ ଶମ୍ବରସ୍ତଥା । ୨୬ ।
ନିସନ୍ଧିର୍ଧୂମକେତୁଶ୍ଚ ବଲିର୍ବୈରୋଚନୋଽପି ଚ ।
ଦମ୍ଭୁର୍ଦୈତ୍ୟମହାରାଜୋ ବୃତ୍ରୋ ବାଣସ୍ତଥୈବ ଚ । ୨୭ ।
ରାଜର୍ଷୟଃ ଶାସ୍ତ୍ରବିଦୋ ଗନ୍ଧର୍ବାଃ ସମହୋରଗାଃ ।
ଋଷୟଃ ପନ୍ନଗା ଦୈତ୍ୟା ଯକ୍ଷାଶ୍ଚାପ୍ୟପ୍ସରୋଗଣାଃ ।୨୮।

---

ରାବଣ ଇନ୍ଦ୍ରଙ୍କ ବଜ୍ରସଦୃଶ ନିଜର ଧନୁକୁ ଟଙ୍କାର କରି ଶରଦ୍ୱାରା ଆକାଶକୁ ଘୋଡ଼ାଇଦେଇଥିଲା । ୨୧ । ସେ ମୃତ୍ୟୁଙ୍କୁ ଚାରିଟି, ସାରଥିକୁ ସାତୋଟି ଏବଂ ଯମରାଜଙ୍କ ମର୍ମସ୍ଥଳକୁ ଅତି ଶୀଘ୍ର ଲକ୍ଷେ ବାଣ ମାଇଲା । ୨୨ । ତଦନନ୍ତର ଯମରାଜ କ୍ରୋଧରେ ପୂର୍ଣ୍ଣ ହୋଇଯିବାରୁ ତାଙ୍କ ମୁଖରୁ ଶ୍ୱାସ ସହିତ ସଧୂମ କୋପରୂପ ଅଗ୍ନି ପ୍ରଜ୍ୱଳିତ ହୋଇ ବାହାରିଲା । ୨୩ । ଦେବଦାନବମାନଙ୍କ ନିକଟରେ ଏହିପରି ଆଶ୍ଚର୍ଯ୍ୟ ଘଟଣା ଦେଖି ମୃତ୍ୟୁଦେବ ଓ କାଳଦେବ ହର୍ଷିତ ଏବଂ କ୍ରୁଦ୍ଧ ହୋଇ ଲଢ଼ିବାକୁ ତିଆରି ହେଲେ ।୨୪। ଅନନ୍ତର ମୃତ୍ୟୁଦେବ ଆହୁରି ଅଧିକ କ୍ରୁଦ୍ଧ ହୋଇ ଯମରାଜଙ୍କୁ କହିଲେ, "ଆପଣ ମୋତେ ଛାଡ଼ିଦିଅନ୍ତୁ, ମୁଁ ଏହି ପାପୀ ରାବଣକୁ ଯୁଦ୍ଧରେ ମାରିପକାଇବି ।୨୫। ମୋର ସ୍ୱାଭାବିକ କାମହିଁ ଏହା ଅଟେ; ଦେଖନ୍ତୁ ହିରଣ୍ୟକଶିପୁ, ନମୁଚି, ଶମ୍ବର, ନିସନ୍ଧି, ଧୂମକେତୁ, ବଳି, ଦୈତ୍ୟେନ୍ଦ୍ର ଦମ୍ଭୁ, ବୃତ୍ର, ବାଣ, ବଡ଼ ବଡ଼ ଶାସ୍ତ୍ରଜ୍ଞ ରାଜର୍ଷି, ଗନ୍ଧର୍ବ, ନାଗ, ଋଷି, ପନ୍ନଗ, ଦୈତ୍ୟ, ଯକ୍ଷ, ଅପ୍ସରାଗଣ ଏବଂ

ଯୁଗାନ୍ତପରିବର୍ତ୍ତେ ଚ ପୃଥିବୀ ସମହାର୍ଣ୍ଣବା ।
କ୍ଷୟଂ ନୀତା ମହାରାଜ ସପର୍ବ୍ବତସରିଦ୍ଦ୍ରୁମାଃ । ୨୯ ।
ଏତେ ଚାନ୍ୟେ ଚ ବହବୋ ବଲବନ୍ତୋ ଦୁରାସଦାଃ ।
ବିନିପନ୍ନା ମୟା ଦୃଷ୍ଟାଃ କିମୁତାୟଂ ନିଶାଚରଃ । ୩୦ ।
ମୁଞ୍ଚ ମାଂ ସାଧୁଧର୍ମ୍ମଜ୍ଞ ଯାବଦେନଂ ନିହନ୍ମ୍ୟହମ୍ ।
ନ ହି କଶ୍ଚିନ୍ମୟା ଦୃଷ୍ଟୋ ବଲବାନପି ଜୀବତି । ୩୧ ।
ବଲଂ ମମ ନ ଖଲ୍ୱେତନ୍ମର୍ୟାଦୈଷା ନିସର୍ଗତଃ ।
ସ ଦୃଷ୍ଟୋ ନ ମୟା କାଲଂ ମୁହୂର୍ତ୍ତମପି ଜୀବତି । ୩୨ ।
ତସ୍ୟୈବଂ ବଚନଂ ଶ୍ରୁତ୍ୱା ଧର୍ମ୍ମରାଜଃ ପ୍ରତାପବାନ୍ ।
ଅବ୍ରବୀତ୍ତତ୍ର ତଂ ମୃତ୍ୟୁଂ ତ୍ୱଂ ତିଷ୍ଠୈନଂ ନିହନ୍ମ୍ୟହମ୍ । ୩୩ ।
ତତଃ ସଂରକ୍ତନୟନଃ କ୍ରୁଦ୍ଧୋ ବୈବସ୍ୱତଃ ପ୍ରଭୁଃ ।
କାଲଦଣ୍ଡମମୋଘଂ ତୁ ତୋଲୟାମାସ ପାଣିନା । ୩୪ ।
ଯସ୍ୟ ପାର୍ଶ୍ୱେଷୁ ନିଖିଲାଃ କାଲପାଶାଃ ପ୍ରତିଷ୍ଠିତାଃ ।
ପାବକାଶନିସଂକାଶୋ ମୁଦ୍ଗରୋ ମୂର୍ତ୍ତିମାନ୍ ସ୍ଥିତଃ । ୩୫ ।

---

ଯୁଗାନ୍ତରେ ସସାଗରା ପୃଥିବୀ, ପର୍ବତ ଆଦି ସମସ୍ତଙ୍କୁ ମୁଁ ନଷ୍ଟ କରିଦେଇଅଛି ଏବଂ ଦେଉଅଛି । ଏହି ବଡ଼ ବଡ଼ ବଳବାନ୍ ଦୁର୍ଦ୍ଧର୍ଷମାନଙ୍କୁ ନଷ୍ଟ ହୋଇଯିବାର ମୁଁ ଦେଖିଛି । ମୋ ପକ୍ଷରେ ଏ ରାକ୍ଷସକୁ ମାରିବା କଠିନ କାର୍ଯ୍ୟ ନୁହେଁ । ୨୭-୩୦ । ହେ ସାଧୁ, ହେ ଧର୍ମଜ୍ଞ ! ଆପଣ ମୋତେ ଶୀଘ୍ର ଛାଡ଼ିଦିଅନ୍ତୁ; ତାହାହେଲେ ମୁଁ ଏହାକୁ ମାରିପକାଇବି । ଯେତେ ବଳବାନ୍ ହେଉ ପଛକେ ଏ ରାକ୍ଷସ ମୋ ଦୃଷ୍ଟି ସମ୍ମୁଖରେ ପଡ଼ିଲେ କଦାପି ବଞ୍ଚି ପାରିବ ନାହିଁ । ୩୧ । ହେ ଭଗବନ୍ ! ଏହା ମୋର ବଳର ମାହାତ୍ମ୍ୟ ନୁହେଁ, କିନ୍ତୁ ଏହା ମୋର ସ୍ୱାଭାବିକ ମର୍ଯ୍ୟାଦା ଅଟେ ଯେ ମୋର ଦୃଷ୍ଟିରେ ପଡ଼ିଲେ କେହି ମୁହୂର୍ତ୍ତେ ମାତ୍ର ବଞ୍ଚି ରହି ପାରିବେ ନାହିଁ" । ୩୨ । ପ୍ରତାପୀ ଧର୍ମରାଜ କାଳଙ୍କର ଏହି ବଚନ ଶୁଣି ତାଙ୍କୁ କହିଲେ, "ତୁ ରହ, ମୁଁ ଏହାକୁ ମାରିଦେଉଛି" । ୩୩ । ତଦନନ୍ତର ସୂର୍ଯ୍ୟପୁତ୍ର ଯମରାଜ କ୍ରୋଧରେ ରକ୍ତଚକ୍ଷୁ ହୋଇ ହାତରେ ଅମୋଘ କାଳଦଣ୍ଡ ଧରି ଉଠାଇଲେ । ୩୪ । ସେହି କାଳଦଣ୍ଡ ପାଖରେ ବଡ଼ ବଡ଼ କାଳପାଶ ଏବଂ ଅଗ୍ନି ଓ ବଜ୍ର ସଦୃଶ ମୁଦ୍‌ଗର ମୂର୍ତ୍ତିମାନ୍ ହୋଇ ସର୍ବଦା ରହିଥାନ୍ତି । ୩୫ । ଏହାକୁ ଦେଖିବା ମାତ୍ରେହିଁ

ଦର୍ଶନାଦେବ ଯଃ ପ୍ରାଣାନ୍ ପ୍ରାଣିନାମପକର୍ଷତି ।
କିଂ ପୁନଃ ସ୍ପୃଶ୍ୟମାନସ୍ୟ ପାତ୍ୟମାନସ୍ୟ ବା ପୁନଃ । ୩୬ ।
ସ ଜ୍ୱାଲାପରିବାରସ୍ତୁ ନିର୍ଦହନ୍ନିବ ରାକ୍ଷସମ୍ ।
ତେନ ସ୍ପୃଷ୍ଟୋ ବଲବତା ମହାପ୍ରହରଣୋଽସ୍ଫୁରତ୍ । ୩୭ ।
ତତୋ ବିଦୁଦ୍ରୁବୁଃ ସର୍ବେ ତସ୍ମାତ୍ତ୍ରସ୍ତା ରଣାଜିରେ ।
ସୁରାଶ୍ଚ କ୍ଷୁଭିତାଃ ସର୍ବେ ଦୃଷ୍ଟ୍ୱା ଦଣ୍ଡୋଦ୍ୟତଂ ଯମମ୍ । ୩୮ ।
ତସ୍ମିନ୍ ପ୍ରହର୍ତୁକାମେ ତୁ ଯମେ ଦଣ୍ଡେନ ରାବଣମ୍ ।
ଯମଂ ପିତାମହଃ ସାକ୍ଷାଦ୍ଦର୍ଶୟିତ୍ୱେଦମବ୍ରବୀତ୍ । ୩୯ ।
ବୈବସ୍ୱତ ମହାବାହୋ ନ ଖଲ୍ୱମିତବିକ୍ରମ ।
ନ ହନ୍ତବ୍ୟସ୍ତ୍ୱୟା ତେନ ଦଣ୍ଡେନୈଷ ନିଶାଚରଃ । ୪୦ ।
ବରଃ ଖଲୁ ମୟୈତସ୍ମୈ ଦତ୍ତସ୍ତ୍ରିଦଶପୁଙ୍ଗବ ।
ସ ତ୍ୱୟା ନାନୃତଃ କାର୍ଯୋ ଯନ୍ମୟା ବ୍ୟାହୃତଂ ବଚଃ । ୪୧ ।
ଯୋ ହି ମାମନୃତଂ କୁର୍ଯାଦ୍ଦେବୋ ବା ମାନୁଷୋଽପି ବା ।
ତ୍ରୈଲୋକ୍ୟମନୃତଂ ତେନ କୃତଂ ସ୍ୟାନ୍ନାତ୍ର ସଂଶୟଃ । ୪୨ ।

---

ପ୍ରାଣୀମାନଙ୍କର ପ୍ରାଣ ଟାଣିହୋଇଯାଏ । ସେ ଯଦି କୌଣସି ପ୍ରାଣଦ୍ୱାରା କାହାକୁ ଛୁଇଁଦିଅନ୍ତି ଅଥବା ଦଣ୍ଡ ପ୍ରହାର କରନ୍ତି, ତାହାହେଲେ ଆଉ କଥା କଅଣ ଅଛି ? ।୩୬। ସେହି ଅଗ୍ନିଜ୍ୱାଳାପରିବେଷ୍ଟିତ ମହା ଅସ୍ତ୍ର ବଳବାନ୍ ଯମରାଜଙ୍କ ଦ୍ୱାରା ଉତ୍ତୋଳିତ ହେବାରୁ ତାହା ରାବଣକୁ ଭସ୍ମକରିବା ନିମନ୍ତେ ସହସା ପ୍ରଜ୍ୱଳିତ ହୋଇ ଉଠିଲା ।୩୭। ଯମରାଜ ହାତରେ କାଳଦଣ୍ଡ ଉଠାଇବାର ଦେଖି ସେଠାରେ ଯେଉଁ ପ୍ରାଣୀମାନେ ଉପସ୍ଥିତ ଥିଲେ ସେମାନେ ଭୟଭୀତ ହୋଇ ପଳାଇଗଲେ ଏବଂ ଦେବତାମାନେ ମଧ୍ୟ ବ୍ୟତିବ୍ୟସ୍ତ ହୋଇ ଉଠିଲେ । ୩୮ । ଯମରାଜ ଯେତେବେଳେ ରାବଣ ଉପରେ ଦଣ୍ଡ ପ୍ରହାର କରିବାକୁ ଉଦ୍ୟତ ହେଲେ, ସେତେବେଳେ ବ୍ରହ୍ମା ନିଜେ ଯମରାଜଙ୍କୁ ସାକ୍ଷାତରେ ଦେଖାଦେଇ କହିଲେ ।୩୯। "ହେ ଅତୁଳବିକ୍ରମ ଯମରାଜ ! ତୁମେ ଏହି ଦଣ୍ଡ ପ୍ରୟୋଗ କରି ଏ ରାକ୍ଷସକୁ ମାରିବା ଉଚିତ ନୁହେଁ ।୪୦। ହେ ଦେବଶ୍ରେଷ୍ଠ ! ମୁଁ ଏହାକୁ ବର ଦେଇ ସାରିଛି, ଅତଏବ ମୋ କଥାକୁ ଅସତ୍ୟ କରିବା ତୁମର ଉଚିତ ନୁହେଁ । ୪୧ । ଦେବତା ହୁଅନ୍ତୁ ବା ମନୁଷ୍ୟ ହୁଅନ୍ତୁ, କେହି ମୋ କଥାକୁ ଅସତ୍ୟ କରିଦେଲେ ତଦ୍ୱାରା ତିନି ଭୁବନକୁ ସେ ଅସତ୍ୟ ପ୍ରତିପାଦିତ କରିଦେବେ, ଏଥିରେ ସନ୍ଦେହ ନାହିଁ । ୪୨ । ଏହି କାଳଦଣ୍ଡ ମହାଭୟଙ୍କର ଏବଂ ତିନି

କ୍ରୁଦ୍ଧେନ ବିପ୍ରମୁକ୍ତୋଽୟଂ ନିର୍ବିଶେଷଂ ପ୍ରିୟାପ୍ରିୟେ ।
ପ୍ରଜାଃ ସଂହରତେ ରୌଦ୍ରୋ ଲୋକତ୍ରୟଭୟାବହଃ । ୪୩ ।
ଅମୋଘୋ ହ୍ୟେଷ ସର୍ବେଷାଂ ପ୍ରାଣିନାମମିତପ୍ରଭଃ ।
କାଳଦଣ୍ଡୋ ମୟା ସୃଷ୍ଟଃ ପୂର୍ବଂ ମୃତ୍ୟୁପୁରସ୍କୃତଃ । ୪୪ ।
ତନ୍ନ ଖଲ୍ୱେଷ ତେ ସୌମ୍ୟ ପାତ୍ୟୋ ରାବଣମୂର୍ଦ୍ଧନି ।
ନ ହ୍ୟସ୍ମିନ୍ ପତିତେ କଶ୍ଚିନ୍ମୁହୂର୍ତ୍ତମପି ଜୀବତି । ୪୫ ।
ଯଦି ହ୍ୟସ୍ମିନ୍ନିପତିତେ ନ ମ୍ରିୟେତୈଷ ରାକ୍ଷସଃ ।
ମ୍ରିୟତେ ବା ଦଶଗ୍ରୀବସ୍ତଦା ହ୍ୟୁଭୟତୋଽନୃତମ୍ । ୪୬ ।
ତନ୍ନିବର୍ତ୍ତୟ ଲଙ୍କେଶାଦ୍ଦଣ୍ଡମେତଂ ସମୁଦ୍ୟତମ୍ ।
ସତ୍ୟଂ ଚ ମାଂ କୁରୁଷ୍ୱାଦ୍ୟ ଲୋକାଂସ୍ତ୍ୱଂ ଯଦ୍ୟବେକ୍ଷସେ ।୪୭ ।
ଏବମୁକ୍ତସ୍ତୁ ଧର୍ମାତ୍ମା ପ୍ରତ୍ୟୁବାଚ ଯମସ୍ତଦା ।
ଏଷ ବ୍ୟାବର୍ତ୍ତିତୋ ଦଣ୍ଡଃ ପ୍ରଭବିଷ୍ଣୁର୍ହି ନୋ ଭବାନ୍ । ୪୮ ।
କିଂ ତ୍ୱିଦାନୀଂ ମୟା ଶକ୍ୟଂ କର୍ତ୍ତୁଂ ରଣଗତେନ ହି ।
ନ ମୟା ଯଦ୍ୟୟଂ ଶକ୍ୟୋ ହନ୍ତୁଂ ବରପୁରସ୍କୃତଃ । ୪୯ ।

---

ତ୍ରିଭୁବନର ଭୟପ୍ରଦାୟକ ଅଟେ । ଯେତେବେଳେ କ୍ରୋଧଯୁକ୍ତ ହୋଇ ଏହାକୁ ଛାଡ଼ି ଦିଆହେବ, ସେତେବେଳେ ଏହା ପ୍ରିୟ ଅପ୍ରିୟ ଅର୍ଥାତ୍ ଭଲ ଓ ମନ୍ଦ ପ୍ରାଣୀକୁ ବିଚାର ନ କରି ସମସ୍ତଙ୍କୁ ନଷ୍ଟ କରିପକାଇବ । ୪୩ । କାରଣ ମୁଁ ଏହି କାଳଦଣ୍ଡକୁ ଏପରିଭାବରେ ନିର୍ମାଣ କରିଛି ଯେ ଏହି ଅମିତପ୍ରଭାଶାଳୀ କାଳଦଣ୍ଡ କଦାପି ନିଷ୍ଫଳ ହେବ ନାହିଁ ଏବଂ ସମସ୍ତଙ୍କୁ ବିନାଶ କରିପକାଇବ । ୪୪ । ଅତଏବ ହେ ସୌମ୍ୟ ! ତୁମେ ଏହାକୁ ରାବଣର ମସ୍ତକରେ ପ୍ରହାର କର ନାହିଁ । ଏହା ପଡ଼ିଲେ କୌଣସି ପ୍ରାଣୀ ମୁହୂର୍ତ୍ତେ ହେଲେ ଜୀବିତ ରହି ପାରିବ ନାହିଁ । ୪୫ । ଆଉ ଗୋଟିଏ କଥା ହେଉଛି, ଯଦି ଏ କାଳଦଣ୍ଡର ପ୍ରଭାବରେ ରାବଣ ନ ମଲା କିମ୍ବା ମରିଗଲା, ତେବେ ଉଭୟ କ୍ଷେତ୍ରରେ ମୋର କଥା ମିଥ୍ୟା ହୋଇଯିବ । ୪୬ । ଅତଏବ ରାବଣ ଉପରେ ତୁମେ ଏ ଦଣ୍ଡ ପ୍ରହାର କର ନାହିଁ ଏବଂ ତୁମେ ଯଦି ଏ ତ୍ରିଭୁବନକୁ ରକ୍ଷା କରିବାକୁ ଚାହୁଁଛ, ତେବେ ମୋ କଥାକୁ ସତ୍ୟ ପ୍ରତିପାଦିତ କର" । ୪୭ । ବ୍ରହ୍ମାଙ୍କର ଏ କଥା ଶୁଣି ଧର୍ମାତ୍ମା ଯମରାଜ ଉତ୍ତର ଦେଲେ, "ଆପଣହିଁ ମୋର ପ୍ରଭୁ ଅଟନ୍ତି । ସୁତରାଂ ଆପଣଙ୍କ ଆଜ୍ଞାରେ ମୁଁ ଏ ଦଣ୍ଡକୁ ପ୍ରତ୍ୟାହାର କରୁଅଛି । ୪୮ । କିନ୍ତୁ ଆପଣ କହନ୍ତୁ, ବର୍ତ୍ତମାନ ଏ ଯୁଦ୍ଧରେ ମୁଁ କ'ଣ କରିବି । କାରଣ ଆପଣଙ୍କ ବରଦାନରୁ ଏ ରାକ୍ଷସ ଅବଧ ହୋଇଅଛି ।୪୯ ।

**ଏଷ ତସ୍ମାତ୍ ପ୍ରଣଶ୍ୟାମି ଦର୍ଶନାଦସ୍ୟ ରକ୍ଷସଃ ।**
**ଇତ୍ୟୁକ୍ତ୍ୱା ସରଥଃ ସାଶ୍ୱସ୍ତତ୍ରୈବାନ୍ତରଧୀୟତ । ୫୦ ।**
**ଦଶଗ୍ରୀବସ୍ତୁ ତଂ ଜିତ୍ୱା ନାମ ବିଶ୍ରାବ୍ୟ ଚାତ୍ମନଃ ।**
**ଆରୁହ୍ୟ ପୁଷ୍ପକଂ ଭୂୟୋ ନିଷ୍କ୍ରାନ୍ତୋ ଯମସାଦନାତ୍ । ୫୧ ।**
**ସ ତୁ ବୈବସ୍ୱତୋ ଦେବୈଃ ସହ ବ୍ରହ୍ମପୁରୋଗମୈଃ ।**
**ଜଗାମ ତ୍ରିଦିବଂ ହୃଷ୍ଟୋ ନାରଦଶ୍ଚ ମହାମୁନିଃ । ୫୨ ।**

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ଯମଜୟୋ ନାମ ଦ୍ୱାବିଂଶଃ ସର୍ଗଃ ।

---

# ତ୍ରୟୋବିଂଶଃ ସର୍ଗଃ

## ବରୁଣଜୟଃ

**ତତୋ ଜିତ୍ୱା ଦଶଗ୍ରୀବୋ ଯମଂ ତ୍ରିଦଶପୁଙ୍ଗବମ୍ ।**
**ରାବଣସ୍ତୁ ରଣଶ୍ଳାଘୀ ସ୍ୱସହାୟାନ୍ ଦଦର୍ଶ ହ । ୧ ।**
**ତତୋ ରୁଧିରସିକ୍ତାଙ୍ଗଂ ପ୍ରହାରୈର୍ଜର୍ଜରୀକୃତମ୍ ।**
**ରାବଣଂ ରାକ୍ଷସା ଦୃଷ୍ଟ୍ୱା ବିସ୍ମୟଂ ସମୁପାଗମନ୍ । ୨ ।**

---

ଅତଏବ ଏ ରାକ୍ଷସର ଦୃଷ୍ଟିସମ୍ମୁଖରୁ ମୁଁ ଅଦୃଶ୍ୟ ହୋଇଯାଉଛି ।" ଏହା କହି ଯମରାଜ ରଥ ଏବଂ ଅଶ୍ୱ ସହିତ ସେହିଠାରେ ଅନ୍ତର୍ଦ୍ଧାନ ହୋଇଗଲେ । ୫୦ । ତା ପରେ ରାବଣ ଏହି ପ୍ରକାର ଯମରାଜଙ୍କୁ ଜିଣି ଏବଂ ଆପଣା ନାମ ଘୋଷଣା କରି ପୁଷ୍ପକ ବିମାନରେ ବସି ଯମପୁରରୁ ବାହାରିପଡ଼ିଲା । ୫୧ । ତଦନନ୍ତର ଯମରାଜ ମଧ୍ୟ ବ୍ରହ୍ମାଦି ଦେବତାମାନଙ୍କ ସହିତ ସ୍ୱର୍ଗକୁ ଚାଲିଗଲେ ଏବଂ ମହାମୁନି ନାରଦ ମଧ୍ୟ ହର୍ଷିତ ହୋଇ ସେମାନଙ୍କ ସଙ୍ଗରେ ଗଲେ । ୫୨ ।

---

## ୨୩ଶ ସର୍ଗ

### ( ବରୁଣବିଜୟ )

ସମରରେ ସମ୍ମାନ ପାଇଥିବା ରାବଣ ଦେବଶ୍ରେଷ୍ଠ ଯମରାଜଙ୍କୁ ପରାସ୍ତ କରି ନିଜର ସହାୟକମାନଙ୍କୁ ଆସି ଦେଖାଦେଲା । ୧ । ତାହାର ସହାୟକ ରାକ୍ଷସମାନେ ତାକୁ ଶସ୍ତ୍ର ପ୍ରହାରରେ ଜର୍ଜରିତ ଏବଂ ରକ୍ତସ୍ନାତ ଦେଖି ଅତ୍ୟନ୍ତ ବିସ୍ମିତ ହେଲେ ।୨।

ଜୟେନ ବର୍ଦ୍ଧୟିତ୍ୱା ଚ ମାରୀଚପ୍ରମୁଖାସ୍ତତଃ ।
ପୁଷ୍ପକଂ ଭେଜିରେ ସର୍ବେ ସାନ୍ତ୍ୱିତା ରାବଣେନ ତୁ । ୩ ।
ତତୋ ରସାତଳଂ ଗଚ୍ଛନ୍ ପ୍ରବିଷ୍ଟଃ ପୟସାଂ ନିଧିମ୍ ।
ଦୈତ୍ୟୋରଗଗଣାଧ୍ୟୁଷ୍ଟଂ ବରୁଣେନ ସୁରକ୍ଷିତମ୍ । ୪ ।
ସ ତୁ ଭୋଗବତୀଂ ଗତ୍ୱା ପୁରୀଂ ବାସୁକିପାଳିତାମ୍ ।
କୃତ୍ୱା ନାଗାନ୍ ବଶେ ହୃଷ୍ଟୋ ଯଯୌ ମଣିମୟୀଂ ପୁରୀମ୍ । ୫ ।
ନିବାତକବଚାସ୍ତତ୍ର ଦୈତ୍ୟା ଲବ୍ଧବରା ବସନ୍ ।
ରାକ୍ଷସସ୍ତାନ୍ ସମାଗମ୍ୟ ଯୁଦ୍ଧାୟ ସମୁପାହ୍ୱୟତ୍ । ୬ ।
ତେ ତୁ ସର୍ବେ ସୁବିକ୍ରାନ୍ତା ଦୈତେୟା ବଲଶାଲିନଃ ।
ନାନାପ୍ରହରଣାସ୍ତତ୍ର ପ୍ରହୃଷ୍ଟା ଯୁଦ୍ଧଦୁର୍ମଦାଃ । ୭ ।
ଶୂଳୈସ୍ତ୍ରିଶୂଳୈଃ କୁଳିଶୈଃ ପଟ୍ଟସାସିପରଶ୍ୱଧୈଃ ।
ଅନ୍ୟୋଽନ୍ୟଂ ବିଭିଦୁଃ କ୍ରୁଦ୍ଧା ରାକ୍ଷସା ଦାନବାସ୍ତଥା । ୮ ।
ତେଷାଂ ତୁ ଯୁଧ୍ୟମାନାନାଂ ସାଗ୍ରଃ ସଂବତ୍ସରୋ ଗତଃ ।
ନ ଚାନ୍ୟତରୟୋସ୍ତତ୍ର ବିଜୟୋ ବା କ୍ଷୟୋଽପି ବା । ୯ ।

---

'ମହାରାଜଙ୍କର ଜୟ ହେଉ' କହି ମାରୀଚ ଆଦି ରାକ୍ଷସମାନେ ପୁଷ୍ପକ ବିମାନରେ ଚଢ଼ିଲେ । ତା ପରେ ରାବଣ ସେମାନଙ୍କୁ ସାନ୍ତ୍ୱନା ଦେଲା । ୩। ତଦନନ୍ତର ରାବଣ ସମୁଦ୍ରରେ ପ୍ରବେଶ କରି ଦୈତ୍ୟ ଓ ସର୍ପମାନେ ରହୁଥିବା ରସାତଳକୁ ଗଲା । ବରୁଣ-ଦେବ ସେ ସ୍ଥାନ ରକ୍ଷା କରୁଥିଲେ । ୪ । ସେ ବାସୁକିଙ୍କ ଶାସିତ ଭୋଗବତୀପୁରୀକୁ ଯାଇ ନାଗମାନଙ୍କୁ ଜୟ କରି ନିଜର ବଶ କଲା । ତଦନନ୍ତର ରାବଣ ଆନନ୍ଦିତ ହୋଇ ମଣିମୟୀ ପୁରୀକୁ ଗଲା । ୫ । ବରଦାନ ପାଇ ସେଠାରେ ବାସ କରୁଥିବା ନିବାତ-କବଚ ଦୈତ୍ୟମାନଙ୍କୁ ରାବଣ ମଧ୍ୟ ଯୁଦ୍ଧ ପାଇଁ ଆହ୍ୱାନ କଲା । ୬ । ସେ ଦୈତ୍ୟମାନେ ମଧ୍ୟ ବଡ଼ ପରାକ୍ରମୀ, ବଳବନ୍ତ, ଦୁର୍ମଦ ଏବଂ ବିବିଧ ପ୍ରକାର ଅସ୍ତ୍ରଶସ୍ତ୍ର ଚଳାଇବାରେ ନିପୁଣ ଥିଲେ; ଅତଏବ ଯୁଦ୍ଧର ନାମ ଶୁଣି ସେମାନେ ହର୍ଷିତ ହେଲେ । ୭ । ଶୂଳ, ତ୍ରିଶୂଳ, ବଜ୍ର, ପଟ୍ଟିଶ, ତଲବାର ଆଦି ଧରି ରାକ୍ଷସ ଓ ଦାନବମାନେ ପରସ୍ପରକୁ ଭେଦ କରିବାକୁ ଲାଗିଲେ । ୮ । ସେହି ଦୈତ୍ୟମାନେ ରାବଣ ସହିତ ଲଢ଼ିବାରେ ବର୍ଷକରୁ ଅଧିକ କାଳ ବିତିଗଲା, ତଥାପି ଉଭୟ ପକ୍ଷର ହାରିଜିତ୍ ହେଲା ନାହିଁ ।୯। ଅନନ୍ତର ତ୍ରିଭୁବନପତି ଅବିନାଶୀ ଲୋକପିତାମହ ବ୍ରହ୍ମା

ତତଃ ପିତାମହସ୍ତତ୍ର ତ୍ରୈଲୋକ୍ୟଗତିରବ୍ୟୟଃ ।
ଆଜଗାମ ଦ୍ରୁତଂ ଦେବୋ ବିମାନବରମାସ୍ଥିତଃ । ୧୦ ।
ନିବାତକବଚାନାଂ ତୁ ନିବାର୍ଯ୍ୟ ରଣକର୍ମ ତତ୍ ।
ବୃଦ୍ଧଃ ପିତାମହୋ ବାକ୍ୟମୁବାଚ ବିଦିତାର୍ଥବତ୍ । ୧୧ ।
ନ ହ୍ୟୟଂ ରାବଣୋ ଯୁଦ୍ଧେ ଶକ୍ୟୋ ଜେତୁଂ ସୁରାସୁରୈଃ ।
ନ ଭବନ୍ତଃ କ୍ଷୟଂ ନେତୁମପି ସାମରଦାନବୈଃ । ୧୨ ।
ରାକ୍ଷସସ୍ୟ ସଖିତ୍ୱଂ ଚ ଭବଦ୍ଭିଃ ସହ ରୋଚତେ ।
ଅବିଭକ୍ତାଶ୍ଚ ସର୍ବାର୍ଥାଃ ସୁହୃଦାଂ ନାତ୍ର ସଂଶୟଃ । ୧୩ ।
ତତୋଽଗ୍ନି ସାକ୍ଷିକଂ ସଖ୍ୟଂ କୃତବାଂସ୍ତତ୍ର ରାବଣଃ ।
ନିବାତକବଚୈଃ ସାର୍ଧଂ ପ୍ରୀତିମାନଭବତ୍ତଦା । ୧୪ ।
ଅର୍ଚିତସ୍ତୈର୍ଯଥାନ୍ୟାୟଂ ସଂବତ୍ସରମଥୋଷିତଃ ।
ସ୍ୱପୁରାନ୍ନିର୍ବିଶେଷଂ ଚ ପ୍ରିୟଂ ପ୍ରାପ୍ତୋ ଦଶାନନଃ । ୧୫ ।
ତତ୍ରୋପଧାର୍ଯ ମାୟାନାଂ ଶତମେକଂ ସମାପ୍ତବାନ୍ ।
ସଲିଲେନ୍ଦ୍ରପୁରାନ୍ୱେଷୀ ଭ୍ରମତି ସ୍ମ ରସାତଲମ୍ । ୧୬ ।
ତତୋଽଶ୍ମନଗରଂ ନାମ କାଲକେୟୈରଧିଷ୍ଠିତମ୍ ।
ଗତ୍ୱା ତୁ କାଲକେୟାଂଶ୍ଚ ହତ୍ୱା ତତ୍ର ବଲୋତ୍କଟାନ୍ । ୧୭ ।

---

ବିମାନରେ ବସି ଅତି ଶୀଘ୍ର ସେଠାରେ ଆସି ପହଞ୍ଚିଲେ । ୧୦ । ଯୁଦ୍ଧରେ ପ୍ରବୃତ୍ତ ହୋଇଥିବା ନିବାତକବଚମାନଙ୍କୁ ସେ ଯୁଦ୍ଧକର୍ମରୁ ନିବୃତ୍ତ କରାଇ ସ୍ପଷ୍ଟ ବାକ୍ୟରେ କହିଲେ ।୧୧। "ଏହି ରାବଣକୁ ଯୁଦ୍ଧରେ ସୁର ବା ଅସୁର କେହି ଜିଣି ପାରିବେ ନାହିଁ ଏବଂ ତୁମ୍ଭମାନଙ୍କୁ ମଧ୍ୟ ଦେବତା ଦାନବ କେହି ମାରିପାରିବେ ନାହିଁ ।୧୨। ଅତଏବ ମୁଁ ଚାହୁଁଛି ଯେ ତୁମ୍ଭମାନଙ୍କର ରାବଣ ସହିତ ମୈତ୍ରୀ ହେଉ । ମିତ୍ରଙ୍କର ସମସ୍ତ ପଦାର୍ଥ ପରସ୍ପରର ହୋଇଥାଏ, ଏଥିରେ କୌଣସି ସନ୍ଦେହ ନାହିଁ" । ୧୩ । ତଦନନ୍ତର ରାବଣ ଅଗ୍ନିକୁ ସାକ୍ଷୀ କରି ନିବାତକବଚମାନଙ୍କ ସହିତ ମୈତ୍ରୀ କରି ଅତ୍ୟନ୍ତ ପ୍ରସନ୍ନ ହେଲା ।୧୪। ସେତିକିବେଳେ ନିବାତକବଚମାନେ ରାବଣର ଯଥୋଚିତ ସତ୍କାର କଲେ । ରାବଣ ସେଠାରେ ବର୍ଷେକାଳ ରହିଲା । ସେଠାରେ ସେ ଖୁବ ସମ୍ମାନ ସତ୍କାର ପାଇଲା ଏବଂ ନିଜ ରାଜଧାନୀଠାରୁ ମଧ୍ୟ ଅଧିକ ସୁଖ ଲାଭ କରି ରହିଲା । ୧୫ । ସେଠାରେ ରହି ରାବଣ ନିବାତକବଚମାନଙ୍କଠାରୁ ଶହେ ପ୍ରକାର ମାୟା ଶିଖିଲା । ତା ପରେ ସେ ରସାତଳରେ ଭ୍ରମି ବରୁଣଙ୍କ ନଗରକୁ ଖୋଜି ବୁଲିଲା । ୧୬ । ବୁଲି ବୁଲି ରାବଣ କାଳକେୟ ଦୈତ୍ୟମାନଙ୍କର ଅଶ୍ମ ନଗରରେ ଯାଇ ପହଞ୍ଚିଲା । କାଳକେୟମାନେ ବଡ଼ ବଳବାନ୍ ଥିଲେ; କିନ୍ତୁ ରାବଣ ସେମାନଙ୍କୁ ଯୁଦ୍ଧରେ ମାରି

ଶୂର୍ପଣଖ୍ୟାଶ୍ଚ ଭର୍ତାରମସିନା ପ୍ରାଚ୍ଛିନତ୍ତଦା ।
ଶ୍ୟାଳଂ ଚ ବଲବନ୍ତଂ ଚ ବିଦ୍ୟୁଜ୍ଜିହ୍ୱଂ ବଲୋତ୍କଟମ୍ । ୧୮ ।
ଜିହ୍ୱୟା ସଂଲିହନ୍ତଂ ଚ ରାକ୍ଷସଂ ସମରେ ତଥା ।
ତଂ ବିଜିତ୍ୟ ମୁହୂର୍ତେନ ଜଘ୍ନେ ଦୈତ୍ୟାଂଶ୍ଚତୁଃଶତମ୍ । ୧୯ ।
ତତଃ ପାଣ୍ଡୁରମେଘାଭଂ କୈଳାସମିବ ଭାସ୍ୱରମ୍ ।
ବରୁଣସ୍ୟାଲୟଂ ଦିବ୍ୟମପଶ୍ୟଦ୍ରାକ୍ଷସାଧିପଃ । ୨୦ ।
କ୍ଷରନ୍ତୀଂ ଚ ପୟସ୍ତତ୍ର ସୁରଭିଂ ଗାମବସ୍ଥିତାମ୍ ।
ଯସ୍ୟାଃ ପୟୋଽଭିନିଷ୍ୟନ୍ଦାତ୍ କ୍ଷୀରୋଦୋ ନାମ ସାଗରଃ ।୨୧।
ଦଦର୍ଶ ରାବଣସ୍ତତ୍ର ଗୋବୃଷେନ୍ଦ୍ରବରାରଣିମ୍ ।
ଯସ୍ମାଚ୍ଚନ୍ଦ୍ରଃ ପ୍ରଭବତି ଶୀତରଶ୍ମିର୍ନିଶାକରଃ । ୨୨ ।
ଯଂ ସମାଶ୍ରିତ୍ୟ ଜୀବନ୍ତି ଫେନପାଃ ପରମର୍ଷୟଃ ।
ଅମୃତଂ ଯତ୍ର ଚୋତ୍ପନ୍ନଂ ସ୍ୱଧା ଚ ସ୍ୱଧଭୋଜିନାମ୍ । ୨୩ ।
ଯାଂ ବ୍ରୁବନ୍ତି ନରା ଲୋକେ ସୁରଭିଂ ନାମ ନାମତଃ ।

---

ଶୁଆଇଦେଲା । ୧୭ । ସେହି ଯୁଦ୍ଧରେ ନିଜର ଭଣୋଇ ସୂର୍ପଣଖାର ପତି ବଳବାନ୍ ବିଦ୍ୟୁଜିହ୍ୱକୁ ସେ ତରବାରରେ କାଟି ପକାଇଲା । ୧୮ । ସେହି ବିଦ୍ୟୁଜିହ୍ୱ ରାବଣର ମନ୍ତ୍ରୀମାନଙ୍କୁ ଖାଇବାକୁ ଯାଉଁଥିଲା । ରାବଣ ତାକୁ ମାରିସାରି ମୁହୂର୍ତ୍ତକ ମଧ୍ୟରେ ଆଉ ଚାରିଶହ ଦୈତ୍ୟଙ୍କୁ ମାରିପକାଇଲା । ୧୯ । ତଦନନ୍ତର ରାକ୍ଷସରାଜ ରାବଣ କୈଳାସ ପର୍ବତ ଶିଖରପରି ଚକଚକ୍ୟଶାଳୀ ଏବଂ ଶ୍ୱେତମେଘ ସଦୃଶ ଧବଳବର୍ଣ୍ଣ ବରୁଣଙ୍କ ଦିବ୍ୟ ଭବନକୁ ଦେଖିଲା । ୨୦ । ରାବଣ ସେଠାରେ ସୁରଭି ଗାଈକୁ ରହିଥିବାର ଦେଖିଲା । ତାର ସ୍ତନରୁ ସର୍ବଦା ଦୁଗ୍ଧଧାର ବହୁଥାଏ ଏବଂ ସେହି ଦୁଗ୍ଧଧାର ଦ୍ୱାରାହିଁ ସାଗରର କ୍ଷୀରୋଦ ନାମ ହୋଇଅଛି । ୨୧ । ସେହି ସୁରଭି ମହା ବୃଷଭେନ୍ଦ୍ର ଶିବଙ୍କର ଷଣ୍ଢମାନଙ୍କର ମାତା ଅଟନ୍ତି ଏବଂ ତାଙ୍କର ଦୁଗ୍ଧରୁ ଉତ୍ପନ୍ନ କ୍ଷୀରସାଗରରୁ ଶୀତଳ କିରଣଦାନକାରୀ ଚନ୍ଦ୍ରମା ଉତ୍ପନ୍ନ ହୋଇଛନ୍ତି । ୨୨ । ଏହାର ସାହାଯ୍ୟରେ ଫେନପାୟୀ ମହର୍ଷିମାନେ ଜୀଇଁ ରହିଥାନ୍ତି । ଏଇଥିରୁ ଅମୃତ ଏବଂ ସ୍ୱଧାଭୋଜୀ ପିତୃମାନଙ୍କର ସ୍ୱଧା ମଧ୍ୟ ଉତ୍ପନ୍ନ ହୋଇଅଛି । ୨୩ ।

ପ୍ରଦକ୍ଷିଣଂ ତୁ ତାଂ କୃତ୍ୱା ରାବଣଃ ପରମାଦ୍ଭୁତାମ୍ ।
ପ୍ରବବେଶ ମହାଘୋରଂ ଗୁପ୍ତଂ ବହୁବଧୈର୍ବଲୈଃ । ୨୪ ।
ତୋୟଧାରାଶତାକୀର୍ଣଂ ଶାରଦାଭ୍ରନିଭଂ ତଦା ।
ନିତ୍ୟପ୍ରହୃଷ୍ଟଂ ଦଦୃଶେ ବରୁଣସ୍ୟ ଗୃହୋତ୍ତମମ୍ । ୨୫ ।
ତତୋ ହତ୍ୱା ବଲାଧ୍ୟକ୍ଷାନ୍ ସମରେ ତୈଶ୍ଚ ତାଡ଼ିତଃ ।
ଅବ୍ରବୀତ ତତୋ ଯୋଧାନ୍ ରାଜା ଶୀଘ୍ରଂ ନିବେଦ୍ୟତାମ୍ । ୨୬ ।
ଯୁଦ୍ଧାର୍ଥୀ ରାବଣଃ ପ୍ରାପ୍ତସ୍ତସ୍ୟ ଯୁଦ୍ଧଂ ପ୍ରଦୀୟତାମ୍ ।
ବଦ ବା ନ ଭୟଂ ତେଽସ୍ତି ନିର୍ଜିତୋଽସ୍ମୀତି ସାଞ୍ଜଳିଃ । ୨୭ ।
ଏତସ୍ମିନ୍ନନ୍ତରେ କ୍ରୁଦ୍ଧା ବରୁଣସ୍ୟ ମହାତ୍ମନଃ ।
ପୁତ୍ରାଃ ପୌତ୍ରାଶ୍ଚ ନିଷ୍କ୍ରାମନ୍ ଗୌଶ୍ଚ ପୁଷ୍କର ଏବ ଚ । ୨୮ ।
ତେ ତୁ ବୀର୍ଯଗୁଣୋପେତା ବଲୈଃ ପରିବୃତାଃ ସ୍ୱକୈଃ ।
ଯୁକ୍ତ୍ୱା ରଥାନ୍ କାମଗମାନୁଦ୍ୟଦ୍ଭାସ୍କରବର୍ଚସଃ । ୨୯ ।
ତତୋ ଯୁଦ୍ଧଂ ସମଭବଦ୍ଦାରୁଣଂ ରୋମହର୍ଷଣମ୍ ।
ସଲିଲେନ୍ଦ୍ରସ୍ୟ ପୁତ୍ରାଣାଂ ରାବଣସ୍ୟ ଚ ଧୀମତଃ । ୩୦ ।

---

ଏହାକୁ ଲୋକେ ସୁରଭି ବୋଲି କହନ୍ତି । ହେ ରାମ ଅଦ୍ଭୁତ ସୁରଭିଙ୍କୁ ପ୍ରଦକ୍ଷିଣ କରି ରାବଣ ବରୁଣଙ୍କ ଶ୍ରେଷ୍ଠ ଭବନରେ ପ୍ରବେଶ କଲା । ତାହା ବହୁବିଧ ସୈନିକମାନଙ୍କ ଦ୍ୱାରା ସୁରକ୍ଷିତ ହୋଇଥିଲା ଏବଂ ଅତିଭୟଙ୍କର ହୋଇଥିଲା । ୨୪ । ବରୁଣଙ୍କର ଉତ୍ତମ ଭବନ ଶତଧାରାରେ ସୁଶୋଭିତ ଶରତ୍‌କାଳୀନ ମେଘପରି ଶୁକ୍ଳ ଏବଂ ସଦା ହସ ହସ ଦେଖାଯାଉଥିଲା । ୨୫ । ସେଠାରେ ପହଞ୍ଚିବା ପରେ ବରୁଣଙ୍କ ସେନାପତିମାନେ ଯେତେବେଳେ ରାବଣକୁ ତାଡ଼ିଲେ, ସେତେବେଳେ ରାବଣ ସେମାନଙ୍କ ସହିତ ଲଢ଼ି ସେମାନଙ୍କୁ ମାରିପକାଇଲା । ତା ପରେ ସେ ଅବଶିଷ୍ଟ ସୈନିକମାନଙ୍କୁ କହିଲା, "ତୁମେ ଶୀଘ୍ର ଯାଇ ନିଜର ରାଜାଙ୍କୁ ଜଣାଅ ଯେ ରାବଣ ତୁମ ସହିତ ଲଢ଼ିବା ପାଇଁ ଏଠାକୁ ଆସିଛି । ହୁଏ ତ ତୁମେ ଆସି ତା ସହିତ ଲଢ଼ କିମ୍ବା ହାତଯୋଡ଼ି ତାକୁ କହ ଯେ ମୁଁ ହାରିଗଲି । ଏପରି କଲେ ତୁମର କୌଣସି ପ୍ରକାର ଭୟ ରହିବ ନାହିଁ । ୨୬-୨୭ । ଇତିମଧ୍ୟରେ ବରୁଣଙ୍କ ପୁତ୍ର ଓ ପୌତ୍ରମାନେ ଅତିଶୟ କ୍ରୋଧାନ୍ୱିତ ହୋଇ ରାବଣ ସହିତ ଲଢ଼ିବାକୁ ବାହାରିଲେ । ସେମାନଙ୍କ ସଙ୍ଗରେ ଗୌ ଏବଂ ପୁଷ୍କର ନାମକ ଦୁଇ ସେନାପତି ମଧ୍ୟ ଗଲେ । ୨୮ । ସେମାନେ ବଡ଼ ଗୁଣୀ ଥିଲେ । ସେମାନେ ନିଜର ସେନାଙ୍କୁ ସଙ୍ଗରେ ଧରି ଉଦୟକାଳୀନ ସୂର୍ଯ୍ୟସଦୃଶ ପ୍ରଭାବାନ୍ ତଥା ମନଃ ସଦୃଶ ବେଗବାନ୍ ରଥରେ ଚଢ଼ି ଆସିଲେ । ୨୯ । ତଦନନ୍ତର ବୁଦ୍ଧିମାନ୍ ରାବଣ ଏବଂ ଜଳରାଜ ବରୁଣଙ୍କ ପୁତ୍ରମାନଙ୍କ ମଧ୍ୟରେ ଅତି ଦାରୁଣ

ଅମାତ୍ୟୈସ୍ତୁ ମହାବୀର୍ଯ୍ୟୈର୍ଦଶଗ୍ରୀବସ୍ୟ ରକ୍ଷସଃ ।
ବାରୁଣଂ ତଦ୍ ବଳଂ କୃତ୍ସ୍ନଂ କ୍ଷଣେନ ବିନିପାତିତମ୍ । ୩୧ ।
ସମୀକ୍ଷ୍ୟ ସ୍ୱବଳଂ ସଂଖ୍ୟେ ବରୁଣସ୍ୟ ସୁତାସ୍ତଦା ।
ଅର୍ଦ୍ଦିତାଃ ଶରଜାଳେନ ନିବୃତ୍ତା ରଣକର୍ମଣଃ । ୩୨ ।
ମହୀତଳଗତାସ୍ତେ ତୁ ରାବଣଂ ଦୃଶ୍ୟ ପୁଷ୍ପକେ ।
ଆକାଶମାଶୁ ବିବିଶୁଃ ସ୍ୟନ୍ଦନୈଃ ଶୀଘ୍ରଗାମିଭିଃ । ୩୩ ।
ମହଦାସୀତ୍ତତସ୍ତେଷାଂ ତୁଲ୍ୟସ୍ଥାନମବାପ୍ୟ ତତ୍ ।
ଆକାଶଯୁଦ୍ଧଂ ତୁମୁଳଂ ଦେବଦାନବୟୋରିବ । ୩୪ ।
ତତସ୍ତେ ରାବଣଂ ଯୁଦ୍ଧେ ଶରୈଃ ପାବକସଂନିଭୈଃ ।
ବିମୁଖୀକୃତ୍ୟ ସଂତୁଷ୍ଟା ବିନେଦୁର୍ବିବିଧାନ୍ ରବାନ୍ । ୩୫ ।
ତତୋ ମହୋଦରଃ କ୍ରୁଦ୍ଧୋ ରାଜାନଂ ଦୃଶ୍ୟ ଧର୍ଷିତମ୍ ।
ତ୍ୟକ୍ତ୍ୱା ମୃତ୍ୟୁଭୟଂ ବୀରୋ ଯୁଦ୍ଧକାଙ୍କ୍ଷୀ ବ୍ୟଲୋକୟତ୍ । ୩୬ ।
ତେନ ତେ ବାରୁଣା ଯୁଦ୍ଧେ କାମଗାଃ ପବନୋପମାଃ ।
ମହୋଦରେଣ ଗଦୟା ହତା ବୈ ପ୍ରୟଯୁଃ କ୍ଷିତିମ୍ । ୩୭ ।

---

ଓ ଲୋମହର୍ଷଣକାରୀ ଯୁଦ୍ଧ ହେବାକୁ ଲାଗିଲା । ୩୦ । ରାକ୍ଷସ ରାବଣର ମହାବୀର୍ଯ୍ୟବାନ୍ ମନ୍ତ୍ରୀମାନେ ଜଳରାଜ ବରୁଣଙ୍କ ସମସ୍ତ ସେନାଙ୍କୁ କ୍ଷଣକ ମଧ୍ୟରେ ନଷ୍ଟ କରିଦେଲେ । ୩୧ । ବରୁଣଙ୍କ ପୁତ୍ରମାନେ ନିଜ ସେନାର ବିନାଶ ଦେଖି ଏବଂ ସ୍ୱୟଂ ବାଣରେ ପୀଡ଼ିତ ହୋଇ କିଛିକାଳ ପାଇଁ ଯୁଦ୍ଧ ବନ୍ଦ କରିଦେଲେ । ୩୨ । ପୁଣି ରାବଣ ପୁଷ୍ପକରେ ବସିଥିବା ଏବଂ ନିଜେ ଭୂମି ଉପରେ ରହି ଲଢ଼ୁଥିବାରୁ ବରୁଣଙ୍କ ପୁତ୍ର ଯୋଦ୍ଧାମାନେ ଶୀଘ୍ରଗାମୀ ରଥମାନଙ୍କରେ ଚଢ଼ିକରି ଆକାଶରେ ଯାଇ ପହଞ୍ଚିଲେ । ୩୩ । ଏବେ ମୁହାଁମୁହିଁ ହୋଇ ଲଢ଼ିବାକୁ ଉପଯୁକ୍ତ ସ୍ଥାନ ମିଳିଲା । ପୂର୍ବେ ଦେବାସୁର ସଂଗ୍ରାମ ପରି ସେମାନଙ୍କର ଆକାଶରେ ଘୋର ଯୁଦ୍ଧ ଆରମ୍ଭ ହେଲା । ୩୪ । ବରୁଣଙ୍କ ପୁତ୍ରମାନେ ଅଗ୍ନିତୁଲ୍ୟ ବାଣ ମାରି ରାବଣକୁ ସଂଗ୍ରାମରେ ବିମୁଖ କରିଦେଲେ । ରାବଣକୁ ଯୁଦ୍ଧରେ ବିମୁଖ ଦେଖି ସେମାନେ ବିବିଧ ପ୍ରକାର ହର୍ଷନାଦ କରିବାକୁ ଲାଗିଲେ । ୩୫ । ନିଜ ରାଜାର ଏପରି ଅପମାନ ଦେଖି ମହୋଦର ଅତିଶୟ କ୍ରୁଦ୍ଧ ହୋଇ ମୃତ୍ୟୁକୁ ଭୟ ନ କରି ଯୁଦ୍ଧ କରିବା ପାଇଁ ସେମାନଙ୍କ ଆଡ଼କୁ ଚାହିଁଲା । ୩୬ । ମହୋଦର ଯୁଦ୍ଧରେ ପବନ ସଦୃଶ ବେଗରେ ଗତି କରୁଥିବା ବରୁଣଙ୍କ ପୁତ୍ରମାନଙ୍କୁ ଗଦାରେ ପ୍ରହାର କରି ଭୂମିରେ ଶୁଆଇଦେଲା । ୩୭ ।

ତେଷାଂ ବରୁଣପୁତ୍ରାଣାଂ ହତ୍ୱା ଯୋଧାନ୍ ହୟାନ୍ ଶତାନ୍।
মুমোଚ ମହାନାଦଂ ବିରଥାନ୍ ପ୍ରେକ୍ଷ୍ୟ ତାନ୍ ସ୍ଥିତାନ୍ ।୩୮।
ତେ ତୁ ତେଷାଂ ରଥାଃ ସାଶ୍ୱାଃ ସହ ସାରଥିଭିର୍ହତୈଃ ।
ମହୋଦରେଣ ନିହତାଃ ପତିତାଃ ପୃଥିବୀତଳେ । ୩୯ ।
ତେ ତୁ ତ୍ୟକ୍ତ୍ୱା ରଥାନ୍ ପୁତ୍ରା ବରୁଣସ୍ୟ ମହାତ୍ମନଃ ।
ଆକାଶେ ବିଷ୍ଠିତା ଶୂରାଃ ସ୍ୱପ୍ରଭାବାନ୍ନ ବିବ୍ୟଥୁଃ । ୪୦ ।
ଧନୂଂଷି କୃତ୍ୱା ସଜ୍ଜାନି ବିନିର୍ଭିଦ୍ୟ ମହୋଦରମ୍ ।
ରାବଣଂ ସମରେ କ୍ରୁଦ୍ଧାଃ ସହିତାଃ ସମଭିଦ୍ରବନ୍ । ୪୧ ।
ସାୟକୈଶ୍ଚାପବିଭ୍ରଷ୍ଟୈର୍ବଜ୍ରକଳ୍ପୈଃ ସୁଦାରୁଣୈଃ ।
ଦାରୟନ୍ତି ସ୍ମ ସଂକ୍ରୁଦ୍ଧା ମେଘା ଇବ ମହାଗିରିମ୍ ।୪୨।
ତତଃ କ୍ରୁଦ୍ଧୋ ଦଶଗ୍ରୀବଃ କାଳାଗ୍ନିରିବ ନିର୍ଗତଃ ।
ଶରବର୍ଷୈର୍ମହାଘୋରୈସ୍ତେଷାଂ ମର୍ମସ୍ୱତାଡ଼ୟତ୍ । ୪୩ ।
ତତସ୍ତେନୈବ ସହସା ସୀଦନ୍ତି ସ୍ମ ପଦାତୟଃ ।
ମୁଷଲାନି ବିଚିତ୍ରାଣି ତତୋ ଭଲ୍ଲଶତାନି ଚ ।
ପଟ୍ଟିସାଂଶ୍ଚୈବ ଶକ୍ତୀଶ୍ଚ ଶତଘ୍ନୀସ୍ତୋମରାଂସ୍ତଥା ।
ପାତୟାମାସ ଦୁର୍ଦ୍ଧର୍ଷସ୍ତେଷାମୁପରି ବିଷ୍ଠିତଃ । ୪୪ ।

---

ବରୁଣଙ୍କ ପୁତ୍ରମାନଙ୍କ ସୈନିକମାନଙ୍କୁ ଓ ଘୋଡ଼ାମାନଙ୍କ ମାରି ଏବଂ ସେମାନେ ବିନା ରଥରେ ତଳେ ଠିଆ ହୋଇଥିବାର ଦେଖି ମହୋଦର ହର୍ଷନାଦ କଲା । ୩୮ । ମହୋଦରର ଗଦାପ୍ରହାରରେ ସେମାନଙ୍କ ଘୋଡ଼ା ଏବଂ ରଥର ସାରଥିମାନେ ମରି ଭୂମିରେ ପଡ଼ିଗଲେ । ୩୯ । ମହାତ୍ମା ବରୁଣଙ୍କ ପୌତ୍ରମାନେ ରଥହୀନ ହୋଇଗଲେ ମଧ୍ୟ ନିଜର ପ୍ରଭାବରେ ଆକାଶରେହିଁ ରହିଲେ ଏବଂ କିଛିମାତ୍ର ବ୍ୟଥା ଅନୁଭବ କଲେ ନାହିଁ ।୪୦। ସେମାନେ ନିଜ ନିଜର ଧନୁରେ ଗୁଣ ଚଢ଼ାଇ ମହୋଦରକୁ ବାଣରେ କ୍ଷତ ବିକ୍ଷତ କରିପକାଇଲେ ଏବଂ ରାବଣ ଆଡ଼କୁ ଧାଇଁଲେ ।୪୧ । ସେମାନେ କ୍ରୋଧରେ ଜର୍ଜର ହୋଇ ବଜ୍ର ସମାନ ବାଣମାନଙ୍କ ଦ୍ୱାରା ରାବଣକୁ, ମେଘ ଜଳବିନ୍ଦୁ ଦ୍ୱାରା ବିଶାଳ ପର୍ବତକୁ ଭେଦକଲାପରି, ଭେଦି ପକାଇଲେ । ୪୨ । ତତ୍ପରେ ରାବଣ ମଧ୍ୟ କାଳାଗ୍ନି ସଦୃଶ କ୍ରୋଧଯୁକ୍ତ ହୋଇ ଶରବର୍ଷା କରି ସେମାନଙ୍କ ମର୍ମସ୍ଥଳକୁ ପ୍ରହାର କଲା । ୪୩ । ଦୁର୍ଦ୍ଧର୍ଷ ରାବଣ ବିବିଧ ପ୍ରକାର ମୁଷଳ, ଶହ ଶହ ଭଲ୍ଲକା, ପଟ୍ଟିଶ, ଶକ୍ତି, ଶତଘ୍ନୀ ଓ ତୋମରମାନ ବରୁଣଙ୍କ ପୁତ୍ର ପୌତ୍ରାଦିଙ୍କ ଉପରେ ଚଳାଇବାକୁ ଲାଗିଲା । ସେମାନେ ରଥହୀନ ଥିଲେ ;

 

ଅପବଦ୍ଧାସ୍ତୁ ତେ ବୀର୍ ବନଷ୍ଟେତୁଃ ପଦାତୟଃ ।
ମହାପଙ୍କମିବାସାଦ୍ୟ କୁଞ୍ଜରାଃ ଷଷ୍ଟିହାୟନାଃ । ୪୫ ।
ସୀଦମାନାନ୍ ସୁତାନ୍ ଦୃଷ୍ଟ୍ୱା ବହ୍ୱଲାନ୍ ସୁମହୌଜସଃ ।
ନନାଦ ରାବଣୋ ହର୍ଷାନ୍ମହାନମ୍ବୁଧରୋ ଯଥା । ୪୬ ।
ତତୋ ରକ୍ଷୋ ମହାନାଦାନ୍ ମୁକ୍ତ୍ୱା ହନ୍ତି ସ୍ମ ବାରୁଣାନ୍ ।
ନାନାପ୍ରହରଣୋପେତୈର୍ଧାରାପାତୈରିବାମ୍ବୁଦଃ । ୪୭ ।
ତତସ୍ତେ ବିମୁଖାଃ ସର୍ବେ ପତିତା ଧରଣୀତଳେ ।
ରଣାତ୍ ସ୍ୱପୁରୁଷୈଃ ଶୀଘ୍ରଂ ଗୃହାଣ୍ୟେବ ପ୍ରବେଶିତାଃ । ୪୮ ।
ତାନବ୍ରବୀତ୍ତତୋ ରକ୍ଷୋ ବରୁଣାୟ ନିବେଦ୍ୟତାମ୍ ।
ରାବଣଂ ତ୍ୱବ୍ରବୀନ୍ମନ୍ତ୍ରୀ ପ୍ରଭାସୋ ନାମ ବାରୁଣଃ । ୪୯ ।
ଗତଃ ଖଲୁ ମହାରାଜୋ ବ୍ରହ୍ମଲୋକଂ ଜଲେଶ୍ୱରଃ ।
ଗାନ୍ଧର୍ବଂ ବରୁଣଃ ଶ୍ରୋତୁଂ ଯଂ ତ୍ୱମାହ୍ୱୟସେ ଯୁଧି । ୫୦ ।
ତତ୍ କିଂ ତବ ବୃଥା ବୀର ପରିଶ୍ରମ୍ୟ ଗତେ ନୃପେ ।
ଯେ ତୁ ସନ୍ନିହିତା ବୀରାଃ କୁମାରାସ୍ତେ ପରାଜିତାଃ । ୫୧ ।

---

ଏଣୁ ସେମାନେ ଏ ଶସ୍ତ୍ରପ୍ରହାରରେ, ଷାଠିଏ ବର୍ଷର ବୁଢ଼ାହାଣ୍ଡି ପଙ୍କରେ ଲାଖିଯାଇ ଦୁଃଖୀ ହେଲାପରି ଦୁଃଖୀ ହେଲେ । ୪୪-୪୫ । ଅନନ୍ତର ମହାବଳବାନ୍ ରାବଣ ବରୁଣଙ୍କ ପୁତ୍ରମାନଙ୍କୁ ବିହ୍ୱଳ ଓ ପୀଡ଼ିତ ଦେଖି ଆନନ୍ଦିତ ହୋଇ ମହାମେଘ ସଦୃଶ ଖୁବ ଯୋରରେ ଗର୍ଜନ କଲା । ୪୬ । ତଦନନ୍ତର ରାବଣ ବାରମ୍ବାର ଗର୍ଜନ କରି ଜଳଧାରା ବୃଷ୍ଟି କରୁଥିବା ମେଘ ସଦୃଶ ଅନେକ ପ୍ରକାର ଅସ୍ତ୍ରଶସ୍ତ୍ର ବର୍ଷାକରି ବରୁଣଙ୍କ ପୁତ୍ରମାନଙ୍କୁ ମାରିବାକୁ ଲାଗିଲା । ୪୭ । ଶେଷରେ ବରୁଣଙ୍କ ପୁତ୍ରମାନେ ଯୁଦ୍ଧ ଛାଡ଼ି ପୃଥିବୀ ଉପରେ ପଡ଼ିଗଲେ । ସେମାନଙ୍କ ନିଜ ଲୋକମାନେ ଶୀଘ୍ର ସେମାନଙ୍କୁ ଉଠାଇ ନେଇ ଘରେ ପହଞ୍ଚାଇଦେଲେ । ୪୮ । ଅନନ୍ତର ରାକ୍ଷସ ରାବଣ ସେମାନଙ୍କୁ କହିଲା ଯେ ବରୁଣଙ୍କୁ ଯାଇ ଜଣାଅ । ସେତେବେଳେ ପ୍ରଭାସ ନାମକ ବରୁଣଙ୍କ ମନ୍ତ୍ରୀ ରାବଣକୁ କହିଲେ ।୪୯ । "ହେ ରାକ୍ଷସରାଜ ! ତୁମେ ଯାହାଙ୍କୁ ଯୁଦ୍ଧ କରିବାକୁ ଆହ୍ୱାନ କରୁଛ ସେ ଜଳେଶ୍ୱର ମହାରାଜ ବରୁଣ ଗାନ ଶୁଣିବା ପାଇଁ ବ୍ରହ୍ମଲୋକକୁ ଯାଇଛନ୍ତି । ୫୦ । ହେ ବୀର ! ଯେଉଁ ବୀର ଯୋଦ୍ଧା କୁମାରମାନେ ପାଖରେ ଥିଲେ ତାଙ୍କୁ ତ ତୁମେ ପରାସ୍ତ କରି ସାରିଛ, ଏବେ ମହାରାଜ ବରୁଣ ଏଠାରେ ନାହାନ୍ତି, ତୁମେ କାହିଁକି ବୃଥା ପରିଶ୍ରମ କରୁଛ" । ୫୧ । ଅନନ୍ତର ରାକ୍ଷସାଧିପତି ରାବଣ

ରାଷପେନ୍ଦ୍ରସ୍ତୁ ତଚ୍ଛ୍ରୁତ୍ୱା ନାମ ବିଶ୍ରାବ୍ୟ ଚାତ୍ମନଃ ।
ହର୍ଷାନ୍ନାଦଂ ବିମୁଞ୍ଚନ୍ ବୈ ନିଷ୍କ୍ରାନ୍ତୋ ବରୁଣାଲୟାତ୍ । ୫୨ ।
ଆଗତସ୍ତୁ ପଥା ଯେନ ତେନୈବ ବିନିବୃତ୍ୟ ସଃ ।
ଲଙ୍କାମଭିମୁଖୋ ରକ୍ଷୋ ନଭଃସ୍ଥଲଗତୋ ଯଯୌ । ୫୩ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ବରୁଣଜୟୋ ନାମ ତ୍ରୟୋବିଂଶଃ ସର୍ଗଃ ।

---

## ଚତୁର୍ବିଂଶଃ ସର୍ଗଃ

### ଖରଶୂର୍ପଣଖାଦଣ୍ଡକାନିବାସାଦେଶଃ

ନିବର୍ତମାନଃ ସଂହୃଷ୍ଟୋ ରାବଣଃ ସୁଦୁରାତ୍ମବାନ୍ ।
ଜହ୍ରେ ପଥି ନରେନ୍ଦ୍ରର୍ଷିଦେବଗନ୍ଧର୍ବକନ୍ୟକାଃ । ୧ ।
ଦର୍ଶନୀୟାଂ ହି ଯାଂ ରକ୍ଷଃ କନ୍ୟାଂ ସ୍ତ୍ରୀଂ ବାଥ ପଶ୍ୟତି ।
ହତ୍ୱା ବନ୍ଧୁଜନଂ ତସ୍ୟା ବିମାନେ ତାଂ ରୁରୋଧ ହ । ୨ ।

---

ନିଜର ବିଜୟ ଘୋଷଣା କରି ଏବଂ ହର୍ଷନାଦ କରି ବରୁଣଭବନରୁ ବାହାରିଲା । ୫୨ । ରାବଣ ଯେଉଁ ମାର୍ଗରେ ଆସିଥିଲା, ସେହି ମାର୍ଗରେ ଫେରିଯାଇ ଆକାଶରେ ପୁଷ୍ପକ ବିମାନରେ ଉଡ଼ି ଚାଲିଗଲା । ୫୩ ।

---

## ୨୪ଶ ସର୍ଗ

### (ରାବଣର ଖର ଓ ସୂର୍ପଣଖାଙ୍କ ପ୍ରତି ଦଣ୍ଡକାରଣ୍ୟବାସ ଆଦେଶ)

ରାବଣ ଫେରିବା ବେଳେ ଆନନ୍ଦରେ ବିହ୍ୱଳ ହୋଇ ବାଟରେ ରାଜର୍ଷି, ଦେବତା ଏବଂ ଦାନବମାନଙ୍କର କନ୍ୟାମାନଙ୍କୁ ହରଣ କଲା । ୧ । ସେ ଦୁଷ୍ଟ ଯେ କୌଣସି ସୁନ୍ଦରୀ କନ୍ୟା ବା ବିବାହିତା ସ୍ତ୍ରୀକୁ ବାଟରେ ଦେଖୁଥିଲା ସେମାନଙ୍କ ବନ୍ଧୁଜନମାନଙ୍କୁ ମାରି, ସେମାନଙ୍କୁ ହରଣ କରି ଆପଣା ବିମାନରେ ଆଣି

ଏବଂ ପନ୍ନଗକନ୍ୟାଶ୍ଚ ରାକ୍ଷସାସୁରମାନୁଷୀଃ ।
ଯକ୍ଷଦାନବକନ୍ୟାଶ୍ଚ ବିମାନେ ସୋଽଧ୍ୟରୋପୟତ୍ । ୩ ।
ତାଶ୍ଚ ସର୍ବାଃ ସମଂ ଦୁଃଖାନ୍ମୁମୁଚୁର୍ବାଷ୍ପଜଂ ଜଲମ୍ ।
ତୁଲ୍ୟମଗ୍ନ୍ୟର୍ଚିଷାଂ ତତ୍ର ଶୋକାଗ୍ନିଭୟସଂଭବମ୍ । ୪ ।
ତାଭିଃ ସର୍ବାନବଦ୍ୟାଭିର୍ନଦୀଭିରିବ ସାଗରଃ ।
ଆପୂରିତଂ ବିମାନଂ ତଦ୍ଭୟଶୋକାଶିବାଶ୍ରୁଭିଃ । ୫ ।
ନାଗଗନ୍ଧର୍ବକନ୍ୟାଶ୍ଚ ମହର୍ଷିତନୟାଶ୍ଚ ଯାଃ ।
ଦୈତ୍ୟଦାନବକନ୍ୟାଶ୍ଚ ବିମାନେ ଶତଶୋଽରୁଦନ୍ । ୬ ।
ଦୀର୍ଘକେଶ୍ୟଃ ସୁଚାର୍ବଙ୍ଗ୍ୟଃ ପୂର୍ଣ୍ଣଚନ୍ଦ୍ରନିଭାନନାଃ ।
ପୀନସ୍ତନ୍ୟସ୍ତଥା ବଜ୍ରବେଦିମଧ୍ୟସମପ୍ରଭାଃ । ୭ ।
ରଥକୂବରସଂକାଶୈଃ ଶ୍ରୋଣିଦେଶୈର୍ମନୋହରାଃ ।
ସ୍ତ୍ରିୟଃ ସୁରାଙ୍ଗନାପ୍ରଖ୍ୟା ନିଷ୍ଟପ୍ତକନକପ୍ରଭାଃ । ୮ ।
ଶୋକଦୁଃଖଭୟତ୍ରସ୍ତା ବିହ୍ୱଲାଶ୍ଚ ସୁମଧ୍ୟମାଃ ।
ତାସାଂ ନିଃଶ୍ୱାସବାତେନ ସର୍ବତଃ ସଂପ୍ରଦୀପିତମ୍ । ୯ ।

---

ଅବରୋଧ କରୁଥିଲା । ୨ । ଏହି ପ୍ରକାରେ ରାବଣ ରାକ୍ଷସକନ୍ୟା, ଅସୁରକନ୍ୟା, ମନୁଷ୍ୟକନ୍ୟା, ପନ୍ନଗକନ୍ୟା ଓ ଯକ୍ଷକନ୍ୟାମାନଙ୍କୁ ଆପଣା ବିମାନରେ ବସାଇ ନେଇଗଲା । ୩ । ସେହି କନ୍ୟାମାନେ ବଡ ଦୁଃଖିତ ହୋଇ ରହିଥିଲେ । ସେମାନେ ଶୋକାର୍ତ୍ତ ହୋଇ ଏକା ସାଙ୍ଗରେ ଶୋକାଗ୍ନି ଏବଂ ଭୟାଶ୍ରୁ ବିସର୍ଜନ କରିବାକୁ ଲାଗିଲେ । ସେମାନଙ୍କ ସେହି ଅଶ୍ରୁ ଅଗ୍ନିଜ୍ୱାଳା ସଦୃଶ ଉଷ୍ଣ ଥିଲା । ୪ । ସେହି ସବୁ ଅତିସୁନ୍ଦରୀ ଲଳନାମାନଙ୍କ ଦ୍ୱାରା ସେହି ବିମାନ ନଦୀମାନଙ୍କ ଜଳରେ ସମୁଦ୍ର ପୂର୍ଣ୍ଣ ହୋଇଥିଲାପରି ପୂରିଯାଇଥିଲା । ସେମାନେ ସମସ୍ତେ ଭୟ ଓ ଦୁଃଖରେ ଅମଙ୍ଗଳ ଅଶ୍ରୁ ଗଡ଼ାଉଥିଲେ । ୫ । ସେହି ବିମାନରେ ନାଗ, ଗନ୍ଧର୍ବ, ମହର୍ଷି, ଦୈତ୍ୟ ଏବଂ ଦାନବମାନଙ୍କର ଶତ ଶତ କନ୍ୟା ରୋଦନ କରୁଥିଲେ । ୬ । ସେମାନଙ୍କ କେଶ ଲମ୍ବିତ, ଅଙ୍ଗ ସୁଗଠିତ ଓ ମୁଖ ପୂର୍ଣ୍ଣଚନ୍ଦ୍ରସଦୃଶ ଥିଲା । ସେମାନଙ୍କର ସ୍ତନ ପୃଥୁଳ ଓ ମଧ୍ୟଭାଗ ହୀରକ ବେଦୀ ସଦୃଶ ଉଜ୍ଜ୍ୱଳ ହୋଇଥିଲା । ୭ । ରଥର ଯୁଆଳପରି ସେମାନଙ୍କ କଟିଦେଶ କ୍ଷୀଣ ଥିଲା । ସେମାନେ ଅତି ସୁନ୍ଦରୀ ଥିଲେ ଓ ତପ୍ତସୁବର୍ଣ୍ଣ ପରି ସେମାନଙ୍କ ଶରୀରର କାନ୍ତି ଥିଲା ।୮। ସେହି କ୍ଷୀଣକଟିଯୁକ୍ତ ସୁନ୍ଦରୀ ଲଳନାମାନେ ଶୋକ ଏବଂ ଭୟରେ ବିହ୍ୱଳ ହୋଇପଡିଥିଲେ । ସେମାନଙ୍କ ନିଶ୍ୱାସର ପବନରେ ସେହି ବିମାନ

ଅଗ୍ନିହୋତ୍ରମିବାଭାତି ସଂନିରୁଦ୍ଧାଗ୍ନି ପୁଷ୍ପକମ୍ ।
ଦଶଗ୍ରୀବବଶଂ ପ୍ରାପ୍ତାସ୍ତାସ୍ତୁ ଶୋକାକୁଳାଃ ସ୍ତ୍ରିୟଃ । ୧୦ ।
ଦୀନବକ୍ତ୍ରେକ୍ଷଣାଃ ଶ୍ୟାମା ମୃଗ୍ୟଃ ସିଂହବଶା ଇବ ।
କାଚିଚ୍ଚିନ୍ତୟତୀ ତତ୍ର କିଂ ନୁ ମାଂ ଭକ୍ଷୟିଷ୍ୟତି । ୧୧ ।
କାଚିଦ୍ଦଧ୍ୟୌ ସୁଦୁଃଖାର୍ତ୍ତା ଅପି ମାଂ ମାରୟେଦୟମ୍ ।
ଇତି ମାତୃପିତୄନ୍ ସ୍ମୃତ୍ୱା ଭର୍ତ୍ତୄନ୍ ଭ୍ରାତୄଂସ୍ତଥୈବ ଚ । ୧୨ ।
ଦୁଃଖଶୋକସମାବିଷ୍ଟା ବିଲେପୁଃ ସହିତାଃ ସ୍ତ୍ରିୟଃ ।
କଥଂ ନୁ ଖଲୁ ମେ ପୁତ୍ରୋ ଭବିଷ୍ୟତି ମୟା ବିନା । ୧୩ ।
ମାତା କଥଂ କଥଂ ଭ୍ରାତା ନିମଗ୍ନାଃ ଶୋକସାଗରେ ।
ହା କଥଂ ନୁ କରିଷ୍ୟାମି ଭର୍ତ୍ତୁସ୍ତସ୍ମାଦହଂ ବିନା । ୧୪ ।
ମୃତ୍ୟୋ ପ୍ରସାଦୟାମି ତ୍ୱାଂ ନୟ ମାଂ ଦୁଃଖଭାଗିନୀମ୍ ।
କିଂ ନୁ ତଦ୍ଦୁଷ୍କୃତଂ କର୍ମ ପୂର୍ବଂ ଦେହାନ୍ତରେ କୃତମ୍ । ୧୫ ।
ଏବଂ ସ୍ମ ଦୁଃଖିତାଃ ସର୍ବାଃ ପତିତାଃ ଶୋକସାଗରେ ।
ନ ଖଲ୍ୱିଦାନୀଂ ପଶ୍ୟାମୋ ଦୁଃଖସ୍ୟାସ୍ୟାନ୍ତମାତ୍ମନଃ । ୧୬ ।

---

ପ୍ରଦୀପ୍ତ ହୋଇ ଉଠିଥିଲା । ୯ । ଜଣାପାଉଥିଲା ଯେପରି କି ସେଥିରେ ଅଗ୍ନିହୋତ୍ର ଯଜ୍ଞ ହେଉଅଛି । ଦୁଷ୍ଟ ରାବଣର ବନ୍ଧନରେ ପଡ଼ି ସେହି ଶୋକାକୁଳା ଲଳନା-ମାନଙ୍କର ମୁଖ ମଳିନ ଏବଂ ଚକ୍ଷୁ ଶୋକାକୁଳ ହୋଇଯାଇଥିଲା । ସିଂହ କବଳରେ ପଡ଼ିଥିବା ମୃଗୀ ପରି ସେମାନେ ବ୍ୟଥିତ ହୋଇ ରହିଥିଲେ । ସେମାନଙ୍କ ଭିତରେ କେହି କେହି "ଏ ଆମକୁ ନିଶ୍ଚୟ ଖାଇଦେବ" ବୋଲି ଭୟ କରି ଅତି ବ୍ୟସ୍ତ ହୋଇ ଯାଇଥିଲେ । ୧୦-୧୧ । ସେମାନଙ୍କ ଭିତରେ କେହି କେହି ଦୁଃଖାର୍ତ୍ତ ହୋଇ ଶୋଚନା କରୁଥିଲେ ଯେ କାଳେ ଏ ଆମମାନଙ୍କୁ ମାରିଦେବ । ଏହି ପ୍ରକାରେ ସେମାନେ ନିଜ ନିଜ ମାତା, ପିତା, ସ୍ୱାମୀ, ଭ୍ରାତା ପ୍ରଭୃତିଙ୍କୁ ସ୍ମରଣ କରୁଥିଲେ ।୧୨। ଦୁଃଖ ଏବଂ ଶୋକରେ ପୂର୍ଣ୍ଣ ହୋଇ ସେମାନେ ସମସ୍ତେ ବିଳାପ କରୁଥିଲେ । କିଏ କହୁଥିଲା 'ମୋ ବିନା ମୋର ପୁଅ କିପରି ଜୀବିତ ରହିବ' । ୧୩ । କିଏ କହୁଥିଲା 'ମୋର ଭାଇ ଓ ମା ଶୋକସାଗରରେ ନିମଗ୍ନ ହେବେ' । କିଏ କହୁଥିଲା, 'ହାୟ ! ମୁଁ ମୋର ପତି ବିନା କଅଣ କରିବି । ୧୪ । ଅତଏବ ହେ ମୃତ୍ୟୁଦେବ ! ମୁଁ ତୁମକୁ ପ୍ରାର୍ଥନା କରୁଛି, ତୁମେ ଏ ଦୁଃଖିନୀକୁ ନେଇଯାଅ । ହାୟ ! ମୁଁ ପୂର୍ବ ଜନ୍ମରେ କି ପାପକର୍ମ କରିଥିଲି । ୧୫ । ଆମ୍ଭେମାନେ ଏପରି ଦୁଃଖିତ ହୋଇ ଶୋକସାଗରରେ ପଡ଼ିଛୁ । ଏ ଦୁଃଖର ଅନ୍ତ କେଉଁଠାରେ ତାହା ଆମକୁ ଦେଖାଯାଉ ନାହିଁ । ୧୬ ।

ଅହୋ ଧିଙ୍ମାନୁଷଂ ଲୋକଂ ନାସ୍ତି ଖଲ୍ୱଧମଃ ପରଃ ।
ଯଦ୍ଧୁର୍ବଲା ବଲବତା ଭର୍ତ୍ତାରୋ ରାବଣେନ ନଃ । ୧୭ ।
ସୂର୍ଯ୍ୟୋଦୟେ ତା କାଲେ ନକ୍ଷତ୍ରାଣୀବ ନାଶିତାଃ ।
ଅହୋ ସୁବଲବଦ୍ରକ୍ଷୋ ବଧୋପାୟେଷୁ ଯୁଜ୍ୟତେ । ୧୮ ।
ଅହୋ ଦୁର୍ବୃତ୍ତମାତ୍ମାୟଂ ନାତ୍ମାନଂ ବୈ ଜୁଗୁପ୍ସତେ ।
ସର୍ବଥା ସଦୃଶସ୍ତାବଦ୍‌ବିକ୍ରମୋଽସ୍ୟ ଦୁରାତ୍ମନଃ । ୧୯ ।
ଇଦଂ ତ୍ୱସଦୃଶଂ କର୍ମ ପରଦାରାଭିମର୍ଶନମ୍ ।
ଯସ୍ମାଦେଷ ପରକନ୍ୟାସୁ ରମତେ ରାକ୍ଷସାଧମଃ । ୨୦ ।
ତସ୍ମାଦ୍ ବୈ ସ୍ତ୍ରୀକୃତେନୈବ ପ୍ରାପ୍ସ୍ୟତେ ଦୁର୍ମତିର୍ବଧମ୍ ।
ସତୀଭିର୍ବରନାରୀଭିରେବଂ ବାକ୍ୟେଽଭ୍ୟୁଦୀରିତେ । ୨୧ ।
ନେଦୁର୍ଦୁନ୍ଦୁଭୟଃ ଖସ୍ଥାଃ ପୁଷ୍ପବୃଷ୍ଟିଃ ପପାତ ଚ ।
ଶପ୍ତଃ ସ୍ତ୍ରୀଭିଃ ସ ତୁ ସମଂ ହତୌଜା ଇବ ନିଷ୍ପ୍ରଭଃ । ୨୨ ।
ପତିବ୍ରତାଭିଃ ସାଧ୍ୱୀଭିର୍ବଭୂବ ବିମନା ଇବ ।
ଏବଂ ବିଲପିତଂ ତାସାଂ ଶୃଣ୍ୱନ୍ ରାକ୍ଷସପୁଙ୍ଗବଃ ।

---

ହାୟ ! ଏ ମନୁଷ୍ୟଲୋକକୁ ଧିକ୍‌କାର ! କାରଣ ଏପରି ଅଧମ ଲୋକ ଆଉ ଅନ୍ୟତ୍ର ନାହିଁ, ଯେଉଁଠାରେ କି ଆମର ଦୁର୍ବଳ ପତିମାନଙ୍କୁ ଏହି ବଳବାନ୍ ରାବଣ ଏପରି ନଷ୍ଟ କରିଦେଇଛି । ସୂର୍ଯ୍ୟୋଦୟ ହେଲେ ତାରାଗଣ ନଷ୍ଟ ହେଲାପରି ଆମର ପତିମାନଙ୍କୁ ଏ ନଷ୍ଟ କରିଅଛି । ଏ ରାକ୍ଷସ ବଡ଼ ବଳବାନ୍ ଅଟେ, ସେଥିପାଇଁ ସେ ଖାଲି ମାରିବାରେହିଁ ଆନନ୍ଦ ପାଉଅଛି । ୧୭-୧୮ । ଏହି କାମୀ ଏପରି ଦୁରାଚାରରେ ରତ ରହି ମଧ୍ୟ ନିଜକୁ ନିନ୍ଦିତ ବୋଲି ବିଚାରୁ ନାହିଁ । ସେ ଯେପରି ଦୁଷ୍ଟ ସେହିପରି ପରାକ୍ରମୀ ଅଟେ । ୧୯ । ପରସ୍ତ୍ରୀରମଣ ଅତି ଅପକର୍ମ ଅଟେ । ଏ ରାକ୍ଷସାଧମ ପରସ୍ତ୍ରୀଙ୍କଠାରେ ପ୍ରୀତି କରୁଅଛି ଏବଂ ସେମାନଙ୍କ ସହିତ ରମଣ କରିବାକୁ ଇଚ୍ଛା କରୁଅଛି । ୨୦ । ସୁତରାଂ ଏ ଦୁର୍ମତି ପରସ୍ତ୍ରୀ ନିମନ୍ତେହିଁ ମରିବ" । ସେହି ପତିବ୍ରତା ସ୍ତ୍ରୀମାନଙ୍କ ମୁଖରୁ ଏପରି ବଚନ ନିର୍ଗତ ହେବାମାତ୍ରେ ଆକାଶରେ ଦେବଦୁନ୍ଦୁଭି ବାଜିଲା ଓ ପୁଷ୍ପବୃଷ୍ଟି ହେଲା । ସ୍ତ୍ରୀମାନଙ୍କର ଏ ଶାପରୁ ରାବଣର ପରାକ୍ରମ ନଷ୍ଟ ହୋଇଗଲା ଏବଂ ତାର ପ୍ରଭା କ୍ଷୀଣ ପଡ଼ିଗଲା । ୨୧-୨୨ । ସେହି ପତିବ୍ରତା ଏବଂ ସାଧ୍ୱୀ ସ୍ତ୍ରୀମାନଙ୍କର ଶାପ ଶୁଣି ରାବଣ ବିରସ ହୋଇଗଲା । ରାବଣ ଏହି ପ୍ରକାରେ ସେହି ସ୍ତ୍ରୀମାନଙ୍କର ବିଳାପ ଶୁଣି ଶୁଣି ଓ ନିଶାଚରମାନଙ୍କ ଦ୍ୱାରା ଅଭିନନ୍ଦିତ ହୋଇ ଲଙ୍କାନଗରୀରେ ଯାଇ

ପ୍ରବିବେଶ ପୁରୀଂ ଲଙ୍କାଂ ପୂଜ୍ୟମାନୋ ନିଶାଚରୈଃ । ୨୩ ।
ଏତସ୍ମିନ୍ନନ୍ତରେ ଘୋରା ରାକ୍ଷସୀ କାମରୂପିଣୀ ।
ସହସା ପତିତା ଭୂମୌ ଭଗିନୀ ରାବଣସ୍ୟସା । ୨୪ ।
ତାଂ ସ୍ୱସାରଂ ସମୁତ୍ଥାପ୍ୟ ରାବଣଃ ପରିସାନ୍ତ୍ୱୟନ୍ । ୨୫ ।
ଅବ୍ରବୀତ୍ କିମିଦଂ ଭଦ୍ରେ ବକ୍ତୁକାମାସି ମେ ଦ୍ରୁତମ୍ ।
ସବାଷ୍ପପରିରୁଦ୍ଧାକ୍ଷୀ ରକ୍ତାକ୍ଷୀ ବାକ୍ୟମବ୍ରବୀତ୍ । ୨୬ ।
କୃତାସ୍ମି ବିଧବା ରାଜଂସ୍ତ୍ୱୟା ବଲବତା ବଲାତ୍ ।
ଏତେ ରାଜଂସ୍ତ୍ୱୟା ବୀର ଦୈତ୍ୟା ବିନିହତା ରଣେ । ୨୭ ।
କାଲକେୟା ଇତି ଖ୍ୟାତାଃ ସହସ୍ରାଣି ଚତୁର୍ଦ୍ଦଶ ।
ପ୍ରାଣେଭ୍ୟୋଽପି ଗରୀୟାନ୍ ମେ ତତ୍ର ଭର୍ତ୍ତା ମହାବଲଃ ।୨୮।
ସୋଽପି ତ୍ୱୟା ହତସ୍ତାତ ରିପୁଣା ଭ୍ରାତୃଗୃଧ୍ନୁନା
ତ୍ୱୟାସ୍ମି ନିହତା ରାଜନ୍ ସ୍ୱୟମେବ ହି ବନ୍ଧୁନା । ୨୯ ।
ରାଜନ୍ ବୈଧବ୍ୟଶବ୍ଦଂ ଚ ଭୋକ୍ଷ୍ୟାମି ତ୍ୱତ୍କୃତେ ହ୍ୟହମ୍ ।
ନନୁ ନାମ ତ୍ୱୟା ରକ୍ଷ୍ୟୋ ଜାମାତା ସମରେଷ୍ୱପି । ୩୦ ।

---

ନେଲେ । ୨୩ । ହଠାତ୍ କାମରୂପିଣୀ ଭୟଙ୍କର ରାକ୍ଷସୀ ସୂର୍ପଣଖା ଆସି କେଣେ ହଠାତ୍ କରେ ଭୂଇଁରେ ପଡ଼ିଗଲା । ରାବଣ ଭଉଣୀକୁ ଉଠାଇଲେ ଏବଂ ତାକୁ ସାନ୍ତ୍ୱନା ଦେଇ ପଚାରିଲେ "ହେ ଭଦ୍ରେ ! କଥା କଅଣ, ତୁ ମୋତେ କଅଣ କହିବାକୁ ଚାହୁଁଛୁ ଶୀଘ୍ର କହ" । ରକ୍ତନେତ୍ରା ନିଶାଚରୀ ଚକ୍ଷୁ ଅଶ୍ରୁପୂର୍ଣ୍ଣ କରି କହିଲା । ୨୪-୨୬ । "ହେ ରାଜନ୍ ! ତୁମେ ବଳବାନ୍ ଅଛ, ଅତଏବ ବଳପୂର୍ବକ ତୁମେ ମୋତେ ବିଧବା କରିପକାଇଲ । ତୁମେ ନିଜର ବିକ୍ରମ ପ୍ରଭାବରେ ଯୁଦ୍ଧରେ ଦୈତ୍ୟମାନଙ୍କୁ ସଂହାର କଲ ।୨୭ । ତୁମେ ଚଉଦ ହଜାର କାଳକେୟ ଦୈତ୍ୟଙ୍କୁ ମାରିଦେଲ । ସେମାନଙ୍କ ମଧ୍ୟରେ ମୋର ପ୍ରାଣରୁ ଅଧିକ ପ୍ରିୟ ମହାବଳବାନ୍ ପତି ମଧ୍ୟ ଥିଲେ ।୨୮ । ହେ ଭ୍ରାତ ! ତୁମେ ଭାଇ ହୋଇ ମଧ୍ୟ ତାହାଙ୍କୁ ମାରି ପକାଇଲ । ତାଦ୍ୱାରା କେବଳ ତାଙ୍କୁ କଅଣ, ମୋତେ ମଧ୍ୟ ମାରିପକାଇଲ ।୨୯ । ହେ ରାଜନ୍ ! ଏବେ ତୁମ ଲାଗି ମୋତେ ବୈଧବ୍ୟ ଭୋଗ କରିବାକୁ ପଡ଼ିଲା । ତୁମର ଉଚିତ ଥିଲା ଯେ ଯୁଦ୍ଧରେ ତୁମେ ନିଜର ଭଣଜାଇକୁ ରକ୍ଷା କରିଥାନ୍ତ । ୩୦ । କିନ୍ତୁ ତୁମେ ତାଙ୍କୁ ସ୍ୱୟଂ ମାରି ପକାଇଲ,

ସ ତ୍ୱୟା ନିହତୋ ଯୁଦ୍ଧେ ସ୍ୱୟମେବ ନ ଲଜ୍ଜସେ ।
ଏବମୁକ୍ତୋ ଦଶଗ୍ରୀବୋ ଭଗିନ୍ୟା କ୍ରୋଶମାନୟା । ୩୧ ।
ଅବ୍ରବୀତ୍ ସାନ୍ତ୍ୱୟିତ୍ୱା ତାଂ ସାମପୂର୍ବମିଦଂ ବଚଃ ।
ଅଲଂ ବତ୍ସେ ରୁଦିତ୍ୱା ତେ ନ ଭେତବ୍ୟଂ ଚ ସର୍ବଶଃ । ୩୨ ।
ଦାନମାନପ୍ରସାଦୈସ୍ତ୍ୱାଂ ତୋଷୟିଷ୍ୟାମି ଯତ୍ନତଃ ।
ଯୁଦ୍ଧପ୍ରମତ୍ତୋ ବ୍ୟାକ୍ଷିପ୍ତୋ ଜୟକାଙ୍କ୍ଷୀ କ୍ଷିପନ୍ ଶରାନ୍ । ୩୩ ।
ନାବଗଚ୍ଛାମି ଯୁଦ୍ଧେଷୁ ସ୍ୱାନ୍ ପରାନ୍ ବାପ୍ୟହଂ ଶୁଭେ ।
ଜାମାତରଂ ନ ଜାନେ ସ୍ମ ପ୍ରହରନ୍ ଯୁଦ୍ଧଦୁର୍ମଦଃ । ୩୪ ।
ତେନାସୌ ନିହତଃ ସଂଖ୍ୟେ ମୟା ଭର୍ତ୍ତା ତବ ସ୍ୱସଃ ।
ଅସ୍ମିନ୍ କାଲେ ତୁ ଯତ୍ ପ୍ରାପ୍ତଂ ତତ୍କରିଷ୍ୟାମି ତେ ହିତମ୍ । ୩୫ ।
ଭ୍ରାତୁରୈଶ୍ୱର୍ଯ୍ୟଯୁକ୍ତସ୍ୟ ଖରସ୍ୟ ବସ ପାର୍ଶ୍ୱତଃ ।
ଚତୁର୍ଦଶାନାଂ ଭ୍ରାତା ତେ ସହସ୍ରାଣାଂ ଭବିଷ୍ୟତି । ୩୬ ।
ପ୍ରଭୁଃ ପ୍ରୟାଣେ ଦାନେ ଚ ରାକ୍ଷସାନାଂ ମହାବଲଃ ।
ତତ୍ର ମାତୃଷ୍ୱସେୟସ୍ତେ ଭ୍ରାତାୟଂ ବୈ ଖରଃ ପ୍ରଭୁଃ । ୩୭ ।

---

ତଥାପି ତୁମ୍ଭର ଲଜ୍ଜା ହେଉ ନାହିଁ ?" ଏହି ପ୍ରକାରେ ରୋଦନ ଓ ବିଳାପ କରୁଥିବା ନିଜ ଭଗ୍ନୀର କଥା ଶୁଣି ରାବଣ ତାହାକୁ ସାନ୍ତ୍ୱନା ଦେଇ ନମ୍ରତା ପୂର୍ବକ କହିଲା, "ହେ ବତ୍ସେ ! ତୋର ଆଉ କାନ୍ଦି ଲାଭ ନାହିଁ । ତୋର କୌଣସି କଥାକୁ ଭୟ କରିବା ଆବଶ୍ୟକ ନାହିଁ । ୩୧-୩୨ । ମୁଁ ଦାନ, ମାନ ଏବଂ ଅନୁଗ୍ରହ ଆଦି ଦ୍ୱାରା ଯତ୍ନ ପୂର୍ବକ ତୋତେ ସର୍ବଦା ସନ୍ତୁଷ୍ଟ ରଖିବି । ସେତେବେଳେ ବିଜୟ ଅଭିଳାଷରେ ମୁଁ ଯୁଦ୍ଧ କରୁ କରୁ ଉନ୍ମତ୍ତ ହୋଇଯାଇଥିଲି ଏବଂ ନିରନ୍ତର ବାଣ ନିକ୍ଷେପ କରୁଥିଲି । ୩୩ । ସେହି ଯୁଦ୍ଧରେ ମୁଁ ଆପଣା ପର କାହାରିକୁ ଜାଣି ପାରି ନ ଥିଲି । ମୁଁ ଯୁଦ୍ଧରେ ଉନ୍ମତ୍ତ ହୋଇ ପ୍ରହାର କରିଲାଗିଥିଲି । ୩୪ । ଏହିପରି ଭାବରେ ତୋର ସ୍ୱାମୀ ମୋ ହାତରେ ନିହତ ହୋଇଅଛି । ଯାହା ହୋଇଯିବାର ହୋଇଗଲାଣି । ଏବେ ତୋର ଯାହା ହିତକର ତାହା ମୁଁ ଅବଶ୍ୟ କରିବି । ୩୫ । ଏବେ ତୁ ଆପଣା ଭାଇ ଐଶ୍ୱର୍ଯ୍ୟବାନ୍ ଖର ପାଖରେ ଯାଇ ରହ । ତୋର ମହାବଳୀ ଭାଇ ଖର ଆଜିଠାରୁ ଚଉଦ ହଜାର ରାକ୍ଷସଙ୍କର ଅଧିପତି ହେବ । ୩୬ । ତାର ଅଧିକାର ରହିବ ଯେ ସେ ନିଜ ଅଧୀନସ୍ଥ ରାକ୍ଷସମାନଙ୍କୁ ଯୁଆଡ଼େ ଇଚ୍ଛା ସିଆଡ଼େ ପଠାଇ ପାରିବ ଏବଂ ଯାହାକୁ ଯାହା ଦେବା ଇଚ୍ଛା କରିବ ତାହା ଦେଇ

ଭବିଷ୍ୟତି ତବାଦେଶଂ ସଦା କୁର୍ବନ୍ନିଶାଚରଃ ।
ଶୀଘ୍ରଂ ଗଚ୍ଛତ୍ବୟଂ ବୀରୋ ଦଣ୍ଡକାନ୍ ପରିରକ୍ଷିତୁମ୍ । ୩୮ ।
ଦୂଷଣୋଽସ୍ୟ ବଲାଧ୍ୟକ୍ଷୋ ଭବିଷ୍ୟତି ମହାବଲଃ ।
ତତ୍ର ତେ ବଚନଂ ଶୂରଃ କରିଷ୍ୟତି ସଦା ଖରଃ । ୩୯ ।
ରକ୍ଷସାଂ କାମରୂପାଣାଂ ପ୍ରଭୁରେଷ ଭବିଷ୍ୟତି ।
ଏବମୁକ୍ତ୍ୱା ଦଶଗ୍ରୀବଃ ସୈନ୍ୟମସ୍ୟାଦିଦେଶ ହ । ୪୦ ।
ଚତୁର୍ଦ୍ଦଶସହସ୍ରାଣି ରକ୍ଷସାଂ ବୀର୍ଯ୍ୟଶାଳିନାମ୍ ।
ସ ତୈଃ ପରିବୃତଃ ସର୍ବୈ ରାକ୍ଷସୈର୍ଘୋରଦର୍ଶନୈଃ । ୪୧ ।
ଅଗଚ୍ଛତ ଖରଃ ଶୀଘ୍ରଂ ଦଣ୍ଡକାନକୁତୋଭୟଃ ।
ସ ତତ୍ର କାରୟାମାସ ରାଜ୍ୟଂ ନିହତକଣ୍ଟକମ୍ ।
ସା ଚ ଶୂର୍ପଣଖା ତତ୍ର ନ୍ୟବସଦ୍ଦଣ୍ଡକାବନେ ।୪୨।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ଖରଶୂର୍ପଣଖାଦଣ୍ଡକାବନବାସାଦେଶୋ ନାମ ଚତୁର୍ବିଂଶ ସର୍ଗଃ ।

---

ପାରିବ । ସେହି ଖର ତୋର ମାଉସୀପୁଅ ଭାଇ ଅଟେ । ୩୭ । ସେ ସର୍ବଦା ତୋର ଆଜ୍ଞାରେ ରହିବ । ଏହି ବୀର ଖର ଶୀଘ୍ର ଦଣ୍ଡକାରଣ୍ୟ ରକ୍ଷା କରିବାକୁ ଯାଉ ।୩୮। ମହାବଳୀ ଦୂଷଣ ତାହାର ସେନାପତି ହେବ । ସେଠାରେ ବୀର ଖର ସର୍ବଦା ତୋର ଆଜ୍ଞା ପାଳନ କରିବ ।୩୯। ସେ କାମରୂପୀ ରାକ୍ଷସମାନଙ୍କର ପ୍ରଭୁ ହେବ ।” ଏହା କହି ଦଶଗ୍ରୀବ ଖର ସଙ୍ଗରେ ଯିବାପାଇଁ ସୈନିକ ରାକ୍ଷସମାନଙ୍କୁ ଆଜ୍ଞା ଦେଲା । ୪୦ । ବଳବୀର୍ଯ୍ୟଯୁକ୍ତ ଭୟଙ୍କରରୂପୀ ଚଉଦ ହଜାର ରାକ୍ଷସଙ୍କୁ ସଙ୍ଗରେ ନେଇ ଖର ନିର୍ଭୟଭାବରେ ଶୀଘ୍ର ଯାଇ ଦଣ୍ଡକାରଣ୍ୟରେ ପହଞ୍ଚିଲା ଏବଂ ସେଠାରେ ନିଷ୍କଣ୍ଟକଭାବରେ ରାଜତ୍ୱ କରିବାକୁ ଲାଗିଲା । ଶୂର୍ପଣଖା ମଧ୍ୟ ସେହି ଦଣ୍ଡକାରଣ୍ୟରେ ରହିବାକୁ ଲାଗିଲା । ୪୧-୪୨ ।

# ପଞ୍ଚବିଂଶଃ ସର୍ଗଃ

## ମଧୁବଧବାରଣମ୍

ସ ତୁ ଦତ୍ତ୍ୱା ଦଶଗ୍ରୀବୋ ବନଂ ଘୋରଂ ଖରସ୍ୟ ତତ୍ ।
ଭଗିନୀଂ ଚ ସମାଶ୍ୱାସ୍ୟ ହୃଷ୍ଟଃ ସ୍ୱସ୍ଥତରୋଽଭବତ୍ । ୧ ।
ତତୋ ନିକୁମ୍ଭିଳା ନାମ ଲଙ୍କୋପବନମୁତ୍ତମମ୍ ।
ତଦ୍ରାକ୍ଷସେନ୍ଦ୍ରୋ ବଲବାନ୍ ପ୍ରବିବେଶ ସହାନୁଗଃ । ୨ ।
ତତୋ ଯୂପଶତାକୀର୍ଣ୍ଣଂ ସୌମ୍ୟଚୈତ୍ୟୋପଶୋଭିତମ୍ ।
ଦଦର୍ଶ ବିଷ୍ଠିତଂ ଯଜ୍ଞଂ ଶ୍ରିୟା ସଂପ୍ରଜ୍ୱଳନ୍ନିବ । ୩ ।
ତତଃ କୃଷ୍ଣାଜିନଧରଂ କମଣ୍ଡଲୁଶିଖାଧ୍ୱଜମ୍ ।
ଦଦର୍ଶ ସ୍ୱସୁତଂ ତତ୍ର ମେଘନାଦଂ ଭୟାବହମ୍ । ୪ ।
ତଂ ସମାସାଦ୍ୟ ଲଙ୍କେଶଃ ପରିଷ୍ୱଜ୍ୟାଥ ବାହୁଭିଃ ।
ଅବ୍ରବୀତ୍ କିମିଦଂ ବତ୍ସ ବର୍ତ୍ତସେ ବ୍ରୂହି ତତ୍ତ୍ୱତଃ । ୫ ।
ଉଶନା ତ୍ୱବ୍ରବୀତ୍ତତ୍ର ଯଜ୍ଞସଂପତ୍ସମୃଦ୍ଧୟେ ।
ରାବଣଂ ରାକ୍ଷସଶ୍ରେଷ୍ଠଂ ଦ୍ୱିଜଶ୍ରେଷ୍ଠୋ ମହାତପାଃ । ୬ ।

---

## ୨୫ଶ ସର୍ଗ

### ( କୁମ୍ଭୀନସୀର ମଧୁବଧବାରଣ) )

ଦଶଗ୍ରୀବ ଖରକୁ ଭୀଷଣ ଦଣ୍ଡକାରଣ୍ୟ ପ୍ରଦାନ କରି ଏବଂ ନିଜର ଭଉଣୀକୁ ଆଶ୍ୱାସନା ଦେଇ ଟିକିଏ ନିଶ୍ଚିନ୍ତ ଓ ଆନନ୍ଦିତ ହେଲା । ୧ । ଅନନ୍ତର ରାକ୍ଷସରାଜ ରାବଣ ନିଜର ଅନୁଚରମାନଙ୍କ ସହିତ ନିକୁମ୍ଭିଳା ନାମକ ଲଙ୍କାର ଏକ ଉତ୍ତମ ଉପବନକୁ ଗଲା । ୨ । ସେଠାରେ ସେ ଶତ ଶତ ଯଜ୍ଞସ୍ତମ୍ଭ ଏବଂ ବିବିଧ ପ୍ରକାର ଯଜ୍ଞଶାଳା ଦ୍ୱାରା ସେ ସ୍ଥାନକୁ ଅତ୍ୟନ୍ତ ସୁସଜ୍ଜିତ ଏବଂ ସୁଶୋଭିତ ଥିବା ଦେଖିଲା ।୩। ସେହିଠାରେ ସେ ମୃଗଚର୍ମ ଦ୍ୱାରା ଆଚ୍ଛାଦିତ ଦଣ୍ଡକମଣ୍ଡଳୁଧାରୀ ଭୟଙ୍କର ରୂପଧାରୀ ନିଜର ପୁତ୍ର ମେଘନାଦକୁ ଦେଖିଲା । ୪ । ରାବଣ ତାହା ନିକଟକୁ ଯାଇ ଏବଂ ନିଜର ବାହୁ ଦ୍ୱାରା ତାହାକୁ ଆଲିଙ୍ଗନ କରି କହିଲା, "ହେ ବତ୍ସ ! ତୁ ଏ କଅଣ କରୁଛୁ, ମୋତେ ସମସ୍ତ ବୃତ୍ତାନ୍ତ ଯଥାର୍ଥଭାବରେ କହ" । ୫ । ସେଠାରେ ମହାତପସ୍ୱୀ ଦ୍ୱିଜଶ୍ରେଷ୍ଠ ଶୁକ୍ରାଚାର୍ଯ୍ୟ ଯଜ୍ଞର ସମୃଦ୍ଧି ବଢ଼ାଇବା ଉଦ୍ଦେଶ୍ୟରେ ରାକ୍ଷସରାଜ ରାବଣକୁ କହିଲେ । ୬ । "ହେ ରାଜନ୍ ! ମୁଁ ଆପଣଙ୍କୁ ସବୁ ବୃତ୍ତାନ୍ତ କହୁଛି, ଆପଣ

ଅହମାଖ୍ୟାମି ତେ ରାଜନ୍ ଶ୍ରୂୟତାଂ ସର୍ବମେବ ତତ୍ ।
ଯଜ୍ଞାସ୍ତେ ସପ୍ତ ପୁତ୍ରେଣ ପ୍ରାପ୍ତାଃ ସୁବହୁବିସ୍ତରାଃ । ୭ ।
ଅଗ୍ନିଷ୍ଟୋମୋଽଶ୍ୱମେଧଶ୍ଚ ଯଜ୍ଞୋ ବହୁସୁବର୍ଣକଃ ।
ରାଜସୂୟସ୍ତଥା ଯଜ୍ଞୋ ଗୋମେଧୋ ବୈଷ୍ଣବସ୍ତଥା । ୮ ।
ମାହେଶ୍ୱରେ ପ୍ରବୃତ୍ତେ ତୁ ଯଜ୍ଞେ ପୁଂଭିଃ ସୁଦୁର୍ଲଭେ ।
ବରାଂସ୍ତେ ଲବ୍ଧବାନ୍ ପୁତ୍ରଃ ସାକ୍ଷାତ୍ ପଶୁପତେରିହ । ୯ ।
କାମଗଂ ସ୍ୟନ୍ଦନଂ ଦିବ୍ୟମନ୍ତରିକ୍ଷଚରଂ ଧ୍ରୁବମ୍ ।
ମାୟାଂ ଚ ତାମସୀଂ ନାମ ଯୟା ସଂପଦ୍ୟତେ ତମଃ । ୧୦ ।
ଏତୟା କିଲ ସଂଗ୍ରାମେ ମାୟୟା ରାକ୍ଷସେଶ୍ୱର ।
ପ୍ରଯୁକ୍ତୟା ଗତିଃ ଶକ୍ୟା ନ ହି ଜ୍ଞାତୁଂ ସୁରାସୁରୈଃ । ୧୧ ।
ଅକ୍ଷୟାବିଷୁଧୀ ବାଣୈଶ୍ଚାପଂ ଚାପି ସୁଦୁର୍ଜୟମ୍ ।
ଅସ୍ତ୍ରଂ ଚ ବଲବଦ୍‌ରାଜନ୍ ଶତ୍ରୁବିଧ୍ୱଂସନଂ ରଣେ । ୧୨ ।
ଏତାନ୍ ସର୍ବାନ୍ ବରାଁଲ୍ଲବ୍‌ଧ୍ୱା ପୁତ୍ରସ୍ତେଽୟଂ ଦଶାନନ ।
ଅଦ୍ୟ ଯଜ୍ଞସମାପ୍ତୌ ଚ ତ୍ୱାଂ ଦିଦୃକ୍ଷୁଃ ସ୍ଥିତୋ ହ୍ୟୟମ୍ ।୧୩ ।

---

ଶୁଣନ୍ତୁ । ଆପଣଙ୍କ ପୁତ୍ର ବିଶେଷ ବିସ୍ତାର ସହକାରେ ସାତଗୋଟି ପ୍ରସିଦ୍ଧ ଯଜ୍ଞ ସମାପନ କରିଅଛି । ୭ । ଅଗ୍ନିଷ୍ଟୋମ, ଅଶ୍ୱମେଧ, ବହୁସୁବର୍ଣ୍ଣକ, ରାଜସୂୟ, ଗୋମେଧ ଏବଂ ବୈଷ୍ଣବ ଏହି ଛଅ ଯଜ୍ଞ କରିସାରିବା ପରେ ଓ ପୁରୁଷମାନଙ୍କ ପକ୍ଷରେ ଅତି ଦୁର୍ଲଭ ମାହେଶ୍ୱର ଯଜ୍ଞର ଅନୁଷ୍ଠାନ ହେବା ପରେ ସାକ୍ଷାତ ଶିବଙ୍କଠାରୁ ତୁମ୍ଭର ପୁତ୍ର ବର-ପ୍ରାପ୍ତ ହୋଇଅଛି । ୮-୯ । ସେ ଇଚ୍ଛାଗାମୀ ଓ ଆକାଶରେ ସ୍ଥିର ରହିବାଭଳି ଏକ ଦିବ୍ୟ ରଥ ପାଇଅଛି ଏବଂ ତାମସୀ ନାମକ ଏକ ମାୟା ମଧ୍ୟ ସେ ପାଇଅଛି । ଏ ମାୟା ଦ୍ୱାରା ଅନ୍ଧକାର ଘୋଟିଯାଏ । ୧୦ । ହେ ରାକ୍ଷସେଶ୍ୱର ! ଯେ ଏ ମାୟା ଜାଣେ ତାର ଗତି ଜାଣିବାର ସାମର୍ଥ୍ୟ ଦେବତା ଏବଂ ଅସୁରମାନଙ୍କର ନାହିଁ । ୧୧ । ହେ ରାଜନ୍ ! ଏହାଛଡ଼ା ସଦା ଅକ୍ଷୟ ଦୁଇଟି ତୂଣୀର, ଦୁର୍ଜେୟ ଧନୁ ଶର ତଥା ଯୁଦ୍ଧରେ ଶତ୍ରୁନାଶକାରୀ ଏକ ବଡ଼ ଶକ୍ତିଶାଳୀ ଅସ୍ତ୍ର ମଧ୍ୟ ମିଳିଅଛି ।୧୨। ହେ ଦଶାନନ ! ତୁମ୍ଭର ପୁତ୍ର ଆଜି ଏହି ଯଜ୍ଞର ସମାପ୍ତିରେ ସମସ୍ତ ବର ପାଇଅଛି । ଆଜି ଯଜ୍ଞସମାପ୍ତି ହେବା ପରେ ସେ ତୁମ୍ଭଙ୍କୁ ଦେଖିବାକୁ ଇଚ୍ଛା କରୁଥିଲା” । ୧୩ । ଏହା ଶୁଣି ରାବଣ କହିଲା “ହେ ପୁତ୍ର ! ତୁ

ତତୋଽବ୍ରବୀଦ୍ଦଶଗ୍ରୀବୋ ନ ଶୋଭନମିଦଂ କୃତମ୍ ।
ପଜିତାଃ ଶତ୍ରବୋ ଯସ୍ମାଦ୍ଭବଦ୍ଭିରିନ୍ଦ୍ରପୁରୋଗମାଃ । ୧୪ ।
ଏହ୍ୟୀଦାନୀଂ କୃତଂ ଯଦ୍ଧି ସୁକୃତଂ ତନ୍ନ ସଂଶୟଃ ।
ଆଗଚ୍ଛ ସୌମ୍ୟ ଗଚ୍ଛାମ ସ୍ୱମେବ ଭବନଂ ପ୍ରତି । ୧୫ ।
ତତୋ ଗତ୍ୱା ଦଶଗ୍ରୀବଃ ସପୁତ୍ରଃ ସବିଭୀଷଣଃ ।
ସ୍ତ୍ରିୟୋଽବତାରୟାମାସ ସର୍ବାସ୍ତା ବାଷ୍ପଗଦ୍ଗଦାଃ । ୧୬ ।
ଲକ୍ଷିଣ୍ୟୋ ରତ୍ନଭୂତାଶ୍ଚ ଦେବଦାନବରକ୍ଷସାମ୍ ।
ତସ୍ୟ ତାସୁ ମତଂ ଜ୍ଞାତ୍ୱା ଧର୍ମାତ୍ମା ବାକ୍ୟମବ୍ରବୀତ୍ । ୧୭ ।
ଈଦୃଶୈସ୍ତୈଃ ସମାଚାରୈର୍ଯଶୋଽର୍ଥକୁଲନାଶନୈଃ ।
ଧର୍ଷଣଂ ପ୍ରାଣିନାଂ ଜ୍ଞାତ୍ୱା ସ୍ୱମତେନ ବିଚେଷ୍ଟସେ । ୧୮ ।
ଜ୍ଞାତୀଂସ୍ତାନ୍ ଧର୍ଷୟିତ୍ୱେମାସ୍ତ୍ୱୟାନୀତା ବରାଙ୍ଗନାଃ ।
ତ୍ୱାମତିକ୍ରମ୍ୟ ମଧୁନା ରାଜନ୍ କୁମ୍ଭୀନସୀ ହୃତା । ୧୯ ।
ରାବଣସ୍ତ୍ୱବ୍ରବୀଦ୍ ବାକ୍ୟଂ ନାବଗଚ୍ଛାମି କିଂ ନ୍ୱିଦମ୍ ।
କୋଽୟଂ ଯସ୍ତୁ ତ୍ୱୟାଖ୍ୟାତୋ ମଧୁରିତ୍ୟେବ ନାମତଃ । ୨୦ ।

---

ଏ କାର୍ଯ୍ୟ କରି ଭଲ କରି ନାହୁଁ, କାରଣ ବିବିଧ ଉପଚାରର ଦ୍ୱାରା ତୁ ମୋର ଶତ୍ରୁ ଇନ୍ଦ୍ରାଦି ଦେବତାମାନଙ୍କୁ ପୂଜା କରିଅଛୁ । ୧୪ । ଆଚ୍ଛା, ଯାହା କରିଛୁ ତାହା ଠିକ କରିଛୁ । ଏହା ଯେ ସୁକାର୍ଯ୍ୟ ଏଥିରେ ସନ୍ଦେହ ନାହିଁ; ଆସ, ଏବେ ଆମେ ଆମ ନିଜ ଘରକୁ ଯିବା" । ୧୫ । ଏହା କହି ରାବଣ ନିଜର ପୁତ୍ର ଓ ବିଭୀଷଣଙ୍କୁ ସାଙ୍ଗରେ ଧରି ନିଜ ଘରକୁ ଗଲା ଏବଂ ସେହି ସବୁ ରୋଦନ କରୁଥିବା ନାରୀମାନଙ୍କୁ ବିମାନରୁ ଓହ୍ଲାଇଦେଲା । ୧୬ । ସେହି ସୁଲକ୍ଷଣୀ ଏବଂ ରତ୍ନସ୍ୱରୂପିଣୀ ସ୍ତ୍ରୀମାନେ ଦେବ, ଦାନବ ଓ ରାକ୍ଷସମାନଙ୍କର କନ୍ୟା ଥିଲେ । ସେହି ସ୍ତ୍ରୀମାନଙ୍କ ପ୍ରତି ରାବଣର ଦୁଷ୍ଟ ଅଭିପ୍ରାୟ ଜାଣି ଧର୍ମାତ୍ମା ବିଭୀଷଣ କହିଲେ । ୧୭ । "ହେ ରାଜନ୍! ତୁମେ ଜାଣ ଯେ ଯଶ, ଧନ ଓ କୁଳନାଶକାରୀ ଆଚରଣ ଦ୍ୱାରା ପାପ ହୁଏ, ତଥାପି ତୁମେ ପ୍ରାଣୀମାନଙ୍କୁ କଷ୍ଟଦେବା ନିମନ୍ତେ ନିଜର ମନଇଚ୍ଛା କାର୍ଯ୍ୟ କରୁଛ । ୧୮ । ହେ ରାଜନ୍! ଯେପରି ତୁମେ ଏ ସ୍ତ୍ରୀମାନଙ୍କୁ ସେମାନଙ୍କ ବନ୍ଧୁଜନମାନଙ୍କୁ ଧର୍ଷଣ କରି ହରଣ କରିଅଛ, ସେହିପରି ମଧୁ ତୁମକୁ ଅବଜ୍ଞା କରି ତୁମ୍ଭର ଭଉଣୀ କୁମ୍ଭୀନସୀକୁ ହରଣ କରି ନେଇଅଛି" । ୧୯ । ରାବଣ କହିଲା, "ତୁମେ କଅଣ କହୁଛ ମୁଁ ବୁଝି ପାରୁ ନାହିଁ । ତୁମେ ଯାହାର ନାମ କହିଲ, ସେ ମଧୁ

ବିଭୀଷଣସ୍ତୁ ସଂକ୍ରୁଦ୍ଧୋ ଭ୍ରାତରଂ ବାକ୍ୟମବ୍ରବୀତ୍ ।
ଶ୍ରୂୟତାମସ୍ୟ ପାପସ୍ୟ କର୍ମଣଃ ଫଳମାଗତମ୍ । ୨୧ ।
ମାତାମହସ୍ୟ ଯୋଽସ୍ମାକଂ ଜ୍ୟେଷ୍ଠୋ ଭ୍ରାତା ସୁମାଳିନଃ ।
ମାଲ୍ୟବାନିତି ବିଖ୍ୟାତୋ ବୃଦ୍ଧଃ ପ୍ରାଜ୍ଞୋ ନିଶାଚରଃ । ୨୨ ।
ପିତା ଜ୍ୟେଷ୍ଠୋ ଜନନ୍ୟା ନୋ ହ୍ୟସ୍ମାକଂ ତ୍ୱାର୍ଯକୋଽଭବତ୍ ।
ତସ୍ୟ କୁମ୍ଭୀନସୀ ନାମ ଦୁହିତୁର୍ଦୁହିତାଭବତ୍ । ୨୩ ।
ମାତୃଷ୍ୱସୁରଥାସ୍ମାକଂ ସା ଚ କନ୍ୟାନଳୋଦ୍ଭବା ।
ଭବତ୍ୟସ୍ମାକମେବୈଷା ଭ୍ରାତୃଣାଂ ଧର୍ମତଃ ସ୍ୱସା । ୨୪ ।
ସା ହୃତା ମଧୁନା ରାଜନ୍ ରାକ୍ଷସେନ ବଲୀୟସା ।
ଯଜ୍ଞପ୍ରବୃତ୍ତେ ପୁତ୍ରେ ତୁ ମୟି ଚାନ୍ତର୍ଜଳୋଷିତେ । ୨୫ ।
କୁମ୍ଭକର୍ଣ୍ଣେ ମହାରାଜ ନିଦ୍ରାମନୁଭବତ୍ୟଥ ।
ନିହତ୍ୟ ରାକ୍ଷସଶ୍ରେଷ୍ଠାନମାତ୍ୟାନିହ ସଂମତାନ୍ । ୨୬ ।
ଧର୍ଷୟିତ୍ୱା ହୃତା ସା ତୁ ଗୁପ୍ତାପ୍ୟନ୍ତଃପୁରେ ତବ ।
ଶ୍ରୁତ୍ୱାପି ତନ୍ମହାରାଜ କ୍ଷାନ୍ତମେବ ହତୋ ନ ସଃ । ୨୭ ।
ଯସ୍ମାଦବଶ୍ୟଂ ଦାତବ୍ୟା କନ୍ୟା ଭର୍ତ୍ରେ ହି ଭ୍ରାତୃଭିଃ ।
ତଦେତତ୍ କର୍ମଣୋ ହ୍ୟସ୍ୟ ଫଳଂ ପାପସ୍ୟ ଦୁର୍ମତେ । ୨୮ ।

---

କଏ ?" ।୨୦ । ବିଭୀଷଣ କ୍ରୋଧପୂର୍ଣ୍ଣ ହୋଇ ରାବଣକୁ କହିଲେ, "ପରସ୍ତ୍ରୀହରଣରୂପ ନିଜର ପାପର ଫଳ ଯାହା ହୋଇଛି ତାହା ଶୁଣ । ୨୧ । ଆମ୍ଭମାନଙ୍କର ମାତାମହ ସୁମାଳୀଙ୍କ ଜ୍ୟେଷ୍ଠ ଭ୍ରାତା ମାଲ୍ୟବାନ୍ ବୃଦ୍ଧ ଓ ବିଚାରବାନ୍ ନିଶାଚର ଅଟନ୍ତି ।୨୨। ସେ ଆମ ମାତାମହଙ୍କର ବଡ଼ ଭାଇ ଅଟନ୍ତି ଏବଂ ଆମ୍ଭମାନଙ୍କର ଅଜା ଅଟନ୍ତି । କୁମ୍ଭୀନସୀ ତାଙ୍କର କନ୍ୟାର କନ୍ୟା ଅନଳାର କନ୍ୟା ଅଟେ ଏବଂ ଆମ୍ଭମାନଙ୍କର ଧର୍ମତଃ ଭଗ୍ନୀ ଅଟେ । ୨୩-୨୪ । ହେ ରାଜନ୍ ! ସେ କୁମ୍ଭୀନସୀକୁ ମହାବଳୀ ମଧୁ ନାମକ ରାକ୍ଷସ ହରଣ କରି ନେଇଗଲା । ସେତେବେଳେ ତୁମ୍ଭର ପୁତ୍ର ଯଜ୍ଞରେ ବ୍ୟାପୃତ ଥିଲା ଏବଂ ମୁଁ ତପସ୍ୟା କରିବାଲାଗି ଜଳମଧ୍ୟରେ ଥିଲି । ୨୫ । ହେ ମହାରାଜ ! ସେତେବେଳେ କୁମ୍ଭକର୍ଣ୍ଣ ଶୋଇ ରହିଥିଲା । ମଧୁ ତୁମ୍ଭର କୃପାପାତ୍ର ରାକ୍ଷସଶ୍ରେଷ୍ଠ ମନ୍ତ୍ରୀମାନଙ୍କୁ ମାରି ତୁମ ଅନ୍ତଃପୁରରେ ସୁରକ୍ଷିତ ଥିବା କୁମ୍ଭୀନସୀକୁ ବଳାତ୍କାରରେ ହରଣ କରି ନେଇଗଲା । ସେ କଥା ଶୁଣି ମଧ୍ୟ ମୁଁ ତାହାକୁ କ୍ଷମା କଲି; କିନ୍ତୁ ମାରିଲି ନାହିଁ । ୨୬-୨୭ । କାରଣ ମୁଁ ବିଚାରିଲି, କୁମାରୀ ଭଗ୍ନୀକୁ ବିବାହ ଦେବା ଭ୍ରାତାର ଅବଶ୍ୟ କର୍ତ୍ତବ୍ୟ ଅଟେ । ତାହା ଆମ୍ଭେମାନେ କରି ନ ଥିଲେ । ହେ ଦୁର୍ମତେ ! ଏ ଦୁର୍ଘଟଣା ତୁମ୍ଭର ଦୁଷ୍କର୍ମର ହିଁ ଫଳ ଅଟେ । ୨୮ ।

ଅସ୍ମିନ୍ନେବାଭିସଂପ୍ରାପ୍ତଂ ଲୋକେ ବିଦ୍ଧିତମସ୍ତୁ ତେ ।
ବିଭୀଷଣବଚଃ ଶ୍ରୁତ୍ୱା ରକ୍ଷସେନ୍ଦ୍ରଃ ସ ରାବଣଃ । ୨୯ ।
ଦୌର୍ମନ୍ତ୍ର୍ୟେନାତ୍ମନୋଦ୍ଧୃତସ୍ତପ୍ତାମ୍ଭା ଇବ ସାଗରଃ ।
ତତୋଽବ୍ରବୀଦ୍ଦଶଗ୍ରୀବଃ କ୍ରୁଦ୍ଧଃ ସଂରକ୍ତଲୋଚନଃ । ୩୦ ।
କଲ୍ପ୍ୟତାଂ ମେ ରଥଃ ଶୀଘ୍ରଂ ଶୂରାଃ ସଜ୍ଜୀଭବନ୍ତୁ ନଃ ।
ଭ୍ରାତା ମେ କୁମ୍ଭକର୍ଣ୍ଣଶ୍ଚ ଯେ ଚ ମୁଖ୍ୟା ନିଶାଚରାଃ । ୩୧ ।
ବାହନାନ୍ୟଧିରୋହନ୍ତୁ ନାନାପ୍ରହରଣାୟୁଧାଃ ।
ଅଦ୍ୟ ତଂ ସମରେ ହତ୍ୱା ମଧୁଂ ରାବଣନିର୍ଭୟମ୍ । ୩୨ ।
ସୁରଲୋକଂ ଗମିଷ୍ୟାମି ଯୁଦ୍ଧାକାଙ୍କ୍ଷୀ ସୁହୃଦ୍‌ବୃତଃ ।
ଅକ୍ଷୌହିଣୀ ସହସ୍ରାଣି ଚତ୍ୱାର୍ଯଗ୍ର୍ୟାଣି ରକ୍ଷସାମ୍ । ୩୩ ।
ନାନାପ୍ରହରଣାନ୍ୟାଶୁ ନିର୍ଯଯୁର୍ଯୁଦ୍ଧକାଙ୍କ୍ଷିଣାମ୍ ।
ଇନ୍ଦ୍ରଜିତ୍ୱଗ୍ରଜିତ୍‌ସୈନ୍ୟାତ୍‌ସୈନିକାନ୍ ପରିଗୃହ୍ୟ ଚ । ୩୪ ।
ଜଗାମ ରାବଣୋ ମଧ୍ୟେ କୁମ୍ଭକର୍ଣ୍ଣଶ୍ଚ ପୃଷ୍ଠତଃ ।
ବିଭୀଷଣଶ୍ଚ ଧର୍ମାତ୍ମା ଲଙ୍କାୟାଂ ଧର୍ମମାଚରତ୍ । ୩୫ ।

---

ସୁତରାଂ ତୁମକୁ ଏ କନ୍ୟାହରଣ ପାପର ଫଳ ଏହି ଲୋକରେହିଁ ମିଳିଗଲା, ଏ କଥା ତୁମେ ମନେରଖ ।" ବିଭୀଷଣଙ୍କର ଏ କଥା ଶୁଣି ରାକ୍ଷସେନ୍ଦ୍ର ରାବଣ, ସମୁଦ୍ରର ପାଣି ଗରମ ହୋଇଗଲେ ସେ ଯେପରି ଉତ୍କ୍ଷୋଭିତ ହୋଇ ଉଠେ ସେହିପରି କ୍ଷୁବ୍ଧ ହୋଇ ଉଠିଲେ । ତଦନନ୍ତର ସେ କ୍ରୋଧରେ ଚକ୍ଷୁ ରକ୍ତବର୍ଣ୍ଣ କରି କହିଲା ।୨୯-୩୦। "ଶୀଘ୍ର ମୋର ରଥ ପ୍ରସ୍ତୁତ କର; ମୋର ଶୂର ଯୋଦ୍ଧାମାନେ ସଜ୍ଜିତ ହୋଇ ପ୍ରସ୍ତୁତ ହୁଅନ୍ତୁ, ମୋର ଭାଇ କୁମ୍ଭକର୍ଣ୍ଣ ଏବଂ ଅନ୍ୟାନ୍ୟ ମୁଖ୍ୟ ମୁଖ୍ୟ ରାକ୍ଷସମାନେ ବିବିଧ ଶସ୍ତ୍ର ନେଇ ଯାନବାହନମାନଙ୍କରେ ଚଢ଼ନ୍ତୁ । ଯେ ରାବଣକୁ ମଧ୍ୟ ଭୟ କରୁ ନାହିଁ ଆଜି ସେ ମଧୁକୁ ମୁଁ ଯୁଦ୍ଧରେ ମାରି ସାରି ନିଜର ହିତୈଷୀମାନଙ୍କୁ ସାଙ୍ଗରେ ଧରି ଦେବଲୋକକୁ ଯୁଝିବାକୁ ଯିବି ।" ରାବଣର ଆଦେଶ ପାଇ ମୁଖ୍ୟ ମୁଖ୍ୟ ଚାରି ଅକ୍ଷୌହିଣୀ ରାକ୍ଷସ ଆଗରେ ଚାଲିଲେ । ୩୧-୩୩ । ସେମାନଙ୍କ ପାଖରେ ବିବିଧ ହତିଆର ଥିଲା । ସେମାନେ ଯୁଦ୍ଧ କରିବାକୁ ଉତ୍ସୁକ ହୋଇ ଯାଉଥିଲେ । ମେଘନାଦ ସବୁ ସେନାପତିଙ୍କୁ ସଙ୍ଗରେ ଧରି ଆଗରେ ଗଲା । ୩୪ । ମଝିରେ ରାବଣ ଏବଂ ସମସ୍ତଙ୍କ ପଛରେ କୁମ୍ଭକର୍ଣ୍ଣ ଥିଲା । କିନ୍ତୁ ଧର୍ମାତ୍ମା ବିଭୀଷଣ ଲଙ୍କାରେ ରହିଗଲେ ଏବଂ ନିଜର ଧର୍ମ ଆଚରଣରେ ଲାଗି ରହିଲେ ।୩୫ । ଅବଶିଷ୍ଟ ଅନ୍ୟ ସମସ୍ତ ରାକ୍ଷସ

ଶେଷାଃ ସର୍ବେ ମହାଭାଗା ଯଯୁର୍ମଧୁପୁରଂ ପ୍ରତି ।
ଖରୈରୁଷ୍ଟ୍ରୈ ର୍ହୟୈର୍ଦ୍ଦୀପ୍ତୈଃ ଶିଂଶୁମାରୈର୍ମହୋରଗୈଃ ।୩୬
ରାକ୍ଷସା ପ୍ରୟୟୁଃ ସର୍ବେ କୃତ୍ୱାକାଶଂ ନିରନ୍ତରମ୍ ।
ଦୈତ୍ୟାଶ୍ଚ ଶତଶସ୍ତତ୍ର କୃତବୈରାଶ୍ଚ ଦୈବତୈଃ । ୩୭ ।
ରାବଣଂ ପ୍ରେକ୍ଷ୍ୟ ଗଚ୍ଛନ୍ତମନ୍ୱଗଚ୍ଛନ୍ ହି ପୃଷ୍ଠତଃ ।
ସ ତୁ ଗତ୍ୱା ମଧୁପୁରଂ ପ୍ରବିଶ୍ୟ ଚ ଦଶାନନଃ । ୩୮ ।
ନ ଦଦର୍ଶ ମଧୁଂ ତତ୍ର ଭଗିନୀଂ ତତ୍ର ଦୃଷ୍ଟବାନ୍ ।
ସା ଚ ପ୍ରହ୍ୱାଞ୍ଜଳିର୍ଭୂତ୍ୱା ଶିରସା ଚରଣୌ ଗତା । ୩୯।
ତସ୍ୟ ରାକ୍ଷସରାଜସ୍ୟ ତ୍ରସ୍ତା କୁମ୍ଭୀନସୀ ତଦା ।
ତାଂ ସମୁତ୍‌ଥାପୟାମାସ ନ ଭେତବ୍ୟମିତି ବ୍ରୁବନ୍ । ୪୦ ।
ରାବଣୋ ରାକ୍ଷସଶ୍ରେଷ୍ଠଃ କିଂ ଚାପି କରବାଣି ତେ ।
ସାବ୍ରବୀଦ୍ ଯଦି ମେ ରାଜନ୍ ପ୍ରସନ୍ନସ୍ତ୍ୱଂ ମହାଭୁଜ । ୪୧ ।
ଭର୍ତାରଂ ନ ମମେହାଦ୍ୟ ହନ୍ତୁମର୍ହସି ମାନଦ ।
ନ ହୀଦୃଶଂ ଭୟଂ କିଂଚିତ୍ କୁଳସ୍ତ୍ରୀଣାମିହୋଚ୍ୟତେ । ୪୨ ।

---

ମଧୁପୁର ଆଡ଼କୁ ଯାହାକଲେ । ସେମାନେ ଚେଜସ୍ୱାନ୍ ଓଟ, ଗଧ, ଘୋଡ଼ା, ଶିଶୁମାର ଏବଂ ବଡ଼ ବଡ଼ ସାପମାନଙ୍କ ଉପରେ ବସିଥିଲେ । ୩୬ । ସେତେବେଳେ ସେମାନେ ଆକାଶକୁ ସମ୍ପୂର୍ଣ୍ଣରୂପେ ଆଚ୍ଛାଦନ କରି ଚାଲିଥିଲେ । ଦେବତାମାନଙ୍କ ମଣ୍ଡିତ ବିଦ୍ୱେଷ ରଖିଥିବା ଶତ ଶତ ଦୈତ୍ୟ ସେମାନଙ୍କ ଉପରେ ଆକ୍ରମଣ କରିବା ପାଇଁ ରାବଣ ଯାଉଥିବାର ଦେଖି ତାହାର ପଛେ ପଛେ ଚାଲିଲେ । ରାବଣ ମଧୁପୁରରେ ପ୍ରବେଶ କରି ସେଠାରେ ମଧୁକୁ ଦେଖିଲା ନାହିଁ; ମାତ୍ର ନିଜ ଭଗିନୀ କୁମ୍ଭୀନସୀକୁ ଦେଖିଲା । ସେ ଭାଇକୁ ଦେଖି ହାତ ଯୋଡ଼ି ତା ପାଦତଳେ ପଡ଼ିଗଲା । ।୩୭-୩୯ । ସେ ରାବଣକୁ ଭୟ କରୁଥିଲା । ରାବଣ ତାହାକୁ ଭୂଇଁରୁ ଉଠାଇଲା ଏବଂ କହିଲା "ଡର ନାହିଁ ।୪୦। ମୁଁ ରାକ୍ଷସଶ୍ରେଷ୍ଠ ରାବଣ ଅଟେ । ଏବେ କହ, ମୁଁ ତୋ-ପାଇଁ କଅଣ କରିବି ।" ଉତ୍ତରରେ କୁମ୍ଭୀନସୀ କହିଲା, "ହେ ରାଜନ୍, ହେ ମହାଭୁଜ ! ଯଦି ଆପଣ ମୋ ଉପରେ ପ୍ରସନ୍ନ ହୋଇଛନ୍ତି ତେବେ ହେ ମାନଦ ! ମୋର ପତିଙ୍କୁ ତୁମେ ବଧ କର ନାହିଁ, କାରଣ କୁଳୀନା ସ୍ତ୍ରୀଙ୍କ ନିମନ୍ତେ ପତିବଧ ଠାରୁ ଅନ୍ୟ ବିଶେଷ ଭୟ ନାହିଁ । ୪୧-୪୨। କୁଳୀନା ସ୍ତ୍ରୀମାନଙ୍କ ଲାଗି ସବୁ ବିପତ୍ତିଠାରୁ ବଳି ବୈଧବ୍ୟହିଁ

ଭସ୍ତ୍ରାଣାମପି ସର୍ବେଷାଂ ବୈଧବ୍ୟଂ ବ୍ୟସନଂ ମହତ୍ ।
ସତ୍ୟବାଗ୍ ଭବ ରାଜେନ୍ଦ୍ର ମାମବେକ୍ଷସ୍ୱ ଯାଚତୀମ୍ । ୪୩ ।
ତ୍ୱୟାପ୍ୟୁକ୍ତଂ ମହାରାଜ ନ ଭେତବ୍ୟମିତି ସ୍ୱୟମ୍ ।
ରାବଣସ୍ତ୍ୱବ୍ରବୀଦ୍ଧୃଷ୍ଟଃ ସ୍ୱସାରଂ ତତ୍ର ସଂସ୍ଥିତାମ୍ । ୪୪ ।
କ୍ୱାସୌ ତବ ଭର୍ତ୍ତା ବୈ ମମ ଶୀଘ୍ରଂ ନିବେଦ୍ୟତାମ୍ ।
ସହ ତେନ ଗମିଷ୍ୟାମି ସୁରଲୋକଂ ଜୟାୟ ହି । ୪୫ ।
ତବ କାରୁଣ୍ୟସୌହାର୍ଦାନ୍ନିବୃତ୍ତୋଽସ୍ମି ମଧୋର୍ବଧାତ୍ ।
ଇତ୍ୟୁକ୍ତା ସା ସମୁତ୍ଥାପ୍ୟ ପ୍ରସୁପ୍ତଂ ତଂ ନିଶାଚରମ୍ । ୪୬ ।
ଅବ୍ରବୀତ୍ ସଂପ୍ରହୃଷ୍ଟେବ ରାକ୍ଷସୀ ସା ପତିଂ ବଚଃ ।
ଏଷ ପ୍ରାପ୍ତୋ ଦଶଗ୍ରୀବୋ ମମ ଭ୍ରାତା ମହାବଲଃ ।୪୭।
ସୁରଲୋକଜୟାକାଙ୍କ୍ଷୀ ସାହାଯ୍ୟେ ତ୍ୱାଂ ବୃଣୋତି ଚ ।
ତଦସ୍ୟ ତ୍ୱଂ ସହାୟାର୍ଥଂ ସବନ୍ଧୁର୍ଗଚ୍ଛ ରାକ୍ଷସ । ୪୮ ।
ସ୍ନିଗ୍ଧସ୍ୟ ଭଜମାନସ୍ୟ ଯୁକ୍ତମର୍ଥାୟ କଲ୍ପିତୁମ୍ ।
ତସ୍ୟାସ୍ତଦ୍ବଚନଂ ଶ୍ରୁତ୍ୱା ତଥେତ୍ୟାହ ମଧୁର୍ବଚଃ । ୪୯ ।

---

ବଡ଼ ବିପତ୍ତି ଅଟେ । ହେ ରାଜେନ୍ଦ୍ର ! ଏବେ ତୁମେ ତୁମ କଥାକୁ ସତ୍ୟ କର । ମୁଁ ପ୍ରାର୍ଥନା କରୁଛି, ତୁମେ ମୋ ଆଡ଼କୁ ଚାହଁ । ୪୩ । ଆପଣତ ସ୍ୱୟଂ ନିଜ ମୁହଁରେ କହିଛନ୍ତି ଯେ ଡର ନାହିଁ ।" ତା ପରେ ରାବଣ ହର୍ଷିତ ହୋଇ ସମ୍ମୁଖରେ ଠିଆ ହୋଇଥିବା ନିଜ ଭଗିନୀକୁ କହିଲା । ୪୪ । "ଶୀଘ୍ର କହ, ତୋ ପତି କେଉଁଠାରେ ଅଛି । ମୁଁ ତାହାକୁ ନିଜ ସାଙ୍ଗରେ ନେଇ ଜୟ ନିମନ୍ତେ ସ୍ୱର୍ଗଲୋକକୁ ଯିବି । ୪୫ । ତୋ ଉପରେ ଦୟାକରି ଏବଂ ତୋ ପ୍ରତି ସ୍ନେହବଶରୁ ମୁଁ ବର୍ତ୍ତମାନ ଆଉ ମଧୁକୁ ବଧ କରିବି ନାହିଁ" । ଏହା ଶୁଣି କୁମ୍ଭୀନସୀ ନିଦ୍ରିତ ଥିବା ନିଜ ସ୍ୱାମୀକୁ ଉଠାଇଲା ଏବଂ ହର୍ଷିତ ହୋଇ କହିଲା, "ମୋର ମହାବଳୀ ଭାଇ ରାବଣ ଏଠାକୁ ଆସିଅଛନ୍ତି । ୪୬-୪୭ । ସେ ଦେବଲୋକ ଜିଣିବା ପାଇଁ ଯାଉଛନ୍ତି ଏବଂ ତୁମର ସାହାଯ୍ୟ ଚାହୁଁଛନ୍ତି । ଅତଏବ ହେ ରାକ୍ଷସ ! ନିଜର ଭାଇବନ୍ଧୁଙ୍କ ସହିତ ତାହାଙ୍କ ସହାୟତା ନିମନ୍ତେ ତାଙ୍କ ସଙ୍ଗରେ ଯାଅ । ୪୮ । ମୋ ପ୍ରତି ସ୍ନେହବଶରୁ ରାବଣ ତୁମକୁ ନିଜର ଭଣୋଇ ବୋଲି ସ୍ୱୀକାର କରିଛନ୍ତି । ଅତଏବ ତାଙ୍କୁ ସହାୟତା କରିବା ତୁମର ଉଚିତ" । କୁମ୍ଭୀନସୀର ଏ କଥା ଶୁଣି ନିଶାଚର ମଧୁ କହିଲା, "ମୁଁ ଅବଶ୍ୟ ସେମାନଙ୍କୁ ସାହାଯ୍ୟ କରିବି" । ୪୯ । ତଦନନ୍ତର

ଦଦର୍ଶ ରାକ୍ଷସଶ୍ରେଷ୍ଠଂ ଯଥାନ୍ୟାଯ୍ୟମୁପେତ୍ୟ ସଃ ।
ପୂଜୟାମାସ ଧର୍ମେଣ ରାବଣଂ ରାକ୍ଷସାଧିପମ୍ । ୫୦ ।
ପ୍ରାପ୍ୟ ପୂଜାଂ ଦଶଗ୍ରୀବୋ ମଧୁବେଶ୍ମନି ବୀର୍ଯ୍ୟବାନ୍ ।
ତତ୍ର ଚୈକାଂ ନିଶାମୁଷ୍ୟ ଗମନାୟୋପଚକ୍ରମେ । ୫୧ ।
ତତଃ କୈଳାସମାସାଦ୍ୟ ଶୈଳଂ ବୈଶ୍ରବଣାଳୟମ୍ ।
ରାକ୍ଷସେନ୍ଦ୍ରୋ ମହେନ୍ଦ୍ରାଭଃ ସେନାମୁପନିବେଶୟତ୍ । ୫୨ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ମଧୁବଧବାରଣଂ ନାମ ପଞ୍ଚବିଂଶଃ ସର୍ଗଃ ।

---

## ଷଡ୍‌ବିଂଶଃ ସର୍ଗଃ

### ନଳକୂବରଶାପଃ

ସ ତୁ ତତ୍ର ଦଶଗ୍ରୀବଃ ସହ ସୈନ୍ୟେନ ବୀର୍ଯ୍ୟବାନ୍ ।
ଅସ୍ତଂ ପ୍ରାପ୍ତେ ଦିନକରେ ନିବାସଂ ସମରୋଚୟତ୍ । ୧ ।

---

ମଧୁ ରାକ୍ଷସଶ୍ରେଷ୍ଠ ରାବଣ ସହିତ ମିଳିତ ହେଲା ଏବଂ ଯଥୋଚିତ ଧର୍ମାନୁସାରେ ରାବଣର ସତ୍କାର କଲା । ୫୦ । ବଳବାନ୍ ରାବଣ ମଧୁର ଭବନରେ ସତ୍କାର ଲାଭକରି ସେଠାରେ ଏକ ରାତ୍ରି ବାସକରି ପରଦିନ ସେଠାରୁ ପ୍ରସ୍ଥାନ କରିବାକୁ ପ୍ରସ୍ତୁତ ହେଲା । ୫୧ । ଇନ୍ଦ୍ର ସଦୃଶ ପରାକ୍ରମୀ ରାକ୍ଷସରାଜ ରାବଣ କୁବେରଙ୍କ ବାସସ୍ଥଳ କୈଳାସ ପର୍ବତର ଶିଖର ଉପରକୁ ଗଲା ଏବଂ ସେହିଠାରେ ନିଜର ସେନାଙ୍କ ପାଇଁ ଶିବିର ସ୍ଥାପନ କଲା । ୫୨ ।

---

## ୨୬ଶ ସର୍ଗ

### ( ନଳକୂବରଙ୍କ ଅଭିଶାପ )

ସୂର୍ଯ୍ୟ ଅସ୍ତ ହୋଇଯିବାରୁ ପରାକ୍ରମୀ ରାବଣ ଆପଣା ସେନା ସହିତ ସେଠାରେ ନିବାସ ସ୍ଥାପନ କଲା । ୧ । କିଛି ସମୟ ପରେ ପର୍ବତ ତେଜସଦୃଶ ବିମଳଚନ୍ଦ୍ର

ଉଦିତେ ବିମଲେ ଚନ୍ଦ୍ରେ ତୁଲ୍ୟପର୍ବତବର୍ଚସି ।
ପ୍ରସୁପ୍ତଂ ସୁମହତ୍ ସୈନ୍ୟଂ ନାନାପ୍ରହରଣାୟୁଧମ୍ । ୨ ।
ରାବଣସ୍ତୁ ମହାବୀର୍ଯ୍ୟୋ ନିଷଣ୍ଣଃ ଶୈଳମୂର୍ଦ୍ଧନି ।
ସ ଦଦର୍ଶ ଗୁଣାଂସ୍ତତ୍ର ଚନ୍ଦ୍ରପାଦସୁଶୋଭିତାନ୍ । ୩ ।
କର୍ଣ୍ଣିକାରବନୈର୍ଦୀପ୍ତୈଃ କଦମ୍ବଗହନୈସ୍ତଥା ।
ପଦ୍ମିନୀଭିଶ୍ଚ ଫୁଲ୍ଲାଭିର୍ମନ୍ଦାକିନ୍ୟା ଜଳୈରପି । ୪ ।
ଚମ୍ପକାଶୋକପୁନ୍ନାଗମନ୍ଦାରତରୁଭିସ୍ତଥା ।
ଚୂତପାଟଳଲୋଧ୍ରୈଶ୍ଚ ପ୍ରିୟଙ୍ଗ୍ୱର୍ଜୁନକେତକୈଃ । ୫ ।
ତଗରୈର୍ନାରିକେଳୈଶ୍ଚ ପ୍ରିୟାଳପନସୈସ୍ତଥା ।
ଆରଗ୍ୱଧୈସ୍ତମାଳୈଶ୍ଚ ପ୍ରିୟାଳବକୁଳୈରପି ।
ଏତୈରନ୍ୟୈଶ୍ଚ ତରୁଭିରୁଦ୍ଭାସିତବନାନ୍ତରେ । ୬ ।
କିଂନରା ମଦନେନାର୍ତ୍ତା ରକ୍ତା ମଧୁରକଣ୍ଠିନଃ ।
ସମଂ ସଂପ୍ରଜଗୁର୍ଯତ୍ର ମନସ୍ତୁଷ୍ଟିବିବର୍ଦ୍ଧନମ୍ । ୭ ।
ବିଦ୍ୟାଧରା ମଦକ୍ଷୀବା ମଦରକ୍ତାନ୍ତଲୋଚନାଃ ।
ଯୋଷିଦ୍ଭିଃ ସହ ସଂକ୍ରାନ୍ତାଶ୍ଚିକ୍ରୀଡୁର୍ଜହୃଷୁଶ୍ଚ ବୈ । ୮ ।

---

ଉଦିତ ହେଲେ । ସେତେବେଳେ ବିବିଧ ପ୍ରକାର ଆୟୁଧ ଧାରଣ କରିଥିବା ସେହି ବିଶାଳ ସେନାବାହିନୀ ନିଘୋଡ଼ ଶୋଇପଡ଼ିଲେ । ୨ । କିନ୍ତୁ ରାବଣ ସେହି ପର୍ବତର ଶିଖରଦେଶରେ ବସିରହି ବିବିଧ ବୃକ୍ଷ ଏବଂ ଚନ୍ଦ୍ରୋଦୟ ପୂର୍ବରୁ ସେହି ପର୍ବତର ଅନେକ ଶୋଭା ଦେଖିବାକୁ ପାଇଲା । ୩ । ଚକଚକ ହେଉଥିବା କନିଅର ବୃକ୍ଷର ଉପବନ, କଦମ୍ବ ଓ ବକୁଳବନ, ମନ୍ଦାକିନୀର ଜଳ ଏବଂ ସେଥିରେ ପ୍ରସ୍ଫୁଟିତ ହୋଇଥିବା ପଦ୍ମବନ, ଚମ୍ପା, ଅଶୋକ, ନାଗେଶ୍ୱର, ମନ୍ଦାର, ଆମ୍ବ, ଲୋଧ୍ର, ପ୍ରିୟଙ୍ଗୁ, ଅର୍ଜୁନ, କେତକୀ, ଟଗର, ନାରିକେଳ, ପ୍ରିୟାଳ, ପନସ ତଥା ଅନ୍ୟ ବୃକ୍ଷ ଦ୍ୱାରା ସେହି ବନଭାଗ ମନୋହର ହୋଇଥିଲା । ୪-୬ । ସେହି ବନରେ କାମବିହ୍ୱଳ ମଧୁରକଣ୍ଠୀ କିନ୍ନରମାନେ ଏକତ୍ର ହୋଇ ଏକସଙ୍ଗରେ ମନର ହର୍ଷବର୍ଦ୍ଧନକାରୀ ଗୀତମାନ ଗାଉଥିଲେ । ୭ । ବିଦ୍ୟାଧରମାନେ ମଦନୋନ୍ମତ୍ତ ହୋଇ ମଦପ୍ରଭାବରୁ ଚକ୍ଷୁ ରକ୍ତକରି ନିଜ ନିଜ ସ୍ତ୍ରୀମାନଙ୍କ ସହିତ ଆନନ୍ଦରେ କ୍ରୀଡ଼ା କରୁଥିଲେ । ୮ । କୁବେରଙ୍କ ଭବନରେ ଗାନ କରୁଥିବା ଅପ୍ସରାମାନଙ୍କ ମଧୁର-

ଘଣ୍ଟାନାମିବ ସଂନାଦଃ ଶୁଶ୍ରୁବେ ମଧୁରସ୍ୱରଃ ।
ଅପ୍ସରୋଗଣସଂଘାନାଂ ଗାୟତାଂ ଧନଦାଲୟେ । ୯ ।
ପୁଷ୍ପବର୍ଷାଣି ମୁଞ୍ଚନ୍ତୋ ନଗାଃ ପବନତାଡ଼ିତାଃ ।
ଶୈଳଂ ତଂ ବାସୟନ୍ତୀବ ମଧୁମାଧବଗନ୍ଧିନଃ । ୧୦ ।
ମଧୁପୁଷ୍ପରଜପୃକ୍ତଂ ଗନ୍ଧମାଦାୟ ପୁଷ୍କଳମ୍ ।
ପ୍ରବବୌ ବର୍ଧୟନ୍ କାମଂ ରାବଣସ୍ୟ ସୁଖୋଽନିଲଃ । ୧୧ ।
ଗେୟାତ୍ ପୁଷ୍ପସମୃଦ୍ଧ୍ୟା ଚ ଶୈତ୍ୟାଦ୍ ବାୟୋର୍ଗିରେର୍ଗୁଣାତ୍
ପ୍ରବୃତ୍ତାୟାଂ ରଜନ୍ୟାଂ ଚ ଚନ୍ଦ୍ରସ୍ୟୋଦୟନେନ ଚ । ୧୨ ।
ରାବଣଃ ସୁମହାବୀର୍ଯଃ କାମସ୍ୟ ବଶମାଗତଃ ।
ବିନିଶ୍ୱସ୍ୟ ବିନିଶ୍ୱସ୍ୟ ଶଶିନଂ ସମବୈକ୍ଷତ । ୧୩ ।
ଏତସ୍ମିନ୍ନନ୍ତରେ ତତ୍ର ଦିବ୍ୟାଭରଣଭୂଷିତା ।
ସର୍ବାପ୍ସରୋବରା ରମ୍ଭା ଦିବ୍ୟପୁଷ୍ପବିଭୂଷିତା । ୧୪ ।
ଦିବ୍ୟଚନ୍ଦନଲିପ୍ତାଙ୍ଗୀ ମନ୍ଦାରକୃତମୂର୍ଧଜା ।
ଦିବ୍ୟୋତ୍ସବକୃତାରମ୍ଭା ପୂର୍ଣଚନ୍ଦ୍ରନିଭାନନା । ୧୫ ।

---

ଧ୍ୱନି ଘଣ୍ଟାନାଦ ସଦୃଶ ଶୁଣାଯାଉଥିଲା । ୯ । ପବନ ବହିବାରୁ ବୃକ୍ଷମାନେ ପୁଷ୍ପବୃଷ୍ଟି କରୁଥିଲେ । ତଦ୍ଦ୍ୱାରା ସମସ୍ତ ପର୍ବତଟି ସୁବାସିତ ହେଉଥିଲା । ସେହି ଫୁଲମାନଙ୍କରୁ ବସନ୍ତ ଋତୁର ପୁଷ୍ପପର ସୁଗନ୍ଧ ନିର୍ଗତ ହେଉଥିଲା ।୧୦। ପୁଷ୍ପପରାଗଯୁକ୍ତ ମକରନ୍ଦର ଗନ୍ଧରେ ସୁଗନ୍ଧିତ ରାବଣର ସୁଖଦାୟକ କାମୋଦ୍ଦୀପକ ପବନ ବହିବାକୁ ଲାଗିଲା ।୧୧ । ସେତେବେଳେ ରାତ୍ରି ଆଗମନ ହେବାରୁ ଚନ୍ଦ୍ର ଉଦୟ ହୋଇଥିଲା । ସଙ୍ଗୀତ-ଗାନ, ପୁଷ୍ପର ସମୃଦ୍ଧିଦର୍ଶନ ଓ ବାୟୁର ଶୀତଳତା ଦ୍ୱାରା ଏବଂ ସେହି ପର୍ବତର ଶୋଭାଦ୍ୱାରା ବଳବାନ୍ ରାକ୍ଷସରାଜ ରାବଣ କାମଦେବଙ୍କର ବଶୀଭୂତ ହୋଇ ବାରମ୍ବାର ଦୀର୍ଘ ନିଶ୍ୱାସ ପକାଇ ଚନ୍ଦ୍ରଙ୍କ ଆଡ଼କୁ ଚାହିଁବାକୁ ଲାଗିଲା । ୧୨-୧୩ । ଇତମଧ୍ୟରେ ସେଠାରେ ଦିବ୍ୟ ଅଳଙ୍କାରଭୂଷିତା ଓ ସମସ୍ତ ଅପ୍ସରାଙ୍କ ମଧ୍ୟରେ ଶ୍ରେଷ୍ଠା ଚନ୍ଦ୍ରାନନା, ରମ୍ଭା ଦେଖାଗଲା । ସେତେବେଳେ ସେ ନିଜ ଅଙ୍ଗରେ ଚନ୍ଦନ ଲଗାଇଥିଲା । ତାର କେଶରେ କଳ୍ପବୃକ୍ଷର ଫୁଲ ବନ୍ଧା ହୋଇଥିଲା । କୌଣସି ଏକ ଦିବ୍ୟ ଶୃଙ୍ଗାର ଉତ୍ସବ ପାଇଁ ସେହି ଚନ୍ଦ୍ରାନନା ତରତର ହୋଇ ଯାଉଥିଲା ।୧୪-୧୫।

ଚକ୍ଷୁର୍ମନୋହରଂ ପୀନଂ ମେଖଳାଦାମଭୂଷିତମ୍ ।
ସମୁଦ୍‌ବହନ୍ତୀ ଜଘନଂ ରତିପ୍ରାଭୃତମୁତ୍ତମମ୍ । ୧୬ ।
କୃତୈର୍ବିଶେଷକୈରାର୍ଦ୍ରୈଃ ଷଡ଼ୃତୁକୁସୁମୋଦ୍ଭବୈଃ ।
ବଭାବନ୍ୟତମେବ ଶ୍ରୀଃ କାନ୍ତିଶ୍ରୀଦ୍ୟୁତିକୀର୍ତ୍ତିଭିଃ ୧୭ ।
ନୀଳଂ ସତୋୟମେଘାଭଂ ବସ୍ତ୍ରଂ ସମବଗୁଣ୍ଠିତା ।
ଯସ୍ୟା ବକ୍ତ୍ରଂ ଶଶିନିଭଂ ଭ୍ରୁବୌ ଚାପନିଭେ ଶୁଭେ । ୧୮ ।
ଊରୂ କରିକରାକାରୌ କରୌ ପଲ୍ଲବକୋମଳୌ ।
ସୈନ୍ୟମଧ୍ୟେନ ଗଚ୍ଛନ୍ତୀ ରାବଣେନୋପବୀକ୍ଷିତା । ୧୯ ।
ତାଂ ସମୁତ୍ଥାୟ ଗଚ୍ଛନ୍ତୀଂ କାମବାଣବଶଂ ଗତଃ ।
କରେ ଗୃହୀତ୍ୱା ଲଜ୍ଜନ୍ତୀଂ ସ୍ମୟମାନୋଽଭ୍ୟଭାଷତ । ୨୦ ।
କ୍ୱ ଗଚ୍ଛସି ବରାରୋହେ କାଂ ସିଦ୍ଧିଂ ଭଜସେ ସ୍ୱୟମ୍ ।
କସ୍ୟାଭ୍ୟୁଦୟକାଲୋଽୟଂ ଯସ୍ତ୍ୱାଂ ସମୁପଭୋକ୍ଷ୍ୟତେ । ୨୧ ।
ତ୍ୱଦାନନରସସ୍ୟାଦ୍ୟ ପଦ୍ମୋତ୍ପଲସୁଗନ୍ଧିନଃ ।
ସୁଧାମୃତରସସ୍ୟେବ କୋଽଦ୍ୟ ତୃପ୍ତିଂ ଗମିଷ୍ୟତି । ୨୨ ।

---

ତାର ନେତ୍ର ସୁନ୍ଦର ଏବଂ ଆୟତାକାର ଥିଲା । କଟିସୂତ୍ରରେ ବିଭୂଷିତ ତାହାର ପୀନ ନିତମ୍ବ ରତିର ଆଶ୍ରୟସ୍ଥଳ ଥିଲା । ୧୬ । ସେହି ରମ୍ଭା ଛଅ ଋତୁରେ ଉତ୍ପନ୍ନ ହୋଇଥିବା ଫୁଲରେ ତିଆରି ବିବିଧ ପ୍ରକାର ଆଭୂଷଣ ପିନ୍ଧି କାନ୍ତି, ଶୋଭା ଏବଂ କୀର୍ତ୍ତିରେ ଦ୍ୱିତୀୟ ଲକ୍ଷ୍ମୀଙ୍କ ପରି ଜଣାପଡ଼ୁଥିଲା । ୧୭ । ସେ ସଜଳ ମେଘ-ସଦୃଶ ନୀଳଶାଢ଼ୀ ପିନ୍ଧିଥିଲା । ତାହାର ମୁଖ ଚନ୍ଦ୍ରମା ସଦୃଶ ଥିଲା ଏବଂ ଭ୍ରୂଲତା ଦୁଇଟି ସୁନ୍ଦର ଧନୁପରି ଦେଖାଯାଉଥିଲା । ୧୮ । ତାହାର ଜଙ୍ଘ ହାତୀର ଶୁଣ୍ଢସଦୃଶ ହୋଇଥିଲା ଏବଂ ଦୁଇ ହାତ ପତ୍ରମାନଙ୍କଠାରୁ ମଧ୍ୟ ଅଧିକ କୋମଳ ଥିଲା । ସେହି ରମ୍ଭା ରାବଣର ସୈନିକ ଗହଣି ବାଟେ ଯାଉଥିବାବେଳେ ତାହା ଉପରେ ରାବଣର ଦୃଷ୍ଟି ପଡ଼ିଲା । ୧୯ । ରାବଣ କାମରେ ବଶୀଭୂତ ହୋଇ ହଠାତ୍ ଉଠି ରମ୍ଭାର ହାତ ଧରିପକାଇଲା । ରମ୍ଭା ସେତେବେଳେ ବଡ଼ ଲଜ୍ଜିତ ହେଲା ; ତଥାପି ରାବଣ ଟିକିଏ ହସିକରି ତାକୁ କହିଲା । ୨୦ । "ହେ ବରାରୋହେ ! ତୁ କୁଆଡ଼େ ଯାଉଛୁ, ତୋର ଇଚ୍ଛା କଅଣ, ଏ କାହାର ଅଭ୍ୟୁଦୟର ସମୟ, ଯେ କି ତୋ ସହିତ ଭୋଗ କରିବ ? । ୨୧ । ହେ ପ୍ରିୟେ ! ପଦ୍ମପରି ସୁଗନ୍ଧଯୁକ୍ତ ତୋର ଅଧରର ଅମୃତ ପାନକରି ଆଜି କେଉଁ ବ୍ୟକ୍ତି ପରିତୃପ୍ତ ହେବ ? । ୨୨ । ହେ ଶାନ୍ତ ! ତୋର ଏ

ସ୍ୱର୍ଣ୍ଣକୁମ୍ଭନିଭୌ ପୀନୌ ଶୁଭୌ ଭୀରୁ ନିରନ୍ତରୌ ।
କସ୍ୟୋରଃସ୍ଥଲସଂସ୍ପର୍ଶଂ ଦାସ୍ୟତସ୍ତେ କୁଚୌ ଶୁଭୌ । ୨୩ ।
ସୁବର୍ଣ୍ଣଚକ୍ରପ୍ରତିମଂ ସ୍ୱର୍ଣ୍ଣଦାମଚିତଂ ପୃଥୁ ।
ଅଧ୍ୟାରୋହତି କସ୍ତେଽଦ୍ୟ ଜଘନଂ ସ୍ୱର୍ଗରୂପିଣମ୍ । ୨୪ ।
ମଦ୍‌ବିଶିଷ୍ଟଃ ପୁମାନ୍ କୋଽଦ୍ୟ ଶକ୍ରୋ ବିଷ୍ଣୁରଥାଶ୍ୱିନୌ ।
ମାମତୀତ୍ୟ ହି ଯଂ ଚ ତ୍ୱଂ ଯାସି ଭୀରୁ ନ ଶୋଭନମ୍ । ୨୫ ।
ବିଶ୍ରମ ତ୍ୱଂ ପୃଥୁଶ୍ରୋଣି ଶିଳାତଳମିଦଂ ଶୁଭମ୍ ।
ତ୍ରୈଲୋକ୍ୟେ ଯଃ ପ୍ରଭୁଶ୍ଚୈବ ମଦନ୍ୟୋ ନୈବ ବିଦ୍ୟତେ ।୨୬
ତଦେବଂ ପ୍ରାଞ୍ଜଳିଃ ପ୍ରହ୍ୱୋ ଯାଚତେ ତ୍ୱାଂ ଦଶାନନଃ ।
ଭର୍ତ୍ତୁର୍ଭର୍ତ୍ତା ବିଧାତା ଚ ତ୍ରୈଲୋକ୍ୟସ୍ୟ ଭଜସ୍ୱ ମାମ୍ । ୨୭ ।
ଏବମୁକ୍ତାବ୍ରବୀଦ୍ରମ୍ଭା ବେପମାନା କୃତାଞ୍ଜଳିଃ ।
ପ୍ରସୀଦ ନାର୍ହସେ ବକ୍ତୁମୀଦୃଶଂ ତ୍ୱଂ ହି ମେ ଗୁରୁଃ । ୨୮ ।
ଅନ୍ୟେଭ୍ୟୋ ହି ତ୍ୱୟା ରକ୍ଷ୍ୟା ପ୍ରାପ୍ନୁୟାଂ ଧର୍ଷଣଂ ଯଦି ।
ତଦ୍ଧର୍ମତଃ ସ୍ନୁଷା ତେଽହଂ ତତ୍ତ୍ୱମେବ ବ୍ରବୀମି ତେ । ୨୯ ।

---

ସ୍ତନ ଦୁଇଟି ସୁନ୍ଦର, ବଡ଼ ବଡ଼ ଏବଂ ସୁବର୍ଣ୍ଣଘଟ ସଦୃଶ ବର୍ତ୍ତୁଳ ହୋଇ ପରସ୍ପର ଲାଗିରହିଅଛି; ତାହା କେଉଁ ପୁରୁଷର ଗ୍ରୁଡିକୁ ସ୍ପର୍ଶ କରିବ ? । ୨୩ । ହେ ସୁନ୍ଦରି ! ସୁବର୍ଣ୍ଣଚକ୍ର ସଦୃଶ, ସୁବର୍ଣ୍ଣର କଟିମେଖଳାରେ ଭୂଷିତ, ପୃଥୁଳ ଏବଂ ସ୍ୱର୍ଗସୁଖଦାୟୀ ତୋର ଏହି ଜଘନ ଉପରେ କେଉଁ ବ୍ୟକ୍ତି ଆରୋହଣ କରିବ ? ୨୪ । ହେ ଭୀରୁ ! ଜଗତରେ ମୋଠାରୁ ବଳକର କେଉଁ ପୁରୁଷ ଅଛି ? ଇନ୍ଦ୍ର, ବିଷ୍ଣୁ କିମ୍ବା ଅଶ୍ୱିନୀ-କୁମାର, କେହି ମୋ ସମାନ ହୋଇ ପାରିବେ ନାହିଁ । ଅତଏବ ମୋତେ ଛାଡ଼ି ଅନ୍ୟ ପାଖକୁ ଯିବା ତୋର ଶୋଭନ ନୁହେ । ୨୫ । ହେ ପୀନନିତମ୍ବିନି ! ଆସ ଏହି ଶିଳା ଉପରେ ବିଶ୍ରାମ କର । ତ୍ରିଭୁବନରେ ମୋତେ ଛାଡ଼ି ଅନ୍ୟ କେହି ପ୍ରଭୁ ନାହିଁ । ୨୬ । ଦେଖ, ମୁଁ ଦଶଗ୍ରୀବ ପ୍ରଭୁର ପ୍ରଭୁ ଏବଂ ତିନି ଲୋକର ବିଧାତା ହୋଇ ମଧ୍ୟ ନମ୍ର ଭାବରେ ହାତଯୋଡ଼ି ତୋତେ ପ୍ରାର୍ଥନା କରୁଛି । ଅତଏବ ହେ ସୁନ୍ଦରି ! ମୋତେ ଭଜ” । ୨୭ । ରାବଣର ଏ କଥା ଶୁଣି ରମ୍ଭା କମ୍ପି ଉଠିଲା ଏବଂ ହାତଯୋଡ଼ି କହିଲା, “ହେ ରାକ୍ଷସରାଜ ! ଆପଣ ମୋର ଗୁରୁଜନ । ଅତଏବ ଆପଣଙ୍କ ପକ୍ଷେ ଏପରି କହିବା ଉଚିତ ନୁହେ । ୨୮ । ଯଦି ଅନ୍ୟ କେହି ମୋର ଅପମାନ କରନ୍ତା ତେବେ ଆପଣଙ୍କର ମୋତେ ରକ୍ଷାକରିବାର କଥା । ଧର୍ମତଃ ମୁଁ ଆପଣଙ୍କ ପୁତ୍ରବଧୂ ଅଟେ, ଏ କଥା ମୁଁ ଆପଣଙ୍କୁ ଯଥାର୍ଥ କହୁଛି । ୨୯ ।

ଅଥାବ୍ରବୀଦ୍ଦଶଗ୍ରୀବଶ୍ଚରଣାଧୋମୁଖୀଂ ସ୍ଥିତାମ୍ ।
ରୋମହର୍ଷମନୁପ୍ରାପ୍ତାଂ ଦୃଷ୍ଟମାତ୍ରେଣ ତାଂ ତଦା । ୩୦ ।
ସୁତସ୍ୟ ଯଦି ମେ ଭାର୍ଯ୍ୟା ତତସ୍ତ୍ୱଂ ହି ସ୍ନୁଷା ଭବେଃ ।
ବାଢ଼ମିତ୍ୟେବ ସା ରମ୍ଭା ପ୍ରାହ ରାବଣମୁତ୍ତରମ୍ । ୩୧ ।
ଧର୍ମତସ୍ତେ ସୁତସ୍ୟାହଂ ଭାର୍ଯ୍ୟା ରାକ୍ଷସପୁଙ୍ଗବ ।
ପୁତ୍ରଃ ପ୍ରିୟତରଃ ପ୍ରାଣୈର୍ଭ୍ରାତୁର୍ବୈଶ୍ରବଣସ୍ୟ ତେ । ୩୨ ।
ବିଖ୍ୟାତସ୍ତ୍ରିଷୁ ଲୋକେଷୁ ନଳକୂବର ଇତ୍ୟୟମ୍ ।
ଧର୍ମତୋ ଯୋ ଭବେଦ୍ ବିପ୍ରଃ କ୍ଷତ୍ରିୟୋ ବୀର୍ଯ୍ୟତୋ ଭବେତ୍ ।୩୩
କ୍ରୋଧାଦ୍ ଯଶ୍ଚ ଭବେଦଗ୍ନିଃ କ୍ଷାନ୍ତ୍ୟା ଚ ବସୁଧାସମଃ ।
ତସ୍ୟାସ୍ମି କୃତସଂକେତା ଲୋକପାଲସୁତସ୍ୟ ବୈ । ୩୪ ।
ତମୁଦ୍ଦିଶ୍ୟ ତୁ ମେ ସର୍ବଂ ବିଭୂଷଣମିଦଂ କୃତମ୍ ।
ତଥା ତସ୍ୟ ହି ନାନ୍ୟସ୍ୟ ଭାବୋ ମାଂ ପ୍ରତି ତିଷ୍ଠତି । ୩୫ ।
ତେନ ସତ୍ୟେନ ମାଂ ରାଜନ୍ ମୋକ୍ତୁମର୍ହସ୍ୟରିନ୍ଦମ ।
ସ ହି ତିଷ୍ଠତି ଧର୍ମାତ୍ମା ମାଂ ପ୍ରତୀକ୍ଷନ୍ ସମୁତ୍ସୁକଃ । ୩୬ ।

---

ଏହାକହି ରମ୍ଭା ତଳକୁ ମୁହଁକରି ନିଜର ଚରଣ ଆଡ଼କୁ ଚାହିଁ ଠିଆ ହୋଇ ରହିଲା । ରାବଣକୁ ଦେଖି ସେତେବେଳେ ତାର ରୋମ ଟାଙ୍କୁରି ଉଠିଥିଲା । ୩୦ । ତଦନନ୍ତର ରାବଣ ରମ୍ଭାକୁ କହିଲା, "ତୁ ଯଦି ମୋର ପୁତ୍ରର ଭାର୍ଯ୍ୟା ହୋଇଥାଉ ତେବେ ତୁ ମୋର ପୁତ୍ରବଧୂ ହୋଇପାରିବୁ" । ଏହାର ଉତ୍ତରରେ ରମ୍ଭା କହିଲା, "ତାହାହିଁ ସତ୍ୟ ଅଟେ । ୩୧ । ହେ ରାକ୍ଷସପୁଙ୍ଗବ ! ମୁଁ ଧର୍ମତଃ ତୁମ୍ଭର ପୁତ୍ରବଧୂ ଅଟେ । ତୁମ୍ଭର ଭ୍ରାତା କୁବେରଙ୍କର ପ୍ରାଣଠାରୁ ବଳି ପ୍ରିୟ ନଳକୂବର ନାମରେ ତ୍ରିଲୋକପ୍ରସିଦ୍ଧ ଏକ ପୁତ୍ର ଅଛନ୍ତି । ସେ ଧର୍ମପାଳନ କରିବାରେ ବ୍ରାହ୍ମଣ ଏବଂ ପରାକ୍ରମରେ କ୍ଷତ୍ରିୟ ଅଟନ୍ତି ।୩୨-୩୩ । ସେ କ୍ରୋଧରେ ଅଗ୍ନିଙ୍କପରି ଓ କ୍ଷମାରେ ପୃଥିବୀପରି ଅଟନ୍ତି । ସେହି ଲୋକପାଳ ପୁତ୍ରଙ୍କ ସଙ୍କେତ ଅନୁସାରେ ମୁଁ ଆଜି ତାହାଙ୍କ ପାଖକୁ ଯାଉଅଛି । ତାଙ୍କର ପାଖକୁ ଯିବା ଉଦ୍ଦେଶ୍ୟରେହିଁ ମୁଁ ଏ ସମସ୍ତ ଶୃଙ୍ଗାର କରିଅଛି । ମୋଠାରେ ତାଙ୍କର ଯେପରି ଅନୁରାଗ ସେପରି ଅନ୍ୟ କାହାଠାରେ ନାହିଁ । ୩୪-୩୫ । ହେ ଅରିନ୍ଦମ ! ସେହି ସତ୍ୟକୁ ପାଳନ କରିବା ତୁମ୍ଭର ବିଧି । ତୁମେ ମୋତେ ଛାଡ଼ିଦିଅ । ସେ ଧର୍ମାତ୍ମା ମୋତେ ଉତ୍କଣ୍ଠାପୂର୍ବକ ଅପେକ୍ଷା କରି ରହିଥିବେ ।୩୬।

ତନ୍ନ ବଘ୍ନଂ ସୁତସ୍ୟେହ କର୍ତ୍ତୁଂ ନାର୍ହସି ମୁଞ୍ଚ ମାମ୍ ।
ସଦ୍ଭିରାଚରିତଂ ମାର୍ଗଂ ଗଚ୍ଛ ରାକ୍ଷସପୁଙ୍ଗବ । ୩୭ ।
ମାନନୀୟୋ ମମ ତ୍ୱଂ ହି ପାଲନୀୟା ତଥାସ୍ମି ତେ ।
ଏବମୁକ୍ତୋ ଦଶଗ୍ରୀବଃ ପ୍ରତ୍ୟୁବାଚ ବିନୀତବତ୍ । ୩୮ ।
ସ୍ନୁଷାସ୍ମି ଯଦବୋଚସ୍ତ୍ୱମେକପତ୍ନୀଷ୍ୱୟଂ କ୍ରମଃ ।
ଦେବଲୋକସ୍ଥିତିରୟଂ ସୁରାଣାଂ ଶାଶ୍ୱତୀ ମତା । ୩୯ ।
ପତିରପ୍ସରସାଂ ନାସ୍ତି ନ ଚୈକସ୍ତ୍ରୀପରିଗ୍ରହଃ ।
ଏବମୁକ୍ତ୍ୱା ସ ତାଂ ରକ୍ଷୋ ନିବେଶ୍ୟ ଚ ଶିଳାତଳେ । ୪୦ ।
କାମଭୋଗାଭିସଂସକ୍ତୋ ମୈଥୁନାୟୋପଚକ୍ରମେ ।
ସା ବିମୁକ୍ତା ତତୋ ରମ୍ଭା ଭ୍ରଷ୍ଟମାଲ୍ୟବିଭୂଷଣା । ୪୧ ।
ଗଜେନ୍ଦ୍ରାକ୍ରୀଡ଼ମଥିତା ନଦୀବାକୁଲତାଂ ଗତା ।
ଲୁଳିତାକୁଲକେଶାନ୍ତା କରେପି ତପଲ୍ଲବା । ୪୨ ।

---

ସୁତରାଂ ଆପଣ ତାଙ୍କ କାର୍ଯ୍ୟରେ ବିଘ୍ନ କରିବା ଉଚିତ ନୁହେ । ହେ ରାକ୍ଷସଶ୍ରେଷ୍ଠ ! ସାଧୁଲୋକ ଯେଉଁ ମାର୍ଗ ଅନୁସରଣ କରନ୍ତି ଆପଣ ମଧ୍ୟ ସେହି ମାର୍ଗ ଅନୁସରଣ କରନ୍ତୁ । ୩୭ । ଆପଣ ମୋର ମାନ୍ୟ ଅଟନ୍ତି ; ଆପଣ ମୋତେ ରକ୍ଷା କରିବା ଉଚିତ" । ୩୮ । ରମ୍ଭା ଏହା କହିବା ପରେ ରାବଣ ତାକୁ ଅତି ନମ୍ରଭାବରେ କହିଲା, "ତୁ ମୋର ପୁତ୍ରବଧୂ ବୋଲି ଯାହା କହିଲୁ, ତାହା ଠିକ୍ ନୁହେ, କାରଣ ଯେଉଁ ସ୍ତ୍ରୀଲୋକମାନଙ୍କର ଏକ ପତି ଥାଆନ୍ତି ସେ ନିୟମ ସେ ସ୍ତ୍ରୀଲୋକ ପାଇଁ ପ୍ରଯୁଜ୍ୟ ହୁଏ । ଏ କଥା ଦେବତାମାନେ ମଧ୍ୟ ମାନନ୍ତି ଏବଂ ଏହା ଚିରନ୍ତନ ହୋଇ ରହିଅଛି । ୩୯ । ଅପ୍‌ସରାମାନଙ୍କର ଗୋଟିଏ ମାତ୍ର ପତି ନୁହେ କିମ୍ବା ଦେବତା-ମାନଙ୍କର ଗୋଟିଏ ମାତ୍ର ସ୍ତ୍ରୀ ନୁହେଁ ।" ଏହା କହି ରାବଣ ରମ୍ଭାକୁ ପର୍ବତ ଶିଳା ଉପରେ ନେଇ ବସାଇ ଦେଲା ।୪୦। ସେ କାମଭୋଗରେ ଆସକ୍ତ ହୋଇ ତା ସହିତ ଶୃଙ୍ଗାର କଲା । ଯେତେବେଳେ ସେ ରମ୍ଭାକୁ ଭୋଗ କରିସାରି ଛାଡ଼ିଦେଲା, ସେତେ-ବେଳେ ତାର ପିନ୍ଧିଥିବା ପୁଷ୍ପମାଳା ଏବଂ ଅଳଙ୍କାର ଅଙ୍ଗରୁ ଖସିଗଲା । ୪୧ । ହସ୍ତୀମାନଙ୍କ କ୍ରୀଡ଼ା ଦ୍ୱାରା ଆଲୋଡ଼ିତ ହୋଇଥିବା ନଦୀପରି ରମ୍ଭା ବ୍ୟାକୁଳ ହୋଇ ପଡ଼ିଲା । ତାର ମୁଣ୍ଡର ବାଳ ଇତସ୍ତତଃ ହୋଇଯାଇଥିଲା । ବୃକ୍ଷର ପତ୍ର ସଦୃଶ ତାହାର ହାତ କମ୍ପୁଥିଲା । ୪୨ । ପବନରେ ଆନ୍ଦୋଳିତ ହେଉଥିବା

ପବନେନାବଧୂତେବ ଲତା କୁସୁମଶାଳିନୀ ।
ସା ବେପମାନା ଲଜ୍ଜନ୍ତୀ ଭୀତା କରକୃତାଞ୍ଜଳିଃ । ୪୩ ।
ନଳକୂବରମାସାଦ୍ୟ ପାଦୟୋର୍ନିପପାତ ହ ।
ତଦବସ୍ଥାଂ ଚ ତାଂ ଦୃଷ୍ଟ୍ୱା ମହାତ୍ମା ନଳକୂବରଃ । ୪୪ ।
ଅବ୍ରବୀତ୍ କିମିଦଂ ଭଦ୍ରେ ପାଦୟୋଃ ପତିତାସି ମେ ।
ସା ବୈ ନିଃଶ୍ୱସମାନା ତୁ ବେପମାନା କୃତାଞ୍ଜଳିଃ । ୪୫ ।
ତସ୍ମୈ ସର୍ବଂ ଯଥାତତ୍ତ୍ୱମାଖ୍ୟାତୁମୁପଚକ୍ରମେ ।
ଏଷ ଦେବ ଦଶଗ୍ରୀବଃ ପ୍ରାପ୍ତୋ ଗନ୍ତୁଂ ତ୍ରିବିଷ୍ଟପମ୍ । ୪୬ ।
ତେନ ସୈନ୍ୟସହାୟେନ ନିଶେୟଂ ପରିଣାମିତା ।
ଆୟାନ୍ତୀ ତେନ ଦୃଷ୍ଟାସ୍ମି ତ୍ୱତ୍ସକାଶମରିଂଦମ । ୪୭ ।
ଗୃହୀତା ତେନ ପୃଷ୍ଟାସ୍ମି କସ୍ୟ ତ୍ୱମିତି ରକ୍ଷସା ।
ମୟା ତୁ ସର୍ବଂ ଯତ୍ ସତ୍ୟଂ ତସ୍ମୈ ସର୍ବଂ ନିବେଦିତମ୍ ।୪୮।
କାମମୋହାଭିଭୂତାତ୍ମା ନାଶ୍ରୌଷୀତ୍ତଦ୍ ବଚୋ ମମ ।
ଯାଚ୍ୟମାନୋ ମୟା ଦେବ ସ୍ନୁଷା ତେଽହମିତି ପ୍ରଭୋ । ୪୯ ।
ତତ୍ ସର୍ବଂ ପୃଷ୍ଠତଃ କୃତ୍ୱା ବଲାତ୍ତେନାସ୍ମି ଧର୍ଷିତା ।
ଏବଂ ତ୍ୱମପରାଧଂ ମେ କ୍ଷନ୍ତୁମର୍ହସି ସୁବ୍ରତ । ୫୦ ।

---

ପୁଷ୍ପିତଲତା ସଦୃଶ କମ୍ପି କମ୍ପି ଲଜ୍ଜିତା ଓ ଭୟଭୀତା ରମ୍ଭା ନଳକୂବରଙ୍କ ପାଖକୁ ଗଲା ଏବଂ ସେଠାରେ ପହଞ୍ଚି ହାତଯୋଡ଼ି ତାଙ୍କ ପାଦତଳେ ପଡ଼ିଗଲା ।୪୩। ମହାତ୍ମା ନଳକୂବର ତାହାର ଏପରି ଦଶା ଦେଖି କହିଲେ, "ହେ ଭଦ୍ରେ! ଏ କଅଣ ! ତୁମେ ମୋ ପାଦତଳେ ପଡ଼ିଲ କାହିଁକି ?" ତତ୍‌ପରେ ରମ୍ଭା ଥରି ଥରି ଦୀର୍ଘ ନିଶ୍ୱାସ ପକାଇ ହାତଯୋଡ଼ି ସମସ୍ତ ଘଟଣା କହିଲା । ସେ କହିଲା, "ହେ ଦେବ ! ରାବଣ ସ୍ୱର୍ଗ ଲୋକକୁ ଯିବାପାଇଁ ଏଠାକୁ ଆସିଅଛି । ୪୪-୪୬ । ସେ ସମସ୍ତ ସେନା ସହିତ ଆଜି ରାତି ଏଠାରେ ବିତାଉଛି । ହେ ଅରିନ୍ଦମ ! ରାବଣ ମୋତେ ଆପଣଙ୍କ ପାଖକୁ ଆସୁଥିବାର ଦେଖିପକାଇଲା । ୪୭ । ସେ ମୋତେ ଧରି ପଚାରିଲା କି, 'ତୁ କାହା ପାଖକୁ ଯାଉଅଛୁ' । ମୁଁ ତାହାକୁ ସବୁ ସତ୍ୟ କଥା କହିଦେଲି । ୪୮ । ମାତ୍ର ସେ କାମ ଓ ମୋହରେ ଅନ୍ଧ ହୋଇ ଯାଇଥିଲା । ସୁତରାଂ ସେ ମୋ କଥା ଶୁଣିଲା ନାହିଁ । ମୁଁ ବହୁ ପ୍ରାର୍ଥନା କରି କହିଲି, 'ମୁଁ ତୁମ୍ଭର ପୁତ୍ରବଧୂ ଅଟେ' ।୪୯। କିନ୍ତୁ ସେ ସବୁ କଥା ପଛକୁ ପକାଇଦେଇ ମୋ ସହିତ ବଳପୂର୍ବକ ବିହାର କଲା । ଅତଏବ ହେ ସୁବ୍ରତ ! ଆପଣ ମୋର ଏ ଅପରାଧ କ୍ଷମା କରନ୍ତୁ । ୫୦ ।

ନ ହି ତୁଲ୍ୟବଲଂ ସୌମ୍ୟ ସ୍ତ୍ରିୟାଶ୍ଚ ପୁରୁଷସ୍ୟ ଚ ।
ଏତଚ୍ଛ୍ରୁତ୍ୱା ତୁ ସଂକ୍ରୁଦ୍ଧସ୍ତଥା ବୈଶ୍ରବଣାତ୍ମଜଃ । ୫୧ ।
ଧର୍ଷଣାଂ ତାଂ ପରାଂ ଶ୍ରୁତ୍ୱା ଧ୍ୟାନଂ ସଂପ୍ରବିବେଶ ହ ।
ତସ୍ୟ ତତ୍ କର୍ମ ବିଜ୍ଞାୟ ତଦା ବୈଶ୍ରବଣାତ୍ମଜଃ । ୫୨ ।
ମୁହୂର୍ତ୍ତାତ୍ କ୍ରୋଧତାମ୍ରାକ୍ଷସ୍ତୋୟଂ ଜଗ୍ରାହ ପାଣିନା ।
ଗୃହୀତ୍ୱା ସଲିଲଂ ସର୍ବମୁପସ୍ପୃଶ୍ୟ ଯଥାବିଧି । ୫୩ ।
ଉତ୍ସସର୍ଜ ତଥା ଶାପଂ ରାକ୍ଷସେନ୍ଦ୍ରାୟ ଦାରୁଣମ୍ ।
ଅକାମା ତେନ ଯସ୍ମାତ୍ତ୍ୱଂ ବଲାଦ୍‌ଭଦ୍ରେ ପ୍ରଧର୍ଷିତା । ୫୪ ।
ତସ୍ମାତ୍ ସ ଯୁବତୀମନ୍ୟାଂ ନାକାମାମୁପୟାସ୍ୟତି ।
ଯଦା ହ୍ୟକାମାଂ କାମାର୍ତ୍ତୋ ଧର୍ଷୟିଷ୍ୟତି ଯୋଷିତମ୍ । ୫୫ ।
ମୂର୍ଦ୍ଧା ତୁ ସପ୍ତଧା ତସ୍ୟ ଶକଲୀଭବିତା ତଦା ।
ତସ୍ମିନ୍ନୁଦାହୃତେ ଶାପେ ଜ୍ୱଲିତାଗ୍ନିସମପ୍ରଭେ । ୫୬ ।
ଦେବଦୁନ୍ଦୁଭୟୋ ନେଦୁଃ ପୁଷ୍ପବୃଷ୍ଟିଶ୍ଚ ଖାଚ୍ୟୁତା ।
ପିତାମହମୁଖାଶ୍ଚୈବ ସର୍ବେ ଦେବା ପ୍ରହର୍ଷିତାଃ । ୫୭ ।

---

ହେ ସୌମ୍ୟ ! ସ୍ତ୍ରୀର ବଳ କେବେ ପୁରୁଷର ବଳସହିତ ସମାନ ହୁଏ ନାହିଁ ।" ଏହା ଶୁଣି ନଳକୂବର କ୍ରୁଦ୍ଧ ହୋଇ ଉଠିଲେ । ୫୧ । ସମସ୍ତ ବୃତ୍ତାନ୍ତ ଶୁଣି ସେ ଧ୍ୟାନମଗ୍ନ ହୋଇ ଯୋଗବଳରେ ଏ ବୃତ୍ତାନ୍ତ ସତ୍ୟ ବୋଲି ଜାଣିଗଲେ । ୫୨ । କ୍ରୋଧରେ ଆଖି ଲାଲକରି ସେ ସେତେବେଳେ ହାତରେ ଜଳ ଧରି ଏବଂ ଇନ୍ଦ୍ରିୟମାନଙ୍କୁ ସ୍ପର୍ଶକରି ଆଚମନ ପୂର୍ବକ ରାକ୍ଷସରାଜ ରାବଣକୁ ଅତିଦାରୁଣ ଶାପ ଦେଇ କହିଲେ, "ତୋର ଇଚ୍ଛାବିରୁଦ୍ଧରେ ସେ ତୋ ସହିତ ବଳାତ୍କାର କରିଛି, ଅତଏବ ପୁଣି ସେ ଅନ୍ୟ କୌଣସି ସ୍ତ୍ରୀ ଉପରେ ଏପରି ବଳାତ୍କାର କରିପାରିବ ନାହିଁ । ଯଦି ସେ ପୁଣି କୌଣସି ସ୍ତ୍ରୀ ପ୍ରତି ତାର ଇଚ୍ଛା ବିରୁଦ୍ଧରେ ବଳାତ୍କାର କରେ ତାହାହେଲେ ତାର ମସ୍ତକ ସାତଖଣ୍ଡ ହୋଇଯିବ ।" ନଳକୂବରଙ୍କ ମୁହଁରୁ ଜ୍ୱଳନ୍ତ ଅଗ୍ନି ସଦୃଶ ଏ ଶାପ ନିର୍ଗତ ହେବା ମାତ୍ରେ ଦେବତାମାନଙ୍କର ଦୁନ୍ଦୁଭି ବାଜି ଉଠିଲା ଏବଂ ଆକାଶରୁ ପୁଷ୍ପବୃଷ୍ଟି ହେବାକୁ ଲାଗିଲା । ବ୍ରହ୍ମା ଆଦି ଦେବତାମାନେ ପ୍ରସନ୍ନ ହେଲେ । ୫୩-୫୭ । ଜଗତର ଗତି ଦେଖି ଓ ରାକ୍ଷସ ରାବଣର ମୃତ୍ୟୁର

ଜ୍ଞାତ୍ୱା ଲୋକଗତଂ ସର୍ବାଂ ତସ୍ୟ ମୃତ୍ୟୁଂ ଚ ରକ୍ଷସଃ ।
ଋଷୟଃ ପିତରଶ୍ଚୈବ ପ୍ରୀତିମାପୁରନୁତ୍ତମାମ୍ । ୫୮ ।
ଶ୍ରୁତ୍ୱା ତୁ ସ ଦଶଗ୍ରୀବସ୍ତଂ ଶାପଂ ରୋମହର୍ଷଣମ୍ ।
ନାରୀଷୁ ମୈଥୁନେ ଭାବଂ ନାକାମାସ୍ୱଭ୍ୟରୋଚୟତ୍ । ୫୯ ।
ତେନ ନୀତାଃ ସ୍ତ୍ରିୟଃ ପ୍ରୀତିମାପୁଃ ସର୍ବା ପତିବ୍ରତାଃ ।
ନଳକୂବରନିର୍ମୁକ୍ତଂ ଶାପଂ ଶ୍ରୁତ୍ୱା ମନଃପ୍ରିୟମ୍ । ୬୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତ୍ସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ନଳକୂବରଶାପୋ ନାମ ଷଡ୍‌ବିଂଶଃ ସର୍ଗଃ ।

---

# ସପ୍ତବିଂଶଃ ସର୍ଗଃ

## ସୁମାଳିବଧଃ

କୈଳାସଂ ଲଙ୍ଘୟିତ୍ୱାଥ ଦଶଗ୍ରୀବଃ ସ ରାବଣଃ ।
ଆସସାଦ ମହାତେଜା ଇନ୍ଦ୍ରଲୋକଂ ନିଶାଚରଃ । ୧ ।

---

ଏହା କାରଣ ବୋଲି ଜାଣି ଋଷିଗଣ ଓ ପିତୃଗଣ ବିଶେଷ ପ୍ରୀତି ଲାଭ କଲେ । ୫୮ । ଦଶଗ୍ରୀବ ଏହି ରୋମାଞ୍ଚକାରୀ ଶାପକୁ ଶୁଣିଲାଠାରୁ ଆଉ ଅନିଚ୍ଛୁକା ସ୍ତ୍ରୀଲୋକମାନଙ୍କ ଉପରେ ବଳାତ୍କାର କରିବା ଛାଡ଼ିଦେଲା । ୫୯ । ଯେଉଁ ପତିବ୍ରତା ସ୍ତ୍ରୀଲୋକମାନଙ୍କୁ ସେ ପ୍ରଥମରୁ ନେଇ ଆସିଥିଲା ସେମାନେ ନଳକୂବରଙ୍କ ଶାପ ବୃତ୍ତାନ୍ତ ଶୁଣି ମନେ ମନେ ପ୍ରସନ୍ନ ହେଲେ । ୬୦ ।

---

# ୨୭ଶ ସର୍ଗ

## ( ସୁମାଳିବଧ )

ମହାତେଜସ୍ୱୀ ଦଶଗ୍ରୀବ କୈଳାସ ପର୍ବତ ଅତିକ୍ରମ କରି ନିଜର ସୈନ୍ୟ ଓ ଯାନବାହନ ସହ ଇନ୍ଦ୍ରଲୋକରେ ଯାଇ ପହଞ୍ଚିଲା । ୧ । ରାକ୍ଷସସେନା ଚାରିଆଡ଼

ତସ୍ୟ ରାକ୍ଷସସୈନ୍ୟସ୍ୟ ସମନ୍ତାଦୁପଯାସ୍ୟତଃ ।
ଦେବଲୋକଂ ଯଯୌ ଶବ୍ଦୋ ମଥ୍ୟମାନାର୍ଣବୋପମଃ ।୨।
ଶ୍ରୁତ୍ୱା ତୁ ରାବଣଂ ପ୍ରାପ୍ତମିନ୍ଦ୍ରଶ୍ଚଲିତ ଆସନାତ୍ ।
ଅବ୍ରବୀତ୍ତତ୍ର ତାନ୍ ଦେବାନ୍ ସର୍ବାନେବ ସମାଗତାନ୍ ।୩।
ଆଦିତ୍ୟାନ ସବସୂନ୍ ରୁଦ୍ରାନ୍ ବିଶ୍ୱାନ୍ ସାଧ୍ୟାନ୍ ମରୁଦ୍‌ଗଣାନ୍ ।
ସଜ୍ଜୀଭବତ ଯୁଦ୍ଧାର୍ଥଂ ରାବଣସ୍ୟ ଦୁରାତ୍ମନଃ ।୪।
ଏବମୁକ୍ତାସ୍ତୁ ଶକ୍ରେଣ ଦେବାଃ ଶକ୍ରସମା ଯୁଧି ।
ସଂନହ୍ୟ ସୁମହାସତ୍ତ୍ୱା ଯୁଦ୍ଧଶ୍ରଦ୍ଧାସମନ୍ୱିତାଃ ।୫।
ସ ତୁ ଦୀନଃ ପରିତ୍ରସ୍ତୋ ମହେନ୍ଦ୍ରୋ ରାବଣଂ ପ୍ରତି ।
ବିଷ୍ଣୋଃ ସମୀପମାଗମ୍ୟ ବାକ୍ୟମେତଦୁବାଚ ହ ।୬।
ବିଷ୍ଣୋ କଥଂ କରିଷ୍ୟାମି ମହାବୀର୍ଯପରାକ୍ରମଃ ।
ଅସୌ ହି ବଳବାନ୍ ରକ୍ଷୋ ଯୁଦ୍ଧାର୍ଥମଭିବର୍ତ୍ତତେ ।୭।
ବରପ୍ରଦାନାଦ୍ ବଳବାନ୍ନ ଖଲ୍ୱନ୍ୟେନ ହେତୁନା ।
ତତ୍ତୁ ସତ୍ୟଂ ବଚଃ କାର୍ଯଂ ଯଦୁକ୍ତଂ ପଦ୍ମଯୋନିନା ।୮।

---

ଘୋର ଇନ୍ଦ୍ରଲୋକକୁ ଯେତେବେଳେ ଯାଉଥିଲା, ସେତେବେଳେ ସମୁଦ୍ର ବିକ୍ଷୋଭିତ ହେଲେ ଯେପରି ଶବ୍ଦହୁଏ ସେହିପରି କୋଳାହଳ ଜାତ ହେଲା ।୨। ରାବଣର ଆକ୍ରମଣ ବୃତ୍ତାନ୍ତ ଜାଣି ଇନ୍ଦ୍ରଙ୍କର ଆସନ ଟହଲିଗଲା । ସେଠାରେ ଜମା ହୋଇଥିବା ଦେବତାମାନଙ୍କୁ ଇନ୍ଦ୍ର ଏ ଘଟଣା କହିଲେ ।୩। ସେ ଏକତ୍ର ହୋଇଥିବା ଦ୍ୱାଦଶ ଆଦିତ୍ୟ, ଅଷ୍ଟବସୁ, ଏକାଦଶ ରୁଦ୍ର, ସାଧାରଣ ତଥା ଅଣଚାଶ ମରୁଦ୍‌ଗଣଙ୍କୁ କହିଲେ, "ଆପଣମାନେ ସମସ୍ତେ ଦୁଷ୍ଟ ରାବଣ ସହିତ ଯୁଦ୍ଧ କରିବା ପାଇଁ ପ୍ରସ୍ତୁତ ହୁଅନ୍ତୁ" ।୪। ଯୁଦ୍ଧରେ ଇନ୍ଦ୍ରଙ୍କ ସମାନ ପ୍ରଭାବଶାଳୀ ସମସ୍ତ ଦେବତା ଇନ୍ଦ୍ରଙ୍କର ଏ କଥା ଶୁଣି ଯୁଦ୍ଧ ପ୍ରତି ସଶ୍ରଦ୍ଧ ହୋଇ କବଚ ଆଦି ଧାରଣ କରିବାକୁ ଲାଗିଲେ ।୫। ଏଣେ ଇନ୍ଦ୍ର ରାବଣଠାରୁ ଭୟଭୀତ ହୋଇ ଭଗବାନ୍ ବିଷ୍ଣୁଙ୍କ ନିକଟକୁ ଗଲେ ଏବଂ ତାଙ୍କୁ କହିଲେ ।୬। "ହେ ଭଗବନ୍, ହେ ବିଷ୍ଣୋ ! ରାକ୍ଷସ ରାବଣ ବିଷୟରେ ମୁଁ କଅଣ କରିବି । ହାୟ ! ସେହି ଅତି ବଳବାନ୍ ରାବଣ ଲଢ଼ିବା ନିମନ୍ତେ ଆସୁଅଛି ।୭। ସେ କେବଳ ବରଦାନ ପ୍ରଭାବରେ ବଳବାନ୍ ହୋଇଅଛି; ତାର ଅନ୍ୟ କୌଣସି କାରଣ ନାହିଁ । ସାକ୍ଷାତ୍ ପଦ୍ମଯୋନି ବ୍ରହ୍ମା ଯାହା କହିଛନ୍ତି ତାକୁ ସତ୍ୟରୂପେ ପ୍ରତିପାଦିତ

ତଦ୍ ଯଥା ନମୁଚିର୍ବୃତ୍ରୋ ବଲର୍ନରକଶମ୍ବରୌ ।
ତ୍ୱଦ୍ବଲଂ ସମବଷ୍ଟଭ୍ୟ ମୟା ଦଗ୍ଧା ତଥା କୁରୁ । ୯ ।
ନ ହ୍ୟନ୍ୟୋ ଦେବଦେବେଶ ତ୍ୱାମୃତେ ମଧୁସୂଦନ ।
ଗତିଃ ପରାୟଣଂ ଚାସ୍ତି ତ୍ରୈଲୋକ୍ୟେ ସଚରାଚରେ । ୧୦ ।
ତ୍ୱଂ ହି ନାରାୟଣଃ ଶ୍ରୀମାନ୍ ପଦ୍ମନାଭଃ ସନାତନଃ ।
ତ୍ୱୟେମେ ସ୍ଥାପିତା ଲୋକାଃ ଶକ୍ରଶ୍ଚାହଂ ସୁରେଶ୍ୱରଃ ।୧୧।
ତ୍ୱୟା ସୃଷ୍ଟମିଦଂ ସର୍ବଂ ତ୍ରୈଲୋକ୍ୟଂ ସଚରାଚରମ୍ ।
ତ୍ୱାମେବ ଭଗବନ୍ ସର୍ବେ ପ୍ରବିଶନ୍ତି ଯୁଗକ୍ଷୟେ ।୧୨।
ତଦାଚକ୍ଷ୍ୱ ଯଥାତତ୍ତ୍ୱଂ ଦେବଦେବ ମମ ସ୍ୱୟମ୍ ।
ଅପି ଚକ୍ରସହାୟସ୍ତ୍ୱଂ ଯୋତ୍ସ୍ୟସେ ରାବଣଂ ପ୍ରଭୋ । ୧୩ ।
ଏବମୁକ୍ତଃ ସ ଶକ୍ରେଣ ଦେବୋ ନାରାୟଣଃ ପ୍ରଭୁଃ ।
ଅବ୍ରବୀନ୍ନ ପରତ୍ରାସଃ କାର୍ଯସ୍ତେ ଶ୍ରୂୟତାଂ ଚ ମେ । ୧୪ ।
ନ ତାବଦେଷ ଦୁଷ୍ଟାତ୍ମା ଶକ୍ୟୋ ଜେତୁଂ ସୁରାସୁରୈଃ ।
ହନ୍ତୁଂ ଚାପି ସମାସାଦ୍ୟ ବରଦାନେନ ଦୁର୍ଜୟଃ । ୧୫ ।

---

କରିବାକୁ ହେବ । ୮ । ଅତଏବ ହେ ଭଗବନ୍ ! ଯେପରି ନମୁଚି, ବୃତ୍ର, ନରକ ଏବଂ ଶମ୍ବରଙ୍କୁ ଆପଣଙ୍କ ଅପାର ସହାୟତାରେ ମୁଁ ଭସ୍ମ କରିଦେଇଥିଲି, ସେପରି କୌଣସି ଉପାୟ ଏବେ ଆପଣ କରନ୍ତୁ ।୯। କାରଣ ହେ ଦେବ ମଧୁସୂଦନ ! ଏ ସଚରାଚର ତ୍ରୈଲୋକ୍ୟରେ ତୁମ ଛଡ଼ା ଅନ୍ୟ କୌଣସି ଆଶ୍ରୟଦାତା ବା ରକ୍ଷକ ନାହାନ୍ତି ।୧୦। ଆପଣହିଁ ସନାତନ, ପଦ୍ମନାଭ, ଶ୍ରୀମାନ୍ ନାରାୟଣ ଅଟନ୍ତି । ଆପଣହିଁ ଏ ଲୋକମାନଙ୍କୁ ସ୍ଥାପିତ କରିଅଛନ୍ତି ଏବଂ ଆପଣହିଁ ମୋତେ ଦେବତା-ମାନଙ୍କର ଅଧିପତି କରିଅଛନ୍ତି ।୧୧। ହେ ଭଗବନ୍ ! ଏ ଚରାଚର ସମସ୍ତ ଜଗତକୁ ଆପଣହିଁ ସୃଷ୍ଟି କରିଅଛନ୍ତି ଏବଂ ଯୁଗାନ୍ତରେ ଏ ସମସ୍ତେ ଆପଣଙ୍କଠାରେହିଁ ଲୀନ ହୋଇଯାଆନ୍ତି ।୧୨। ଅତଏବ ହେ ଦେବଦେବ ! ଯେ ପ୍ରକାରେ ମୋର ଜୟ ହେବ ଆପଣ ମୋତେ ତାର ଉପାୟ ବତାଇ ଦିଅନ୍ତୁ ଅଥବା ଆପଣ କହିଦିଅନ୍ତୁ ଯେ ଆପଣ ସ୍ୱୟଂ ରାବଣ ସହିତ ଯୁଦ୍ଧକରିବେ" ।୧୩। ଭଗବାନ୍ ନାରାୟଣ ଇନ୍ଦ୍ରଙ୍କର ଏ କଥା ଶୁଣି କହିଲେ, "ତୁମେ ଭୟକରିବା ଉଚିତ ନୁହେ । ତୁମେ ମୋ କଥା ଶୁଣ ।୧୪। ଏହି ଦୁଷ୍ଟ ରାବଣକୁ ଦେବତା ବା ଅସୁର କେହି ଜିଣି ପାରିବେ ନାହିଁ; ଆଉ କେହି ମଧ୍ୟ ଏହାକୁ ମାରିପାରିବେ ନାହିଁ । ବରଦାନ ପ୍ରଭାବରୁ ସେ

ସର୍ବଥା ତୁ ମହତ୍ କର୍ମ କରିଷ୍ୟତି ବଲୋତ୍କଟଃ ।
ରାକ୍ଷସଃ ପୁତ୍ରସହିତୋ ଦୃଷ୍ଟମେତନ୍ନିସର୍ଗତଃ । ୧୬ ।
ଯତ୍ତୁ ମାଂ ତ୍ୱମଭାଷିଷ୍ଠା ଯୁଧ୍ୟସ୍ୱେତି ସୁରେଶ୍ୱର ।
ନାହଂ ତଂ ପ୍ରତିଯୋତ୍ସ୍ୟାମି ରାବଣଂ ରାକ୍ଷସଂ ଯୁଧି । ୧୭ ।
ନାହତ୍ୱା ସମରେ ଶତ୍ରୂଂ ବିଷ୍ଣୁଃ ପ୍ରତିନିବର୍ତ୍ତତେ ।
ଦୁର୍ଲଭଶ୍ଚୈବ କାମୋଽଦ୍ୟ ବରଗୁପ୍ତାଦ୍ଧି ରାବଣାତ୍ । ୧୮ ।
ପ୍ରତିଜାନେ ଚ ଦେବେନ୍ଦ୍ର ତ୍ୱତ୍ସମୀପେ ଶତକ୍ରତୋ ।
ଭବିତାସ୍ମି ଯଥାସ୍ୟାହଂ ରକ୍ଷସୋ ମୃତ୍ୟୁକାରଣମ୍ । ୧୯ ।
ଅହମେବ ନିହନ୍ତାସ୍ମି ରାବଣଂ ସପୁରଃସରମ୍ ।
ଦେବତା ନନ୍ଦୟିଷ୍ୟାମି ଜ୍ଞାତ୍ୱା କାଲମୁପାଗତମ୍ । ୨୦ ।
ଏତତ୍ତେ କଥିତଂ ତଥ୍ୟଂ ଦେବରାଜ ଶଚୀପତେ ।
ଯୁଧ୍ୟସ୍ୱ ବିଗତତ୍ରାସଃ ସର୍ବୈଃ ସାର୍ଦ୍ଧଂ ମହାବଲ । ୨୧ ।
ତତୋ ରୁଦ୍ରାଃ ସହାଦିତ୍ୟା ବସବୋ ମରୁତୋଽଶ୍ୱିନୌ ।
ସଂନଦ୍ଧା ନିର୍ଯ୍ୟୁସ୍ତୂର୍ଣଂ ରାକ୍ଷସାନଭିତଃ ପୁରାତ୍ । ୨୨ ।

---

ବର୍ତ୍ତମାନ ଦୁର୍ଜୟ ଅଟେ । ୧୫ । ସେ ବଳଦୃପ୍ତ ହୋଇ ସବୁ ପ୍ରକାର ପରାକ୍ରମ ଦେଖାଇବ । ତାର ନିଜର ପୁତ୍ରର ସହାୟତାରେ ସେ ଅତି ଭୟଙ୍କର ଯୁଦ୍ଧ କରିବ । ଏ କଥା ମୁଁ ଜ୍ଞାନଦୃଷ୍ଟିରେ ଦେଖିପାରୁଅଛି । ୧୬ । ହେ ସୁରେଶ୍ୱର ! ତୁମେ ଯେ ରାବଣ ସହିତ ଯୁଦ୍ଧ କରିବା ପାଇଁ ମୋତେ କହୁଛ, ମୁଁ ବର୍ତ୍ତମାନ ତାହା ସହିତ ଯୁଦ୍ଧ କରିବ ନାହିଁ ।୧୭। କାରଣ ଶତ୍ରୁକୁ ନ ମାରି ବିଷ୍ଣୁ କଦାପି ସମରଭୂମିରୁ ଫେରନ୍ତି ନାହିଁ; କିନ୍ତୁ ରାବଣ ବରଦାନ ବଳରେ ବର୍ତ୍ତମାନ ସୁରକ୍ଷିତ । ଅତଏବ ମୋର ସେ କାମନା ପୂର୍ଣ୍ଣ ହେବା କଠିନ ଅଟେ । ୧୮ । ହେ ଶତକ୍ରତୁ ଦେବରାଜ ! ମୁଁ ତୁମ ସମ୍ମୁଖରେ ପ୍ରତିଜ୍ଞା କରୁଅଛି ଯେ ମୁଁ କେବଳ ଏ ରାକ୍ଷସର ମୃତ୍ୟୁର କାରଣ ହେବି । ୧୯ । କେବଳ ମୁଁ ଏହାକୁ ପରିବାର ସହିତ ମାରି ଦେବଗଣଙ୍କୁ ଆନନ୍ଦିତ କରିବି । ମାତ୍ର ଉପଯୁକ୍ତ ସମୟ ଉପସ୍ଥିତ ହେଲେ ମୁଁ ତାହା କରିବି, ବର୍ତ୍ତମାନ ନୁହେ । ୨୦ । ହେ ମହାବଳୀ ଶଚୀପତି ଦେବରାଜ ! ମୁଁ ତୁମକୁ ପ୍ରକୃତ କଥା କହିଦେଲି । ଏବେ ତୁମେ ଯାଅ ଏବଂ ନିର୍ଭୟ ହୋଇ ଦେବତାମାନଙ୍କୁ ଆପଣା ସାଙ୍ଗରେ ନେଇ ରାବଣ ସହିତ ଲଢ଼" । ୨୧ । ତଦନନ୍ତର ରୁଦ୍ର, ଆଦିତ୍ୟ, ବସୁ, ମରୁଦ୍‌ଗଣ ଓ ଅଶ୍ୱିନୀକୁମାର ଦୁହେଁ କବଚ ପିନ୍ଧି ଅତିଶୀଘ୍ର ବାହାରିପଡ଼ିଲେ ଏବଂ ରାକ୍ଷସମାନଙ୍କୁ ଦୁଇ ଆଡ଼ୁ ଆକ୍ରମଣ କଲେ । ୨୨

ଏତସ୍ମିନ୍ନନ୍ତରେ ନାଦଃ ଶୁଶ୍ରୁବେ ରଜନୀକ୍ଷୟେ ।
ତସ୍ୟ ରାବଣସୈନ୍ୟସ୍ୟ ପ୍ରଯୁଦ୍ଧସ୍ୟ ସମନ୍ତତଃ । ୨୩ ।
ତେ ପ୍ରଯୁଦ୍ଧା ମହାବୀର୍ଯା ହ୍ୟନ୍ୟୋଽନ୍ୟମଭିବୀକ୍ଷ୍ୟ ବୈ ।
ସଂଗ୍ରାମମେବାଭିମୁଖା ହ୍ୟଭ୍ୟବର୍ତ୍ତନ୍ତ ହୃଷ୍ଟବତ୍ । ୨୪ ।
ତତୋ ଦୈବତସୈନ୍ୟାନାଂ ସଂକ୍ଷୋଭଃ ସମଜାୟତ ।
ତଦକ୍ଷୟ୍ୟଂ ମହାସୈନ୍ୟଂ ଦୃଷ୍ଟ୍ୱା ସମରମୂର୍ଦ୍ଧନି । ୨୫ ।
ତତୋ ଯୁଦ୍ଧଂ ସମଭବଦ୍ଦେବଦାନବରକ୍ଷସାମ୍ ।
ଘୋରଂ ତୁମୁଲନିର୍ହ୍ରାଦଂ ନାନାପ୍ରହରଣୋଦ୍ୟତମ୍ । ୨୬।
ଏତସ୍ମିନ୍ନନ୍ତରେ ଶୂରା ରାକ୍ଷସା ଘୋରଦର୍ଶନାଃ ।
ଯୁଦ୍ଧାର୍ଥଂ ସମବର୍ତ୍ତନ୍ତ ସଚିବା ରାବଣସ୍ୟ ତେ ।୨୭ ।
ମାରୀଚଶ୍ଚ ପ୍ରହସ୍ତଶ୍ଚ ମହାପାର୍ଶ୍ୱମହୋଦରୌ ।
ଅକମ୍ପନୋ ନିକୁମ୍ଭଶ୍ଚ ଶୁକଃ ସାରଣ ଏବ ଚ । ୨୮ ।
ସଂହ୍ଲାଦୋ ଧୂମକେତୁଶ୍ଚ ମହାଦଂଷ୍ଟ୍ରୋ ଘଟୋଦରଃ ।
ଜମ୍ବୁମାଲୀ ମହାହ୍ରାଦୋ ବିରୂପାକ୍ଷଶ୍ଚ ରାକ୍ଷସଃ । ୨୯ ।
ସୁପ୍ତଘ୍ନୋ ଯଜ୍ଞକୋପଶ୍ଚ ଦୁର୍ମୁଖୋ ଦୂଷଣଃ ଖରଃ ।
ତ୍ରିଶିରାଃ କରବୀରାକ୍ଷଃ ସୂର୍ଯଶତ୍ରୁଶ୍ଚ ରାକ୍ଷସଃ । ୩୦ ।

---

ଇତିମଧ୍ୟରେ ସକାଳ ହେବାମାତ୍ରେ ରାବଣର ରାକ୍ଷସସେନା ଘୋର ଯୁଦ୍ଧ କରିବାକୁ ଲାଗିଲେ । ଚାରିଆଡ଼ୁ ସେ ସୈନିକ ବୀରମାନଙ୍କର ଘୋର କୋଳାହଳ ଶବ୍ଦ ଶୁଣାଗଲା । ୨୩ । ସେହି ମହାବୀର୍ଯ୍ୟବାନ୍ ରାକ୍ଷସମାନେ ପରସ୍ପର ଆଡ଼କୁ ଚାହିଁ ଉତ୍ସାହ ପାଇ ହର୍ଷିତ ଅନ୍ତଃକରଣରେ ଯୁଦ୍ଧରେ ଅଗ୍ରସର ହୋଇ ଲଢ଼ିବାକୁ ଲାଗିଲେ । ୨୪ । ତଦନନ୍ତର ରାକ୍ଷସମାନଙ୍କର ଅପାର ବାହିନୀ ଦେଖି ଦେବତା-ମାନଙ୍କ ସୈନ୍ୟ ମଧ୍ୟରେ ଅତି ବିକ୍ଷୋଭ ଜାତ ହେଲା । ୨୫ ।ତଦନନ୍ତର ବିବିଧ ଆୟୁଧଧାରୀ ଦେବତା, ଦାନବ ଓ ରାକ୍ଷସମାନଙ୍କର ଅତି କୋଳାହଳ ସହକାରେ ତୁମୁଳ ଯୁଦ୍ଧ ଆରମ୍ଭ ହେଲା । ୨୬ । ଇତ୍ୟବସରରେ ଭୟଙ୍କରରୂପୀ ରାବଣର ବୀର ମନ୍ତ୍ରୀମାନେ ଯୁଦ୍ଧ କରିବାକୁ ଆସି ପହଞ୍ଚିଲେ । ୨୭ । ମାରୀଚ, ପ୍ରହସ୍ତ, ମହାପାର୍ଶ୍ୱ, ମହୋଦର, ଅକମ୍ପନ, ନିକୁମ୍ଭ, ଶୁକ, ସାରଣ, ସଂହ୍ଲାଦ, ଧୂମକେତୁ, ମହାଦଂଷ୍ଟ୍ର, ଘଟୋଦର, ଜମ୍ବୁମାଳୀ, ମହାହ୍ରାଦ ଏବଂ ରାକ୍ଷସ ବିରୂପାକ୍ଷ, ସୁପ୍ତଘ୍ନ, ଯଜ୍ଞକୋପ, ଦୁର୍ମୁଖ, ଖର, ତ୍ରିଶିର, କରବୀରାକ୍ଷ ଏବଂ ରାକ୍ଷସ ସୂର୍ଯ୍ୟଶତ୍ରୁ, ମହାକାୟ, ଅତିକାୟ,

ମହାକାୟୋଽତିକାୟଶ୍ଚ ଦେବାନ୍ତକନରାନ୍ତକୌ ।
ଏତୈଃ ସର୍ବୈଃ ପରିବୃତୋ ମହାବୀର୍ଯ୍ୟୋ ମହାବଲଃ । ୩୧ ।
ରାବଣସ୍ୟାର୍ଯ୍ୟକଃ ସୈନ୍ୟଂ ସୁମାଲୀ ପ୍ରବିବେଶ ହ ।
ସ ଦୈବତଗଣାନ୍ ସର୍ବାନ୍ନାନାପ୍ରହରଣୈଃ ଶିତୈଃ । ୩୨ ।
ବ୍ୟଧ୍ୱଂସୟତ୍ ସୁସଂକ୍ରୁଦ୍ଧୋ ବାୟୁର୍ଜଲଧରାନିବ ।
ତଦ୍ଦୈବତବଲଂ ରାମ ହନ୍ୟମାନଂ ନିଶାଚରୈଃ । ୩୩ ।
ପ୍ରଣୁନ୍ନଂ ସର୍ବତୋ ଦିଗ୍‌ଭ୍ୟଃ ସିଂହନୁନ୍ନା ମୃଗା ଇବ ।
ଏତସ୍ମିନ୍ନନ୍ତରେ ଶୂରୋ ବସୂନାମଷ୍ଟମୋ ବସୁଃ ।
ସାବିତ୍ର ଇତି ବିଖ୍ୟାତଃ ପ୍ରବିବେଶ ରଣାଜିରମ୍ । ୩୪ ।
ସୈନ୍ୟୈଃ ପରିବୃତୋ ହୃଷ୍ଟୋ ନାନାପ୍ରହରଣୋଦ୍ୟତୈଃ ।
ତ୍ରାସୟନ୍ ଶତ୍ରୁସୈନ୍ୟାନି ସିଂହଃ କ୍ଷୁଦ୍ରମୃଗାନିବ । ୩୫ ।
ତଥାଦିତ୍ୟୌ ମହାବୀର୍ଯ୍ୟୌ ତ୍ୱଷ୍ଟା ପୂଷା ଚ ଦଂଶିତୌ ।
ନିର୍ଭୟୌ ସହ ସୈନ୍ୟେନ ତଦା ପ୍ରାବିଶତାଂ ରଣେ । ୩୬ ।
ତତୋ ଯୁଦ୍ଧଂ ସମଭବତ୍ ସୁରାଣାଂ ସହ ରାକ୍ଷସୈଃ ।
କ୍ରୁଦ୍ଧାନାଂ ରକ୍ଷସାଂ କୀର୍ତ୍ତିଂ ସମରେଷ୍ୱନିବର୍ତ୍ତିନାମ୍ । ୩୭ ।

---

ଦେବାନ୍ତକ ଏବଂ ନରାନ୍ତକ, ଏହି ସବୁ ମହାବୀର୍ଯ୍ୟବାନ୍ ରାକ୍ଷସଙ୍କୁ ସଙ୍ଗରେ ଧରି ମହାବଳବାନ୍ ରାବଣର ପିତାମହ ସୁମାଳୀ ଦେବତାମାନଙ୍କ ସୈନ୍ୟ ଭିତରେ ପଶିଗଲା । ସେ ବିବିଧ ପ୍ରକାର ତୀକ୍ଷ୍ଣ ଶସ୍ତ୍ରଦ୍ୱାରା ସେମାନଙ୍କୁ ଏପରି ଧ୍ୱସ୍ତ କରିବାକୁ ଲାଗିଲା, ଯେପରି ପବନ ମେଘକୁ ଧ୍ୱସ୍ତ ବିଧ୍ୱସ୍ତ କରିପକାଏ । ହେ ରାମ ! ଦେବତାମାନଙ୍କର ସେନା ରାକ୍ଷସଙ୍କ ଦ୍ୱାରା ହତ ହୋଇ ସିଂହଠାରୁ ତ୍ରସ୍ତ ହୋଇଥିବା ମୃଗମାନଙ୍କ ସଦୃଶ ସବୁ ଦିଗକୁ ପଳାଇଗଲେ । ଇତିମଧ୍ୟରେ ବସୁମାନଙ୍କ ମଧ୍ୟରେ ଅଷ୍ଟମ ବସୁ ଶୂର ସାବିତ୍ର ଯୁଦ୍ଧଭୂମିରେ ଆସି ପହଞ୍ଚିଲେ । ୨୮-୩୪ । ସେ ହର୍ଷିତ ହୋଇ ବହୁ ସେନାଙ୍କୁ ସଙ୍ଗରେ ଧରି ଅନେକ ପ୍ରକାର ଅସ୍ତ୍ରଶସ୍ତ୍ର ଚଳାଇ, ସିଂହ ଅନ୍ୟ କ୍ଷୁଦ୍ର ପଶୁମାନଙ୍କୁ ତ୍ରସ୍ତ କଲାପରି ଶତ୍ରୁସୈନ୍ୟଙ୍କୁ ଭୀତତ୍ରସ୍ତ କରିପକାଇଲେ । ୩୫ । ତ୍ୱଷ୍ଟା ଏବଂ ପୂଷା ନାମକ ଦୁଇ ମହାବଳବାନ୍ ଆଦିତ୍ୟ ଦେବତା ମଧ୍ୟ ନିର୍ଭୟ ହୋଇ ଆପଣା ସେନା ସହିତ ଯୁଦ୍ଧଭୂମିରେ ଆସି ପ୍ରବେଶ କଲେ । ୩୬ । ଦେବତାମାନେ ରାକ୍ଷସମାନଙ୍କର କୀର୍ତ୍ତିକୁ ସହି ନ ପାରି ଯୁଦ୍ଧରୁ ଅନିବର୍ତ୍ତନଶୀଳ ରାକ୍ଷସମାନଙ୍କ ସହିତ ଲଢ଼ିବାକୁ ଲାଗିଲେ । ୩୭ । ଅନନ୍ତର ସେହି ରାକ୍ଷସମାନେ

ତତସ୍ତେ ରାକ୍ଷସାଃ ସର୍ବେ ବିବୁଧାନ୍ ସମରେ ସ୍ଥିତାନ୍ ।
ନାନାପ୍ରହରଣୈର୍ଘୋରୈର୍ଜଘ୍ନୁଃ ଶତସହସ୍ରଶଃ । ୩୮ ।
ଦେବାଶ୍ଚ ରାକ୍ଷସାନ୍ ଘୋରାନ୍ ମହାବଲପରାକ୍ରମାନ୍ ।
ସମରେ ବିମଲୈଃ ଶସ୍ତ୍ରୈରୁପନିନ୍ୟୁର୍ଯମକ୍ଷୟମ୍ । ୩୯ ।
ଏତସ୍ମିନ୍ନନ୍ତରେ ରାମ ସୁମାଲୀ ନାମ ରାକ୍ଷସଃ ।
ନାନାପ୍ରହରଣୈଃ କ୍ରୁଦ୍ଧସ୍ତତ୍ସୈନ୍ୟଂ ସୋଽଭ୍ୟବର୍ତ୍ତତ । ୪୦ ।
ସ ଦୈବତବଲଂ ସର୍ବଂ ନାନାପ୍ରହରଣୈଃ ଶିତୈଃ ।
ବ୍ୟଧ୍ୱଂସୟତ ସଂକ୍ରୁଦ୍ଧୋ ବାୟୁର୍ଜଲଧରଂ ଯଥା । ୪୧ ।
ତେ ମହାବାଣବର୍ଷୈଶ୍ଚ ଶୂଲପ୍ରାସୈଃ ସୁଦାରୁଣୈଃ ।
ହନ୍ୟମାନା ସୁରାଃ ସର୍ବେ ନ ବ୍ୟତିଷ୍ଠନ୍ତ ସଂହତାଃ । ୪୨ ।
ତତୋ ବିଦ୍ରାବ୍ୟମାଣେଷୁ ଦୈବତେଷୁ ସୁମାଲିନା ।
ବସୂନାମଷ୍ଟମଃ କ୍ରୁଦ୍ଧଃ ସାବିତ୍ରୋ ବୈ ବ୍ୟବସ୍ଥିତଃ । ୪୩ ।
ସଂବୃତଃ ସ୍ୱୈରଥାନୀକୈଃ ପ୍ରହରନ୍ତଂ ନିଶାଚରମ୍ ।
ବିକ୍ରମେଣ ମହାତେଜା ବାରୟାମାସ ସଂଯୁଗେ । ୪୪ ।

---

ମଧ୍ୟ ବିବିଧ ଘୋର ଅସ୍ତ୍ରଶସ୍ତ୍ର ଚାଳନା କରି ଯୁଦ୍ଧରେ ଠିଆ ହୋଇଥିବା ଶହ ଶହ ହଜାର ହଜାର ଦେବତାଙ୍କୁ ସଂହାର କରିବାକୁ ଲାଗିଲେ । ୩୮ । ଦେବତାମାନେ ମଧ୍ୟ ଯୁଦ୍ଧରେ ମହାବଳବାନ୍ ରାକ୍ଷସମାନଙ୍କୁ ନିଜର ଚକଚକ୍ୟଶାଳୀ ଅସ୍ତ୍ରମାନଙ୍କ ଆଘାତରେ ଯମାଳୟକୁ ପଠାଇବାକୁ ଲାଗିଲେ । ୩୯ । ହେ ରାମ ! ଇତମଧ୍ୟରେ ରାକ୍ଷସ ସୁମାଳୀ ବିବିଧ ପ୍ରକାର ଅସ୍ତ୍ର ଧରି କ୍ରୋଧପୂର୍ଣ୍ଣ ହୋଇ ଲଢ଼ିବା ପାଇଁ ସମ୍ମୁଖକୁ ଗଲା । ୪୦ । ଯେପରି ପବନ ମେଘରାଶିକୁ ଧ୍ୱସ୍ତ ବିଧ୍ୱସ୍ତ କରିଦିଏ, ସେହିପରି ସୁମାଳୀ କ୍ରୋଧପୂର୍ଣ୍ଣ ହୋଇ, ତୀକ୍ଷ୍ଣ ଅସ୍ତ୍ର ପ୍ରୟୋଗ କରି ଦେବସେନାଙ୍କୁ ଅସ୍ତବ୍ୟସ୍ତ କରିବାକୁ ଲାଗିଲା । ୪୧। ସେହି ଦେବତାମାନେ ରାକ୍ଷସମାନଙ୍କ ମହାମହା-ବାଣର ବୃଷ୍ଟି ତଥା ଶୂଳ, ପ୍ରାସ ଆଦି ଦାରୁଣ ଅସ୍ତ୍ରର ଆଘାତରେ ଯୁଦ୍ଧଭୂମିରେ ଏକତ୍ର ହୋଇ ରହିପାରିଲେ ନାହିଁ ।୪୨। ସୁମାଳୀ ଦେବତାମାନଙ୍କୁ ଏହିପରିଭାବରେ ଘଉଡ଼ାଇ ଦେବାରୁ ଅଷ୍ଟମ ବସୁ ସାବିତ୍ର କ୍ରୁଦ୍ଧ ହୋଇ ତାର ସମ୍ମୁଖରେ ଆସି ଠିଆହେଲେ । ୪୩ । ମହାତେଜସ୍ୱୀ ସାବିତ୍ର ସାବଧାନ ହୋଇ ନିଜର ରଥାରୂଢ଼ ବାହିନୀଙ୍କୁ ସଙ୍ଗରେ ଧରି ରାକ୍ଷସମାନଙ୍କ ଉପରେ ପ୍ରହାର କଲେ ଏବଂ ନିଜର ପରାକ୍ରମ ଦ୍ୱାରା ସୁମାଳୀକୁ ଯୁଦ୍ଧରେ ରୋକିଦେଲେ । ୪୪ । ଅନନ୍ତର ଯୁଦ୍ଧଭୂମିରେ

ତତସ୍ତୟୋର୍ମହାଯୁଦ୍ଧମଭବଦ୍ରୋମହର୍ଷଣମ୍ ।
ସୁମାଲିନୋ ବସୋଶ୍ଚୈବ ସମରେଷ୍ୱନିବର୍ତ୍ତିନୋଃ । ୪୫ ।
ତତସ୍ତସ୍ୟ ମହାବାଣୈର୍ବସୁନା ସୁମହାତ୍ମନା ।
ନିହତଃ ପନ୍ନଗରଥଃ କ୍ଷଣେନ ବିନିପାତିତଃ । ୪୬ ।
ହତ୍ୱା ତୁ ସଂଯୁଗେ ତସ୍ୟ ରଥଂ ବାଣଶତୈଶ୍ଚିତମ୍ ।
ଗଦାଂ ତସ୍ୟ ବଧାର୍ଥାୟ ବସୁର୍ଜଗ୍ରାହ ପାଣିନା । ୪୭ ।
ତତଃ ପ୍ରଗୃହ୍ୟ ଦୀପ୍ତାଗ୍ରାଂ କାଳଦଣ୍ଡୋପମାଂ ଗଦାମ୍ ।
ତାଂ ମୂର୍ଦ୍ଧ୍ନି ପାତୟାମାସ ସାବିତ୍ରୋ ବୈ ସୁମାଲିନଃ । ୪୮ ।
ସା ତସ୍ୟୋପରି ଚୋଲ୍କାଭା ପତନ୍ତୀ ବଭୌ ଗଦା ।
ଇନ୍ଦ୍ରପ୍ରମୁକ୍ତା ଗର୍ଜନ୍ତୀ ଗିରାବିବ ମହାଶନିଃ । । ୪୯ ।
ତସ୍ୟ ନୈବାସ୍ଥି ନ ଶିରୋ ନ ମାଂସଂ ଦଦୃଶେ ତଦା ।
ଗଦୟା ଭସ୍ମତାଂ ନୀତଂ ନିହତସ୍ୟ ରଣାଜିରେ । ୫୦ ।
ତଂ ଦୃଷ୍ଟ୍ୱା ନିହତଂ ସଂଖ୍ୟେ ରାକ୍ଷସାସ୍ତେ ସମନ୍ତତଃ ।
ବ୍ୟଦ୍ରବନ୍ ସହିତା ସର୍ବେ କ୍ରୋଶମାନାଃ ପରସ୍ପରମ୍ ।
ବିଦ୍ରାବ୍ୟମାଣା ବସୁନା ରାକ୍ଷସା ନାବତସ୍ଥିରେ । ୫୧ ।

ଇତି ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଉତ୍ତରକାଣ୍ଡେ ସୁମାଲିବଧୋ ନାମ ସପ୍ତବିଂଶଃ ସର୍ଗଃ ।

---

ପିଠି ନ ଦେଖାଉଥିବା ସୁମାଳୀ ଏବଂ ବସୁ ଏ ଦୁହିଁଙ୍କର ରୋମାଞ୍ଚକାରୀ ମହା-ଭୟଙ୍କର ଯୁଦ୍ଧ ହେବାକୁ ଲାଗିଲା । ୪୫ । ମହାବଳୀ ମହାତ୍ମା ସାବିତ୍ର ବସୁ ବଡ଼ ବଡ଼ ବାଣ ଚଳାଇ ତାହାର ପନ୍ନଗରଥକୁ ଖଣ୍ଡ ଖଣ୍ଡ କରି ମୁହୂର୍ତ୍ତକ ମଧ୍ୟରେ ଭାଙ୍ଗି ପକାଇଲେ । ୪୬ । ଶତ ଶତ ବାଣ ଚଳାଇ ଏବଂ ତାର ରଥକୁ ନଷ୍ଟ କରିଦେଇ ସେହି ବସୁ ସୁମାଳୀକୁ ବଧ କରିବା ନିମନ୍ତେ ହାତରେ ଗଦା ଧଇଲେ ।୪୭। ସାବିତ୍ର ପ୍ରଜ୍ୱଳିତ ଏବଂ କାଳଦଣ୍ଡ ସଦୃଶ ନିଜର ଗଦାକୁ ଉଠାଇ ସୁମାଳୀର ମସ୍ତକ ଉପରେ ନିକ୍ଷେପ କଲେ । ୪୮ । ଯେପରି ଇନ୍ଦ୍ରଙ୍କ ଦ୍ୱାରା ଗୃହୀତ ବଜ୍ର ଗର୍ଜନ କରି ପର୍ବତ ଶିଖର ଉପରେ ଯାଇ ପଡ଼େ, ସେହିପରି ଉଲ୍‌କାସଦୃଶ ପ୍ରଭାଯୁକ୍ତ ସେହି ଗଦା ସୁମାଳୀର ମସ୍ତକ ଉପରେ ଯାଇ ପଡ଼ିଲା । ୪୯ । ସେହି ଗଦା ପ୍ରହାରରେ ସୁମାଳୀର ହାଡ଼, ମୁଣ୍ଡ କି ମାଂସ କିଛି ଦେଖାଗଲା ନାହିଁ; ଗଦା ସେ ସମସ୍ତକୁ ଯୁଦ୍ଧଭୂମିରେ ଭସ୍ମ କରି ଦେଇଥିଲା । ୫୦ । ରାକ୍ଷସମାନେ ସୁମାଳୀକୁ ଯୁଦ୍ଧରେ ମୃତ ହେବାର ଦେଖି ପରସ୍ପରକୁ ଭର୍ତ୍ସନାକରି ଚାରିଆଡ଼େ ପଳାଇବାକୁ ଲାଗିଲେ । ବସୁଙ୍କ ଦ୍ୱାରା ବିତାଡ଼ିତ ହୋଇ ରାକ୍ଷସମାନେ ରଣଭୂମିରେ ଆଉ ରହି ପାରିଲେ ନାହିଁ । ୫୧ ।

---

# ଅଷ୍ଟାବିଂଶଃ ସର୍ଗଃ

## ଜୟନ୍ତାପବାହନମ୍

ସୁମାଳିନଂ ହତଂ ଦୃଷ୍ଟ୍ୱା ବସୁନା ଭସ୍ମସାତ୍ କୃତମ୍ ।
ସ୍ୱସୈନ୍ୟଂ ବାଦ୍ରୁତଂ ଚାପି ଲକ୍ଷୟିତ୍ୱାର୍ଦ୍ଦିତଂ ସୁରୈଃ । ୧ ।
ତତଃ ସ ବଳବାନ୍ କ୍ରୁଦ୍ଧୋ ରାବଣସ୍ୟ ସୁତସ୍ତଦା ।
ନିବର୍ତ୍ତ୍ୟ ରାକ୍ଷସାନ୍ ସର୍ବାନ୍ ମେଘନାଦୋ ବ୍ୟବସ୍ଥିତଃ । ୨ ।
ସ ରଥେନାଗ୍ନିବର୍ଣ୍ଣେନ କାମଗେନ ମହାରଥଃ ।
ଅଭିଦୁଦ୍ରାବ ସେନାଂ ତାଂ ବନାନ୍ୟଗ୍ନିରିବ ଜ୍ୱଲନ୍ । ୩ ।
ତତଃ ପ୍ରବିଶତସ୍ତସ୍ୟ ବିବିଧାୟୁଧଧାରିଣଃ ।
ବିଦୁଦ୍ରୁବୁର୍ଦ୍ଦିଶଃ ସର୍ବା ଦର୍ଶନାଦେବ ଦେବତାଃ । ୪ ।
ନ ବଭୂବ ତଦା କଶ୍ଚିଦ୍ ଯୁୟୁତ୍ସୋରସ୍ୟ ସଂମୁଖେ ।
ସର୍ବାନାବିଧ୍ୟ ବିତ୍ରସ୍ତାଂସ୍ତତଃ ଶକ୍ରୋଽବ୍ରବୀତ୍ ସୁରାନ୍ । ୫ ।

---

## ୨୮ଶ ସର୍ଗ

### ( ଜୟନ୍ତ ଅପହରଣ )

ସାବିତ୍ର ବସୁଙ୍କ ଦ୍ୱାରା ସୁମାଳୀ ନିହତ ଏବଂ ଭସ୍ମସାତ୍ ହୋଇଯିବାର ଦେଖି ତଥା ସମସ୍ତ ରାକ୍ଷସସେନାକୁ ଦେବତାଙ୍କ ଦ୍ୱାରା ପ୍ରପୀଡ଼ିତ ହୋଇ ପଳାଇ ଯାଉଥିବାର ଦେଖି ମହାବଳବାନ୍ ରାବଣପୁତ୍ର ମେଘନାଦ ଅତ୍ୟନ୍ତ କ୍ରୁଦ୍ଧ ହେଲେ ଏବଂ ନିଜର ସମସ୍ତ ରାକ୍ଷସ ସେନାକୁ ଲେଉଟାଇ ଆଣି ନିଜେ ଯୁଦ୍ଧ କରିବା ପାଇଁ ପ୍ରସ୍ତୁତ ହୋଇ ଠିଆହେଲେ । ୧-୨ ।ପ୍ରଜ୍ୱଳିତ ଅଗ୍ନି ଯେପରି ବନ ଆଡ଼କୁ ଧାଏଁ, ସେହିପରି ମହାରଥ ମେଘନାଦ ଏକ ଅଗ୍ନିବର୍ଣ୍ଣ ଉତ୍ତମ ରଥ ଉପରେ ବସି ଦେବ-ସେନା ଆଡ଼କୁ ଧାଇଁଲେ । ୩ । ବିବିଧ ପ୍ରକାର ଆୟୁଧରେ ସୁସଜ୍ଜିତ ମେଘନାଦକୁ ସମରଭୂମିରେ ପ୍ରବେଶ କରିବାର ଦେଖି ଦେବଗଣ ଚାରିଆଡ଼କୁ ଛତ୍ରଭଙ୍ଗ ହେଲେ । ୪ । ସେତେବେଳେ ଯୁଦ୍ଧକାମୀ ମେଘନାଦ ସମ୍ମୁଖରେ କେହି ଠିଆ ହୋଇ ପାରିଲେ ନାହିଁ । ସମସ୍ତ ଦେବସେନାକୁ ଭୟଭୀତ ହୋଇ ପଳାଉଥିବାର ଦେଖି ଇନ୍ଦ୍ର ସେମାନଙ୍କୁ କହିଲେ । ୫ । "ହେ ଦେବଗଣ ! ତୁମ୍ଭେମାନେ ଭୟ କର

ନ ଭେତବ୍ୟଂ ନ ଗନ୍ତବ୍ୟଂ ନିବର୍ତଧ୍ୱଂ ରଣେ ସୁରାଃ ।
ଏଷ ଗଚ୍ଛତି ପୁତ୍ରୋ ମେ ଯୁଦ୍ଧାର୍ଥମପରାଜିତଃ । ୬ ।
ତତଃ ଶକ୍ରସୁତୋ ଦେବୋ ଜୟନ୍ତ ଇତି ବିଶ୍ରୁତଃ ।
ରଥେନାଦ୍ଭୁତକଳ୍ପେନ ସଂଗ୍ରାମେଽଭ୍ୟବର୍ତତ । ୭ ।
ତତସ୍ତେ ତ୍ରିଦଶାଃ ସର୍ବେ ପରିବାର୍ଯ ଶଚୀସୁତମ୍ ।
ରାବଣସ୍ୟ ସୁତଂ ଯୁଦ୍ଧେ ସମାସାଦ୍ୟ ପ୍ରଜଘ୍ନିରେ । ୮ ।
ତେଷାଂ ଯୁଦ୍ଧଂ ସମଭବତ୍‌ସଦୃଶଂ ଦେବରକ୍ଷସାମ୍ ।
ମହେନ୍ଦ୍ରସ୍ୟ ଚ ପୁତ୍ରସ୍ୟ ରାକ୍ଷସେନ୍ଦ୍ରସୁତସ୍ୟ ଚ । ୯ ।
ତତୋ ମାତଲିପୁତ୍ରେ ତୁ ଗୋମୁଖେ ରାକ୍ଷସାତ୍ମଜଃ ।
ସାରଥୌ ପାତୟାମାସ ଶରାନ୍ କନକଭୂଷଣାନ୍ । ୧୦ ।
ଶଚୀସୁତଶ୍ଚାପି ତଥା ଜୟନ୍ତସ୍ତସ୍ୟ ସାରଥିମ୍ ।
ତଂ ଚାପି ରାବଣିଂ କ୍ରୁଦ୍ଧଃ ସମନ୍ତାତ୍ ପ୍ରତ୍ୟବିଧ୍ୟତ । ୧୧ ।
ସ ହି କ୍ରୋଧସମାବିଷ୍ଟୋ ବଲୀ ବିସ୍ଫାରିତେକ୍ଷଣଃ ।
ରାବଣିଃ ଶକ୍ରତନୟଂ ଶରବର୍ଷୈରବାକିରତ୍ । ୧୨ ।
ତତୋ ନାନାପ୍ରହରଣାନ୍ ଶିତଧାରାନ୍ ସହସ୍ରଶଃ ।
ପାତୟାମାସ ସଂକ୍ରୁଦ୍ଧଃ ସୁରସୈନ୍ୟେଷୁ ରାବଣିଃ । ୧୩ ।

---

ନାହିଁ ବା ପଳାଇ ଯାଅ ନାହିଁ । ତୁମେ ସମସ୍ତେ ଯୁଦ୍ଧଭୂମିକୁ ଫେରିଆସ । ଦେଖ, ମୋର ଦୁର୍ଜେୟ ପୁତ୍ର ବର୍ତ୍ତମାନ ଯୁଦ୍ଧ କରିବାକୁ ଯାଉଅଛି" । ୬ । ଅନନ୍ତର ଇନ୍ଦ୍ରପୁତ୍ର ଜୟନ୍ତ ଏକ ଅଦ୍ଭୁତ ରଥ ଉପରେ ଆରୋହଣ କରି ଯୁଦ୍ଧକ୍ଷେତ୍ରରେ ଆସି ପହଞ୍ଚିଲେ । ୭ । ତା ପରେ ଦେବତାଗଣ ଇନ୍ଦ୍ରପୁତ୍ରଙ୍କ ଚାରିଆଡ଼େ ବେଢ଼ି ରହିଲେ ଏବଂ ରାବଣପୁତ୍ର ମେଘନାଦ ଉପରେ ପ୍ରହାର କରିବାକୁ ଲାଗିଲେ । ୮ । ପୂର୍ବେ ଦେବାସୁର ଯୁଦ୍ଧପରି ଦେବତା ଓ ରାକ୍ଷସମାନଙ୍କର ତଥା ଇନ୍ଦ୍ରପୁତ୍ର ଜୟନ୍ତ ଏବଂ ରାକ୍ଷସେନ୍ଦ୍ରପୁତ୍ର ମେଘନାଦ ମଧ୍ୟରେ ସମାନଭାବରେ ଯୁଦ୍ଧ ହେବାକୁ ଲାଗିଲା । ୯ । ତଦନନ୍ତର ମେଘନାଦ ଜୟନ୍ତଙ୍କ ସାରଥି ମାତଳିପୁତ୍ର ଗୋମୁଖ ଉପରେ ବହୁ ସୁବର୍ଣ୍ଣଭୂଷିତ ଶର ନିକ୍ଷେପ କଲା । ଶଚୀପୁତ୍ର ଜୟନ୍ତ ମଧ୍ୟ କ୍ରୋଧରେ ମେଘନାଦ ଓ ତାର ସାରଥି ଉପରକୁ ଶର ବୃଷ୍ଟିକରି ସେମାନଙ୍କୁ ବିଦ୍ଧ କଲେ ।୧୦-୧୧। ତତ୍ପରେ ମେଘନାଦ କ୍ରୋଧପୂର୍ଣ୍ଣ ହୋଇ ଚକ୍ଷୁ ବିସ୍ଫାରିତ କରି ଶରବୃଷ୍ଟିପୂର୍ବକ ଇନ୍ଦ୍ରପୁତ୍ରଙ୍କୁ ଘୋଡ଼ାଇ ଦେବାକୁ ଲାଗିଲା । ୧୨ । ରାବଣପୁତ୍ର ମେଘନାଦ ଅତ୍ୟନ୍ତ କ୍ରୁଦ୍ଧ ହୋଇ ହଜାର ହଜାର ବିବିଧ ତୀକ୍ଷ୍ଣ ଆୟୁଧ ଦେବସେନାମାନଙ୍କ ଉପରେ ଚଳାଇବାକୁ

ଶତଘ୍ନୀମୁଷଳପ୍ରାସଗଦାଖଡ୍ଗପରଶ୍ୱଧାନ୍ ।
ମହାନ୍ତି ଗିରିଶୃଙ୍ଗାଣି ପାତୟାମାସ ରାବଣିଃ । ୧୪ ।
ତତଃ ପ୍ରବ୍ୟଥିତା ଲୋକାଃ ସଂଜଜ୍ଞେ ଚ ତମୋ ମହତ୍ ।
ତସ୍ୟ ରାବଣପୁତ୍ରସ୍ୟ ଶତ୍ରୁସୈନ୍ୟାନି ନିଘ୍ନତଃ । ୧୫ ।
ତତସ୍ତଦ୍ଦୈବତବଲଂ ସମନ୍ତାତ୍ତଂ ଶଚୀସୁତମ୍ ।
ବହୁପ୍ରକାରମସ୍ୱସ୍ଥମଭବଚ୍ଛରପୀଡ଼ିତମ୍ । ୧୬ ।
ନାଭ୍ୟଜାନନ୍ତ ଚାନ୍ୟୋଽନ୍ୟଂ ରକ୍ଷୋ ବା ଦେବତାଥ ବା ।
ତତ୍ର ତତ୍ର ବିପର୍ଯ୍ୟସ୍ତଂ ସମନ୍ତାତ୍ ପରିଧାବତ ।:୧୭ ।
ଦେବା ଦେବାନ୍ନିଜଘ୍ନୁସ୍ତେ ରାକ୍ଷସା ରାକ୍ଷସାଂସ୍ତଥା ।
ସଂମୂଢ଼ାସ୍ତମସାଚ୍ଛନ୍ନା ବ୍ୟଦ୍ରବନ୍ନପରେ ତଦା । ୧୮ ।
ଏତସ୍ମିନ୍ନନ୍ତରେ ବୀରଃ ପୁଲୋମା ନାମ ବୀର୍ଯ୍ୟବାନ୍ ।
ଦୈତ୍ୟେନ୍ଦ୍ରସ୍ତେନ ସଂଗୃହ୍ୟ ଶଚୀପୁତ୍ରୋଽପବାହିତଃ । ୧୯ ।
ସଂଗୃହ୍ୟ ତଂ ତୁ ଦୌହିତ୍ରଂ ପ୍ରବିଷ୍ଟଃ ସାଗରଂ ତଦା ।
ଆର୍ଯ୍ୟକଃ ସ ହି ତସ୍ୟାସୀତ୍ ପୁଲୋମା ଯେନ ସା ଶଚୀ । ୨୦ ।

---

ଲାଗିଲା । ୧୩ । ଶତଘ୍ନୀ, ମୁଷଳ, ପ୍ରାସ, ଗଦା, ଖଡ୍ଗ, ପରଶୁ ଏବଂ ବଡ଼ ବଡ଼ ପର୍ବତ ଶୃଙ୍ଗ ଆଦି ରାବଣପୁତ୍ର ଦେବସେନାମାନଙ୍କ ଉପରେ ପ୍ରହାର କରିବାକୁ ଲାଗିଲା । ୧୪ । ଏହି ପ୍ରକାରେ ମେଘନାଦ ଶତ୍ରୁସୈନ୍ୟଙ୍କୁ ପ୍ରହାର କରୁଥିବାବେଳେ ତାହାର ମାୟାରେ ଚାରିଆଡ଼େ ଅନ୍ଧକାର ଘୋଟିଗଲା । ତଦ୍ଦ୍ୱାରା ତ୍ରିଲୋକବାସୀ ସମସ୍ତ ପ୍ରଜା ବ୍ୟତିବ୍ୟସ୍ତ ହୋଇଉଠିଲେ । ୧୫ । ଜୟନ୍ତଙ୍କୁ ଘେରିକରି ଯେଉଁ ଦେବସେନା ରହିଥିଲେ ସେମାନେ ମେଘନାଦର ବାଣରେ ପୀଡ଼ିତ ହୋଇ ନାନା-ଭାବରେ ବ୍ୟଥିତ ହୋଇ ଉଠିଲେ ।୧୬। ସେତେବେଳେ ଉଭୟପକ୍ଷ ସେନାଙ୍କର ନିଜ ଓ ପରପକ୍ଷ ଜ୍ଞାନ ରହିଲା ନାହିଁ ଏବଂ ଯୁଦ୍ଧଭୂମିରେ ସର୍ବତ୍ର ବିଶୃଙ୍ଖଳା ଜାତ ହୋଇ-ଗଲା । ସୈନ୍ୟମାନେ ସମସ୍ତେ ବ୍ୟତିବ୍ୟସ୍ତ ହୋଇ ଚାରିଆଡ଼େ ଧାଇଁବାକୁ ଲାଗିଲେ ।୧୭ ଦେବତାମାନେ ଦେବତାଙ୍କୁ ଓ ରାକ୍ଷସମାନେ ରାକ୍ଷସଙ୍କୁ ମାରିବାକୁ ଲାଗିଲେ । ବୀରମାନେ ଅନ୍ଧକାରରେ ଅତ୍ୟନ୍ତ ବ୍ୟାକୁଳ ହୋଇ ପଳାଇବାକୁ ଲାଗିଲେ । ୧୮ । ଇତିମଧ୍ୟରେ ପରାକ୍ରମୀ ବୀର ପୁଲୋମା ନାମକ ବଳବାନ୍ ଦୈତ୍ୟ ଶଚୀପୁତ୍ର ଜୟନ୍ତଙ୍କୁ ଘେନି ପଳାଇଗଲା । ୧୯ । ଏହି ପୁଲୋମା ଶଚୀଙ୍କର ପିତା ଥିଲା; ଅତଏବ ସେ ଜୟନ୍ତର ଅଜା । ସେ ନିଜ ନାତିକୁ ନେଇ ସମୁଦ୍ର ଭିତରେ ପଶିଗଲା । ୨୦ । ସେତେବେଳେ

ଜ୍ଞାତ୍ୱା ପ୍ରଣାଶଂ ତୁ ତଦା ଜୟନ୍ତସ୍ୟାଥ ଦେବତାଃ ।
ଅପ୍ରହୃଷ୍ଟାସ୍ତତଃ ସର୍ବା ବ୍ୟଥିତାଃ ସଂପ୍ରଦୁଦ୍ରୁବୁଃ । ୨୧ ।
ରାବଣିସ୍ତ୍ୱଥ ସଂକ୍ରୁଦ୍ଧୋ ବଲୈଃ ପରିବୃତଃ ସ୍ୱକୈଃ ।
ଅଭ୍ୟଧାବତ ଦେବାଂସ୍ତାନ୍ ମୁମୋଚ ଚ ମହାସ୍ୱନମ୍ । ୨୨ ।
ଦୃଷ୍ଟ୍ୱା ପ୍ରଣାଶଂ ପୁତ୍ରସ୍ୟ ଦୈବତେଷୁ ଚ ବିଦ୍ରୁତମ୍ ।
ମାତଲିଂ ଚାହ ଦେବେଶୋ ରଥଃ ସମୁପନୀୟତାମ୍ । ୨୩ ।
ସ ତୁ ଦିବ୍ୟୋ ମହାଭୀମଃ ସଜ୍ଜ ଏବ ମହାରଥଃ ।
ଉପସ୍ଥିତୋ ମାତଲିନା ବାହ୍ୟମାନୋ ମହାଜବଃ । ୨୪ ।
ତତୋ ମେଘା ରଥେ ତସ୍ମିଂସ୍ତଡ଼ିଦ୍ୱନ୍ତୋ ମହାବଲାଃ ।
ଅଗ୍ରତୋ ବାୟୁଚପଲା ନେଦୁଃ ପରମନିଃସ୍ୱନାଃ । ୨୫ ।
ନାନାବାଦ୍ୟାନି ବାଦ୍ୟନ୍ତ ଗନ୍ଧର୍ବାଶ୍ଚ ସମାହିତାଃ ।
ନନୃତୁଶ୍ଚାପ୍ସରଃ ସଙ୍ଘା ନିର୍ଯାତେ ତ୍ରିଦଶେଶ୍ୱରେ । ୨୬ ।
ରୁଦ୍ରୈର୍ବସୁଭିରାଦିତ୍ୟୈଃ ସାଧ୍ୟୈଶ୍ଚ ସମରୁଦ୍‌ଗଣୈଃ ।
ବୃତୋ ନାନାପ୍ରହରଣୈର୍ନିର୍ଯଯୌ ତ୍ରିଦଶାଧିପଃ । ୨୭ ।

---

ଦେବତାମାନେ ଜୟନ୍ତଙ୍କୁ ଅଦୃଶ୍ୟ ହେବାର ଦେଖି ଅତିଶୟ ଦୁଃଖିତ ଓ ବ୍ୟଥିତ ହୋଇ ପଳାଇବାକୁ ଲାଗିଲେ । ୨୧ । ରାବଣପୁତ୍ର ମେଘନାଦ ନିଜର ସେନା ଦ୍ୱାରା ପରିବେଷ୍ଟିତ ହୋଇ ଓ କ୍ରୋଧରେ ସିଂହନାଦ କରି ଦେବତାମାନଙ୍କ ପଛରେ ଗୋଡ଼ାଇଲା । ୨୨ । ଇନ୍ଦ୍ର ନିଜର ପୁତ୍ରକୁ ଅଦୃଶ୍ୟ ହେବାର ଦେଖି ଏବଂ ଦେବତାମାନଙ୍କୁ ଯୁଦ୍ଧ ଛାଡ଼ି ପଳାଉଥିବାର ଦେଖି ମାତଳିଙ୍କୁ କହିଲେ, "ମୋ ରଥ ଏଠାକୁ ଆଣ" । ୨୩ । ଇନ୍ଦ୍ରଙ୍କର ଦିବ୍ୟ ବିଶାଳ ମହାଭୟଙ୍କର ଓ ଶୀଘ୍ରଗାମୀ ସଜ୍ଜିତ ରଥ ଶୀଘ୍ର ମାତଳି ନେଇ ଆସିଲେ । ୨୪ । ସେହି ରଥରେ ବିଦ୍ୟୁତ୍ ସହିତ ମହାବଳବାନ୍ ମେଘମାନେ ଲାଗି ରହିଥିଲେ ଏବଂ ତାହାର ଅଗ୍ରଭାଗରେ ବାୟୁସଞ୍ଚାଳିତ ବିଜୁଳି ଖୁବ୍ ଜୋରରେ ଗର୍ଜନ କରୁଥିଲା । ୨୫ । ଇନ୍ଦ୍ର ନିଜ ପୁରୀରୁ ବାହାରିଲା ବେଳେ ଗନ୍ଧର୍ବମାନେ ନାନା ପ୍ରକାର ବାଜା ବଜାଇଲେ ଏବଂ ଅପ୍ସରାଗଣ ମଧ୍ୟ ନୃତ୍ୟ କରିବାକୁ ଲାଗିଲେ । ୨୬ । ରୁଦ୍ର, ବସୁ, ଆଦିତ୍ୟ, ଅଶ୍ୱିନୀକୁମାର, ମରୁଦ୍‌ଗଣ ଏବଂ ବିବିଧ ଆୟୁଧ ନେଇ ଇନ୍ଦ୍ର ବହିର୍ଗତ ହେଲେ । ୨୭ ।

ନିର୍ଗଚ୍ଛତସ୍ତୁ ଶକ୍ରସ୍ୟ ପରୁଷଂ ପବନୋ ବବୌ ।
ଭାସ୍କରୋ ନିଷ୍ପ୍ରଭଶ୍ଚାସୀନ୍ମହୋଲ୍କାଶ୍ଚ ପ୍ରପେଦିରେ । ୨୮ ।
ଏତସ୍ମିନ୍ନନ୍ତରେ ବୀରୋ ଦଶଗ୍ରୀବଃ ପ୍ରତାପବାନ୍ ।
ଆରୁରୋହ ରଥଂ ଦିବ୍ୟଂ ନିର୍ମିତଂ ବିଶ୍ୱକର୍ମଣା । ୨୯ ।
ପନ୍ନଗୈସ୍ତୁ ମହାକାୟୈର୍ବେଷ୍ଟିତଂ ରୋମହର୍ଷଣୈଃ ।
ତେଷାଂ ନିଃଶ୍ୱାସବାତେନ ପ୍ରଦୀପ୍ତମିବ ସଂଯୁଗେ । ୩୦ ।
ଦୈତ୍ୟୈର୍ନିଶାଚରୈଶ୍ଚୈବ ସ ରଥଃ ପରିବାରିତଃ ।
ସମରାଭିମୁଖୋ ଦିବ୍ୟୋ ମହେନ୍ଦ୍ରଂ ସୋଽଭ୍ୟବର୍ତ୍ତତ । ୩୧ ।
ପୁତ୍ରଂ ତଂ ବାରୟିତ୍ୱା ତୁ ସ୍ୱୟମେବ ବ୍ୟବସ୍ଥିତଃ ।
ସୋଽପି ଯୁଦ୍ଧାଦ୍ ବିନିଷ୍କ୍ରମ୍ୟ ରାବଣିଃ ସମୁପାବିଶତ୍ । ୩୨ ।
ତତୋ ଯୁଦ୍ଧଂ ପ୍ରବୃତ୍ତଂ ତୁ ସୁରାଣାଂ ରାକ୍ଷସୈଃ ସହ ।
ଶସ୍ତ୍ରାଣି ବର୍ଷତାଂ ଘୋରଂ ମେଘାନାମିବ ସଂଯୁଗେ । ୩୩ ।
କୁମ୍ଭକର୍ଣସ୍ତୁ ଦୁଷ୍ଟାତ୍ମା ନାନାପ୍ରହରଣୋଦ୍ୟତଃ ।
ନାଜ୍ଞାୟତ ତଦା ଯୁଦ୍ଧେ ସହ କେନାପ୍ୟଯୁଧ୍ୟତ । ୩୪ ।

---

ଇନ୍ଦ୍ରଙ୍କର ରଣଯାତ୍ରା ସମୟରେ କର୍କଶ ପବନ ବହିବାକୁ ଲାଗିଲା, ସୂର୍ଯ୍ୟ ପ୍ରଭାହୀନ ହୋଇଗଲେ ଏବଂ ଆକାଶରୁ ମହା ଉଲ୍‌କାପାତ ହେଲା । ୨୮ । ଇତିମଧ୍ୟରେ ମହାପ୍ରତାପୀ ରାବଣ ମଧ୍ୟ ବିଶ୍ୱକର୍ମାଙ୍କ ଦ୍ୱାରା ନିର୍ମିତ ଦିବ୍ୟ ରଥ ଉପରେ ଆରୋହଣ କଲା । ୨୯ । ସେହି ରଥରେ ବଡ଼ ବଡ଼ ଫଣା ଟେକିଥିବା ସାପମାନେ ଓହଳିଥିଲେ । ତାହା ଦେଖିଲେ ଭୟରେ ଲୋମ ଟାଙ୍କୁରିଯାଉଥିଲା । ସେହି ମହାବିଷଧର ସର୍ପମାନଙ୍କର ନିଶ୍ୱାସବାୟୁରେ ଯୁଦ୍ଧଭୂମି ତାତିଯାଉଥିଲା ।୩୦ । ଦୈତ୍ୟ ଏବଂ ରାକ୍ଷସମାନେ ସେହି ରଥକୁ ବେଢ଼ି ରହିଥିଲେ । ରାବଣର ସେହି ଦିବ୍ୟରଥ ଯୁଦ୍ଧଭୂମିରେ ଇନ୍ଦ୍ରଙ୍କ ରଥ ସମ୍ମୁଖରେ ଯାଇ ପହଞ୍ଚିଲା । ୩୧ । ରାବଣ ନିଜର ପୁତ୍ର ମେଘନାଦକୁ ବାରଣ କରି ସ୍ୱୟଂ ଲଢ଼ିବାକୁ ଠିଆହେଲା । ସେତେବେଳେ ମେଘନାଦ ରଣକ୍ଷେତ୍ରରୁ ଅଲଗା ହୋଇ ବସିଲା । ୩୨। ତଦନନ୍ତର ଦେବତା ଓ ରାକ୍ଷସମାନଙ୍କର ଘୋର ଯୁଦ୍ଧ ଆରମ୍ଭ ହେଲା । ଦୁଇ ପକ୍ଷରୁ ମେଘରୁ ଜଳବୃଷ୍ଟି ହେଲାପରି ଶସ୍ତ୍ରବୃଷ୍ଟି ହେବାକୁ ଲାଗିଲା । ୩୩ । ହେ ରାଜନ୍ ! ଦୁଷ୍ଟ କୁମ୍ଭକର୍ଣ୍ଣ ମଧ୍ୟ ବହୁ ପ୍ରକାର ଶସ୍ତ୍ର ଉଠାଇ ଧରିଥିଲା; ମାତ୍ର ତାର ଜ୍ଞାନ ନ ଥିଲା ଯେ ସେ କାହା ସଙ୍ଗେ ଲଢ଼ିବ । ୩୪ । ଅତଏବ ତାହା ଆଗରେ ପଡ଼ୁଯାଉଥିବା

ଦନ୍ତୈର୍ଭୁଜାଭ୍ୟାଂ ପଦ୍‌ଭ୍ୟାଂ ଚ ଶକ୍ତିତୋମରସାୟକୈଃ ।
ଯେନ କେନୈବ ସଂରବ୍ଧସ୍ତାଡ଼ୟାମାସ ବୈ ସୁରାନ୍ ।୩୫।
ତତୋ ରୁଦ୍ରୈର୍ମହାଘୋରୈଃ ସଂଗମ୍ୟାଥ ନିଶାଚରଃ ।
ପ୍ରଯୁଦ୍ଧସ୍ତୈଶ୍ଚ ସଂଗ୍ରାମେ କ୍ଷତଃ ଶସ୍ତ୍ରୈର୍ନିରନ୍ତରମ୍ । ୩୬ ।
ବଭୌ ଶସ୍ତ୍ରାଚିତତନୁଃ କୁମ୍ଭକର୍ଣ୍ଣଃ କ୍ଷରନ୍ନସୃକ୍ ।
ବିଦ୍ୟୁତ୍‌ସ୍ତନିତନିର୍ଘୋଷୋ ଧାରାବାନିବ ତୋୟଦଃ । ୩୭ ।
ତତସ୍ତଦ୍ରାକ୍ଷସଂ ସୈନ୍ୟଂ ପ୍ରଯୁଦ୍ଧଂ ସମରୁଦ୍‌ଗଣୈଃ ।
ରଣେ ବିଦ୍ରାବିତଂ ସର୍ବଂ ନାନାପ୍ରହରଣୈଃ ଶିତୈଃ । ୩୮ ।
କେଚିଦ୍‌ବିନିହତାଃ କୃତ୍ତାଶ୍ଚେଷ୍ଟନ୍ତି ସ୍ମ ମହୀତଲେ ।
ବାହନେଷ୍ୱବସକ୍ତାଶ୍ଚ ସ୍ଥିତା ଏବାପରେ ରଣେ । ୩୯ ।
ରଥାନ୍ନାଗାନ୍ ଖରାନୁଷ୍ଟ୍ରାନ୍ ପନ୍ନଗାଂସ୍ତୁରଗାନ୍ ରଣେ ।
ଶିଂଶୁମାରାନ୍ ବରାହାଂଶ୍ଚ ପିଶାଚବଦନାଂସ୍ତଥା । ୪୦ ।
ତାନ୍ ସମାଲିଙ୍ଗ୍ୟ ବାହୁଭ୍ୟାଂ ବିଷ୍ଟବ୍ଧାଃ କେଚିଦୁଚ୍ଛ୍ରିତାଃ ।
ଦେବୈସ୍ତୁ ଶସ୍ତ୍ରସଂଭିନ୍ନା ମମ୍ରିରେ ଚ ନିଶାଚରାଃ । ୪୧ ।

---

ଦେବତାମାନଙ୍କୁ ସେ ଦାନ୍ତରେ, ହାତରେ, ପାଦରେ ଏବଂ ଶକ୍ତି, ତୋମର ଓ ମୁଦ୍‌ଗର ଦ୍ୱାରା ବା ତାହା ହାତରେ ସେତେବେଳେ ଯାହା ପଡ଼ୁଥିଲା ତଦ୍ୱାରା କ୍ରୋଧରେ ମାରିଲାଗିଥିଲା । ୩୫ । ଲଢ଼ୁ ଲଢ଼ୁ ସେ ମହାଭୟଙ୍କର ରୁଦ୍ରଗଣଙ୍କ ସଙ୍ଗେ ଯାଇ ଲାଗିଗଲା । ରୁଦ୍ରଗଣଙ୍କର ଅନବରତ ଶସ୍ତ୍ର ପ୍ରହାରଦ୍ୱାରା ତାର ସମଗ୍ର ଶରୀର କ୍ଷତବିକ୍ଷତ ହୋଇଗଲା । ୩୬ । କୁମ୍ଭକର୍ଣ୍ଣର ଦେହ ଶସ୍ତ୍ରଦ୍ୱାରା ପୂରି ହୋଇଗଲା ଏବଂ ବିଜୁଳି ଘଡ଼ଘଡ଼ିଯୁକ୍ତ ମେଘରୁ ବର୍ଷାଧାରା ଗଳିଲା ପରି ତା ଦେହରୁ ରକ୍ତଧାର ବହିବାକୁ ଲାଗିଲା । ୩୭ । ଏଣେ ରାକ୍ଷସସେନାର ମରୁଦ୍‌ଗଣଙ୍କ ସହିତ ଭୀଷଣ ଯୁଦ୍ଧ ହେଉଥିଲା । ମରୁଦ୍‌ଗଣ ବିବିଧ ପ୍ରକାର ଅସ୍ତ୍ରଶସ୍ତ୍ର ପ୍ରହାର ଦ୍ୱାରା ସମସ୍ତ ରାକ୍ଷସସେନାକୁ ଘଉଡ଼ାଇ ଦେଲେ । ୩୮ । କେତେ ରାକ୍ଷସ ନିହତ ହେଲେ ଏବଂ କେତେ ଆହତ ହୋଇ ରଣଭୂମିରେ ପଡ଼ି ଛଟପଟ ହେଲେ; ଆଉ କେତେ ନିଜ ନିଜର ବାହନରୁ ଖସିପଡ଼ି ରଣଭୂମିରେ ଠିଆହୋଇ ରହିଥିଲେ । ୩୯ । କେତେକ ରାକ୍ଷସ ରଥ, ହାତୀ, ଗଧ, ଓଟ, ସର୍ପ, ଶିଶୁମାର, ବରାହ ଏବଂ ପିଶାଚମୁଖ ଘୋଡ଼ାମାନଙ୍କୁ ନିଜ ବାହୁରେ କୁଣ୍ଢାଇ ଧରି ଦରମରା ପରି ହୋଇ ରହିଥିଲେ । ଆଉ କେତେକ ଦେବତାମାନଙ୍କ ଶସ୍ତ୍ର ପ୍ରହାରରେ ମରି ଯାଇଥିଲେ । ୪୦-୪୧ । ସେତେବେଳେ ପ୍ରାଣ ହାରି ଓ ଦରମରା ହୋଇ ପଡ଼ି ରହିଥିବା

ଚନ୍ଦ୍ରକର୍ମ ଇବାଭୂତ ସ ତେଷାଂ ରଣସଂପ୍ଲବଃ ।
ନିହତାନାଂ ପ୍ରମତ୍ତାନାଂ ରାକ୍ଷସାନାଂ ମହୀତଳେ । ୪୨ ।
ଶୋଣିତୋଦକନିଷ୍ୟନ୍ଦକଙ୍କଗୃଧ୍ରସମାକୁଳା ।
ପ୍ରବୃତ୍ତା ସଂଯୁଗମୁଖେ ଶସ୍ତ୍ରଗ୍ରାହବତୀ ନଦୀ । ୪୩ ।
ଏତସ୍ମିନ୍ନନ୍ତରେ କ୍ରୁଦ୍ଧୋ ଦଶଗ୍ରୀବଃ ପ୍ରତାପବାନ୍ ।
ନିରୀକ୍ଷ୍ୟ ତଦ୍‌ବଲଂ କୃତ୍ସ୍ନଂ ଦୈବତୈର୍ବିନିପାତିତମ୍ । ୪୪ ।
ସ ତଂ ପ୍ରତିବିଗାହ୍ୟାଶୁ ପ୍ରବୃଦ୍ଧଂ ସୈନ୍ୟସାଗରମ୍ ।
ତ୍ରିଦଶାନ୍ ସମରେ ନିଘ୍ନନ୍ ଶକ୍ରମେବାଭ୍ୟବର୍ତ୍ତତ । ୪୫ ।
ଅଗାଚ୍ଛକ୍ରୋ ମହଚ୍ଚାପଂ ବିସ୍ଫାର୍ଯ ସୁମହାସ୍ୱନମ୍ ।
ଯସ୍ୟ ବିସ୍ଫାରଘୋଷେଣ ସ୍ୱନନ୍ତି ସ୍ମ ଦିଶୋ ଦଶ । ୪୬ ।
ତଦ୍‌ବିକୃଷ୍ୟ ମହଚ୍ଚାପମିନ୍ଦ୍ରୋ ରାବଣମୂର୍ଦ୍ଧନି ।
ନିପାତୟାମାସ ଶରାନ୍ ପାବକାଦିତ୍ୟବର୍ଚ୍ଚସଃ । ୪୭ ।
ତଥୈବ ଚ ମହାବାହୁର୍ଦଶଗ୍ରୀବୋ ବ୍ୟବସ୍ଥିତଃ ।
ଶକ୍ରଂ କାର୍ମୁକବିଭ୍ରଷ୍ଟୈଃ ଶରବର୍ଷୈରବାକିରତ୍ । ୪୮ ।

---

ରାକ୍ଷସମାନଙ୍କ ଦ୍ୱାରା ରଣଭୂମିର ଦୃଶ୍ୟ ଅତି ଅଦ୍ଭୁତ କାରୁକାର୍ଯ୍ୟ ପରି ଦେଖାଗଲା ।୪୨। ସେହି ଆହତ ସୈନିକମାନଙ୍କର ରକ୍ତନଦୀ ବହିବାକୁ ଲାଗିଲା । ସେଠାରେ କାକ ଓ ଗୃଧ୍ରମାନେ ଦଳ ଦଳ ହୋଇ ଏକାଠି ହୋଇଥିଲେ ଏବଂ ଶସ୍ତ୍ରମାନ ମଗର ରୂପରେ ଦେଖା ଯାଉଥିଲା । ୪୩ । ଇତିମଧ୍ୟରେ ପ୍ରତାପୀ ରାବଣ ଦେବତା-ମାନଙ୍କ କର୍ତ୍ତୃକ ନିଜର ସମସ୍ତ ରାକ୍ଷସସେନାର ବିନାଶ ଦେଖି ଅତ୍ୟନ୍ତ କ୍ରୁଦ୍ଧ ହେଲା । ୪୪ । ସେ ଦେବସେନାରୂପୀ ବଢ଼ି ଉଠିଥିବା ସାଗର ମଧ୍ୟରେ ତତ୍‌କ୍ଷଣାତ୍ ପଶିଗଲା ଏବଂ ଦେବତାମାନଙ୍କୁ ମାରି ମାରି ଇନ୍ଦ୍ରଙ୍କ ସମ୍ମୁଖରେ ଯାଇ ପହଞ୍ଚିଲା । ୪୫ । ତଦନନ୍ତର ଇନ୍ଦ୍ର ନିଜର ବିଶାଳ ଧନୁକୁ ଟଙ୍କାରିଲେ । ସେହି ଟଙ୍କାରର ଘୋର ଶବ୍ଦରେ ଦଶ ଦିଗ ପ୍ରତିଧ୍ୱନିତ ହୋଇଗଲା । ୪୬ । ଇନ୍ଦ୍ର ନିଜର ସେହି ବିଶାଳ ଧନୁକୁ ଆକର୍ଷଣ କରି ଅଗ୍ନି ଓ ସୂର୍ଯ୍ୟଙ୍କ ତେଜସଦୃଶ ଝକଝକ୍ୟଶାଳୀ ବାଣମାନ ରାବଣର ମସ୍ତକ ଉପରକୁ ମାରିଲେ । ୪୭ । ସେହିପରି ମହାବାହୁ ରାବଣ ମଧ୍ୟ ଧନୁରୁ ବାଣ ମାରି ଇନ୍ଦ୍ରଙ୍କ ଉପରେ ବର୍ଷା କରିବାକୁ ଲାଗିଲା । ୪୮। ସେ ଦୁହେଁ

**ପ୍ରଯୁଦ୍ଧଯୋରଥ ତୟୋର୍ବାଣବର୍ଷୈଃ ସମନ୍ତତଃ ।**
**ନ ଜ୍ଞାୟତେ ତଦା କିଞ୍ଚିତ୍ ସର୍ବଂ ହି ତମସାବୃତମ୍ । ୪୯ ।**

ଇତ୍ୟାର୍ଷେ ଶ୍ରୀମଦ୍‌ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଉତ୍ତରକାଣ୍ଡେ ଜୟନ୍ତାପବାହନଂ ନାମ ଅଷ୍ଟାବିଂଶଃ ସର୍ଗଃ ।

---

# ଏକୋନତ୍ରିଂଶଃ ସର୍ଗଃ

## ବାସବଗ୍ରହଣମ୍

**ତତସ୍ତମସି ସଂଜାତେ ସର୍ବେ ତେ ଦେବରାକ୍ଷସାଃ ।**
**ଅଯୁଧ୍ୟନ୍ତ ବଲୋନ୍ମତ୍ତାଃ ସୂଦୟନ୍ତଃ ପରସ୍ପରମ୍ । ୧ ।**
**ତତସ୍ତୁ ଦେବସୈନ୍ୟେନ ରାକ୍ଷସାନାଂ ବୃହଦ୍‌ବଲମ୍ ।**
**ଦଶାଂଶଂ ସ୍ଥାପିତଂ ଯୁଦ୍ଧେ ଶେଷଂ ନୀତଂ ଯମକ୍ଷୟମ୍ । ୨ ।**
**ତସ୍ମିଂସ୍ତୁ ତାମସେ ଯୁଦ୍ଧେ ସର୍ବେ ତେ ଦେବରାକ୍ଷସାଃ ।**
**ଅନ୍ୟୋଽନ୍ୟଂ ନାଭ୍ୟଜାନନ୍ତ ଯୁଧ୍ୟମାନାଃ ପରସ୍ପରମ୍ । ୩ ।**

---

ସେତେବେଳେ ଏମାନେ ପରସ୍ପର ଯୁଦ୍ଧରେ ବାଣ ବର୍ଷା କରିବାକୁ ଲାଗିଲେ; ସେତେବେଳେ ଚତୁଆଡ଼େ ଅନ୍ଧକାର ଘୋଟିଗଲା, ଆଉ କିଛି ହେଲେ ଦିଶିଲା ନାହିଁ । ୪୯ ।

---

## ୨୯ଶ ସର୍ଗ

### (ରାବଣ କର୍ତ୍ତୃକ ଇନ୍ଦ୍ରଙ୍କର ବନ୍ଦୀକରଣ)

ଅନନ୍ତର ଏହିପରି ଅନ୍ଧକାର ଘୋଟିଯିବାରୁ ଦେବତା ଓ ରାକ୍ଷସମାନେ ବଳୋନ୍ମତ୍ତ ହୋଇ ପରସ୍ପରକୁ ବିନାଶ କରି ଯୁଦ୍ଧ କରିବାକୁ ଲାଗିଲେ । ତଦନନ୍ତର ଦେବସେନାମାନଙ୍କ ଦ୍ୱାରା ରାକ୍ଷସମାନଙ୍କର ବିଶାଳସେନା ନାଶ ହୋଇ ଦଶ ଭାଗରୁ ଏକ ଭାଗରେ ରହିଲେ ଓ ଅବଶିଷ୍ଟ ଯମସଦନକୁ ପ୍ରେରିତ ହେଲେ । ୨ । ସେହି ଅନ୍ଧକାର ମଧ୍ୟରେ ଯୁଦ୍ଧରେ ଦେବତା ଓ ରାକ୍ଷସମାନେ କେହି କାହାରିକୁ ଜାଣି ନ ପାରି ପରସ୍ପର ଯୁଦ୍ଧ କରିବାକୁ ଲାଗିଲେ । ୩ । ସେହି ଅନ୍ଧକାର ଜାଲ ମଧ୍ୟରେ

ଇନ୍ଦ୍ରଶ୍ଚ ରାବଣଶ୍ଚୈବ ରାବଣିଶ୍ଚ ମହାବଲଃ ।
ତସ୍ମିଂସ୍ତମୋଜାଲବୃତେ ମୋହମୀୟୁର୍ନ ତେ ତ୍ରୟଃ । ୪ ।
ସ ତୁ ଦୃଷ୍ଟ୍ୱା ବଲଂ ସର୍ବଂ ନିହତଂ ରାବଣଃ କ୍ଷଣାତ୍ ।
କ୍ରୋଧମଭ୍ୟାଗମତ୍ତୀବ୍ରଂ ମହାନାଦଂ ଚ ମୁକ୍ତବାନ୍ । ୫ ।
କ୍ରୋଧାତ୍ ସୂତଂ ଚ ଦୁର୍ଧର୍ଷଃ ସ୍ୟନ୍ଦନସ୍ଥମୁବାଚ ହ ।
ପରସୈନ୍ୟସ୍ୟ ମଧ୍ୟେନ ଯାବଦନ୍ତୋ ନୟସ୍ୱ ମାମ୍ । ୬ ।
ଅଦ୍ୟୈତାଂସ୍ତ୍ରିଦଶାନ୍ ସର୍ବାନ୍ ବିକ୍ରମୈଃ ସମରେ ସ୍ୱୟମ୍ ।
ନାନାଶସ୍ତ୍ରୈର୍ମହାଘୋରୈର୍ନୟାମି ଯମସାଦନମ୍ । ୭ ।
ଅହମିନ୍ଦ୍ରଂ ବଧିଷ୍ୟାମି ଧନଦଂ ବରୁଣଂ ଯମମ୍ ।
ତ୍ରିଦଶାନ୍ ବିନିହତ୍ୟାଥ ସ୍ୱୟଂ ସ୍ଥାସ୍ୟାମ୍ୟଥୋପରି । ୮ ।
ବିଷାଦୋ ନ ଚ କର୍ତ୍ତବ୍ୟଃ ଶୀଘ୍ରଂ ବାହୟ ମେ ରଥମ୍ ।
ଦ୍ୱିଃ ଖଲୁ ତ୍ୱାଂ ବ୍ରବୀମ୍ୟଦ୍ୟ ଯାବଦନ୍ତୋ ନୟସ୍ୱ ମାମ୍ । ୯ ।
ଅୟଂ ସ ନନ୍ଦନୋଦ୍ଦେଶୋ ଯତ୍ର ବର୍ତ୍ତାମହେ ବୟମ୍ ।
ନୟ ମାମଦ୍ୟ ତତ୍ର ତ୍ୱମୁଦୟୋ ଯତ୍ର ପର୍ବତଃ । ୧୦ ।

---

କେବଳ ମହାବଳୀ ଇନ୍ଦ୍ର, ରାବଣ ଏବଂ ରାବଣପୁତ୍ର ମେଘନାଦ ଏହି ତିନି ଜଣଙ୍କି ମୋହାବିଷ୍ଟ ନ ହୋଇ ସ୍ଥିର ହୋଇ ରହିଥିଲେ । ୪ । ମୁହୂର୍ତ୍ତିକ ମଧ୍ୟରେ ନିଜର ସମସ୍ତ ସେନା ବିନଷ୍ଟ ହେବାର ଦେଖି ରାବଣ ଅତିଶୟ କ୍ରୁଦ୍ଧ ହେଲା ଏବଂ ଘୋର ଗର୍ଜନ କଲା । ୫ । ଦୁର୍ଦ୍ଧର୍ଷ ରାବଣ ରଥ ଉପରେ ବସିଥିବା ନିଜର ସାରଥିକୁ କ୍ରୋଧରେ କହିଲା, "ମୋର ରଥକୁ ଶତ୍ରୁ ସୈନ୍ୟର ମଧ୍ୟ ଦେଇ ଶେଷ ସୀମା ପର୍ଯ୍ୟନ୍ତ ନେଇଯାଅ । ୬ । ମୁଁ ଆଜି ନିଜର ପରାକ୍ରମ ଦ୍ୱାରା ଅନେକ ଅସ୍ତ୍ରଙ୍କର ଶସ୍ତ୍ରବୃଷ୍ଟି କରି ସମସ୍ତ ଦେବତାଙ୍କୁ ଯମସଦନକୁ ପଠାଇଦେଉଛି ।୭। ମୁଁ ସ୍ୱୟଂ ଇନ୍ଦ୍ର, କୁବେର, ବରୁଣ ଓ ଯମଙ୍କୁ ମାରିବି ଏବଂ ନିଜେ ସେ ସମସ୍ତଙ୍କ ଉପରେ ପ୍ରଭୁ ହୋଇ ରହିବି । ୮ । ତୁମେ ଦୁଃଖିତ ନ ହୋଇ ଶୀଘ୍ର ମୋ ରଥ ଚଳାଇ ମୋତେ ଦେବସୈନ୍ୟର ଶେଷ ସୀମାରେ ନେଇ ପହଞ୍ଚାଅ । ମୁଁ ତୁମକୁ ଦ୍ୱିତୀୟଥର କହୁଛି ଯେ ଏବେ ଆମେ ଯେଉଁଠାରେ ଥାଇଁ ତାହା ନନ୍ଦନବନ ଅଟେ ; ତୁମେ ଉଦୟାଚଳ ପର୍ଯ୍ୟନ୍ତ ମୋ ରଥ ନେଇଚାଲ ।" ୯-୧୦ । ରାବଣର ଏ କଥା ଶୁଣି ସାରଥି ଶତ୍ରୁମାନଙ୍କ ମଧ୍ୟଦେଇ

ତସ୍ୟ ତଦ୍ ବଚନଂ ଶ୍ରୁତ୍ୱା ତୁରଙ୍ଗାନ୍ ସ ମନୋଜବାନ୍ ।
ଆଦଦେଶାଥ ଶତ୍ରୂଣାଂ ମଧ୍ୟେନୈବ ଚ ସାରଥିଃ । ୧୧ ।
ତସ୍ୟ ତଂ ନିଶ୍ଚୟଂ ଜ୍ଞାତ୍ୱା ଶକ୍ରୋ ଦେବେଶ୍ୱରସ୍ତଦା ।
ରଥସ୍ଥଃ ସମରସ୍ଥାଂସ୍ତାନ୍ ଦେବାନ୍ ବାକ୍ୟମଥାବ୍ରବୀତ୍ । ୧୨ ।
ସୁରାଃ ଶୃଣୁତଃ ମଦ୍‌ବାକ୍ୟଂ ଯତ୍ତାବନ୍ମମ ରୋଚତେ ।
ଜୀବନ୍ନେବ ଦଶଗ୍ରୀବଃ ସାଧୁ ରକ୍ଷୋ ନିଗୃହ୍ୟତାମ୍ । ୧୩ ।
ଏଷ ହ୍ୟତିବଲଃ ସୈନ୍ୟେ ରଥେନ ପବନୌଜସା ।
ଗମିଷ୍ୟତି ପ୍ରବୃଦ୍ଧୋର୍ମିଃ ସମୁଦ୍ର ଇବ ପର୍ବଣି । ୧୪ ।
ନ ହ୍ୟେଷ ହନ୍ତୁଂ ଶକ୍ୟୋଽଦ୍ୟ ବରଦାନାତ୍ ସୁନିର୍ଭୟଃ ।
ତଦ୍ ଗ୍ରହୀଷ୍ୟାମହେ ରକ୍ଷୋ ଯତ୍ତା ଭବତ ସଂଯୁଗେ । ୧୫ ।
ଯଥା ବଲୌ ନିରୁଦ୍ଧେ ଚ ତ୍ରୈଲୋକ୍ୟଂ ଭୁଜ୍ୟତେ ମୟା ।
ଏବମେତସ୍ୟ ପାପସ୍ୟ ନିରୋଧୋ ମମ ରୋଚତେ । ୧୬ ।
ତତୋଽନ୍ୟଂ ଦେଶମାସ୍ଥାୟ ଶକ୍ରଃ ସଂତ୍ୟଜ୍ୟ ରାବଣମ୍ ।
ଅଯୁଧ୍ୟତ ମହାରାଜ ରାକ୍ଷସାଂସ୍ତାସୟନ୍ ରଣେ । ୧୭ ।

---

ମନସଦୃଶ ବେଗଶାଳୀ ଘୋଡ଼ାମାନଙ୍କୁ ଚଳାଇଲା । ୧୧ । ଅନନ୍ତର ସମରଭୂମିରେ ଠିଆ ହୋଇଥିବା ଦେବରାଜ ଇନ୍ଦ୍ର ରାବଣର ଏହି ନିଶ୍ଚୟ ଜାଣି ରଥରେ ବସିଥିବା ଦେବତାମାନଙ୍କୁ କହିଲେ । ୧୨ । "ହେ ଦେବଗଣ ! ଦେଖ, ଏବେ ମୋ ମନକୁ ଯାହା ପାଉଛି, ତାହା ତୁମ୍ଭମାନଙ୍କୁ କହୁଛି । ରାବଣକୁ ତୁମ୍ଭେମାନେ ଜୀବିତ ଅବସ୍ଥାରେ ଧରିନିଅ । ୧୩ । ଏହାର ସୈନ୍ୟବଳ ଅଧିକ ଅଛି, ସୁତରାଂ ସେ ଅଧିକ ବଳବାନ୍ ଅଛି । ସେ ବେଗବାନ୍ ରଥ ଉପରେ ଚଢ଼ି ପବନ ସଦୃଶ ସେନା ମଧ୍ୟରେ ପୂର୍ଣ୍ଣିମା ତିଥିରେ ସମୁଦ୍ର ଉଦ୍‌ବେଳିତ ହେଲାପରି ଚାଲିଯାଉଛି । ୧୪ । ପୁଣି ବରଦାନ ହେତୁରୁ ସେ ଅବଧ୍ୟ ଓ ନିର୍ଭୟ ଅଛି । ଅତଏବ ଶୀଘ୍ର ତୁମ୍ଭେମାନେ ସାବଧାନ ହୋଇଯାଅ, ଯେପରିକି ଆମେ ସେ ରାକ୍ଷସକୁ ଧରିନେବା । ୧୫ । ବଳିଙ୍କର ବନ୍ଧନ ହେବା ଉତ୍ତାରୁ ମୁଁ ଯେପରି ତ୍ରିଭୁବନର ରାଜ୍ୟ ଭୋଗକରୁଛି ସେହିପରି ତ୍ରିଭୁବନର ରକ୍ଷା ନିମନ୍ତେ ଏହି ପାପୀ ରାବଣକୁ ବନ୍ଦୀ କରିବାକୁ ଇଚ୍ଛା କରୁଅଛି" । ୧୬ । ହେ ମହାରାଜ ରାମ ! ଏହା କହି ଦେବରାଜ ଇନ୍ଦ୍ର ରାବଣର ସମ୍ମୁଖରୁ ଅନ୍ୟ ସ୍ଥାନକୁ ଯାଇ ରାକ୍ଷସମାନଙ୍କୁ ବ୍ୟସ୍ତବ୍ୟସ୍ତ କରି ସେମାନଙ୍କ ସହିତ ଲଢ଼ିବାକୁ ଲାଗିଲେ । ୧୭ ।

ଉତ୍ତରେଣ ଦଶଗ୍ରୀବଃ ପ୍ରବିବେଶାନିବର୍ତ୍ତକଃ ।
ଦକ୍ଷିଣେନ ତୁ ପାର୍ଶ୍ୱେନ ପ୍ରବିବେଶ ଶତକ୍ରତୁଃ । ୧୮ ।
ତତଃ ସ ଯୋଜନଶତଂ ପ୍ରବିଷ୍ଟୋ ରାକ୍ଷସାଧିପଃ ।
ଦେବତାନାଂ ବଳଂ ସର୍ବଂ ଶରବର୍ଷୈରବାକିରତ୍ । ୧୯ ।
ତତଃ ଶକ୍ରୋ ନିରୀକ୍ଷ୍ୟାଥ ପ୍ରନଷ୍ଟଂ ତୁ ସ୍ୱକଂ ବଳମ୍ ।
ନ୍ୟବର୍ତ୍ତୟଦସଂଭ୍ରାନ୍ତଃ ସମାବୃତ୍ୟ ଦଶାନନମ୍ । ୨୦ ।
ଏତସ୍ମିନ୍ନନ୍ତରେ ନାଦୋ ମୁକ୍ତୋ ଦାନବରାକ୍ଷସୈଃ ।
ହା ହତାଃ ସ୍ମ ଇତି ଗ୍ରସ୍ତଂ ଦୃଷ୍ଟ୍ୱା ଶକ୍ରେଣ ରାବଣମ୍ । ୨୧ ।
ତତୋ ରଥଂ ସମାସ୍ଥାୟ ରାବଣିଃ କ୍ରୋଧମୂର୍ଚ୍ଛିତଃ ।
ତତ୍ସୈନ୍ୟମତିସଂକ୍ରୁଦ୍ଧଃ ପ୍ରବିବେଶ ସୁଦାରୁଣମ୍ । ୨୨ ।
ତାଂ ପ୍ରବିଶ୍ୟ ମହାମାୟାଂ ପ୍ରାପ୍ତାଂ ଗୋପତିନା ପୁରା ।
ପ୍ରବିବେଶ ସୁସଂରବ୍ଧସ୍ତତ୍ସୈନ୍ୟଂ ସମଭିଦ୍ରବତ୍ । ୨୩ ।
ସ ସର୍ବା ଦେବତାସ୍ତ୍ୟକ୍ତ୍ୱା ଶକ୍ରମେବାଭ୍ୟଧାବତ ।
ମହେନ୍ଦ୍ରଶ୍ଚ ମହାତେଜା ନାପଶ୍ୟଚ୍ଚ ସୁତଂ ରିପୋଃ । ୨୪ ।

---

ଯୁଦ୍ଧରୁ ପଶ୍ଚାତ୍‌ପଦ ନ ହୋଇ ରାବଣ ଉତ୍ତର ଦିଗରୁ ଦେବସେନାଙ୍କ ମଧ୍ୟରେ ପଶିଗଲା ଏବଂ ଦକ୍ଷିଣ ଦିଗରୁ ଇନ୍ଦ୍ର ରାକ୍ଷସସେନା ମଧ୍ୟରେ ପଶିଗଲେ । ୧୮ । ରାବଣ ଶହେ ଯୋଜନ ପର୍ଯ୍ୟନ୍ତ ଭିତରକୁ ପଶିଯାଇ ଶରବୃଷ୍ଟି ଦ୍ୱାରା ସମସ୍ତ ଦେବସେନାଙ୍କୁ ଛିନ୍ନ ବିଚ୍ଛିନ୍ନ କରିପକାଇଲା । ୧୯ । ଇନ୍ଦ୍ର ନିଜର ସେନାକୁ ନଷ୍ଟ ହେବାର ଦେଖି ସାବଧାନ ହୋଇ ରାବଣକୁ ଘେରି ଓ ତାକୁ ସେ ଦିଗରୁ ଲେଉଟାଇ ନିଜେ ମଧ୍ୟ ତା ସଙ୍ଗରେ ଫେରିଲେ । ୨୦ । ଇତିମଧ୍ୟରେ ଦାନବ ଓ ରାକ୍ଷସମାନେ ଘୋର ହାହାକାର ନାଦକଲେ । ସେମାନେ ରାବଣ ଇନ୍ଦ୍ରଙ୍କ ଦ୍ୱାରା ଗ୍ରସ୍ତ ହୋଇଥିବାର ଦେଖି ଚିତ୍କାର କଲେ ଯେ ଆମର ସର୍ବନାଶ ହେଲା । ୨୧ । ତା ପରେ ଅତି କ୍ରୋଧପୂର୍ଣ୍ଣ ହୋଇ ରାବଣପୁତ୍ର ମେଘନାଦ ରଥ ଉପରେ ଚଢ଼ି ସେହି ଦାରୁଣ ଦେବସେନା ଭିତରେ ପ୍ରବେଶ କଲା । ୨୨ । ମେଘନାଦ ପୂର୍ବେ ମହାଦେବଙ୍କଠାରୁ ଯେଉଁ ମାୟା ବରଦାନସ୍ୱରୂପ ପାଇଥିଲା ସେହି ମାୟା ପ୍ରକଟ କରି ଦେବସେନା ମଧ୍ୟରେ ପ୍ରବେଶ କଲା ଓ ସେ ଦେବତାମାନଙ୍କୁ ଘଉଡ଼ାଇବାକୁ ଲାଗିଲା ।୨୩। ସେ ସମସ୍ତ ଦେବତାଙ୍କୁ ଛାଡ଼ିଦେଇ କେବଳ ଇନ୍ଦ୍ରଙ୍କ ଆଡ଼କୁ ଦଉଡ଼ିଲା; ମାତ୍ର ଇନ୍ଦ୍ର ଶତ୍ରୁପୁତ୍ର ମେଘନାଦକୁ ଦେଖିପାରିଲେ ନାହିଁ । ୨୪। କବଚରକ୍ଷିତ ମହାବଳୀ ମେଘନାଦ ଦେବତାମାନଙ୍କ-

ବିମୁକ୍ତକବଚସ୍ତତ୍ର ବଧ୍ୟମାନୋଽପି ରାବଣିଃ ।
ତ୍ରିଦଶୈଃ ସୁମହାବୀର୍ୟୈର୍ନ ଚକାର ଚ କଞ୍ଚନ । ୨୫ ।
ସ ମାତଲିଂ ସମାୟାନ୍ତଂ ତାଡ଼ୟିତ୍ୱା ଶରୋତ୍ତମୈଃ ।
ମହେନ୍ଦ୍ରଂ ବାଣବର୍ଷେଣ ଭୂୟ ଏବାଭ୍ୟବାକିରତ୍ ।୨୬ ।
ତତସ୍ତ୍ୟକ୍ତ୍ୱା ରଥଂ ଶକ୍ରୋ ବିସସର୍ଜ ଚ ସାରଥିମ୍ ।
ଐରାବତଂ ସମାରୁହ୍ୟ ମୃଗୟାମାସ ରାବଣିମ୍ । ୨୭ ।
ସ ତତ୍ର ମାୟାବଲବାନଦୃଶ୍ୟୋଽଥାନ୍ତରିକ୍ଷଗଃ ।
ଇନ୍ଦ୍ରଂ ମାୟାପରିକ୍ଷିପ୍ତଂ କୃତ୍ୱା ସଂପ୍ରାଦ୍ରବଚ୍ଛରୈଃ । ୨୮ ।
ସ ତଂ ଯଦା ପରିଶ୍ରାନ୍ତମିନ୍ଦ୍ରଂ ଜଜ୍ଞେଽଥ ରାବଣିଃ ।
ତଦୈନଂ ମାୟୟା ବଦ୍ଧ୍ୱା ସ୍ୱସୈନ୍ୟମଭିତୋଽନୟତ୍ ।୨୯।
ତଂ ତୁ ଦୃଷ୍ଟ୍ୱା ବଲାତ୍ତେନ ନୀୟମାନଂ ମହାରଣାତ୍ ।
ମହେନ୍ଦ୍ରମମରାଃ ସର୍ବେ କିଂ ନୁ ସ୍ୟାଦିତ୍ୟଚିନ୍ତୟନ୍ । ୩୦ ।
ଦୃଶ୍ୟତେ ନ ସ ମାୟାବୀ ଶକ୍ରଜିତ୍ ସମିତିଂଜୟଃ ।
ବିଦ୍ୟାବାନପି ଯେନେନ୍ଦ୍ରୋ ମାୟୟା ନୀୟତେ ବଲାତ୍ ।୩୧।

---

ଠାରୁ ପ୍ରହାର ଖାଇ ମଧ୍ୟ ଟିକିଏ ହେଲେ ବିଚଳିତ ହେଲେ ନାହିଁ ।୨୫ । ପ୍ରଥମେ ସେ ଉତ୍ତମ ବାଣଦ୍ୱାରା ମାତଳିଙ୍କୁ ପ୍ରହାର କରି ପୁଣି ବାଣବର୍ଷା ଦ୍ୱାରା ଇନ୍ଦ୍ରଙ୍କୁ ବ୍ୟତିବ୍ୟସ୍ତ କରିପକାଇଲେ । ୨୬ । ତାପରେ ଇନ୍ଦ୍ର ରଥ ଏବଂ ସାରଥିକୁ ଛାଡ଼ିଦେଇ ଐରାବତ ହସ୍ତୀ ଉପରେ ଆରୋହଣ କରି ମେଘନାଦକୁ ଖୋଜିବାକୁ ଲାଗିଲେ । ୨୭ । ସେ ମହାବଳୀ ମେଘନାଦ ମାୟାଦ୍ୱାରା ଆକାଶରେ ଅଦୃଶ୍ୟ ହୋଇ ରହିଥିଲେ । ସେ ଇନ୍ଦ୍ରଙ୍କ ଉପରେ ବାଣ ବୃଷ୍ଟି କରି ଏବଂ ଇନ୍ଦ୍ରଙ୍କ ଉପରେ ନିଜର ମାୟା ବିସ୍ତାର କରି ତାଙ୍କ ଆଡ଼କୁ ଦଉଡ଼ିଲେ । ୨୮ । ସେ ଯେତେବେଳେ ଜାଣିଲେ ଯେ ଇନ୍ଦ୍ର ଶ୍ରାନ୍ତକ୍ଳାନ୍ତ ହୋଇଯାଇଛନ୍ତି ସେତେବେଳେ ମାୟାରେ ଇନ୍ଦ୍ରଙ୍କୁ ବାନ୍ଧିକରି ନିଜ ସେନା ଭିତରକୁ ନେଇଗଲେ । ୨୯ । ମେଘନାଦ ମହାରଣରେ ବଳପୂର୍ବକ ଇନ୍ଦ୍ରଙ୍କୁ ବାନ୍ଧିକରି ନେଇ ଯିବାର ଦେଖି ଦେବତାଗଣ "ଏବେ କଅଣ ହେବ" ବୋଲି ଚିନ୍ତା କରିବାକୁ ଲାଗିଲେ । ୩୦ । ରଣବିଜୟୀ ଏବଂ ମାୟାବୀ ମେଘନାଦ ଇନ୍ଦ୍ରଙ୍କୁ ବାନ୍ଧି ନେଇଗଲେ; ମାତ୍ର ସ୍ୱୟଂ ଅଦୃଶ୍ୟ ରହିଥିଲେ । ସୁତରାଂ ତାଙ୍କୁ କେହି ଦେଖିପାରିଲେ ନାହିଁ । ଇନ୍ଦ୍ର ସ୍ୱୟଂ ଅନେକ ପ୍ରକାର ମାୟା ଜାଣିଥିଲେ ମଧ୍ୟ ତାହାଙ୍କୁ ସେ ମାୟାରେ ବଳପୂର୍ବକ ଅପହରଣ କରି ନେଇଗଲେ । ୩୧ । ଇତିମଧ୍ୟରେ ଦେବତାଗଣ କ୍ରୁଦ୍ଧ

ଏତସ୍ମିନ୍ନନ୍ତରେ କ୍ରୁଦ୍ଧାଃ ସର୍ବେ ସୁରଗଣାସ୍ତଦା ।
ରାବଣଂ ବିମୁଖୀକୃତ୍ୟ ଶରବର୍ଷୈରବାକିରନ୍ । ୩୨ ।
ରାବଣସ୍ତୁ ସମାସାଦ୍ୟ ଆଦିତ୍ୟାଂଶ୍ଚ ବସୂଂସ୍ତଥା ।
ନ ଶଶାକ ସ ସଂଗ୍ରାମେ ଯୋଦ୍ଧୁଂ ଶତ୍ରୁଭିରର୍ଦ୍ଦିତଃ । ୩୩ ।
ସ ତଂ ଦୃଷ୍ଟ୍ୱା ପରିମ୍ଲାନଂ ପ୍ରହାରୈର୍ଜର୍ଜରୀକୃତମ୍ ।
ରାବଣିଃ ପିତରଂ ଯୁଦ୍ଧେଽଦର୍ଶନସ୍ଥୋଽବ୍ରବୀଦିଦମ୍ ।୩୪।
ଆଗଚ୍ଛ ତାତ ଗଚ୍ଛାମୋ ରଣକର୍ମ ନିବର୍ତ୍ତତାମ୍ ।
ଜିତଂ ନୋ ବିଦିତଂ ତେଽସ୍ତୁ ସ୍ୱସ୍ଥୋ ଭବ ଗତଜ୍ୱରଃ ।୩୫।
ଅୟଂ ହି ସୁରସୈନ୍ୟସ୍ୟ ତ୍ରୈଲୋକ୍ୟସ୍ୟ ଚ ଯଃ ପ୍ରଭୁଃ ।
ସ ଗୃହୀତୋ ଦୈବବଲାଦ୍ଭଗ୍ନଦର୍ପାଃ ସୁରାଃ କୃତାଃ । ୩୬ ।
ଯଥେଷ୍ଟଂ ଭୁଙ୍କ୍ଷ୍ୱ ଲୋକାଂସ୍ତ୍ରୀନ୍ନିଗୃହ୍ୟାରାତିମୋଜସା ।
ବୃଥା କିଂ ତେ ଶ୍ରମେଣେହ ଯୁଦ୍ଧମଦ୍ୟ ତୁ ନିଷ୍ଫଲମ୍ । ୩୭ ।
ତତସ୍ତେ ଦୈବତଗଣା ନିବୃତ୍ତା ରଣକର୍ମଣଃ ।
ତଚ୍ଛ୍ରୁତ୍ୱା ରାବଣେର୍ବାକ୍ୟଂ ସ୍ୱସ୍ଥଚେତା ବଭୂବ ହ । ୩୮ ।

---

ହୋଇ ବାଣବୃଷ୍ଟି କରି ରାବଣକୁ ବ୍ୟତିବ୍ୟସ୍ତ କରି ବିମୁଖ କରିଦେଲେ । ୩୨ । ଆଦିତ୍ୟ ଏବଂ ବସୁମାନଙ୍କ ମଧ୍ୟରେ ପଡ଼ିଯାଇ ରାବଣ ଏପରି ବ୍ୟତିର୍ବ୍ୟସ୍ତ ହୋଇଗଲା ଯେ ସେତେବେଳେ ଆଉ ତାର ଯୁଦ୍ଧକରିବାର ଶକ୍ତି ରହିଲା ନାହିଁ । ୩୩ । ରାବଣ ପ୍ରହାରଦ୍ୱାରା ଜର୍ଜରିତଶରୀର ହୋଇ ଅତ୍ୟନ୍ତ ନିସ୍ତେଜ ହୋଇପଡ଼ିବାର ଦେଖି ମେଘନାଦ ସ୍ୱୟଂ ଅଦୃଶ୍ୟ ରହି ପିତାକୁ କହିଲା । ୩୪ । "ହେ ତାତ ! ଆମର ଜୟ ହୋଇଛି, ଏହା ଆପଣ ଜାଣନ୍ତୁ; ଆଉ କଷ୍ଟ କରନ୍ତୁ ନାହିଁ; ଉଦ୍‌ବିଗ୍ନ ହୁଅନ୍ତୁ ନାହିଁ; ଏବେ ଯୁଦ୍ଧ ଶେଷ ହୋଇଯାଇଛି ; ଚାଲନ୍ତୁ ଆମେ ଘରକୁ ଯିବା । ୩୫ । କେବଳ ଦେବସେନାଙ୍କର ନୁହେ, ତିନିଲୋକର ସ୍ୱାମୀ ଇନ୍ଦ୍ରଙ୍କୁ ମୁଁ ବଳପୂର୍ବକ ଧରିନେଇଅଛି ଏବଂ ଦେବତାମାନଙ୍କ ଦର୍ପ ଚୂର୍ଣ୍ଣ ହୋଇଯାଇଛି ।୩୬। ଏବେ ଆପଣ ଶତ୍ରୁଙ୍କୁ ବନ୍ଧଗୃହରେ ଆବଦ୍ଧ ରଖି ତିନି ଲୋକକୁ ଇଚ୍ଛାନୁସାରେ ଭୋଗକରନ୍ତୁ । ବର୍ତ୍ତମାନ ଆପଣଙ୍କର ଆଉ ଯୁଦ୍ଧ ପାଇଁ ପରିଶ୍ରମ କରିବା ନିଷ୍ପ୍ରୟୋଜନ" । ୩୭ । ତା ପରେ ଦେବତାମାନେ ଯୁଦ୍ଧ ବନ୍ଦ କରିଦେଲେ । ମେଘନାଦର ସେ କଥା ଶୁଣି ରାବଣ ମଧ୍ୟ ନିଶ୍ଚିନ୍ତ ହେଲା । ୩୮ । ଅନନ୍ତର ରାକ୍ଷସାଧିପ ରାବଣ ଯୁଦ୍ଧରୁ ଶ୍ରାନ୍ତ କ୍ଳାନ୍ତ ଓ ଜୟ ଲାଭ

ଅଥ ରଣବିଗତଜ୍ୱରଃ ପ୍ରଭୁ-
ର୍ବିଜୟମବାପ୍ୟ ନିଶାଚରାଧିପଃ ।
ସ୍ୱଭବନମଭିତୋ ଜଗାମ ହୃଷ୍ଟଃ
ସ୍ୱସୁତମବାପ୍ୟ ଚ ବାକ୍ୟମବ୍ରବୀତ୍ ॥ ୩୯ ॥

ଅତିବଲସଦୃଶୈଃ ପରାକ୍ରମୈସ୍ତ୍ୱେ-
ର୍ମମ କୁଲମାନବିବର୍ଧନଂ କୃତମ୍ ।
ଯଦୟମତୁଲ୍ୟବଲସ୍ତ୍ୱୟାଦ୍ୟ ବୈ
ତ୍ରିଦଶପତିସ୍ତ୍ରିଦଶାଶ୍ଚ ନିର୍ଜିତାଃ ॥ ୪୦ ॥

ନୟ ରଥମଧିରୋପ୍ୟ ବାସବମ୍
ନଗରମିତୋ ବ୍ରଜ ସେନୟା ବୃତସ୍ତ୍ୱମ୍ ।
ଅହମପି ତବ ଗଚ୍ଛତୋ ଦ୍ରୁତମ୍
ସହ ସଚିବୈରନୁଯାମି ହୃଷ୍ଟବତ୍ ॥ ୪୧ ॥

ଅଥ ସ ବଲବୃତଃ ସବାହନ-
ସ୍ତ୍ରିଦଶପତିଂ ପରିଗୃହ୍ୟ ରାବଣିଃ ।
ସ୍ୱଭବନମଭିଗମ୍ୟ ବୀର୍ଯ୍ୟବାନ୍
କୃତସମରାନ୍ ବିସସର୍ଜ ରାକ୍ଷସାନ୍ ॥ ୪୨ ॥

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ବାସବଗ୍ରହଣଂ ନାମ ଏକୋନତ୍ରିଂଶଃ ସର୍ଗଃ ।

---

କରି ଆନନ୍ଦମନରେ ନିଜ ଭବନ ଆଡ଼କୁ ଗଲେ ଏବଂ ନିଜ ପୁତ୍ରକୁ ଡାକି କହିଲେ ।୩୯। "ହେ ବତ୍ସ ! ଅତି ବଳବାନ୍ ପୁରୁଷ ସଦୃଶ ପରାକ୍ରମ ପ୍ରକାଶ କରି ତୁ ମୋର କୁଳ ଏବଂ ବଂଶର ଗୌରବ ବଢ଼ାଇଅଛୁ; ତୁ ଆଜି ଇନ୍ଦ୍ର ଏବଂ ଦେବତାମାନଙ୍କୁ ମଧ୍ୟ ଜିତିଅଛୁ ।୪୦। ହେ ବତ୍ସ ! ତୁ ଇନ୍ଦ୍ରଙ୍କୁ ରଥରେ ବସାଇ ନିଜର ସେନାଦ୍ୱାରା ପରିବେଷ୍ଟିତ ହୋଇ ଏଠାରୁ ଲଙ୍କା ନଗରକୁ ଯାଅ, ମୁଁ ମଧ୍ୟ ଆନନ୍ଦମନରେ ମନ୍ତ୍ରୀମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ତୋର ପଛେ ପଛେ ଶୀଘ୍ର ଯାଉଅଛି" ।୪୧। ତଦନନ୍ତର ବଳବାନ୍ ମେଘନାଦ ସ୍ୱର୍ଗାଧିପତି ଇନ୍ଦ୍ରଙ୍କୁ ବନ୍ଦୀ କରି ସେନା ଓ ବାହନମାନଙ୍କ ସହିତ ନିଜ ଘରକୁ ଚାଲିଗଲେ ଏବଂ ନିଜ ଗୃହରେ ପହଞ୍ଚି ଯୁଦ୍ଧରୁ ଫେରିଥିବା ସୈନ୍ୟମାନଙ୍କୁ ନିଜ ନିଜ ଘରକୁ ଫେରିଯିବାକୁ କହିଲେ ।୪୨।

# ତ୍ରିଂଶଃ ସର୍ଗଃ

## ଇନ୍ଦ୍ରପରାଜୟକାରଣକଥନମ୍

ଜିତେ ମହେନ୍ଦ୍ରେଽତିବଲେ ରାବଣସ୍ୟ ସୁତେନ ବୈ ।
ପ୍ରଜାପତିଂ ପୁରସ୍କୃତ୍ୟ ଯଯୁର୍ଲଙ୍କାଂ ସୁରାସ୍ତଦା । ୧ ।
ତତ୍ର ରାବଣମାସାଦ୍ୟ ପୁତ୍ରଭ୍ରାତୃଭିରାବୃତମ୍ ।
ଅବ୍ରବୀଦ୍ଗଗନେ ତିଷ୍ଠନ୍ ସାମପୂର୍ବଂ ପ୍ରଜାପତିଃ । ୨ ।
ବତ୍ସ ରାବଣ ତୁଷ୍ଟୋଽସ୍ମି ପୁତ୍ରସ୍ୟ ତବ ସଂଯୁଗେ ।
ଅହୋଽସ୍ୟ ବିକ୍ରମୌଦାର୍ଯ୍ୟଂ ତବ ତୁଲ୍ୟୋଽଧିକୋଽପି ବା । ୩ ।
ଜିତଂ ହି ଭବତା ସର୍ବଂ ତ୍ରୈଲୋକ୍ୟଂ ସ୍ୱେନ ତେଜସା ।
କୃତା ପ୍ରତିଜ୍ଞା ସଫଳା ପ୍ରୀତୋଽସ୍ମି ସ୍ୱସୁତେନ ବୈ । ୪ ।
ଅୟଂ ଚ ପୁତ୍ରୋଽତିବଲସ୍ତବ ରାବଣ ବୀର୍ଯବାନ୍ ।
ଜଗତୀନ୍ଦ୍ରଜିଦିତ୍ୟେବ ପରିଖ୍ୟାତୋ ଭବିଷ୍ୟତି । ୫ ।
ବଲବାନ୍ ଦୁର୍ଜୟଶ୍ଚୈବ ଭବିଷ୍ୟତ୍ୟେବ ରାକ୍ଷସଃ
ଯଂ ସମାଶ୍ରିତ୍ୟ ତେ ରାଜନ୍ ସ୍ଥାପିତା ସ୍ତ୍ରିଦଶା ବଶେ । ୬ ।

---

## ୩୦ଶ ସର୍ଗ

### ( ଇନ୍ଦ୍ରଙ୍କ ପରାଜୟର କାରଣବର୍ଣ୍ଣନା )

ଏହି ପ୍ରକାରେ ଇନ୍ଦ୍ର ବନ୍ଦୀ ହୋଇ ଲଙ୍କାକୁ ନିଆଯିବା ଉତ୍ତାରୁ ବ୍ରହ୍ମାଙ୍କୁ ଅଗ୍ରଣୀ କରି ଦେବଗଣ ଲଙ୍କାରେ ଯାଇ ପହଞ୍ଚିଲେ । ୧ । ସେତେବେଳେ ପୁତ୍ର ଓ ଭ୍ରାତାମାନଙ୍କ ଦ୍ୱାରା ପରିବୃତ ହୋଇ ବସିଥିବା ରାବଣକୁ ଆକାଶରେ ଥାଇ ପ୍ରଜାପତି ଶାନ୍ତିପୂର୍ବକ କହିଲେ । ୨ । "ହେ ବତ୍ସ ରାବଣ ! ମୁଁ ଯୁଦ୍ଧରେ ତୁମ୍ଭ ପୁତ୍ରର ବିକ୍ରମ ଓ ଔଦାର୍ଯ୍ୟ ଦେଖି ସନ୍ତୁଷ୍ଟ ହୋଇଅଛି । ସେ ତୁମ ସମାନ ବା ତୁମଠାରୁ ଅଧିକ ପରାକ୍ରମୀ ଅଟେ । ୩ । ତୁମେ ନିଜର ପରାକ୍ରମରେ ତିନି ଲୋକକୁ ଜିତିଅଛ ଏବଂ ନିଜର ପ୍ରତିଜ୍ଞା ପୂରଣ କରିଅଛ । ଅତଏବ ତୁମେ ଓ ତୁମ୍ଭର ପୁତ୍ର ଉଭୟଙ୍କ ଉପରେ ମୁଁ ପ୍ରସନ୍ନ ହୋଇଅଛି ।୪। ହେ ରାବଣ ! ତୁମ୍ଭର ଏ ଅତିବଳୀ ପୁତ୍ର ଜଗତରେ ଇନ୍ଦ୍ରଜିତ ନାମରେ ବିଖ୍ୟାତ ହେବ ।୫। ହେ ରାଜନ୍ ! ତୁମେ ଯାହାର ସହାୟତାରେ ଦେବତାମାନଙ୍କୁ ନିଜର ବଶ କରିଛ, ତୁମ୍ଭର ସେ ନିଶାଚର ପୁତ୍ର ବଳବାନ୍ ଏବଂ ଦୁର୍ଜେୟ ହେବ ।୬।

ତନ୍ମୁଚ୍ୟତାଂ ମହାବାହୋ ମହେନ୍ଦ୍ରଃ ପାକଶାସନଃ ।
କିଂ ଚୈଷ୍ୟ ମୋକ୍ଷଣାର୍ଥାୟ ପ୍ରୟଚ୍ଛନ୍ତୁ ଦିବୌକସଃ । ୭ ।
ଅଥାବ୍ରବୀନ୍ମହାତେଜା ଇନ୍ଦ୍ରଜିତ୍ ସମିତିଂଜୟଃ ।
ଅମରତ୍ୱମହଂ ଦେବ ବୃଣେ ଯଦ୍ୟେଷ ମୁଚ୍ୟତେ । ୮ ।
ତତୋଽବ୍ରବୀନ୍ମହାତେଜା ମେଘନାଦଂ ପ୍ରଜାପତିଃ ।
ନାସ୍ତି ସର୍ବାମରତ୍ୱଂ ହି କସ୍ୟଚିତ୍ ପ୍ରାଣିନୋ ଭୁବି । ୯ ।
ଚତୁଷ୍ପଦଃ ପକ୍ଷିଣଶ୍ଚ ଭୂତାନାଂ ବା ମହୌଜସାମ୍ ।
ଶ୍ରୁତ୍ୱା ପିତାମହେନୋକ୍ତମିନ୍ଦ୍ରଜିତ୍ ପ୍ରଭୁଣାବ୍ୟୟମ୍ । ୧୦ ।
ଅଥାବ୍ରବୀତ୍ସ ତତ୍ରସ୍ଥଂ ମେଘନାଦୋ ମହାବଳଃ ।
ଶ୍ରୂୟତାଂ ବା ଭବେତ୍ସିଦ୍ଧିଃ ଶତକ୍ରତୁବିମୋକ୍ଷଣେ । ୧୧ ।
ମମେଷ୍ଟଂ ନିତ୍ୟଶୋ ହବ୍ୟୈର୍ମନ୍ତ୍ରୈଃ ସଂପୂଜ୍ୟ ପାବକମ୍ ।
ସଂଗ୍ରାମମବତର୍ତୁଂ ଚ ଶତ୍ରୁନିର୍ଜୟକାଙ୍କ୍ଷିଣଃ । ୧୨ ।
ଅଶ୍ୱଯୁକ୍ତୋ ରଥୋ ମହ୍ୟମୁତ୍ତିଷ୍ଠେତ୍ତୁ ବିଭାବସୋଃ ।
ତତ୍ସ୍ଥସ୍ୟାମରତା ସ୍ୟାନ୍ମେ ଏଷ ମେ ନିଶ୍ଚୟୋ ବରଃ । ୧୩ ।
ତସ୍ମିନ୍ ଯଦ୍ୟସମାପ୍ତେ ଚ ଜପ୍ୟହୋମେ ବିଭାବସୌ ।
ଯୁଧ୍ୟେୟଂ ଦେବ ସଂଗ୍ରାମେ ତଦା ମେ ସ୍ୟାଦ୍ୱିନାଶନମ୍ । ୧୪ ।

---

ହେ ମହାବଳବାନ୍ ! ତୁମେ ଏବେ ଇନ୍ଦ୍ରଙ୍କୁ ଛାଡ଼ିଦିଅ ଏବଂ ତାର ପ୍ରତିଦାନରେ ତୁମେ ଦେବଗଣଙ୍କଠାରୁ କଅଣ ଚାହୁଁଛ, ସେମାନେ ତୁମକୁ କଅଣ ଦେବେ ?" । ୭ । ତା ପରେ ସମରବିଜୟୀ ମହାବଳୀ ଇନ୍ଦ୍ରଜିତ କହିଲା, "ହେ ଦେବ ! ଯଦି ଆପଣ ଇନ୍ଦ୍ରଙ୍କୁ ମୁକ୍ତ କରାଇବାକୁ ଚାହାନ୍ତି ତେବେ ମୋତେ ଅମରତ୍ୱ ପ୍ରଦାନ କରନ୍ତୁ" ।୮। ତା ପରେ ମହାତେଜସ୍ୱୀ ବ୍ରହ୍ମା ମେଘନାଦକୁ କହିଲେ, "ହେ ମେଘନାଦ ! ଏ ପୃଥିବୀରେ କୌଣସି ପ୍ରାଣୀ, କି ଚତୁଷ୍ପଦ, କି ପକ୍ଷୀ କିମ୍ବା ଅନ୍ୟ ବଡ଼ ବଡ଼ ପ୍ରାଣୀ ଅମର ନୁହନ୍ତି" । ବ୍ରହ୍ମାଙ୍କର ଏ ଧ୍ରୁବ ବାକ୍ୟ ଶୁଣି ମହାବଳବାନ୍ ମେଘନାଦ ବ୍ରହ୍ମାଙ୍କୁ କହିଲା, "ଶୁଣନ୍ତୁ, ଇନ୍ଦ୍ରଙ୍କୁ ଛାଡ଼ିଦେବା ବଦଳରେ ମୁଁ ଯେଉଁ ସିଦ୍ଧି ମାଗୁଛି, ତାହା ଦିଅନ୍ତୁ । ୯-୧୧ । ମୁଁ ଯେତେବେଳେ ଶତ୍ରୁକୁ ଜିଣିବା ପାଇଁ ଯାତ୍ରା କରିବି, ସେତେବେଳେ ଅଗ୍ନିଦେବଙ୍କୁ ପୂଜାକରିବି, ହବନୀୟ ଦ୍ରବ୍ୟ ଆହୁତି ଦେବି; ସେତେବେଳେ ସେ ଅଗ୍ନିରୁ ମୋ ପାଇଁ ଅଶ୍ୱ ସହିତ ରଥ ବାହାରିବ । ସେ ରଥ ଉପରେ ଯେପର୍ଯ୍ୟନ୍ତ ମୁଁ ବସିଥିବି, ସେ ପର୍ଯ୍ୟନ୍ତ ଅମର ରହିବି, ଏହାହିଁ ମୋର ନିଶ୍ଚିତ ବର ଅଟେ । ହେ ଦେବ ! ଯଦି ମୁଁ ଏ ଜପହୋମକୁ ପୂର୍ଣ୍ଣ ନ କରି

ସର୍ବୋ ହି ତପସା ଦେବ ବୃଣୋତ୍ୟମରତାଂ ପୁମାନ୍ ।
ବିକ୍ରମେଣ ମୟା ତ୍ୱେତଦମରତ୍ୱଂ ପ୍ରବର୍ତ୍ତିତମ୍ । ୧୫ ।
ଏବମସ୍ତ୍ୱିତି ତଂ ଶ୍ରୁତ୍ୱା ବାକ୍ୟଂ ଦେବଃ ପିତାମହଃ ।
ମୁକ୍ତଶ୍ଚେନ୍ଦ୍ରଜିତା ଶକ୍ରୋ ଗତାଶ୍ଚ ତ୍ରିଦିବଂ ସୁରାଃ । ୧୬ ।
ଏତସ୍ମିନ୍ନନ୍ତରେ ରାମ ଦୀନୋ ଭ୍ରଷ୍ଟାମ୍ବରଦ୍ୟୁତିଃ ।
ଇନ୍ଦ୍ରଶ୍ଚିନ୍ତାପରୀତାତ୍ମା ଧ୍ୟାନତତ୍ପରତାଂ ଗତଃ । ୧୭ ।
ତଂ ତୁ ଦୃଷ୍ଟ୍ୱା ତଥାଭୂତଂ ପ୍ରାହ ଦେବ ପ୍ରଜାପତିଃ ।
ଶତକ୍ରତୋ କିମୁ ପୁରା କରୋତି ସ୍ମ ସୁଦୁଷ୍କରମ୍ । ୧୮ ।
ଅମରେନ୍ଦ୍ର ମୟା ବହ୍ୱ୍ୟଃ ପ୍ରଜାଃ ସୃଷ୍ଟାସ୍ତଦା ପ୍ରଭୋ ।
ଏକବର୍ଣ୍ଣାଃ ସମାଭାଷା ଏକରୂପାଶ୍ଚ ସର୍ବଶଃ । ୧୯ ।
ତାସାଂ ନାସ୍ତି ବିଶେଷୋ ହି ଦର୍ଶନେ ଲକ୍ଷଣେଽପି ବା ।
ତତୋଽହମେକାଗ୍ରମନାସ୍ତାଃ ପ୍ରଜାଃ ପର୍ଯ୍ୟଚିନ୍ତୟମ୍ । ୨୦ ।
ସୋଽହଂ ତାସାଂ ବିଶେଷାର୍ଥଂ ସ୍ତ୍ରିୟମେକାଂ ବିନିର୍ମମେ ।
ଯଦ୍ୟତ୍ ପ୍ରଜାନାଂ ପ୍ରତ୍ୟଙ୍ଗଂ ବିଶିଷ୍ଟଂ ତତ୍ତଦୁଦ୍ଧୃତମ୍ । ୨୧ ।

---

ଯୁଦ୍ଧ କରେ ତାହାହେଲେ ମୁଁ ନିହତ ହେବି । ହେ ଦେବ ! ଅନ୍ୟ ସମସ୍ତେ ତପଦ୍ୱାରା ଅମରତ୍ୱ ବୃହାନ୍ତି, କିନ୍ତୁ ମୁଁ ତ ନିଜର ପରାକ୍ରମଦ୍ୱାରା ଅମରତ୍ୱ ବୃହୁଛି" । ୧୨-୧୫ । ପିତାମହ ବ୍ରହ୍ମା କହିଲେ, "ତାହାହିଁ ହେବ ।" ତାପରେ ମେଘନାଦ ଇନ୍ଦ୍ରଙ୍କୁ ଛାଡ଼ିଦେଲା ଏବଂ ଦେବଗଣ ସ୍ୱର୍ଗକୁ ଚାଲିଗଲେ । ୧୬ । ହେ ରାମ ! ଇନ୍ଦ୍ର ମୁକ୍ତ ହେଲେ ସତ, ମାତ୍ର ସେ ମ୍ଳାନ ହୋଇପଡ଼ିଲେ ଏବଂ ତାଙ୍କଠାରେ ଥିବା ଦେବତ୍ୱର କାନ୍ତି ଆଉ ରହିଲା ନାହିଁ । ଏଣୁ ସେ ଧ୍ୟାନମଗ୍ନ ହୋଇ ଚିନ୍ତା କରିବାକୁ ଲାଗିଲେ । ୧୭ । ଇନ୍ଦ୍ରଙ୍କୁ ଚିନ୍ତିତ ଦେଖି ବ୍ରହ୍ମା କହିଲେ, "ହେ ଇନ୍ଦ୍ର ! ତୁମେ ଚିନ୍ତା କଅଣ କରୁଛ ? ତୁମେ ପୂର୍ବେ ଯେଉଁ ଦୁଷ୍କାର୍ଯ୍ୟ କରିଥିଲ ତାହା ସ୍ମରଣ କର ।୧୮। ହେ ଇନ୍ଦ୍ର ! ମୁଁ ପ୍ରଥମେ ସଂକଳ୍ପଦ୍ୱାରା କେତେକ ପ୍ରଜା ସୃଷ୍ଟି କରିଥିଲି । ସେମାନଙ୍କର ଏକ ବର୍ଣ୍ଣ, ଏକ ଆକୃତି ଏବଂ ଏକ ରୂପ ଥିଲା ।୧୯। ସେମାନଙ୍କ ମଧ୍ୟରେ ରୂପରେ ବା ଲକ୍ଷଣରେ କୌଣସି ପ୍ରଭେଦ ନ ଥିଲା; ତେଣୁ ମୁଁ ସେ ପ୍ରଜାମାନଙ୍କ ବିଷୟରେ ଏକାଗ୍ରମନରେ ବିଶେଷ ଚିନ୍ତା କରିବାକୁ ଲାଗିଲି । ୨୦ । ତଦନନ୍ତର ମୁଁ ସେଥିରେ କୌଣସି ବିଶେଷତ୍ୱ ଦେଖାଇବା ନିମନ୍ତେ ଏକ ସ୍ୱତନ୍ତ୍ର ସ୍ତ୍ରୀଜାତି ନିର୍ମାଣ କଲି । ସେହି ସ୍ତ୍ରୀ ନିର୍ମାଣ କରିବା ପାଇଁ ମୁଁ ସବୁ ପ୍ରଜାଙ୍କର ସାରଭାଗ ଗ୍ରହଣ କଲି । ୨୧ ।

ତତୋ ମୟା ରୂପଗୁଣୈରହଲ୍ୟା ସ୍ତ୍ରୀ ବିନିର୍ମିତା ।
ହଲଂ ନାମେହ ବୈରୂପ୍ୟଂ ହଲ୍ୟଂ ତତ୍‌ପ୍ରଭବଂ ଭବେତ୍ ।୨୨।
ଯସ୍ମାନ୍ନ ବିଦ୍ୟତେ ହଲ୍ୟଂ ତେନାହଲ୍ୟେତି ବିଶ୍ରୁତା ।
ଅହଲ୍ୟେତ୍ୟ ମୟା ଶକ୍ର ତସ୍ୟାଂ ନାମ ପ୍ରକୀର୍ତ୍ତିତମ୍ । ୨୩ ।
ନିର୍ମିତାୟାଂ ଚ ଦେବେନ୍ଦ୍ର ତସ୍ୟାଂ ନାର୍ଯ୍ୟାଂ ସୁରର୍ଷଭ ।
ଭବିଷ୍ୟତୀତି କସ୍ୟୈଷା ମମ ଚିନ୍ତା ତତୋଽଭବତ୍ । ୨୪ ।
ତ୍ୱଂ ତୁ ଶକ୍ର ତଦା ନାରୀଂ ଜାନୀଷେ ମନସା ପ୍ରଭୋ ।
ସ୍ଥାନାଧିକତୟା ପତ୍ନୀ ମମୈଷେତି ପୁରନ୍ଦର । ୨୫ ।
ସା ମୟା ନ୍ୟାସଭୂତା ତୁ ଗୌତମସ୍ୟ ମହାତ୍ମନଃ ।
ନ୍ୟସ୍ତା ବହୂନି ବର୍ଷାଣି ତେନ ନିର୍ଯ୍ୟାତିତା ଚ ହ । ୨୬ ।
ତତସ୍ତସ୍ୟ ପରିଜ୍ଞାୟ ମୟା ସ୍ଥୈର୍ଯ୍ୟଂ ମହାମୁନେଃ ।
ଜ୍ଞାତ୍ୱା ତପସି ସିଦ୍ଧିଂ ଚ ପତ୍ନ୍ୟର୍ଥଂ ସ୍ପର୍ଶିତା ତଦା । ୨୭ ।
ସ ତୟା ସହ ଧର୍ମାତ୍ମା ରମତେ ସ୍ମ ମହାମୁନିଃ ।
ଆସନ୍ନିରାଶା ଦେବାସ୍ତୁ ଗୌତମେ ଦତ୍ତୟା ତୟା । ୨୮ ।

---

ମୁଁ ଅତ୍ୟନ୍ତ ରୂପବତୀ ଓ ଗୁଣବତୀ ଅହଲ୍ୟା ନାମକ ସ୍ତ୍ରୀ ସୃଷ୍ଟି କଲି । 'ହଲ' ଶବ୍ଦର ଅର୍ଥ କୁରୂପତା । ସେହି 'ହଲ' ଅର୍ଥାତ୍ କୁରୂପତାରୁ ଯେ ଉତ୍ପନ୍ନ ହୁଏ ତାହାକୁ 'ହଲ୍ୟ' କହନ୍ତି । ୨୨ । ଯାହାଠାରେ ହଲ୍ୟ ଅର୍ଥାତ୍ କୁରୂପତା ନାହିଁ ତାହାକୁ ଅହଲ୍ୟା କହନ୍ତି । ସେହି ହେତୁରୁ ମୁଁ ତାହାର ନାମ ଅହଲ୍ୟା ରଖିଲି ।୨୩। ହେ ଦେବଶ୍ରେଷ୍ଠ ! ସେ ନାରୀକୁ ନିର୍ମାଣ କରିବା ପରେ ମୋ ମନରେ ଚିନ୍ତା ହେଲା କି, ଏ କାହାର ହେବ । ୨୪ । କିନ୍ତୁ ତୁମେ ନିଜ ମନରେ ବିଚାରିଲ ଯେ ମୁଁ ତ୍ରିଲୋକର ସ୍ୱାମୀ, ଅତଏବ ଏ ମୋର ସ୍ତ୍ରୀ ହେବ । ୨୫ । କିନ୍ତୁ ମୁଁ ନ୍ୟାସ ସ୍ୱରୂପ ତାକୁ ଗୌତମ ମୁନିଙ୍କ ପାଖରେ ରଖିଦେଲି । ସେ ବହୁ ବର୍ଷ ଯାତନା ସହି ମୁନିଙ୍କ ପାଖରେ ବହୁକାଳ ରହିଲା । ୨୬ । ଯେତେବେଳେ ମୁଁ ମହାମୁନିଙ୍କର ମାନସିକ ସ୍ଥିରତା ଏବଂ ତପସିଦ୍ଧି ଦେଖିଲି, ସେତେବେଳେ ପୁଣି ତାକୁ ପତ୍ନୀରୂପରେ ତାଙ୍କୁ ହିଁ ଦେଇଦେଲି । ୨୭ । ଧର୍ମାତ୍ମା ଗୌତମ ତାହା ସହିତ ରମଣ କରିବାକୁ ଲାଗିଲେ । ସେ ନାରୀକୁ ଗୌତମଙ୍କୁ ଦେଇଦେବାରୁ ଦେବତାମାନେ ନିରାଶ ହେଲେ । ୨୮ । ହେ ଧର୍ମାତ୍ମା ! ତୁମେ

ସଂକ୍ରୁଦ୍ଧସ୍ତ୍ୱଂ ହି ଧର୍ମାତ୍ମନ୍ ଗତ୍ୱା ତସ୍ୟାଶ୍ରମଂ ମୁନେଃ ।
ଦୃଷ୍ଟବାଂଶ୍ଚ ତଦା ତାଂ ସ୍ତ୍ରୀଂ ଦୀପ୍ତାମଗ୍ନିଶିଖାମିବ । ୨୯ ।
ସା ତ୍ୱୟା ଧର୍ଷିତା ଶକ୍ର କାମାର୍ତ୍ତେନ ସମନ୍ୟୁନା ।
ଦୃଷ୍ଟସ୍ତ୍ୱଂ ଚ ତଦା ତେନ ହ୍ୟାଶ୍ରମେ ପରମର୍ଷିଣା । ୩୦ ।
ତତଃ କ୍ରୁଦ୍ଧେନ ତେନାସି ଶପ୍ତଃ ପରମତେଜସା ।
ଗତୋଽସି ଯେନ ଦେବେନ୍ଦ୍ର ଦଶାଭାଗବିପର୍ଯ୍ୟୟମ୍ । ୩୧ ।
ଯସ୍ମାତ୍ତେ ଧର୍ଷିତା ପତ୍ନୀ ତ୍ୱୟା ବାସବ ନିର୍ଭୟମ୍ ।
ତସ୍ମାତ୍ତ୍ୱଂ ସମରେ ରାଜନ୍ ଶତ୍ରୁହସ୍ତଂ ଗମିଷ୍ୟସି । ୩୨ ।
ଅୟଂ ତୁ ଭାବୋ ଦୁର୍ବୁଦ୍ଧେ ଯସ୍ତ୍ୱୟେହ ପ୍ରବର୍ତ୍ତିତଃ ।
ମାନୁଷେଷ୍ୱପି ଲୋକେଷୁ ଭବିଷ୍ୟତି ନ ସଂଶୟଃ । ୩୩ ।
ତତ୍ରାର୍ଧଂ ତସ୍ୟ ଯଃ କର୍ତ୍ତା ତ୍ୱୟ୍ୟର୍ଧଂ ନିପତିଷ୍ୟତି ।
ନ ଚ ତେ ସ୍ଥାବରଂ ସ୍ଥାନଂ ଭବିଷ୍ୟତି ନ ସଂଶୟଃ । ୩୪ ।
ଯଶ୍ଚ ଯଶ୍ଚ ସୁରେନ୍ଦ୍ରଃ ସ୍ୟାଦ୍ଧ୍ରୁବଃ ସ ନ ଭବିଷ୍ୟତି ।
ଏଷ ଶାପୋ ମୟା ମୁକ୍ତ ଇତ୍ୟସୌ ତ୍ୱାଂ ତଦାବ୍ରବୀତ୍ । ୩୫ ।

---

ସେତେବେଳେ କ୍ରୁଦ୍ଧ ହୋଇ ସେହି ମୁନିଙ୍କ ଆଶ୍ରମକୁ ଯାଇ ଅଗ୍ନିଶିଖା ସଦୃଶ ପ୍ରଭାମୟୀ ସେହି ସ୍ତ୍ରୀକୁ ସେଠାରେ ଦେଖିଲ । ୨୯ । ତୁମେ କାମରେ ଉନ୍ମତ୍ତ ଏବଂ କ୍ରୋଧପରିପୂର୍ଣ୍ଣ ହୋଇ ସେହି ସ୍ତ୍ରୀକୁ ଧର୍ଷଣ କଲ । ସେତେବେଳେ ଗୌତମ ତୁମକୁ ନିଜ ଆଶ୍ରମରେ ଦେଖି ପକାଇଲେ । ୩୦ । ସେତେବେଳେ ମହାମୁନି ଗୌତମ କ୍ରୁଦ୍ଧ ହୋଇ ତୁମକୁ ଶାପ ଦେଇଥିଲେ ଯେ—'ହେ ଦେବରାଜ ! ତୁମେ ନିର୍ଭୟରେ ମୋ ସ୍ତ୍ରୀର ସତୀତ୍ୱ ନଷ୍ଟ କରିଅଛ, ଅତଏବ ତୁମେ ଯୁଦ୍ଧରେ ଶତ୍ରୁହସ୍ତରେ ବନ୍ଦୀ ହେବ । ୩୧-୩୨ । ହେ ଦୁର୍ବୁଦ୍ଧେ ! ତୁମେ ଏହି ଯେଉଁ ଅନୁଚିତ ନୀତି ପ୍ରବର୍ତ୍ତନ କଲ ସେହି ପ୍ରଥା ମନୁଷ୍ୟଲୋକକୁ ମଧ୍ୟ ଦୂଷିତ କରିବ, ଏଥିରେ ସନ୍ଦେହ ନାହିଁ । ୩୩ । ଅତଏବ ଯେଉଁ ବ୍ୟକ୍ତି ଏହି ବ୍ୟଭିଚାରର କାର୍ଯ୍ୟ କରିବ ତାହାର ଅଧେ ପାପର ଭାଗୀ ତୁମେ ହେବ ଏବଂ ଅଧେ ପାପ ସେ ଲୋକକୁ ଲାଗିବ ; କେବଳ ଏତିକି ନୁହେଁ, ଦେବରାଜ ପଦରେ ତୁମେ ଚିରକାଳ ସ୍ଥାୟୀ ରହିପାରିବ ନାହିଁ ।୩୪। ଏ ଶାପ କେବଳ ବ୍ୟକ୍ତିଗତଭାବରେ ତୁମଲାଗି ନୁହେଁ, ମାତ୍ର ଯେ କେହି ଇନ୍ଦ୍ରପଦରେ ବସିବ ସେ ମଧ୍ୟ ଅସ୍ଥାବର ହେବ । ମୋର ଶାପ ଇନ୍ଦ୍ରଙ୍କ ପ୍ରତି ପ୍ରଯୁଜ୍ୟ ଅଟେ ।' ଗୌତମ ମୁନି ଏହିପ୍ରକାରେ ତୁମକୁ କହିଥିଲେ । ୩୫ । ତଦନନ୍ତର

ତାଂ ତୁ ଭାର୍ଯାଂ ସୁନିର୍ଭର୍ତ୍ସ୍ୟ ସୋଽବ୍ରବୀତ୍ ସୁମହାତପାଃ ।
ଦୁର୍ବିନୀତେ ବିନିଧ୍ୱଂସ ମମାଶ୍ରମସମୀପତଃ । ୩୫ ।
ରୂପଯୌବନସଂପନ୍ନା ଯସ୍ମାତ୍ତ୍ୱମନବସ୍ଥିତା ।
ତସ୍ମାଦ୍ରୂପବତୀ ଲୋକେ ନ ତ୍ୱମେକା ଭବିଷ୍ୟସି । ୩୬ ।
ରୂପଂ ଚ ତେ ପ୍ରଜାଃ ସର୍ବା ଗମିଷ୍ୟନ୍ତି ନ ସଂଶୟଃ ।
ଯତ୍ତଦେକଂ ସମାଶ୍ରିତ୍ୟ ବିଭ୍ରମୋଽୟମୁପସ୍ଥିତଃ । ୩୮ ।
ତଦାପ୍ରଭୃତି ଭୂୟିଷ୍ଠଂ ପ୍ରଜା ରୂପସମନ୍ୱିତାଃ ।
ସା ତଂ ପ୍ରସାଦୟାମାସ ମହର୍ଷିଂ ଗୌତମଂ ତଦା । ୩୯ ।
ଅଜ୍ଞାନାଦ୍ଧର୍ଷିତା ନାଥ ତ୍ୱଦ୍ରୂପେଣ ଦିବୌକସା ।
ନ କାମକାରାଦ୍ ବିପ୍ରର୍ଷେ ପ୍ରସାଦଂ କର୍ତୁମର୍ହସି ।୪୦ ।
ଅହଲ୍ୟୟା ତ୍ୱେବମୁକ୍ତଃ ପ୍ରତ୍ୟୁବାଚ ସ ଗୌତମଃ ।
ଉତ୍ପତ୍ସ୍ୟତେ ମହାତେଜା ଇକ୍ଷ୍ୱାକୂଣାଂ ମହାରଥଃ । ୪୧ ।
ରାମୋ ନାମ ଶ୍ରୁତୋ ଲୋକେ ବନଂ ଚାପ୍ୟୁପଯାସ୍ୟତି ।
ବ୍ରାହ୍ମଣାର୍ଥେ ମହାବାହୁର୍ବିଷ୍ଣୁର୍ମାନୁଷବିଗ୍ରହଃ । ୪୨ ।

---

ସେ ମହାତପସ୍ୱୀ ଗୌତମ ନିଜର ସ୍ତ୍ରୀକୁ ଭର୍ତ୍ସନା କରି କହିଲେ, 'ହେ ଦୁର୍ବିନୀତେ ! ମୋର ଆଶ୍ରମ ନିକଟରୁ ତୁ ଦୂର ହୋଇଯାଅ । ୩୫ । ଏପରି ରୂପ ଏବଂ ଯୌବନ ପାଇଥିବାରୁ ତୋର ମନ ଏପରି ଚଞ୍ଚଳ ହେଲା; ତେଣୁ ଆଜଠାରୁ କେବଳ ତୁମ୍ଭେ ଏକମାତ୍ର ରୂପବତୀ ହୋଇ ରହିବୁ ନାହିଁ । ୩୭ । କେବଳ ତୁମ୍ଭେ ରୂପବତୀ ହୋଇଥିବାରୁ ଏ ବିଭ୍ରମ ଉପସ୍ଥିତ ହେଲା । ଅତଏବ ଆଜଠାରୁ ତୋପରି ଅନ୍ୟ ପ୍ରଜାମାନେ ମଧ୍ୟ ରୂପବତୀ ହେବେ, ଏଥିରେ ସନ୍ଦେହ ନାହିଁ' । ୩୮ । ସେହିଦିନଠାରୁ ବହୁ ପ୍ରଜା ରୂପମଣ୍ଡିତ ହେବାକୁ ଲାଗିଲେ । ଏହି ଶାପ ଶୁଣି ଅହଲ୍ୟା ମହର୍ଷି ଗୌତମଙ୍କୁ ସନ୍ତୁଷ୍ଟ କରିବା ପାଇଁ କହିଲେ ।୩୯। 'ହେ ବିପ୍ର ! ଇନ୍ଦ୍ର ତୁମ୍ଭର ରୂପ ଧରି ମୋତେ ଧର୍ଷଣ କରିଅଛନ୍ତି । ମୁଁ ଜାଣିଶୁଣି ଏ ପାପ କରିନାହିଁ । ସୁତରାଂ ଆପଣ ମୋତେ କ୍ଷମା କରନ୍ତୁ ।' ୪୦ । ଅହଲ୍ୟାଙ୍କର ଏ କଥା ଶୁଣି ଗୌତମ କହିଲେ, 'ବ୍ରାହ୍ମଣମାନଙ୍କ ହିତ ନିମନ୍ତେ ମହାତେଜସ୍ୱୀ ଭଗବାନ ବିଷ୍ଣୁ ମନୁଷ୍ୟ ଦେହ ଧାରଣ କରି ଇକ୍ଷ୍ୱାକୁବଂଶରେ ଉତ୍ପନ୍ନ ହେବେ । ସେ ମହାବାହୁ ଏ ସଂସାରରେ ରାମ ନାମରେ ପ୍ରସିଦ୍ଧ ହେବେ ଏବଂ ବଣକୁ ଆସିବେ । ୪୧-୪୨ ।

ତଂ ଦ୍ରକ୍ଷ୍ୟସି ଯଦା ଭଦ୍ରେ ତତଃ ପୂତା ଭବିଷ୍ୟସି ।
ସ ହି ପାବୟିତୁଂ ଶକ୍ତସ୍ତ୍ୱୟା ଯଦ୍ଦୁଷ୍କୃତଂ କୃତମ୍ । ୪୩ ।
ତସ୍ୟାତିଥ୍ୟଂ ଚ କୃତ୍ୱା ବୈ ମତ୍ସମୀପଂ ଗମିଷ୍ୟସି ।
ବତ୍ସ୍ୟସି ତ୍ୱଂ ମୟା ସାର୍ଦ୍ଧଂ ତଦା ହି ବରବର୍ଣ୍ଣିନି । ୪୪ ।
ଏବମୁକ୍ତ୍ୱା ସ ବିପ୍ରର୍ଷିରାଜଗାମ ସ୍ୱମାଶ୍ରମମ୍ ।
ତତଶ୍ଚଚାର ସୁମହତ୍ ସା ପତ୍ନୀ ବ୍ରହ୍ମବାଦିନଃ । ୪୫ ।
ଶାପୋତ୍ସର୍ଗାଦ୍ଧି ତସ୍ୟେଦଂ ମୁନେଃ ସର୍ବମୁପସ୍ଥିତମ୍ ।
ତତ୍ ସ୍ମର ତ୍ୱଂ ମହାବାହୋ ଦୁଷ୍କୃତଂ ଯତ୍ତ୍ୱୟା କୃତମ୍ ।୪୬।
ତେନ ତ୍ୱଂ ଗ୍ରହଣଂ ଶତ୍ରୋର୍ଯାତୋ ନାନ୍ୟେନ ବାସବ ।
ଶୀଘ୍ରଂ ବୈ ଯଜ ଯଜ୍ଞଂ ତ୍ୱଂ ବୈଷ୍ଣବଂ ସୁସମାହିତଃ । ୪୭ ।
ପାବିତସ୍ତେନ ଯଜ୍ଞେନ ଯାସ୍ୟସେ ତ୍ରିଦିବଂ ତତଃ ।
ପୁତ୍ରଶ୍ଚ ତବ ଦେବେନ୍ଦ୍ର ନ ବିନଷ୍ଟୋ ମହାରଣେ । ୪୮ ।
ନୀତଃ ସନ୍ନିହିତଶ୍ଚୈବ ଆର୍ଯକେଣ ମହୋଦଧୌ ।
ଏତତ୍ ଶ୍ରୁତ୍ୱା ମହେନ୍ଦ୍ରସ୍ତୁ ଯଜ୍ଞମିଷ୍ଟ୍ୱା । ଚ ବୈଷ୍ଣବମ୍ । ୪୯ ।

---

ହେ ଭଦ୍ରେ ! ତାଙ୍କୁ ଦର୍ଶନ କଲେ ତୁମ୍ଭର ପାପ ଦୂର ହେବ । ସେ ରାମଚନ୍ଦ୍ର ହିଁ ତୁମ୍ଭର ଏହି କୃତପାପକୁ ଦୂର କରିପାରିବେ । ହେ ବରବର୍ଣ୍ଣିନି ! ତାହାଙ୍କର ଆତିଥ୍ୟ କରିସାରି ତୁମେ ଯେତେବେଳେ ମୋ ନିକଟକୁ ଆସିବ ସେତେବେଳେ ତୁମ୍ଭେ ପୁଣି ମୋ ସାଙ୍ଗରେ ରହିବାପାଇଁ ଯୋଗ୍ୟ ହେବ' । ୪୪ । ଏହା କହି ସେ ବ୍ରହ୍ମର୍ଷି ପୁଣି ନିଜ ଆଶ୍ରମକୁ ଚାଲିଗଲେ । ସେହି ଦିନଠାରୁ ଏହି ବ୍ରହ୍ମବାଦୀଙ୍କ ସ୍ତ୍ରୀ ଅହଲ୍ୟା ମହା ତପସ୍ୟା କରିବାକୁ ଲାଗିଲେ । ୪୫ । ହେ ମହାବାହୁ ଇନ୍ଦ୍ର ! ଗୌତମଙ୍କ ଶାପରୁ ହିଁ ତୁମ୍ଭର ଏ ଦଶା ହୋଇଅଛି । ଅତଏବ ତୁମେ ନିଜର କୁକର୍ମକୁ ସ୍ମରଣ କର । ୪୬ । ହେ ଇନ୍ଦ୍ର ! ସେହି ପାପହେତୁରୁ ହିଁ ଶତ୍ରୁ ତୁମକୁ ଧରିନେଲା; ଏବେ ତୁମେ ସାବଧାନତାପୂର୍ବକ ଶୀଘ୍ର ବୈଷ୍ଣବ ଯଜ୍ଞ କର । ୪୭ । ସେହି ଯଜ୍ଞ କରିସାରିବା ପରେ ତୁମେ ଶୁଦ୍ଧ ହୋଇ ଦେବଲୋକକୁ ଯିବ । ହେ ଦେବରାଜ ! ଯୁଦ୍ଧରେ ତୁମ୍ଭର ପୁତ୍ର ଜୟନ୍ତ ନିହତ ହୋଇ ନାହିଁ । ୪୮ । ତାହାକୁ ତୁମ୍ଭର ଶ୍ୱଶୁର ପୁଲୋମା ସମୁଦ୍ରଭିତରେ ନେଇ ରଖିଅଛନ୍ତି ।" ଏହା ଶୁଣି ଇନ୍ଦ୍ର ବୈଷ୍ଣବ ଯଜ୍ଞ କଲେ ।

ପ୍ରନଷ୍ଟିର୍ଦ୍ଦିବମାକ୍ରାମଦନ୍ୱଶାସଚ ଦେବରାଟ୍ ।
ଏତଦ୍ଦିନ୍ଦ୍ରଜିତୋ.ନାମ ବଳଂ ଯତ୍ କୀର୍ତ୍ତିତଂ ମୟା ୫୦ ।
ନିର୍ଜିତସ୍ତେନ ଦେବେନ୍ଦ୍ରଃ ପ୍ରାଣିନୋଽନ୍ୟେ ତୁ କିଂ ପୁନଃ ।
ଆଶ୍ଚର୍ଯ୍ୟମିତି ରାମଶ୍ଚ ଲକ୍ଷ୍ମଣଶ୍ଚାବ୍ରବୀତ୍ତଦା । ୫୧ ।
ଅଗସ୍ତ୍ୟବଚନଂ ଶ୍ରୁତ୍ୱା ବାନରାଃ ରାକ୍ଷସାସ୍ତଦା ।
ବିଭୀଷଣସ୍ତୁ ରାମସ୍ୟ ପାର୍ଶ୍ୱସ୍ଥୋ ବାକ୍ୟମବ୍ରବୀତ୍ । ୫୨ ।
ଆଶ୍ଚର୍ଯ୍ୟଂ ସ୍ମାରିତୋଽସ୍ମ୍ୟଦ୍ୟ ଯତ୍ତଦ୍ଦୃଷ୍ଟଂ ପୁରାତନମ୍ ।
ଅଗସ୍ତ୍ୟଂ ତ୍ୱବ୍ରବୀଦ୍ରାମଃ ସତ୍ୟମେତତ୍ ଶ୍ରୁତଂ ଚ ମେ । ୫୩ ।
ଏବଂ ରାମ ସମୁଦ୍ଭୂତୋ ରାବଣୋ ଲୋକକଣ୍ଟକଃ ।
ସପୁତ୍ରୋ ଯେନ ସଂଗ୍ରାମେ ଜିତଃ ଶକ୍ରଃ ସୁରେଶ୍ୱରଃ । ୫୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ଇନ୍ଦ୍ରପରାଜୟକାରଣକଥନଂ ନାମ ତ୍ରିଂଶଃ ସର୍ଗଃ ।

---

ସେ ପବିତ୍ର ହୋଇ ସ୍ୱର୍ଗକୁ ଗଲେ ଓ ପୁଣି ରାଜ୍ୟଶାସନ କଲେ । ହେ ରଘୁନନ୍ଦନ ! ଇନ୍ଦ୍ରଜିତ ଏହି ପ୍ରକାର ବଳଶାଳୀ ଥିଲା । ଅନ୍ୟ କଥା ଦୂରେ ଥାଉ, ସେ ଦେବରାଜ ଇନ୍ଦ୍ରଙ୍କୁ ମଧ୍ୟ ଜିଣିଥିଲା ।" ଅଗସ୍ତ୍ୟ ମୁନିଙ୍କ କଥା ଶୁଣି ରାମ ଏବଂ ଲକ୍ଷ୍ମଣ କହିଲେ ଏ ବଡ଼ ଆଶ୍ଚର୍ଯ୍ୟ କଥା ।୪୯-୫୧। ଅଗସ୍ତ୍ୟଙ୍କ କଥା ଶୁଣି ବାନର ଓ ରାକ୍ଷସମାନେ ଆଶ୍ଚର୍ଯ୍ୟ ହେଲେ ଏବଂ ବିଭୀଷଣ ରାମଙ୍କ ନିକଟରେ ବସିଥାଇ କହିଲେ ।୫୨। "ବହୁଦିନ ପରେ ଆଜ ପୁଣି ପୁରାତନ କଥା ମୋର ସ୍ମରଣ ହୋଇଗଲା ।" ତା ପରେ ରାମ ଅଗସ୍ତ୍ୟଙ୍କୁ କହିଲେ, "ଆପଣ ଯାହା କହିଲେ ତାହା ସତ୍ୟ ଅଟେ, କାରଣ ମୁଁ ମଧ୍ୟ ଏକଥା ଆଗରୁ ଶୁଣିଅଛି । ୫୩ । ଶେଷରେ ଅଗସ୍ତ୍ୟ କହିଲେ, "ହେ ରାମ ! ଯେଉଁ ରାବଣ ଇନ୍ଦ୍ର ତଥା ତାଙ୍କ ପୁତ୍ର ଜୟନ୍ତଙ୍କୁ ଯୁଦ୍ଧରେ ହରାଇ ଦେଇଥିଲା, ସେହି ଲୋକକଣ୍ଟକ ରାବଣର ଉତ୍ପତ୍ତି କଥା ଏହାହିଁ ଅଟେ ।" ୫୪ ।

# ଏକତ୍ରିଂଶଃ ସର୍ଗଃ

## ରାବଣନର୍ମଦାବଗାହଃ

ତତୋ ରାମୋ ମହାତେଜା ବିସ୍ମୟାତ୍ ପୁନରେବ ହି ।
ଉବାଚ ପ୍ରଣତୋ ବାକ୍ୟମଗସ୍ତ୍ୟମୃଷିସତ୍ତମମ୍ । ୧ ।
ଭଗବନ୍ ରାକ୍ଷସଃ କ୍ରୂରୋ ଯଦା ପ୍ରଭୃତି ମେଦିନୀମ୍ ।
ପର୍ଯ୍ୟଟନ୍ କିଂ ତଦା ଲୋକାଃ ଶୂନ୍ୟା ଆସନ୍ ଦ୍ୱିଜୋତ୍ତମ । ୨ ।
ରାଜା ବା ରାଜମାତ୍ରୋ ବା କିଂ ତଦା ନାତ୍ର କଶ୍ଚନ ।
ଧର୍ଷଣଂ ଯେନ ନ ପ୍ରାପ୍ତୋ ରାବଣୋ ରାକ୍ଷସେଶ୍ୱରଃ । ୩ ।
ଉତାହୋ ହତବୀର୍ଯ୍ୟାସ୍ତେ ବଭୂବୁଃ ପୃଥିବୀକ୍ଷିତଃ ।
ବହିଷ୍କୃତା ବରାସ୍ତ୍ରୈଶ୍ଚ ବହବୋ ନିର୍ଜିତା ନୃପାଃ । ୪ ।
ରାଘବସ୍ୟ ବଚଃ ଶ୍ରୁତ୍ୱା ହ୍ୟଗସ୍ତ୍ୟୋ ଭଗବାନୃଷିଃ ।
ଉବାଚ ରାମଂ ପ୍ରହସନ୍ ପିତାମହ ଇବେଶ୍ୱରମ୍ । ୫ ।
ଇତ୍ୟେବଂ ବାଧମାନସ୍ତୁ ପାର୍ଥିବାନ୍ ପାର୍ଥିବର୍ଷଭ ।
ଚଚାର ରାବଣୋ ରାମ ପୃଥିବୀଂ ପୃଥିବୀପତେ । ୬ ।

---

## ୩୧ଶ ସର୍ଗ

### ( ରାବଣର ନର୍ମଦାସ୍ନାନ )

ତଦନନ୍ତର ମହାତେଜସ୍ୱୀ ରାମ ବିସ୍ମିତ ହୋଇ ଏବଂ ପ୍ରଣାମ କରି ଋଷିଶ୍ରେଷ୍ଠ ଅଗସ୍ତ୍ୟଙ୍କୁ କହିଲେ । ୧ । "ହେ ଦ୍ୱିଜଶ୍ରେଷ୍ଠ, ହେ ଭଗବନ୍ ! କ୍ରୂରସ୍ୱଭାବ ରାବଣ ଯେତେବେଳେ ପୃଥିବୀରେ ପର୍ଯ୍ୟଟନ କରୁଥିଲା ସେତେବେଳେ କଣ ଏ ପୃଥିବୀ ବୀରଶୂନ୍ୟ ଥିଲା ? ।୨। ସେତେବେଳେ କଣ କେହି ରାଜା ବା ଅନ୍ୟ କେହି ରାଜପୁରୁଷ ନ ଥିଲେ ଯେକି ରାବଣକୁ ଦବାଇ ପାରିଲେ ନାହିଁ ? । ୩ । କଣ ସେତେବେଳେ ରାଜାମାନେ ହତବୀର୍ଯ୍ୟ ହୋଇପଡ଼ିଥିଲେ କିମ୍ବା ସେମାନେ ଉତ୍ତମ ଅସ୍ତ୍ରଚାଳନା ବିଦ୍ୟା ଜାଣି ନ ଥିଲେ ଏବଂ ସେହି ହେତୁରୁ ବହୁ ରାଜା ରାବଣଦ୍ୱାରା ପରାସ୍ତ ହୋଇଥିଲେ ! । ୪ । ରାମଙ୍କର ଏ କଥା ଶୁଣି ଭଗବାନ୍ ଅଗସ୍ତ୍ୟ ଋଷି ବ୍ରହ୍ମା ଶିବଙ୍କୁ କହିଲା ପରି ରାମଚନ୍ଦ୍ରଙ୍କୁ କହିଲେ । ୫ । "ହେ ରାଜଶ୍ରେଷ୍ଠ ପୃଥିବୀପତି ! ରାବଣ ଏହି ପ୍ରକାରେ ରାଜାମାନଙ୍କୁ ନିର୍ଯ୍ୟାତିତ କରି ପୃଥିବୀରେ ବିଚରଣ କରୁଥିଲା ।୬।

ତତୋ ମାହିଷ୍ମତୀଂ ନାମ ପୁରୀଂ ସ୍ୱର୍ଗପୁରୀପ୍ରଭାମ୍ ।
ସଂପ୍ରାପ୍ତୋ ଯତ୍ର ସାନ୍ନିଧ୍ୟଂ ସଦାସୀଦ୍ ବସୁରେତସଃ । ୭ ।
ତୁଲ୍ୟ ଆସୀନ୍ନୃପସ୍ତସ୍ୟ ପ୍ରଭାବାଦ୍ ବସୁରେତସଃ ।
ଅର୍ଜୁନୋ ନାମ ଯତ୍ରାଗ୍ନିଃ ଶରକୁଣ୍ଡେଶୟଃ ସଦା । ୮ ।
ତମେବ ଦିବସଂ ସୋଽଥ ହୈହୟାଧିପତିର୍ବଲୀ ।
ଅର୍ଜୁନୋ ନର୍ମଦାଂ ରନ୍ତୁଂ ଗତଃ ସ୍ତ୍ରୀଭିଃ ସହେଶ୍ୱରଃ । ୯ ।
ତମେବ ଦିବସଂ ସୋଽଥ ରାବଣସ୍ତତ୍ର ଆଗତଃ ।
ରାବଣୋ ରାକ୍ଷସେନ୍ଦ୍ରସ୍ତୁ ତସ୍ୟାମାତ୍ୟାନପୃଚ୍ଛତ । ୧୦ ।
କ୍ୱାର୍ଜୁନୋ ନୃପତିଃ ଶୀଘ୍ରଂ ସମ୍ୟଗାଖ୍ୟାତୁମର୍ହଥ ।
ରାବଣୋଽହମନୁପ୍ରାପ୍ତୋ ଯୁଦ୍ଧେପ୍ସୁର୍ନୃବରେଣ ହି । ୧୧ ।
ମମାଗମନମପ୍ୟଗ୍ରେ ଯୁଷ୍ମାଭିଃ ସଂନିବେଦ୍ୟତାମ୍ ।
ଇତ୍ୟେବଂ ରାବଣୋକ୍ତାସ୍ତେ ଅମାତ୍ୟାଃ ସୁବିପଶ୍ଚିତଃ । ୧୨ ।
ଅବ୍ରୁବନ୍ ରାକ୍ଷସପତିମସାନ୍ନିଧ୍ୟଂ ମହୀପତେଃ ।
ଶ୍ରୁତ୍ୱା ବିଶ୍ରବସଃ ପୁତ୍ରଃ ପୌରାଣାମର୍ଜୁନଂ ଗତମ୍ । ୧୩ ।
ଅପସୃତ୍ୟାଗତୋ ବିନ୍ଧ୍ୟଂ ହିମବତ୍ସନ୍ନିଭଂ ଗିରିମ୍ ।
ସ ତମଭ୍ରମିବାବିଷ୍ଟମୁଦ୍‌ଭ୍ରାନ୍ତମିବ ମେଦିନୀମ୍ । ୧୪ ।

---

ସେତେବେଳେ ସେ ଜ୍ୱଳଜ୍ୱଳ ଅଗ୍ନିଦେବ ବାସ କରୁଥିବା ସ୍ୱର୍ଗପୁରୀ ସଦୃଶ ପ୍ରଭାବତୀ ମାହିଷ୍ମତୀପୁରୀରେ ପହଞ୍ଚିଲା । ୭ । ସେଠାରେ ରାଜା ଅର୍ଜୁନ ଅଗ୍ନିଙ୍କ ପ୍ରଭାବରେ ଅଗ୍ନିଙ୍କ ସଦୃଶ ପ୍ରଭାବାନ୍ ଥିଲେ । ସେଠାରେ ଶରକୁଣ୍ଡ ମଧ୍ୟରେ ଅଗ୍ନି ସର୍ବଦା ପ୍ରଜ୍ୱଳିତ ହୋଇ ଉଠୁଥିଲେ । ୮ । ହୈହୟାଧିପତି ବଳବାନ୍ ରାଜା ଅର୍ଜୁନ ସେଦିନ ନିଜର ସ୍ତ୍ରୀମାନଙ୍କ ସହିତ ରମଣ କରିବା ପାଇଁ ନର୍ମଦାକୁ ଯାଇଥିଲେ ।୯। ଠିକ ସେହି ଦିନ ରାକ୍ଷସରାଜ ରାବଣ ସେଠାରେ ଆସି ପହଞ୍ଚିଲା ଏବଂ ତାଙ୍କର ଅମାତ୍ୟମାନଙ୍କୁ ପଚାରିଲା । ୧୦ । 'ରାଜା ଅର୍ଜୁନ କାହାନ୍ତି ଶୀଘ୍ର କହ, ମୁଁ ରାବଣ- ଅଟେ । ମୁଁ ଏଠାରେ ଆସି ପହଞ୍ଚିଛି, ମୁଁ ସେହି ରାଜଶ୍ରେଷ୍ଠଙ୍କ ସହିତ ଯୁଦ୍ଧ କରିବାକୁ ଇଚ୍ଛା କରୁଛି । ୧୧ । ତୁମ୍ଭେମାନେ ପ୍ରଥମେ ଯାଇ ମୁଁ ଆସିଥିବା କଥା ତାଙ୍କୁ ଜଣାଅ ।' ରାବଣ ଏହିପରି କହିବାରୁ ସେହି ବିଜ୍ଞ ଅମାତ୍ୟମାନେ ରାକ୍ଷସରାଜକୁ କହିଲେ ଯେ ରାଜା ନିକଟରେ ନାହାନ୍ତି । ବିଶ୍ରବାଙ୍କ ପୁତ୍ର ରାବଣ ପୁରବାସୀ- ମାନଙ୍କଠାରୁ ଅର୍ଜୁନ ଚାଲି ଯାଇଥିବା କଥା ଶୁଣି ସେହି ପୁରୀକୁ ଛାଡ଼ି ହିମାଳୟ ସଦୃଶ ବିନ୍ଧ୍ୟପର୍ବତ ଉପରକୁ ଆସିଲା । ସେ ଦେଖିଲା, ସେ ପର୍ବତ ପୃଥିବୀକୁ ବିଦୀର୍ଣ୍ଣ କରି

ଅପଶ୍ୟଦ୍ରାବଣୋ ବିନ୍ଧ୍ୟମାଲିଖନ୍ତମିବାମ୍ବରମ୍ ।
ସହସ୍ରଶିଖରୋପେତଂ ସିଂହାଧ୍ୟୁଷିତକନ୍ଦରମ୍ । ୧୫ ।
ପ୍ରପାତପତିତୈଃ ଶୀତୈଃ ସାଟ୍ଟହାସମିବାମ୍ବୁଭିଃ ।
ଦେବଦାନବଗନ୍ଧର୍ବୈଃ ସାପ୍ସରୋଗଣକିନ୍ନରୈଃ । ୧୬ ।
ସସ୍ତ୍ରୀଭିଃ କ୍ରୀଡ଼ମାନୈଶ୍ଚ ସ୍ୱର୍ଗଭୂତଂ ମହୋଚ୍ଛ୍ରୟମ୍ ।
ନଦୀଭିଃ ସ୍ୟନ୍ଦମାନାଭିଃ ସ୍ଫାଟିକପ୍ରତିମଂ ଜଲମ୍ । ୧୭ ।
ଫଣାଭିଶ୍ଚଲଜିହ୍ୱାଭିରନନ୍ତମିବ ବିଷ୍ଠିତମ୍ ।
ଉତ୍କ୍ରାମନ୍ତଂ ଦରୀମନ୍ତଂ ହିମବତ୍‌ସନ୍ନିଭଂ ଗିରିମ୍ । ୧୮ ।
ପଶ୍ୟମାନସ୍ତତୋ ବିନ୍ଧ୍ୟଂ ରାବଣୋ ନର୍ମଦାଂ ଯଯୌ ।
ଚଲୋପଲଜଲାଂ ପୁଣ୍ୟାଂ ପଶ୍ଚିମୋଦଧିଗାମିନୀମ୍ । ୧୯ ।
ମହିଷୈଃ ସୃମରୈଃ ସିଂହୈଃ ଶାର୍ଦୂଲର୍କ୍ଷଗଜୋତ୍ତମୈଃ ।
ଉଷ୍ଣାଭିତପ୍ତୈସ୍ତୃଷିତୈଃ ସଂକ୍ଷୋଭିତଜଲାଶୟାମ୍ । ୨୦ ।
ଚକ୍ରବାକୈଃ ସକାରଣ୍ଡୈଃ ସହଂସଜଲକୁକ୍କୁଟୈଃ ।
ସାରସୈଶ୍ଚ ସଦା ମତ୍ତୈଃ କୂଜଦ୍ଭିଃ ସମାବୃତମ୍ । ୨୧ ।

---

ଆକାଶକୁ ସ୍ପର୍ଶ କରି ଦଣ୍ଡାୟମାନ । ତାହା ହଜାରେ ଶିଖରରେ ଶୋଭିତ ହୋଇଛି ଏବଂ ସିଂହାଦି ଅନେକ ଜନ୍ତୁ ତାହାର କନ୍ଦରା ମଧ୍ୟରେ ରହିଛନ୍ତି । ଶତ ଶତ ଶ୍ୱେତ ରଙ୍ଗର ଝରଣା ସେଥିରୁ ନିର୍ଗତ ହେଉଥିଲା । ତଦ୍ୱାରା ପର୍ବତ ସମୁଦ୍ରକୁ ଅଟ୍ଟହାସ୍ୟ କଲା ପରି ଜଣାଯାଉଥିଲା । ଦେବ, ଦାନବ, ଗନ୍ଧର୍ବ ଏବଂ କିନ୍ନରମାନେ ସେହି ପର୍ବତ ଉପରେ ସ୍ତ୍ରୀମାନଙ୍କୁ ନେଇ କ୍ରୀଡ଼ା କରୁଥିଲେ । ସେହି ପର୍ବତ ଉଚ୍ଚ ସ୍ୱର୍ଗପରି ଜଣା ପଡ଼ୁଥିଲା । ସ୍ଫଟିକ ସଦୃଶ ସ୍ୱଚ୍ଛ ଜଳଦ୍ୱାରା ତାହା ଭୂଷିତ ହୋଇଥିଲା । ଅତଏବ ସେହି ପର୍ବତ ଫଣାଧାରୀ ଚଞ୍ଚଳଜିହ୍ୱାବିଶିଷ୍ଟ ଅନନ୍ତ ଦେବଙ୍କ ସଦୃଶ ଶୋଭା ପାଉଥିଲା । ହିମାଳୟ ପର୍ବତ ସମାନ ଉଚ୍ଚ ଏବଂ କନ୍ଦରାଯୁକ୍ତ ସେହି ବିନ୍ଧ୍ୟପର୍ବତକୁ ଦେଖି ରାବଣ ନର୍ମଦା ନଦୀ ନିକଟରେ ଯାଇ ପହଞ୍ଚିଲା । ସେହି ପବିତ୍ର ନଦୀ ଜଳ ଓ ଉପଳଖଣ୍ଡ-ମାନ ସହ ପଶ୍ଚିମ ସମୁଦ୍ର ଆଡ଼କୁ ପ୍ରବାହିତ ହେଉଥିଲା । ୧୬-୧୯ । ମହିଷ, ସୃମର, ସିଂହ, ଶାର୍ଦୂଳ, ଭଲ୍ଲୁକ ଆଦି ଜୀବମାନେ ସୂର୍ଯ୍ୟଙ୍କ ଉତ୍ତାପରେ ଉତ୍ତପ୍ତ ଓ ତୃଷାତୁର ହୋଇ ନର୍ମଦା ଜଳରେ ପ୍ରବେଶ କରି ତାହାକୁ ବିକ୍ଷୋଭିତ କରୁଥିଲେ । ୨୦ । ଚକ୍ରବାକ, କାରଣ୍ଡବ, ହଂସ, ଜଳକୁକ୍କୁଟ ଏବଂ ସାରସ ପକ୍ଷୀମାନେ ତାହାକୁ ଘେରିରହି ସର୍ବଦା ମଦମତ୍ତ ହୋଇ ଶବ୍ଦ କରୁଥିଲେ ।

ଫୁଲ୍ଲଦ୍ରୁମକୃତୋତ୍ତଂସାଂ ଚକ୍ରବାକଯୁଗସ୍ତନୀମ୍ ।
ବିସ୍ତୀର୍ଣପୁଳିନଶ୍ରୋଣୀଂ ହଂସାବଳିସୁମେଖଳାମ୍ । ୨୨ ।
ପୁଷ୍ପରେଣ୍ୱବଲିପ୍ତାଙ୍ଗୀ ଜଳଫେନାମଳାଂଶୁକାମ୍ ।
ଜଳାବଗାହସଂସ୍ପର୍ଶାଂ ଫୁଲ୍ଲୋତ୍ପଳଶୁଭେକ୍ଷଣାମ୍ । ୨୩ ।
ପୁଷ୍ପକାଦବରୁହ୍ୟାଶୁ ନର୍ମଦାଂ ସରିତାଂ ବରାମ୍ ।
ଇଷ୍ଟାମିବ ବରାଂ ନାରୀମବଗାହ୍ୟ ଦଶାନନଃ । ୨୪ ।
ସ ତସ୍ୟାଃ ପୁଳିନେ ରମ୍ୟେ ନାନାମୁନିନିଷେବିତେ ।
ଉପୋପବିଷ୍ଟୈଃ ସଚିବୈଃ ସାର୍ଦ୍ଧଂ ରାକ୍ଷସପୁଙ୍ଗବଃ । ୨୫ ।
ପ୍ରଖ୍ୟାପ୍ୟ ନର୍ମଦାଂ ଶ୍ଳାଘ୍ୟ ଗଙ୍ଗେୟମିତି ରାବଣଃ ।
ନର୍ମଦାଦର୍ଶଜଂ ହର୍ଷମାପ୍ତବାନ୍ ରାକ୍ଷସାଧିପଃ । ୨୬ ।
ତତଃ ସଲୀଳଂ ପ୍ରହସନ୍ ରାବଣୋ ରାକ୍ଷସେଶ୍ୱରଃ ।
ଉବାଚ ସଚିବାଂସ୍ତତ୍ର ପ୍ରହସ୍ତଶୁକସାରଣାନ୍ ।୨୭ ।
ଏଷ ରଶ୍ମିସହସ୍ରେଣ ଜଗତ୍ କୃତ୍ୱେବ କାଞ୍ଚନମ୍ ।
ତୀକ୍ଷ୍ଣତାପକରଃ ସୂର୍ଯ୍ୟୋ ନଭସୋଽର୍ଦ୍ଧଂ ସମାଶ୍ରିତଃ । ୨୮ ।

---

ମନମୋହିନୀ ନର୍ମଦା ସୁନ୍ଦରୀ କାମିନୀ ସଦୃଶ କାନ୍ତି ଧାରଣ କରିଥିଲା । ପୁଷ୍ପିତ ବୃକ୍ଷମାନେ ତାହାର ଭୂଷଣ, ଚକ୍ରବାକଯୁଗଳ ତାହାର ସ୍ତନ, ବିଶାଳ ତଟ ତାହାର ନିତମ୍ବ ଏବଂ ହଂସପଂକ୍ତି ତାହାର ମେଖଳା ସ୍ୱରୂପ ହୋଇଥିଲା । ୨୨ । ପୁଷ୍ପପରାଗ-ତାହାର ଅଙ୍ଗରାଗ, ଜଳଫେନ ତାହାର ଶୁକ୍ଳ ପଟ୍ଟବସ୍ତ୍ର, ଜଳରେ ଅବଗାହନ ତାହାର ସ୍ପର୍ଶସୁଖ ଏବଂ ପୁଷ୍ପିତ ପଦ୍ମ ତାହାର ଶୁଭ୍ର ନେତ୍ରସଦୃଶ ହୋଇଥିଲା ।୨୩ । ସେଠାରେ ଦଶାନନ ତତ୍‌କ୍ଷଣାତ୍ ପୁଷ୍ପକରୁ ଓହ୍ଲାଇ ପଡ଼ିଲା ଏବଂ ଉତ୍ତମା ଓ ପ୍ରିୟତମା ସ୍ତ୍ରୀସଦୃଶ ନଦୀଶ୍ରେଷ୍ଠ ସେହି ନର୍ମଦାରେ ସ୍ନାନକଲା । ୨୪ । ତଦନ୍ତର ରାବଣ ନିଜର ମନ୍ତ୍ରୀମାନଙ୍କ ସହିତ ସେହି ବହୁମୁନିସେବିତ ନର୍ମଦାର ରମ୍ୟ ତଟରେ ବସିଲା ।୨୫। ରାବଣ ନର୍ମଦାକୁ ଗଙ୍ଗାନଦୀ ସହିତ ତୁଳନା କରି ତାହାର ପ୍ରଶଂସା କଲା ଏବଂ ତାହାକୁ ଦର୍ଶନକରି ବିଶେଷ ହର୍ଷ ଲାଭକଲା । ୨୬ । ଅନନ୍ତର ରାକ୍ଷସରାଜ ରାବଣ ଅନାୟାସରେ ଈଷତ୍ ହାସ୍ୟକରି ପ୍ରହସ୍ତ, ଶୁକ ସାରଣ ପ୍ରଭୃତି ମନ୍ତ୍ରୀମାନଙ୍କୁ ସେଠାରେ କହିଲା । ୨୭। "ଏଇ ଦେଖ, ତୀକ୍ଷ୍ଣ ତାପଦାୟକ ସୂର୍ଯ୍ୟ ଜଗତକୁ ସହସ୍ର ରଶ୍ମିଦ୍ୱାରା କାଞ୍ଚନବର୍ଣ୍ଣ କରି ଆକାଶର ମଧ୍ୟସ୍ଥାନକୁ ଆଶ୍ରୟ କରି ରହିଅଛି ।୨୮ । ମୁଁ ଏଠାରେ

ମାମାସୀନଂ ବନ୍ଦତେ୍ୟଷ ଚନ୍ଦ୍ରାୟୁତ ଦିବାକରଃ ।
ନର୍ମଦାଜଲଶୀତଶ୍ଚ ସୁଗନ୍ଧିଃ ଶ୍ରମନାଶନଃ । ୨୯ ।
ମଦ୍ଭୟାଦନଲୋଽପ୍ୟେଷ ବାତ୍ୟେଷ ସୁସମାହିତଃ ।
ଇୟଂ ନୃପ ସରିଚ୍ଛ୍ରେଷ୍ଠା ନର୍ମଦା ନର୍ମବର୍ଦ୍ଧିନୀ । ୩୦।
ନକ୍ରମୀନବିହଙ୍ଗୋର୍ମିଃ ସଭୟେବାଙ୍ଗନା ସ୍ଥିତା ।
ତଦ୍ଭବନ୍ତଃ କ୍ଷତାଃ ଶସ୍ତ୍ରୈର୍ନୃପୈରିନ୍ଦ୍ରସମୈର୍ଯୁଧି । ୩୧ ।
ଚନ୍ଦନସ୍ୟ ରସେନେବ ରୁଧିରେଣ ସମୁକ୍ଷିତାଃ ।
ତେ ଯୂୟମବଗାହଧ୍ୱଂ ନର୍ମଦାଂ ଶର୍ମଦାଂ ଶୁଭାମ୍ ।୩୨।
ମହାପଦ୍ମମୁଖା ମତ୍ତା ଗଙ୍ଗାମିବ ମହାଗଜାଃ ।
ଅସ୍ୟାଂ ସ୍ନାତ୍ୱା ମହାନଦ୍ୟାଂ ପାପ୍ମାନଂ ବିପ୍ରମୋକ୍ଷ୍ୟଥ । ୩୩।
ଅହମପ୍ୟଦ୍ୟ ପୁଳିନେ ଶରଦିନ୍ଦୁସମପ୍ରଭେ ।
ପୁଷ୍ପୋପହାରଂ ଶନକୈଃ କରିଷ୍ୟାମି କପର୍ଦ୍ଦିନଃ । ୩୪ ।
ରାବଣେନୈବମୁକ୍ତାସ୍ତୁ ପ୍ରହସ୍ତଶୁକସାରଣାଃ ।
ସମହୋଦରଧୂମ୍ରାକ୍ଷା ନର୍ମଦାଂ ବିଜଗାହିରେ । ୩୫ ।

---

ବସିଥିବାର ଜାଣି ସୂର୍ଯ୍ୟ ଚନ୍ଦ୍ରପରି ଶୀତଳ ହୋଇଯାଉଅଛି । ନର୍ମଦାର ଜଳ ଶୀତଳ, ସୁଗନ୍ଧ ଏବଂ ଶ୍ରମନାଶକ ହୋଇଅଛି । ୨୯ । ମୋ ଭୟରେ ବାୟୁ ମଧ୍ୟ ଏଠାରେ ସଯତ୍ନଭାବରେ ପ୍ରବାହିତ ହେଉଅଛି । ନଦୀଶ୍ରେଷ୍ଠ ନର୍ମଦା ମକର, ମତ୍ସ୍ୟ ଏବଂ ପକ୍ଷୀମାନଙ୍କଦ୍ୱାରା ମନୋହାରିଣୀ ହୋଇ ଭୟଭୀତା ଲଳନା ସଦୃଶ ରହିଅଛି । ସୁତରାଂ ତୁମ୍ଭେମାନେ ଯେ ଇନ୍ଦ୍ରସଦୃଶ ରାଜାମାନଙ୍କ ଦ୍ୱାରା ଶସ୍ତ୍ରରେ କ୍ଷତବିକ୍ଷତ ହୋଇଅଛ ଏବଂ ଚନ୍ଦନରସ ସଦୃଶ ରକ୍ତରେ ବୋଳି ହୋଇଅଛ, ସେ ସମସ୍ତେ ଏହି ମଙ୍ଗଳମୟୀ ନର୍ମଦା ଜଳରେ ବୁଡ଼ି ସ୍ନାନକର । ୩୦-୩୨ । ମହାପଦ୍ମ ପ୍ରଭୃତି ମହାଗଜମାନେ ଗଙ୍ଗାନଦୀରେ ସ୍ନାନ କଲାପରି ତୁମ୍ଭେମାନେ ଏହି ମହାନଦୀରେ ସ୍ନାନକରି ପାପରୁ ବିମୁକ୍ତ ହୁଅ । ୩୩ । ମୁଁ ମଧ୍ୟ ଏହି ଶରଚନ୍ଦ୍ର ସଦୃଶ ନିର୍ମଳ ନଦୀତଟରେ ଆଜି ମହାଦେବଙ୍କୁ ପୁଷ୍ପୋପହାର ଦେଇ ପୂଜା କରିବି" । ୩୪ । ରାବଣ ଏହିପରି କହିବା ଉତ୍ତାରୁ ପ୍ରହସ୍ତ, ଶୁକ, ସାରଣ, ମହୋଦର, ଧୂମ୍ରାକ୍ଷ ଆଦି ମନ୍ତ୍ରୀମାନେ ନର୍ମଦା ନଦୀରେ ଅବଗାହନ କଲେ । ୩୫ । ବାମନ, ଅଞ୍ଜନ ଏବଂ

ରାକ୍ଷସେନ୍ଦ୍ରଗଜୈସ୍ତୈସ୍ତୁ କ୍ଷୋଭିତା ନର୍ମଦା ନଦୀ ।
ବାମନାଞ୍ଜନପଦ୍ମାଦ୍ୟୈର୍ଗଙ୍ଗା ଇବ ମହାଗଜୈଃ । ୩୬ ।
ତତସ୍ତେ ରାକ୍ଷସାଃ ସ୍ନାତ୍ୱା ନର୍ମଦାୟାଂ ମହାବଲାଃ ।
ଉତ୍ତୀର୍ଯ୍ୟ ପୁଷ୍ପାଣ୍ୟାଜହ୍ରୁର୍ବଲ୍ୟର୍ଥଂ ରାବଣସ୍ୟ ତୁ । ୩୭ ।
ନର୍ମଦାପୁଲିନେ ହୃଦ୍ୟେ ଶୁଭ୍ରାଭ୍ରସଦୃଶପ୍ରଭେ ।
ରାକ୍ଷସୈସ୍ତୁ ମୁହୂର୍ତ୍ତେନ କୃତଃ ପୁଷ୍ପମୟୋ ଗିରିଃ । ୩୮ ।
ପୁଷ୍ପେଷୂପହୃତେଷ୍ୱେବଂ ରାବଣୋ ରାକ୍ଷସେଶ୍ୱରଃ ।
ଅବତୀର୍ଣ୍ଣୋ ନଦୀଂ ସ୍ନାତୁଂ ଗଙ୍ଗାମିବ ମହାଗଜଃ । ୩୯ ।
ତତ୍ର ସ୍ନାତ୍ୱା ଚ ବିଧିବଦ୍ ଜପ୍ତ୍ୱା ଜପ୍ୟମନୁତ୍ତମମ୍ ।
ନର୍ମଦାସଲିଲାତ୍ତସ୍ମାଦୁତ୍ତତାର ସ ରାବଣଃ । ୪୦ ।
ତତ୍ର କ୍ଲିନ୍ନାମ୍ବରଂ ତ୍ୟକ୍ତ୍ୱା ଶୁକ୍ଲବସ୍ତ୍ରସମାବୃତମ୍ ।
ରାବଣଂ ପ୍ରାଞ୍ଜଲିଂ ଯାନ୍ତମନ୍ୱୟୁଃ ସର୍ବରାକ୍ଷସାଃ ।   ।
ତଦ୍ଗତିବଶମାପନ୍ନା ମୂର୍ତ୍ତିମନ୍ତ ଇବାଚଲାଃ । ୪୧ ।
ଯତ୍ର ଯତ୍ର ଚ ଯାତି ସ୍ମ ରାବଣୋ ରାକ୍ଷସେଶ୍ୱରଃ ।
ଜାମ୍ବୁନଦମୟଂ ଲିଙ୍ଗଂ ତତ୍ର ତତ୍ର ସ୍ମ ନୀୟତେ । ୪୨ ।

---

ପଦ୍ମ ନାମକ ମହାଦିଗ୍‌ଗଜମାନେ ଗଙ୍ଗାକୁ ଯେପରି କ୍ଷୁବ୍ଧ କରିପକାନ୍ତି, ଏହି ରାକ୍ଷସେନ୍ଦ୍ରରୂପୀ ହସ୍ତୀମାନେ ସେହିପରି ନର୍ମଦା ନଦୀକୁ ଆଲୋଡ଼ିତ କରିପକାଇଲେ ।୩୬ ଅନନ୍ତର ସେହି ମହାବଳୀ ରାକ୍ଷସମାନେ ନର୍ମଦାରେ ସ୍ନାନକରି ନଦୀରୁ ବାହାରିଲେ ଏବଂ ରାବଣର ପୂଜା ନିମନ୍ତେ ପୁଷ୍ପ ସଂଗ୍ରହ କରିବାକୁ ଲାଗିଲେ । ୩୭। ଶ୍ୱେତମେଘ ସଦୃଶ ନର୍ମଦା ନଦୀର ତୀରରେ ସେ ରାକ୍ଷସମାନେ ମୁହୂର୍ତ୍ତକ ମଧ୍ୟରେ ପର୍ବତ ସଦୃଶ ଫୁଲ ଗଦା କରିଦେଲେ । ୩୮ । ପୁଷ୍ପ ସଂଗୃହୀତ ହେବାରୁ ରାକ୍ଷସରାଜ ରାବଣ ଗଙ୍ଗାନଦୀରେ ମହାଗଜ ପ୍ରବେଶ କଲାପରି ସ୍ନାନ କରିବାପାଇଁ ନର୍ମଦା ନଦୀରେ ପଶିଲେ । ୩୯ । ତଦନନ୍ତର ସ୍ନାନ ଓ ଜପ କରିବାର ଯୋଗ୍ୟ ଉତ୍ତମ ମନ୍ତ୍ର ଜପକରି ରାବଣ ନର୍ମଦା ଜଳଭିତରୁ ବାହାରିଲେ । ୪୦ । ଅନନ୍ତର ସେ ଓଦା ଲୁଗା ଛାଡ଼ି ଦେଇ ଶୁଖିଲା ଶୁକ୍ଲବସ୍ତ୍ର ପିନ୍ଧିଲେ । ରାବଣ ଅଞ୍ଜଳିବଦ୍ଧ ହୋଇ ଯାଉଥିବାର ଦେଖି ସବୁ ରାକ୍ଷସ ତା ପଛେ ପଛେ ଗଲେ । ସେମାନେ ମୂର୍ତ୍ତିମାନ୍ ପର୍ବତପରି ତା-ପଛେ ପଛେ ଚାଲୁଥିଲେ । ୪୧ । ରାକ୍ଷସରାଜ ରାବଣ ଯେଉଁ ଯେଉଁ ସ୍ଥାନକୁ ଯାଉଥିଲେ, ସେଠାକୁ ସ୍ୱର୍ଣ୍ଣନିର୍ମିତ ଲିଙ୍ଗ ସାଙ୍ଗରେ ନେଇ ଯାଉଥିଲେ । ୪୨ । ରାବଣ ବାଲୁକାବେଦୀ

ବାଲୁକାବେଦମଧ୍ୟେ ତୁ ତଲ୍ଲିଙ୍ଗଂ ସ୍ଥାପ୍ୟ ରାବଣଃ ।
ଅର୍ଚ୍ଚୟାମାସ ଗନ୍ଧୈଶ୍ଚ ପୁଷ୍ପୈଶ୍ଚାମୃତଗନ୍ଧିଭିଃ । ୪୩ ।
ତତଃ ସତାମାର୍ତ୍ତିହରଂ ପରଂ ବରମ୍
ବରପ୍ରଦଂ ଚନ୍ଦ୍ରମୟୂଖଭୂଷଣମ୍ ।
ସମର୍ଚ୍ଚୟିତ୍ୱା ସ ନିଶାଚରୋ ଜଗୌ
ପ୍ରସାର୍ଯ୍ୟ ହସ୍ତାନ୍ ପ୍ରଣନର୍ତ୍ତ ଚାଗ୍ରତଃ । ୪୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ରାବଣନର୍ମଦାବଗାହୋ ନାମ ଏକତ୍ରିଂଶଃ ସର୍ଗଃ ।

---

# ଦ୍ୱାତ୍ରିଂଶଃ ସର୍ଗଃ

## ରାବଣଗ୍ରହଣମ୍

ନର୍ମଦାପୁଳିନେ ଯତ୍ର ରାକ୍ଷସେନ୍ଦ୍ରଃ ସୁଦାରୁଣଃ ।
ପୁଷ୍ପୋପହାରଂ କୁରୁତେ ତସ୍ମାଦ୍ଦେଶାଦଦୂରତଃ । ୧ ।
ଅର୍ଜ୍ଜୁନୋ ଜୟତାଂ ଶ୍ରେଷ୍ଠୋ ମାହିଷ୍ମତ୍ୟାଃ ପତିଃ ପ୍ରଭୁଃ ।
କ୍ରୀଡ଼ତେ ସହ ନାରୀଭିର୍ନର୍ମଦାତୋୟମାଶ୍ରିତଃ । ୨ ।

---

ଉପରେ ସେହି ଶିବଲିଙ୍ଗ ସ୍ଥାପନ କରି ଅମୃତ ସଦୃଶ ସୁଗନ୍ଧଯୁକ୍ତ ପୁଷ୍ପ ଓ ଚନ୍ଦନାଦି-ଦ୍ୱାରା ସେ ଶିବଲିଙ୍ଗର ପୂଜା କରୁଥିଲା । ୪୩ । ଭକ୍ତମାନଙ୍କର କ୍ଲେଶ ହରଣକାରୀ ବରଦାତା, ଚନ୍ଦ୍ରଭୂଷଣ ମହାଦେବଙ୍କର ସବୁପ୍ରକାର ପୂଜାକରି ରାକ୍ଷସଶ୍ରେଷ୍ଠ ରାବଣ ହସ୍ତ ପ୍ରସାରି ଭକ୍ତିପୂର୍ବକ ଶିବଲିଙ୍ଗ ସମ୍ମୁଖରେ ନୃତ୍ୟ କରିବାକୁ ଲାଗିଲା । ୪୪ ।

---

# ୩୨ଶ ସର୍ଗ

## ( ରାବଣବନ୍ଧନ )

ରାକ୍ଷସେନ୍ଦ୍ର ରାବଣ ପୁଣ୍ୟସଲିଳା ନର୍ମଦା ନିକଟରେ ଯେଉଁଠାରେ ଶିବଙ୍କୁ ପୁଷ୍ପଦ୍ୱାରା ପୂଜାକରୁଥିଲା, ସେଠାରୁ କିଛି ଦୂରରେ ମାହିଷ୍ମତୀ ନଗରୀର ରାଜା ମହାବିଜୟୀ ଅର୍ଜୁନ ନିଜର ବହୁ ରାଣୀଙ୍କ ସହିତ ଜଳବିହାର କରୁଥିଲେ ।୧-୨।

ତାସାଂ ମଧ୍ୟଗତୋ ରାଜା ରରାଜ ଚ ତଦାର୍ଜୁନଃ ।
କରେଣୂନାଂ ସହସ୍ରସ୍ୟ ମଧ୍ୟସ୍ଥ ଇବ କୁଞ୍ଜରଃ । ୩ ।
ଜିଜ୍ଞାସୁଃ ସ ତୁ ବାହୂନାଂ ସହସ୍ରସ୍ୟୋତ୍ତମଂ ବଲମ୍ ।
ରୁରୋଧ ନର୍ମଦାବେଗଂ ବାହୁଭିର୍ବହୁଭିର୍ବୃତଃ । ୪ ।
କାର୍ତ୍ତବୀର୍ଯ୍ୟଭୁଜାସକ୍ତଂ ତଜ୍ଜଲଂ ପ୍ରାପ୍ୟ ନିର୍ମଲମ୍ ।
କୂଲୋପହାରଂ କୁର୍ବାଣଂ ପ୍ରତିସ୍ରୋତଃ ପ୍ରଧାବତି । ୫ ।
ସମୀନନକ୍ରମକରଃ ସପୁଷ୍ପକୁଶସଂସ୍ତରଃ ।
ସ ନର୍ମଦାମ୍ଭସୋ ବେଗଃ ପ୍ରାବୃଟ୍‌କାଲ ଇବାବଭୌ । ୬ ।
ସ ବେଗଃ କାର୍ତ୍ତବୀର୍ଯ୍ୟେଣ ସଂପ୍ରେଷିତ ଇବାମ୍ଭସଃ ।
ପୁଷ୍ପୋପହାରଂ ସକଲଂ ରାବଣସ୍ୟ ଜହାର ହ । ୭ ।
ରାବଣୋଽର୍ଦ୍ଧସମାପ୍ତଂ ତମୁତ୍ସୃଜ୍ୟ ନିୟମଂ ତଦା ।
ନର୍ମଦାଂ ପଶ୍ୟତେ କାନ୍ତାଂ ପ୍ରତିକୂଲାଂ ଯଥା ପ୍ରିୟାମ୍ । ୮ ।
ପଶ୍ଚିମେନ ତୁ ତଂ ଦୃଷ୍ଟ୍ୱା ସାଗରୋଦ୍‌ଗାରସଂନିଭମ୍ ।
ବର୍ଦ୍ଧନ୍ତମମ୍ଭସୋ ବେଗଂ ପୂର୍ବାମାଶାଂ ପ୍ରବିଶ୍ୟ ତୁ । ୯ ।
ତତୋଽନୁଦ୍ଭ୍ରାନ୍ତଶକୁନାଂ ସ୍ୱଭାବୋପରମେ ସ୍ଥିତାମ୍ ।
ନିର୍ବିକାରାଙ୍ଗନାପ୍ରଖ୍ୟାମପଶ୍ୟଦ୍ରାବଣୋ ନଦୀମ୍ । ୧୦ ।

---

ସେତେବେଳେ ସେ ରାଣୀମାନଙ୍କ ମଧ୍ୟରେ ରାଜା ଅର୍ଜୁନ, ହସ୍ତିନୀମାନଙ୍କ ମଧ୍ୟରେ ଗଜରାଜପରି ଶୋଭା ପାଉଥିଲା । ୩ । ସେ ନିଜର ସହସ୍ରବାହୁର ବଳ ପରୀକ୍ଷା କରିବା ନିମନ୍ତେ ନର୍ମଦା ନଦୀର ପ୍ରବାହକୁ ନିଜର ସହସ୍ରବାହୁ ଦ୍ୱାରା ରୋକିଲା । ୪ । ଅର୍ଜୁନ ଯେତେବେଳେ ଜଳଧାରକୁ ଏପରିଭାବରେ ରୋକିଲା ସେତେବେଳେ ସେ ଜଳ ଉଚ୍ଛୁଳି ଉଠି ତଟର ଉପର ପର୍ଯ୍ୟନ୍ତ ଯାଇ ପହଞ୍ଚିଲା ଏବଂ ଧାର ମଧ୍ୟ ଓଲଟା ଦିଗରେ ବହିବାକୁ ଲାଗିଲା । ୫ । ବର୍ଷା ସମୟ ପରି ସେ ଜଳ ଉଚ୍ଛୁଳିବାରୁ ମତ୍ସ୍ୟ, ନକ୍ର, ମଗର ଓ ତଟସ୍ଥିତ ପୁଷ୍ପ ଓ କୁଶାଦି ଜଳପ୍ରବାହ ସହିତ ଭାସିବାକୁ ଲାଗିଲେ । ୬ । ଅର୍ଜୁନ ଦ୍ୱାରା ଅବରୁଦ୍ଧ ଜଳପ୍ରବାହ ଦ୍ୱାରା ରାବଣର ପୂଜା ନିମନ୍ତେ ଏକତ୍ର ହୋଇଥିବା ସବୁ ଫୁଲ ଭାସିଗଲା । ୭ । ସେତେବେଳକୁ ରାବଣ ଅର୍ଦ୍ଧ ସମାପ୍ତ ପୂଜା ଛାଡ଼ିଦେଇ, ପ୍ରତିକୂଳ ଆଚରଣ କରୁଥିବା ଆପଣା ପ୍ରିୟପତ୍ନୀକୁ ଆଡ଼େଇ ରହିଲା ପରି ଆଖି ବୁଲାଇ କମନୀୟ ନର୍ମଦା ନଦୀ ଆଡ଼କୁ ରହିଲା ।୮। ସେ ଦେଖିଲା ଯେ ସାଗରର ବେଗସଦୃଶ ଜଳର ପ୍ରବାହ ପଶ୍ଚିମ ଦିଗରୁ ପୂର୍ବଦିଗକୁ ବଢ଼ୁଅଛି । ୯ । ଅନନ୍ତର ରାବଣଦେଖିଲା ବିକାରରହିତ କାମିନୀ ସଦୃଶ ନର୍ମଦାନଦୀ ପୂର୍ବବତ୍ ଶାନ୍ତଭାବରେ ବହିବାକୁ ଲାଗିଲା । ତଦ୍ଦ୍ୱାରା ତଟବାସୀ ପକ୍ଷୀମାନଙ୍କର ଭୟ ଦୂର ହୋଇଗଲା ।୧୦।

ସବ୍ୟେତରକରାଙ୍ଗୁଲ୍ୟା ସଶବ୍ଦଂ ଚ ଦଶାନନଃ ।
ବେଗପ୍ରଭବମନ୍ୱେଷ୍ଟୁଂ ସୋଽଦ୍ଦିଶ ଚ୍ଛୁକସାରଣୌ । ୧୧ ।
ତୌ ତୁ ରାବଣସଂଦିଷ୍ଟୌ ଭ୍ରାତରୌ ଶୁକସାରଣୌ ।
ବ୍ୟୋମାନ୍ତରଗତୌ ବୀରୌ ପ୍ରସ୍ଥିତୌ ପଶ୍ଚିମୋନ୍ମୁଖୌ ।୧୨।
ଅର୍ଦ୍ଧଯୋଜନମାତ୍ରଂ ତୁ ଗତ୍ୱା ତୌ ରଜନୀଚରୌ ।
ପଶ୍ୟେତାଂ ପୁରୁଷଂ ତୋୟେ କ୍ରୀଡ଼ନ୍ତଂ ସହଯୋଷିତମ୍ ।୧୩।
ବୃହତ୍ସାଲପ୍ରତୀକାଶଂ ତୋୟବ୍ୟାକୁଲମୂର୍ଦ୍ଧଜମ୍ ।
ମଦରକ୍ତାନ୍ତନୟନଂ ମଦବ୍ୟାକୁଲଚେତସମ୍ । ୧୪ ।
ନଦୀଂ ବାହୁସହସ୍ରେଣ ରୁନ୍ଧନ୍ତମରିମର୍ଦ୍ଦନମ୍ ।
ଗିରିଂ ପାଦସହସ୍ରେଣ ରୁନ୍ଧନ୍ତମିବ ମେଦିନୀମ୍ । ୧୫ ।
ବାଲାନାଂ ବରନାରୀଣାଂ ସହସ୍ରେଣ ସମାବୃତମ୍ ।
ସମଦାନାଂ କରେଣୂନାଂ ସହସ୍ରେଣେବ କୁଞ୍ଜରମ୍ । ୧୬ ।
ତମଦ୍ଭୁତତମଂ ଦୃଷ୍ଟ୍ୱା ରାକ୍ଷସୌ ଶୁକସାରଣୌ ।
ସଂନିବୃତ୍ତାବୁପାଗମ୍ୟ ରାବଣଂ ତମଥୋଚତୁଃ । ୧୭ ।

---

ଦଶାନନର ରାବଣ ମୁହଁରେ କିଛି ନ କହି ଡାହାଣ ହାତର ଅଙ୍ଗୁଳି ଦ୍ୱାରା ଶୁକ ଓ ସାରଣଙ୍କୁ ନଦୀବୃଦ୍ଧିର କାରଣ ଜାଣିବାପାଇଁ ସଙ୍କେତ ଦେଲା । ୧୧ । ରାବଣର ଆଜ୍ଞାନୁସାରେ ଦୁଇ ବୀର ଭ୍ରାତା ଶୁକ ଓ ସାରଣ ପଶ୍ଚିମ ଆଡ଼କୁ ଆକାଶରେ ଉଡ଼ିଗଲେ । ୧୨ । ସେ ଦୁଇ ରାକ୍ଷସ ଉଡ଼ ଉଡ଼ ଅର୍ଦ୍ଧଯୋଜନ ପଥ ଗଲାବେଳେ ପରେ ଦେଖିଲେ ଯେ ଜଣେ ପୁରୁଷ ସ୍ତ୍ରୀମାନଙ୍କ ସହିତ ଜଳବିହାର କରୁଅଛି । ୧୩ । ସେ ଶାଳବୃକ୍ଷ ସଦୃଶ ଉଚ୍ଚ, ତାହାର ମୁଣ୍ଡର ବାଳ ଖୋଲି ଯାଇଛି । ତାହାର ଆଖି ନିଶାରେ ରକ୍ତବର୍ଣ୍ଣ ହୋଇଅଛି ଏବଂ ସେ ମଦିରା ପାନକରି ମତୁଆଳ ହୋଇଅଛି । ୧୪ । ସୁମେରୁ ପର୍ବତ ଯେପରି ସହସ୍ର ଚରଣ ଦ୍ୱାରା ପୃଥିବୀକୁ ଦବାଇ ରଖିଅଛି, ସେହିପରି ଅର୍ଜୁନ ନିଜର ସହସ୍ର ବାହୁଦ୍ୱାରା ନଦୀର ଜଳକୁ ରୋକିକରି ଠିଆହୋଇ ରହିଅଛି । ୧୫ । ହଜାରେ ସୁନ୍ଦରୀ ଯୁବତୀ ଅର୍ଜୁନଙ୍କୁ, ହଜାରେ ମତୁଆଳୀ ହସ୍ତିନୀ ଗଜେନ୍ଦ୍ରକୁ ଘେରି ରହିଥିଲା ପରି ବେଢ଼ି ରହିଛନ୍ତି । ୧୬ । ଶୁକ ଓ ସାରଣ ଏହି ଅଦ୍ଭୁତ ଦୃଶ୍ୟ ଦେଖି ସେଠାରୁ ରାବଣ ନିକଟକୁ ଲେଉଟି ଆସିଲେ ଏବଂ ସମସ୍ତ ବୃତ୍ତାନ୍ତ ତାକୁ କହିଲେ । ୧୭ ।

ବୃହତ୍‌ସାଲପ୍ରତୀକାଶଃ କୋଽପ୍ୟସୌ ରାକ୍ଷସେଶ୍ୱରଃ ।
ନର୍ମଦାଂ ରୋଧବଦ୍ରୁଦ୍ଧ୍ୱା କ୍ରୀଡ଼ାପୟତି ଯୋଷିତଃ । ୧୮ ।
ତେନ ବାହୁସହସ୍ରେଣ ସଂନିରୁଦ୍ଧଜଲା ନଦୀ ।
ସାଗରୋଦ୍‌ଗାରସଂକାଶାନୁଦ୍‌ଗାରାନ୍ ସୃଜତେ ମୁହୁଃ । ୧୯ ।
ଇତ୍ୟେବଂ ଭାଷମାଣୌ ତୌ ନିଶମ୍ୟ ଶୁକସାରଣୌ ।
ରାବଣୋଽର୍ଜୁନ ଇତ୍ୟୁକ୍ତ୍ୱା ପ୍ରଯଯୌ ଯୁଦ୍ଧଲାଲସଃ । ୨୦ ।
ଅର୍ଜୁନାଭିମୁଖେ ତସ୍ମିନ୍ ରାବଣେ ରାକ୍ଷସାଧିପେ ।
ଚଣ୍ଡଃ ପ୍ରବାତି ପବନଃ ସନାଦଃ ସରଜାସ୍ତଦା । ୨୧ ।
ସକୃଦେବ କୃତୋ ରାବଃ ସରକ୍ତଃ ପ୍ରେଷିତୋ ଘନୈଃ ।
ମହୋଦରମହାପାର୍ଶ୍ୱଧୂମ୍ରାକ୍ଷଶୁକସାରଣୈଃ । ୨୨ ।
ସଂବୃତୋ ରାକ୍ଷସେନ୍ଦ୍ରସ୍ତୁ ତତ୍ରାଗାଦ୍ ଯତ୍ର ଚାର୍ଜୁନଃ ।
ଅଦୀର୍ଘେଣୈବ କାଲେନ ସ ତଦା ରାକ୍ଷସୋ ବଲୀ । ୨୩ ।
ତଂ ନର୍ମଦାହ୍ରଦଂ ଭୀମମାଜଗାମାଞ୍ଜନପ୍ରଭଃ ।
ସ ତତ୍ର ସ୍ତ୍ରୀପରିବୃତଂ ବାଶିତାଭିରିବ ଦ୍ୱିପମ୍ । ୨୪ ।

---

ହେ ରାକ୍ଷସେଶ୍ୱର ! ବିଶାଳ ଶାଳବୃକ୍ଷ ସଦୃଶ କୌଣସି ଏକ ବିଶାଳ ପୁରୁଷ ବନ୍ଧ ସଦୃଶ ନର୍ମଦା ଜଳକୁ ରୋକି ସ୍ତ୍ରୀମାନଙ୍କ ସହିତ ଜଳବିହାର କରୁଅଛି । ୧୮ । ତାହାର ସହସ୍ର ବାହୁଦ୍ୱାରା ନିରୁଦ୍ଧ ହୋଇ ନର୍ମଦା ପ୍ରବାହର ଜଳ, ସମୁଦ୍ରରେ ବଢ଼ି ଆସିଲାପରି ବାରମ୍ବାର ବଢ଼ିଯାଉଅଛି” । ୧୯ । ସେହି ଦୁଇ ଶୁକ ସାରଣ ରାକ୍ଷସଙ୍କ ମୁଖରୁ ଏହି ବୃତ୍ତାନ୍ତ ଶୁଣି ରାବଣ କହିଲା, ‘ସେ ଅର୍ଜୁନ ଅଟେ ।’ ତଦନ୍ତର ସେ ଯୁଦ୍ଧ କରିବା ଅଭିଳାଷରେ ତାହାର ଆଡ଼କୁ ଗଲା । ୨୦ । ରାବଣ ଯେତେବେଳେ ଅର୍ଜୁନ ସହିତ ଲଢ଼ିବାକୁ ଯିବାକୁ ବାହାରିଲା ସେତେବେଳେ ପବନ ମହାନାଦ କରି ଧୂଳି ଉଡ଼ାଇ ପ୍ରଚଣ୍ଡ ବେଗରେ ବହିଲା । ୨୧ । ଘୋର ଗର୍ଜନ କରି ମେଘ ରକ୍ତବିନ୍ଦୁ ବର୍ଷା କରିବାକୁ ଲାଗିଲା । ମହୋଦର, ମହାପାର୍ଶ୍ୱ, ଧୂମ୍ରାକ୍ଷ, ଶୁକ ଏବଂ ସାରଣଙ୍କୁ ସାଙ୍ଗରେ ଧରି ବଳବାନ୍ ରାକ୍ଷସରାଜ ରାବଣ ଅର୍ଜୁନ ଯେଉଁଠାରେ ଜଳକ୍ରୀଡ଼ା କରୁଥିଲା ସେଠାକୁ ଗଲା । ୨୨-୨୩ । ଅଞ୍ଜନସଦୃଶ କୃଷ୍ଣବର୍ଣ୍ଣ ରାବଣ ଯେତେବେଳେ ସେହି ଗଣ୍ଡ ସମୀପରେ ଯାଇ ପହଞ୍ଚିଲା, ସେତେବେଳେ ସେ ଅର୍ଜୁନଙ୍କୁ ସ୍ତ୍ରୀମାନଙ୍କ ସହିତ, ଗଜେନ୍ଦ୍ର ହସ୍ତିନୀମାନଙ୍କ ସହିତ କ୍ରୀଡ଼ା କରୁଥିଲାପରି ଦେଖିଲା । ୨୪ । ରଜା ଅର୍ଜୁନଙ୍କୁ ରାକ୍ଷସରାଜ ରାବଣ ଦେଖିଲା ଏବଂ

ନରେନ୍ଦ୍ରଂ ପଶ୍ୟତେ ରାଜା ରାକ୍ଷସାନାଂ ତଦାର୍ଜୁନମ୍ ।
ସରୋଷାଦ୍ରକ୍ତନୟନୋ ରାକ୍ଷସେନ୍ଦ୍ରୋ ବଲୋଦ୍ଧତଃ । ୨୫ ।
ଇତ୍ୟେବମର୍ଜୁନାମାତ୍ୟାନାହ ଗମ୍ଭୀରୟା ଗିରା ।
ଅମାତ୍ୟାଃ କ୍ଷିପ୍ରମାଖ୍ୟାତ ହୈହୟସ୍ୟ ନୃପସ୍ୟ ବୈ । ୨୬ ।
ଯୁଦ୍ଧାର୍ଥୀ ସମନୁପ୍ରାପ୍ତୋ ରାବଣୋ ନାମ ରାକ୍ଷସଃ ।
ରାବଣସ୍ୟ ବଚଃ ଶ୍ରୁତ୍ୱା ମନ୍ତ୍ରିଣୋଽଥାର୍ଜୁନସ୍ୟ ତେ । ୨୭ ।
ଉତ୍ତସ୍ଥୁଃ ସାୟୁଧାସ୍ତାଶ୍ଚ ରାବଣଂ ବାକ୍ୟମବ୍ରୁବନ୍ ।
ଯୁଦ୍ଧସ୍ୟ କାଲୋ ବିଜ୍ଞାତଃ ସାଧୁ ଭୋଃ ସାଧୁ ରାବଣ । ୨୮ ।
ଯଃ କ୍ଷୀବଂ ସ୍ତ୍ରୀବୃତଂ ଚୈବ ଯୋଦ୍ଧୁମୁତ୍ସହସେ ନୃପମ୍ ।
ସ୍ତ୍ରୀସମକ୍ଷଂ କଥଂ ଯତ୍ତଦ୍ୟୋଦ୍ଧୁମୁତ୍ସହସେଽର୍ଜୁନମ୍ । ୨୯ ।
ବାସିତା ମଧ୍ୟଗଂ ମତ୍ତଂ ଶାର୍ଦ୍ଦୂଳ ଇବ କୁଞ୍ଜରମ୍ ।
କ୍ଷମସ୍ୱାଦ୍ୟ ଦଶଗ୍ରୀବ ଉଷ୍ୟତାଂ ଶର୍ବରୀ ତ୍ୱୟା । ୩୦ ।
ଯୁଦ୍ଧେ ଶ୍ରଦ୍ଧା ଚ ଯଦ୍ୟସ୍ତି ଶ୍ୱସ୍ତାତ ସମରେଽର୍ଜୁନମ୍ ।
ଯଦ୍ୟଦ୍ୟାସ୍ତି ମତର୍ଯୋଦ୍ଧୁଂ ଯୁଦ୍ଧତୃଷ୍ଣାସମାବୃତା । ୩୧ ।

---

ଦେଖିବାମାତ୍ରେ କ୍ରୋଧରେ ଚକ୍ଷୁ ରକ୍ତବର୍ଣ୍ଣ କରି ଅର୍ଜୁନଙ୍କ ମନ୍ତ୍ରୀମାନଙ୍କୁ ଗମ୍ଭୀର ସ୍ୱରରେ କହିଲା, "ହେ ମନ୍ତ୍ରିଗଣ ! ତୁମ୍ଭେମାନେ ହୈହୟ ନୃପତି ଅର୍ଜୁନଙ୍କୁ ଶୀଘ୍ର ଯାଇ କହ ଯେ ରାବଣ ନାମକ ରାକ୍ଷସରାଜ ତୁମ ସହିତ ଲଢ଼ିବାକୁ ଆସିଛନ୍ତି ।" ରାବଣର ଏ କଥା ଶୁଣି ଅର୍ଜୁନଙ୍କ ମନ୍ତ୍ରୀମାନେ ନିଜ ନିଜ ହତିଆର ଧରି ଠିଆ ହେଲେ ଏବଂ କହିଲେ, "ବାଃ ରାବଣ ! ଯୁଦ୍ଧ କରିବା ପାଇଁ ତୁମେ ଆଚ୍ଛା ସମୟ ଠିକ କରିଛ । ୨୫-୨୮ । ମହାରାଜ ବର୍ତ୍ତମାନ ମଦ୍ୟ ପାନ କରି ସ୍ତ୍ରୀମାନଙ୍କ ସହିତ ଜଳବିହାର କରୁଛନ୍ତି ସେତିକବେଳେ ତୁମେ ତାଙ୍କ ସହିତ ଯୁଦ୍ଧ କରିବା ପାଇଁ ଆସିଛ ? ତୁମେ କାମାସକ୍ତା ହସ୍ତିନୀମାନଙ୍କ ମଧ୍ୟରେ ଉନ୍ମତ୍ତ କୁଞ୍ଜର ସଦୃଶ ଆମ ରାଜାଙ୍କ ସହିତ ଶାର୍ଦ୍ଦୂଳପରି ଯୁଦ୍ଧ କରିବାକୁ ଆସିଛ । ହେ ଦଶଗ୍ରୀବ ! ତୁମେ ଆଜି କ୍ଷମାକର, ଆଜି ରାତି ଏଠାରେ ବାସକର । ୩୦ । ତୁମ୍ଭର ଯଦି ଯୁଦ୍ଧରେ ଶ୍ରଦ୍ଧା ଥାଏ ତାହେଲେ କାଲି ଯୁଦ୍ଧରେ ଅର୍ଜୁନଙ୍କୁ ଭେଟିବ; ମାତ୍ର:ଯଦି ତୁମ୍ଭର ଯୁଦ୍ଧପିପାସା ବଢ଼ିଯାଇଛି ଏବଂ ଆଜହିଁ ଯୁଦ୍ଧ କରିବାକୁ ଇଚ୍ଛା କରୁଛ ତାହାହେଲେ ଆମମାନଙ୍କୁ ମାରିସାରି ଅର୍ଜୁନଙ୍କ ସଙ୍ଗରେ ଭେଟିବ ।" ଅନନ୍ତର ରାଜା ଅର୍ଜୁନଙ୍କର ଅମାତ୍ୟମାନଙ୍କୁ ରାବଣର ମନ୍ତ୍ରୀମାନେ କ୍ଷୁଧାତୁର ହୋଇ ଯୁଦ୍ଧରେ ଖାଇପକାଇଲେ ।

ନିହତ୍ୟାସ୍ମାଂସ୍ତତୋ ଯୁଦ୍ଧମର୍ଜୁନେନୋପଯାସ୍ୟସି ।
ତତସ୍ତେ ରାବଣାମାତ୍ୟୈରମାତ୍ୟାଃ ପାର୍ଥିବସ୍ୟ ତୁ । ୩୨ ।
ସୂଦିତାଶ୍ଚାପି ତେ ଯୁଦ୍ଧେ ଭକ୍ଷିତାଶ୍ଚ ବୁଭୁକ୍ଷିତୈଃ ।
ତତୋ ହଲହଲାଶବ୍ଦୋ ନର୍ମଦାତୀର ଆବଭୌ ।
ଅର୍ଜୁନସ୍ୟାନୁଯାତୄଣାଂ ରାବଣସ୍ୟ ଚ ମନ୍ତ୍ରିଣାମ୍ । ୩୩ ।
ଇଷୁଭିସ୍ତୋମରୈଃ ଶୂଲୈସ୍ତ୍ରିଶୂଲୈର୍ବଜ୍ରକର୍ଷଣୈଃ ।
ସରାବଣାନର୍ଦୟନ୍ତଃ ସମନ୍ତାତ୍ସମଭିଦ୍ରୁତାଃ । ୩୪ ।
ହୈହୟାଧିପଯୋଧାନାଂ ବେଗ ଆସୀତ୍ ସୁଦାରୁଣଃ ।
ସନକ୍ରମୀନମକରସମୁଦ୍ରସ୍ୟେବ ନିସ୍ୱନଃ । ୩୫ ।
ରାବଣସ୍ୟ ତୁ ତେଽମାତ୍ୟାଃ ପ୍ରହସ୍ତଶୁକସାରଣାଃ ।
କାର୍ତ୍ତବୀର୍ଯ୍ୟବଲଂ କ୍ରୁଦ୍ଧା ନିର୍ଦହନ୍ତି ସ୍ମ ତେଜସା ।୩୬ ।
ଅର୍ଜୁନାୟ ତୁ ତତ୍ କର୍ମ ରାବଣସ୍ୟ ସମନ୍ତ୍ରିଣଃ ।
କ୍ରୀଡ଼ମାନାୟ କଥିତଂ ପୁରୁଷୈର୍ଦ୍ୱାରରକ୍ଷିଭିଃ । ୩୭ ।
ଶ୍ରୁତ୍ୱା ନ ଭେତବ୍ୟମିତି ସ୍ତ୍ରୀଜନଂ ତଂ ତତୋଽର୍ଜୁନଃ ।
ଉତ୍ତତାର ଜଲାତ୍ତସ୍ମାଦ୍ ଗଙ୍ଗାତୋୟାଦିବାଞ୍ଜନଃ । ୩୮ ।

---

ତଦନନ୍ତର ନର୍ମଦାତୀରରେ ଘୋର କୋଳାହଳ ଜାତ ହେଲା । ୩୧-୩୨ । ତତ୍ପରେ ରାବଣର ମନ୍ତ୍ରୀ ଏବଂ ଅର୍ଜୁନଙ୍କ ଅନୁଚରମାନଙ୍କ ମଧ୍ୟରେ ଘୋର କୋଳାହଳ ଶବ୍ଦ ଜାତହେଲା ।୩୩। ଅର୍ଜୁନଙ୍କ ପକ୍ଷରୁ ଯୋଦ୍ଧାମାନେ ଧାଇଁ ଧାଇଁ ଶର,ତୋମର,ପ୍ରାସ, ତ୍ରିଶୂଳ, ବଜ୍ରାଦି ଶସ୍ତ୍ର ରାବଣ ଏବଂ ତାହାର ମନ୍ତ୍ରୀମାନଙ୍କ ଉପରେ ଗର୍ଜନ କରି ପ୍ରହାର କରିବାକୁ ଲାଗିଲେ । ୩୪ । କୁମ୍ଭୀର, ମୀନ, ମକରପୂର୍ଣ୍ଣ ସମୁଦ୍ରରେ ଯେପରି ଘୋର ଶବ୍ଦ ହୁଏ ସେହିପରି ହୈହୟାଧିପତି ଅର୍ଜୁନଙ୍କ ପକ୍ଷ ଯୋଦ୍ଧାଗଣ ଖୁବ୍ ଜୋରରେ ଘୋର ଗର୍ଜନ କରିବାକୁ ଲାଗିଲେ । ୩୫ । ରାବଣର ମନ୍ତ୍ରୀ ପ୍ରହସ୍ତ, ଶୁକ, ସାରଣ ଆଦି କ୍ରୁଦ୍ଧ ହୋଇ କାର୍ତ୍ତବୀର୍ଯ୍ୟଙ୍କର ସୈନ୍ୟଙ୍କୁ ନିଜ ବଳପ୍ରଭାବରେ ନାଶ କରିବାକୁ ଲାଗିଲେ । ୩୬ । ରାବଣ ଏବଂ ତାର ମନ୍ତ୍ରୀମାନଙ୍କର ଏ କାର୍ଯ୍ୟ ଦେଖି ଅର୍ଜୁନଙ୍କ ସ୍ତ୍ରୀମାନଙ୍କୁ ଜଗି ରହିଥିବା ପ୍ରହରୀମାନେ ଭୟଭୀତ ହୋଇ କ୍ରୀଡ଼ାରତ ଅର୍ଜୁନଙ୍କୁ ଯାଇ ଜଣାଇଲେ । ୩୭ । ସମସ୍ତ ବୃତ୍ତାନ୍ତ ଶୁଣି ଅର୍ଜୁନ ସେମାନଙ୍କୁ କହିଲେ, "ଡର ନାହିଁ ।" ତଦନନ୍ତର ଅର୍ଜୁନ ନାମକ ଦିଗ୍‌ଗଜ ନିଜର ହସ୍ତିନୀମାନଙ୍କୁ ଗଙ୍ଗାଜଳରୁ ବାହାର କଲାପରି, ଅର୍ଜୁନ ତାଙ୍କ ସ୍ତ୍ରୀମାନଙ୍କୁ ଜଳରୁ

କ୍ରୋଧହର୍ଷିତନେତ୍ରସ୍ତୁ ସ ତତୋଽର୍ଜୁନପାବକଃ ।
ପ୍ରଜଜ୍ୱାଲ ମହାଘୋରୋ ଯୁଗାନ୍ତ ଇବ ପାବକଃ । ୩୯ ।
ସ ତୂର୍ଣ୍ଣତରମାଦାୟ ବରହେମାଙ୍ଗଦୋ ଗଦାମ୍ ।
ଅଭିଦୁଦ୍ରାବ ରକ୍ଷାଂସି ତମାଂସୀବ ଦିବାକରଃ । ୪୦ ।
ବାହୁବିକ୍ଷେପକରଣାଂ ସମୁଦ୍ୟମ୍ୟ ମହାଗଦାମ୍ ।
ଗାରୁଡ଼ଂ ବେଗମାସ୍ଥାୟ ସ୍ତ୍ରୁପପାତୈବ ସୋଽର୍ଜୁନଃ । ୪୧ ।
ତସ୍ୟ ମାର୍ଗଂ ସମାରୁଧ୍ୟ ବିନ୍ଧ୍ୟୋଽର୍କସ୍ୟେବ ପର୍ବତଃ ।
ସ୍ଥିତୋ ବିନ୍ଧ୍ୟ ଇବାକମ୍ପ୍ୟ ପ୍ରହସ୍ତୋ ମୁସଲାୟୁଧଃ । ୪୨ ।
ତତୋଽସ୍ୟ ମୁସଲଂ ଘୋରଂ ଲୋହବଦ୍ଧଂ ମଦୋଦ୍ଧତଃ ।
ପ୍ରହସ୍ତଃ ପ୍ରେଷୟନ୍ କ୍ରୁଦ୍ଧୋ ରରାସ ଚ ଯଥାମ୍ବୁଦଃ । ୪୩ ।
ତସ୍ୟାଗ୍ରେ ମୁସଲସ୍ୟାଗ୍ନିରଶୋକାପୀଡ଼ସଂନିଭଃ ।
ପ୍ରହସ୍ତକରମୁକ୍ତସ୍ୟ ବଭୂବ ପ୍ରଦହନ୍ନିବ । ୪୪ ।
ଅଥାୟାନ୍ତଂ ତୁ ମୁସଲଂ କାର୍ତ୍ତବୀର୍ଯ୍ୟସ୍ତଦାର୍ଜୁନଃ ।
ନିପୁଣଂ ବଞ୍ଚୟାମାସ ସଗଦୋଽଗଦବିକ୍ରମଃ । ୪୫ ।

---

ଉପରକୁ ଉଠାଇଲେ । ୩୮ । କ୍ରୋଧ ହେତୁରୁ ଚକ୍ଷୁ ରକ୍ତବର୍ଣ୍ଣ କରି ଅର୍ଜୁନରୂପୀ ଅଗ୍ନି ପ୍ରଳୟକାଳୀନ ଅଗ୍ନିସଦୃଶ ମହାଭୟଙ୍କର ରୂପରେ ପ୍ରଜ୍ୱଳିତ ହୋଇ ଉଠିଲେ । । ୩୯ । ଉତ୍କୃଷ୍ଟ ସୁବର୍ଣ୍ଣର ବାଜୁବନ୍ଧ ପିନ୍ଧିଥିବା ଅର୍ଜୁନ ଶୀଘ୍ର ଗଦା ହାତରେ ଧରି, ସୂର୍ଯ୍ୟ ଅନ୍ଧକାରକୁ ଭେଦ କଲାପରି ରାକ୍ଷସମାନଙ୍କ ଆଡ଼କୁ ଧାଇଁଲେ । ୪୦ । ରାଜା ଅର୍ଜୁନ ବାହୁ ପ୍ରସାରି ବିଶାଳ ଗଦା ବୁଲାଇ ଗରୁଡ଼ସଦୃଶ ଅତି ବେଗରେ ରାକ୍ଷସମାନଙ୍କ ପାଖରେ ଯାଇ ପହଞ୍ଚିଲେ । ୪୧ । ବିନ୍ଧ୍ୟପର୍ବତ ଯେପରି ସୂର୍ଯ୍ୟଙ୍କ ମାର୍ଗକୁ ଅଟକାଇବାରେ ନିରୋଧ କରେ, ସେହିପରି ପ୍ରହସ୍ତ ହାତରେ ମୁଷଳ ଧରି ରାଜା ଅର୍ଜୁନଙ୍କ ପଥ ଅବରୋଧ କରି ଠିଆହେଲା । ୪୨ । ଅନନ୍ତର ମଦମତ୍ତ ପ୍ରହସ୍ତ କ୍ରୋଧରେ ଲୁହା ମୁଠା ଥିବା ଭୟଙ୍କର ମୁଷଳକୁ ଅର୍ଜୁନଙ୍କ ଉପରେ ନିକ୍ଷେପ କଲା ଏବଂ ସେତେବେଳେ ସେ ମେଘସଦୃଶ ଗର୍ଜନ କଲା । ୪୩ । ସେହି ମୁଷଳ ଅଗ୍ରଭାଗରୁ ଅଶୋକ ପୁଷ୍ପସଦୃଶ ଅଗ୍ନି ବାହାରୁଥିଲା; ସତେ ଯେପରିକି ପ୍ରହସ୍ତ ହସ୍ତରୁ ନିକ୍ଷିପ୍ତ ଏହି ମୁଷଳ ରାଜା ଅର୍ଜୁନଙ୍କୁ ଭସ୍ମ କରିଦେବ । ୪୪ । ମାତ୍ର କାର୍ତ୍ତବୀର୍ଯ୍ୟ ଅର୍ଜୁନ ସେହି ମୁଷଳକୁ ଆପଣା ଉପରକୁ ଆସୁଥିବାର ଦେଖି, ଲେଶମାତ୍ର ବିଚଳିତ ନ ହୋଇ ନିଜ ଗଦାଦ୍ୱାରା ଅତି ସତର୍କଭାବରେ ରୋକିନେଲେ । । ୪୫ ।

ତତସ୍ତ୍ୱଭିଦୁଦ୍ରାବ ପ୍ରହସ୍ତଂ ହୈହୟାଧିପଃ ।
ଭ୍ରାମୟାଣୋ ଗଦାଂ ଗୁର୍ବୀଂ ପଞ୍ଚବାହୁଶତୋଚ୍ଛ୍ରୟାମ୍ ।୪୬।
ତଥାହତୋଽତିବେଗେନ ପ୍ରହସ୍ତୋ ଗଦୟା ତଦା ।
ନିପପାତ ସ୍ଥିତଃ ଶୈଲୋ ବଜ୍ରିବଜ୍ରହତୋ ଯଥା ।୪୭।
ପ୍ରହସ୍ତଂ ପତିତଂ ଦୃଷ୍ଟ୍ୱା ମାରୀଚଶୁକସାରଣାଃ ।
ସମହୋଦରଧୂମ୍ରାକ୍ଷା ହ୍ୟପସୃଷ୍ଟା ରଣାଜିରାତ୍ ।୪୮।
ଅପକ୍ରାନ୍ତେଷ୍ୱମାତ୍ୟେଷୁ ପ୍ରହସ୍ତେ ଚ ନିପାତିତେ ।
ରାବଣୋଽଭ୍ୟଦ୍ରବତ୍ତୂର୍ଣମର୍ଜୁନଂ ନୃପସତ୍ତମମ୍ ।୪୯।
ସହସ୍ରବାହୋସ୍ତଦ୍ୟୁଦ୍ଧଂ ବିଂଶଦ୍‌ବାହୋଶ୍ଚ ଦାରୁଣମ୍ ।
ନୃପରାକ୍ଷସୟୋସ୍ତତ୍ର ଆରବ୍ଧଂ ରୋମହର୍ଷଣମ୍ ।୫୦।
ସାଗରାବିବ ସଂରବ୍ଧୌ ଚଲନ୍ମୂଲାବିବାଚଲୌ ।
ତେଜୋଯୁକ୍ତାବିବାଦିତ୍ୟୌ ପ୍ରଦହନ୍ତାବିବାନଲୌ ।୫୧।
ବଲୋଦ୍ଧତୌ ଯଥା ନାଗୌ ବାଶିତାର୍ଥେ ଯଥା ବୃଷୌ ।
ମେଘାବିବ ବିନର୍ଦନ୍ତୌ ସିଂହାବିବ ବଲୋତ୍କଟୌ ।୫୨।
ରୁଦ୍ରକାଲାବିବ କ୍ରୁଦ୍ଧୌ ତଦା ତୌ ରାକ୍ଷସାର୍ଜୁନୌ ।
ପରସ୍ପରଂ ଗଦାଭ୍ୟାଂ ତୌ ତାଡ଼ୟାମାସତୁର୍ଭୃଶମ୍ ।୫୩।

---

ତଦନନ୍ତର ହୈହୟାଧିପତି ଅର୍ଜୁନ ନିଜର ପଞ୍ଚହସ୍ତପରିମିତ ଲମ୍ବ ଗଦାକୁ ବୁଲାଇ ପ୍ରହସ୍ତ ଆଡ଼କୁ ଧାଇଁ ଯାଇ ତାହା ଉପରେ ତାହାକୁ ପ୍ରହାର କଲେ । ।୪୬। ଦଣ୍ଡାୟମାନ ପର୍ବତ ବଜ୍ର ପ୍ରହାରରେ ଗଡ଼ିପଡ଼ିଲା ପରି, ସେହି ଗଦାର ଭୀଷଣ ପ୍ରହାରରେ ପ୍ରହସ୍ତ ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲା । ।୪୭। ପ୍ରହସ୍ତକୁ ପଡ଼ିଯିବାର ଦେଖି ମାରୀଚ, ଶୁକ, ସାରଣ, ମହୋଦର ଏବଂ ଧୂମ୍ରାକ୍ଷ ଯୁଦ୍ଧଭୂମିରୁ ପଳାଇ-ଗଲେ । ୪୮ । ପ୍ରହସ୍ତ ପଡ଼ିଯିବାରୁ ଏବଂ ମନ୍ତ୍ରୀମାନେ ପଳାଇଯିବା ଉତ୍ତାରୁ ରାବଣ ଅତି ବେଗରେ ଅର୍ଜୁନଙ୍କ ଆଡ଼କୁ ଧାଇଁଲା । ୪୯ । ତଦନନ୍ତର ସହସ୍ରଭୁଜ ଅର୍ଜୁନ ସହିତ ବିଂଶଭୁଜ ରାବଣର ଲୋମହର୍ଷଣକାରୀ ଯୁଦ୍ଧ ଆରମ୍ଭ ହେଲା ।୫୦। ବିକ୍ଷୋଭିତ ଦୁଇଟି ସମୁଦ୍ର, ଗମନଶୀଳ ଦୁଇଟି ପର୍ବତ, ତେଜଯୁକ୍ତ ଦୁଇଟି ସୂର୍ଯ୍ୟ ଦହନକାରୀ ଦୁଇଟି ଅଗ୍ନି, ଗୋଟିଏ ହସ୍ତିନୀ ଲାଗି ଯୁଦ୍ଧ କରୁଥିବା ଦୁଇଟି ବଳବାନ୍ ହାତୀ, ଦୁଇଟି ଉନ୍ମତ୍ତ ଷଣ୍ଢ ଓ ମେଘ ସଦୃଶ ଗର୍ଜନ କରୁଥିବା ବଳଗର୍ବିତ ଦୁଇଟି ସିଂହପରି, ସେ ଦୁହେଁ ଲଢ଼ିବାକୁ ଲାଗିଲେ । ୫୧-୫୨ । ରୁଦ୍ର ଏବଂ କାଳ ସଦୃଶ ରାକ୍ଷସ ରାବଣ ଏବଂ ରାଜା ଅର୍ଜୁନ ଦୁହେଁ ଗଦାଯୁଦ୍ଧ କରି କରି ପରସ୍ପରକୁ ବାରମ୍ବାର

ବଜ୍ରପ୍ରହାରାନଚଲା ଯଥା ଘୋରାନ୍ ବିଷେହିରେ ।
ଗଦାପ୍ରହାରାଂସ୍ତୌ ତତ୍ର ସେହାତେ ନରରାକ୍ଷସୌ । ୫୪ ।
ଯଥାଶନିରବେଭ୍ୟସ୍ତୁ ଜାୟତେଽଥ ପ୍ରତିଶ୍ରୁତିଃ ।
ତଥା ତୟୋର୍ଗଦାପୋଥୈର୍ଦିଶଃ ସର୍ବାଃ ପ୍ରତିଶ୍ରୁତାଃ । ୫୫ ।
ଅର୍ଜୁନସ୍ୟ ଗଦା ସା ତୁ ପାତ୍ୟମାନାହିତୋରସି ।
କାଞ୍ଚନାଭଂ ନଭଶ୍ଚକ୍ରେ ବିଦ୍ୟୁତ୍ସୌଦାମିନୀ ଯଥା । ୫୬ ।
ତଥୈବ ରାବଣେନାପି ପାତ୍ୟମାନା ମୁହୁର୍ମୁହୁଃ ।
ଅର୍ଜୁନୋରସି ନିର୍ଭାତି ଗଦୋଲ୍କେବ ମହାଗିରୌ । ୫୭ ।
ନାର୍ଜୁନଃ ଖେଦମାୟାତି ନ ରାକ୍ଷସଗଣେଶ୍ୱରଃ ।
ଇଦମାସୀତ୍ତୟୋର୍ୟୁଦ୍ଧଂ ଯଥାପୂର୍ବଂ ବଲୀନ୍ଦ୍ରୟୋଃ । ୫୮ ।
ଶୃଙ୍ଗୈର୍ମହର୍ଷଭୌ ଯଦ୍ବଦ୍ଦନ୍ତାଗ୍ରୈରିବ କୁଞ୍ଜରୌ ।
ପରସ୍ପରଂ ତୌ ନିଘ୍ନନ୍ତୌ ନରରାକ୍ଷସସତ୍ତମୌ । ୫୯ ।
ତତୋଽର୍ଜୁନେନ କ୍ରୁଦ୍ଧେନ ସର୍ବପ୍ରାଣେନ ସା ଗଦା ।
ସ୍ତନୟୋରନ୍ତରେ ମୁକ୍ତା ରାବଣସ୍ୟ ମହୋରସି । ୬୦ ।

---

ଜଣିବାକୁ ଲାଗିଲେ । ୫୩ । ଯେପରି ପର୍ବତ ଭୟଙ୍କର ବଜ୍ରପ୍ରହାରକୁ ସହ୍ୟକରେ ସେହିପରି ସେ ଦୁଇ ନର-ରାକ୍ଷସ ପରସ୍ପରର ଗଦାପ୍ରହାରକୁ ସହ୍ୟ କରୁଥିଲେ ।୫୪। ଯେପରି ବଜ୍ରଶବ୍ଦରୁ ପ୍ରତିଧ୍ୱନି ଜାତ ହୁଏ ସେହିପରି ସେ ଦୁହିଁଙ୍କର ଗଦାପ୍ରହାରର ପ୍ରତିଧ୍ୱନି ଦ୍ୱାରା ସମସ୍ତ ଦିଗ ପ୍ରତିଧ୍ୱନିତ ହେବାକୁ ଲାଗିଲା । ୫୫ । ଅର୍ଜୁନ ଯେତେବେଳେ ରାବଣର ଛାତି ଉପରେ ଗଦା ପ୍ରହାର କଲା, ସେତେବେଳେ ବିଦ୍ୟୁତ୍ପରି ଆକାଶମଣ୍ଡଳ ସୁବର୍ଣ୍ଣ ଆଭାରେ ବ୍ୟାପ୍ତ ହୋଇଗଲା । ୫୬ । ରାବଣର ଗଦା ମଧ୍ୟ ସେହିପରି ଅର୍ଜୁନଙ୍କ ଛାତି ଉପରେ ବାରମ୍ବାର ପଡ଼ି, ପର୍ବତରାଜ ଉପରେ ଉଲ୍କାପାତ ପରି ଚମକି ଉଠୁଥିଲା । ୫୭ । ସେହି ଗଦାଯୁଦ୍ଧରେ ଅର୍ଜୁନ କି ରାବଣ କେହି କ୍ଲାନ୍ତ ହୋଇପଡ଼ିଲେ ନାହିଁ । ଏ ଦୁହିଁଙ୍କର ଯୁଦ୍ଧ ସମାନ ହୋଇଥିଲା । ପୂର୍ବକାଳରେ ରାଜା ବଳି ଓ ଇନ୍ଦ୍ରଙ୍କର ଯେପରି ଯୁଦ୍ଧ ହୋଇଥିଲା ଏ ଦୁହିଙ୍କର ଯୁଦ୍ଧ ଠିକ ସେହିପରି ହୋଇଥିଲା । ୫୮ । ଶୃଙ୍ଗଦ୍ୱାରା ଲଢ଼ୁଥିବା ଦୁଇଟି ବଳଦ କିମ୍ବା ଦନ୍ତରେ ଲଢ଼ୁଥିବା ଦୁଇଟି ହସ୍ତୀପରି ସେହି ନରଶ୍ରେଷ୍ଠ ଓ ରାକ୍ଷସଶ୍ରେଷ୍ଠ ଦୁହେଁ ପରସ୍ପରକୁ ପ୍ରହାର କରିଲାଗିଥିଲେ । ୫୯ । ଅର୍ଜୁନ କ୍ରୋଧପୂର୍ଣ୍ଣ ହୋଇ ନିଜର ପ୍ରାଣର ସମସ୍ତ ଶକ୍ତି ଲଗାଇ ରାବଣର ଛାତିର ଦୁଇ ସ୍ତନ ମଧ୍ୟବର୍ତ୍ତୀ ଯାଗାରେ ଗଦାକୁ ଅତି ଯୋରରେ ପ୍ରହାର କଲେ । ୬୦ । ମାତ୍ର ବରଦାନ ହେତୁରୁ ରାବଣ

ବରଦାନକୃତତ୍ରାଣେ ସା ଗଦା ରାବଣୋରସି ।
ଦୁର୍ବଲେବ ଯଥାବେଗଂ ଦ୍ୱିଧା ଭୂତ୍ୱାପତତ୍ କ୍ଷିତୌ । ୭୧ ।
ସ ତ୍ୱର୍ଜୁନପ୍ରମୁକ୍ତେନ ଗଦାପାତେନ ରାବଣଃ ।
ଅପାସର୍ପଦ୍ଧନୁର୍ମାତ୍ରଂ ନିଷସାଦ ଚ ନିଷ୍ଟନନ୍ । ୭୨ ।
ସ ବିହ୍ୱଲଂ ତଦାଲକ୍ଷ୍ୟ ଦଶଗ୍ରୀବଂ ତତୋଽର୍ଜୁନଃ ।
ସହସୋପୃତ୍ୟ ଜଗ୍ରାହ ଗରୁତ୍ମାନିବ ପନ୍ନଗମ୍ । ୭୩ ।
ସ ତଂ ବାହୁସହସ୍ରେଣ ବଲାଦ୍ ଗୃହ୍ୟ ଦଶାନନମ୍ ।
ବବନ୍ଧ ବଲବାନ୍ ରାଜା ବଲିଂ ନାରାୟଣୋ ଯଥା । ୭୪ ।
ବଧ୍ୟମାନେ ଦଶଗ୍ରୀବେ ସିଦ୍ଧଚାରଣଦେବତାଃ ।
ସାଧ୍ୱୀତି ବାଦିନଃ ପୁଷ୍ପୈଃ କିରନ୍ତ୍ୟର୍ଜୁନ ମୂର୍ଦ୍ଧନି । ୭୫ ।
ବ୍ୟାଘ୍ରୋ ମୃଗମିବାଦାୟ ମୃଗରାଡ଼ିବ ଦନ୍ତିନମ୍ ।
ନନାଦ ହୈହୟୋ ରାଜା ହର୍ଷାଦମ୍ବୁଦବନ୍ମୁହୁଃ । ୭୬ ।
ପ୍ରହସ୍ତସ୍ତୁ ସମାଶ୍ୱସ୍ତୋ ଦୃଷ୍ଟ୍ୱା ବଦ୍ଧଂ ଦଶାନନମ୍ ।
ସହ ତୈ ରାକ୍ଷସୈଃ କ୍ରୁଦ୍ଧଶ୍ଚାଭିଦୁଦ୍ରାବ ପାର୍ଥିବମ୍ । ୭୭ ।

---

ସ୍ଥିତ ବିପର୍ଯ୍ୟସ୍ତ ହେଲନାହିଁ; କିନ୍ତୁ ଗଦା ଦୁଇଖଣ୍ଡ ହୋଇ ଅକର୍ମା ହୋଇ ପୃଥିବୀ ଉପରେ ପଡ଼ିଗଲା । ୭୧ । ତଥାପି ରାବଣ ଅର୍ଜୁନଙ୍କ ନିକ୍ଷିପ୍ତ ସେହି ଗଦାର ପ୍ରହାରରେ ଧନୁମାତ୍ର ପଛକୁ ଘୁଞ୍ଚିଗଲା ଏବଂ ସେହି ପ୍ରହାରରେ ରୋଦନ ଓ ଚିତ୍କାର କରିବାକୁ ଲାଗିଲା । ୭୨ । ଅର୍ଜୁନ ରାବଣକୁ ଗଦାପ୍ରହାରରେ ବିକଳ ହେଉଥିବାର ଦେଖି ତତ୍‌କ୍ଷଣାତ୍ ଚମକି ଆସି ଗରୁଡ଼ ସାପକୁ ଧରିଲପରି ତାକୁ ଧରି-ପକାଇଲେ । ୭୩ । ଭଗବାନ୍ ବିଷ୍ଣୁ ଯେପରି ବଳିକୁ ବାନ୍ଧିଥିଲେ, ସେହିପରି ବଳବାନ୍ ରାଜା ଅର୍ଜୁନ ନିଜର ସହସ୍ର ବାହୁଦ୍ୱାରା ରାବଣକୁ ଧରି ବାନ୍ଧିପକାଇଲେ ।୭୪। ରାବଣ ବନ୍ଧାହୋଇଯିବାରୁ ସିଦ୍ଧ, ଚାରଣ ଓ ଦେବତାମାନେ ସାଧୁ ସାଧୁ ବୋଲି କହି ରାଜା ଅର୍ଜୁନଙ୍କ ମସ୍ତକରେ ପୁଷ୍ପ ବୃଷ୍ଟି କଲେ ।୭୫ । ବ୍ୟାଘ୍ର ଯେପରି ହରିଣକୁ ତଥା ସିଂହ ଗଜେନ୍ଦ୍ରକୁ ଧରିନିଏ, ସେହିପରି ରାବଣକୁ ଧରିନେଇ ଅର୍ଜୁନ ମେଘସଦୃଶ ବାରମ୍ବାର ଗର୍ଜନ କରିବାକୁ ଲାଗିଲେ । ୭୬ । ଇତିମଧ୍ୟରେ ପ୍ରହସ୍ତର ମୂର୍ଚ୍ଛା ଦୂର ହୋଇଯାଇଥିଲା । ସେ ରାବଣକୁ ବନ୍ଦୀ ହୋଇଥିବାର ଦେଖି କ୍ରୋଧରେ ହଠାତ୍ ରାଜା ଅର୍ଜୁନଙ୍କ ଆଡ଼କୁ ଧାଇଁଲା । ପ୍ରହସ୍ତ ସଙ୍ଗେ ଅନ୍ୟ ରାକ୍ଷସମାନେ ମଧ୍ୟ ଅର୍ଜୁନଙ୍କ ଆଡ଼କୁ ଧାଇଁଲେ । ୭୭ । ଗ୍ରୀଷ୍ମଋତୁର ଶେଷରେ

ନକ୍ତଂଚରାଣାଂ ବେଗସ୍ତୁ ତେଷାମାପତତାଂ ବଭୌ ।
ଉଦ୍ଧୂତ ଆତପାପାୟେ ପୟୋଦାନାମିବାମ୍ବୁଧୌ । ୬୮ ।
ମୁଞ୍ଚ ମୁଞ୍ଚେତି ଭାଷନ୍ତସ୍ତିଷ୍ଠ ତିଷ୍ଠେତି ଚାସକୃତ୍ ।
ମୁସଲାନି ସ ଶୂଳାନି ହ୍ୟୁତ୍ସସର୍ଜୁସ୍ତଦାର୍ଜୁନେ । ୬୯ ।
ଅପ୍ରାପ୍ତାନେ୍ୟବ ତାନ୍ୟାଶୁ ଅସଂଭ୍ରାନ୍ତସ୍ତଦାର୍ଜୁନଃ ।
ଆୟୁଧାନ୍ୟମରାରୀଣାଂ ଜଗ୍ରାହାରିନିଷୂଦନଃ । ୭୦ ।
ତତସ୍ତୈରେବ ରକ୍ଷାଂସି ଦୁର୍ଧରୈଃ ପ୍ରବରାୟୁଧୈଃ ।
ଭିତ୍ତ୍ୱା ବିଦ୍ରାବୟାମାସ ବାୟୁରମ୍ବୁଧରାନିବ । ୭୧ ।
ରାକ୍ଷସାଂସ୍ତ୍ରାସୟିତ୍ୱା ତୁ କାର୍ତ୍ତବୀର୍ୟୋଽର୍ଜୁନସ୍ତଦା ।
ରାବଣଂ ଗୃହ୍ୟ ନଗରଂ ପ୍ରବିବେଶ ସୁହୃଦ୍ ବୃତଃ । ୭୨ ।
ସ କୀର୍ଯମାଣଃ କୁସୁମାକ୍ଷତୋତ୍କରୈ-
ର୍ଦ୍ୱିଜୈଃ ସପୌରୈଃ ପୁରୁହୂତସନ୍ନିଭଃ ।
ତଦାର୍ଜୁନଃ ସଂପ୍ରବିବେଶ ତାଂ ପୁରୀମ୍
ବଲିଂ ନିଗୃହେ୍ୟବ ସହସ୍ରଲୋଚନଃ । ୭୩ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ରାବଣଗ୍ରହଣଂ ନାମ ଦ୍ୱାତ୍ରିଂଶଃ ସର୍ଗଃ ।

---

ବର୍ଷାକାଳୀନ ମେଘ ପାଣିନେବା ପାଇଁ ସମୁଦ୍ର ଆଡ଼କୁ ଧାଇଁଲା ପରି ସେତେବେଳେ ସେମାନଙ୍କ ବେଗ ଜଣାଯାଉଥିଲା । ୬୮ । ସେମାନେ ପାଟିକରି କହୁଥାନ୍ତି, ଛାଡ଼ ଛାଡ଼, ରହ ରହ । ଏହା ସଙ୍ଗେ ସଙ୍ଗେ ସେମାନେ ରାଜା ଅର୍ଜୁନଙ୍କ ଉପରେ ମୁଷଳ ଓ ଶୂଳାଦି ନିକ୍ଷେପ କରୁଥିଲେ । ୬୯ । ରାଜା ଅର୍ଜୁନ ସେମାନଙ୍କର ନିକ୍ଷିପ୍ତ ଶସ୍ତ୍ରମାନଙ୍କୁ ନିଜ ଶରୀର ଉପରେ ପଡ଼ିବାକୁ ଦେଉ ନ ଥିଲେ ଏବଂ ମଝିରେ ସେ ସବୁକୁ ଅନାୟାସରେ ରୋକି ଦେଉଥିଲେ । ୭୦ । ଶେଷରେ ରାଜା ଅର୍ଜୁନ ତାଙ୍କର ଅତି ଭୟଙ୍କର ଏବଂ ଉତ୍ତମ ଆୟୁଧମାନଙ୍କ ଦ୍ୱାରା, ପବନ ମେଘକୁ ଉଡ଼ାଇଦେଲାପରି ସେମାନଙ୍କୁ ମାରି ଘଉଡ଼ାଇ ଦେଲେ ।୭୧। ରାଜା ଅର୍ଜୁନ ସେହି ରାକ୍ଷସମାନଙ୍କୁ ଭୟଭୀତ କରାଇ ଘଉଡ଼ାଇ ଦେଇ, ନିଜର ବନ୍ଧୁମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ, ରାବଣକୁ ବନ୍ଦୀକରି ନିଜର ରାଜଧାନୀରେ ପହଞ୍ଚିଲେ । ୭୨ । ସେତେବେଳେ ପୁରବାସୀ ବ୍ରାହ୍ମଣମାନେ ତଥା ଅନ୍ୟ ନଗରବାସୀମାନେ ଇନ୍ଦ୍ରଙ୍କ ସଦୃଶ ପରାକ୍ରମୀ ଅର୍ଜୁନଙ୍କ ଉପରେ ଅକ୍ଷତ ଓ ପୁଷ୍ପ ବୃଷ୍ଟିକଲେ । ସହସ୍ରଲୋଚନ ଯେପରି ବଳିରାଜାଙ୍କୁ ଜୟକରି ଅମରାବତୀକୁ ଆସିଥିଲେ,ସେହିପରି ଅର୍ଜୁନ ରାବଣକୁ ଧରି ନିଜ ରାଜଧାନୀରେ ପ୍ରବେଶ କଲେ ।୭୩।

# ତ୍ରୟସ୍ତ୍ରିଂଶଃ ସର୍ଗଃ

## ରାବଣବନ୍ଧପ୍ରମୋକ୍ଷଃ

ରାବଣଗ୍ରହଣଂ ତତ୍ତୁ ବାୟୁଗ୍ରହଣସନ୍ନିଭମ୍ ।
ତତଃ ପୁଲସ୍ତ୍ୟଃ ଶୁଶ୍ରାବ କଥିତଂ ଦିବି ଦୈବତୈଃ । ୧ ।
ତତଃ ପୁତ୍ରକୃତସ୍ନେହାତ୍ କମ୍ପମାନୋ ମହାଧୃତିଃ ।
ମାହିଷ୍ମତୀପତିଂ ଦ୍ରଷ୍ଟୁମାଜଗାମ ମହାମୁନିଃ । ୨ ।
ସ ବାୟୁମାର୍ଗମାସ୍ଥାୟ ବାୟୁତୁଲ୍ୟଗତିର୍ଦ୍ୱିଜଃ ।
ପୁରୀଂ ମାହିଷ୍ମତୀଂ ପ୍ରାପ୍ତୋ ମନଃସଂପାତବିକ୍ରମଃ । ୩ ।
ସୋଽମରାବତୀସଂକାଶାଂ ହୃଷ୍ଟପୁଷ୍ଟଜନାକୁଲାମ୍ ।
ପ୍ରବିବେଶ ପୁରୀଂ ବ୍ରହ୍ମା ଇନ୍ଦ୍ରସ୍ୟେବାମରାବତୀମ୍ । ୪ ।
ପାଦଚାରମିବାଦିତ୍ୟଂ ନିଷ୍ପତନ୍ତଂ ସୁଦୁର୍ଦଶମ୍ ।
ତତସ୍ତେ ପ୍ରତ୍ୟଭିଜ୍ଞାୟ ଅର୍ଜୁନାୟ ନ୍ୟବେଦୟନ୍ । ୫ ।
ପୁଲସ୍ତ୍ୟ ଇତି ବିଜ୍ଞାୟ ବଚନାଦ୍ଧୈହୟାଧିପଃ ।
ଶିରସ୍ୟଞ୍ଜଳିମାଧାୟ ପ୍ରତ୍ୟୁଦ୍‌ଗଚ୍ଛତ୍ତପସ୍ୱିନମ୍ । ୬ ।

---

## ୩୩ଶ ସର୍ଗ

### (ରାବଣର ମୋକ୍ଷଣ)

ବାୟୁକୁ ଧରିନେବା ପରି ରାବଣକୁ ଧରିନେବା କଥା ସ୍ୱର୍ଗରେ ଦେବତାମାନେ କଥାବାର୍ତ୍ତା ହେଉଥିବାର ପୁଲସ୍ତ୍ୟ ମହର୍ଷି ଶୁଣିଲେ । ୧ । ଶୁଣିବାମାତ୍ରେ ମହା-ଧୈର୍ଯ୍ୟବାନ୍ ପୁଲସ୍ତ୍ୟ ପୁତ୍ରସ୍ନେହ ହେତୁରୁ ଥରିଉଠିଲେ । ଅନନ୍ତର ସେ ମହର୍ଷି ମାହିଷ୍ମତୀର ରାଜା ଅର୍ଜୁନଙ୍କୁ ଦେଖାକରିବାକୁ ଆସିଲେ । ୨ । ପବନ ସଦୃଶ ବେଗବାନ୍ ସେହି ମହର୍ଷି ଆକାଶମାର୍ଗରେ ମନସଦୃଶ ଚଞ୍ଚଳଗତିରେ ମାହିଷ୍ମତୀ ପୁରୀରେ ଯାଇ ପହଞ୍ଚିଲେ । ୩ । ବ୍ରହ୍ମା ଯେପରି ଇନ୍ଦ୍ରଙ୍କର ଅମରାବତୀ ନଗରୀରେ ପ୍ରବେଶ କରନ୍ତି ସେହିପରି ସେ ହୃଷ୍ଟପୁଷ୍ଟ ଜନପରିପୂର୍ଣ୍ଣ ସେହି ନଗରୀରେ ପ୍ରବେଶ କଲେ । ୪ । ପାଦଚାରୀ ତଥା ଦୁର୍ନିରୀକ୍ଷ୍ୟ ସୂର୍ଯ୍ୟଦେବଙ୍କ ସଦୃଶ ପୁଲସ୍ତ୍ୟଙ୍କୁ ଆସୁଥିବାର ଦେଖି ରାଜା ଅର୍ଜୁନଙ୍କର ଲୋକେ ତାଙ୍କୁ ଯାଇ ଏ କଥା ଜଣାଇଲେ । ୫ । ରାଜା ଯେତେବେଳେ ତପସ୍ୱୀ ପୁଲସ୍ତ୍ୟଙ୍କ ନାମ ଶୁଣିଲେ ସେତେବେଳେ ସେ ହାତଯୋଡ଼ି ତାଙ୍କୁ ପାଛୋଟିନେବା ପାଇଁ ଆଗେଇ ଗଲେ । ୬ । ଇନ୍ଦ୍ରଙ୍କ ଆଗରେ

ପୁରୋହିତୋଽସ୍ୟ ଗୃହ୍ୟାର୍ଘ୍ୟଂ ମଧୁପର୍କଂ ତଥୈବ ଚ ।
ପୁରସ୍ତାତ୍ ପ୍ରଯଯୌ ରାଜ୍ଞଃ ଶକ୍ରସ୍ୟେବ ବୃହସ୍ପତିଃ । ୭ ।
ତତସ୍ତମୃଷିମାୟାନ୍ତମୁଦ୍ୟନ୍ତମିବ ଭାସ୍କରମ୍ ।
ଅର୍ଜୁନୋ ଦୃଶ୍ୟ ସଂଭ୍ରାନ୍ତୋ ବବନ୍ଦେନ୍ଦ୍ର ଇବେଶ୍ୱରମ୍ । ୮ ।
ସ ତସ୍ୟ ମଧୁପର୍କଂ ଗାଂ ପାଦ୍ୟମର୍ଘ୍ୟଂ ନିବେଦ୍ୟ ଚ ।
ପୁଲସ୍ତ୍ୟମାହ ରାଜେନ୍ଦ୍ରୋ ହର୍ଷଗଦ୍ଗଦୟା ଗିରା । ୯ ।
ଅଦ୍ୟୈବମମରାବତ୍ୟା ତୁଲ୍ୟା ମାହିଷ୍ମତୀ କୃତା ।
ଅଦ୍ୟାହଂ ତୁ ଦ୍ୱିଜେନ୍ଦ୍ର ତ୍ୱାଂ ଯସ୍ମାତ୍ ପଶ୍ୟାମି ଦୁର୍ଦ୍ଦଶମ୍ । ୧୦ ।
ଅଦ୍ୟ ମେ କୁଶଳଂ ଦେବ ଅଦ୍ୟ ମେ କୁଶଳଂ ବ୍ରତମ୍ ।
ଅଦ୍ୟ ମେ ସଫଳଂ ଜନ୍ମ ଅଦ୍ୟ ମେ ସଫଳଂ ତପଃ । ୧୧ ।
ଯସ୍ମାଦ୍ଦେବଗଣୈର୍ବନ୍ଦ୍ୟୌ ବନ୍ଦେଽହଂ ଚରଣୌ ତବ ।
ଇଦଂ ରାଜ୍ୟମିମେ ପୁତ୍ରା ଇମେ ଦାରା ଇମେ ବୟମ୍ ।
ବ୍ରହ୍ମନ୍ କିଂ କୁର୍ମି କିଂ କାର୍ଯମାଜ୍ଞାପୟତୁ ନୋ ଭବାନ୍ । ୧୨ ।
ତଂ ଧର୍ମେଽଗ୍ନିଷୁ ପୁତ୍ରେଷୁ ଶିବଂ ପୃଷ୍ଟ୍ୱା ଚ ପାର୍ଥିବମ୍ ।
ପୁଲସ୍ତ୍ୟୋବାଚ ରାଜାନଂ ହୈହୟାନାଂ ତଥାର୍ଜୁନମ୍ । ୧୩ ।

---

ବୃହସ୍ପତି ଯେପରି ଇନ୍ଦ୍ରଙ୍କର ପୁରୋହିତ ଅର୍ଘ୍ୟ ଏବଂ ମଧୁପର୍କ ସାମଗ୍ରୀ ଧରି ରାଜାଙ୍କ ଆଗେ ଆଗେ ଚାଲିଲେ । ୭ । ଉଦିତ ହେଉଥିବା ସୂର୍ଯ୍ୟଙ୍କ ସଦୃଶ ସେହି ଋଷିଙ୍କୁ ଆସୁଥିବାର ଦେଖି, ଅର୍ଜୁନ ଅତି ଆଦର ସହକାରେ,ଇନ୍ଦ୍ର ବ୍ରହ୍ମାଙ୍କୁ ପ୍ରଣାମ କଲାପରି ପ୍ରଣାମ କଲେ । ୮ । ରାଜା ମଧୁପର୍କ, ଗୋ, ପାଦ୍ୟ, ଅର୍ଘ୍ୟ ନିବେଦନ କରି ଏବଂ ଅତ୍ୟନ୍ତ ହର୍ଷିତ ହୋଇ ଗଦ୍‌ଗଦ କଣ୍ଠରେ ପୁଲସ୍ତ୍ୟଙ୍କୁ କହିଲେ । ୯ । "ହେ ଦ୍ୱିଜେନ୍ଦ୍ର ! ଆଜି ମୋତେ ଆପଣଙ୍କ ଦୁର୍ଲ୍ଲଭ ଦର୍ଶନ ମିଳିବାରୁ ମୋର ଏହି ମାହିଷ୍ମତୀ ଅମରାବତୀ ସଦୃଶ ହୋଇଗଲା । ୧୦ । ହେ ଦେବ ! ଆଜି ମୋର ତପ ସିଦ୍ଧି ହେଲା, ଯଜ୍ଞ ସଫଳ ହେଲା, ବ୍ରତ ପୂର୍ଣ୍ଣ ହେଲା ଏବଂ ଜନ୍ମ ସଫଳ ହେଲା; ଆଜି ମୋର ସବୁ ପ୍ରକାର ମଙ୍ଗଳ ହେଲା । ହେ ଦେବ ! ଦେବତାମାନଙ୍କର ବନ୍ଦ୍ୟ ଆପଣଙ୍କ ଚରଣ ଆଜି ମୁଁ ଦର୍ଶନ କଲି । ହେ ବ୍ରହ୍ମନ୍ ! ଏହି ରାଜ୍ୟ, ଏହି ପୁତ୍ର, ଏହି ସ୍ତ୍ରୀ ଆଉ ଆମେ ସମସ୍ତେ ଆପଣଙ୍କ ସେବା ନିମନ୍ତେ ଉପସ୍ଥିତ ଅଛୁଁ । ହେ ବ୍ରହ୍ମନ୍ ! ଆପଣଙ୍କ ପାଇଁ କଅଣ କରିବ ଆଜ୍ଞା ଦିଅନ୍ତୁ ।" ୧୨ । ଏହା ଶୁଣି ପୁଲସ୍ତ୍ୟ ମୁନି ଧର୍ମ, ଅଗ୍ନି ଏବଂ ପୁତ୍ରମାନଙ୍କ ବିଷୟରେ ମଙ୍ଗଳ ପ୍ରଶ୍ନ କରିଲେ । ତଦନନ୍ତର ସେ ହୈହୟାଧିପତି

ନରେନ୍ଦ୍ରାମ୍ବୁଜପତ୍ରାକ୍ଷ ପୂର୍ଣ୍ଣଚନ୍ଦ୍ରନିଭାନନ ।
ଅତୁଲଂ ତେ ବଲଂ ଯେନ ଦଶଗ୍ରୀବସ୍ତ୍ୱୟା ଜିତଃ । ୧୪ ।
ଭୟାଦ୍‌ ଯସ୍ୟୋପତିଷ୍ଠେତାଂ ନିଷ୍ପନ୍ଦୌ ସାଗରାନିଲୌ ।
ସୋଽୟଂ ମୃଧେ ତ୍ୱୟା ବଦ୍ଧଃ ପୌତ୍ରୋ ମେ ରଣଦୁର୍ଜୟଃ ।୧୫।
ପୁତ୍ରକସ୍ୟ ଯଶଃ ପୀତଂ ନାମ ବିଶ୍ରାବିତଂ ତ୍ୱୟା ।
ମଦ୍‌ବାକ୍ୟାଦ୍‌ ଯାଚ୍ୟମାନୋଽଦ୍ୟ ମୁଞ୍ଚ ବତ୍ସ ଦଶାନନମ୍‌ । ୧୬ ।
ପୁଲସ୍ତ୍ୟାଜ୍ଞାଂ ପ୍ରଗୃହ୍ୟୋଚେ ନ କିଞ୍ଚନ ବଚୋଽର୍ଜୁନଃ ।
ମୁମୋଚ ବୈ ପାର୍ଥିବେନ୍ଦ୍ରୋ ରାକ୍ଷସେନ୍ଦ୍ରଂ ପ୍ରହୃଷ୍ଟବତ୍‌ । ୧୭ ।

ସ ତଂ ପ୍ରମୁଚ୍ୟ ତ୍ରିଦଶାରିମର୍ଜୁନଃ
ପ୍ରପୂଜ୍ୟ ଦିବ୍ୟାଭରଣସ୍ରଗମ୍ବରୈଃ ।
ଅହିଂସକଂ ସଖ୍ୟମୁପେତ୍ୟ ସାଗ୍ନିକମ୍‌
ପ୍ରଣମ୍ୟ ତଂ ବ୍ରହ୍ମସୁତଂ ଗୃହଂ ଯଯୌ । ୧୮ ।

ପୁଲସ୍ତ୍ୟେନାପି ସଂତ୍ୟକ୍ତୋ ରାକ୍ଷସେନ୍ଦ୍ରଃ ପ୍ରତାପବାନ୍‌ ।
ପରିଷ୍ୱକ୍ତଃ କୃତାତିଥ୍ୟୋ ଲଜ୍ଜମାନୋ ବିନିର୍ଜିତଃ ।୧୯।
ପିତାମହସୁତଶ୍ଚାପି ପୁଲସ୍ତ୍ୟୋ ମୁନିପୁଙ୍ଗବଃ ।
ମୋଚୟିତ୍ୱା ଦଶଗ୍ରୀବଂ ବ୍ରହ୍ମଲୋକଂ ଜଗାମ ହ । ୨୦ ।

---

ଅର୍ଜୁନଙ୍କୁ କହିଲେ । ୧୩ । "ହେ ନରେନ୍ଦ୍ର, ହେ କମଳଲୋଚନ, ହେ ଚନ୍ଦ୍ରମୁଖ ! ତୁମ୍ଭର ବଳ ଅତୁଳ ଅଟେ । ସେଥିପାଇଁ ତୁମେ ଦଶଗ୍ରୀବଙ୍କୁ ଜୟ କରିଅଛ । ୧୪ । ଯାହାର ଭୟରେ ସାଗର ଏବଂ ପବନ ମଧ୍ୟ ନିଷ୍ପନ୍ଦଭାବରେ ରହି ଆଜ୍ଞା ପାଇବାକୁ ପ୍ରତୀକ୍ଷା କରନ୍ତି, ହେ ରାଜନ୍‌ ! ତୁମେ ମୋର ସେହି ରଣଦୁର୍ଜୟ ପୌତ୍ରକୁ ଯୁଦ୍ଧରେ ପରାସ୍ତ କରି ବାନ୍ଧି ଆଣିଅଛ । ୧୫ । ତୁମେ ତାହାର ଯଶ ପାନ କରି ଆପଣା ନାମ ବିଖ୍ୟାତ କରିଅଛ । ହେ ବତ୍ସ ! ଏବେ ମୁଁ ତୁମକୁ ମାଗୁଛି ଯେ ମୋ କଥା ରକ୍ଷାକରି ତୁମେ ରାବଣକୁ ଛାଡ଼ିଦିଅ ।" ୧୬ । ନୃପଶ୍ରେଷ୍ଠ ଅର୍ଜୁନ ପୁଲସ୍ତ୍ୟ ଋଷିଙ୍କର ଆଜ୍ଞାକୁ ମସ୍ତକରେ ଧାରଣ କରି ଏବଂ କିଛି ମାତ୍ର କଥା ନ କହି ଆନନ୍ଦରେ ରାକ୍ଷସରାଜ ରାବଣକୁ ଛାଡ଼ିଦେଲେ । ୧୭ । ମୂଲ୍ୟବାନ୍‌ ବସ୍ତ୍ର, ଅଳଙ୍କାର ଏବଂ ଉତ୍କୃଷ୍ଟ ପୁଷ୍ପମାଳା ଦ୍ୱାରା ସେ ରାବଣର ସତ୍କାର କଲେ । ପୁଣି ଅଗ୍ନି ସମ୍ମୁଖରେ ତାହା ସହିତ ଅହିଂସକ ମିତ୍ରତା ସ୍ଥାପନ କଲେ । ତଦନନ୍ତର ସେ ବ୍ରହ୍ମାଙ୍କ ପୁତ୍ର ପୁଲସ୍ତ୍ୟଙ୍କୁ ପ୍ରଣାମ କରି ନିଜ ଭବନକୁ ଚାଲିଗଲେ । ୧୮ । ପୁଲସ୍ତ୍ୟଙ୍କଠାରୁ ପ୍ରତାପବାନ୍‌ ରାକ୍ଷସେନ୍ଦ୍ର ରାବଣ ବିଦାୟ ନେଲା । ଅର୍ଜୁନ ରାବଣକୁ ଆଲିଙ୍ଗନ କରି ଆତିଥ୍ୟ କଲେ ସୁଦ୍ଧା ରାବଣ ଲଜ୍ଜିତ ହୋଇ ଲଙ୍କାକୁ ଗଲା । ୧୯ । ବ୍ରହ୍ମପୁତ୍ର ମୁନିଶ୍ରେଷ୍ଠ ପୁଲସ୍ତ୍ୟ ରାବଣକୁ ମୁକ୍ତ

ଏବଂ ସ ରାବଣଃ ପ୍ରାପ୍ତଃ କାର୍ତ୍ତବୀର୍ଯାତ୍ ପ୍ରଧର୍ଷଣମ୍ ।
ପୁଲସ୍ତ୍ୟବଚନାଚାପି ପୁନର୍ମୁକ୍ତୋ ମହାବଲଃ । ୨୧ ।
ଏବଂ ବଲିଭ୍ୟୋ ବଲିନଃ ସନ୍ତି ରାଘବନନ୍ଦନ ।
ନାବଜ୍ଞା ହି ପରେ କାର୍ଯା ଯ ଇଚ୍ଛେତ୍ ପ୍ରିୟମାତ୍ମନଃ । ୨୨ ।
ତତଃ ସ ରାଜା ପିଶିତାଶନାନାମ୍
ସହସ୍ରବାହୋରୁପଲଭ୍ୟ ମୈତ୍ରୀମ୍ ।
ପୁନର୍ନୃପାଣାଂ କଦନଂ ଚକାର
ଚଚାର ସର୍ବାଂ ପୃଥିବୀଂ ଚ ଦର୍ପାତ୍ । ୨୩ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ରାବଣବିପ୍ରମୋକ୍ଷୋ ନାମ ତ୍ରୟସ୍ତ୍ରିଂଶଃ ସର୍ଗଃ

## ଚତୁସ୍ତ୍ରିଂଶଃ ସର୍ଗଃ

### ବାଲିରାବଣସଖ୍ୟମ୍

ଅର୍ଜୁନେନ ବିମୁକ୍ତସ୍ତୁ ରାବଣୋ ରାକ୍ଷସାଧିପଃ ।
ଚଚାର ପୃଥିବୀଂ ସର୍ବାମନିର୍ବିଣ୍ଣସ୍ତଥା କୃତଃ । ୧ ।

---

କରାଇ ବ୍ରହ୍ମଲୋକକୁ ଚାଲିଗଲେ ।୨୦। ମହାବଳୀ ରାବଣ କାର୍ତ୍ତବୀର୍ଯ୍ୟଙ୍କଦ୍ୱାରା ଏହିପରି ପରାଜିତ ହୋଇ ବନ୍ଦୀ ହୋଇଥିଲା ଏବଂ ପୁଲସ୍ତ୍ୟଙ୍କ କଥାରେ ପୁଣି ମୁକ୍ତିଲାଭ କରିଥିଲା । ୨୧ । ହେ ରଘୁନନ୍ଦନ ! ବଳବାନ୍‌ଠାରୁ ମଧ୍ୟ ଅଧିକ ବଳବାନ୍ ବ୍ୟକ୍ତି ଅଛନ୍ତି । ଅତଏବ ଯେ ନିଜର ଶ୍ରେୟ ଇଚ୍ଛା କରୁଛି, ସେ ଅନ୍ୟକୁ ଅପମାନ ଦେବା ଉଚିତ ନୁହେଁ । ୨୨ । ତଦନନ୍ତର ରକ୍ତଭୋଜୀ ରାକ୍ଷସମାନଙ୍କ ରାଜା ରାବଣ ସହସ୍ରବାହୁ ଅର୍ଜୁନଙ୍କ ସହ ମୈତ୍ରୀ କରି ଏବଂ ଗର୍ବପୂର୍ଣ୍ଣ ହୋଇ ରାଜାମାନଙ୍କୁ ନଷ୍ଟ କରି କରି ସମଗ୍ର ପୃଥିବୀମଣ୍ଡଳରେ ବିଚରଣ କରିବାକୁ ଲାଗିଲା ।୨୩।

---

## ୩୪ଶ ସର୍ଗ

### (ବାଲୀ ଓ ରାବଣର ବନ୍ଧୁତା)

ରାକ୍ଷସରାଜ ରାବଣ ଅର୍ଜୁନଙ୍କଠାରୁ ମୁକ୍ତିଲାଭ କରି ନିରୁଦ୍‌ବେଗରେ ସମଗ୍ର ପୃଥିବୀରେ ବୁଲିବାକୁ ଲାଗିଲା । ୧ । ଯେଉଁଠାରେ ଅଧିକ ବଳବାନ ମନୁଷ୍ୟ

ରାକ୍ଷସଂ ବା ମନୁଷ୍ୟଂ ବା ଶ୍ରୃଣୁତେ ଯଂ ବଳାଧିକମ୍ ।
ରାବଣସ୍ତଂ ସମାସାଦ୍ୟ ଯୁଦ୍ଧେ ହ୍ୱୟତି ଦର୍ପିତଃ । ୨ ।
ତତଃ କଦାଚିତ୍ କିଷ୍କିନ୍ଧାଂ ନଗରୀଂ ବାଳିପାଳିତାମ୍ ।
ଗତ୍ୱା ହ୍ୱୟତି ଯୁଦ୍ଧାୟ ବାଳିନଂ ହେମମାଳିନମ୍ । ୩ ।
ତତସ୍ତୁ ବାନରାମାତ୍ୟସ୍ତାରସ୍ତାରାପିତା ପ୍ରଭୁଃ ।
ଉବାଚ ବାନରୋ ବାକ୍ୟଂ ଯୁଦ୍ଧପ୍ରେପ୍ସୁମୁପାଗତମ୍ । ୪ ।
ରାକ୍ଷସେନ୍ଦ୍ର ଗତୋ ବାଳୀ ଯସ୍ତେ ପ୍ରତିବଳୋ ଭବେତ୍ ।
କୋଽନ୍ୟଃ ପ୍ରମୁଖତଃ ସ୍ଥାତୁଂ ତବ ଶକ୍ତଃ ପ୍ଲବଙ୍ଗମଃ । ୫ ।
ଚତୁର୍ଭ୍ୟୋଽପି ସମୁଦ୍ରେଭ୍ୟଃ ସନ୍ଧ୍ୟାମନ୍ୱାସ୍ୟ ରାବଣ ।
ଇମଂ ମୁହୂର୍ତ୍ତମାୟାତି ବାଳୀ ତିଷ୍ଠ ମୁହୂର୍ତ୍ତକମ୍ । ୬ ।
ଏତାନସ୍ଥିଚୟାନ୍ ପଶ୍ୟ ଯ ଏତେ ଶଙ୍ଖପାଣ୍ଡୁରାଃ ।
ଯୁଦ୍ଧାର୍ଥିନାମିମେ ରାଜନ୍ ବାନରାଧିପତେଜସା । ୭ ।
ଯଦ୍ ବାମୃତରସଃ ପୀତସ୍ତ୍ୱୟା ରାବଣ ରାକ୍ଷସ ।
ତଦା ବାଳିନମାସାଦ୍ୟ ତଦନ୍ତଂ ତବ ଜୀବିତମ୍ । ୮ ।

---

ବା ରାକ୍ଷସ କେହି ଥିବାର ଶୁଣିଲେ ରାବଣ ତାହା ନିକଟକୁ ଯାଇ ତାକୁ ଯୁଦ୍ଧପାଇଁ ଆହ୍ୱାନ କରୁଥିଲା ।୨। ଅନନ୍ତର ଦିନେ ରାବଣ ବାଳିପାଳିତ କିଷ୍କିନ୍ଧାପୁରୀରେ ଯାଇ ପହଞ୍ଚିଲା ଏବଂ ସୁବର୍ଣ୍ଣମାଳାଧାରୀ ବାଳୀକୁ ଯୁଦ୍ଧପାଇଁ ଡାକିଲା ।୩। ସେତେବେଳେ ତାରପିତା ଏବଂ ବାଳୀର ମନ୍ତ୍ରୀ ତାର ଯୁଦ୍ଧ କରିବା ଅଭିପ୍ରାୟରେ ଆସିଥିବା ରାବଣକୁ କହିଲା ।୪। "ହେ ରାକ୍ଷସେନ୍ଦ୍ର ! ଯେଉଁ ବାଳୀ ଯୁଦ୍ଧରେ ତୁମ ସହିତ ପ୍ରତିଦ୍ୱନ୍ଦୀ ହୋଇପାରିବେ ସେ ବାହାରକୁ ଯାଇଅଛନ୍ତି । ଅନ୍ୟ କୌଣସି ବାନରର ତୁମ ସହିତ ଲଢ଼ିବା ପାଇଁ ଶକ୍ତି ନାହିଁ ।୫। ଅତଏବ ହେ ରାବଣ ! ତୁ ଟିକିଏ ମୁହୂର୍ତ୍ତେ ମାତ୍ର ଅପେକ୍ଷା କର । ବାଳୀ ଚାରି ସମୁଦ୍ରରେ ସନ୍ଧ୍ୟା କରିସାରି ଏହିକ୍ଷଣି ଆସି ପହଞ୍ଚିବେ ।୬। ହେ ରାଜନ୍ ! ଏହି ଶଙ୍ଖସଦୃଶ ଶୁକ୍ଳବର୍ଣ୍ଣର ଅସ୍ଥିକୂଟ ଦେଖ । ଯେଉଁମାନେ ବାନରରାଜ ବାଳୀଙ୍କ ସହିତ ଯୁଦ୍ଧ କରିବା ଇଚ୍ଛାରେ ଏଠାକୁ ଆସିଥିଲେ ଏହା ସେହିମାନଙ୍କର ଅସ୍ଥି ।୭। ହେ ରାକ୍ଷସ ରାବଣ ! ତୁମେ ଅମୃତରସ ପାନ କରିଥିଲେ ମଧ୍ୟ ବାଳୀଙ୍କ ସମ୍ମୁଖରେ ପଡ଼ିଲେ ତୁମର ଜୀବନ ସେହିଠାରେ ଶେଷ ହେବ ।୮। ହେ ବିଶ୍ରବାପୁତ୍ର ! ତୁମେ ଆଜ ଏ ବିଚିତ୍ର

ପଶେୟଦାନୀଂ ଜଗତି ଜମିମଂ ଣଶ୍ରବସଃ ସୁତ ।
ଇଦଂ ମୁହୂର୍ତ୍ତଂ ତଷ୍ଟସ୍ୱ ଦୁର୍ଲଭଂ ତେ ଭବଷ୍ୟତ । ୯ ।
ଅଥବା ତ୍ୱରସେ ମର୍ତ୍ତୁଂ ଗଚ୍ଛ ଦକ୍ଷିଣସାଗରମ୍ ।
ବାଳନଂ ଦ୍ରକ୍ଷ୍ୟସେ ତତ୍ର ଭୂମିଷ୍ଠମିବ ପାବକମ୍ । ୧୦ ।
ସ ତୁ ତାରଂ ବନର୍ଭର୍ତ୍ସ୍ୟ ରାବଣୋ ଲୋକରାବଣଃ ।
ପୁଷ୍ପକଂ ତଦ୍‌ସମାରୁହ୍ୟ ପ୍ରୟଯୌ ଦକ୍ଷିଣାର୍ଣ୍ଣବମ୍ । ୧୧ ।
ତତ୍ର ହେମଗିରିପ୍ରଖ୍ୟଂ ତରୁଣାର୍କନିଭାନନମ୍ ।
ରାବଣୋ ବାଳନଂ ଦୃଷ୍ଟ୍ୱା ସନ୍ଧ୍ୟୋପାସନତତ୍ପରମ୍ । ୧୨ ।
ପୁଷ୍ପକାଦବରୁହ୍ୟାଥ ରାବଣୋଽଞ୍ଜନସନ୍ନିଭଃ ।
ଗ୍ରହୀତୁଂ ବାଳନଂ ତୂର୍ଣ୍ଣଂ ନିଃଶବ୍ଦପଦମାବ୍ରଜତ୍ । ୧୩ ।
ଯଦୃଚ୍ଛୟା ତଦା ଦୃଷ୍ଟୋ ବାଳନାପି ସ ରାବଣଃ ।
ପାପାଭିପ୍ରାୟକଂ ଦୃଷ୍ଟ୍ୱା ଚକାର ନ ତୁ ସଂଭ୍ରମମ୍ । ୧୪ ।
ଶଶମାଲକ୍ଷ୍ୟ ସିଂହୋ ବା ପନ୍ନଗଂ ଗରୁଡ଼ୋ ଯଥା ।
ନ ଚନ୍ତୟତି ତଂ ବାଳୀ ରାବଣଂ ପାପନଶ୍ଚୟମ୍ । ୧୫ ।

---

ସଂସାରକୁ ଦେଖିନଅ ଏବଂ ମୁହୂର୍ତ୍ତେମାତ୍ର ଅପେକ୍ଷା କର, କାରଣ ତାପରେ ତୁମ୍ଭର ଜୀବନ ଦୁର୍ଲ୍ଲଭ ହୋଇଯିବ । ୯ । ଯଦି ତୁମେ ମରିବା ପାଇଁ ବ୍ୟଗ୍ର ହେଉଥାଅ ତାହାହେଲେ ଦକ୍ଷିଣ-ସମୁଦ୍ର ନିକଟକୁ ଚାଲିଯାଅ । ୧୦ । ସେଠାରେ ପୃଥିବୀ ଉପରେ ଅବସ୍ଥିତ ଅଗ୍ନି ସଦୃଶ ବାଳୀଙ୍କୁ ଦେଦୀପ୍ୟମାନ ଦେଖିବ । ୧୦ । ତାହାର ଏହି କଥା ଶୁଣି ଏବଂ ତାକୁ ବିଶେଷ ଭର୍ତ୍ସନା କରି, ଲୋକଙ୍କୁ ଭୟଭୀତ କରାଇଥିବା ରାବଣ ପୁଷ୍ପକରେ ଆରୋହଣ କରି ଦକ୍ଷିଣ ସମୁଦ୍ର ଆଡ଼କୁ ଗଲା ।୧୧। ସେଠାରେ ପହଞ୍ଚି ରାବଣ ସୁବର୍ଣ୍ଣ ପର୍ବତସଦୃଶ ଏବଂ ତରୁଣ ସୂର୍ଯ୍ୟସଦୃଶ ମୁଖବିଶିଷ୍ଟ ସନ୍ଧ୍ୟା ଉପାସନାରେ ତନ୍ମୟ ହୋଇଥିବା ବାଳୀଙ୍କୁ ଦେଖିଲା । ୧୨ । କଜ୍ଜ୍ୱଳ ସଦୃଶ କୃଷ୍ଣବର୍ଣ୍ଣ ରାବଣ ପୁଷ୍ପକରୁ ଓହ୍ଲାଇ ବାଳୀଙ୍କୁ ଧରିନେବା ଉଦ୍ଦେଶ୍ୟରେ ନିଃଶବ୍ଦ-ପଦନିକ୍ଷେପ ପୂର୍ବକ ଶୀଘ୍ର ଚାଲିଲା ।୧୩। ବାଳୀ କୌଣସିମତେ ରାବଣକୁ ଦେଖିନେଲେ ଏବଂ ତାର ଦୁଷ୍ଟ ଅଭିପ୍ରାୟ ଜାଣି ମଧ୍ୟ କୌଣସି ପ୍ରକାର ଉଦ୍‌ବିଗ୍ନ ହେଲେ ନାହିଁ ।୧୪। ଯେପରି ସିଂହ ଶଶକକୁ ଦେଖିଲେ ଏବଂ ଗରୁଡ଼ ସର୍ପକୁ ଦେଖିଲେ ଉଦ୍‌ବିଗ୍ନ ହୁଅନ୍ତି ନାହିଁ, ସେହିପରି ବାଳୀ ମନରେ ଦୁଷ୍ଟ ଅଭିପ୍ରାୟ ରଖିଥିବା ରାବଣକୁ ଦେଖି ବିକଳ-ହେଲେ ବିଚଳିତ ହେଲେ ନାହିଁ । ୧୫ । ବାଳୀ ନିଜ ମନରେ ବିଚାରିଲେ 'ଏ ରାକ୍ଷସ

ଜିଘୃକ୍ଷମାଣମାୟାନ୍ତଂ ରାବଣଂ ପାପଚେତସମ୍ ।
କକ୍ଷାବଲମ୍ବିନଂ କୃତ୍ୱା ଗମିଷ୍ୟେ ତ୍ରୀନ୍ ମହାର୍ଣବାନ୍ । ୧୬ ।
ଦ୍ରକ୍ଷ୍ୟନ୍ତ୍ୟରିଂ ମମାଙ୍କସ୍ଥଂ ସ୍ରଂସଦୂରୁକରାମ୍ବରମ୍ ।
ଲମ୍ବମାନଂ ଦଶଗ୍ରୀବଂ ଗରୁଡ଼ସ୍ୟେବ ପନ୍ନଗମ୍ । ୧୭।
ଇତ୍ୟେବଂ ମତମାସ୍ଥାୟ ବାଲୀ ମୌନମୁପାଶ୍ରିତଃ ।
ଜପନ୍ ବୈ ନୈଗମାନ୍ ମନ୍ତ୍ରାଂସ୍ତସ୍ଥୌ ପର୍ବତରାଡ଼ିବ ।୧୮।
ତାବନ୍ୟୋଽନ୍ୟଂ ଜିଘୃକ୍ଷନ୍ତୌ ହରିରାକ୍ଷସପାର୍ଥିବୌ ।
ପ୍ରଯତ୍ନବନ୍ତୌ ତତ୍ କର୍ମ ଈହତୁର୍ବଲଦର୍ପିତୌ । ୧୯ ।
ହସ୍ତଗ୍ରାହଂ ତୁ ତଂ ମତ୍ୱା ପାଦଶବ୍ଦେନ ରାବଣମ୍ ।
ପରାଙ୍ମୁଖୋଽପି ଜଗ୍ରାହ ବାଲୀ ସର୍ପମିବାଣ୍ଡଜଃ । ୨୦ ।
ଗ୍ରହୀତୁକାମଂ ତଂ ଗୃହ୍ୟ ରକ୍ଷସାମୀଶ୍ୱରଂ ହରିଃ ।
ଖମୁତ୍ପପାତ ବେଗେନ କୃତ୍ୱା କକ୍ଷାବଲମ୍ବିନମ୍ । ୨୧ ।
ତଂ ଚ ପୀଡ଼ୟମାନଂ ତୁ ବିତୁଦନ୍ତଂ ନଖୈର୍ମୁହୁଃ ।
ଜହାର ରାବଣଂ ବାଲୀ ପବନସ୍ତୋୟଦଂ ଯଥା । ୨୨ ।

---

ମୋତେ ଧରିବାକୁ ଆସିଅଛି, ସୁତରାଂ ଏ ପାପାତ୍ମା ପାଖକୁ ଆସିଲେ ମୁଁ ମୋ କାଖରେ ଯାକି ତିନି ସମୁଦ୍ରକୁ ଯିବି । ୧୬ । ସେତେବେଳେ ସମସ୍ତେ ଦେଖିବେ ଯେ ଶତ୍ରୁ ରାବଣ ମୋ କାଖରେ, ଗରୁଡ଼ଦ୍ୱାରା ଧରାହୋଇଥିବା ସର୍ପପରି ଓହଳି କରି ଯାଉଅଛି । ତାହାର ଜଙ୍ଘ, ହାତ ଏବଂ ବସ୍ତ୍ର ସେତେବେଳେ ତଳକୁ ଓହଳି ରହିଥିବ । ୧୭ । ଏହି ପ୍ରକାର ନିଜ ମନରେ ନିଶ୍ଚୟ କରି ବାଲୀ ମୌନଭାବରେ ଭଗବତ୍ ଆରାଧନା କରି, ବେଦୋକ୍ତ ମନ୍ତ୍ରଦ୍ୱାରା ଜପ କରି କରି ପର୍ବତ ସଦୃଶ ନିଶ୍ଚଳ ହୋଇ ସେଠାରେ ବସି ରହିଲେ । ୧୮ । ସେତେବେଳେ ସେ ଦୁଇ ବାନରରାଜ ଓ ରାକ୍ଷସରାଜ ପରସ୍ପରକୁ ଧରିବା ଅଭିଳାଷରେ ପ୍ରଯତ୍ନ କରି ନିଜ ନିଜର ବଳର ଦର୍ପ ଦେଖାଉଥିଲେ ।୧୯। ରାବଣର ପଦଶବ୍ଦରୁ ତାହାକୁ ହାତମୁଠା ଭିତରକୁ ଆସିଥିବାର ଜାଣି ବାଲୀ ମୁହଁ ନ ଫେରାଇ, ସର୍ପକୁ ଗରୁଡ଼ ଧରିଲା ପରି, ତାକୁ ଧରି ପକାଇଲେ । ୨୦ । ଯେଉଁ ରାବଣ ବାଲୀକୁ ଧରିବା ପାଇଁ ଆସିଥିଲା, ତାକୁ ବାଲୀ ଧରି ନିଜ କାଖରେ ଯାକିଦେଲେ ଏବଂ ତତ୍ପରେ ସେ ଖୁବ୍ ଯୋରରେ ଆକାଶରେ ଉଡ଼ିଗଲେ । ୨୧ । ପବନ ଯେପରି ମେଘକୁ ଉଡ଼ାଇ ନେଇଯାଏ, ସେହିପରି ବାଲୀ ରାବଣକୁ ବାରମ୍ବାର ଚିପି ଦେଇ ଏବଂ ନଖରେ ବାରମ୍ବାର କ୍ଷତବିକ୍ଷତ କରି ନେଇ

ଅଥ ତେ ରାକ୍ଷସାମାତ୍ୟା ହ୍ରିୟମାଣଂ ଦଶାନନମ୍ ।
ମୁମୋକ୍ଷୟିଷବୋ ବାଲିଂ ରବମାଣା ଅଭିଦ୍ରୁତାଃ । ୨୩ ।
ଅନ୍ୱୀୟମାନସ୍ତୈର୍ବାଲୀ ଭ୍ରାଜତେଽମ୍ବରମଧ୍ୟଗଃ ।
ଅନ୍ୱୀୟମାନୋ ମେଘୌଘୈରମ୍ବରସ୍ଥ ଇବାଂଶୁମାନ୍ । ୨୪ ।
ତେଽଶକ୍ନୁବନ୍ତଃ ସଂପ୍ରାପ୍ତୁଂ ବାଲିନଂ ରାକ୍ଷସୋତ୍ତମାଃ ।
ତସ୍ୟ ବାହୂରୁବେଗେନ ପରିଶ୍ରାନ୍ତା ବ୍ୟବସ୍ଥିତାଃ । ୨୫ ।
ବାଲିମାର୍ଗାଦପାକ୍ରାମନ୍ ପର୍ବତେନ୍ଦ୍ରା ହି ଗଚ୍ଛତଃ ।
କିଂ ପୁନର୍ଜୀବିତପ୍ରେପ୍ସୁର୍ବିଭ୍ରଦ୍ ବୈ ମାଂସଶୋଣିତମ୍ । ୨୬ ।
ଅପକ୍ଷିଗଣସମ୍ପାତାନ୍ ବାନରେନ୍ଦ୍ରୋ ମହାଜବଃ ।
କ୍ରମଶଃ ସାଗରାନ୍ ସର୍ବାନ୍ ସନ୍ଧ୍ୟାକାଲମବନ୍ଦତ । ୨୭ ।
ସମ୍ଭାଜ୍ୟମାନୋ ଭୂତୈସ୍ତୁ ଖେଚରୈଃ ଖେଚରୋତ୍ତମଃ ।
ପଶ୍ଚିମଂ ସାଗରଂ ବାଲୀ ହ୍ୟାଜଗାମ ସରାବଣଃ । ୨୮ ।
ତସ୍ମିନ୍ ସନ୍ଧ୍ୟାମୁପାସିତ୍ୱା ସ୍ନାତ୍ୱା ଜପ୍ତ୍ୱା ଚ ବାନରଃ ।
ଉତ୍ତରଂ ସାଗରଂ ପ୍ରାୟାଦ୍ ବହମାନୋ ଦଶାନନମ୍ । ୨୯ ।

---

ଯାଉଥିଲେ ।୨୨। ରାବଣର ମନ୍ତ୍ରୀମାନେ ତାହାକୁ ମୁକ୍ତ କରିବା ଇଚ୍ଛାରେ ଚିତ୍କାର କରି ବାଲୀଙ୍କ ପଛେ ପଛେ ଖୁବ ଯୋରରେ ଦୌଡ଼ିଲେ ।୨୩। ଆକାଶସ୍ଥିତ ସୂର୍ଯ୍ୟଙ୍କ ପଛେ ପଛେ ମେଘମାନେ ଯେପରି ଦୌଡ଼ନ୍ତି, ବାଳୀ ସେହିପରି ରାବଣର ମନ୍ତ୍ରୀମାନଙ୍କଦ୍ୱାରା ଅନୁସୃତ ହୋଇ ଆକାଶରେ ଶୋଭାପାଇଲେ । ୨୪ । ରାକ୍ଷସମାନେ ବାଲୀଙ୍କ ନିକଟରେ ପହଞ୍ଚିବାକୁ ଅସମର୍ଥ ହୋଇ ଏବଂ ତାଙ୍କ ଜଙ୍ଘ ଓ ଭୁଜର ବେଗରେ ପରିଶ୍ରାନ୍ତ ହୋଇ ମଝିରେ ରହିଗଲେ । ୨୫ । ମହାବେଗଶାଳୀ ବାଳୀ ଯେତେବେଳେ ରାବଣକୁ କାଖରେ ଯାକିଧରି ଉଡ଼ିଁ ଯାଉଥିଲେ, ସେତେବେଳେ ମହାମହା ପର୍ବତଗଣ ତାଙ୍କ ବାଟରୁ ଅପସରି ଯାଇଥିଲେ । ସୁତରାଂ ମାଂସ ରକ୍ତମୟ ଶରୀରଧାରୀ ତଥା ଜୀବିତେଚ୍ଛୁ ରାବଣ ବା ତାଙ୍କ ଆଗରେ କେତେ ମାତ୍ର ? । ୨୬ । ଆକାଶଗାମୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ବାଳୀ ପକ୍ଷିଗଣଙ୍କଦ୍ୱାରା ଅଲଙ୍ଘ୍ୟ ସମୁଦ୍ରମାନଙ୍କରେ କ୍ରମେ ସନ୍ଧ୍ୟା ବନ୍ଦନା କଲେ । ୨୭ । ସେ ଆକାଶଚାରୀ ପ୍ରାଣୀମାନଙ୍କଦ୍ୱାରା ସମ୍ମାନିତ ହୋଇ ରାବଣକୁ କାଖରେ ଧରି ପଶ୍ଚିମ ସମୁଦ୍ରକୁ ଆସିଲେ । ୨୮ । ସେଠାରେ ସ୍ନାନ, ଭଗବତ୍ ଆରାଧନା ଓ ଜପ କରିସାରି ସେ ରାବଣକୁ କାଖରେ ଯାକି ଉତ୍ତର ସାଗରକୁ ଗଲେ । ୨୯ । ସେହି ମହାବଳୀ ବିଶାଳକାୟ ବାଳୀ

ବହୁଯୋଜନସାହସ୍ରଂ ବହମାନୋ ମହାହରିଃ ।
ବାୟୁବଚ୍ଚ ମନୋବଚ୍ଚ ଜଗାମ ସହ ଶତ୍ରୁଣା । ୩୦ ।
ଉତ୍ତରେ ସାଗରେ ସନ୍ଧ୍ୟାମୁପାସିତ୍ୱା ଦଶାନନମ୍ ।
ବହମାନୋଽଗମଦ୍ ବାଲୀ ପୂର୍ବଂ ବୈ ସ ମହୋଦଧିମ୍ । ୩୧ ।
ତତ୍ରାପି ସନ୍ଧ୍ୟାମନ୍ୱାସ୍ୟ ବାସବିଃ ସ ହରୀଶ୍ୱରଃ ।
କିଷ୍କିନ୍ଧାମଭିତୋ ଗୃହ୍ୟ ରାବଣଂ ପୁନରାଗମତ୍ । ୩୨ ।
ଚତୁର୍ଷ୍ୱପି ସମୁଦ୍ରେଷୁ ସନ୍ଧ୍ୟାମନ୍ୱାସ୍ୟ ବାନରଃ ।
ରାବଣୋଦ୍‌ବହନଶ୍ରାନ୍ତଃ କିଷ୍କିନ୍ଧୋପବନେଽପତତ୍ । ୩୩ ।
ରାବଣଂ ତୁ ମୁମୋଚାଥ ସ୍ୱକକ୍ଷାତ୍ କପିସତ୍ତମଃ ।
କୁତସ୍ତ୍ୱମିତି ଚୋବାଚ ପ୍ରହସନ୍ ରାବଣଂ ମୁହୁଃ । ୩୪ ।
ବିସ୍ମୟଂ ତୁ ମହଦ୍ ଗତ୍ୱା ଶ୍ରମଲୋଲନିରୀକ୍ଷଣଃ ।
ରାକ୍ଷସେନ୍ଦ୍ରୋ ହରୀନ୍ଦ୍ରଂ ତମିଦଂ ବଚନମବ୍ରବୀତ୍ ।୩୫।
ବାନରେନ୍ଦ୍ର ମହେନ୍ଦ୍ରାଭ ରାକ୍ଷସେନ୍ଦ୍ରୋଽସ୍ମି ରାବଣଃ ।
ଯୁଦ୍ଧେପ୍ସୁରିହ ସଂପ୍ରାପ୍ତଃ ସ ଚାଦ୍ୟାସାଦିତସ୍ତ୍ୱୟା । ୩୬ ।

---

ରାବଣଙ୍କୁ କାଖରେ ଯାକିଧରି ବହୁ ସହସ୍ର ଯୋଜନ ବାଟ ବାୟୁ ତଥା ମନର ବେଗରେ ଚାଲିଗଲେ । ୩୦ । ଉତ୍ତର ସମୁଦ୍ର ତଟରେ ସନ୍ଧ୍ୟା ଉପାସନା କରିସାରି ସେଠାପରି ରାବଣଙ୍କୁ ଚାପି ଧରି ସେ ପୂର୍ବ ମହୋଦଧିରେ ଯାଇ ପହଞ୍ଚିଲେ । ୩୧ । ଇନ୍ଦ୍ରପୁତ୍ର ବାନରରାଜ ବାଲୀ ସେଠାରେ ମଧ୍ୟ ସନ୍ଧ୍ୟା ଉପାସନା କରି ଏବଂ ରାବଣଙ୍କୁ କାଖରେ ଚାପି ଧରି କିଷ୍କିନ୍ଧ୍ୟାରେ ଆସି ପହଞ୍ଚିଲେ । ୩୨ । ବାଲୀ ରାବଣଙ୍କୁ କାଖରେ ଯାକି ଧରି ଚାରି ସମୁଦ୍ରରେ ସନ୍ଧ୍ୟା ଉପାସନା କରିସାରି ତାଙ୍କୁ ବୋହିବା ହେତୁ କ୍ଳାନ୍ତ ହୋଇ କିଷ୍କିନ୍ଧାପୁରୀର ଉପବନରେ ଆକାଶରୁ ଆସି ଓହ୍ଲାଇଲେ । ୩୩ । କପିଶ୍ରେଷ୍ଠ ବାଳୀ ନିଜ କାଖରୁ ରାବଣଙ୍କୁ ମୁକ୍ତ କରି ଦେଇ ଏବଂ ବାରମ୍ବାର ହସି ହସି ତାଙ୍କୁ ପଚାରିଲେ, "ତୁମେ କୁଆଡ଼ୁ ଆସିଲ" ।୩୪। ରାବଣ କ୍ଳାନ୍ତ ହୋଇଥିବାରୁ ତାର ଚକ୍ଷୁରୁ ଉଦ୍‌ବେଗ ପ୍ରକାଶ ପାଉଥିଲା । ରାକ୍ଷସରାଜ ରାବଣ ଅତିଶୟ ବିସ୍ମିତ ହୋଇ ବାନରରାଜ ବାଲୀଙ୍କୁ କହିଲା । ୩୫ । "ହେ ଇନ୍ଦ୍ରତୁଲ୍ୟ ପରାକ୍ରମୀ ବାନରରାଜ ! ମୁଁ ରାକ୍ଷସମାନଙ୍କର ରାଜା ରାବଣ ଅଟେ । ମୁଁ ତୁମ ସହିତ ଯୁଦ୍ଧ କରିବା ଇଚ୍ଛାରେ ଏଠାକୁ ଆସିଥିଲି, ମାତ୍ର ମୁଁ ଆଜ ତୁମ ହାତରେ ବନ୍ଦୀ

ଅହୋ ବଳମହୋ ବୀର୍ଯ୍ୟମହୋ ଗାମ୍ଭୀର୍ଯ୍ୟମେବ ଚ ।
ଯେନାହଂ ପଶୁବଦ୍‌ଗୃହ୍ୟ ଭ୍ରାମିତଶ୍ଚତୁରୋଽର୍ଣ୍ଣବାନ୍ । ୩୭ ।
ଏବମଶ୍ରାନ୍ତବଦ୍‌ବୀର ଶୀଘ୍ରମେବ ମହାର୍ଣ୍ଣବାନ୍ ।
ମାଂ ଚୈବୋଦ୍‌ବହମାନସ୍ତୁ କୋଽନ୍ୟୋ ବୀରଃ କ୍ରମିଷ୍ୟତି । ୩୮ ।
ନ୍ୟସ୍ତାଣାମେବ ଭୂତାନାଂ ଗତିରେଷା ପ୍ଳବଙ୍ଗମ ।
ମନୋଽନିଲସୁପର୍ଣ୍ଣାନାଂ ତବ ଚୈବ ନ ସଂଶୟଃ । ୩୯ ।
ସୋଽହଂ ଦୃଷ୍ଟବଲସ୍ତୁଭ୍ୟମିଚ୍ଛାମି ହରିପୁଙ୍ଗବ ।
ତ୍ୱୟା ସହ ଚିରଂ ସଖ୍ୟଂ ସୁସ୍ନିଗ୍ଧଂ ପାବକାଗ୍ରତଃ । ୪୦ ।
ଦାରାଃ ପୁତ୍ରାଃ ପୁରଂ ରାଷ୍ଟ୍ରଂ ଭୋଗାଚ୍ଛାଦନଭୋଜନମ୍ ।
ସର୍ବମେବାବିଭକ୍ତଂ ନୌଃ ଭବିଷ୍ୟତି ହରୀଶ୍ୱର । ୪୧ ।
ତତଃ ପ୍ରଜ୍ୱାଲୟିତ୍ୱାଗ୍ନିଂ ତାବୁଭୌ ହରିରାକ୍ଷସୌ ।
ଭ୍ରାତୃତ୍ୱମୁପସଂପନ୍ନୌ ପରିଷ୍ୱଜ୍ୟ ପରସ୍ପରମ୍ । ୪୨ ।
ଅନ୍ୟୋନ୍ୟଂ ଲମ୍ବିତକରୌ ତତସ୍ତୌ ହରିରାକ୍ଷସୌ ।
କିଷ୍କିନ୍ଧାଂ ବିଶତୁର୍ହୃଷ୍ଟୌ ସିଂହୌ ଗିରିଗୁହାମିବ । ୪୩ ।

---

ହୋଇଗଲି । ୩୬ । ତୁମ୍ଭର ବଳ, ପରାକ୍ରମ ଓ ଗାମ୍ଭୀର୍ଯ୍ୟ ଆଶ୍ଚର୍ଯ୍ୟ ଅଟେ । ତୁମେ ମୋତେ ପଶୁସଦୃଶ ଧରି ଚାରି ସମୁଦ୍ରରେ ବୁଲାଇ ଆଣିଲ । ୩୭ । ହେ ବୀର ବାନର ! ମୋତେ ତ ଏପରି କୌଣସି ବୀର ଦେଖାଯାଉ ନାହିଁ ଯେ କି ମୋତେ ନେଇ ଟିକିଏ ହେଲେ କ୍ଳାନ୍ତ ନ ହୋଇ ଏତେ ଶୀଘ୍ର ଚାରି ସମୁଦ୍ରରେ ବୁଲି ଆସି ପାରିବ ? । ୩୮ । ହେ ବାନରରାଜ ! ମନ, ବାୟୁ, ଗରୁଡ଼ କେବଳ ଏହି ତିନିଙ୍କର ଏପରି ଗତି ଅଟେ; ତୁମଠାରେ ମଧ୍ୟ ଯେ ସେହିମାନଙ୍କପରି ଗମନ ଶକ୍ତି ଅଛି ଏଥିରେ ସନ୍ଦେହ ନାହିଁ । ୩୯ । ହେ ବାନର ଶ୍ରେଷ୍ଠ ! ମୁଁ ତୁମ୍ଭର ବଳ ପ୍ରତ୍ୟକ୍ଷ ଦେଖିନେଲି, ଏବେ ମୁଁ ଅଗ୍ନିଙ୍କ ସମ୍ମୁଖରେ ତୁମ ସହିତ ନିଷ୍କପଟ ଓ ସ୍ଥାୟୀ ମିତ୍ରତା ସ୍ଥାପନ କରିବାକୁ ଇଚ୍ଛା କରୁଅଛି । ୪୦ । ହେ ବାନରେଶ୍ୱର ! ଆଜିଠାରୁ ସ୍ତ୍ରୀ, ପୁତ୍ର, ପୁର, ରାଜ୍ୟ, ଭୋଗ, ଆଚ୍ଛାଦନ ଆଦି ସବୁ ମୋର ଏବଂ ତୁମ୍ଭର ଏକା ହେବ । ୪୧ । ତଦନନ୍ତର ଅଗ୍ନି ପ୍ରଜ୍ୱଳିତ କରାଇ ସେହି ଅଗ୍ନିଙ୍କ ସମ୍ମୁଖରେ ବାନରରାଜ ଓ ରାକ୍ଷସରାଜଙ୍କର ମୈତ୍ରୀ ସ୍ଥାପନ ହେଲା ଏବଂ ଉଭୟେ ପରସ୍ପରକୁ ଆଲିଙ୍ଗନ କଲେ । ୪୨ । ବାଲୀ ଓ ରାବଣ ଆନନ୍ଦିତ ହୋଇ ପରସ୍ପର ହାତ ଧରାଧରି ହୋଇ ଦୁଇଟି ସିଂହ ପର୍ବତ କନ୍ଦର ମଧ୍ୟରେ ପ୍ରବେଶ କଲାପରି କିଷ୍କିନ୍ଧାରେ ପ୍ରବେଶ କଲେ । ୪୩ ।

ସ ତତ୍ର ମାସମୁଷିତଃ ସୁଗ୍ରୀବ ଇବ ରାବଣଃ ।
ଅମାତ୍ୟୈରାଗତୈର୍ନୀତସ୍ତ୍ରୈଲୋକ୍ୟୋତ୍ସାଦନାର୍ଥିଭିଃ । ୪୪ ।
ଏବମେତତ୍ ପୁରାବୃତ୍ତଂ ବାଲିନା ରାବଣଃ ପ୍ରଭୋ ।
ଧର୍ଷିତଶ୍ଚ କୃତଶ୍ଚାପି ଭ୍ରାତା ପାବକସନ୍ନିଧୌ । ୪୫ ।
ବଳମପ୍ରତିମଂ ରାମ ବାଲିନୋଽଭବଦୁତ୍ତମମ୍ ।
ସୋଽପି ତ୍ୱୟା ବିନିର୍ଦ୍ଦଗ୍ଧୋ ବହ୍ନିନା ଶଲଭୋ ଯଥା ।୪୬ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ବାଲିରାବଣସଖ୍ୟଂ ନାମ ଚତୁସ୍ତ୍ରିଂଶଃ ସର୍ଗଃ ।

---

# ପଞ୍ଚତ୍ରିଂଶଃ ସର୍ଗଃ

## ହନୂମଦୁତ୍ପତ୍ତିଃ

ଅପୃଚ୍ଛତ ତଦା ରାମୋ ଦକ୍ଷିଣାଶାଶ୍ରୟଂ ମୁନିମ୍ ।
ପ୍ରାଞ୍ଜଲିର୍ବିନୟୋପେତ ଇଦଂ ବଚନମର୍ଥବତ୍ । ୧ ।

---

କିଷ୍କିନ୍ଧ୍ୟାରେ ରାବଣ ମାସେ ପର୍ଯ୍ୟନ୍ତ ସୁଗ୍ରୀବଙ୍କ ପରି ସମସ୍ତ ସମ୍ମାନ ପାଇ ରହିଲା ପରେ ତ୍ରୈଲୋକ୍ୟକୁ ନାଶ କରୁଥିବା ରାବଣର ମନ୍ତ୍ରୀମାନେ ସେଠାକୁ ଆସି ତାହାକୁ ସେଠାରୁ ଘେନିଗଲେ । ୪୪ । ହେ ରାମ ! ଏହା ଏକ ପୁରୁଣା ଘଟଣାର ବୃତ୍ତାନ୍ତ ଅଟେ । ବାଳୀ ଦ୍ୱାରା ରାବଣ ପରାସ୍ତ ହୋଇ ପରେ ଅଗ୍ନି ସମ୍ମୁଖରେ ବାଳୀ ସହିତ ମିତ୍ରତା ସ୍ଥାପନ କରିଥିଲା ।୪୫। ହେ ରାମ ! ବାଳୀଠାରେ ଅନୁପମ ଓ ଉତ୍ତମ ବଳ ଥିଲା । କିନ୍ତୁ ଅଗ୍ନି ଯେପରି ପତଙ୍ଗକୁ ପୋଡ଼ିଦିଏ, ସେହିପରି ତୁମେ ବାଳୀକୁ ଦଗ୍ଧ କରି ପକାଇଲ । ୪୬ ।

---

# ୩୫ଶ ସର୍ଗ

## ( ହନୁମାନଙ୍କ ଉତ୍ପତ୍ତି )

ତଦନନ୍ତର ରାମ ବିନୀତଭାବରେ ହାତ ଯୋଡ଼ି ଦକ୍ଷିଣ ଦିଗବାସୀ ଅଗସ୍ତ୍ୟ ମୁନିଙ୍କୁ ଅର୍ଥଯୁକ୍ତ ବଚନ କହିଲେ । ୧ । "ଯଦ୍ୟପି ବାଳୀ ଓ ରାବଣଠାରେ ଅତୁଳ

ଅତୁଲଂ ବଲମେତଦ୍‌ବୈ ବାଲିନୋ ରାବଣସ୍ୟ ଚ ।
ନ ତ୍ୱେତାଭ୍ୟାଂ ହନୁମତା ସମଂ ତ୍ୱିତି ମତିର୍ମମ । ୨ ।
ଶୌର୍ଯ୍ୟଂ ଦାକ୍ଷ୍ୟଂ ବଲଂ ଧୈର୍ଯ୍ୟଂ ପ୍ରାଜ୍ଞତା ନୟସାଧନମ୍ ।
ବିକ୍ରମଶ୍ଚ ପ୍ରଭାବଶ୍ଚ ହନୂମତି କୃତାଲୟାଃ । ୩ ।
ଦୃଷ୍ଟ୍ୱୈବ ସାଗରଂ ବୀକ୍ଷ୍ୟ ସୀଦନ୍ତୀଂ କପିବାହିନୀମ୍ ।
ସମାଶ୍ୱାସ୍ୟ ମହାବାହୁର୍ଯୋଜନାନାଂ ଶତଂ ପ୍ଲୁତଃ । ୪ ।
ଧର୍ଷୟିତ୍ୱା ପୁରୀଂ ଲଙ୍କାଂ ରାବଣାନ୍ତଃପୁରଂ ତଦା ।
ଦୃଷ୍ଟ୍ୱା ସଂଭାଷିତା ଚାପି ସୀତା ହ୍ୟାଶ୍ୱାସିତା ତଥା । ୫ ।
ସେନାଗ୍ରଗା ମନ୍ତ୍ରିସୁତାଃ କିଙ୍କରା ରାବଣାତ୍ମଜଃ ।
ଏତେ ହନୁମତା ତତ୍ର ହ୍ୟେକେନ ବିନିପାତିତାଃ । ୬ ।
ଭୂୟୋ ବନ୍ଧାଦ୍‌ବିମୁକ୍ତେନ ଭାଷୟିତ୍ୱା ଦଶାନନମ୍ ।
ଲଙ୍କା ଭସ୍ମୀକୃତା ଯେନ ପାବକେନେବ ମେଦିନୀ । ୭ ।
ନ କାଲସ୍ୟ ନ ଶକ୍ରସ୍ୟ ନ ବିଷ୍ଣୋର୍ବିତ୍ତପସ୍ୟ ଚ ।
କର୍ମାଣି ତାନି ଶ୍ରୂୟନ୍ତେ ଯାନି ଯୁଦ୍ଧେ ହନୂମତଃ । ୮ ।

---

ବଳ ଥିଲା ତଥାପି ମୋ ମତରେ ଏ ଦୁହେଁ ହନୁମାନଙ୍କର ସମାନ ନ ଥିଲେ । ୨ । ଶୌର୍ଯ୍ୟ, ଦକ୍ଷତା, ବଳ, ଧୈର୍ଯ୍ୟ, ପାଣ୍ଡିତ୍ୟ, ନୀତିପୂର୍ବକ କାର୍ଯ୍ୟ ସାଧନ କରିବାର ଯୋଗ୍ୟତା, ବିକ୍ରମ ଓ ପ୍ରଭାବ ଏ ସମସ୍ତ ହନୁମାନଙ୍କଠାରେ ଆଶ୍ରୟ କରି ରହିଥିଲା । ୩ । ମହାବାହୁ ହନୁମାନ୍ ଯେତେବେଳେ ସମ୍ମୁଖରେ ସମୁଦ୍ରକୁ ଦେଖିଲେ ଏବଂ ବାନରସେନାଙ୍କୁ ବିଷଣ୍ଣ ହୋଇ ପଡ଼ିଥିବାର ଦେଖିଲେ । ସେତେବେଳେ ସେ କପିସେନାଙ୍କୁ ଆଶ୍ୱାସନା ଦେଇ ଶତଯୋଜନ ବିସ୍ତୀର୍ଣ୍ଣ ସମୁଦ୍ରକୁ ଡେଇଁ ଲଙ୍ଘନ କରିଥିଲେ ।୪। ସେ ଲଙ୍କାର ଅଧିଷ୍ଠାତ୍ରୀ ଦେବୀଙ୍କୁ ପରାସ୍ତ କରି ରାବଣର ଅନ୍ତଃପୁରରେ ସୀତାଙ୍କୁ ଦେଖିଥିଲେ ଏବଂ ତାଙ୍କ ସହିତ ବାର୍ତ୍ତାଳାପ କରି ତାଙ୍କୁ ଆଶ୍ୱାସନା ଦେଇଥିଲେ ।୫। ପୁଣି ହନୁମାନ୍ ଏକାକୀ ରାବଣର ସେନାପତିମାନଙ୍କୁ, ମନ୍ତ୍ରିପୁତ୍ରମାନଙ୍କୁ ଏବଂ ରାବଣର ଗୋଟିଏ ପୁତ୍ରକୁ ମଧ୍ୟ ସେଠାରେ ବଧ କରିଥିଲେ ।୬। ତଦନନ୍ତର ବ୍ରହ୍ମାସ୍ତ୍ର ବନ୍ଧନରୁ ମୁକ୍ତ ହୋଇ, ରାବଣକୁ ତିରସ୍କାର କରି, ଅଗ୍ନି ସମସ୍ତ ପୃଥିବୀକୁ ଭସ୍ମ କରିଦେଲାପରି ସେ ଲଙ୍କାକୁ ଭସ୍ମ କରିଦେଇଥିଲେ । ୭ । ଯୁଦ୍ଧରେ ହନୁମାନଙ୍କର ଯେପରି ସବୁ କାର୍ଯ୍ୟ ଶୁଣାଯାଏ, ସେପରି କାର୍ଯ୍ୟ କାଳ ଇନ୍ଦ୍ର, ବିଷ୍ଣୁ, ବା କୁବେର ମଧ୍ୟ କରି ପାରିବେ ନାହିଁ ।୮। ମୁଁ ତ ଏହାଙ୍କ ଭୁଜବଳରେ ହିଁ ଲଙ୍କାକୁ

ଏତସ୍ୟ ବାହୁବୀର୍ୟେଣ ଲଙ୍କା ସୀତା ଚ ଲକ୍ଷ୍ମଣଃ ।
ପ୍ରାପ୍ତା ମୟା ଜୟଶ୍ଚୈବ ରାଜ୍ୟଂ ମିତ୍ରାଣି ବାନ୍ଧବାଃ । ୯ ।
ହନୂମାନ୍ ଯଦି ନୋ ନ ସ୍ୟାଦ୍‌ବାନରାଧିପତେଃ ସଖା ।
ପ୍ରବୃତ୍ତିମପି କୋ ବେତ୍ତୁଂ ଜାନକ୍ୟାଃ ଶକ୍ତିମାନ୍ ଭବେତ୍ ।୧୦।
କିମର୍ଥଂ ବାଲ୍ୟନେନୈବ ସୁଗ୍ରୀବପ୍ରିୟକାମ୍ୟୟା ।
ତଦା ବୈରେ ସମୁତ୍ପନ୍ନେ ନ ଦଗ୍ଧୋ ବୀରୁଧୋ ଯଥା ।୧୧।
ନ ହି ବେଦିତବାନ୍ ମନ୍ୟେ ହନୂମାନାତ୍ମନୋ ବଲମ୍ ।
ଯଦ୍ ଦୃଷ୍ଟବାନ୍ ଜୀବିତେଷ୍ଟଂ କ୍ଲିଶ୍ୟନ୍ତଂ ବାନରାଧିପମ୍ । ୧୨ ।
ଏତନ୍ମେ ଭଗବନ୍ ସର୍ବଂ ହନୂମତି ମହାମତେ ।
ବିସ୍ତରେଣ ଯଥାତତ୍ତ୍ୱଂ କଥୟାମରପୂଜିତ । ୧୩ ।
ରାଘବସ୍ୟ ବଚଃ ଶ୍ରୁତ୍ୱା ହେତୁଯୁକ୍ତମୃଷିସ୍ତଦା ।
ହନୂମତଃ ସମକ୍ଷଂ ତମିଦଂ ବଚନମବ୍ରବୀତ୍ । ୧୪ ।
ସତ୍ୟମେତଦ୍‌ରଘୁଶ୍ରେଷ୍ଠ ଯଦ୍ ବ୍ରବୀଷି ହନୂମତଃ ।
ନ ବଲେ ବିଦ୍ୟତେ ତୁଲ୍ୟୋ ନ ଗତୌ ନ ମତୌ ପରଃ ।୧୫ ।

---

ଜୟ କରି ସୀତା, ଲକ୍ଷ୍ମଣ, ରାଜ୍ୟ, ମିତ୍ର ଏବଂ ବନ୍ଧୁମାନଙ୍କୁ ପାଇଅଛୁ । ୯ । ବାନରାଧିପତିଙ୍କର ସଖା ହନୂମାନ୍ ଯଦି ମୋର ସହାୟ ହୋଇ ନ ଥାନ୍ତେ, ତେବେ ଜାନକୀଙ୍କର ସନ୍ଧାନ କରିବା ପାଇଁ କିଏ ସମର୍ଥ ହୋଇଥାନ୍ତା ? । ୧୦ । ଯେତେବେଳେ ବାଳୀ ଓ ସୁଗ୍ରୀବଙ୍କ ମଧ୍ୟରେ ବୈରଭାବ ଜାତ ହୋଇଗଲା ସେତେବେଳେ ହନୁମାନ କାହିଁକି ସୁଗ୍ରୀବଙ୍କୁ ପ୍ରୀତ କରିବା ପାଇଁ ବାଳୀକୁ ତୃଣ, ଲତା ପରି ଭସ୍ମ କରି ନ ଦେଲେ ? । ୧୧। ମୋର ମନେହୁଏ, ସେତେବେଳେ ହନୂମାନ ନିଜର ବଳ ଜାଣିପାରି ନ ଥିଲେ । ତାହା ନ ହେଲେ ଆପଣାର ପ୍ରାଣପ୍ରିୟ ମିତ୍ର ସୁଗ୍ରୀବଙ୍କୁ କ୍ଲେଶ ପାଉଥିବାର ଦେଖି ସେ ଚୁପଚାପ ବସିରହି ନ ଥାନ୍ତେ । ୧୨ । ଅତଏବ ହେ ଦେବ-ପୂଜିତ ମହାମୁନେ, ହେ ଭଗବନ୍ ! ହନୁମାନଙ୍କ ସମ୍ବନ୍ଧରେ ଯାହା ଯଥାର୍ଥ ବୃତ୍ତାନ୍ତ ଅଛି ସେ ସମସ୍ତ ବିସ୍ତାରପୂର୍ବକ ଆପଣ କହନ୍ତୁ ।" ୧୩। ଅଗସ୍ତ୍ୟ ମୁନି ରାମଚନ୍ଦ୍ରଙ୍କର ଏ ଯୁକ୍ତିଯୁକ୍ତ ବଚନ ଶୁଣି ହନୁମାନଙ୍କ ସମକ୍ଷରେ ହିଁ ତାଙ୍କୁ କହିଲେ । ୧୪ । "ହେ ରାମ ! ଆପଣ ହନୁମାନଙ୍କ ସମ୍ବନ୍ଧରେ ଯେ ସମସ୍ତ କହିଲେ ତାହା ସତ୍ୟ ଅଟେ । ବଳ, ଗତି ଏବଂ ବୁଦ୍ଧିରେ ହନୁମାନଙ୍କର ଅନ୍ୟ କେହି ସମକକ୍ଷ ହୋଇ ପାରିବ ନାହିଁ । ୧୫ । କିନ୍ତୁ ହେ ଶତ୍ରୁନାଶନ ! ମୁନିମାନେ ଏହାଙ୍କୁ ଏପରି ଅମୋଘ ଶାପ

ଅମୋଘଶାପୈଃ ଶାପସ୍ତୁ ଦତ୍ତୋଽସ୍ୟ ଋଷିଭିଃ ପୁରା ।
ନ ବେତ୍ତା ହି ବଲଂ ଯେନ ବଲୀ ସନ୍ନରିମର୍ଦ୍ଦନଃ । ୧୬ ।
ବାଲ୍ୟେଽପ୍ୟେତେନ ଯତ୍ କର୍ମ କୃତଂ ରାମ ମହାବଲ ।
ତନ୍ନ ବର୍ଣ୍ଣୟିତୁଂ ଶକ୍ୟମିତି ବାଲତୟାସ୍ୟ ତେ । ୧୭ ।
ଯଦି ବାସ୍ତି ହ୍ୟଭିପ୍ରାୟସ୍ତଚ୍ଛ୍ରୋତୁଂ ତବ ରାଘବ ।
ସମାଧାୟ ମତିଂ ରାମ ନିଶାମୟ ବଦାମ୍ୟହମ୍ । ୧୮ ।
ସୂର୍ଯ୍ୟଦତ୍ତବରଃ ସ୍ୱର୍ଣ୍ଣଃ ସୁମେରୁର୍ନାମ ପର୍ବତଃ ।
ଯତ୍ର ରାଜ୍ୟଂ ପ୍ରଶାସ୍ତ୍ୟସ୍ୟ କେସରୀ ନାମ ବୈ ପିତା । ୧୯ ।
ତସ୍ୟ ଭାର୍ଯ୍ୟା ବଭୂବେଷ୍ଟା ହ୍ୟଞ୍ଜନେତି ପରିଶ୍ରୁତା ।
ଜନୟାମାସ ତସ୍ୟାଂ ବୈ ବାୟୁରାତ୍ମଜମୁତ୍ତମମ୍ । ୨୦ ।
ଶାଲିଶୃକନିଭାଭାସଂ ପ୍ରାସୂତାମୁଂ ତଦାଞ୍ଜନା ।
ଫଲାନ୍ୟାହର୍ତ୍ତୁକାମା ବୈ ନିଷ୍କ୍ରାନ୍ତା ଗହନେଚରା । ୨୧ ।
ଏଷ ମାତୁର୍ବିୟୋଗାଚ୍ଚ କ୍ଷୁଧୟା ଚ ଭୃଶାର୍ଦ୍ଦିତଃ ।
ରୁରୋଦ ଶିଶୁରତ୍ୟର୍ଥଂ ଶିଶୁଃ ଶରବଣେ ଯଥା । ୨୨ ।

---

ଦେଇଥିଲେ ଯେ ସେ ବଳବାନ୍ ହୋଇ ମଧ୍ୟ ନିଜର ସମସ୍ତ ବଳ ଜାଣିପାରୁନ ଥିଲେ । ୧୬ । ହେ ରାମ ! ବାଲ୍ୟକାଳରେ ମହାବଳୀ ହନୁମାନ୍ ବାଳସୁଲଭ ଚପଳତାରେ ଯେଉଁ ଦୁଷ୍କର କର୍ମ କରିଥିଲେ ତାହାର ବର୍ଣ୍ଣନା କରିବାର ଶକ୍ତି ମୋର ନାହିଁ । ୧୭ । ହେ ରାମ ! ତୁମେ ଯଦି ତାହା ଶୁଣିବାକୁ ଇଚ୍ଛା କରୁଅଛ, ତେବେ ସାବଧାନ ହୋଇ ଶୁଣ, ମୁଁ କହୁଅଛି । ୧୮ । ସୂର୍ଯ୍ୟଙ୍କ ବରଦାନ ପ୍ରଭାବରେ ସୁବର୍ଣ୍ଣରୂପୀ ସୁମେରୁ ନାମକ ଏକ ପର୍ବତ ଅଛି । ସେହିଠାରେ ହନୁମାନଙ୍କର ପିତା କେଶରୀ ରାଜ୍ୟ ଶାସନ କରୁଥିଲେ । ୧୯ । ଅଞ୍ଜନା ନାମରେ ଖ୍ୟାତ ତାହାଙ୍କର ଏକ ପ୍ରିୟା ଭାର୍ଯ୍ୟା ଥିଲେ । ସେହି ଅଞ୍ଜନାଙ୍କ ଗର୍ଭରେ ପବନଦେବ ନିଜ ଔରସରେ ଏକ ଉତ୍ତମ ପୁତ୍ର ଜାତ କରାଇଥିଲେ । ୨୦ । ଅଞ୍ଜନା ଶାଳବୃକ୍ଷର ପଲ୍ଲବସଦୃଶ ରଙ୍ଗବିଶିଷ୍ଟ ଏହି ପୁତ୍ରକୁ ଜାତକରି ଫଳ ଆହରଣ କରିବାପାଇଁ ବନକୁ ଚାଲିଗଲେ । ୨୧ । ସେତେବେଳେ ଏହି ବାଳକ ମାତାର ବିଚ୍ଛେଦରୁ ଏବଂ କ୍ଷୁଧା ହେତୁରୁ ଅତିଶୟ ଦୁଃଖିତ ହୋଇପଡ଼ିଲେ । ସେତେବେଳେ ସେ, ଶରବଣରେ କାର୍ତ୍ତିକେୟଙ୍କ ପରି, ଅତିଶୟ ରୋଦନ କରିବାକୁ ଲାଗିଲେ । ୨୨ ।

ତଦୋଦ୍ୟନ୍ତଂ ବିବସ୍ୱନ୍ତଂ ଜପାପୁଷ୍ପୋତ୍କରୋପମମ୍ ।
ଦଦର୍ଶ ଫଳଲୋଭାଚ୍ଚ ହ୍ୟୁତ୍ପପାତ ରବିଂ ପ୍ରତି ।୨୩।
ବାଲାର୍କାଭିମୁଖୋ ବାଲୋ ବାଲାର୍କ ଇବ ମୂର୍ତ୍ତିମାନ୍ ।
ଗ୍ରହୀତୁକାମୋ ବାଲାର୍କଂ ପ୍ଲବତେଽମ୍ବରମଧ୍ୟଗଃ ।୨୪।
ଏତସ୍ମିନ୍ ପ୍ଲବମାନେ ତୁ ଶିଶୁଭାବେ ହନୂମତି ।
ଦେବଦାନବଯକ୍ଷାଣାଂ ବିସ୍ମୟଃ ସୁମହାନଭୂତ୍ ।୨୫।
ନାପ୍ୟେବଂ ବେଗବାନ୍ ବାୟୁର୍ଗରୁଡ଼ୋ ବା ମନସ୍ତଥା ।
ଯଥାୟଂ ବାୟୁପୁତ୍ରସ୍ତୁ କ୍ରମତେଽମ୍ବରମୁତ୍ତମମ୍ ।୨୬।
ଯଦି ତାବଚ୍ଛିଶୋରସ୍ୟ ତ୍ୱୀଦୃଶୋ ଗତିବିକ୍ରମଃ ।
ଯୌବନଂ ବଳମାସାଦ୍ୟ କଥଂ ବେଗୋ ଭବିଷ୍ୟତି ।୨୭।
ତମନୁପ୍ଲବତେ ବାୟୁଃ ପ୍ଲବନ୍ତଂ ପୁତ୍ରମାତ୍ମନଃ ।
ସୂର୍ଯ୍ୟଦାହଭୟାଦ୍ରକ୍ଷଂସ୍ତୁଷାରଚୟଶୀତଳଃ ।୨୮।
ବହୁଯୋଜନସାହସ୍ରଂ କ୍ରାମତ୍ୟେଷ ଗତୋଽମ୍ବରମ୍ ।
ପିତୁର୍ବଲାଚ୍ଚ ବାଲ୍ୟାଚ୍ଚ ଭାସ୍କରାଭ୍ୟାଶମାଗତଃ ।୨୯।

---

ଇତିମଧ୍ୟରେ ଜବାପୁଷ୍ପସଦୃଶ ରକ୍ତବର୍ଣ୍ଣ ସୂର୍ଯ୍ୟ ଉଦିତ ହେଲେ । ହନୁମାନ୍ ଏହାଙ୍କୁ ଗୋଟିଏ ଫଳ ବୋଲି ବୁଝିକରି ତାହା ଆଣିବା ପାଇଁ ସୂର୍ଯ୍ୟଙ୍କ ଆଡ଼କୁ ଡେଇଁଗଲେ । ।୨୩। ସେତେବେଳେ ବାଳସୂର୍ଯ୍ୟଙ୍କୁ ଧରିବା ଇଚ୍ଛାରେ ମୂର୍ତ୍ତିମାନ୍ ବାଳସୂର୍ଯ୍ୟସଦୃଶ ଏହି ବାଳକ ହନୁମାନ୍ ଆକାଶ ମଧ୍ୟଭାଗରେ ଯାଇ ପହଞ୍ଚିଲେ ।୨୪। ଏହି ଶିଶୁ ହନୁମାନ୍ ଯେତେବେଳେ ଡେଇଁକରି ଏତେ ଉଚ୍ଚକୁ ଚାଲିଗଲେ ସେତେବେଳେ ଦେବତା, ଦାନବ ଓ ଯକ୍ଷମାନେ ଅତିଶୟ ବିସ୍ମିତ ହେଲେ ।୨୫। ସେମାନେ ନିଜ ଭିତରେ କଥାବାର୍ତ୍ତା ହେଲେ, 'ଯେପରି ବେଗରେ ଏ ବାୟୁପୁତ୍ର ଉଡ଼ି ଚାଲି-ଯାଉଛି ସେପରି ବେଗ ତ ବାୟୁ, ଗରୁଡ଼ ଏବଂ ମନଠାରେ ମଧ୍ୟ ନାହିଁ ! ।୨୬। ଶିଶୁ ଅବସ୍ଥାରେ ଯେବେ ଏହାର ଏପରି ଗତି ଏବଂ ବଳ, ତେବେ ଯୁବାବସ୍ଥାରେ ପୂର୍ଣ୍ଣ ଯୌବନ ପ୍ରାପ୍ତ ହେଲେ ଏ କିପରି ବଳବାନ୍ ଓ ବେଗଶାଳୀ ନ ହେବ ?' ।୨୭। ପୁତ୍ର ସ୍ନେହରେ ନିଜର ପୁତ୍ରର ପଛେ ପଛେ ପବନଦେବ ଚାଲିଥିଲେ ଏବଂ ସୂର୍ଯ୍ୟଙ୍କ ତାପରୁ ପୁତ୍ରକୁ ରକ୍ଷା କରିବା ପାଇଁ ତୁଷାରସଦୃଶ ଥଣ୍ଡା ହୋଇ ସେ ହନୁମାନଙ୍କୁ ଶୀତଳ କରି ଦେଉଥିଲେ ।୨୮। ହନୁମାନ୍ ବାଲ୍ୟଚପଳତାରେ ଏବଂ ପିତାଙ୍କର ସହାୟତାରେ କେତେ ସହସ୍ର ଯୋଜନ ଆକାଶବକ୍ଷ ଉଠି ସୂର୍ଯ୍ୟଙ୍କ

ଶିଶୁରେଷ ତ୍ୱଦୋଷଜ୍ଞ ଇତି ମତ୍ୱା ଦିନେଶ୍ୱରଃ ।
କାର୍ଯ୍ୟଂ ଚାସ୍ମିନ୍ ସମାୟତ୍ତମିତ୍ୟେବଂ ନ ଦଦାହ ସଃ । ୩୦ ।
ଯମେବ ଦିବସଂ ହ୍ୟେଷ ଗ୍ରହୀତୁଂ ଭାସ୍କରଂ ପ୍ଳୁତଃ ।
ତମେବ ଦିବସଂ ରାହୁର୍ଜିଘୃକ୍ଷତି ଦିବାକରମ୍ । ୩୧ ।
ଅନେନ ସ ପରାମୃଷ୍ଟୋ ରାମ ସୂର୍ଯ୍ୟରଥୋପରି ।
ଅପକ୍ରାନ୍ତସ୍ତତସ୍ତ୍ରସ୍ତୋ ରାହୁଶ୍ଚନ୍ଦ୍ରାର୍କମର୍ଦ୍ଦନଃ । ୩୨ ।
ସ ଇନ୍ଦ୍ରଭବନଂ ଗତ୍ୱା ସରୋଷଃ ସିଂହିକାସୁତଃ ।
ଅବ୍ରବୀଦ୍ ଭ୍ରୁକୁଟିଂ କୃତ୍ୱା ଦେବଂ ଦେବଗଣୈର୍ବୃତମ୍ । ୩୩ ।
ବୁଭୁକ୍ଷାପନୟଂ ଦତ୍ତ୍ୱା ଚନ୍ଦ୍ରାର୍କୌ ମମ ବାସବ ।
କିମିଦଂ ତତ୍ତ୍ୱୟା ଦତ୍ତମନ୍ୟସ୍ୟ ବଲବୃତ୍ରହନ୍ । ୩୪ ।
ଅଦ୍ୟାହଂ ପର୍ବକାଲେ ତୁ ଜିଘୃକ୍ଷୁଃ ସୂର୍ଯ୍ୟମାଗତଃ ।
ଅଥାନ୍ୟୋ ରାହୁରାସାଦ୍ୟ ଜଗ୍ରାହ ସହସା ରବିମ୍ । ୩୫ ।
ସ ରାହୋର୍ବଚନଂ ଶ୍ରୁତ୍ୱା ବାସବଃ ସଂଭ୍ରମାନ୍ୱିତଃ ।
ଉତ୍ପପାତାସନଂ ହିତ୍ୱା ଉଦ୍ୱହନ୍ କାଞ୍ଚନୀଂ ସ୍ରଜମ୍ । ୩୬ ।

---

ନିକଟରେ ପହଞ୍ଚିଗଲେ । ୨୯ । ସେତେବେଳେ ସୂର୍ଯ୍ୟଦେବ ବିଚାରିଲେ ଯେ 'ଏ ଶିଶୁ ଅଟେ । ଏହାର ଦୋଷ ଅଦୋଷ ଜ୍ଞାନ ନାହିଁ । ପୁଣି ଭବିଷ୍ୟତ୍‌ରେ ଏହାଦ୍ୱାରା ଦେବତାମାନଙ୍କର ଏକ ବଡ଼ କାର୍ଯ୍ୟ ସାଧନ କରିବାର ଅଛି ।' ଅତଏବ ସୂର୍ଯ୍ୟ ଏହାକୁ ଭସ୍ମ କରିଦେଲେ ନାହିଁ । ୩୦ । ଯେଉଁଦିନ ଏ ସୂର୍ଯ୍ୟଙ୍କୁ ଧରିବା ପାଇଁ ଆକାଶକୁ ଡେଇଁଥିଲେ ସେଦିନ ରାହୁ ମଧ୍ୟ ସୂର୍ଯ୍ୟଙ୍କୁ ଗ୍ରାସ କରିବା ପାଇଁ ଚାଲିଥିଲା । ୩୧ । ଏ ଯେତେବେଳେ ସୂର୍ଯ୍ୟଙ୍କ ରଥ ଉପରେ ପହଞ୍ଚି ରାହୁକୁ ଧରି ପକାଇଲେ, ସେତେବେଳେ ଚନ୍ଦ୍ର ଓ ସୂର୍ଯ୍ୟଙ୍କର ମର୍ଦ୍ଦନକାରୀ ରାହୁ ଭୟଭୀତ ହୋଇ ସେଠାରୁ ଚାଲିଗଲା । ୩୨ । ସିଂହିକାପୁତ୍ର ରାହୁ କ୍ରୋଧପୂର୍ଣ୍ଣ ହୋଇ ଇନ୍ଦ୍ରଙ୍କ ଭବନକୁ ଗଲା ଏବଂ ସେଠାରେ ଭ୍ରୂକୁଟି ପ୍ରଦର୍ଶନ କରି ଦେବଗଣଙ୍କଦ୍ୱାରା ପରିବେଷ୍ଟିତ ଇନ୍ଦ୍ରଦେବଙ୍କୁ କହିଲା । ୩୩ । "ହେ ଇନ୍ଦ୍ର ! ତୁମେ ମୋର କ୍ଷୁଧା ଦୂର କରିବାପାଇଁ ଚନ୍ଦ୍ର ଓ ସୂର୍ଯ୍ୟଙ୍କୁ ମୋତେ ଦେଇଥିଲ । ହେ ବଳବୃତ୍ରହନ୍ତା ! ପୁଣି ବର୍ତ୍ତମାନ ତାହା କିପରି ଅନ୍ୟକୁ ଦେଇଦେଲ ? । ୩୪ । ଆଜି ପର୍ବକାଳରେ ମୁଁ ସୂର୍ଯ୍ୟଙ୍କୁ ଗ୍ରାସ କରିବା ପାଇଁ ଗଲାବେଳକୁ ଅନ୍ୟ ଏକ ରାହୁ ଆସି ସୂର୍ଯ୍ୟଙ୍କୁ ହଠାତ୍ ଗ୍ରାସ କରିଦେଲା" । ୩୫ । ରାହୁର ଏ କଥା ଶୁଣି କାଞ୍ଚନମାଳାଧାରୀ ଇନ୍ଦ୍ର ଉଦ୍‌ବିଗ୍ନ ହୋଇପଡ଼ିଲେ ଏବଂ ନିଜର ଆସନ ଛାଡ଼ି ଉଠି ଠିଆହେଲେ । ୩୬ ।

ତତଃ କୈଳାସକୂଟାଭଂ ଚତୁର୍ଦନ୍ତଂ ମଦସ୍ରବମ୍ ।
ଶୃଙ୍ଗାରଧାରିଣଂ ପ୍ରାଂଶୁଂ ସ୍ୱର୍ଣଘଣ୍ଟାଟ୍ଟହାସିନମ୍ । ୩୭ ।
ଇନ୍ଦ୍ରଃ କରୀନ୍ଦ୍ରମାରୁହ୍ୟ ରାହୁଂ କୃତ୍ୱା ପୁରଃସରମ୍ ।
ପ୍ରାଗାଦ୍ ଯତ୍ରାଭବତ୍ ସୂର୍ଯଃ ସହାନେନ ହନୂମତା । ୩୮ ।
ଅଥାତିରଭସେନାଗାଦ୍ରାହୁରୁତ୍ସୃଜ୍ୟ ବାସବମ୍ ।
ଅନେନ ଚ ସ ବୈ ଦୃଷ୍ଟଃ ପ୍ରଧାବନ୍ ଶୈଳକୂଟବତ୍ । ୩୯ ।
ତତଃ ସୂର୍ଯଂ ସମୁତ୍ସୃଜ୍ୟ ରାହୁଂ ଫଲମବେକ୍ଷ୍ୟ ଚ ।
ଉତ୍ପପାତ ପୁନର୍ବ୍ୟୋମ ଗ୍ରହୀତୁଂ ସିଂହିକାସୁତମ୍ । ୪୦ ।
ଉତ୍ସୃଜ୍ୟାର୍କମିମଂ ରାମ ପ୍ରଧାବନ୍ତଂ ପ୍ଲବଙ୍ଗମମ୍ ।
ଅବେକ୍ଷ୍ୟୈବଂ ପରାବୃତ୍ୟ ମୁଖଶେଷଃ ପରାଙ୍ମୁଖଃ । ୪୧ ।
ଇନ୍ଦ୍ରମାଶଂସମାନସ୍ତୁ ତ୍ରାତାରଂ ସିଂହିକାସୁତଃ ।
ଇନ୍ଦ୍ର ଇନ୍ଦ୍ରେତି ସଂତ୍ରାସାନ୍ମୁହୁର୍ମୁହୁରଭାଷତ । ୪୨ ।
ରାହୋର୍ବିକ୍ରୋଶମାନସ୍ୟ ପ୍ରାଗେବାଲକ୍ଷିତଂ ସ୍ୱରମ୍ ।
ଶ୍ରୁତ୍ୱେନ୍ଦ୍ରୋବାଚ ମା ଭୈଷୀରହମେନଂ ନିଷୂଦୟେ । ୪୩ ।

---

ସେ କୈଳାସ ପର୍ବତଶିଖରସଦୃଶ ଉଚ୍ଚ, ଚତୁର୍ଦ୍ଦନ୍ତବିଶିଷ୍ଟ, ମଦସ୍ରାବୀ, ସୁସଜ୍ଜିତ ସୁବର୍ଣ୍ଣ ଘଣ୍ଟାଗୁଳି ଅଟ୍ଟହାସ କରୁଥିବା ହାତୀ ଉପରେ ଆରୋହଣ କରି ଏବଂ ରାହୁକୁ ଆଗରେ ଧରି, ସୂର୍ଯ୍ୟ ଓ ହନୁମାନ୍ ଯେଉଁଠାରେ ଥିଲେ, ସେଠାକୁ ଗଲେ ।୩୭-୩୮। ଇନ୍ଦ୍ରଙ୍କୁ ପଛରେ ଛାଡ଼ି ରାହୁ ପ୍ରଥମେ ସୂର୍ଯ୍ୟଙ୍କ ସମ୍ମୁଖରେ ଖୁବ ବେଗରେ ପହଞ୍ଚିଗଲା, ମାତ୍ର ହନୁମାନଙ୍କର ପର୍ବତଶୃଙ୍ଗାକାର ବିଶାଳ ଶରୀରକୁ ଦେଖିବାମାତ୍ରେ ସେ ସେଠାରୁ ପଳାଇଗଲା । ୩୯ । ହନୁମାନ୍ ରାହୁକୁ ଦେଖି ବିଚାରିଲେ ଯେ ଏହା ମଧ୍ୟ ଏକ ଫଳ ଅଟେ । ଅତଏବ ସେ ସୂର୍ଯ୍ୟଙ୍କୁ ଛାଡ଼ିଦେଇ ରାହୁକୁ ଧରିବା ପାଇଁ ପୁଣି ଆକାଶରେ ଡେଇଁଗଲେ । ୪୦ । ହେ ରାମ ! ହନୁମାନ୍ ସୂର୍ଯ୍ୟଙ୍କୁ ଛାଡ଼ି ରାହୁ ପଛରେ ଦୌଡ଼ିବାର ଦେଖି କେବଳ ମୁଖମାତ୍ରବିଶିଷ୍ଟ ରାହୁ ପରାଙ୍ମୁଖ ହୋଇ ପଳାଇଗଲା । ୪୧ । ସିଂହିକାପୁତ୍ର ରାହୁ ନିଜର ରକ୍ଷାକାରୀ ଇନ୍ଦ୍ରଙ୍କୁ ଏହି କଥା ଜଣାଇବା ପାଇଁ ଭୟଭୀତ ହୋଇ ବାରମ୍ବାର 'ହେ ଇନ୍ଦ୍ର, ହେ ଇନ୍ଦ୍ର' କହି ଚିତ୍କାର କରିବାକୁ ଲାଗିଲା । ୪୨ । ରାହୁର ଦୁଃଖାର୍ତ୍ତ ବଚନ ଶୁଣି ଏବଂ ତାହାର ସ୍ୱର ବାରିପାରି ଇନ୍ଦ୍ର କହିଲେ, "ଡର ନାହିଁ, ମୁଁ ଏହାକୁ ମାରିଦେଉଛି ।" ୪୩ ।

ଐରାବତଂ ତତୋ ଦୃଷ୍ଟ୍ୱା ମହତ୍ତଦ୍ୱଦମିତ୍ୟପି ।
ଫଲଂ ମତ୍ୱା ହସ୍ତିରାଜମଭିଦୁଦ୍ରାବ ମାରୁତିଃ । ୪୪ ।
ତଥାସ୍ୟ ଧାବତୋ ରୂପମୈରାବତଜିଘୃକ୍ଷୟା ।
ମୁହୂର୍ତ୍ତମଭବଦ୍‌ଘୋରମିନ୍ଦ୍ରାଗ୍ନ୍ୟାରିବ ଭାସ୍ୱରମ୍ । ୪୫ ।
ଏବମାଧାବମାନଂ ତୁ ନାତିକ୍ରୁଦ୍ଧଃ ଶଚୀପତିଃ ।
ହସ୍ତାନ୍ତାଦତିମୁକ୍ତେନ କୁଲିଶେନାଭ୍ୟତାଡ଼ୟତ୍ । ୪୬ ।
ତତୋ ଗିରୌ ପପାତୈଷ ଇନ୍ଦ୍ରବଜ୍ରାଭିତାଡ଼ିତଃ ।
ପତମାନସ୍ୟ ଚୈତସ୍ୟ ବାମୋ ହନୁରଭଜ୍ୟତ । ୪୭ ।
ତସ୍ମିଂସ୍ତୁ ପତିତେ ବାଲେ ବଜ୍ରତାଡ଼ନବିହ୍ୱଳେ ।
ଚୁକ୍ରୋଧେନ୍ଦ୍ରାୟ ପବନଃ ପ୍ରଜାନାମହିତାୟ ସଃ । ୪୮ ।
ପ୍ରଚାରଂ ସ ତୁ ସଂଗୃହ୍ୟ ପ୍ରଜାସ୍ୱନ୍ତର୍ଗତଃ ପ୍ରଭୁଃ ।
ଗୁହାଂ ପ୍ରବିଷ୍ଟଃ ସ୍ୱସୁତଂ ଶିଶୁମାଦାୟ ମାରୁତଃ ।୪୯।
ବିଣ୍ମୂତ୍ରାଶୟମାବୃତ୍ୟ ପ୍ରଜାନାଂ ପରମାର୍ତ୍ତିକୃତ୍ ।
ରୁରୋଧ ସର୍ବଭୂତାନି ଯଥା ବର୍ଷାଣି ବାସବଃ । ୫୦ ।

---

ଇତିମଧ୍ୟରେ ହନୁମାନ୍ ଐରାବତ ହାତୀକୁ ଏକ ବଡ଼ ଫଳ ବୋଲି ବିଚାରି ତା ଆଡ଼କୁ ଧାଇଁଲା । ୪୪ । ହନୁମାନ୍ ଐରାବତକୁ ଧରିବା ପାଇଁ ଏପରି ଧାଉଁଥିବାବେଳେ ତାହାର ରୂପ ମୁହୂର୍ତ୍ତକ ମଧ୍ୟରେ ଘୋର କାଳାନଳସଦୃଶ ଭୟାନକ ହୋଇଗଲା । ୪୫ । ଏହାକୁ ଦୌଡ଼ିବାର ଦେଖି ଶଚୀପତି ଇନ୍ଦ୍ର ସାମାନ୍ୟ କ୍ରୋଧ କରି ସାଧାରଣ ଭାବରେ ଆପଣ ତାହାଙ୍କ ବଜ୍ରଦ୍ୱାରା ଏହାକୁ ପ୍ରହାର କଲେ । ୪୬ । ବଜ୍ର ଆଘାତରେ ହନୁମାନ୍ ପର୍ବତ ଉପରେ ପଡ଼ିଗଲେ ଏବଂ ପଡ଼ିବାଦ୍ୱାରା ତାଙ୍କ ହନୁର ବାମଭାଗ ଭାଙ୍ଗିଯାଇ ବଙ୍କା ହୋଇଗଲା । ୪୭ । ହନୁମାନ୍ ଯେତେବେଳେ ବଜ୍ର ଆଘାତରେ ମୂର୍ଚ୍ଛିତ ହୋଇ ପଡ଼ିଗଲେ, ସେତେବେଳେ ପବନଦେବ ଇନ୍ଦ୍ରଙ୍କ ଉପରେ କ୍ରୁଦ୍ଧ ହୋଇ ଇନ୍ଦ୍ରଙ୍କ ପ୍ରଜାମାନଙ୍କର ଅନିଷ୍ଟ କରିବାପାଇଁ ବାହାରିଲେ । ୪୮ । ସମସ୍ତଙ୍କ ଶରୀର ମଧ୍ୟରେ ରହିଥିବା ପବନଦେବ ନିଜର ସଞ୍ଚାର ବନ୍ଦ କରିଦେଇ ନିଜର ଶିଶୁ ସନ୍ତାନକୁ କ୍ରୋଡ଼ରେ ଧରି ଏକ ଗୁହା ଭିତରକୁ ପ୍ରବେଶ କଲେ । ୪୯ । ଜଳର ବୃଷ୍ଟିକୁ ବନ୍ଦ କରିଦେଇ ଇନ୍ଦ୍ର ଯେପରି ସମସ୍ତ ପ୍ରାଣୀଙ୍କୁ ପୀଡ଼ିତ କରିଥାଆନ୍ତି, ସେହିପରି ପବନଦେବ ସମସ୍ତ ପ୍ରାଣୀଙ୍କର ଅଧୋବାୟୁକୁ ବନ୍ଦ କରିଦେଇ ପ୍ରଜା-ମାନଙ୍କୁ ଅତିଶୟ ପୀଡ଼ିତ କରିବାକୁ ଲାଗିଲେ । ୫୦ । ବାୟୁ କୁପିତ ହେବାରୁ

ବାୟୁପ୍ରକୋପାଦ୍‌ଭୂତାନି ନିରୁଚ୍ଛ୍ୱାସାନି ସର୍ବତଃ ।
ସନ୍ଧିଭିର୍ଭିଦ୍ୟମାନୈଶ୍ଚ କାଷ୍ଠଭୂତାନି ଜଜ୍ଞିରେ । ୫୧ ।
ନିଃସ୍ୱାଧ୍ୟାୟବଷଟ୍‌କାରଂ ନିଷ୍କ୍ରିୟଂ ଧର୍ମବର୍ଜିତମ୍ ।
ବାୟୁପ୍ରକୋପାତ୍ତ୍ରୈଲୋକ୍ୟଂ ନିରୟସ୍ଥମିବାଭବତ୍ । ୫୨ ।
ତତଃ ପ୍ରଜାଃ ସଗନ୍ଧର୍ବାଃ ସଦେବାସୁରମାନୁଷାଃ ।
ପ୍ରଜାପତିଂ ସମାଧାବନ୍ ଦୁଃଖିତାଶ୍ଚ ସୁଖେଚ୍ଛୟା । ୫୩ ।
ଉଚୁଃ ପ୍ରାଞ୍ଜଳୟୋ ଦେବା ମହୋଦରନିଭୋଦରାଃ ।
ତ୍ୱୟା ନୁ ଭଗବନ୍ ସୃଷ୍ଟାଃ ପ୍ରଜାନାଥ ଚତୁର୍ବିଧାଃ । ୫୪ ।
ତ୍ୱୟା ଦତ୍ତୋଽୟମସ୍ମାକମାୟୁଷଃ ପବନଃ ପତିଃ ।
ସୋଽସ୍ମାନ୍ ପ୍ରାଣେଶ୍ୱରୋ ଭୂତ୍ୱା କସ୍ମାଦେଷୋଽଦ୍ୟ ସତ୍ତମ । ୫୫ ।
ରୁରୋଧ ଦୁଃଖଂ ଜନୟନ୍ନନ୍ତଃପୁର ଇବ ସ୍ତ୍ରିୟଃ ।
ତସ୍ମାତ୍ତ୍ୱାଂ ଶରଣଂ ପ୍ରାପ୍ତା ବାୟୁନୋପହତା ବୟମ୍ । ୫୬ ।
ବାୟୁସଂରୋଧଜଂ ଦୁଃଖମିଦଂ ନୋ ନୁଦ ଦୁଃଖହନ୍ ।
ଏତତ୍ ପ୍ରଜାନାଂ ଶ୍ରୁତ୍ୱା ତୁ ପ୍ରଜାନାଥଃ ପ୍ରଜାପତିଃ । ୫୭ ।

---

ପ୍ରାଣୀମାନେ ଶ୍ୱାସ ନେଇ ପାରିଲେ ନାହିଁ ଏବଂ ସେମାନଙ୍କ ଶରୀରର ସମସ୍ତ ଗ୍ରନ୍ଥି କାଷ୍ଠସଦୃଶ ନିଶ୍ଚଳ ହୋଇଗଲା । ୫୧ । ବାୟୁ କୁପିତ ହେବାରୁ କୌଣସିଠାରେ ସ୍ୱାଧ୍ୟାୟ, ବଷଟ୍‌କାର ବା ଅନ୍ୟ କୌଣସି ପ୍ରକାର ଧାର୍ମିକ କ୍ରିୟାକଳାପ ହେଲା ନାହିଁ । ସେତେବେଳେ ତିନିଲୋକ ଧର୍ମ-କର୍ମ-ରହିତ ହୋଇ ନରକରେ ବାସ କଲାପରି ଜଣାପଡ଼ିଲା । ୫୨ । ତଦନନ୍ତର କି ଦେବ, କି ଗନ୍ଧର୍ବ, କି ମନୁଷ୍ୟ ସମସ୍ତେ ଦୁଃଖରେ ହାହାକାର କରି ସୁଖଲାଭ ଇଚ୍ଛାରେ ବ୍ରହ୍ମାଙ୍କ ନିକଟକୁ ଧାଇଁଲେ । ୫୩ । ସେମାନେ ଜଳୋଦର ରୋଗୀ ପରି ପେଟ ଫୁଲାଇ ଏବଂ ହାତଯୋଡ଼ି ବ୍ରହ୍ମାଙ୍କୁ କହିଲେ, "ହେ ଭଗବନ୍, ହେ ପ୍ରଜାନାଥ ! ଆପଣ ଚାରି ପ୍ରକାର ଜୀବ ସୃଷ୍ଟି କରିଅଛନ୍ତି । ୫୪ । ହେ ଶ୍ରେଷ୍ଠଦେବ ! ଆପଣ ପବନକୁ ଆମ ସମସ୍ତଙ୍କ ଆୟୁର ଅଧିପତି କରି ଦେଇଛନ୍ତି; କିନ୍ତୁ ଆଜି ଆମ୍ଭମାନଙ୍କର ପ୍ରାଣେଶ୍ୱର ସେହି ବାୟୁ ଅନ୍ତଃପୁରରେ ସ୍ତ୍ରୀଲୋକଙ୍କପରି ଲୁଚି ରହି ଆମକୁ କାହିଁକି ଏପରି କଷ୍ଟ ଦେଉଛନ୍ତି ? ଅତଏବ ଆମେ ସମସ୍ତେ ଆପଣଙ୍କ ଶରଣାପନ୍ନ ହୋଇଅଛୁ । ୫୫-୫୬ । ହେ ଦୁଃଖହର ! ଆପଣ ଆମ୍ଭମାନଙ୍କର ଏହି ପବନ-ରୋଧସମ୍ବନ୍ଧୀ ଦୁଃଖ ଦୂର କରନ୍ତୁ ।" ପ୍ରଜାମାନଙ୍କ ବଚନ ଶୁଣି ପ୍ରଜାନାଥ

କାରଣାଦତ ଏବ୍ଦ୍ଧ୍ୱାସୌ ପ୍ରଜାଃ ପୁନରଭ୍ୟଷତ ।
ଯସ୍ମିଂଶ୍ଚ କାରଣେ ବାୟୁଶ୍ଚୁକ୍ରୋଧ ଚ ରୁରୋଧ ଚ । ୫୮ ।
ପ୍ରଜାଃ ଶୃଣୁଧ୍ୱଂ ତତ୍ସର୍ବଂ ଶ୍ରୋତବ୍ୟଂ ଚାତ୍ମନଃ କ୍ଷମମ୍ ।
ପୁତ୍ରସ୍ତସ୍ୟାମରେଶେନ ଇନ୍ଦ୍ରେଣାଦ୍ୟ ନିପାତିତଃ । ୫୯ ।
ରାହୋର୍ବଚନମାସ୍ଥାୟ ତତଃ ସ କୁପିତୋଽନିଲଃ ।
ଅଶରୀରଃ ଶରୀରେଷୁ ବାୟୁଶ୍ଚରତି ପାଲୟନ୍ ।୬୦ ।
ଶରୀରଂ ହି ବିନା ବାୟୁଂ ସମତାଂ ଯାତି ଦାରୁଭିଃ ।
ବାୟୁଃ ପ୍ରାଣଃ ସୁଖଂ ବାୟୁର୍ବାୟୁଃ ସର୍ବମିଦଂ ଜଗତ୍ । ୬୧ ।
ବାୟୁନା ସଂପରିତ୍ୟକ୍ତଂ ନ ସୁଖଂ ବିନ୍ଦତେ ଜଗତ୍ ।
ଅଦ୍ୟୈବ ଚ ପରିତ୍ୟକ୍ତଂ ବାୟୁନା ଜଗଦାୟୁଷା । ୬୨ ।
ଅଦ୍ୟୈବ ତେ ନିରୁଚ୍ଛ୍ୱାସା କାଷ୍ଠକୁଡ୍ୟୋପମାଃ ସ୍ଥିତାଃ ।
ତଦ୍ ଯାମସ୍ତତ୍ର ଯତ୍ରାସ୍ତେ ମାରୁତୋ ରୁକପ୍ରଦୋ ହି ନଃ ।
ମା ବିନାଶଂ ଗମିଷ୍ୟାମ ଅପ୍ରସାଦ୍ୟାଦିତେଃ ସୁତାଃ । ୬୩ ।

---

ବ୍ରହ୍ମା କହିଲେ, "ବାୟୁର ସଞ୍ଚାର ବନ୍ଦ ହୋଇଯିବାର ଅବଶ୍ୟ କୌଣସି କାରଣ ଅଛି, ଯେଉଁ କାରଣରୁ ବାୟୁ କ୍ରୋଧ କରି ଆପଣା ସଞ୍ଚାର ବନ୍ଦ କରି ଦେଇଛନ୍ତି । ହେ ପ୍ରଜାଗଣ ! ତାହା କହିଦେବା ମୋର ଉଚିତ ଓ ଶୁଣିବା ତୁମ୍ଭର କର୍ତ୍ତବ୍ୟ ଅଟେ ସୁରପତି ଇନ୍ଦ୍ର ରାହୁର କଥାରେ ବାୟୁଙ୍କ ପୁତ୍ରକୁ ମାରିଦେଇଛନ୍ତି । ସେହିହେତୁ ପବନ-ଦେବ କ୍ରୁଦ୍ଧ ହୋଇଯାଇଛନ୍ତି । ପବନଦେବ ନିଜେ ଅଶରୀରୀ ହେଲେ ମଧ୍ୟ ସମସ୍ତ ପ୍ରାଣଧାରୀମାନଙ୍କ ଶରୀରରେ ବିଚରଣ କରି ସମସ୍ତଙ୍କୁ ପାଳନ କରନ୍ତି । ୫୭-୬୦ । ବାୟୁହୀନ ଶରୀର କାଷ୍ଠସଦୃଶ ହୋଇଯାଏ, ଅତଏବ ବାୟୁହିଁ ପ୍ରାଣ, ବାୟୁହିଁ ସୁଖ ଏବଂ ବାୟୁହିଁ ସମସ୍ତ ଜଗତସ୍ୱରୂପ ଅଟନ୍ତି । ୬୧ । ବାୟୁ ନିଜର ସଞ୍ଚାର ବନ୍ଦ କରିଦେଲେ ଜଗତକୁ ସୁଖ ମିଳି ପାରିବ ନାହିଁ । ଦେଖ ଆଜି ଯେତେବେଳେ ସେ ନିଜର ସଞ୍ଚାର ବନ୍ଦ କରିଦେଇଛନ୍ତି, ସେତେବେଳେ ସମସ୍ତ ସଂସାରର ଦଶା କଅଣ ହୋଇଛି ? । ୬୨ । ବିନା ଶ୍ୱାସରେ ଲୋକେ କାଷ୍ଠ ଏବଂ ପ୍ରାଚୀର ସଦୃଶ ହୋଇଯାନ୍ତି । ଅତଏବ ସକଳ ଦୁଃଖଦାୟକ ବାୟୁ ଯେଉଁଠାରେ ଅଛନ୍ତି ସେଠାକୁ ଆମେ ସମସ୍ତେ ଯିବା ଦରକାର । ହେ ଅଦିତିପୁତ୍ରଗଣ ! ପବନ-ଦେବଙ୍କୁ ପ୍ରସନ୍ନ ନ କରି ଆମେ ସମସ୍ତେ ମରିଯିବା ଠିକ ନୁହେଁ ।" ୬୩ । ଏହା କହି

ତତଃ ପ୍ରଜାଭିଃ ସହିତଃ ପ୍ରଜାପତିଃ
ସ ଦେବଗନ୍ଧର୍ବଭୁଜଙ୍ଗଗୁହ୍ୟକୈଃ ।
ଜଗାମ ତତ୍ରାସ୍ୟତି ଯତ୍ର ମାରୁତଃ
ସୁତଂ ସୁରେନ୍ଦ୍ରାଭିହତଂ ପ୍ରଗୃହ୍ୟ ସଃ । ୬୪ ।
ତତୋଽର୍କବୈଶ୍ୱାନରକାଞ୍ଚନପ୍ରଭମ୍
ସୁତଂ ତଦୋତ୍ସଙ୍ଗଗତଂ ସଦାଗତେଃ ।
ଚତୁର୍ମୁଖୋ ବୀକ୍ଷ୍ୟ କୃପାମଥାକରୋତ୍
ସ ଦେବଗନ୍ଧର୍ବଋଷିଯକ୍ଷରାକ୍ଷସୈଃ । ୬୫ ।

ଇତି ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ହନୂମଦୁତ୍ପତ୍ତିର୍ନାମ ପଞ୍ଚତ୍ରିଂଶଃ ସର୍ଗଃ ।

---

## ଷଟ୍‌ତ୍ରିଂଶଃ ସର୍ଗଃ

### ହନୂମଦ୍‌ବରପ୍ରାପ୍ତ୍ୟାଦି

ତତଃ ପିତାମହଂ ଦୃଷ୍ଟ୍ୱା ବାୟୁଃ ପୁତ୍ରବଧାର୍ଦିତଃ ।
ଶିଶୁକଂ ତଂ ସମାଦାୟ ଉତ୍ତସ୍ଥୌ ଧାତୁରଗ୍ରତଃ । ୧ ।

---

ବ୍ରହ୍ମା ଦେବତା, ଗନ୍ଧର୍ବ, ଭୁଜଙ୍ଗ, ଗୁହ୍ୟକ ଆଦି ସମସ୍ତ ପ୍ରଜାଙ୍କୁ ସଙ୍ଗରେ ଧରି, ଇନ୍ଦ୍ରଙ୍କଦ୍ୱାରା ନିହତ ନିଜର ପୁତ୍ରକୁ ଧରି, ପବନଦେବ ଯେଉଁଠାରେ ନିଶ୍ଚଳ ହୋଇ ବସିଥିଲେ, ସେଠାକୁ ଗଲେ । ୬୪ । ସୂର୍ଯ୍ୟ, ଅଗ୍ନି ଅଥବା ସୁବର୍ଣ୍ଣ ପରି କାନ୍ତିବିଶିଷ୍ଟ ହନୁମାନଙ୍କୁ ସଦାଗତିଶୀଳ ପବନଦେବଙ୍କ କୋଡ଼ରେ ଦେଖି ବ୍ରହ୍ମା ଦେବତା, ଗନ୍ଧର୍ବ, ଋଷି ଓ ରାକ୍ଷସମାନଙ୍କ ସହିତ ତାହାଙ୍କ ପ୍ରତି କୃପା ପ୍ରକାଶ କଲେ । ୬୫ ।

---

## ୩୬ଶ ସର୍ଗ

### (ହନୁମାନଙ୍କ ବରପ୍ରାପ୍ତି)

ପୁତ୍ରଶୋକରେ ଦୁଃଖିତ ପବନଦେବ ପିତାମହଙ୍କୁ ଦେଖିବାମାତ୍ରେ ସେହି ଶିଶୁକୁ ଧରି ଉଠି ବ୍ରହ୍ମାଙ୍କ ସମ୍ମୁଖରେ ଉଭା ହୋଇଗଲେ । ୧ । ସୁବର୍ଣ୍ଣ ଭୂଷଣରେ

ଚଲତ୍‌କୁଣ୍ଡଲମୌଳିସ୍ରକ୍‌ତପନୀୟବିଭୂଷଣଃ ।
ପାଦୟୋର୍ନ୍ୟପତଦ୍ ବାୟୁସ୍ତ୍ରିରୁପସ୍ଥାୟ ବେଧସେ । ୨।
ତଂ ତୁ ବେଦବିଦା ତେନ ଲମ୍ବାଭରଣଶୋଭିନା ।
ବାୟୁମୁତ୍ଥାପ୍ୟ ହସ୍ତେନ ଶିଶୁଂ ତଂ ପରିମୃଷ୍ଟବାନ୍ । ୩ ।
ସ୍ପୃଷ୍ଟମାତ୍ରସ୍ତତଃ ସୋଽଥ ସଲୀଲଂ ପଦ୍ମଯୋନିନା ।
ଜଲସିକ୍ତଂ ଯଥା ସସ୍ୟଂ ପୁନର୍ଜୀବିତମାପ୍ତବାନ୍ । ୪ ।
ପ୍ରାଣବନ୍ତମିମଂ ଦୃଷ୍ଟ୍ୱା ପ୍ରାଣୋ ଗନ୍ଧବହୋ ମୁଦା ।
ଚଚାର ସର୍ବଭୂତେଷୁ ସନ୍ନିରୁଦ୍ଧଂ ଯଥା ପୁରା । ୫ ।
ମରୁଦ୍ରୋଧାଦ୍ ବିନିର୍ମୁକ୍ତାସ୍ତାଃ ପ୍ରଜା ମୁଦିତାଭବନ୍ ।
ଶୀତବାତବିନିର୍ମୁକ୍ତାଃ ପଦ୍ମିନ୍ୟ ଇବ ସାମ୍ବୁଜାଃ । ୬ ।
ତତସ୍ତ୍ରିଯୁଗ୍ମସ୍ତ୍ରିକକୁତ୍ ତ୍ରିଧାମା ତ୍ରିଦଶାର୍ଚ୍ଚିତଃ ।
ଉବାଚ ଦେବତା ବ୍ରହ୍ମା ମାରୁତପ୍ରିୟକାମ୍ୟୟା । ୭ ।
ଭୋ ମହେନ୍ଦ୍ରେଶବରୁଣପ୍ରଜେଶ୍ୱରଧନେଶ୍ୱରାଃ ।
ଜାନତାମପି ବଃ ସର୍ବଂ ବକ୍ଷ୍ୟାମି ଶ୍ରୂୟତାଂ ହିତମ୍ । ୮ ।

---

ଭୂଷିତ ପବନଦେବ ସହସା ଉଠିପଡ଼ିବାରୁ ତାଙ୍କର କାନର କୁଣ୍ଡଳ, ମସ୍ତକର ମୁକୁଟ ଏବଂ ଗଳାର ହାର ଚକ୍‌ମକ୍ ହୋଇ ଉଠିଲା । ପବନଦେବ ତିନିବାର ବ୍ରହ୍ମାଙ୍କୁ ପ୍ରଣାମ କରି ତାଙ୍କର ଚରଣତଳେ ପଡ଼ିଗଲେ । ୨ । ଅନାଦି ବେଦାର୍ଥଜ୍ଞ ବ୍ରହ୍ମା ଅଳଙ୍କାରଭୂଷିତ ନିଜ କରରେ ପବନଦେବଙ୍କୁ ଉଠାଇଲେ ଏବଂ ତାଙ୍କ ଶିଶୁପୁତ୍ରର ଦେହରେ ହାତ ବୁଲାଇଦେଲେ । ୩ । ପଦ୍ମଯୋନି ବ୍ରହ୍ମାଙ୍କର କରସ୍ପର୍ଶ ଲାଗିବାମାତ୍ରେ ପବନପୁତ୍ର ହନୁମାନ୍ ଜଳସିକ୍ତ ଶସ୍ୟପରି ପୁନର୍ବାର ଜୀଇଉଠିଲେ । ୪ । ଗନ୍ଧବାହୀ ପ୍ରାଣଭୂତ ବାୟୁଦେବ ନିଜର ପୁତ୍ରକୁ ଜୀବିତ ଦେଖି ନିଜର ନିରୋଧ ଛାଡ଼ିଦେଲେ ଏବଂ ସେହି ମୁହୂର୍ତ୍ତରେ ପ୍ରସନ୍ନ ହୋଇ ସବୁ ପ୍ରାଣୀଙ୍କ ମଧ୍ୟରେ ସଞ୍ଚାରିତ ହୋଇଗଲେ । ୫ । ଯେପରି ଶୀତ ଓ ପବନରୁ ରକ୍ଷା ପାଇ କମଳ ସହିତ କମଳିନୀ ପ୍ରଫୁଲ୍ଲିତ ହୋଇଯାଏ, ସେହିପରି ସମସ୍ତ ପ୍ରାଣୀ ବାୟୁକ୍ରୋଧରୁ ମୁକ୍ତ ହୋଇ ପ୍ରମୁଦିତ ହୋଇ ଉଠିଲେ । ୬ । ତ୍ରିମୂର୍ତ୍ତିଧାରୀ, ତ୍ରିଲୋକ ତଥା ଦେବତା-ମାନଙ୍କର ପୂଜ୍ୟ ବ୍ରହ୍ମା ପବନଦେବଙ୍କୁ ପ୍ରସନ୍ନ କରିବାଲାଗି ଦେବତାମାନଙ୍କୁ କହିଲେ ।୭ "ହେ ଇନ୍ଦ୍ର, ହେ ଅଗ୍ନି, ହେ ବରୁଣ, ହେ ମହେଶ୍ୱର, ହେ ଧନେଶ୍ୱର ! ଯଦିଓ ତୁମ୍ଭେମାନେ ସବୁ କଥା ନିଜେ ଜାଣ, ତଥାପି ମୁଁ ତୁମ୍ଭମାନଙ୍କର ହିତ କଥା କହୁଅଛି, ତୁମ୍ଭେମାନେ ସମସ୍ତେ ଶୁଣ । ଦେଖ, ଏହି ଶିଶୁ ତୁମ୍ଭମାନଙ୍କର ବଡ଼ କାର୍ଯ୍ୟ

ଅନେନ ଶିଶୁନା କାର୍ଯ୍ୟଂ କର୍ତ୍ତବ୍ୟଂ ବୋ ଭବିଷ୍ୟତି ।
ତଦ୍ଦଦଧ୍ୱଂ ବରାନ୍ ସର୍ବେ ମାରୁତସ୍ୟାସ୍ୟ ତୁଷ୍ଟୟେ । ୯ ।
ତତଃ ସହସ୍ରନୟନଃ ପ୍ରୀତିଯୁକ୍ତଃ ଶୁଭାନନଃ ।
କୁଶେଶୟମୟୀଂ ମାଲାମୁତ୍‌କ୍ଷିପ୍ୟେଦଂ ବଚୋଽବ୍ରବୀତ୍ ।୧୦।
ମତ୍‌କରୋତ୍ସୃଷ୍ଟବଜ୍ରେଣ ହନୁରସ୍ୟ ଯଥାହତଃ ।
ନାମ୍ନା ବୈ କପିଶାର୍ଦ୍ଦୂଲୋ ଭବିତା ହନୁମାନିତି । ୧୧।
ଅହମସ୍ୟ ପ୍ରଦାସ୍ୟାମି ପରମଂ ବରମଦ୍ଭୁତମ୍ ।
ଇତଃ ପ୍ରଭୃତି ବଜ୍ରସ୍ୟ ମମାବଧ୍ୟୋ ଭବିଷ୍ୟତି । ୧୨ ।
ମାର୍ତ୍ତଣ୍ଡସ୍ତ୍ୱବ୍ରବୀତ୍ତତ୍ର ଭଗବାଂସ୍ତିମିରାପହଃ ।
ତେଜସୋଽସ୍ୟ ମଦୀୟସ୍ୟ ଦଦାମି ଶତିକାଂ କଳାମ୍ । ୧୩ ।
ଯଦା ତୁ ଶାସ୍ତ୍ରାଣ୍ୟଧ୍ୟେତୁଂ ଶକ୍ତିରସ୍ୟ ଭବିଷ୍ୟତି ।
ତଦାସ୍ୟ ଶାସ୍ତ୍ରଂ ଦାସ୍ୟାମି ଯେନ ବାଗ୍ମୀ ଭବିଷ୍ୟତି ।
ନ ଚାସ୍ୟ ଭବିତା କଶ୍ଚିତ୍ ସଦୃଶଃ ଶାସ୍ତ୍ରଦର୍ଶନେ । ୧୪ ।
ବରୁଣଶ୍ଚ ବରଂ ପ୍ରାଦାନ୍ନାସ୍ୟ ମୃତ୍ୟୁର୍ଭବିଷ୍ୟତି ।
ବର୍ଷାୟୁତଶତେନାପି ମତ୍‌ପାଶାଦୁଦକାଦପି । ୧୫ ।

---

ସାଧନ କରିବ । ଅତଏବ ଏହାର ପିତାଙ୍କୁ ପ୍ରସନ୍ନ କରିବା ଲାଗି ତୁମେ ସମସ୍ତେ ଏହି ଶିଶୁକୁ ବର ଦିଅ" । ୯ । ତତ୍ପରେ ପ୍ରସନ୍ନବଦନ ସହସ୍ରନୟନ ଇନ୍ଦ୍ର ହର୍ଷିତ ହୋଇ ପଦ୍ମଫୁଲର ଗୋଟିଏ ମାଳା ହନୁମାନ୍ ଗଳାରେ ପକାଇଦେଇ କହିଲେ । ୧୦ । "ମୋ ହସ୍ତର ବଜ୍ରଦ୍ୱାରା ଏହାର ହନୁ ଆହତ ହୋଇଥିବାରୁ ଆଜଠାରୁ ଏହି କପିଶାର୍ଦ୍ଦୂଳର ନାମ ହନୁମାନ୍ ହେବ । ୧୧ । ମୁଁ ଏହାକୁ ଏକ ଉତ୍କୃଷ୍ଟ ଓ ଅଦ୍ଭୁତ ବର ଦେଉଛି ଯେ ଆଜଠାରୁ ଏ ହନୁମାନ୍ ମୋର ବଜ୍ରଦ୍ୱାରା ଅବଧ୍ୟ ହେବ" । ୧୨ । ତଦନନ୍ତର ଅନ୍ଧକାରନାଶନ ଭଗବାନ୍ ସୂର୍ଯ୍ୟ କହିଲେ, "ମୋର ତେଜର କଳାର ଶତାଂଶ ଏ ବାଳକକୁ ମୁଁ ଦେଉଅଛି । ଯେତେବେଳେ ଏହାର ପଢ଼ିବାର ଶକ୍ତି ହେବ, ସେତେବେଳେ ଏହାକୁ ମୁଁ ଶାସ୍ତ୍ର ପଢ଼ାଇବି, ଯଦ୍ଦ୍ୱାରା ସେ ବାଗ୍ମୀ ହୋଇ ପାରିବ ଏବଂ ତା ସଦୃଶ ଶାସ୍ତ୍ରଜ୍ଞ ଆଉ କେହି ହୋଇପାରିବେ ନାହିଁ" । ୧୪ । ତଦନନ୍ତର ବରୁଣ ତାହାଙ୍କୁ ବର ଦେଲେ ଯେ "ମୋର ପାଶ କିମ୍ବା ଜଳଦ୍ୱାରା ଏ ଶିଶୁର ମୃତ୍ୟୁ ହେବ ନାହିଁ ଏବଂ ଏ ଦଶ ଲକ୍ଷ ବର୍ଷ ପର୍ଯ୍ୟନ୍ତ ଅମର ହୋଇ

ଯମୋ ଦଣ୍ଡାଦବଧ୍ୟତ୍ୱମରୋଗିତ୍ୱଂ ଚ ନିତ୍ୟଶଃ ।
ବରଂ ଦଦାମି ସଂତୁଷ୍ଟ ଅବିଷାଦଂ ଚ ସଂଯୁଗେ । ୧୬ ।
ଗଦେୟଂ ମାମିକା ନୈନଂ ସଂଯୁଗେ ନ ବଧିଷ୍ୟତି ।
ଇତ୍ୟେବଂ ଧନଦଃ ପ୍ରାହ ତଦା ହ୍ୟେକାକ୍ଷିପିଙ୍ଗଲଃ ।୧୭।
ମତ୍ତୋ ମଦାୟୁଧାନାଂ ଚ ନ ବଧ୍ୟୋଽୟଂ ଭବିଷ୍ୟତି ।
ଇତ୍ୟେବଂ ଶଙ୍କରେଣାପି ଦତ୍ତୋଽସ୍ୟ ପରମୋ ବରଃ । ୧୮ ।
ସର୍ବେଷାଂ ବ୍ରହ୍ମଦଣ୍ଡାନାମବଧ୍ୟୋଽୟଂ ଭବିଷ୍ୟତି ।
ଦୀର୍ଘାୟୁଶ୍ଚ ମହାତ୍ମା ଚ ଇତି ବ୍ରହ୍ମାବ୍ରବୀଦ୍ ବଚଃ ।୧୯।
ବିଶ୍ୱକର୍ମା ଚ ଦୃଷ୍ଟ୍ୱୈନଂ ବାଲସୂର୍ୟୋପମଂ ଶିଶୁମ୍ ।
ଶିଳ୍ପିନାଂ ପ୍ରବରଃ ପ୍ରାଦାଦ୍‌ବରମସ୍ୟ ମହାମତିଃ । ୨୦ ।
ମତ୍‌କୃତାନି ଚ ଶସ୍ତ୍ରାଣି ଯାନି ଦିବ୍ୟାନି ସଂଯୁଗେ ।
ତୈରବଧ୍ୟତ୍ୱମାପନ୍ନଶ୍ଚିରଜୀବୀ ଭବିଷ୍ୟତି । ୨୧ ।
ତତଃ ସୁରାଣାଂ ତୁ ବରୈର୍ଦୃଷ୍ଟ୍ୱା ହ୍ୟେନମଲଙ୍କୃତମ୍ ।
ଚତୁର୍ମୁଖସ୍ତୁଷ୍ଟମନା ବାୟୁମାହ ଜଗଦ୍‌ଗୁରୁଃ । ୨୨ ।

---

ରହିବ" ।୧୫। ତଦନନ୍ତର ଯମରାଜ ପ୍ରସନ୍ନ ହୋଇ ଏହାକୁ ବର ଦେଲେ ଯେ "ମୋର କାଳଦଣ୍ଡରେ ଏ ଅବଧ୍ୟ ହେବ ଏବଂ ଏହାର କୌଣସି ରୋଗ ହେବ ନାହିଁ, ତଥା ସଂଗ୍ରାମରେ ଏ କଦାପି ବିଷାଦଗ୍ରସ୍ତ ହେବ ନାହିଁ" । ୧୬ । ତଦନନ୍ତର ପିଙ୍ଗଳାକ୍ଷ କୁବେରଦେବ ହନୁମାନଙ୍କୁ ବର ଦେଲେ ଯେ "ଏହି ହନୁମାନ୍ ଯୁଦ୍ଧରେ ମୋ ଗଦାଦ୍ୱାରା ମୃତ୍ୟୁ ଲଭିବ ନାହିଁ" । ୧୭ । ତଦନନ୍ତର ଶ୍ରୀ ମହାଦେବ ମଧ୍ୟ ହନୁମାନଙ୍କୁ ପରମ ବର ଦେଲେ ଯେ "ମୋ ଦ୍ୱାରା ବା ମୋର ଆୟୁଧମାନଙ୍କ ଦ୍ୱାରା ଏହାର କଦାପି ମୃତ୍ୟୁ ହେବ ନାହିଁ" । ୧୮ । ବ୍ରହ୍ମା ବର ଦେଇ କହିଲେ, "ଏ ଶିଶୁ ବ୍ରହ୍ମଦଣ୍ଡମାନଙ୍କର ଅବଧ୍ୟ ହେବ, ଦୀର୍ଘାୟୁ ହେବ ଏବଂ ମହାତ୍ମା ହେବ" । ୧୯ । ମହାମତି ଶିଳ୍ପିଶ୍ରେଷ୍ଠ ବିଶ୍ୱକର୍ମା ଏହି ବାଳସୂର୍ଯ୍ୟ ସଦୃଶ ଶିଶୁକୁ ଦେଖି ତାହାକୁ ବର ପ୍ରଦାନ କଲେ ଯେ "ମୋ ନିର୍ମିତ ଯେତେ ଦିବ୍ୟ ଶସ୍ତ୍ର ଅଛି ଏ ଶିଶୁ ସେ ସମସ୍ତଙ୍କର ଅବଧ୍ୟ ହୋଇ ଚିରଜୀବୀ ହେବ" । ୨୦-୨୧ । ଏହିପ୍ରକାରେ ଜଗଦ୍‌ଗୁରୁ ଚତୁର୍ମୁଖ ଦେବତାମାନଙ୍କର ବରଦାନ ଶୁଣି ଏବଂ ପ୍ରସନ୍ନ ହୋଇ ବାୟୁଦେବଙ୍କୁ କହିଲେ । ୨୨ । "ହେ ବାୟୁଦେବ ! ତୁମ୍ଭର ଏ ପୁତ୍ର ମାରୁତି

ଅମିତ୍ରାଣାଂ ଭୟକରୋ ମିତ୍ରାଣାମଭୟଙ୍କରଃ ।
ଅଜେୟୋ ଭବିତା ପୁତ୍ରସ୍ତବ ମାରୁତ ମାରୁତଃ । ୨୩ ।
କାମରୂପଃ କାମଚାରୀ କାମଗଃ ପ୍ଲବତାଂ ବରଃ ।
ଭବତ୍ୟବ୍ୟାହତଗତିଃ କୀର୍ତ୍ତିମାଂଶ୍ଚ ଭବିଷ୍ୟତି । ୨୪ ।
ରାବଣୋତ୍ସାଦନାର୍ଥାନି ରାମପ୍ରୀତିକରାଣି ଚ ।
ରୋମହର୍ଷକରାଣ୍ୟେଷ କର୍ତ୍ତା କର୍ମାଣି ସଂଯୁଗେ । ୨୫ ।
ଏବମୁକ୍ତ୍ୱା ତମାମନ୍ତ୍ର୍ୟ ମାରୁତଂ ତ୍ୱମରୈଃ ସହ ।
ଯଥାଗତଂ ଯଯୁଃ ସର୍ବେ ପିତାମହପୁରୋଗମାଃ । ୨୬ ।
ସୋଽପି ଗନ୍ଧବହଃ ପୁତ୍ରଂ ପ୍ରଗୃହ୍ୟ ଗୃହମାନୟତ୍ ।
ଅଞ୍ଜନାୟାସ୍ତମାଚଖ୍ୟୌ ବରଦତ୍ତଂ ବିନିର୍ଗତଃ । ୨୭ ।
ପ୍ରାପ୍ୟ ରାମ ବରାନେଷ ବରଦାନସମନ୍ୱିତଃ ।
ବଲେନାତ୍ମନି ସଂସ୍ଥେନ ସୋଽପୂର୍ଯ୍ୟତ ଯଥାର୍ଣ୍ଣବଃ । ୨୮ ।
ତରସା ପୂର୍ଯ୍ୟମାଣୋଽପି ତଦା ବାନରପୁଙ୍ଗବଃ ।
ଆଶ୍ରମେଷୁ ମହର୍ଷୀଣାମପରାଧ୍ୟତି ନିର୍ଭୟଃ । ୨୯ ।
ସ୍ରୁଗ୍‌ଭାଣ୍ଡାନ୍ୟଗ୍ନିହୋତ୍ରଞ୍ଚ ବଲ୍କଲାଜିନସଂଚୟାନ୍ ।
ଭଗ୍ନବିଚ୍ଛିନ୍ନବିଧ୍ୱସ୍ତାନ୍ ସୁଶାନ୍ତାନାଂ କରୋତ୍ୟୟମ୍ । ୩୦ ।

---

ଶତ୍ରୁମାନଙ୍କୁ ଭୟଭୀତ କରାଇବ, ମିତ୍ରମାନଙ୍କର ଅଭୟଦାତା ହେବ ଏବଂ ଅଜେୟ, କାମରୂପୀ, କାମଚାରୀ, କାମଗାମୀ, ଅବ୍ୟାହତଗତି, ବାନରମାନଙ୍କ ମଧ୍ୟରେ ଶ୍ରେଷ୍ଠ ଏବଂ କୀର୍ତ୍ତିମାନ୍ ହେବ ।୨୩-୨୪। ଏ ଶିଶୁ ଯୁଦ୍ଧରେ ରାବଣର ନାଶ ନିମନ୍ତେ ରାମଙ୍କ ଲାଗି ହିତକର ଓ ରୋମାଞ୍ଚକର କାର୍ଯ୍ୟମାନ କରିବ” । ୨୫ । ଏହା କହି ବ୍ରହ୍ମା ବାୟୁଙ୍କଠାରୁ ବିଦାୟ ନେଇ ଅନ୍ୟ ଦେବତାମାନଙ୍କୁ ଆପଣା ସଙ୍ଗେ ଧରି ନିଜ ଲୋକକୁ ଚାଲିଗଲେ । ୨୬ । ଗନ୍ଧବହ ପବନଦେବ ପୁତ୍ରକୁ ଧରି ନିଜ ଘରକୁ ଆସିଲେ ଏବଂ ଅଞ୍ଜନାଙ୍କୁ ଦେବତାମାନଙ୍କର ବରଦାନ ବୃତ୍ତାନ୍ତ କହି ସେଠାରୁ ଚାଲିଗଲେ । ୨୭ । ହେ ରାମ ! ବରଦାନ ପ୍ରଭାବରେ ଏବଂ ନିଜର ଶାରୀରିକ ବେଗରେ ହନୁମାନ୍ ସମୁଦ୍ର ସଦୃଶ ପରିପୂର୍ଣ୍ଣ ହୋଇଗଲେ । ୨୮ । କପିଶ୍ରେଷ୍ଠ ହନୁମାନ୍ ବଳରେ ପରିପୂର୍ଣ୍ଣ ଓ ନିର୍ଭୟ ହୋଇ ଋଷିମାନଙ୍କର ଆଶ୍ରମକୁ ଯାଇ ଉପଦ୍ରବ କରିବାକୁ ଲାଗିଲେ ।୨୯। ସେ କେଉଁଠି ଯଜ୍ଞପାତ୍ରକୁ, କେଉଁଠାରେ ଅଗ୍ନିହୋତ୍ରକୁ ଏବଂ କେଉଁଠି ଏକତ୍ର ହୋଇଥିବା ବଲ୍‌କଳ ଓ ମୃଗଛାଲ ସବୁକୁ ନଷ୍ଟଭ୍ରଷ୍ଟ ଓ ଅସ୍ତବ୍ୟସ୍ତ କରିବାକୁ ଲାଗିଲେ ।

ଏବଂବଧାନି କର୍ମାଣି ପ୍ରାବର୍ତ୍ତତ ମହାବଲଃ ।
ସର୍ବେଷାଂ ବ୍ରହ୍ମଦଣ୍ଡାନାମବଧ୍ୟଃ ଶମ୍ଭୁନା କୃତଃ । ୩୧ ।
ଜାନନ୍ତ ଋଷୟସ୍ତଂ ବୈ କ୍ଷମନ୍ତେ ତସ୍ୟ ଶକ୍ତିତଃ ।
ଯଥା କେସରିଣା ତ୍ୱେଷ ବାୟୁନା ସୋଽଞ୍ଜନାସୁତଃ । ୩୨ ।
ପ୍ରତିଷିଦ୍ଧୋଽପି ମର୍ଯ୍ୟାଦାଂ ଲଙ୍ଘୟତ୍ୟେବ ବାନରଃ ।
ତତୋ ମହର୍ଷୟଃ କ୍ରୁଦ୍ଧା ଭୃଗ୍ୱଙ୍ଗିରସବଂଶଜାଃ । ୩୩ ।
ଶେପୁରେନଂ ରଘୁଶ୍ରେଷ୍ଠ ନାତିକ୍ରୁଦ୍ଧାତିମନ୍ୟବଃ ।
ବାଧସେ ଯତ୍ ସମାଶ୍ରିତ୍ୟ ବଲମସ୍ମାନ୍ ପ୍ଲବଙ୍ଗମ । ୩୪ ।
ତଦ୍ଦୀର୍ଘକାଲଂ ବେତ୍ତାସି ନାସ୍ମାକଂ ଶାପମୋହିତଃ ।
ଯଦା ତେ ସ୍ମାର୍ଯତେ କୀର୍ତ୍ତିସ୍ତଦା ତେ ବର୍ଦ୍ଧତେ ବଲମ୍ । ୩୫ ।
ତତଃ ସ ହୃତତେଜୌଜା ମହର୍ଷିବଚନୌଜସା ।
ଏଷୋଽଶ୍ରମାଣି ତାନ୍ୟେବ ମୃଦୁଭାବଂ ଗତୋଽଚରତ୍ । ୩୬ ।
ଅଥର୍କ୍ଷରଜସୋ ନାମ ବାଲିସୁଗ୍ରୀବୟୋଃ ପିତା ।
ସର୍ବବାନରରାଜାସୀତ୍ତେଜସା ଭାସ୍କରପ୍ରଭଃ । ୩୭ ।

---

ଋଷିମାନେ ଶାନ୍ତ ସ୍ୱଭାବରେ ଥିଲେ । ସେମାନେ କରିବେ ବା କଣ ? । ୩୦ । ଏହିପ୍ରକାରେ ସେ ମହାବଳୀ ହନୂମାନ୍ ଶିବଙ୍କ ବରଦାନ ହେତୁ ବ୍ରହ୍ମଦଣ୍ଡର ଅବଧ୍ୟ ହୋଇ ଏହିପରି କାର୍ଯ୍ୟମାନ କରିବାକୁ ଲାଗିଲେ । ୩୧ । ଋଷିମାନଙ୍କୁ ଏ କଥା ଜଣା ଥିଲା । ଅତଏବ ଦଣ୍ଡଦେବାର ଶକ୍ତି ସେମାନଙ୍କ ଜଣାଥିଲେ ସୁଦ୍ଧା ସେମାନେ ହନୁମାନଙ୍କ ଉପଦ୍ରବ ସହି ଯାଉଥିଲେ । କେଶରୀ ଏବଂ ବାୟୁ ଏପରି କାର୍ଯ୍ୟ କରିବାକୁ ହନୁମାନଙ୍କୁ ବାରଣ କରୁଥିଲେ ମଧ୍ୟ ସେ ମର୍ଯ୍ୟାଦା ଲଙ୍ଘନ କରୁଥିଲେ । ହେ ରାମ ! ତଦନନ୍ତର ଅଙ୍ଗିରା ଏବଂ ଭୃଗୁବଂଶରେ ଉତ୍ପନ୍ନ ବୃଦ୍ଧ ମୁନିମାନେ ସାଧାରଣ କ୍ରୋଧ କରି ତାହାଙ୍କୁ ଶାପ ଦେଲେ "ହେ ବାନର ! ଯେଉଁ ବଳକୁ ଆଶ୍ରୟ କରି ତୁ ଆମ୍ଭମାନଙ୍କୁ କଷ୍ଟ ଦେଉଅଛୁ, ସେ ବଳ ତୋତେ ବହୁତ ଦିନ ପରେ ସ୍ମରଣ ହେବ, କିନ୍ତୁ ଯେତେବେଳେ କେହି ତୋର କୀର୍ତ୍ତି ସ୍ମରଣ କରାଇଦେବ, ସେତେବେଳେ ତୋର ବଳ ବଢ଼ିବ । ୩୨-୩୫ । ତଦନନ୍ତର ହନୂମାନ୍ ଋଷିମାନଙ୍କ ଶାପ ପ୍ରଭାବରୁ ବଳବୀର୍ଯ୍ୟବିହୀନ ହୋଇ ମୃଦୁଭାବରେ ଋଷିମାନଙ୍କ ଆଶ୍ରମରେ ବୁଲିବାକୁ ଲାଗିଲେ ।୩୬। ସୂର୍ଯ୍ୟଙ୍କ ସମାନ ତେଜସ୍ୱୀ ଋକ୍ଷରଜା ନାମକ ବାନର ସମସ୍ତ ବାନରମାନଙ୍କର ରାଜା ଥିଲେ । ସେ ବାଳୀ ଓ ସୁଗ୍ରୀବଙ୍କର ପିତା ଥିଲେ ଏବଂ ସେ ତେଜରେ

ସ ଚ ରାଜ୍ୟଂ ଚିରଂ କୃତ୍ୱା ବାନରାଣାଂ ହରୀଶ୍ୱରଃ ।
ସ ଚ ଋକ୍ଷରଜା ନାମ କାଳଧର୍ମେଣ ସଂଗତଃ । ୩୮ ।
ତସ୍ମିନ୍ନସ୍ତମିତେ ଚାଥ ମନ୍ତ୍ରିଭିର୍ମନ୍ତ୍ରକୋବିଦୈଃ ।
ପିତ୍ର୍ୟେ ପଦେ କୃତୋ ବାଲୀ ସୁଗ୍ରୀବୋ ବାଲିନଃ ପଦେ ।୩୯।
ସୁଗ୍ରୀବେଣ ସମଂ ତ୍ୱସ୍ୟ ଅଦ୍ୱୈଧଂ ଛିଦ୍ରବର୍ଜିତମ୍ ।
ଆବାଲ୍ୟଂ ସଖ୍ୟମଭବଦନିଲସ୍ୟାଗ୍ନିନା ଯଥା ।୪୦।
ଏଷ ଶାପବଶାଦେବ ନ ବେଦ ବଲମାତ୍ମନଃ ।
ବାଲିସୁଗ୍ରୀବୟୋର୍ବୈରଂ ଯଦା ରାମ ସମୁତ୍‌ଥିତମ୍ । ୪୧ ।
ନ ହ୍ୟେଷ ରାମ ସୁଗ୍ରୀବୋ ଭ୍ରାମ୍ୟମାଣୋଽପି ବାଲିନା ।
ଦେବ ଜାନାତି ନ ହ୍ୟେଷ ବଲମାତ୍ମନି ମାରୁତିଃ । ୪୨ ।
ଋଷିଶାପାହୃତବଲସ୍ତଦୈଷ କପିସତ୍ତମଃ ।
ସିଂହଃ କୁଞ୍ଜରରୁଦ୍ଧୋ ବା ଆସ୍ଥିତଃ ସହିତୋ ରଣେ । ୪୩ ।

ପରାକ୍ରମୋତ୍ସାହମତିପ୍ରତାପ-
ସୌଶୀଲ୍ୟମାଧୁର୍ଯ୍ୟନୟାନୟୈଶ୍ଚ ।
ଗାମ୍ଭୀର୍ଯ୍ୟଚାତୁର୍ଯ୍ୟସୁବୀର୍ଯ୍ୟଧୈର୍ଯ୍ୟୈ-
ର୍ହନୂମତଃ କୋଽପ୍ୟଧିକୋଽସ୍ତି ଲୋକେ । ୪୪ ।

---

ସୂର୍ଯ୍ୟସଦୃଶ ଥିଲେ । ୩୭ । ସେହି ବାନରାଧିପତି ଋକ୍ଷରଜା ବହୁତ ଦିନ ପର୍ଯ୍ୟନ୍ତ ବାନରମାନଙ୍କ ଉପରେ ରାଜତ୍ୱ କରି ଶେଷରେ କାଳଧର୍ମର ବଶୀଭୂତ ହୋଇଗଲେ, ଅର୍ଥାତ୍ ତାଙ୍କର ମୃତ୍ୟୁ ହୋଇଗଲା । ୩୮ । ତାହାଙ୍କର ମୃତ୍ୟୁ ହେବାପରେ ମନ୍ତ୍ରକୁଶଳ ମନ୍ତ୍ରୀମାନେ ବାଲୀଙ୍କୁ ପିତାଙ୍କ ପଦରେ ଏବଂ ସୁଗ୍ରୀବଙ୍କୁ ବାଲୀଙ୍କ ପଦରେ ଅର୍ଥାତ୍ ଯୁବରାଜ ପଦରେ ଅଭିଷିକ୍ତ କରାଇଲେ । ୩୯ । ବାଲ୍ୟକାଳରୁହିଁ ସୁଗ୍ରୀବଙ୍କ ସହିତ ହନୁମାନଙ୍କର, ଅଗ୍ନିଙ୍କ ସହିତ ବାୟୁଙ୍କ ପରି ଆଦର୍ଶ ମିତ୍ରତା ଥିଲା । ୪୦ । ହେ ରାମ ! ଯେତେବେଳେ ବାଲୀ ଓ ସୁଗ୍ରୀବଙ୍କ ମଧ୍ୟରେ ବୈର ଜାତ ହେଲା, ସେତେବେଳେ ହନୁମାନ୍ ଶାପ ହେତୁରୁ ନିଜର ବଳକୁ ଭୁଲି ଯାଇଥିଲେ । ୪୧ । ହେ ଦେବ ! ବାଲୀ ସୁଗ୍ରୀବଙ୍କୁ ବହୁତ ବୁଲାଇ ଦଉଡ଼ାଇ କଷ୍ଟ ଦେଉଥିଲେ, ମାତ୍ର ହନୁମାନ୍ ଶାପବଶରୁ ନିଜର ବଳ ଭୁଲି ଯାଇଥିବାରୁ କିଛି କରିପାରି ନ ଥିଲେ ।୪୨। ଋଷିଶାପବଶରୁ ନିଜର ବଳକୁ ଭୁଲିଯାଇ କପିଶ୍ରେଷ୍ଠ ହନୁମାନ୍ ସୁଗ୍ରୀବଙ୍କ ବିପତ୍ତି ସମୟରେ, ପିଞ୍ଜରାବଦ୍ଧ ହୋଇଥିବା ସିଂହ ସଦୃଶ ଯୁଦ୍ଧ କରିବାରେ ନିରୁପାୟ ହୋଇ ରହିଥିଲେ । ୪୩ । ପରାକ୍ରମ, ଉତ୍ସାହ, ବୁଦ୍ଧି, ପ୍ରତାପ, ସୁଶୀଳତା, ମାଧୁର୍ଯ୍ୟ, ନୀତି, ଜ୍ଞାନ, ଗମ୍ଭୀରତା, ଚତୁରତା, ବଳ ଏବଂ ଧୈର୍ଯ୍ୟରେ

ଅସୌ ପୁନର୍ବ୍ୟାକରଣଂ ଗ୍ରହୀଷ୍ୟନ୍
ସୂର୍ଯ୍ୟୋନ୍ମୁଖଃ ପୃଷ୍ଠଗମଃ କପୀନ୍ଦ୍ରଃ ।
ଉଦ୍ୟଦ୍ଗିରେରସ୍ତଗିରିଂ ଜଗାମ
ଗ୍ରନ୍ଥଂ ମହଦ୍ଧାରୟନପ୍ରମେୟଃ । ୪୫ ।
ସସୂତ୍ରବୃତ୍ତ୍ୟର୍ଥପଦଂ ମହାର୍ଥମ୍
ସସଂଗ୍ରହଂ ସାଧ୍ୟତି ବୈ କପୀନ୍ଦ୍ରଃ ।
ନ ହ୍ୟସ୍ୟ କଶ୍ଚିତ୍ ସଦୃଶୋଽସ୍ତି ଶାସ୍ତ୍ରେ
ବୈଶାରଦେ ଛନ୍ଦଗତୌ ତଥୈବ । ୪୬ ।
ସର୍ବାସୁ ବିଦ୍ୟାସୁ ତପୋବିଧାନେ
ପ୍ରସ୍ପର୍ଧତେ ଯୋ ହି ଗୁରୁଂ ସୁରାଣାମ୍ ।
ସୋଽୟଂ ନବବ୍ୟାକରଣାର୍ଥବେତ୍ତା
ବ୍ରହ୍ମା ଭବିଷ୍ୟତ୍ୟପି ତେ ପ୍ରସାଦାତ୍ । ୪୭ ।
ପ୍ରବୀବିକ୍ଷୋରିବ ସାଗରସ୍ୟ
ଲୋକାନ୍ ଦିଧକ୍ଷୋରିବ ପାବକସ୍ୟ ।
ଯୁଗକ୍ଷୟେ ହ୍ୟେବ ଯଥାନ୍ତକସ୍ୟ
ହନୂମତଃ ସ୍ଥାସ୍ୟତି କଃ ପୁରସ୍ତାତ୍ । ୪୮ ।

---

ହନୁମାନଙ୍କଠାରୁ ବଳୀ ଆଉ କେହି ଏ ଜଗତରେ ନାହିଁ । ୪୪ । ଏହି ବାନର ବ୍ୟାକରଣ ପଢ଼ିବା ଅଭିଳାଷରେ ସୂର୍ଯ୍ୟଙ୍କୁ ମୁହଁ କରି ପଢ଼ି ପଢ଼ି ଉଦୟାଚଳରୁ ଅସ୍ତାଚଳ ପର୍ଯ୍ୟନ୍ତ ଚାଲି ଯାଉଥିଲେ । ୪୫ । ଏହି ବାନରେନ୍ଦ୍ର ସୂତ୍ର, ବୃତ୍ତି, ବାର୍ତ୍ତିକ, ଭାଷ୍ୟ ଏବଂ ସଂଗ୍ରହ ଅର୍ଥଯୁକ୍ତ ମହତ୍ ବ୍ୟାକରଣ ଗ୍ରନ୍ଥ ପାଠକରି ସିଦ୍ଧିଲାଭ କରିଥିଲେ ଏବଂ ସଙ୍ଗେ ସଙ୍ଗେ ଛନ୍ଦଶାସ୍ତ୍ରରେ ମଧ୍ୟ ସେ ପ୍ରବୀଣ ହୋଇଥିଲେ । ୪୬ । ସେ ସମସ୍ତ ବିଦ୍ୟା ଓ ତପୋବିଧାନରେ ଗୁରୁ ବୃହସ୍ପତିଙ୍କ ପ୍ରତିଦ୍ୱନ୍ଦୀ ଅଟନ୍ତି ଏବଂ ବ୍ୟାକରଣଜ୍ଞ ଅଟନ୍ତି । ଏବେ ଆପଣଙ୍କ କୃପାରେ ସେ ବ୍ରହ୍ମା ମଧ୍ୟ ହେବେ । ୪୭ । ସେ ସମସ୍ତ ସଂସାରକୁ ଭସ୍ମ କରିବା ପାଇଁ ପ୍ରଳୟାଗ୍ନି ସଦୃଶ ଅଥବା ପ୍ରଜାକ୍ଷୟକାରୀ ଯମ ସଦୃଶ ଅଥବା ପ୍ରଳୟକାଳୀନ ଉଦ୍‌ବେଳିତ ସମୁଦ୍ର ସଦୃଶ ଅଟନ୍ତି । ହନୁମାନଙ୍କ ଆଗରେ କିଏ ସ୍ଥିର ରହି ପାରିବ ବା କିଏ ତାଙ୍କର ସମ୍ମୁଖୀନ ହୋଇ ପାରିବ ?। ୪୮ ।

ଏତେଷେବ ଗୃହେଷ୍ୟ ଚ ମହାକପୀନ୍ଦ୍ରାଃ
ସୁଗ୍ରୀବମୈନ୍ଦଦ୍ୱିବଦାଃ ସନୀଲାଃ ।
ସତାରତାରେୟନଳାଃ ସରମ୍ଭା-
ସ୍ତତ୍କାରଣାଦ୍ରାମ ସୁରୈର୍ହି ସୃଷ୍ଟାଃ । ୪୯ ।
ତଦେତତ୍ କଥିତଂ ସର୍ବଂ ଯନ୍ମାଂ ତ୍ୱଂ ପରିପୃଚ୍ଛସି ।
ହନୂମତୋ ବାଲଭାବେ କର୍ମୈତତ୍ କଥିତଂ ମୟା । ୫୦ ।
ଶ୍ରୁତ୍ୱାଗସ୍ତ୍ୟସ୍ୟ କଥିତଂ ରାମଃ ସୌମିତ୍ରିରେବ ଚ ।
ବିସ୍ମୟଂ ପରମଂ ଜଗ୍ମୁର୍ବାନରା ରାକ୍ଷସୈଃ ସହ । ୫୧ ।
ଅଗସ୍ତ୍ୟସ୍ତ୍ୱବ୍ରବୀଦ୍ରାମଂ ସର୍ବମେତଚ୍ଛ୍ରୁତଂ ତ୍ୱୟା ।
ଦୃଷ୍ଟଃ ସମ୍ଭାଷିତଶ୍ଚାସି ରାମ ଗଚ୍ଛାମହେ ବୟମ୍ । ୫୨ ।
ଶ୍ରୁତ୍ୱୈତଦ୍ରାଘବୋ ବାକ୍ୟମଗସ୍ତ୍ୟସ୍ୟୋଗ୍ରତେଜସଃ ।
ପ୍ରାଞ୍ଜଳିଃ ପ୍ରଣତଶ୍ଚାପି ମହର୍ଷିମିଦମବ୍ରବୀତ୍ । ୫୩ ।
ଅଦ୍ୟ ମେ ଦେବତା ତୁଷ୍ଟାଃ ପିତରଃ ପ୍ରପିତାମହାଃ ।
ଯୁଷ୍ମାକଂ ଦର୍ଶନାଦେବ ନିତ୍ୟଂ ତୁଷ୍ଟାଃ ସବାନ୍ଧବାଃ । ୫୪ ।
ବିଜ୍ଞାପ୍ୟଂ ତୁ ମମୈତଦ୍ଧି ତଦ୍‌ବଦାମ୍ୟାଗତସ୍ପୃହଃ ।
ତଦ୍‌ଭବଦ୍ଭିର୍ମମ କୃତେ କର୍ତ୍ତବ୍ୟମନୁକମ୍ପୟା । ୫୫ ।

---

ହେ ରାମ ! ତୁମକୁ ସାହାଯ୍ୟ କରିବା ନିମନ୍ତେ ହିଁ ଦେବତାମାନେ ସୁଗ୍ରୀବ, ଅଙ୍ଗଦ, ମୈନ୍ଦ, ଦ୍ୱିବଦ, ନଳ, ନୀଳ, ତାର, ତାରେୟ ଏବଂ ରମ୍ଭ ଆଦି ବଡ଼ ବଡ଼ ବାନରମାନଙ୍କୁ ଉତ୍ପନ୍ନ କରିଥିଲେ । ୪୯ । ହେ ରାମ ! ହନୁମାନ୍ ବାଲ୍ୟାବସ୍ଥାରେ ଯେଉଁ ଯେଉଁ କର୍ମ କରିଥିଲେ ସେ ସମସ୍ତ ମୁଁ ତୁମକୁ ଶୁଣାଇଲି । ତୁମେ ଯାହା କିଛି ମୋତେ ପଚାରିଥିଲ, ତାହାର ଉତ୍ତର ମୁଁ ଦେଲି” । ୫୦ । ଅଗସ୍ତ୍ୟଙ୍କର ଏହି କଥା ଶୁଣି ରାମ ଓ ଲକ୍ଷ୍ମଣ ବାନର ତଥା ରାକ୍ଷସମାନଙ୍କ ସହ ଅତିଶୟ ବିସ୍ମିତ ହେଲେ । ୫୧ । ଅଗସ୍ତ୍ୟ ପୁଣି ରାମଙ୍କୁ କହିଲେ, “ତୁମେ ସବୁ କଥା ଶୁଣିଲ, ଆମେ ତୁମକୁ ଦେଖିଲୁଁ ଏବଂ ତୁମ ସହିତ ସମ୍ଭାଷଣ କଲୁ ; ଏବେ ଆମେ ସମସ୍ତେ ଯାଉଛୁଁ” । ୫୨ । ଉଗ୍ରତେଜସ୍ୱୀ ଅଗସ୍ତ୍ୟ ଋଷିଙ୍କର ଏହି କଥା ଶୁଣି ରାମ ହାତଯୋଡ଼ି ପ୍ରଣାମ କରି କହିଲେ । ୫୩ । “ଆଜି ଆପଣଙ୍କର ଦର୍ଶନ ହେତୁରୁ ମୋ ଉପରେ ଦେବତାମାନେ ପ୍ରସନ୍ନ ହେଲେ ତଥା ପିତା ଓ ପ୍ରପିତାମହଗଣ ମଧ୍ୟ ତୃପ୍ତ ହେଲେ ଏବଂ ଜ୍ଞାତି ବନ୍ଧୁଙ୍କ ସହିତ ମୁଁ ମଧ୍ୟ ତୁଷ୍ଟ ହେଲି । ୫୪ । କିନ୍ତୁ ଆପଣଙ୍କୁ ମୋର ଏକ ସ୍ପୃହାରହିତ ନିବେଦନ ଅଛି; ତାହା ଆପଣ ମୋ ପ୍ରତି ଦୟା କରି

ପୌରଜାନପଦାନ୍ ସ୍ଥାପ୍ୟ ସ୍ୱକାର୍ଯେଷ୍ୱହମାଗତଃ ।
କ୍ରତୂନେବ କରିଷ୍ୟାମି ପ୍ରଭାବାଦ୍‌ଭବତାଂ ସତାମ୍ । ୫୬ ।
ସଦସ୍ୟା ମମ ଯଜ୍ଞେଷୁ ଭବନ୍ତୋ ନିତ୍ୟମେବ ତତ୍ ।
ଭବିଷ୍ୟଥ ମହାବୀର୍ଯା ମମାନୁଗ୍ରହକାଙ୍କ୍ଷିଣଃ । ୫୭ ।
ଅହଂ ଯୁଷ୍ମାନ୍ ସମାଶ୍ରିତ୍ୟ ତପୋନିର୍ଧୂତକଲ୍ମଷାନ୍ ।
ଅନୁଗ୍ରହୀତଃ ପିତୃଭିର୍ଭବିଷ୍ୟାମି ସୁନିର୍ବୃତଃ । ୫୮ ।
ତଦାଗନ୍ତବ୍ୟମନିଶଂ ଭବଦ୍ଭିରିହ ସଂଗତୈଃ ।
ଅଗସ୍ତ୍ୟାଦ୍ୟାସ୍ତୁ ତଚ୍ଛ୍ରୁତ୍ୱା ଋଷୟଃ ସଂଶିତବ୍ରତାଃ ।୫୯।
ଏବମସ୍ତ୍ୱିତି ତଂ ଚୋକ୍ତ୍ୱା ପ୍ରୟାତୁମୁପଚକ୍ରମୁଃ ।
ଏବମୁକ୍ତ୍ୱା ଗତାଃ ସର୍ବେ ଋଷୟସ୍ତେ ଯଥାଗତମ୍ । ୬୦ ।
ରାଘବଶ୍ଚ ତମେବାର୍ଥଂ ଚିନ୍ତୟାମାସ ବିସ୍ମିତଃ ।
ତତୋଽସ୍ତଂ ଭାସ୍କରେ ଯାତେ ବିସୃଜ୍ୟ ନୃପବାନରାନ୍ । ୬୧ ।
ସନ୍ଧ୍ୟାମୁପାସ୍ୟ ବିଧିବତ୍ତଦା ନରବରୋତ୍ତମଃ ।
ପ୍ରବୃତ୍ତାୟାଂ ରଜନ୍ୟାଂ ତୁ ସୋଽନ୍ତଃପୁରଚରୋଽଭବତ୍ ।୬୨।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ହନୂମଦ୍‌ବରପ୍ରାପ୍ତ୍ୟାଦି ନାମ ଷଟ୍‌ତ୍ରିଂଶଃ ସର୍ଗଃ ।

---

ସ୍ୱୀକାର କରନ୍ତୁ ।୫୫। ମୁଁ ବନରୁ ଫେରି ପୁରବାସୀ ଓ ଦେଶବାସୀମାନଙ୍କୁ ଆପଣା ଆପଣା କାମରେ ଲଗାଇ ଦେଇଛି ଓ ସମ୍ପ୍ରତି ଆପଣଙ୍କପରି ସୁପୁରୁଷଙ୍କର କୃପା ଲାଭ କଲେ ମୁଁ ଯଜ୍ଞାନୁଷ୍ଠାନମାନ କରିବି ।୫୬। ଆପଣମାନେ ତପୋବୀର୍ଯ୍ୟସମନ୍ୱିତ, ସାଧୁ ଏବଂ ଶୀଳବାନ୍ ଅଟନ୍ତି । ଅତଏବ ଆପଣମାନଙ୍କର ଏହି ଅନୁଗ୍ରହାକାଙ୍କ୍ଷୀର ଯଜ୍ଞରେ ନିରନ୍ତର ପର୍ଯ୍ୟବେକ୍ଷକ ହୁଅନ୍ତୁ । ୫୭ । ତପସ୍ୟାଦ୍ୱାରା ଆପଣମାନଙ୍କର ସମସ୍ତ ପାପ ଧୌତ ହୋଇଯାଇଛି । ଅତଏବ ଆପଣମାନଙ୍କ ଆଶ୍ରୟ ନେଇ ମୁଁ ନିଜ ପିତୃମାନଙ୍କର କୃପାପାତ୍ର ହୋଇପାରିବି ଓ ନିଜର ଯଜ୍ଞ ସୁସମ୍ପନ୍ନ କରି ପାରିବି । ୫୮ । ଯଜ୍ଞ ସମୟରେ ଆପଣମାନେ ସମସ୍ତେ ଏକତ୍ର ହୋଇ ଏଠାକୁ ଆଗମନ କରିବେ ।" ବ୍ରତଧାରୀ ଅଗସ୍ତ୍ୟାଦି ଋଷିମାନେ ଏହା ଶୁଣି ଏବଂ ତାହାହିଁ ହେବ ବୋଲି ରାମଚନ୍ଦ୍ରଙ୍କୁ କହି ଯେଉଁ ଯେଉଁଠାରୁ ଆସିଥିଲେ ସେଠାକୁ ଚାଲିଗଲେ । ୫୯-୬୦ । ସେମାନେ ଚାଲିଯିବା ପରେ ରାମ ଅଗସ୍ତ୍ୟଙ୍କ କହିଥିବା କଥା ସ୍ମରଣ କରି ବିସ୍ମିତ ହେଲେ । ତଦନନ୍ତର ନରଶ୍ରେଷ୍ଠ ରାମ ସୂର୍ଯ୍ୟ ଅସ୍ତ ହେବାରୁ ନୃପତି ଓ ବାନରମାନଙ୍କୁ ବିଦାୟ ଦେଇ ବିଧିପୂର୍ବକ ସନ୍ଧ୍ୟା ଉପାସନା କଲେ ଏବଂ ରାତି ହେବାରୁ ଅନ୍ତଃପୁରକୁ ଗମନ କଲେ । ୬୧-୬୨ ।

# ସପ୍ତତ୍ରିଂଶଃ ସର୍ଗଃ

## ପୌରୋପସ୍ଥାନମ୍

ଅଭିଷିକ୍ତେ ତୁ କାକୁତ୍ସ୍ଥେ ଧର୍ମେଣ ବଦତାମ୍ବରେ ।
ବ୍ୟତୀତା ଯା ନିଶା ପୂର୍ବା ପୌରାଣାଂ ହର୍ଷବର୍ଧନୀ । ୧ ।
ତସ୍ୟାଂ ରଜନ୍ୟାଂ ବ୍ୟୁଷ୍ଟାୟାଂ ପ୍ରାତର୍ନୃପତିବୋଧକାଃ ।
ବନ୍ଦିନଃ ସମୁପାତିଷ୍ଠନ୍ ସୌମ୍ୟା ନୃପତିବେଶ୍ମନି । ୨ ।
ତେ ରକ୍ତକଣ୍ଠିନଃ ସର୍ବେ କିନ୍ନରା ଇବ ଶିକ୍ଷିତାଃ ।
ତୁଷ୍ଟୁବୁର୍ନୃପତିଂ ବୀରଂ ଯଥାବତ୍ ସମ୍ପ୍ରହର୍ଷିଣଃ । ୩ ।
ବୀର ସୌମ୍ୟ ପ୍ରବୁଧ୍ୟସ୍ୱ କୌସଲ୍ୟାପ୍ରୀତିବର୍ଧନ ।
ଜଗଦ୍ଧି ସର୍ବଂ ସ୍ୱପିତି ତ୍ୱୟି ସୁପ୍ତେ ନରାଧିପ । ୪ ।
ବିକ୍ରମସ୍ତେ ଯଥା ବିଷ୍ଣୋ ରୂପଂ ଚୈବାଶ୍ୱିନୋରିବ ।
ବୁଦ୍ଧ୍ୟା ବୃହସ୍ପତେସ୍ତୁଲ୍ୟଃ ପ୍ରଜାପତିସମୋ ହ୍ୟସି । ୫ ।
କ୍ଷମା ତେ ପୃଥିବୀ ତୁଲ୍ୟା ତେଜସା ଭାସ୍କରୋପମଃ ।
ବେଗସ୍ତେ ବାୟୁନା ତୁଲ୍ୟୋ ଗାମ୍ଭୀର୍ଯ୍ୟମୁଦଧେରିବ । ୬ ।

---

## ୩୭ଶ ସର୍ଗ

### ( ରାମ ସଭା ବର୍ଣ୍ଣନା )

ଜଗତ୍ପ୍ରସିଦ୍ଧ ରାମଙ୍କ ଅଭିଷେକ ଉତ୍ସବର ପ୍ରଥମ ରାତିଟି ପୁରବାସୀମାନଙ୍କର ହର୍ଷ ବଢ଼ାଇବା ସଙ୍ଗେ ସଙ୍ଗେ ବିତିଗଲା । ୧ । ସେହି ରାତି ବିତିଯିବା ପରେ ରାଜାଙ୍କୁ ଉଠାଇବା ପାଇଁ ସୌମ୍ୟମୂର୍ତ୍ତି ବନ୍ଦୀଗଣ ରାଜଭବନରେ ଯାଇ ଉପସ୍ଥିତ ହେଲେ । ୨ । କିନ୍ନରମାନଙ୍କପରି ସଙ୍ଗୀତ ଶିକ୍ଷାପ୍ରାପ୍ତ ଓ ସ୍ୱଭାବତଃ ମଧୁରକଣ୍ଠୀ ଗାୟକମାନେ ବୀରଶ୍ରେଷ୍ଠ ମହାରାଜଙ୍କୁ ହର୍ଷିତ କରି ତାଙ୍କର ସ୍ତବ ଗାନ କରିବାକୁ ଲାଗିଲେ । ୩ । ସେମାନେ ଗାଇଲେ, "ହେ ବୀର, ହେ ସୌମ୍ୟ, ହେ କୌଶଲ୍ୟାଙ୍କ ଆନନ୍ଦବର୍ଦ୍ଧନକାରୀ, ହେ ରାଜନ୍ ! ଆପଣ ଶୋଇଥିଲେ ସମସ୍ତ ଜଗତ୍ ଶୋଇଥାଏ, ଅତଏବ ଆପଣ ଉଠନ୍ତୁ । ୪ । ଆପଣ ଭଗବାନ୍ ବିଷ୍ଣୁଙ୍କ ତୁଲ୍ୟ ପରାକ୍ରମୀ, ଅଶ୍ୱିନୀକୁମାରଙ୍କ ସଦୃଶ ରୂପବାନ୍, ବୃହସ୍ପତିଙ୍କ ସଦୃଶ ବୁଦ୍ଧିମାନ୍ ଏବଂ ସତ୍ୟମନ୍ତ୍ରେ ପ୍ରଜାପତିଙ୍କ ସହିତ ସମାନ ଅଟନ୍ତି ।୫। ଆପଣଙ୍କର ଗାମ୍ଭୀର୍ଯ୍ୟ ସମୁଦ୍ର ସମାନ, କ୍ଷମା ପୃଥିବୀ ସମାନ, ତେଜ ସୂର୍ଯ୍ୟ ସମାନ ଏବଂ ବେଗ ବାୟୁ ତୁଲ୍ୟ

ଅପ୍ରକମ୍ପ୍ୟୋ ଯଥା ସ୍ଥାଣୁଶ୍ଚନ୍ଦ୍ରେ ସୌମ୍ୟତ୍ୱମୀଦୃଶମ୍ ।
ନେଦୃଶାଃ ପାର୍ଥିବାଃ ପୂର୍ବଂ ଭବିତାରୋ ନରାଧିପ ।୭।
ଯଥା ତ୍ୱମଜିତଦୁର୍ଧର୍ଷୋ ଧର୍ମନିତ୍ୟଃ ପ୍ରଜାହିତଃ ।
ନ ତ୍ୱାଂ ଜହାତି କୀର୍ତିଶ୍ଚ ଲକ୍ଷ୍ମୀଶ୍ଚ ପୁରୁଷର୍ଷଭ । ୮ ।
ଶ୍ରୀଶ୍ଚ ଧର୍ମଶ୍ଚ କାକୁତ୍ସ୍ଥ ତ୍ୱୟି ନିତ୍ୟଂ ପ୍ରତିଷ୍ଠିତୌ ।
ଏତାଶ୍ଚାନ୍ୟାଶ୍ଚ ମଧୁରା ବନ୍ଦିଭିଃ ପରିକୀର୍ତିତାଃ । ୯ ।
ସୂତାଶ୍ଚ ସଂସ୍ତବୈର୍ଦିବ୍ୟୈର୍ବୋଧୟନ୍ତି ସ୍ମ ରାଘବମ୍ ।
ସ୍ତୁତିଭିଃ ସ୍ତୂୟମାନାଭିଃ ପ୍ରତ୍ୟବୁଧ୍ୟତ ରାଘବଃ । ୧୦ ।
ସ ତଦ୍ୱିହାୟ ଶୟନଂ ପାଣ୍ଡୁରାଚ୍ଛାଦନାସ୍ତୃତମ୍ ।
ଉତ୍ତସ୍ଥୌ ନାଗଶୟନାଦ୍ଧରିର୍ନାରାୟଣୋ ଯଥା । ୧୧ ।
ସମୁତ୍ଥିତଂ ମହାତ୍ମାନଂ ପ୍ରହ୍ୱାଃ ପ୍ରାଞ୍ଜଳୟୋ ନରାଃ ।
ସଲିଲଂ ଭାଜନୈଃ ଶୁଭ୍ରୈରୁପତସ୍ଥୁଃ ସହସ୍ରଶଃ । ୧୨ ।
କୃତୋଦକଃ ଶୁଚିର୍ଭୂତ୍ୱା କାଲେ ହୁତହୁତାଶନଃ ।
ଦେବାଗାରଂ ଜଗାମାଶୁ ପୁଣ୍ୟମିକ୍ଷ୍ୱାକୁସେବିତମ୍ । ୧୩ ।

---

ଅଟେ । ୬ । ଆପଣଙ୍କଠାରେ ଶିବଙ୍କ ସଦୃଶ ଅଚଳତା ଏବଂ ଚନ୍ଦ୍ରମା ସଦୃଶ ସୌମ୍ୟତା ରହିଅଛି । ହେ ନରନାଥ ! ଆପଣଙ୍କ ସମାନ ରାଜା କେହି ହୋଇ ନାହିଁ କି ହେବ ନାହିଁ । ୭ । ହେ ପୁରୁଷଶ୍ରେଷ୍ଠ ! ଆପଣ ଯେପରି ଦୁର୍ଦ୍ଧର୍ଷ ଅଟନ୍ତି, ସେହିପରି ସର୍ବଦା ଧର୍ମପରାୟଣ ହୋଇ ପ୍ରଜାଙ୍କ ହିତରେ ତତ୍ପର ହୋଇ ଅଛନ୍ତି । ସୁତରାଂ କୀର୍ତ୍ତି ଏବଂ ଲକ୍ଷ୍ମୀ ଆପଣଙ୍କୁ କେବେ ଛାଡ଼ିବେ ନାହିଁ । ୮ । ହେ କାକୁତ୍ସ୍ଥ ! ଆପଣଙ୍କଠାରେ ଧର୍ମ ଓ ଲକ୍ଷ୍ମୀ ସର୍ବଦା ସ୍ଥିର ରହିଛନ୍ତି ।” ବନ୍ଦୀମାନେ ଏହି ପ୍ରକାର ତଥା ଅନ୍ୟ ବହୁପ୍ରକାର ସ୍ତୁତି ମଧୁରକଣ୍ଠରେ ଗାନ କଲେ । ୯ । ସୂତମାନେ ଏହିପରି ଦିବ୍ୟ ସ୍ତବ ଗାନ କରି ରାଘବଙ୍କୁ ଉଠାଇଲେ । ତତ୍ପରେ ରାମଚନ୍ଦ୍ର ନିଦରୁ ଉଠିଲେ । ୧୦ । ସେ ନିଜର ସ୍ୱଚ୍ଛ ଶଯ୍ୟା ଛାଡ଼ି ଶେଷଦେବଙ୍କ ଉପରେ ଶୋଇଥିବା ଶ୍ରୀମାନ୍ ନାରାୟଣଙ୍କ ପରି ଉଠିଲେ । ୧୧ । ସେତେବେଳେ ହଜାର ହଜାର ଭୃତ୍ୟ ନମ୍ରଭାବରେ ହାତଯୋଡ଼ି ଠିଆ ହୋଇ ସ୍ୱଚ୍ଛ ପାତ୍ରରେ ଜଳ ପୂର୍ଣ୍ଣ କରି ଧରି ରହିଥିଲେ ।୧୨। ସେହି ଜଳରେ ମହାରାଜ ନିତ୍ୟକୃତ୍ୟ କଲେ । ତଦନନ୍ତର ସେ ଯଥାକାଳରେ ଅଗ୍ନିରେ ହବନ କଲେ ଏବଂ ତାପରେ ସମସ୍ତ ଇକ୍ଷ୍ୱାକୁବଂଶୀୟମାନେ ଯେଉଁ ମନ୍ଦିରକୁ ଯାନ୍ତି ସେଠାକୁ ଗଲେ । ୧୩ । ସେଠାରେ

ତତ୍ର ଦେବାନ୍ ପିତୃନ୍ ବିପ୍ରାନର୍ଚ୍ଚୟିତ୍ୱା ଯଥାବିଧି ।
ବାହ୍ୟକକ୍ଷାନ୍ତରଂ ରାମୋ ନିର୍ଜଗାମ ଜନୈର୍ବୃତଃ । ୧୪ ।
ଉପତସ୍ଥୁର୍ମହାତ୍ମାନୋ ମନ୍ତ୍ରିଣଃ ସପୁରୋହିତାଃ ।
ବଶିଷ୍ଠପ୍ରମୁଖାଃ ସର୍ବେ ଦୀପ୍ୟମାନା ଇବାଗ୍ନୟଃ । ୧୫ ।
କ୍ଷତ୍ରିୟାଶ୍ଚ ମହାତ୍ମାନୋ ନାନାଜନପଦେଶ୍ୱରାଃ ।
ରାମସ୍ୟୋପାବିଶନ୍ ପାର୍ଶ୍ୱେ ଶକ୍ରସ୍ୟେବ ଯଥାମରାଃ । ୧୬ ।
ଭରତୋ ଲକ୍ଷ୍ମଣଶ୍ଚାତ୍ର ଶତ୍ରୁଘ୍ନଶ୍ଚ ମହାଯଶାଃ ।
ଉପାସାଂଚକ୍ରିରେ ହୃଷ୍ଟା ବେଦାସ୍ତ୍ରୟ ଇବାଧ୍ୱରମ୍ । ୧୭ ।
ଯାତାଃ ପ୍ରାଞ୍ଜଲୟୋ ଭୂତ୍ୱା କିଙ୍କରା ମୁଦିତାନନାଃ ।
ମୁଦିତା ନାମ ପାର୍ଶ୍ୱସ୍ଥା ବହବଃ ସମୁପାବିଶନ୍ । ୧୮ ।
ବାନରାଶ୍ଚ ମହାବୀର୍ଯା ବିଂଶତିଃ କାମରୂପିଣଃ ।
ସୁଗ୍ରୀବପ୍ରମୁଖା ରାମମୁପାସନ୍ତେ ମହୌଜସଃ ।୧୯।
ବିଭୀଷଣଶ୍ଚ ରକ୍ଷୋଭିଶ୍ଚତୁର୍ଭିଃ ପରିବାରିତଃ ।
ଉପାସତେ ମହାତ୍ମାନଂ ଧନେଶମିବ ଗୁହ୍ୟକାଃ । ୨୦ ।
ତଥା ନିଗମବୃଦ୍ଧାଶ୍ଚ କୁଲୀନା ଯେ ଚ ମାନବାଃ ।
ଶିରସା ବନ୍ଦ୍ୟ ରାଜାନମୁପାସନ୍ତେ ବିଚକ୍ଷଣାଃ । ୨୧ ।

---

ଦେବତା, ପିତୃ ଏବଂ ବ୍ରାହ୍ମଣମାନଙ୍କୁ ଯଥାଯଥ ପୂଜା କରି ସଙ୍ଗୀମାନଙ୍କୁ ସଙ୍ଗରେ ଧରି ବାହାର ଘରକୁ ବିଜେ କଲେ ।୧୪। ସେଠାରେ ମହାତ୍ମା ମନ୍ତ୍ରିଗଣ ତଥା ବଶିଷ୍ଠ, ଅଗ୍ନିତୁଲ୍ୟ ତେଜସ୍ୱୀ ପୁରୋହିତଗଣ ଏବଂ ଦେଶାନ୍ତରରୁ ଆସିଥିବା ରାଜା ଓ ଗ୍ରାମନେତାମାନେ, ଇନ୍ଦ୍ରଙ୍କ ପାଖରେ ଦେବତାମାନେ ବେଢ଼ିଥିଲାପରି, ତାଙ୍କୁ ବେଢ଼ି କରି ବସିଲେ ।୧୫-୧୬। ମହାଯଶସ୍ୱୀ ଭରତ, ଲକ୍ଷ୍ମଣ ଓ ଶତ୍ରୁଘ୍ନ ତିନିଭାଇ, ତିନି ବେଦ ଯଜ୍ଞରେ ଉପସ୍ଥିତ ରହିଥିଲା ପରି, ରାମଙ୍କ ସେବାରେ ତତ୍ପର ରହିଥିଲେ । ୧୭ । ଆନନ୍ଦିତ ଓ ପ୍ରସନ୍ନବଦନ ସେବକମାନେ ହାତଯୋଡ଼ି ମହାରାଜ ରାମଚନ୍ଦ୍ରଙ୍କ ସେବା ଲାଗି ପାର୍ଶ୍ୱରେ ଠିଆ ହୋଇଥିଲେ । ୧୮। ମହାପରାକ୍ରମୀ ଏବଂ ଇଚ୍ଛାନୁସାରେ ରୂପ-ଧାରଣକାରୀ ସୁଗ୍ରୀବାଦି ବିଂଶ ବାନର ରାମଙ୍କ ନିକଟରେ ଆସି ବସିଲେ । ୧୯ । ବିଭୀଷଣ ଚାରି ରାକ୍ଷସଙ୍କଦ୍ୱାରା ପରିବେଷ୍ଟିତ ହୋଇ, ଶ୍ରୀମାନ୍ କୁବେରଙ୍କ ପାଖରେ ଗୁହ୍ୟକ ବସିଲାପରି ଆସି ବସିଲେ । ୨୦ । ନଗରର ବଡ଼ ବଡ଼ ଧନିକ, ସାହୁକାର, ଜ୍ଞାନବୃଦ୍ଧ ଜନ ଏବଂ କୁଳୀନ ଲୋକେ ଆସିଲେ । ସେମାନେ ମୁଣ୍ଡ ନୁଆଁଇ ମହାରାଜଙ୍କୁ ପ୍ରଣାମ କରି ଯଥୋଚିତ ସ୍ଥାନରେ ଯାଇ ବସିଲେ । ୨୧ ।

ତଥା ପରିବୃତୋ ରାଜା ଶ୍ରୀମଦ୍ଭ ଋଷିଭିର୍ବୃତଃ ।
ରାଜଭିଶ୍ଚ ମହାବୀର୍ଯୈର୍ବାନରୈଶ୍ଚ ସରାକ୍ଷସୈଃ । ୨୨ ।
ଯଥା ଦେବେଶ୍ୱରୋ ନିତ୍ୟମୃଷିଭିଃ ସମୁପାସ୍ୟତେ ।
ଅଧିକସ୍ତେନରୂପେଣ ସହସ୍ରାକ୍ଷାଦ୍ୱିରୋଚତେ ।୨୩।
ତେଷାଂ ସମୁପବିଷ୍ଟାନାଂ ତାସ୍ତାଃ ସୁମଧୁରାଃ କଥାଃ ।
କଥ୍ୟନ୍ତେ ଧର୍ମସଂଯୁକ୍ତାଃ ପୁରାଣଜ୍ଞୈର୍ମହାତ୍ମଭିଃ । ୨୪ ।

ଇତ୍ୟାର୍ଷେ ଶ୍ରୀମଦାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତସହସ୍ରିକାୟାମ୍
ସଂହିତାୟାଂ ଉତ୍ତରକାଣ୍ଡେ ପୌରୋପସ୍ଥାନଂ ନାମ ସପ୍ତତ୍ରିଂଶଃ ସର୍ଗଃ ।

---

## ଅଷ୍ଟାତ୍ରିଂଶଃ ସର୍ଗଃ

### ଜନକାଦପ୍ରତିପ୍ରୟାଣମ୍

ଏବମାସ୍ତେ ମହାବାହୁରହନ୍ୟହନି ରାଘବଃ ।
ପ୍ରଶାସତ୍ ସର୍ବକାର୍ଯାଣି ପୌରଜାନପଦେଷୁ ଚ । ୧ ।

---

ସେତେବେଳେ ଶ୍ରୀମତ୍ ଋଷିଗଣ, ମହାପରାକ୍ରମୀ ରାଜା, ମହାପରାକ୍ରମୀ ବାନର ଏବଂ ରାକ୍ଷସଗଣଙ୍କ ମଧ୍ୟରେ ବସି ରାମ, ଋଷିଙ୍କଦ୍ୱାରା ପରିବେଷ୍ଟିତ ଇନ୍ଦ୍ରଙ୍କମର ଶୋଭା ପାଉଥିଲେ । ସେତେବେଳେ ରାମଙ୍କ ଶୋଭା ଇନ୍ଦ୍ରଙ୍କ ଶୋଭାକୁ ମଧ୍ୟ ବଳିଯାଇଥିଲା । ୨୨-୨୩ । ସେମାନେ ବସିବା ଉତ୍ତାରୁ ପୁରାଣବେତ୍ତା ମହାତ୍ମାମାନେ ଉପସ୍ଥିତ ବ୍ୟକ୍ତିମାନଙ୍କୁ କର୍ଣ୍ଣମଧୁର ଧର୍ମକଥାମାନ ଶୁଣାଇବାକୁ ଲାଗିଲେ । ୨୪ ।

---

## ୩୮ଶ ସର୍ଗ

### (ଜନକ ପ୍ରଭୃତିଙ୍କ ପ୍ରସ୍ଥାନ)

ମହାବାହୁ ରାମ ଏହିରୂପେ ପ୍ରତିଦିନ ପୁରବାସୀ ଓ ଜନପଦବାସୀମାନଙ୍କର ସମସ୍ତ କାର୍ଯ୍ୟ ସମ୍ପାଦନ କରି ରାଜ୍ୟ ଶାସନ କରିବାକୁ ଲାଗିଲେ । ୧ ।

ତତଃ କୃତପରିହାସ୍ତୁ ବୈଦେହଂ ମିଥିଳାଧିପମ୍ ।
ରାଘବଃ ପ୍ରାଞ୍ଜଳିର୍ଭୂତ୍ୱା ବାକ୍ୟମେତଦୁବାଚ ହ । ୨ ।
ଭବାନ୍ ହି ଗତିରବ୍ୟଗ୍ରା ଭବତା ପାଳିତା ବୟମ୍ ।
ଭବତସ୍ତେଜସୋଗ୍ରେଣ ରାବଣୋ ନିହତୋ ମୟା । ୩ ।
ଇକ୍ଷ୍ୱାକୂଣାଂ ଚ ସର୍ବେଷାଂ ମୈଥିଳାନାଂ ଚ ସର୍ବଶଃ ।
ଅତୁଲାଃ ପ୍ରୀତୟୋ ରାଜନ୍ ସମ୍ବନ୍ଧକପୁରୋଗମାଃ । ୪ ।
ତଦ୍‌ଭବାନ୍ ସ୍ୱପୁରୀଂ ଯାତୁ ରତ୍ନାନ୍ୟାଦାୟ ପାର୍ଥିବ ।
ଭରତଶ୍ଚ ସହାୟାର୍ଥଂ ପୃଷ୍ଠତସ୍ତେଽନୁଯାସ୍ୟତି । ୫ ।
ସ ତଥେତି ନୃପଃ କୃତ୍ୱା ରାଘବଂ ବାକ୍ୟମବ୍ରବୀତ୍ ।
ପ୍ରୀତୋଽସ୍ମି ଭବତୋ ରାଜନ୍ ଦର୍ଶନେନ ନୟେନ ଚ । ୬ ।
ଯାନ୍ୟେତାନି ତୁ ରତ୍ନାନି ମଦର୍ଥଂ ସଂଚିତାନି ବୈ ।
ଦୁହିତ୍ରେ ତାନି ବୈ ରାଜନ୍ ସର୍ବାଣ୍ୟେବ ଦଦାମି ଚ । ୭ ।
ଏବମୁକ୍ତ୍ୱା ତୁ କାକୁତ୍ସ୍ଥଂ ଜନକୋ ହୃଷ୍ଟମାନସଃ ।
ପ୍ରୟଯୌ ମିଥିଳାଂ ଶ୍ରୀମାଂସ୍ତମନୁଜ୍ଞାପ୍ୟ ରାଘବମ୍ । ୮ ।

---

ଅନନ୍ତର କଚ୍ଛିଦନ ଉତ୍ତାରୁ ରାମ ମିଥିଳାର ରାଜା ଜନକଙ୍କୁ କରଯୋଡ଼ି କହିଲେ । ୨ ।
"ଆପଣ ସବୁମନ୍ତେ ଆମ୍ଭମାନଙ୍କ ରକ୍ଷକ ଏବଂ ଆମ୍ଭେମାନେ ଆପଣଙ୍କ ପାଳିତ ଅଟୁ ।
ଆପଣଙ୍କ ଉଗ୍ରତେଜର ସହାୟତାରେ ହିଁ ମୁଁ ରାବଣକୁ ମାରିଅଛି ।୩। ହେ ରାଜନ୍ !
ମୈଥିଳ ଏବଂ ଇକ୍ଷ୍ୱାକୁ କୂଳର ଏହି ଅନୁପମ ସମ୍ବନ୍ଧଦ୍ୱାରା ପରସ୍ପର ଅତୁଳ
ପ୍ରୀତି ରହିଅଛି । ୪ । ଅତଏବ ହେ ରାଜନ୍ ! ଏବେ ଆପଣ ଆପଣଙ୍କ ରାଜଧାନୀକୁ
ପ୍ରସ୍ଥାନ କରନ୍ତୁ । ବିଦାୟ ରତ୍ନାଦି ନେଇ ଭରତ ଆପଣଙ୍କ ସହାୟତାପାଇଁ
ଆପଣଙ୍କ ପଛେ ପଛେ ଯିବେ ।" ୫ । ରାଜା ଜନକ ରାମଙ୍କ କଥାରେ ସ୍ୱୀକୃତ
ହୋଇ ତାଙ୍କୁ କହିଲେ, "ହେ ରାଜନ୍ ! ମୁଁ ଆପଣଙ୍କର ମତିମନ୍ତ୍ର ଦେଖି ଏବଂ
ଆପଣଙ୍କୁ ଦର୍ଶନ କରି ପ୍ରୀତ ହୋଇଅଛି । ୬ । ଆମଣ ମୋତେ ଦେବା ନିମନ୍ତେ
ଯେଉଁ ରତ୍ନାଦି ସଂଗ୍ରହ କରି ଅଛନ୍ତି, ମୁଁ ସେ ସମସ୍ତ ପଦାର୍ଥ ମୋର କନ୍ୟାକୁ
ଦେଇଯାଉଛି ।" ୭ । ଜନକ ରାମଙ୍କୁ ଏହିପରି କହି ଏବଂ ତାଙ୍କର ଅନୁମତି ନେଇ
ଆନନ୍ଦମନରେ ମିଥିଳାକୁ ଯାତ୍ରାକଲେ । ୮ । ରାଜା ଜନକ ଚାଲିଯିବା ପରେ ରାମ

ତତଃ ପ୍ରସ୍ଥିତେ ଜନକେ କେକୟଂ ମାତୁଳଂ ପ୍ରଭୁଃ ।
ରାଘବଃ ପ୍ରାଞ୍ଜଳିର୍ଭୂତ୍ୱା ବାକ୍ୟମେତଦୁବାଚ ହ । ୯ ।
ଇଦଂ ରା ଯମହଂ ଚୈବ ଭରତଶ୍ଚ ସଲକ୍ଷ୍ମଣଃ ।
ଆୟତ୍ତାସ୍ତ୍ୱଂ ହି ନୋ ରାଜନ୍ ଗତିଶ୍ଚ ପୁରୁଷର୍ଷଭ । ୧୦ ।
ରାଜାପି ବୃଦ୍ଧଃ ସନ୍ତାପଂ ତ୍ୱଦର୍ଥମୁପଯାସ୍ୟତି ।
ତସ୍ମାଦ୍ ଗମନମଦ୍ୟୈବ ରୋଚତେ ତବ ପାର୍ଥିବ । ୧୧ ।
ଲକ୍ଷ୍ମଣେନାନୁଯାତ୍ରେଣ ପୃଷ୍ଠତୋଽନୁଗମିଷ୍ୟତେ ।
ଧନମାଦାୟ ବିପୁଲଂ ରତ୍ନାନି ବିବିଧାନି ଚ । ୧୨ ।
ଯୁଧାଜିତ୍ତୁ ତଥେତ୍ୟାହ ଗମନଂ ପ୍ରତି ରାଘବମ୍ ।
ରତ୍ନାନି ଚ ଧନଂ ଚୈବ ତ୍ୱୟ୍ୟେବାକ୍ଷୟମସ୍ତ୍ୱିତି । ୧୩ ।
ପ୍ରଦକ୍ଷିଣଂ ସ ରାଜାନଂ କୃତ୍ୱା କେକୟବର୍ଧନଃ ।
ରାମେଣ ହି କୃତଃ ପୂର୍ବମଭିବାଦ୍ୟ ପ୍ରଦକ୍ଷିଣମ୍ । ୧୪ ।
ଲକ୍ଷ୍ମଣେନ ସହାୟେନ ପ୍ରୟାତଃ କେକୟେଶ୍ୱରଃ ।
ହତେଽସୁରେ ଯଥା ବୃତ୍ରେ ବିଷ୍ଣୁନା ସହ ବାସବଃ ।୧୫।
ତଂ ବିସୃଜ୍ୟ ତତୋ ରାମୋ ବୟସ୍ୟମକୁତୋଭୟମ୍ ।
ପ୍ରତର୍ଦନଂ କାଶିପତିଂ ପରିଷ୍ୱଜ୍ୟେଦମବ୍ରବୀତ୍ । ୧୬ ।

---

ହାତ ଯୋଡ଼ି ବିନୀତଭାବରେ କେକୟରାଜପୁତ୍ର ମାତୁଳ ଯୁଧାଜିତଙ୍କୁ କହିଲେ । ୯ । "ହେ ରାଜନ୍ ! ମୁଁ, ଭରତ, ଲକ୍ଷ୍ମଣ ଓ ଶତ୍ରୁଘ୍ନ ଏବଂ ଏହି ଅଯୋଧ୍ୟା ରାଜ୍ୟ ସମସ୍ତ ଆପଣଙ୍କର ହିଁ ଅଟୁଁ । ହେ ପୁରୁଷଶ୍ରେଷ୍ଠ ! ଆପଣହିଁ ସବୁ ପ୍ରକାରେ ଆମ୍ଭମାନଙ୍କର ଗତି ଅଟନ୍ତି । ୧୦ । କେକୟରାଜ ବୃଦ୍ଧ ଅଟନ୍ତି । ସେ ଆପଣଙ୍କ ଲାଗି ସନ୍ତପ୍ତ ହେଉଥିବେ । ଅତଏବ ଆଜହିଁ ଆପଣଙ୍କର ଯିବା ଉଚିତ । ୧୧ । ଲକ୍ଷ୍ମଣ ପ୍ରଚୁର ଧନ ଓ ବିବିଧ ରତ୍ନାଦି ଧରି ଆପଣଙ୍କ ପଛେ ପଛେ ଯିବେ ।" ୧୨ । ଯୁଧାଜିତ ଯିବାକୁ ସ୍ୱୀକାର କରି କହିଲେ, "ହେ ରାଘବ ! ଏ ସମଗ୍ର ଧନ ଏବଂ ରତ୍ନ ଅକ୍ଷୟ ହୋଇ ଆପଣଙ୍କ ପାଖରେ ହିଁ ଥାଉ ।" ୧୩ । ପ୍ରଥମେ ରାମ ତାଙ୍କୁ ପ୍ରଦକ୍ଷିଣ କରି ପ୍ରଣାମ କଲେ । ତଦନନ୍ତର କେକୟକୁଳବର୍ଦ୍ଧନକାରୀ ଯୁଧାଜିତ ରାମଙ୍କୁ ପ୍ରଦକ୍ଷିଣ କରି ଏବଂ ଅଭିବାଦନ କରି ପ୍ରସ୍ଥାନ କଲେ । ୧୪ । ବୃତ୍ରାସୁର ମରିବା ପରେ ଇନ୍ଦ୍ର ଭଗବାନ୍ ବିଷ୍ଣୁଙ୍କ ସହିତ ଯେପରି ଯାଇଥିଲେ କେକୟରାଜ ଲକ୍ଷ୍ମଣଙ୍କ ସହିତ ସେହିପରିଭାବରେ ସେଠାରୁ ଗଲେ ।୧୫। ତାହାଙ୍କୁ ବିଦାୟ ଦେଇସାରି ରାମ ନିଜର ମିତ୍ର ନିର୍ଭୀକ କାଶିରାଜ ପ୍ରତର୍ଦ୍ଦନଙ୍କୁ ଆଲିଙ୍ଗନ କରି କହିଲେ । ୧୬ । "ହେ ରାଜନ !

ଦର୍ଶିତା ଭବତା ପ୍ରୀତିର୍ଦର୍ଶିତଂ ସୌହୃଦଂ ପରମ୍ ।
ଉଦ୍ୟୋଗଶ୍ଚ କୃତୋ ରାଜନ୍ ଭରତେନ ତ୍ୱୟା ସହ । ୧୭ ।
ତଦ୍ଭବାନଦ୍ୟ କାଶେୟ ପୁରୀଂ ବାରାଣସୀଂ ବ୍ରଜ ।
ରମଣୀୟାଂ ତ୍ୱୟା ଗୁପ୍ତାଂ ସୁପ୍ରକାରାଂ ସୁତୋରଣାମ୍ । ୧୮ ।
ଏତାବଦୁକ୍ତ୍ୱା ଚୋତ୍ଥାୟ କାକୁତ୍ସ୍ଥଃ ପରମାସନାତ୍ ।
ପର୍ଯ୍ୟଷ୍ୱଜତ ଧର୍ମାତ୍ମା ନିରନ୍ତରମୁରୋଗତମ୍ । ୧୯ ।
ବିସର୍ଜୟାମାସ ତଦା କୌସଲ୍ୟାନନ୍ଦବର୍ଧନଃ ।
ରାଘବେଣାଭ୍ୟନୁଜ୍ଞାତଃ କାଶୀଶୋଽପ୍ୟକୁତୋଭୟଃ ।୨୦।
ବାରାଣସୀଂ ଯଯୌ ତୂର୍ଣଂ ରାଘବେଣ ବିସର୍ଜିତଃ ।
ବିସୃଜ୍ୟ ତଂ କାଶିପତିଂ ତ୍ରିଶତଂ ପୃଥିବୀପତୀନ୍ । ୨୧ ।
ପ୍ରହସନ୍ ରାଘବୋ ବାକ୍ୟମୁବାଚ ମଧୁରାକ୍ଷରମ୍ ।
ଭବତାଂ ପ୍ରୀତିରବ୍ୟଗ୍ରା ତେଜସା ପରିରକ୍ଷିତା । ୨୨ ।
ଧର୍ମଶ୍ଚ ନିୟତୋ ନିତ୍ୟଂ ସତ୍ୟଂ ଚ ଭବତାଂ ସଦା ।
ଯୁଷ୍ମାକଂ ଚାନୁଭାବେନ ତେଜସା ଚ ମହାତ୍ମନାମ୍ । ୨୩ ।
ହତୋ ଦୁରାତ୍ମା ଦୁର୍ବୁଦ୍ଧୀ ରାବଣୋ ରାକ୍ଷସାଧମଃ ।
ହେତୁମାତ୍ରମହଂ ତତ୍ର ଭବତାଂ ତେଜସା ହତଃ । ୨୪ ।

---

ଆପଣ ପ୍ରୀତି ଦେଖାଇଛନ୍ତି ଏବଂ ପରମ ସୌହାର୍ଦ୍ଦ୍ୟର ପରିଚୟ ଦେଇଛନ୍ତି; ଆପଣଙ୍କ ସହିତ ମିଳି ଭରତ ଉଦ୍‌ଯୋଗ ମଧ୍ୟ କରିଛନ୍ତି । ୧୭ । ବର୍ତ୍ତମାନ ଆପଣ ରମଣୀୟ, ସୁରକ୍ଷିତ ଏବଂ ମନୋହର ନଗର-ଦ୍ୱାରରେ ସୁଶୋଭିତ ବାରାଣସୀ ନଗରକୁ ଯାତ୍ରା କରନ୍ତୁ ।" ୧୮ । ଏହା କହି ଧର୍ମାତ୍ମା କାକୁତ୍ସ୍ଥ ରାମ ସିଂହାସନରୁ ଉଠି ସର୍ବଦା ନିଜ ହୃଦୟ ମଧ୍ୟରେ ରହିଥିବା ରାଜା ପ୍ରତର୍ଦ୍ଦନଙ୍କୁ ଗାଢ଼ ଆଲିଙ୍ଗନ କଲେ । ୧୯ । କୌଶଲ୍ୟାଙ୍କ ଆନନ୍ଦବର୍ଦ୍ଧନକାରୀ ରାମ ତାଙ୍କୁ ବିଦାୟ ଦେଲେ । ନିର୍ଭୀକ କାଶୀରାଜ ମଧ୍ୟ ରାମଙ୍କ ଆଜ୍ଞା ପାଇ ଓ ରାମଙ୍କଠାରୁ ବିଦାୟ ନେଇ ଶୀଘ୍ର କାଶୀକୁ ଚାଲିଗଲେ । କାଶିରାଜଙ୍କୁ ବିଦାୟ ଦେଇ, ଅନ୍ୟ ତିନି ଶତ ରାଜାଙ୍କୁ ରାମ ଈଷତ୍ ହାସ୍ୟକରି ମଧୁର ବାକ୍ୟରେ କହିଲେ, "ଆପଣମାନଙ୍କ ଏବଂ ଆମ୍ଭମାନଙ୍କ ମଧ୍ୟରେ ଅଟଳ ପ୍ରୀତି ରହିଅଛି ଏବଂ ତାହା ଆପଣମାନଙ୍କ ତେଜଦ୍ୱାରା ରକ୍ଷିତ ହୋଇଅଛି । ୨୦-୨୨ । ଆପଣମାନଙ୍କର ଧର୍ମପରାୟଣତା, ଆପଣମାନଙ୍କ ସଦା ସତ୍ୟବ୍ୟବହାର, ଆପଣମାନଙ୍କ ଅନୁଭବ ଏବଂ ତେଜର ପ୍ରଭାବରେ ହିଁ ଦୁରାତ୍ମା ଦୁର୍ବୁଦ୍ଧି ରାକ୍ଷସାଧମ ରାବଣ ନିହତ ହୋଇଅଛି । ତାହାକୁ ବଧ କରିବାରେ ମୁଁ କେବଳ ନିମିତ୍ତମାତ୍ର ହୋଇଅଛି;

ରାବଣଃ ସଗଣୋ ଯୁଦ୍ଧେ ସପୁତ୍ରାମାତ୍ୟବାନ୍ଧବଃ ।
ଭବନ୍ତଶ୍ଚ ସମାନୀତା ଭରତେନ ମହାତ୍ମନା । ୨୫ ।
ଶ୍ରୁତ୍ୱା ଜନକରାଜସ୍ୟ କାନନାତ୍ତନୟାଂ ହୃତାମ୍ ।
ଉଦ୍ୟୁକ୍ତାନାଂ ଚ ସର୍ବେଷାଂ ପାର୍ଥିବାନାଂ ମହାତ୍ମନାମ୍ । ୨୬ ।
କାଲୋ ବ୍ୟତୀତଃ ସୁମହାନ୍ ଗମନଂ ରୋଚୟାମ୍ୟତଃ ।
ପ୍ରତ୍ୟୂଚୁସ୍ତଂ ଚ ରାଜାନୋ ହର୍ଷେଣ ମହତା ବୃତା ।୨୭।
ଦିଷ୍ଟ୍ୟା ତ୍ୱଂ ବିଜୟୀ ରାମ ସ୍ୱରାଜ୍ୟେଽପି ପ୍ରତିଷ୍ଠିତଃ ।
ଦିଷ୍ଟ୍ୟା ପ୍ରତ୍ୟାହୃତା ସୀତା ଦିଷ୍ଟ୍ୟା ଶତ୍ରୁଃ ପରାଜିତଃ । ୨୮ ।
ଏଷ ନଃ ପରମଃ କାମ ଏଷା ନଃ ପ୍ରୀତିରୁତ୍ତମା ।
ଯତ୍ତ୍ୱାଂ ବିଜୟିନଂ ରାମ ପଶ୍ୟାମୋ ହତଶାତ୍ରବମ୍ । ୨୯ ।
ଏତତ୍ତ୍ୱୟ୍ୟୁପପନ୍ନଂ ଚ ଯଦସ୍ମାଂସ୍ତ୍ୱଂ ପ୍ରଶଂସସେ ।
ପ୍ରଶଂସାର୍ହ ନ ଜାନୀମଃ ପ୍ରଶଂସାଂ ବକ୍ତୁମୀଦୃଶୀମ୍ । ୩୦ ।

---

ପରନ୍ତୁ ସେ ଆପଣମାନଙ୍କ ତେଜ ଏବଂ ପ୍ରଭାବରେହିଁ ନିହତ ହୋଇଅଛି । । ୨୩-୨୪ । ସେ ଏକାକୀ ନୁହେଁ, ସେନା, ମନ୍ତ୍ରୀ ତଥା ଆପଣାର ବନ୍ଧୁ ବାନ୍ଧବଙ୍କ ସହିତ ନିହତ ହୋଇଅଛି । ମୁଁ ଜାଣିଛି ଯେ ମହାତ୍ମା ଭରତ ବନରେ ସୀତାଙ୍କର ହରଣ ସମାଚାର ଶୁଣି ଆପଣମାନଙ୍କୁ ଏଠାକୁ ଡକାଇଥିଲେ ଏବଂ ଆପଣ ସବୁ ମହାନୁଭବ ରାଜାମାନେ ଯୁଦ୍ଧରେ ଲଢ଼ିବାକୁ ପ୍ରସ୍ତୁତ ହୋଇଥିଲେ । । ୨୫-୨୬ । ଆପଣମାନଙ୍କର ଏଠାରେ ବହୁତ ଦିନ ବିତିଯାଇଛି । ସୁତରାଂ ମୁଁ ଚାହୁଁଛି, ଏବେ ଆପଣମାନେ ନିଜ ନିଜ ରାଜଧାନୀକୁ ଫେରି ଯାଆନ୍ତୁ ।" ତାପରେ ସେ ରାଜାମାନେ ପରମହର୍ଷିତ ହୋଇ ରାମଙ୍କୁ କହିଲେ । ୨୭ । "ହେ ରାମ ! ସୌଭାଗ୍ୟର କଥା ଯେ ଆପଣଙ୍କର ଜୟ ହୋଇଅଛି ଏବଂ ଆପଣଙ୍କ ରାଜ୍ୟ ସୁପ୍ରତିଷ୍ଠିତ ହୋଇଅଛି । ଏହା ମଧ୍ୟ ସୌଭାଗ୍ୟର କଥା ଯେ ସୀତା ଆପଣଙ୍କୁ ପୁଣି ମିଳିଯାଇଛନ୍ତି ଏବଂ ଶତ୍ରୁ ରାବଣ ପରାଜିତ ହୋଇଅଛି । ୨୮ । ହେ ରାମ ! ଆମେ ସମସ୍ତେ ଆପଣଙ୍କୁ ବିଜୟୀ ଓ ଶତ୍ରୁହୀନ ଦେଖି ଆମ୍ଭମାନଙ୍କର ପ୍ରଧାନ ମନୋରଥ ସିଦ୍ଧ ହୋଇଅଛି । ଏହାହିଁ ଆମ୍ଭମାନଙ୍କର ଅଭିଳାଷ ଥିଲା ଏବଂ ଏଥିରେ ଆମ୍ଭେମାନେ ପ୍ରୀତ ହୋଇଅଛୁ ।୨୯। ଆପଣ ଯେ ଆମ୍ଭମାନଙ୍କୁ ପ୍ରଶଂସା କଲେ ତାହା ଆପଣଙ୍କର ସ୍ୱାଭାବିକ ଉଦାରତା ଅଟେ । ତା ନ ହେଲେ ଆମ୍ଭେମାନେ ଏ ପ୍ରଶଂସାର କେତେଦୂର ଯୋଗ୍ୟ ଏବଂ ଆପଣଙ୍କ ପ୍ରଶଂସା କିପରି ବାକ୍ୟରେ ପ୍ରକାଶ କରିବୁ ତାହା

ଆପୃଚ୍ଛାମୋ ଗମିଷ୍ୟାମୋ ହୃଦ୍‌ସ୍ଥୋ ନଃ ସଦା ଭବାନ୍ ।
ବର୍ତ୍ତାମହେ ମହାବାହୋ ପ୍ରୀତ୍ୟାଽତ୍ର ମହତା ବୃତାଃ । ୩୧ ।
ଭବେଚ୍ଚ ତେ ମହାରାଜ ପ୍ରୀତିରସ୍ମାସୁ ନିତ୍ୟଦା ।
ବାଢ଼ମିତ୍ୟେବ ରାଜାନୋ ହର୍ଷେଣ ପରମାନ୍ୱିତାଃ । ୩୨ ।
ଊଚୁଃ ପ୍ରାଞ୍ଜଲୟଃ ସର୍ବେ ରାଘବଂ ଗମନୋତ୍ସୁକାଃ ।
ପୂଜିତାସ୍ତେ ଚ ରାମେଣ ଜଗ୍ମୁର୍ଦେଶାନ୍ ସ୍ୱକାନ୍ ସ୍ୱକାନ୍ ।୩୩।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ଜନକାଦିପ୍ରତିପ୍ରୟାଣଂ ନାମ ଅଷ୍ଟାତ୍ରିଂଶଃ ସର୍ଗଃ ।

---

# ଏକୋନଚତ୍ୱାରିଂଶଃ ସର୍ଗଃ

## ବାନରପ୍ରୀଣନମ୍

ତେ ପ୍ରୟାତା ମହାତ୍ମାନଃ ପାର୍ଥିବାସ୍ତେ ପ୍ରହୃଷ୍ଟବତ୍ ।
ଗଜବାଜିସହସ୍ରୌଘୈଃ କମ୍ପୟନ୍ତୋ ବସୁନ୍ଧରାମ୍ । ୧ ।

---

ଅମ୍ଭେମାନେ ଜାଣିପାରୁ ନାହୁଁ । ୩୦ । ଏବେ ଆମେ ଆପଣଙ୍କ ଆଜ୍ଞାରେ ବିଦାୟ ନେଉଛୁଁ । ଆପଣ ତ ଆମ୍ଭମାନଙ୍କ ହୃଦୟରେ ସର୍ବଦା ବାସକରି ରହିଅଛନ୍ତି । ଏବେ ଆମେ ସମସ୍ତେ ଅତ୍ୟନ୍ତ ଆନନ୍ଦପୂର୍ବକ ନିଜ ନିଜ କାର୍ଯ୍ୟରେ ବ୍ୟାପୃତ ରହିବୁଁ ।୩୧। ହେ ମହାରାଜ ! ଆମ୍ଭମାନଙ୍କଠାରେ ଆପଣଙ୍କ ପ୍ରୀତି ସର୍ବଦା ଅଟଳ ରହୁ ।” ତଦନନ୍ତର ରାମ କହିଲେ, “ଆଚ୍ଛା, ତାହାହିଁ ହେବ ।” ତଦନନ୍ତର ରାଜାମାନେ ଅତିଶୟ ପ୍ରୀତ ହେଲେ । ୩୨ । ଯିବାପାଇଁ ଉତ୍ସୁକ ରାଜାମାନେ ହାତ ଯୋଡ଼ି ରାମଙ୍କୁ ଏହି ପ୍ରକାରେ କହିଲେ ଏବଂ ରାମ ମଧ୍ୟ ସେମାନଙ୍କୁ ଯଥୋଚିତ ପୂଜାକଲେ । ତତ୍ପରେ ସେମାନେ ଆପଣା ଆପଣା ରାଜଧାନୀକୁ ଚାଲିଗଲେ । ୩୩ ।

---

## ୩୯ଶ ସର୍ଗ

### ( ବାନରମାନଙ୍କୁ ପୁରସ୍କାର )

ମହାବଳୀ ରାଜାମାନେ ଆନନ୍ଦମନରେ ସହସ୍ର ସହସ୍ର ହାତୀ ଓ ଘୋଡ଼ାଙ୍କ ବେଗରେ ଭୂମି କମ୍ପିତ କରି ଚାଲିଲେ । ୧ । ଭରତଙ୍କ ଆଜ୍ଞାରେ ବହୁ ବାହନ

ଅକ୍ଷୌହିଣ୍ୟା ହି ତତ୍ରାସନ୍ ରାଘବାର୍ଥେ ସମୁଦ୍ୟତାଃ ।
ଭରତସ୍ୟାଜ୍ଞୟାନେକାଃ ପ୍ରହୃଷ୍ଟା ବଳବାହନାଃ । ୨ ।
ଊଚୁସ୍ତେ ଚ ମହୀପାଳା ବଳଦର୍ପସମନ୍ୱିତାଃ ।
ନ ରାମରାବଣଂ ଯୁଦ୍ଧେ ପଶ୍ୟାମଃ ପୁରତଃ ସ୍ଥିତମ୍ । ୩ ।
ଭରତେନ ବୟଂ ପଶ୍ଚାତ୍ ସମାନୀତା ନିରର୍ଥକମ୍ ।
ହତା ହି ରାକ୍ଷସାଃ କ୍ଷିପ୍ରଂ ପାର୍ଥିବୈଃ ସ୍ୟୁର୍ନସଂଶୟଃ । ୪ ।
ରାମସ୍ୟ ବାହୁବୀର୍ଯେଣ ରକ୍ଷିତା ଲକ୍ଷ୍ମଣସ୍ୟ ଚ ।
ସୁଖଂ ପାରେ ସମୁଦ୍ରସ୍ୟ ଯୁଧ୍ୟେମ ବିଗତଜ୍ୱରାଃ । ୫ ।
ଏତାଶ୍ଚାନ୍ୟାଶ୍ଚ ରାଜାନଃ କଥାସ୍ତତ୍ର ସହସ୍ରଶଃ ।
କଥୟନ୍ତଃ ସ୍ୱରାଜ୍ୟାନି ଜଗ୍ମୁର୍ହର୍ଷସମନ୍ୱିତାଃ । ୬ ।
ସ୍ୱାନି ରାଜ୍ୟାନି ମୁଖ୍ୟାନି ଋଦ୍ଧାନି ମୁଦିତାନି ଚ ।
ସମୃଦ୍ଧଧନଧାନ୍ୟାନି ପୂର୍ଣ୍ଣାନି ବସୁମନ୍ତି ଚ । ୭ ।
ଯଥାପୁରାଣି ତେ ଗତ୍ୱା ରତ୍ନାନି ବିବିଧାନ୍ୟଥ ।
ରାମସ୍ୟ ପ୍ରିୟକାମାର୍ଥମୁପହାରାନ୍ନୃପା ଦଦୁଃ । ୮ ।

---

ସତ୍ୟରେ ଅକ୍ଷୌହିଣୀ ସେନା ନେଇ ଅନେକ ରାଜା ଆନନ୍ଦିତ ହୋଇ ରାମଚନ୍ଦ୍ରଙ୍କ ସହାୟ ହୋଇ ଅଯୋଧ୍ୟାରେ ରହିଥିଲେ ।୨। ସେମାନେ ବଳର ଅଭିମାନରେ ପୂର୍ଣ୍ଣ ହୋଇ ନିଜ ଭିତରେ କହିବାକୁ ଲାଗିଲେ, "ଆମ୍ଭେମାନେ ରାମ ଓ ରାବଣଙ୍କ ଯୁଦ୍ଧ ଦେଖି ପାରିଲୁ ନାହିଁ । ୩ । ରାବଣ ମରିଯିବା ପରେ ଭରତ ଆମ୍ଭମାନଙ୍କୁ ବୃଥାରେ ଡକାଇଲେ । ଯଦି ଆମ୍ଭେମାନେ ପ୍ରଥମରୁ ଖବର ପାଇଥାନ୍ତୁ, ତାହାହେଲେ ଆମେ ନିଃସନ୍ଦେହରେ ରାକ୍ଷସମାନଙ୍କୁ ତତ୍‌କ୍ଷଣାତ୍ ମାରିପକାଇଥାନ୍ତୁ ।୪। ଆମ୍ଭେମାନେ ରାମ ଓ ଲକ୍ଷ୍ମଣଙ୍କ ବାହୁବୀର୍ଯ୍ୟରେ ରକ୍ଷିତ ହୋଇ ଏବଂ ନିଶ୍ଚିନ୍ତ ହୋଇ ସମୁଦ୍ରର ଅପର ପାରରେ ଯାଇ ଯୁଦ୍ଧ କରିଥାନ୍ତୁ ।" ୫ । ଏହିପରି ବିବିଧପ୍ରକାର ଅସଂଖ୍ୟ କଥାବାର୍ତ୍ତା ହୋଇ ଏବଂ ହର୍ଷିତ ହୋଇ ରାଜାମାନେ ନିଜ ନିଜ ରାଜଧାନୀକୁ ଚାଲିଗଲେ । ୬ । ସେମାନଙ୍କ ରାଜ୍ୟମାନ ସବୁପ୍ରକାରେ ସମୃଦ୍ଧିମନ୍ତ, ଧନଧାନ୍ୟ ଓ ରତ୍ନରେ ପରିପୂର୍ଣ୍ଣ ଏବଂ ହର୍ଷିତ ପ୍ରଜାଜନରେ ପରିପୂର୍ଣ୍ଣ ଥିଲା । ୭ । ସେମାନେ ଆପଣା ଆପଣା ରାଜଧାନୀରେ ପହଞ୍ଚି ରାମଙ୍କର ପ୍ରସନ୍ନତା ସଂପାଦନ କରିବା ନିମନ୍ତେ ବିବିଧ ପ୍ରକାର ରତ୍ନ ଭେଟି ପଠାଇଲେ । ୮ । ସେମାନଙ୍କ ମଧ୍ୟରୁ ଅନେକ

ଅଶ୍ୱାନ୍ ଯାନାନି ରତ୍ନାନି ହସ୍ତିନଶ୍ଚ ମଦୋତ୍କଟାନ୍ ।
ଚନ୍ଦନାନି ଚ ମୁଖ୍ୟାନି ଦିବ୍ୟାନ୍ୟାଭରଣାନି ଚ । ୯ ।
ମଣିମୁକ୍ତାପ୍ରବାଳାଂସ୍ତୁ ଦାସ୍ୟୋ ରୂପସମନ୍ୱିତାଃ ।
ଅଜାବିକଂ ଚ ବିବିଧଂ ରଥାଂଶ୍ଚ ବିବିଧାନ୍ ଦଦୁଃ । ୧୦ ।
ଭରତୋ ଲକ୍ଷ୍ମଣଶ୍ଚୈବ ଶତ୍ରୁଘ୍ନଶ୍ଚ ମହାବଳାଃ ।
ଆଦାୟ ତାନି ରତ୍ନାନି ସ୍ୱାଂ ପୁରୀଂ ପୁନରାଗତାଃ । ୧୧ ।
ଆଗମ୍ୟ ଚ ପୁରୀଂ ରମ୍ୟାମଯୋଧ୍ୟାଂ ପୁରୁଷର୍ଷଭା ।
ତାନି ରତ୍ନାନି ଚିତ୍ରାଣି ରାମାୟ ସମୁପାହରନ୍ ॥ ୧୨ ।
ପ୍ରତିଗୃହ୍ୟ ଚ ତତ୍ସର୍ବଂ ରାମଃ ପ୍ରୀତିସମନ୍ୱିତଃ ।
ସୁଗ୍ରୀବାୟ ଦଦୌ ରାଜ୍ଞେ ମହାତ୍ମା କୃତକର୍ମଣେ । ୧୩ ।
ବିଭୀଷଣାୟ ଚ ଦଦୌ ତଥାନ୍ୟେଭ୍ୟୋଽପି ରାଘବଃ ।
ରାକ୍ଷସେଭ୍ୟଃ କପିଭ୍ୟଶ୍ଚ ଯୈର୍ବୃତୋ ଜୟମାପ୍ତବାନ୍ । ୧୪ ।
ତେ ସର୍ବେ ରାମଦତ୍ତାନି ରତ୍ନାନି କପିରାକ୍ଷସାଃ ।
ଶିରୋଭିର୍ଧାରୟାମାସୁର୍ବାହୁଭିଶ୍ଚ ମହାବଳାଃ ।୧୫ ।
ହନୂମନ୍ତଂ ଚ ନୃପତିରିକ୍ଷ୍ୱାକୂଣାଂ ମହାରଥଃ ।
ଅଙ୍ଗଦଂ ଚ ମହାବାହୁମଙ୍କମାରୋପ୍ୟ ବୀର୍ଯ୍ୟବାନ୍ । ୧୬ ।

---

ରାଜା ଘୋଟକ, ରତ୍ନ, ମଦୋତ୍କଟ ହସ୍ତୀ, ଉତ୍ତମ ଚନ୍ଦନ, ଦିବ୍ୟ ଆଭରଣ, ମଣି, ମୋତି, ରୂପବତୀ ଦାସୀ, ବିବିଧ ପ୍ରକାର ଉତ୍ତମ ଚର୍ମମୟ ଗନ୍ଧ ଓ ଶେଯ ଏବଂ ନାନାପ୍ରକାର ରଥାଦି ସହିତ ବହୁ ପ୍ରକାର ପଦାର୍ଥ ପଠାଇଲେ । ୯-୧୦ । ମହାବଳୀ ଭରତ, ଲକ୍ଷ୍ମଣ ଏବଂ ଶତ୍ରୁଘ୍ନ ସେହି ସମସ୍ତ ରତ୍ନ ନେଇ ପୁଣି ନିଜ ପୁରୀକୁ ଫେରି ଆସିଲେ । ୧୧ । ସେହି ପୁରୁଷଶ୍ରେଷ୍ଠମାନେ ରମଣୀୟ ଅଯୋଧ୍ୟାପୁରୀକୁ ଆସି ଉପହାର ବସ୍ତୁମାନ ରାମଙ୍କ ନିକଟରେ ଅର୍ପଣ କରିଦେଲେ । ୧୨ । ରାମ ପ୍ରୀତିପୂର୍ବକ ସେହି ସମସ୍ତ ଉପହାର ଗ୍ରହଣ କରିନେଲେ ଏବଂ ପରେ ମହା ଉପକାର କରିଥିବା ସୁଗ୍ରୀବ, ରାକ୍ଷସରାଜ ବିଭୀଷଣ ତଥା ଅନ୍ୟ ଯେଉଁ ବାନର ଓ ରାକ୍ଷସମାନେ ରାମଙ୍କୁ ରାବଣବିଜୟରେ ସହାୟତା କରିଥିଲେ, ସେ ସମସ୍ତଙ୍କୁ ଏ ଉପହାର ଦ୍ରବ୍ୟମାନ ବାଣ୍ଟିଦେଲେ । ୧୩-୧୪ । ସେହି ମହା-ବଳବାନ୍ ରାକ୍ଷସ ଓ ବାନରମାନେ ସେହି ସମସ୍ତ ରତ୍ନକୁ ମୁଣ୍ଡରେ ଲଗାଇ ନିଜ ନିଜ ଗଳା ଓ ବାହୁରେ ଧାରଣ କଲେ । ୧୫ । ଇକ୍ଷ୍ୱାକୁବଂଶୋଦ୍ଭବ ମହାବାହୁ ରାମ ହନୁମାନଙ୍କୁ ଏବଂ ଅଙ୍ଗଦଙ୍କୁ ନିଜ କୋଳରେ ବସାଇ ସୁଗ୍ରୀବଙ୍କୁ କହିଲେ, "ଏହି

ରାମଃ କମଲପତ୍ରାକ୍ଷଃ ସୁଗ୍ରୀବମିଦମବ୍ରବୀତ୍ ।
ଅଙ୍ଗଦସ୍ତେ ସୁପୁତ୍ରୋଽୟଂ ମନ୍ତ୍ରୀ ଚାପ୍ୟନିଲାତ୍ମଜଃ । ୧୭ ।
ସୁଗ୍ରୀବ ମନ୍ତ୍ରିତେ ଯୁକ୍ତୌ ମମାପି ଚ ହିତେ ରତୌ ।
ଅର୍ହତୋ ବିବିଧାଂ ପୂଜାଂ ତ୍ୱତ୍କୃତେ ବୈ ହରୀଶ୍ୱର । ୧୮ ।
ଇତ୍ୟୁକ୍ତ୍ୱା ବ୍ୟବମୁଚ୍ୟାଙ୍ଗାଦ୍ଭୂଷଣାନି ମହାଯଶାଃ ।
ସ ବବନ୍ଧ ମହାର୍ହାଣି ତଦାଙ୍ଗଦହନୂମତୋଃ । ୧୯ ।
ଆଭାଷ୍ୟ ଚ ମହାବୀର୍ଯାନ୍ ରାଘବୋ ଯୂଥପର୍ଷଭାନ୍ ।
ନୀଲଂ ନଲଂ କେସରିଣଂ କୁମୁଦଂ ଗନ୍ଧମାଦନମ୍ । ୨୦ ।
ସୁଷେଣଂ ପନସଂ ବୀରଂ ମୈନ୍ଦଂ ଦ୍ୱିବିଦମେବ ଚ ।
ଜାମ୍ବବନ୍ତଂ ଗବାକ୍ଷଂ ଚ ବିନତଂ ଧୂମ୍ରମେବ ଚ । ୨୧ ।
ବଲୀମୁଖଂ ପ୍ରଜଂଘଂ ଚ ସଂନାଦଂ ଚ ମହାବଲମ୍ ।
ଦରୀମୁଖଂ ଦଧିମୁଖମିନ୍ଦ୍ରଜାନୁଂ ଚ ଯୂଥପମ୍ । ୨୨ ।
ମଧୁରଂ ଶ୍ଲକ୍ଷ୍ଣୟା ବାଚା ନେତ୍ରାଭ୍ୟାମାପିବନ୍ନିବ ।
ସୁହୃଦୋ ମେ ଭବନ୍ତଶ୍ଚ ଶରୀରଂ ଭ୍ରାତରସ୍ତଥା । ୨୩ ।

---

ଅଙ୍ଗଦ ତୁମ୍ଭର ସୁପୁତ୍ର ଏବଂ ପବନନନ୍ଦନ ହନୁମାନ୍ ତୁମ୍ଭର ମନ୍ତ୍ରୀ ଅଟନ୍ତି । ୧୭-୧୮। ହେ ସୁଗ୍ରୀବ ! ଏ ଦୁହେଁ ଉତ୍ତମ ମନ୍ତ୍ରଣା ଦେବାପାଇଁ ଉପଯୁକ୍ତ ଏବଂ ମୋର ହିତ କରିବାରେ ସର୍ବଦା ନିରତ ରହିଥାନ୍ତି । ଅତଏବ ହେ କପିରାଜ ! ଏମାନଙ୍କୁ ସବୁ ପ୍ରକାରେ ମାନ ସମ୍ମାନ କରିବା ଉଚିତ । ତୁମଲାଗିହିଁ ଏମାନେ ପୂଜା ପାଇବା ଉଚିତ" ।୧୮ । ମହାଯଶସ୍ୱୀ ରାମ ଏହା କହି ନିଜ ଶରୀରରୁ ବହୁ ମୂଲ୍ୟବାନ୍ ଭୂଷଣ-ମାନ କାଢ଼ି ଅଙ୍ଗଦ ଏବଂ ହନୁମାନଙ୍କୁ ପିନ୍ଧାଇଦେଲେ । ୧୯ । ତଦନନ୍ତର ରାମ ବଡ଼ ବଡ଼ ବଳବାନ୍ ବାନରଯୂଥପତିଙ୍କ ସହିତ ସମ୍ଭାଷଣ କଲେ । ନୀଳ, ନଳ, କେଶରୀ, କୁମୁଦ, ଗନ୍ଧମାଦନ, ସୁଷେଣ, ପନସ, ବୀର ମୈନ୍ଦ ଓ ଦ୍ୱିବିଦ, ଜାମ୍ବବାନ୍, ଗବାକ୍ଷ, ବିନତ, ଧୂମ୍ରାକ୍ଷ, ବଲୀମୁଖ, ପ୍ରଜଙ୍ଘ, ମହାବଳବାନ୍ ସନ୍ନାଦ, ଦରୀମୁଖ, ଦଧିମୁଖ, ଇନ୍ଦ୍ରଜାନୁ ଆଦି ଯୂଥପତିମାନଙ୍କୁ ରାମ ପ୍ରୀତିପୂର୍ଣ୍ଣ ଦୃଷ୍ଟିରେ ଦେଖିଲେ ଏବଂ ସେମାନଙ୍କୁ ଅତ୍ୟନ୍ତ ମଧୁର ବଚନରେ କହିଲେ, "ଆପଣମାନେ ସମସ୍ତେ କେବଳ ମୋର ଉପକାରୀ ମିତ୍ର ନୁହନ୍ତି, ମାତ୍ର ମୋର ଶରୀର ତଥା ସହୋଦର ଭାଇମାନଙ୍କ ସହିତ ସମାନ ଅଟନ୍ତି । ୨୦-୨୩ । ହେ ବାନରଗଣ ! ତୁମ୍ଭେମାନେ ମୋତେ

ପୁଷ୍ଟାଭିରୁଦ୍ଧୃତଶ୍ଚାହଂ ବ୍ୟସନାତ୍ କାନନୌକସଃ ।
ଧନ୍ୟୋ ରାଜା ଚ ସୁଗ୍ରୀବୋ ଭବଦ୍ଭିଃ ସୁହୃଦାଂ ବରୈଃ । ୨୪ ।
ଏବମୁକ୍ତ୍ୱା ଦଦୌ ତେଭ୍ୟୋ ଭୂଷଣାନି ଯଥାର୍ହତଃ ।
ବସ୍ତ୍ରାଣି ଚ ମହାର୍ହାଣି ସସ୍ୱଜେ ଚ ନରର୍ଷଭଃ । ୨୫ ।
ତେ ପିବନ୍ତଃ ସୁଗନ୍ଧୀନି ମଧୂନି ମଧୁପିଙ୍ଗଳାଃ ।
ମାଂସାନି ଚ ସୁମୃଷ୍ଟାନି ମୂଳାନି ଚ ଫଳାନି ଚ । ୨୬ ।
ଏବଂ ତେଷାଂ ନିବସତାଂ ମାସଃ ସାଗ୍ରୋ ଯଯୌ ତଦା ।
ମୁହୂର୍ତ୍ତମିବ ତେ ସର୍ବେ ରାଜଭକ୍ତ୍ୟା ଚ ମେନିରେ । ୨୭ ।
ରାମୋଽପି ରେମେ ତୈଃ ସାର୍ଦ୍ଧଂ ବାନରୈଃ କାମରୂପିଭିଃ ।
ରାକ୍ଷସୈଶ୍ଚ ମହାବୀର୍ଯ୍ୟୈରୃକ୍ଷୈଶ୍ଚୈବ ମହାବଳୈଃ । ୨୮ ।
ଏବଂ ତେଷାଂ ଯଯୌ ମାସୋ ଦ୍ୱିତୀୟଃ ଶୈଶିରଃ ସୁଖମ୍ ।
ବାନରାଣାଂ ପ୍ରହୃଷ୍ଟାନାଂ ରାକ୍ଷସାନାଂ ଚ ସର୍ବଶଃ । ୨୯ ।
ଇକ୍ଷ୍ୱାକୁନଗରେ ରମ୍ୟେ ପରାଂ ପ୍ରୀତିମୁପାସତାମ୍ ।
ରାମସ୍ୟ ପ୍ରୀତିକରଣୈଃ କାଲସ୍ତେଷାଂ ସୁଖଂ ଯଯୌ । ୩୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ବାନରପ୍ରୀଣନଂ ନାମ ଏକୋନଚତ୍ୱାରିଂଶଃ ସର୍ଗଃ ।

---

ଅତି ବଡ଼ ବିପଦରୁ ଉଦ୍ଧାର କରିଅଛ । ଯେଉଁ ରାଜା ସୁଗ୍ରୀବଙ୍କର ଆପଣମାନଙ୍କ ପରି ହିତୈଷୀ ମିତ୍ର ଅଛନ୍ତି ସେ ବାସ୍ତବିକ ଧନ୍ୟ ଅଟନ୍ତି” । ୨୪ । ନରଶ୍ରେଷ୍ଠ ରାମ ଏହା କହି ସେହି ବାନରଯୂଥପତିମାନଙ୍କୁ ଯଥାଯୋଗ୍ୟ ବହୁମୂଲ୍ୟ ବସ୍ତ୍ର ଏବଂ ହୀରକଖଚିତ ଭୂଷଣ ଦେଇ ସେମାନଙ୍କୁ ଆଲିଙ୍ଗନ କଲେ । ୨୫ । ମଧୁସଦୃଶ ପିଙ୍ଗଳବର୍ଣ୍ଣ ସେହି ବାନରଯୂଥପତିମାନେ ସୁଗନ୍ଧ ମଧୁ ପାନ କରି ଓ ମାଂସ ଏବଂ ସ୍ୱାଦୁ ଫଳ ମୂଳ ଖାଇ ରହିଥିଲେ । ୨୬ । ଏହିପ୍ରକାରେ ରହୁ ରହୁ ସେମାନଙ୍କର ମାର୍ଗଶିର ମାସ ବିତିଗଲା । ମାତ୍ର ରାମଙ୍କ ପ୍ରତି ସେମାନଙ୍କର ଅନୁରାଗ ଥିବାରୁ ଏତେ ଦୀର୍ଘ ସମୟ ମଧ୍ୟ ସେମାନଙ୍କୁ ମୁହୂର୍ତ୍ତକପରି ଲାଗିଲା । ୨୭ । ରାମ ମଧ୍ୟ ସେହି କାମରୂପୀ ବାନର, ମହା ପରାକ୍ରମୀ ରାକ୍ଷସ ଏବଂ ମହାବଳୀ ଋକ୍ଷମାନଙ୍କ ସହିତ ବିବିଧ ପ୍ରକାର କ୍ରୀଡ଼ା କରୁଥିଲେ । ୨୮ । ଏହି ପ୍ରକାରେ ଅଯୋଧ୍ୟାରେ ରହି ସେହି ବାନର ଓ ରାକ୍ଷସମାନଙ୍କର ଶିଶିର ଋତୁର ଦ୍ୱିତୀୟ ମାସ ମଧ୍ୟ ଅତି ଆନନ୍ଦରେ ଓ ସୁଖରେ ବିତିଗଲା ।୨୯। ରାମଙ୍କ ପ୍ରୀତିସମ୍ପାଦନ କରିବାରେ ଋକ୍ଷ, ବାନର ଏବଂ ରାକ୍ଷସମାନଙ୍କର ସମସ୍ତ ଅଯୋଧ୍ୟାପୁରୀରେ ଅତି ସୁଖରେ ଅତିବାହିତ ହୋଇଗଲା ।୩୦।

# ଚତ୍ୱାରିଂଶଃ ସର୍ଗଃ

## ହନୂମଦ୍‌ପ୍ରାର୍ଥନା

ତଥା ସ୍ମ ତେଷାଂ ବସତାମୃକ୍ଷବାନରରକ୍ଷସାମ୍ ।
ରାଘବସ୍ତୁ ମହାତେଜାଃ ସୁଗ୍ରୀବମିଦମବ୍ରବୀତ୍ ।୧।
ଗମ୍ୟତାଂ ସୌମ୍ୟ କିଷ୍କିନ୍ଧାଂ ଦୁରାଧର୍ଷାଂ ସୁରାସୁରୈଃ ।
ପାଲୟସ୍ୱ ସହାମାତ୍ୟୋ ରାଜ୍ୟଂ ନିହତକଣ୍ଟକମ୍ ।୨।
ଅଙ୍ଗଦଂ ଚ ମହାବାହୋ ପ୍ରୀତ୍ୟା ପରମୟା ଯୁତଃ ।
ପଶ୍ୟ ତ୍ୱଂ ହନୁମନ୍ତଂ ଚ ନଳଂ ଚ ସୁମହାବଳମ୍ ।୩।
ସୁଷେଣଂ ଶ୍ୱଶୁରଂ ବୀରଂ ତାରଂ ଚ ବଳିନାଂ ବରମ୍ ।
କୁମୁଦଂ ଚୈବ ଦୁର୍ଧର୍ଷଂ ନୀଳଂ ଚୈବ ମହାବଳମ୍ ।୪।
ବୀରଂ ଶତବଳିଂ ଚୈବ ମୈନ୍ଦଂ ଦ୍ୱିବିଦମେବ ଚ ।
ଗଜଂ ଗବାକ୍ଷଂ ଗବୟଂ ଶରଭଂ ଚ ମହାବଳମ୍ ।୫।
ପଶ୍ୟ ପ୍ରୀତିସମାଯୁକ୍ତୋ ଗନ୍ଧମାଦନମେବ ଚ ।
ଋଷଭଂ ଚ ସୁବିକ୍ରାନ୍ତଂ ଜାମ୍ବବନ୍ତଂ ମହାବଳମ୍ ।୬।

---

## ୪୦ଶ ସର୍ଗ

### ( ହନୂମାନଙ୍କ ପ୍ରାର୍ଥନା )

ଏହି ପ୍ରକାରେ ସେମାନେ ସମସ୍ତେ ଅଯୋଧ୍ୟାରେ ଆନନ୍ଦପୂର୍ବକ ରହିଥିଲେ । ତହିଁରେ ମହାତେଜସ୍ୱୀ ରାମ ସୁଗ୍ରୀବଙ୍କୁ କହିଲେ ।୧। "ହେ ସୌମ୍ୟ ! ଏବେ ତୁମେ ସୁର ଏବଂ ଅସୁରମାନଙ୍କର ଅଜେୟ କିଷ୍କିନ୍ଧ୍ୟାପୁରୀକୁ ଫେରିଯାଅ ଏବଂ ସେଠାରେ ନିଜର ମନ୍ତ୍ରୀମାନଙ୍କ ସହିତ ନିଷ୍କଣ୍ଟକ ରାଜ୍ୟପାଳନ କର ।୨। ହେ ମହାବୀର ! ତୁମେ ବଳବାନ୍ ଅଙ୍ଗଦ, ହନୂମାନ୍ ଏବଂ ନଳଙ୍କ ଉପରେ ପରମ ପ୍ରୀତିଯୁକ୍ତ ଦୃଷ୍ଟି ରଖିବ ।୩। ନିଜର ଶ୍ୱଶୁର ସୁଷେଣ, ବଳବାନମାନଙ୍କ ମଧ୍ୟରେ ଶ୍ରେଷ୍ଠ ବୀର ତାର, ଦୁର୍ଦ୍ଧର୍ଷ କୁମୁଦ, ମହାବଳୀ ନୀଳ, ବୀର ଶତବଳି, ମୈନ୍ଦ, ଦ୍ୱିବିଦ, ଗଜ, ଗବାକ୍ଷ, ଗବୟ, ମହାବଳବାନ୍ ଶରଭ, ମହାବଳୀ ଅଜେୟ ଋକ୍ଷରାଜ ଜାମ୍ବବନ୍ତ ଏବଂ ଗନ୍ଧମାଦନଙ୍କ ଉପରେ ମଧ୍ୟ ତୁମ୍ଭର ପ୍ରୀତିଯୁକ୍ତ ଦୃଷ୍ଟି ରହିବା ଆବଶ୍ୟକ ।୪-୬।

ଯେ ଚେମେ ସୁମହାତ୍ମାନୋ ମଦର୍ଥେ ତ୍ୟକ୍ତଜୀବିତାଃ ।
ପଶ୍ୟ ତ୍ୱଂ ପ୍ରୀତିସଂଯୁକ୍ତୋ ମା ଚୈଷାଂ ବିପ୍ରିୟଂ କୃଥାଃ । ୭ ।
ଏବମୁକ୍ତ୍ୱା ତୁ ସୁଗ୍ରୀବମାଶ୍ଳିଷ୍ୟ ଚ ପୁନଃ ପୁନଃ ।
ବିଭୀଷଣମୁବାଚାଥ ରାମ ମଧୁରୟା ଗିରା । ୮ ।
ଲଙ୍କାଂ ପ୍ରଶାଧି ଧର୍ମେଣ ଧର୍ମଜ୍ଞସ୍ତ୍ୱଂ ମତୋ ମମ ।
ପୁରସ୍ୟ ରାକ୍ଷସାନାଂ ଚ ଭ୍ରାତୁର୍ବୈଶ୍ରବଣସ୍ୟ ଚ । ୯ ।
ମା ଚ ବୁଦ୍ଧିମଧର୍ମେ ତ୍ୱଂ କୁର୍ଯ୍ୟା ରାଜନ୍ କଥଂଚନ ।
ବୁଦ୍ଧିମନ୍ତୋ ହି ରାଜାନୋ ଧ୍ରୁବମଶ୍ନନ୍ତି ମେଦିନୀମ୍ । ୧୦ ।
ଅହଂ ଚ ନିତ୍ୟଶୋ ରାଜନ୍ ସୁଗ୍ରୀବସହିତସ୍ତ୍ୱୟା ।
ସ୍ମର୍ତ୍ତବ୍ୟଃ ପରୟା ପ୍ରୀତ୍ୟା ଗଚ୍ଛ ତ୍ୱଂ ବିଗତ ଜ୍ୱରଃ ।୧୧ ।
ରାମସ୍ୟ ଭାଷିତଂ ଶ୍ରୁତ୍ୱା ଋକ୍ଷବାନରରାକ୍ଷସାଃ ।
ସାଧୁ ସାଧ୍ୱିତି କାକୁତ୍ସ୍ଥଂ ପ୍ରଶଶଂସୁଃ ପୁନଃ ପୁନଃ । ୧୨ ।
ତବ ବୁଦ୍ଧିର୍ମହାବାହୋ ବୀର୍ଯ୍ୟମଦ୍ଭୁତମେବ ଚ ।
ମାଧୁର୍ଯ୍ୟଂ ପରମଂ ରାମ ସ୍ୱୟମ୍ଭୋରିବ ନିତ୍ୟଦା । ୧୩ ।

---

ଅନ୍ୟ ଯେଉଁ ବାନର ବୀରମାନେ ମୋ ଲାଗି ଆପଣା ପ୍ରାଣ ମୂର୍ଚ୍ଛି ଯୁଦ୍ଧ କରିଥିଲେ, ହେ ସୁଗ୍ରୀବ ! ତୁମେ ସମସ୍ତଙ୍କୁ ପ୍ରୀତିଯୁକ୍ତ ଦୃଷ୍ଟିରେ ଦେଖିବ ଏବଂ କେବେ ସେମାନଙ୍କର କୌଣସି ଅପ୍ରିୟ କାର୍ଯ୍ୟ କରିବ ନାହିଁ” । ୭ । ରାମ ଏହିପରି କହି ଏବଂ ବାରମ୍ବାର ସୁଗ୍ରୀବଙ୍କୁ ଆଲିଙ୍ଗନ କରି ସାରି ବିଭୀଷଣଙ୍କୁ ମଧୁର ବଚନରେ କହିଲେ । ୮ । “ହେ ବିଭୀଷଣ ! ମୋ ମତରେ ତୁମେ ଧର୍ମଜ୍ଞ ଅଟ, ସୁତରାଂ ଲଙ୍କାନଗରୀକୁ ଧର୍ମରେ ଶାସନ କର । ରାକ୍ଷସମାନଙ୍କ ରାଜଧାନୀ ଏବଂ ଭ୍ରାତା ବୈଶ୍ରବଣଙ୍କ ପୁରୀକୁ ତୁମେ ଧର୍ମରେ ହିଁ ପାଳନ କରିବା ଉଚିତ । ୯ । ହେ ରାଜନ୍ ! ତୁମେ ଅଧର୍ମ ଆଡ଼କୁ କେବେ ହେଲେ ଦୃଷ୍ଟି ଦେବ ନାହିଁ । କାରଣ ବୁଦ୍ଧିମାନ୍ ରାଜାହିଁ ପୃଥିବୀରେ ରାଜ୍ୟସୁଖ ଭୋଗ କରନ୍ତି । ୧୦ । ହେ ରାଜନ୍ ! ତୁମେ ମୋତେ ଓ ସୁଗ୍ରୀବଙ୍କୁ ସର୍ବଦା ପରମପ୍ରୀତି ସହକାରେ ସ୍ମରଣ କରିବ । ଏବେ ତୁମେ ନିରୁଦ୍‌ବିଗ୍ନ ହୋଇ ଯାତ୍ରା କର” । ୧୧ । ରାମଚନ୍ଦ୍ରଙ୍କର ଏହି କଥା ଶୁଣି ଋକ୍ଷ, ବାନର ଏବଂ ରାକ୍ଷସମାନେ ସାଧୁ ସାଧୁ ବୋଲି କହି ବାରମ୍ବାର ରାମଙ୍କୁ ପ୍ରଶଂସା କରିବାକୁ ଲାଗିଲେ । ୧୨ । ସେମାନେ କହିଲେ, “ହେ ରାମ ! ଆପଣଙ୍କ ବୁଦ୍ଧି ବ୍ରହ୍ମାଙ୍କ ସଦୃଶ ସର୍ବଦା ପ୍ରାଣୀମାନଙ୍କ କଲ୍ୟାଣକାରୀ; ଆପଣଙ୍କ ପରାକ୍ରମ ଅଦ୍ଭୁତ ଏବଂ ଆପଣଙ୍କ ମାଧୁର୍ଯ୍ୟ ସର୍ବୋତ୍କୃଷ୍ଟ ଅଟେ” । ୧୩ । ବାନର ଓ ରାକ୍ଷସ-

ତେଷାମେବଂ ବ୍ରୁବାଣାନାଂ ବାନରାଣାଂ ଚ ରକ୍ଷସାମ୍ ।
ହନୂମାନ୍ ପ୍ରଣତୋ ଭୂତ୍ୱା ରାଘବଂ ବାକ୍ୟମବ୍ରବୀତ୍ । ୧୪ ।
ସ୍ନେହୋ ମେ ପରମୋ ରାଜଂସ୍ତ୍ୱୟି ତିଷ୍ଠତୁ ନିତ୍ୟଦା ।
ଭକ୍ତିଶ୍ଚ ନିୟତା ବୀର ଭାବୋ ନାନ୍ୟତ୍ର ଗଚ୍ଛତୁ । ୧୫ ।
ଯାବଦ୍ରାମକଥା ବୀର ଚରିଷ୍ୟତି ମହୀତଳେ ।
ତାବଚ୍ଛରୀରେ ବତ୍ସ୍ୟନ୍ତୁ ପ୍ରାଣା ମମ ନ ସଂଶୟଃ । ୧୬ ।
ଯଚ୍ଚୈତଚ୍ଚରିତଂ ଦିବ୍ୟଂ କଥାଂ ତେ ରଘୁନନ୍ଦନ ।
ତନ୍ମମାପ୍ସରସୋ ନାମ ଶ୍ରାବୟେୟୁର୍ନରର୍ଷଭ । ୧୭ ।
ତଚ୍ଛ୍ରୁତ୍ୱାହଂ ତତୋ ବୀର ତବ ଚର୍ଯାମୃତଂ ପ୍ରଭୋ ।
ଉତ୍କଣ୍ଠାଂ ତାଂ ହରିଷ୍ୟାମି ମେଘଲେଖାମିବାନିଳଃ । ୧୮ ।
ଏବଂ ବ୍ରୁବାଣଂ ରାମସ୍ତୁ ହନୂମନ୍ତଂ ବରାସନାତ୍ ।
ଉତ୍ଥାୟ ସସ୍ୱଜେ ସ୍ନେହାଦ୍ ବାକ୍ୟମେତଦୁବାଚ ହ । ୧୯ ।
ଏବମେତତ୍ କପିଶ୍ରେଷ୍ଠ ଭବିତା ନାତ୍ର ସଂଶୟଃ ।
ଚରିଷ୍ୟତି କଥା ଯାବଦେଷା ଲୋକେ ଚ ମାମିକା । ୨୦ ।

---

ମାନେ ଏହିପରି କହୁଥିବା ବେଳେ ହନୁମାନ୍ ପ୍ରଣାମ କରି ରାମଙ୍କୁ କହିଲେ । ୧୪ । "ହେ ରାଜନ୍, ହେ ବୀର ! ଆପଣଙ୍କଠାରେ ମୋର ପରମ ଭକ୍ତି ଓ ପ୍ରୀତି ସର୍ବଦା ଅକ୍ଷୁଣ୍ଣ ରହୁ, ମୋ ମନ ଆପଣଙ୍କୁ ଛାଡ଼ି ଅନ୍ୟ କୌଣସି କଥାରେ ଅନୁରକ୍ତ ନ ରହୁ । ୧୫ । ହେ ବୀର ! ଯେପର୍ଯ୍ୟନ୍ତ ଆପଣଙ୍କର ଏ କଥା ପୃଥିବୀରେ ପ୍ରଚଳିତ ରହିଥିବ, ସେପର୍ଯ୍ୟନ୍ତ ମୋର ପ୍ରାଣ ମୋର ଶରୀରରେ ରହିଥାଉ । ୧୬ । ହେ ନରଶ୍ରେଷ୍ଠ ରାମ ! ଆପଣଙ୍କର ଏ ଦିବ୍ୟ ଚରିତ ଓ କଥା ଅପ୍ସରାମାନେ ମୋତେ ଗାନ କରି ଶୁଣାଉଥିବେ । ୧୭ । ହେ ପ୍ରଭୋ ! ମୁଁ ଯେତେବେଳେ ଆପଣଙ୍କ ଚରିତାମୃତ ଶ୍ରବଣ କରିବି, ସେତେବେଳେ ପବନ ମେଘକୁ ଦୂର କରିଦେଲାପରି ତାହା ଆପଣଙ୍କ ଦର୍ଶନର ଉତ୍କଣ୍ଠା ଦୂର କରିଦେବ" । ୧୮ । ରାମ ଶ୍ରେଷ୍ଠ ରାଜ-ସିଂହାସନରୁ ଉଠିଆସି ଏହିପରି ମଧୁର ବଚନ କହୁଥିବା ହନୁମାନଙ୍କୁ ସ୍ନେହରେ ଆଲିଙ୍ଗନ କରିପକାଇଲେ ଏବଂ କହିଲେ । ୧୯ । "ହେ ବାନରଶ୍ରେଷ୍ଠ ! ତୁମେ ଯାହା କହିଲ ତାହାହିଁ ହେବ, ଏଥିରେ କୌଣସି ସନ୍ଦେହ ନାହିଁ । ଯେପର୍ଯ୍ୟନ୍ତ ମୋ କଥା ପ୍ରଚଳିତ ଥିବ, ସେପର୍ଯ୍ୟନ୍ତ ତୁମ୍ଭର କୀର୍ତ୍ତି ମଧ୍ୟ ଏ ଲୋକରେ ସ୍ଥିର

ତାବତ୍ତେ ଭବିତା କୀର୍ତ୍ତିଃ ଶରୀରେଽପ୍ୟସବସ୍ତଥା ।
ଲୋକା ହି ଯାବତ୍ ସ୍ଥାସ୍ୟନ୍ତି ତାବତ୍ ସ୍ଥାସ୍ୟତି ମେ କଥା ।୨୧।
ଏକୈକସ୍ୟୋପକାରସ୍ୟ ପ୍ରାଣାନ୍ ଦାସ୍ୟାମି ତେ କପେ ।
ଶେଷସ୍ୟେହୋପକାରାଣାଂ ଭବାମ ଋଣିନୋ ବୟମ୍ । ୨୨ ।
ମଦଙ୍ଗେ ଜୀର୍ଣ୍ଣତାଂ ଯାତୁ ଯତ୍ତ୍ୱୟୋପକୃତଂ କପେ ।
ନରଃ ପ୍ରତ୍ୟୁପକାରାଣାମାପତ୍ସ୍ୱାୟାତି ପାତ୍ରତାମ୍ । ୨୩ ।
ତତୋଽସ୍ୟ ହାରଂ ଚନ୍ଦ୍ରାଭଂ ମୁଚ୍ୟ କଣ୍ଠାତ୍ସ ରାଘବଃ ।
ବୈଦୂର୍ଯ୍ୟତରଳଂ କଣ୍ଠେ ବବନ୍ଧ ଚ ହନୂମତଃ । ୨୪ ।
ତେନୋରସି ନିବଦ୍ଧେନ ହାରେଣ ମହତା କପିଃ ।
ରରାଜ ହେମଶୈଳେନ୍ଦ୍ରଶ୍ଚନ୍ଦ୍ରେଣାକ୍ରାନ୍ତମସ୍ତକଃ । ୨୫ ।
ଶ୍ରୁତ୍ୱା ତୁ ରାଘବସ୍ୟୈତଦୁତ୍ଥାୟୋତ୍ଥାୟ ବାନରାଃ ।
ପ୍ରଣମ୍ୟ ଶିରସା ପାଦୌ ନିର୍ଜଗ୍ମୁସ୍ତେ ମହାବଳାଃ । ୨୬ ।
ସୁଗ୍ରୀବଃ ସ ଚ ରାମେଣ ନିରନ୍ତରମୁରୋଗତଃ ।
ବିଭୀଷଣଶ୍ଚ ଧର୍ମାତ୍ମା ସର୍ବେ ତେ ବାଷ୍ପବିକ୍ଳବାଃ । ୨୭ ।

---

ରହିବ ଏବଂ ଯେପର୍ଯ୍ୟନ୍ତ ତୁମେ ଶରୀର ଧାରଣ କରି ଏ ଲୋକରେ ବାସ କରୁଥିବ, ଯେପର୍ଯ୍ୟନ୍ତ ତୁମେ ଏ ଲୋକରେ ରହିଥିବ, ସେପର୍ଯ୍ୟନ୍ତ ମୋ କଥା ମଧ୍ୟ ପ୍ରଚଳିତ ରହିଥିବ । ୨୦-୨୧ । ହେ ବାନର ! ତୁମର ଗୋଟିଏ ଉପକାରରେ ପ୍ରସନ୍ନ ହୋଇ ତୁମକୁ ମୁଁ ମୋର ପ୍ରାଣ ଦାନ କରୁଅଛି । ତୁମର ଅବଶିଷ୍ଟ ଉପକାର ନିମନ୍ତେ ଆମେ ତୁମଠାରେ ଋଣୀ ହୋଇ ରହିବୁ । ୨୨ । ହେ ବାନର ! ତୁମେ ଯେଉଁ ଉପକାର କରିଛ ତାହା ମୋ ଅଙ୍ଗରେ ଜୀର୍ଣ୍ଣ ହୋଇଯାଉ । କାରଣ ମନୁଷ୍ୟ ବିପତ୍ତିରେହିଁ ପ୍ରତ୍ୟୁପକାରର ପାତ୍ର ହୋଇଥାଏ” । ୨୩ । ଏହା କହି ରାମ ନିଜ ଗଳାରୁ ଚନ୍ଦ୍ରମା ସଦୃଶ ଝକଝକ୍ୟଶାଳୀ ବୈଦୂର୍ଯ୍ୟମଣିର ହାର କାଢ଼ି ହନୁମାନଙ୍କ ଗଳାରେ ବାନ୍ଧିଦେଲେ । ୨୪ । ସୁବର୍ଣ୍ଣମୟ ଶୈଳରାଜ ସୁମେରୁ ନିଜ ଉପରେ ପଡ଼ିଥିବା ଚନ୍ଦ୍ରକିରଣଦ୍ୱାରା ଯେପରି ଶୋଭିତ ହୁଅନ୍ତି, ସେହିପରି ହନୁମାନଙ୍କ ବକ୍ଷସ୍ଥଳରେ ପଡ଼ିଥିବା ସେହି ହାର ହନୁମାନଙ୍କ ଶୋଭା ବଢ଼ାଇବାକୁ ଲାଗିଲା । ୨୫ । ରାମଙ୍କ କଥା ଶୁଣି ଅନ୍ୟ ବାନରମାନେ ଗୋଟି ଗୋଟି ହୋଇ ଉଠି ତାଙ୍କୁ ପ୍ରଣାମ କଲେ ଏବଂ ଆପଣା ଆପଣା ଘରକୁ ଚାଲିଗଲେ ।୨୬। କପିରାଜ ସୁଗ୍ରୀବ ଏବଂ ଧର୍ମାତ୍ମା ବିଭୀଷଣ ରାମଙ୍କର ଗଳାରେ ଓହଳିପଡ଼ିଲେ । ସେତେବେଳେ ସେ ତିନିଙ୍କ ଚକ୍ଷୁରୁ ଅଶ୍ରୁ ବହିବାକୁ ଲାଗିଲା ଏବଂ ସେମାନଙ୍କ କଣ୍ଠ

ସର୍ବେ ଚ ତେ ବାଷ୍ପକଲାଃ ସାଶ୍ରୁନେତ୍ରା ବିଚେତସଃ ।
ସଂମୂଢ଼ା ଇବ ଦୁଃଖେନ ତ୍ୟଜନ୍ତୋ ରାଘବଂ ତଦା । ୨୮ ।
କୃତପ୍ରସାଦାସ୍ତେନୈବଂ ରାଘବେଣ ମହାତ୍ମନା ।
ଜଗ୍ମୁଃ ସ୍ୱଂ ସ୍ୱଂ ଗୃହଂ ସର୍ବେ ଦେହୀ ଦେହମିବ ତ୍ୟଜନ୍ ।୨୯।
ତତସ୍ତୁ ତେ ରାକ୍ଷସଋକ୍ଷବାନରାଃ
ପ୍ରଣମ୍ୟ ରାମଂ ରଘୁବଂଶବର୍ଧନମ୍ ।
ବିୟୋଗଜାଶ୍ରୁପ୍ରତିପୂର୍ଣ୍ଣଲୋଚନାଃ
ପ୍ରତିପ୍ରୟାତାସ୍ତୁ ଯଥାନିବାସିନଃ । ୩୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ହନୁମତ୍ପ୍ରାର୍ଥନା ନାମ ଚତ୍ୱାରିଂଶଃ ସର୍ଗଃ ।

---

ବାଷ୍ପରୁଦ୍ଧ ହୋଇଗଲ୍ । ୨୭ । ବଡ଼ ଦୁଃଖର ସହିତ ସେମାନେ ରାମଚନ୍ଦ୍ରଙ୍କୁ ଛାଡ଼ିଲେ । ସେତେବେଳେ ସେ ସମସ୍ତଙ୍କ ଚକ୍ଷୁରୁ ଅଶ୍ରୁ ବହୁଥିଲା ଏବଂ ସେମାନେ ଦୁଃଖରେ ବିହ୍ୱଳ ହୋଇ ପଡ଼ିଥିଲେ । ୨୮ ! ଏହି ପ୍ରକାରେ ସେମାନେ ମହାତ୍ମା ରାମଙ୍କ ଦ୍ୱାରା ଅନୁଗୃହୀତ ହୋଇ ନିଜ ନିଜ ଗୃହକୁ ଗଲେ, କିନ୍ତୁ ପ୍ରାଣୀ ଦେହତ୍ୟାଗ କଲାବେଳେ ତାହାର ଯେପରି କଷ୍ଟ ହୋଇଥାଏ, ବିଦାୟବେଳେ ସେମାନଙ୍କର ସେହିପରି କଷ୍ଟ ହୋଇଥିଲା । ୨୯ । ରାକ୍ଷସ, ଋକ୍ଷ ଏବଂ ବାନରମାନେ ରାମଚନ୍ଦ୍ରଙ୍କ ବିୟୋଗରୁ ଜାତ ଅଶ୍ରୁଦ୍ୱାରା ନେତ୍ର ପୂର୍ଣ୍ଣ କରି ରଘୁବଂଶବୃଦ୍ଧିକାରୀ ରାମଙ୍କୁ ପ୍ରଣାମ କରି ନିଜ ନିଜ ବାସସ୍ଥାନକୁ ଚାଲିଗଲେ । ୩୦ ।

# ଏକଚତ୍ୱାରିଂଶଃ ସର୍ଗଃ

## ପୁଷ୍ପକପୂନରଭ୍ୟନୁଜ୍ଞା

ବସୃଜ୍ୟ ଚ ମହାବାହୁ ଋକ୍ଷବାନରରାକ୍ଷସାନ୍ ।
ଭ୍ରାତୃଭିଃ ସହିତୋ ରାମଃ ପ୍ରମୁମୋଦ ସୁଖଂ ସୁଖୀ । ୧ ।
ଅଥାପରାହ୍ନସମୟେ ଭ୍ରାତୃଭିଃ ସହ ରାଘବଃ ।
ସୁଶ୍ରାବ ମଧୁରାଂ ବାଣୀମନ୍ତରିକ୍ଷାତ୍ ପ୍ରଭାଷିତାମ୍ । ୨ ।
ସୌମ୍ୟ ରାମ ନିରୀକ୍ଷସ୍ୱ ସୌମ୍ୟେନ ବଦନେନ ମାମ୍ ।
କୁବେରଭବନାତ୍ ପ୍ରାପ୍ତଂ ବିଦ୍ଧି ମାଂ ପୁଷ୍ପକଂ ପ୍ରଭୋ । ୩ ।
ତବ ଶାସନମାଜ୍ଞାୟ ଗତୋଽସ୍ମି ଧନଦଂ ପ୍ରତି ।
ଉପସ୍ଥାତୁଂ ନରଶ୍ରେଷ୍ଠ ସ ଚ ମାଂ ପ୍ରତ୍ୟଭାଷତ । ୪ ।
ନିର୍ଜିତସ୍ତ୍ୱଂ ନରେନ୍ଦ୍ରେଣ ରାଘବେଣ ମହାତ୍ମନା ।
ନିହତ୍ୟ ଯୁଧି ଦୁର୍ଧର୍ଷଂ ରାବଣଂ ରାକ୍ଷସେଶ୍ୱରମ୍ । ୫ ।
ମମାପି ପରମା ପ୍ରୀତିର୍ହତେ ତସ୍ମିନ୍ ଦୁରାତ୍ମନି ।
ରାବଣେ ସଗଣେ ଚୈବ ସପୁତ୍ରେ ସହବାନ୍ଧବେ । ୬ ।

---

## ୪୧ଶ ସର୍ଗ

( ପୁଷ୍ପକକୁ ବିଦାୟପ୍ରଦାନ )

ଋକ୍ଷ, ବାନର ଏବଂ ରାକ୍ଷସମାନଙ୍କୁ ବିଦାୟ ଦେଇ ମହାବଳବାନ୍ ରାମ ନିଜ ଭାଇମାନଙ୍କ ସହିତ ସୁଖ ଓ ଆନନ୍ଦ ଉପଭୋଗ କଲେ । ୧ । ଦିନେ ଅପରାହ୍ଣ ସମୟରେ ଭାଇମାନଙ୍କ ସହିତ ରାମ ଆକାଶରୁ ଏହି ମଧୁରବାଣୀ ଶୁଣିଲେ । ୨ । "ହେ ସୌମ୍ୟ ରାମ ! ଆପଣ ପ୍ରସନ୍ନ ହୋଇ ମୋ ଆଡ଼କୁ ଦୃଷ୍ଟିପାତ କରନ୍ତୁ । ହେ ପ୍ରଭୋ ! ମୁଁ ପୁଷ୍ପକ ନାମକ ବିମାନ; କୁବେରଙ୍କ ଭବନରୁ ଆସିଅଛି । ୩ । ହେ ପ୍ରଭୋ ! ମୁଁ ତୁମ୍ଭର ଆଜ୍ଞା ପାଇ କୁବେରଙ୍କ ଭବନକୁ ଯାଇଥିଲି । ସେ ମୋତେ କହିଲେ, ରାଜା ରାମ ରାକ୍ଷସରାଜ ଦୁର୍ଦ୍ଧର୍ଷ ରାବଣକୁ ମାରି ତୋତେ ଜିଣିନେଇଛନ୍ତି ।୪-୫। ସେନା, ପୁତ୍ର ଏବଂ ବନ୍ଧୁବାନ୍ଧବଙ୍କ ସହିତ ଦୁଷ୍ଟ ରାବଣ ମରିବାଦ୍ୱାରା ମୋର ମଧ୍ୟ ବିଶେଷ ପ୍ରୀତି ଜାତ ହୋଇଅଛି । ୬ । ହେ ସୌମ୍ୟ ! ପରମାତ୍ମା ରାମ ଲଙ୍କାରେ

ସ ତ୍ୱଂ ରାମେଣ ଲଙ୍କାୟାଂ ନିର୍ଜିତଃ ପରମାତ୍ମନା ।
ବହ ସୌମ୍ୟ ତମେବ ତ୍ୱମହମାଜ୍ଞାପୟାମି ତେ ।୭ ।
ପରମୋ ହ୍ୟେଷ ମେ କାମୋ ଯତ୍ତ୍ୱଂ ରାଘବନନ୍ଦନମ୍ ।
ବହେର୍ଲୋକସ୍ୟ ସଂଯାନଂ ଗଚ୍ଛସ୍ୱ ବିଗତଜ୍ୱରଃ । ୮ ।
ସୋଽହଂ ଶାସନମାଜ୍ଞାୟ ଧନଦସ୍ୟ ମହାତ୍ମନଃ ।
ତ୍ୱତ୍ସକାଶମନୁପ୍ରାପ୍ତୋ ନିର୍ବିଶଙ୍କଃ ପ୍ରତୀଚ୍ଛ ମାମ୍ ।୯ ।
ଅଧୃଷ୍ୟଃ ସର୍ବଭୂତାନାଂ ସର୍ବେଷାଂ ଧନଦାଜ୍ଞୟା ।
ଚରାମ୍ୟହଂ ପ୍ରଭାବେଣ ତବାଜ୍ଞାଂ ପରିପାଳୟନ୍ । ୧୦ ।
ଏବମୁକ୍ତସ୍ତଦା ରାମଃ ପୁଷ୍ପକେଣ ମହାବଳଃ ।
ଉବାଚ ପୁଷ୍ପକଂ ଦୃଷ୍ଟ୍ୱା ବିମାନଂ ପୁନରାଗତମ୍ । ୧୧ ।
ଯଦ୍ୟେବଂ ସ୍ୱାଗତଂ ତେଽସ୍ତୁ ବିମାନବର ପୁଷ୍ପକ ।
ଆନୁକୂଲ୍ୟାଦ୍ଧନେଶସ୍ୟ ବୃତ୍ତଦୋଷୋ ନ ନୋ ଭବେତ୍ ।୧୨।
ଲାଜୈଶ୍ଚୈବ ତଥା ପୁଷ୍ପୈର୍ଧୂପୈଶ୍ଚୈବ ସୁଗନ୍ଧିଭିଃ ।
ପୂଜୟିତ୍ୱା ମହାବାହୂ ରାଘବଃ ପୁଷ୍ପକଂ ତଦା । ୧୩ ।

---

ତୋତେ ଜୟକରି ନେଇଛନ୍ତି, ଅତଏବ ମୁଁ ଆଜ୍ଞା ଦେଉଛି କି ତୁ ତାହାଙ୍କୁ ଏଣିକି ବହନ କର । ୭ । ମୋର ଏହାହିଁ ଅଭିଳାଷ ଯେ ତୁ ରାମଙ୍କୁ ବହନ କରିବୁ । ତୁ କୌଣସି ପ୍ରକାର ଚିନ୍ତା ନ କରି ତାହାଙ୍କ ପାଖକୁ ଚାଲିଯାଅ । ୮ । ଅତଏବ ମହାତ୍ମା କୁବେରଙ୍କ ଆଜ୍ଞାରେ ମୁଁ ଆପଣଙ୍କ ସମୀପକୁ ଆସିଅଛି । ଆପଣ ବିନା ଶଙ୍କାରେ ମୋତେ ଗ୍ରହଣ କରନ୍ତୁ । ୯ । କୁବେରଙ୍କ ଆଜ୍ଞାରେ ମୋତେ କେହି ରୋକି ପାରିବେ ନାହିଁ । ମୁଁ ଆପଣଙ୍କ ଆଜ୍ଞା ପାଳନ କରି ଆପଣଙ୍କ ପ୍ରତାପରେ ସର୍ବତ୍ର ବିଚରଣ କରିବି” । ୧୦ । ବିମାନର ଏହି କଥା ଶୁଣି ମହାବଳବାନ୍ ରାମ ଫେରି ଆସିଥିବା ସେହି ଆକାଶସ୍ଥିତ ପୁଷ୍ପକ ବିମାନକୁ ଦେଖି କହିଲେ । ୧୧ । “ହେ ବାହନଶ୍ରେଷ୍ଠ ! ମୁଁ ତୁମକୁ ସ୍ୱାଗତ କରୁଅଛି । ଯଦି ଏହାହିଁ ହୁଏ, ତେବେ ଖୁବ ଭଲ କଥା । ଏଥିରେ କୁବେରଙ୍କର ପ୍ରୀତି ଜନ୍ମିଥିବାରୁ ଆମର କୌଣସି ବ୍ୟବହାର ଦୋଷ ଘଟିବ ନାହିଁ” ।୧୨। ଏହା ପରେ ମହାବୀର ରାମ ପୁଷ୍ପ, ଲାଜା, ଚନ୍ଦନ ତଥା ଧୂପାଦିଦ୍ୱାରା ପୁଷ୍ପକକୁ ପୂଜାକରି ତାହାକୁ କହିଲେ ।୧୩।

ଗମ୍ୟତାମିତି ଚୋବାଚ ଆଗଚ୍ଛ ତ୍ୱଂ ସ୍ମରେ ଯଦା ।
ସିଦ୍ଧାନାଂ ଚ ଗତୌ ସୌମ୍ୟ ମା ବିଷାଦେନ ଯୋଜୟ । ୧୪ ।
ପ୍ରତିଘାତଶ୍ଚ ତେ ମା ଭୂଦ୍ ଯଥେଷ୍ଟଂ ଗଚ୍ଛତୋ ଦିଶଃ ।
ଏବମସ୍ତ୍ୱିତି ରାମେଣ ପୂଜୟିତ୍ୱା ବିସର୍ଜିତମ୍ । ୧୫ ।
ଅଭିପ୍ରେତାଂ ଦିଶଂ ତସ୍ମାତ୍ ପ୍ରାୟାତ୍ତତ୍ ପୁଷ୍ପକଂ ତଦା ।
ଏବମନ୍ତର୍ହିତେ ତସ୍ମିନ୍ ପୁଷ୍ପକେ ସୁକୃତାତ୍ମନି । ୧୬ ।
ଭରତଃ ପ୍ରାଞ୍ଜଲିର୍ବାକ୍ୟମୁବାଚ ରଘୁନନ୍ଦନମ୍ ।
ବିବୁଧାତ୍ମନି ଦୃଶ୍ୟନ୍ତେ ତ୍ୱୟି ବୀର ପ୍ରଶାସତି । ୧୭ ।
ଅମାନୁଷାଣାଂ ସତ୍ତ୍ୱାନାଂ ବ୍ୟାହୃତାନି ମୁହୁର୍ମୁହୁଃ ।
ଅନାମୟଶ୍ଚ ସତ୍ତ୍ୱାନାଂ ସାଗ୍ରୋ ମାସୋ ଗତୋ ହ୍ୟୟମ୍ । ୧୮ ।
ଜୀର୍ଣ୍ଣାନାମପି ସତ୍ତ୍ୱାନାଂ ମୃତ୍ୟୁର୍ନାୟାତି ରାଘବ ।
ଅରୋଗପ୍ରସବା ନାର୍ଯ୍ୟୋ ବପୁଷ୍ମନ୍ତୋ ହି ମାନବାଃ । ୧୯ ।

---

ହେ ପୁଷ୍ପକ ! ଏବେ ତୁମେ ଯେଉଁଠାକୁ ଯାଉଁଛ ସେଠାକୁ ଯାଅ; କିନ୍ତୁ ଯେତେବେଳେ ମୁଁ ତୁମକୁ ସ୍ମରଣ କରିବି ସେତେବେଳେ ତୁମେ ଏଠାକୁ ଆସିବ । ହେ ସୌମ୍ୟ ! ସିଦ୍ଧସେବିତ ଆକାଶମାର୍ଗରେ ତୁମେ ଯାଅ ଏବଂ ମନରେ କୌଣସି ବିଷାଦ ଅନୁଭବ କର ନାହିଁ । ୧୪ । ଯିବାବେଳେ ତୁମେ କୌଣସି ପଦାର୍ଥଦ୍ୱାରା ବାଧାପ୍ରାପ୍ତ ହେବ ନାହିଁ । ତୁମେ ନିଜର ଇଚ୍ଛାନୁସାରେ ଯେ କୌଣସିଠାରେ ଭ୍ରମଣ କର ।" ଏହା କହି ରାମ ପୁଷ୍ପକକୁ ପୂଜା କରି ତାହାକୁ ବିଦାୟ ଦେଲେ । ୧୫ । ଅନନ୍ତର ପୁଷ୍ପକ ବିମାନ 'ଯେ ଆଜ୍ଞା' ବୋଲି କହି ଯେଉଁଆଡ଼କୁ ଇଚ୍ଛାକଲା ସେଣିକି ଚାଲିଗଲା ! ସୁକୃତାତ୍ମା ପୁଷ୍ପକ ବିମାନ ଯେତେବେଳେ ଚାଲିଗଲା, ସେତେବେଳେ ଭରତ ହାତଯୋଡ଼ି ରାମଙ୍କୁ କହିଲେ, "ହେ ବୀର ! ଆପଣଙ୍କ ଶାସନକାଳରେ ବିବିଧ ପ୍ରକାରର ଅଦ୍ଭୁତ ପ୍ରାଣୀ ଦେଖାଯାଉଛନ୍ତି, ସେମାନଙ୍କଠାରୁ କଥା ଶୁଣାଯାଉଛି, ମାତ୍ର ସେମାନେ ମନୁଷ୍ୟ ନୁହନ୍ତି । ପ୍ରଜାମାନଙ୍କ ମଧ୍ୟରେ କେହି ରୋଗଗ୍ରସ୍ତ ମଧ୍ୟ ଦେଖାଯାଉ ନାହାନ୍ତି । ଆପଣଙ୍କ ରାଜ୍ୟଶାସନରେ ବର୍ତ୍ତମାନ ଆଗ୍ରହାୟଣ (ମାର୍ଗଶିର) ମାସ ଅତିବାହିତ ହୋଇଅଛି । ହେ ରାଘବ ! ଏଥିମଧ୍ୟରେ ଯେଉଁ ଦେହଧାରୀ ପ୍ରାଣୀମାନେ ଅତି ଜୀର୍ଣ୍ଣ ହୋଇ ଯାଇଛନ୍ତି ସେମାନେ ବି ମରି ନାହାନ୍ତି । ସ୍ତ୍ରୀମାନେ ପ୍ରସବକାଳରେ କୌଣସି କଷ୍ଟ ପାଉନାହାନ୍ତି । ପୁରବାସୀ ସମସ୍ତେ ହୃଷ୍ଟପୁଷ୍ଟ

ହର୍ଷଣ୍ଣାଭ୍ୟଧିକୋ ରାଜନ୍ ଜନସ୍ୟ ପୁରବାସିନଃ ।
କାଳେ ବର୍ଷତି ପର୍ଜନ୍ୟଃ ପାତୟନ୍ନମୃତଂ ପୟଃ । ୨୦ ।
ବାତାଶ୍ଚାପି ପ୍ରବାନ୍ତ୍ୟେତେ ସ୍ପର୍ଶଯୁକ୍ତାଃ ସୁଖାଃ ଶିବାଃ ।
ଈଦୃଶୋ ନଶ୍ଚିରଂ ରାଜା ଭବେଦ୍ଦତ ନରେଶ୍ୱର ।୨୧।
କଥୟନ୍ତି ପୁରେ ରାଜନ୍ ପୌରଜାନପଦାସ୍ତଥା ।
ଏତା ବାଚଃ ସୁମଧୁରା ଭରତେନ ସମୀରିତାଃ ।
ଶ୍ରୁତ୍ୱା ରାମୋ ମୁଦା ଯୁକ୍ତୋ ବଭୂବ ନୃପସତ୍ତମଃ ।୨୨।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ପୁଷ୍ପକପୁନରଭ୍ୟନୁଜ୍ଞା ନାମ ଏକଚତ୍ୱାରିଂଶଃ ସର୍ଗଃ ।

---

# ଦ୍ୱିଚତ୍ୱାରିଂଶଃ ସର୍ଗଃ

## ରାମସୀତାବିହାରଃ

ସ ବିସୃଜ୍ୟ ତତୋ ରାମଃ ପୁଷ୍ପକଂ ହେମଭୂଷିତମ୍ ।
ପ୍ରବିବେଶ ମହାବାହୁରଶୋକବନିକାଂ ତଦା ।୧।
ଚନ୍ଦନାଗରୁଚୂତୈଶ୍ଚ ତୁଙ୍ଗକାଳେୟକୈରପି ।
ଦେବଦାରୁବନୈଶ୍ଚାପି ସମନ୍ତାଦୁପଶୋଭିତାମ୍ । ୨ ।

---

ଦେଖାଯାଉଛନ୍ତି । ୧୬-୧୯ । ହେ ରାଜନ୍ ! ପୁରବାସୀ ଓ ଜନପଦବାସୀମାନେ ଅତ୍ୟନ୍ତ ହର୍ଷିତ ଅଛନ୍ତି । ମେଘ ଯଥାସମୟରେ ଅମୃତସଦୃଶ ଜଳ ବୃଷ୍ଟି କରୁଅଛି । ।୨୦। ମଙ୍ଗଳମୟ ପବନ ସର୍ବଦା ସୁଖସ୍ପର୍ଶୀ ହୋଇ ବହୁଅଛି । ହେ ନରେଶ୍ୱର ! ଏ ପ୍ରକାର ରାଜା ବହୁକାଳରୁ କେହି ହୋଇ ନ ଥିଲେ । ୨୧ । ହେ ରାଜନ୍ ! ପୁରବାସୀ ଓ ଜନପଦବାସୀମାନେ ଏହାହିଁ କହୁଛନ୍ତି ।" ନୃପଶ୍ରେଷ୍ଠ ରାମ ଭାଇ ଭରତଙ୍କର ଏ ମଧୁର ବଚନ ଶୁଣି ଅତିଶୟ ଆନନ୍ଦିତ ହେଲେ । ୨୨ ।

---

## ୪୨ଶ ସର୍ଗ

### (ରାମ ଓ ସୀତାଙ୍କ ବିହାର)

ସୁବର୍ଣ୍ଣଭୂଷିତ ପୁଷ୍ପକ ବିମାନକୁ ବିଦାୟ ଦେଇ ମହାବାହୁ ରାମ ଅଶୋକ ଉପବନକୁ ଗଲେ । ୧ । ସେହି ଉପବନରେ ଚନ୍ଦନ, ଅଗରୁ, ଆମ୍ବ, ତୁଙ୍ଗ,

ଚମ୍ପକାଶୋକପୁନ୍ନାଗମଧୂକପନସାସନୈଃ ।
ଶୋଭିତାଂ ପାରିଜାତୈଶ୍ଚ ବିଧୂମଜ୍ୱଲନପ୍ରଭୈଃ । ୩ ।
ଲୋଧ୍ରନୀପାର୍ଜ୍ଜୁନୈର୍ନାଗୈଃ ସପ୍ତପର୍ଣ୍ଣାତିମୁକ୍ତକୈଃ ।
ମନ୍ଦାରକଦଳୀଗୁଳ୍ମଲତାଜାଲସମାବୃତାମ୍ । ୪ ।
ପ୍ରିୟଙ୍ଗୁଭିଃ କଦମ୍ବୈଶ୍ଚ ତଥା ଚ ବକୁଳୈରପି ।
ଜମ୍ବୂଭିର୍ଦାଡ଼ିମୈଶ୍ଚୈବ କୋବିଦାରୈଶ୍ଚ ଶୋଭିତାମ୍ । ୫ ।
ସର୍ବଦା କୁସୁମୈ ରମ୍ୟୈଃ ଫଳବଦ୍ଭିର୍ମନୋରମୈଃ ।
ଦିବ୍ୟଗନ୍ଧରସୋପେତୈସ୍ତରୁଣାଙ୍କୁରପଲ୍ଲବୈଃ । ୬ ।
ତଥୈବ ତରୁଭିର୍ଦିବ୍ୟୈଃ ଶିଳ୍ପିଭିଃ ପରିକଳ୍ପିତୈଃ ।
ଚାରୁପଲ୍ଲବପୁଷ୍ପାଢ୍ୟୈର୍ମତ୍ତଭ୍ରମରସଙ୍କୁଳୈଃ । ୭ ।
କୋକିଳୈର୍ଭୃଙ୍ଗରାଜୈଶ୍ଚ ନାନାବର୍ଣ୍ଣୈଶ୍ଚ ପକ୍ଷିଭିଃ ।
ଶୋଭିତାଂ ଶତଶଶ୍ଚିତ୍ରାଂ ଚୂତବୃକ୍ଷାବତଂସକୈଃ । ୮ ।
ଶାତକୁମ୍ଭନିଭାଃ କେଚିତ୍ କେଚିଦଗ୍ନିଶିଖୋପମାଃ ।
ନୀଳାଞ୍ଜନନିଭାଶ୍ଚାନ୍ୟେ ଭାନ୍ତି ତତ୍ରତ୍ୟପାଦପାଃ । ୯ ।

---

ରକ୍ତଚନ୍ଦନ ଏବଂ ଦେବଦାରୁ ବୃକ୍ଷମାନ ଶୋଭା ପାଉଥିଲେ । ୨ । ଚମ୍ପା, ଅଶୋକ, ପୁନ୍ନାଗ, ମଧୂକ, ପନସ, ଅଶନ ଏବଂ ଧୂମହୀନ ଅଗ୍ନି ସଦୃଶ ତେଜଶାଳୀ ପାରିଜାତ, ଲୋଧ୍ର, କଦମ୍ବ, ଅର୍ଜୁନ, ନାଗେଶ୍ୱର, ସପ୍ତପର୍ଣ୍ଣ, ମାଧବୀ, ମନ୍ଦାର ଏବଂ କଦଳୀ ତଥା ବିବିଧ ପ୍ରକାରର ଲତାମାନଙ୍କଦ୍ୱାରା ସେହି ଉପବନ ପରିପୂର୍ଣ୍ଣ ଥିଲା । ୩-୪ । ସେଠାରେ ପ୍ରିୟଙ୍ଗୁ, କଦମ୍ବ, ବକୁଳ, ଜାମୁ, ଡାଳିମ୍ବ ଏବଂ କୋବିଦାର ବୃକ୍ଷମାନେ ଶୋଭାପାଉଥିଲେ । ୫ । ସେଠାରେ ସବୁ ଋତୁରେ ଫୁଟିଥିବା ସୁନ୍ଦର ପୁଷ୍ପିତ ବୃକ୍ଷମାନ ରହିଥିଲା ଏବଂ ସୁସ୍ୱାଦୁ ଫଳପୂର୍ଣ୍ଣ ବୃକ୍ଷ ମଧ୍ୟ ସେ ବଗିଚାରେ ଲଗା ହୋଇଥିଲା । ସୁଗନ୍ଧ ବାହାରୁଥିବା କେତେକ ବୃକ୍ଷ ମଧ୍ୟ ସେଠାରେ ଲଗାଯାଇଥିଲା । ନୂଆ ପତ୍ର ଏବଂ ପଲ୍ଲବଦ୍ୱାରା ସେଠାର ବୃକ୍ଷମାନେ ସୁଶୋଭିତ ଥିଲେ । ୬ । ମାଳୀମାନେ ସେହି ଦିବ୍ୟ ବୃକ୍ଷମାନ ଖୁବ ନିପୁଣତାର ସହିତ ଲଗାଇଥିଲେ । ସେହି ବୃକ୍ଷମାନଙ୍କର ସୁନ୍ଦର ପତ୍ର ଓ ଫୁଲ ମନକୁ ଆକର୍ଷଣ କରୁଥିଲା । ତାହା ଉପରେ ଉନ୍ମତ୍ତ ଭ୍ରମରମାନେ ଗୁଞ୍ଜନ କରୁଥିଲେ । ୭ । ସେହି ଉପବନରେ ଆମ୍ର ବୃକ୍ଷର ଭୂଷଣସ୍ୱରୂପ କୋକିଳ, ଭୃଙ୍ଗରାଜ ଏବଂ ଅନ୍ୟ ଚିତ୍ର ବିଚିତ୍ର ପକ୍ଷୀମାନେ ଶୋଭା ପାଉଥିଲେ । ୮ । ସେଠାରେ କୌଣସି କୌଣସି ବୃକ୍ଷ ଶ୍ୱେତରଙ୍ଗର, କିଏ ବା ଅଗ୍ନିଶିଖାସଦୃଶ ଲାଲ ରଙ୍ଗର, କିଏ ବା ନୀଳାଞ୍ଜନ ସଦୃଶ ତଥା ଅନ୍ୟ ପ୍ରକାର ଅନେକ ବୃକ୍ଷ ଥିଲା । ୯ ।

ସୁରଭୀଣି ଚ ପୁଷ୍ପାଣି ମାଲ୍ୟାନି ବିବିଧାନି ଚ ।
ଦୀର୍ଘିକା ବିବିଧାକାରାଃ ପୂର୍ଣାଃ ପରମବାରିଣା । ୧୦ ।
ମାଣିକ୍ୟକୃତସୋପାନାଃ ସ୍ଫଟିକାନ୍ତରକୁଟ୍ଟିମାଃ ।
ଫୁଲ୍ଲପଦ୍ମୋତ୍ପଲବନାଶ୍ଚକ୍ରବାକୋପଶୋଭିତାଃ । ୧୧ ।
ଦାତ୍ୟୂହଶୁକସଂଘୁଷ୍ଟା ହଂସସାରସନାଦିତାଃ ।
ତରୁଭିଃ ପୁଷ୍ପବଦ୍ଭିଶ୍ଚ ତୀରଜୈରୁପଶୋଭିତାଃ । ୧୨ ।
ପ୍ରାକାରୈର୍ବିବିଧାକାରୈଃ ଶୋଭିତାଶ୍ଚ ଶିଳାତଳୈଃ ।
ତତ୍ରୈବ ଚ ବନୋଦ୍ଦେଶେ ବୈଦୂର୍ଯମଣି ସନ୍ନିଭୈଃ । ୧୩ ।
ଶାଦ୍ୱଳୈଃ ପରମୋପେତାଂ ପୁଷ୍ପିତଦ୍ରୁମକାନନାମ୍ ।
ତତ୍ର ସଂଘର୍ଷଜାତାନାଂ ବୃକ୍ଷାଣାଂ ପୁଷ୍ପଶାଳିନାମ୍ । ୧୪ ।
ପ୍ରସ୍ତରାଃ ପୁଷ୍ପଶବଳା ନଭସ୍ତାରାଗଣୈରିବ ।
ନନ୍ଦନଂ ହି ଯଥେନ୍ଦ୍ରସ୍ୟ ବ୍ରାହ୍ମଂ ଚୈତ୍ରରଥଂ ଯଥା । ୧୫ ।
ତଥାଭୂତଂ ହି ରାମସ୍ୟ କାନନଂ ସଂନିବେଶନମ୍ ।
ବହ୍ୱାସନଗୃହୋପେତାଂ ଲତାଗୃହସମାବୃତାମ୍ । ୧୬ ।

---

ସେଠାରେ ଅତ୍ୟନ୍ତ ସୁଗନ୍ଧ ଫୁଲ ଏବଂ ବିବିଧ ପ୍ରକାର ପୁଷ୍ପଗୁଚ୍ଛ ଥିଲା । ସେଠାରେ ନାନା ଆକାରର ପୋଖରୀମାନ ମଧ୍ୟ ଥିଲା । ସେସବୁରେ ସ୍ୱଚ୍ଛ ଜଳ ପୂର୍ଣ୍ଣ ହୋଇ ରହିଥିଲା ।୧୦। ସେହି ପୁଷ୍କରିଣୀମାନଙ୍କରେ ମାଣିକ୍ୟର ସିଡ଼ି ଥିଲା ଏବଂ ତାହାର ଭିତର ପାଖ ସ୍ଫଟିକ ପଥରରେ ତିଆରି ହୋଇଥିଲା । ସେଥିରେ ପ୍ରସ୍ଫୁଟିତ ଫୁଲମାନ ଶୋଭା ପାଉଥିଲା । ସେଠାରେ ଚକ୍ରବାକ, ଡାହୁକ, ଶୁକ, ହଂସ ଓ ସାରସମାନେ ରବ କରୁଥିଲେ । ତାହାର ତଟଦେଶରେ ଫୁଲରେ ଲଦି ହୋଇଥିବା ବିଭିନ୍ନ ରଙ୍ଗର ବୃକ୍ଷ ଶୋଭା ପାଉଥିଲା ।୧୧-୧୨। ଅନେକ ପ୍ରକାର ଓ ବିଭିନ୍ନ ରଙ୍ଗର ବୈଦୁର୍ଯ୍ୟତୁଲ୍ୟ ପଥରମାନଙ୍କରେ ତାହା ତିଆରି ହୋଇଥିଲା । ୧୩ । ତାହାର ଚାରିପାଖରେ ଶ୍ୟାମଳବର୍ଣ୍ଣ ଦୂବ ଲାଗିଥିଲା । ସେଠାର ବୃକ୍ଷମାନେ ସତେ ଯେପରି ପରସ୍ପରକୁ ଈର୍ଷା କରି ଫୁଲରେ ଲଦିହୋଇଥିଲେ । ପବନର ବେଗରେ ପରସ୍ପର ବାଡ଼େଇ ହୋଇ ପୁଷ୍ପିତ ବୃକ୍ଷମାନଙ୍କର ଫୁଲଗୁଡ଼ିକ ତଳେ ପଥର ଚଟାଣ ଉପରେ ବିଛାଇ ହୋଇ ଯାଉଥିଲେ । ଆକାଶରେ ତାରାଗଣ ଉଦିତ ହେଲାପରି ସେ ସ୍ଥାନର ଶୋଭା ଦେଖା-ଯାଉଥିଲା । ତାହା ଇନ୍ଦ୍ରଙ୍କ ନନ୍ଦନବନ ଏବଂ ବ୍ରହ୍ମାଙ୍କ ଦ୍ୱାରା ନିର୍ମିତ କୁବେରଙ୍କ ଚୈତ୍ରରଥ ବନପରି ଶୋଭମାନ ଦେଖାଯାଉଥିଲା । ୧୪-୧୫ । ଏହି ପ୍ରକାରେ ରାମଙ୍କର ସେହି ଅଶୋକବାଟିକା ଶୋଭା ପାଉଥିଲା । ସେହି ବାଟିକାରେ ସ୍ଥାନେ ସ୍ଥାନେ ବସିବା

ଅଶୋକବନିକାଂ ସ୍ଫୀତାଂ ପ୍ରବିଶ୍ୟ ରଘୁନନ୍ଦନଃ ।
ଆସନେ ଚ ଶୁଭାକାରେ ପୁଷ୍ପପ୍ରକରଭୂଷିତେ । ୧୭ ।
କୁଶାସ୍ତରଣସଂବୀତେ ରାମଃ ସଂନିଷସାଦ ହ ।
ସୀତାମାଦାୟ ହସ୍ତେନ ମଧୁ ମୈରେୟକଂ ଶୁଚି । ୧୮ ।
ପାୟୟାମାସ କାକୁତ୍ସ୍ଥଃ ଶଚୀମିବ ପୁରନ୍ଦରଃ ।
ମାଂସାନି ଚ ସୁମୃଷ୍ଟାନି ଫଲାନି ବିବିଧାନି ଚ । ୧୯ ।
ରାମସ୍ୟାଭ୍ୟବହାରାର୍ଥଂ କିଙ୍କରାସ୍ତୂର୍ଣମାହରନ୍ ।
ଉପାନୃତ୍ୟଂଶ୍ଚ ରାଜାନଂ ନୃତ୍ୟଗୀତବିଶାରଦାଃ । ୨୦ ।
ବାଲାଶ୍ଚ ରୂପବତ୍ୟଶ୍ଚ ସ୍ତ୍ରିୟଃ ପାନବଶାନୁଗାଃ ।
ଉପାନୃତ୍ୟନ୍ତ କାକୁତ୍ସ୍ଥଂ ନୃତ୍ୟଗୀତବିଶାରଦାଃ । ୨୧ ।
ମନୋଽଭିରାମା ରାମାସ୍ତା ରାମୋ ରମୟତାଂ ବରଃ ।
ରମୟାମାସ ଧର୍ମାତ୍ମା ନିତ୍ୟଂ ପରମଭୂଷିତଃ । ୨୨ ।
ସ ତୟା ସୀତୟା ସାର୍ଧମାସୀନୋ ବିରରାଜ ହ ।
ଅରୁନ୍ଧତ୍ୟା ସହାସୀନୋ ବସିଷ୍ଠ ଇବ ତେଜସା । ୨୩ ।

---

ପାଇଁ ସ୍ଥାନ ରହିଥିଲା ଏବଂ ଅନେକ ଲତାମଣ୍ଡପ ମଧ୍ୟ ତିଆରି ହୋଇଥିଲା । ୧୬ । ସେହି ସମୃଦ୍ଧିଶାଳୀ ଅଶୋକ ବନରେ ରାମ ପ୍ରବେଶ କଲେ ଏବଂ ଏକ ସୁନ୍ଦର ପୁଷ୍ପ-ଶୋଭିତ ଆସନ ଉପରେ କୁଶ ଆସନ ବିଛାଇ ତା ଉପରେ ବସିଗଲେ । ସେଠାରେ ସୀତାଙ୍କୁ ନିଜ ନିକଟରେ ବସାଇ, ଇନ୍ଦ୍ର ଶଚୀଙ୍କୁ ପାନ କରାଇଲା ପରି ମୈରେୟ ମଦ ପାନ କରାଇଲେ । ସେଠାରେ ଉତ୍କୃଷ୍ଟ ସୁସ୍ୱାଦୁ ମାଂସ ଏବଂ ବିବିଧ ପ୍ରକାର ଫଳ ରାମଙ୍କ ଭୋଜନାର୍ଥେ ଭୃତ୍ୟମାନେ ଶୀଘ୍ର ଆଣି ରଖିଦେଲେ । ନାଚ ଗାନ ମଧ୍ୟ ରାମଙ୍କ ସମ୍ମୁଖରେ ଆରମ୍ଭ ହେଲା । ନାଚ ଗାନରେ ନିପୁଣା ନର୍ତ୍ତକୀମାନେ ସେହି ନୃତ୍ୟଗାନ କରୁଥିଲେ । ରୂପବତୀ ନୃତ୍ୟଗୀତନିପୁଣା ବାଳିକା ଓ ସ୍ତ୍ରୀମାନେ ମଦ୍ୟପାନରେ ଉନ୍ମତ୍ତ ହୋଇ ରାମଙ୍କ ନିକଟରେ ନୃତ୍ୟ କଲେ ।୧୭-୨୧। ଏହି ପ୍ରକାରେ ମନପ୍ରସନ୍ନକର ବେଶଧାରିଣୀ ସ୍ତ୍ରୀମାନଙ୍କର ଗାନ ଓ ନୃତ୍ୟ ରାମ ଜାନକୀଙ୍କ ସହିତ ଉତ୍ତମ ଆସନ ଉପରେ ବସି ଦେଖୁଥିଲେ ଓ ଶୁଣୁଥିଲେ । ୨୨ । ବଶିଷ୍ଠ ଅରୁନ୍ଧତୀଙ୍କ ସହିତ ବସିଥିଲେ ଯେପରି ଶୋଭା ପାଆନ୍ତି, ସେହିପରି ରାମ ସୀତାଙ୍କ ସହିତ ବସି ଶୋଭା ପାଉଥିଲେ । ୨୩ । ଏହିପ୍ରକାରେ ରାମ ଦେବ-

ଏବଂ ରାମୋ ମୁଦା ଯୁକ୍ତଃ ସୀତାଂ ସୁରସୁତୋପମାମ୍ ।
ରମୟାମାସ ବୈଦେହୀମହନ୍ୟହନି ଦେବବତ୍ । ୨୪ ।
ତଥା ତୟୋର୍ବିହରତୋଃ ସୀତାରାଘବୟୋଶ୍ଚିରମ୍ ।
ଅତ୍ୟକ୍ରାମଚ୍ଛୁଭଃ କାଲଃ ଶୈଶିରୋ ଭୋଗଦଃ ସଦା ।
ପ୍ରାପ୍ତୟୋର୍ବିବିଧାନ୍ ଭୋଗାନତୀତଃ ଶିଶିରାଗମଃ । ୨୫ ।
ପୂର୍ବାହ୍ଣେ ଧର୍ମକାର୍ଯାଣି କୃତ୍ୱା ପୌର୍ବାହ୍ଣିକାନି ବୈ ।
ଶ୍ୱଶ୍ରୂଣାମକରୋତ୍ ପୂଜାଂ ସର୍ବାସାମବିଶେଷତଃ । ୨୬ ।
ଅଭ୍ୟଗଚ୍ଛତ୍ତତୋ ରାମଂ ବିଚିତ୍ରାଭରଣାମ୍ବରା ।
ତ୍ରିବିଷ୍ଟପେ ସହସ୍ରାକ୍ଷମୁପବିଷ୍ଟଂ ଯଥା ଶଚୀ । ୨୭ ।
ଦୃଷ୍ଟ୍ୱା ତୁ ରାଘବଃ ପତ୍ନୀଂ କଲ୍ୟାଣେନ ସମନ୍ୱିତାମ୍ ।
ପ୍ରହର୍ଷମତୁଲଂ ଲେଭେ ସାଧୁ ସାଧ୍ୱିତି ଚାବ୍ରବୀତ୍ । ୨୮ ।
ଅବ୍ରବୀଚ୍ଚ ବରାରୋହାଂ ସୀତାଂ ସୁରସୁତୋପମାମ୍ ।
ଅପତ୍ୟଲାଭୋ ବୈଦେହି ତ୍ୱୟ୍ୟୟଂ ମେ ସମୁପସ୍ଥିତଃ । ୨୯ ।
କିମିଚ୍ଛସି ବରାରୋହେ କାମଃ କିଂ କ୍ରିୟତାଂ ତବ ।
ସ୍ମିତଂ କୃତ୍ୱା ତୁ ବୈଦେହୀ ରାମଂ ବାକ୍ୟମଥାବ୍ରବୀତ୍ । ୩୦ ।

---

କନ୍ୟାଙ୍କ ସଦୃଶୀ ସୀତାଙ୍କୁ ଦେବତାମାନଙ୍କ ପରି ନିତ୍ୟ ଆନନ୍ଦିତ କରିବାକୁ ଲାଗିଲେ । ୨୪ । ଏହି ପ୍ରକାରେ ସୀତାଙ୍କ ସହିତ ବିହାର କରି ରାମଙ୍କର ବହୁ ଦିନ ବିତିଗଲା; ଭୋଗବିଳାସରେ ସୁଖଦାୟୀ ଶିଶିର ଋତୁ ଶେଷହେଲା । ରାମ ଓ ସୀତାଙ୍କର ଏହିପରି ବିବିଧ ଭୋଗରେ ଶିଶିର ଋତୁ ଅତୀତ ହୋଇଗଲା ।୨୫। ସୀତା ପୂର୍ବାହ୍ଣରେ ପୂର୍ବାହ୍ଣକାଳୀନ ଧର୍ମକାର୍ଯ୍ୟମାନ କରି ଶାଶୁମାନଙ୍କଠାରେ କୌଣସି ଭେଦଭାବ ନ ରଖି ସମସ୍ତଙ୍କୁ ପୂଜା କରୁଥିଲେ । ତଦନନ୍ତର ସେ ବିଚିତ୍ର ବସ୍ତ୍ର ଓ ଅଳଙ୍କାରରେ ଭୂଷିତ ହୋଇ ସ୍ୱର୍ଗରେ ଶଚୀ ଯେପରି ଇନ୍ଦ୍ରଙ୍କ ନିକଟକୁ ଯାଆନ୍ତି ସେହିପରି ରାମଙ୍କ ନିକଟକୁ ଯାଉଥିଲେ । ୨୬-୨୭ । ରାମ ନିଜ ପତ୍ନୀଙ୍କୁ ଗର୍ଭବତୀ ଦେଖି ଅତିଶୟ ଆନନ୍ଦିତ ହେଲେ ଏବଂ ସାଧୁ ସାଧୁ ବୋଲି କହିଲେ ।୨୮। ତଦନନ୍ତର ସେ ଦେବବାଳା ସଦୃଶୀ ବରବର୍ଣ୍ଣିନୀ ସୀତାଙ୍କୁ କହିଲେ, "ହେ ଦେବି ! ତୁମଠାରେ ମୋର ଅପତ୍ୟଲାଭର ଲକ୍ଷଣ ସ୍ପଷ୍ଟ ଦେଖାଯାଉଛି ।୨୯। ହେ ବରାରୋହେ ! କହ ତୁମ୍ଭର ଇଚ୍ଛା କଅଣ ହେଉଛି; ତୁମେ ଯାହା କହିବ ତୁମ୍ଭର ଇଚ୍ଛା ମୁଁ ପୂର୍ଣ୍ଣ କରିବି ।" ଏହାର ଉତ୍ତରରେ ସୀତା ଈଷତ୍ ହାସ୍ୟ କରି ରାମଙ୍କୁ କହିଲେ । ୩୦ । "ହେ ରାଘବ ! ମୁଁ ପବିତ୍ର ତପୋ-

ତପୋବନାନି ପୁଣ୍ୟାନି ଦ୍ରଷ୍ଟୁମିଚ୍ଛାମି ରାଘବ ।
ଗଙ୍ଗାତୀରୋପବିଷ୍ଟାନାମୃଷୀଣାମୁଗ୍ରତେଜସାମ୍ । ୩୧ ।
ଫଲମୂଲାଶିନାଂ ଦେବ ପାଦମୂଲେଷୁ ବର୍ତ୍ତିତୁମ୍ ।
ଏଷ ମେ ପରମଃ କାମୋ ଯନ୍ମୂଲଫଲଭୋଜିନାମ୍ । ୩୨ ।
ଅପ୍ୟେକରାତ୍ରଂ କାକୁତ୍‌ସ୍ଥ ନିବସେୟଂ ତପୋବନେ ।
ତଥେତି ଚ ପ୍ରତିଜ୍ଞାତଂ ରାମେଣାକ୍ଲିଷ୍ଟକର୍ମଣା । ୩୩ ।
ବିସ୍ରବ୍ଧା ଭବ ବୈଦେହି ଶ୍ୱୋ ଗମିଷ୍ୟସ୍ୟସଂଶୟମ୍ ।
ଏବମୁକ୍ତ୍ୱା ତୁ କାକୁତ୍‌ସ୍ଥୋ ମୈଥିଲୀଂ ଜନକାତ୍ମଜାମ୍ ।
ମଧ୍ୟକକ୍ଷ୍ୟାନ୍ତରଂ ରାମୋ ନିର୍ଜଗାମ ସୁହୃଦ୍‌ବୃତଃ । ୩୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ରାମସୀତାବିହାରେ ନାମ ଦ୍ୱିଚତ୍ୱାରିଂଶଃ ସର୍ଗଃ ।

---

ବନମାନ ଦେଖିବାକୁ ଇଚ୍ଛା କରୁଅଛି । ଗଙ୍ଗାତଟନିବାସୀ ଉଗ୍ରତେଜସ୍ୱୀ, ଫଳମୂଳାହାରୀ ଋଷିମାନଙ୍କର ଚରଣସେବା କରିବାକୁ ମୁଁ ଇଚ୍ଛା କରୁଅଛି । ହେ ଦେବ ! ଏହାହିଁ ମୋର ପରମକାମନା ଅଟେ । ଫଳମୂଳଭୋଜୀ ମୁନିମାନଙ୍କ ତପୋବନରେ ମୁଁ ଯଦି ଗୋଟିଏ ରାତି ରହିପାରନ୍ତି, ତେବେ ମୋର ଅଭିଳାଷ ପୂର୍ଣ୍ଣ ହୋଇଯାଆନ୍ତା" । ଅକ୍ଲିଷ୍ଟକର୍ମା ରାମ କହିଲେ, "ହେ ବୈଦେହି ! ତାହାହିଁ ହେବ, ତୁମେ ନିଶ୍ଚିନ୍ତ ରହ । ମୁଁ କାଲି ତୁମକୁ ତପୋବନକୁ ପଠାଇଦେବି ।" ସୀତାଙ୍କୁ ଏହା କହି କାକୁତ୍ସ୍ଥ ରାମ ନିଜର ମିତ୍ରମାନଙ୍କ ସହିତ ଭବନର ମଧ୍ୟଶାଳାକୁ ଚାଲିଗଲେ । ୩୧-୩୪ ।

# ତ୍ରିଚତ୍ୱାରିଂଶଃ ସର୍ଗଃ

## ଭଦ୍ରବାକ୍ୟଶ୍ରବଣମ୍

ତତ୍ରୋପବିଷ୍ଟଂ ରାଜାନମୁପାସନ୍ତେ ବିଚକ୍ଷଣାଃ ।
କଥାନାଂ ବହୁରୂପାଣାଂ ହାସ୍ୟକାରାଃ ସମନ୍ତତଃ । ୧ ।
ବିଜୟୋ ମଧୁମତ୍ତଶ୍ଚ କାଶ୍ୟପଃ ପିଙ୍ଗଳଃ କୁଟଃ ।
ସୁରାଜଃ କାଳୟୋ ଭଦ୍ରୋ ଦନ୍ତବକ୍ତ୍ରଃ ସୁମାଗଧଃ । ୨ ।
ଏତେ କଥା ବହୁବିଧାଃ ପରିହାସସମନ୍ୱିତାଃ ।
କଥୟନ୍ତି ସ୍ମ ସଂହୃଷ୍ଟା ରାଘବସ୍ୟ ମହାତ୍ମନଃ । ୩ ।
ତତଃ କଥାୟାଂ କସ୍ୟାଂଚଦ୍ରାଘବଃ ସମଭାଷତ ।
କାଃ କଥା ନଗରେ ଭଦ୍ର ବର୍ତ୍ତନ୍ତେ ବିଷୟେଷୁ ଚ । ୪ ।
ମାମାଶ୍ରିତାନି କାନ୍ୟାହୁଃ ପୌରଜାନପଦା ଜନାଃ ।
କିଂ ଚ ସୀତାଂ ସମାଶ୍ରିତ୍ୟ ଭରତଂ କିଂ ଚ ଲକ୍ଷ୍ମଣମ୍ । ୫ ।
କିଂ ନୁ ଶତ୍ରୁଘ୍ନମୁଦ୍ଦିଶ୍ୟ କୈକେୟୀଂ କିଂ ନୁ ମାତରମ୍ ।
ବକ୍ତବ୍ୟତାଂ ଚ ରାଜାନୋ ନବେ ରାଜ୍ୟେ ବ୍ରଜନ୍ତି ଚ । ୬ ।

---

## ୪୩ଶ ସର୍ଗ

### ( ରାମଙ୍କ ଭଦ୍ର ବାକ୍ୟ ଶ୍ରବଣ )

ରାମଙ୍କ ପାଖରେ ବହୁ ବିଚକ୍ଷଣ ବ୍ୟକ୍ତି ବସିଥିଲେ । ସେମାନେ ବିବିଧପ୍ରକାର କଥାବାର୍ତ୍ତା କରିବାରେ ନିପୁଣ ଥିଲେ ଏବଂ ହସାଇବାରେ ପ୍ରବୀଣ ଥିଲେ । ୧ । ବିଜୟ, ମଧୁମତ୍ତ, କାଶ୍ୟପ, ପିଙ୍ଗଳ, କୁଟ, ସୁରାଜ, କାଳୟ, ଭଦ୍ର, ଦନ୍ତବକ୍ତ୍ର ଏବଂ ସୁମାଗଧ, ଏମାନେ ସମସ୍ତେ ହର୍ଷିତ ଅନ୍ତଃକରଣରେ ମହାତ୍ମା ରାମଙ୍କ ସମ୍ମୁଖରେ ବିବିଧ ପ୍ରକାର ହାସ୍ୟକର କଥା କହୁଥିଲେ । ୨-୩ । କୌଣସି ଏକ କଥା ପ୍ରସଙ୍ଗରେ ମଝିରେ ରାମ ପଚାରିଲେ, "ହେ ଭଦ୍ର ! ଆଜିକାଲି ଅଯୋଧ୍ୟାପୁରୀରେ ଏବଂ ରାଜ୍ୟରେ କି କି କଥା ସବୁ ଚର୍ଚ୍ଚା ହେଉଛି ? । ୪ । ପୁରବାସୀ ଲୋକମାନେ ମୋ ବିଷୟରେ ଏବଂ ସୀତା, ଭରତ ଓ ଲକ୍ଷ୍ମଣଙ୍କ ବିଷୟରେ କଅଣ କହୁଛନ୍ତି ?।୫। ଶତ୍ରୁଘ୍ନଙ୍କ ବିଷୟରେ କିମ୍ବା ମୋର ମାତା କୈକେୟୀଙ୍କ ବିଷୟରେ ଲୋକଙ୍କର ମତ କଅଣ ? ଏ ନୂତନ ରାଜ୍ୟରେ ରାଜାଙ୍କ ବିଷୟରେ କଅଣ ସମାଲୋଚନା ଚାଲିଛି ?" । ୬ । ରାମ ଏହିପରି

ଏବମୁକ୍ତେ ତୁ ରାମେଣ ଭଦ୍ରଃ ପ୍ରାଞ୍ଜଳିରବ୍ରବୀତ୍ ।
ସ୍ଥିତାଃ କଥାଃ ଶୁଭା ରାଜନ୍ ବର୍ତ୍ତନ୍ତେ ପୁରବାସିନାମ୍ । ୭ ।
ଅମୁଂ ତୁ ବିଜୟଂ ସୌମ୍ୟ ଦଶଗ୍ରୀବବଧାର୍ଜିତମ୍ ।
ଭୂୟିଷ୍ଠଂ ସ୍ୱପୁରେ ପୌରୈଃ କଥ୍ୟନ୍ତେ ପୁରୁଷର୍ଷଭ । ୮ ।
ଏବମୁକ୍ତସ୍ତୁ ଭଦ୍ରେଣ ରାଘବୋ ବାକ୍ୟମବ୍ରବୀତ୍ ।
କଥୟସ୍ୱ ଯଥାତତ୍ତ୍ୱଂ ସର୍ବଂ ନିରବଶେଷତଃ । ୯ ।
ଶୁଭାଶୁଭାନି ବାକ୍ୟାନି ଯାନ୍ୟାହୁଃ ପୁରବାସିନଃ ।
ଶ୍ରୁତ୍ୱେଦାନୀଂ ଶୁଭଂ କୁର୍ଯାଂ ନ କୁର୍ଯାମଶୁଭାନି ଚ । ୧୦ ।
କଥୟସ୍ୱ ଚ ବିସ୍ରବ୍ଧୋ ନିର୍ଭୟଂ ବିଗତଜ୍ୱରଃ ।
କଥୟନ୍ତି ଯଥା ପୌରାଃ ପାପା ଜନପଦେଷୁ ଚ । ୧୧ ।
ରାଘବେଣୈବମୁକ୍ତସ୍ତୁ ଭଦ୍ରଃ ସୁରୁଚିରଂ ବଚଃ ।
ପ୍ରତ୍ୟୁବାଚ ମହାବାହୁଂ ପ୍ରାଞ୍ଜଳିଃ ସୁସମାହିତଃ । ୧୨ ।
ଶୃଣୁ ରାଜନ୍ ଯଥା ପୌରାଃ କଥୟନ୍ତି ଶୁଭାଶୁଭମ୍ ।
ଚତ୍ୱରାପଣରଥ୍ୟାସୁ ବନେଷୂପବନେଷୁ ଚ । ୧୩ ।

---

କହିବା ଉତ୍ତାରୁ ଭଦ୍ର ହାତଯୋଡ଼ି କହିଲେ, "ହେ ରାଜନ୍ ! ପୁରବାସୀ ଲୋକମାନେ ରାଜାଙ୍କର ପ୍ରଶଂସା ହିଁ କରୁଛନ୍ତି । ୭ । ହେ ପୁରୁଷଶ୍ରେଷ୍ଠ, ସୌମ୍ୟ ! ଅଯୋଧ୍ୟାରେ ଦଶାନନ ରାବଣକୁ ବଧ କରି ଲଙ୍କାପୁରୀ ଜୟ କରିବା କଥା ପୁରବାସୀମାନଙ୍କ ମଧ୍ୟରେ ବିଶେଷଭାବରେ ଚର୍ଚ୍ଚା ହେଉଅଛି । ୮ । ଭଦ୍ର ଏପରି କହିବାରୁ ରାମ କହିଲେ, "ଲୋକମାନେ ଯାହା କିଛି କହୁଛନ୍ତି ସେ ସମସ୍ତ ଯଥାଯଥଭାବରେ କହ, କିଛି ଗୋପନ ରଖ ନାହିଁ । ୯ । ଭଲ ଏବଂ ମନ୍ଦ ଯାହା ଯାହା ଲୋକେ କହୁଛନ୍ତି ସେ ସମସ୍ତ ତୁମେ କହ । ସେ ସମସ୍ତ କଥା ଶୁଣି ଭଲ କଥା ହିଁ ମୁଁ କରିବ ଏବଂ ମନ୍ଦ କଥାକୁ ଛାଡ଼ିଦେବା ୧୦। ହେ ଭଦ୍ର ! ତୁମେ ମନରେ କୌଣସି ସଙ୍କୋଚ ନ ରଖି ନିର୍ଭୟଭାବରେ କହ । ପୁରବାସୀମାନେ ଏବଂ ଜନପଦର ଲୋକମାନେ ମୋ ସମ୍ବନ୍ଧରେ ଯାହା ମନ୍ଦ କଥା କହୁଛନ୍ତି ତାହା ମଧ୍ୟ ତୁମେ କହ" । ୧୧ । ରାମ ଏପରି କହିବା ଉତ୍ତାରୁ ଭଦ୍ର ହାତଯୋଡ଼ି ସଂଯତଭାବରେ କହିଲେ ।୧୨। "ହେ ରାଜନ୍ । ବନ, ଉପବନ, ହାଟ, ବାଟ ଏବଂ ଚତୁଷ୍ପଥମାନଙ୍କରେ ପୁରବାସୀ ଲୋକମାନେ ଆପଣଙ୍କ ସମ୍ବନ୍ଧରେ ଯାହା ଭଲ ଏବଂ ମନ୍ଦ କଥାମାନ କହୁଛନ୍ତି ତାହା ମୁଁ କହୁଛି ଆପଣ ଶୁଣନ୍ତୁ । ୧୩ । ସେମାନେ କହୁଛନ୍ତି, ରାମ

ଦୁଷ୍କରଂ କୃତବାନ୍ ରାମଃ ସମୁଦ୍ରେ ସେତୁବନ୍ଧନମ୍ ।
ଅଶ୍ରୁତଂ ପୂର୍ବକୈଃ କୈଶ୍ଚିଦ୍ଦେବୈରପି ସଦାନବୈଃ । ୧୪ ।
ରାବଣଶ୍ଚ ଦୁରାଧର୍ଷୋ ହତଃ ସବଲବାହନଃ ।
ବାନରାଶ୍ଚ ବଶଂ ନୀତା ଋକ୍ଷାଶ୍ଚ ସହ ରାକ୍ଷସୈଃ । ୧୫ ।
ହତ୍ୱା ଚ ରାବଣଂ ସଂଖ୍ୟେ ସୀତାମାହୃତ୍ୟ ରାଘବଃ ।
ଅମର୍ଷଂ ପୃଷ୍ଠତଃ କୃତ୍ୱା ସ୍ୱବେଶ୍ମ ପୁନରାନୟତ୍ । ୧୬ ।
କୀଦୃଶଂ ହୃଦୟେ ତସ୍ୟ ସୀତାସମ୍ଭୋଗଜଂ ସୁଖମ୍ ।
ଅଙ୍କମାରୋପ୍ୟ ତୁ ପୁରା ରାବଣେନ ବଲାଦ୍ଧୃତାମ୍ । ୧୭ ।
ଲଙ୍କାମପି ପୁରା ନୀତାମଶୋକବନିକାଂ ଗତାମ୍ ।
ରକ୍ଷସାଂ ବଶମାପନ୍ନାଂ କଥଂ ରାମୋ ନ କୁତ୍ସ୍ୟତେ । ୧୮ ।
ଅସ୍ମାକମପି ଦାରେଷୁ ସହନୀୟଂ ଭବିଷ୍ୟତି ।
ଯଥା ହି କୁରୁତେ ରାଜା ପ୍ରଜା ତମନୁବର୍ତ୍ତତେ । ୧୯ ।
ଏବଂ ବହୁବିଧା ବାଚୋ ବଦନ୍ତି ପୁରବାସିନଃ ।
ନଗରେଷୁ ଚ ସର୍ବେଷୁ ରାଜନ୍ ଜନପଦେଷୁ ଚ । ୨୦ ।

---

ସମୁଦ୍ରରେ ସେତୁବନ୍ଧ ବାନ୍ଧି ଅତିଦୁଷ୍କର କାର୍ଯ୍ୟ କରି ଅଛନ୍ତି । ଆମର ପୂର୍ବ ପୁରୁଷମାନେ କିଅବା, ଦେବତା ଓ ଦାନବମାନେ ମଧ୍ୟ ଏପରି ଅଦ୍ଭୁତ କଥା କେବେ ଶୁଣି ନ ଥିଲେ । ୧୪ । ରାମ ଦୁର୍ଦ୍ଧର୍ଷ ରାବଣକୁ ସୈନ୍ୟ ଓ ବାହନ ସହିତ ନିହତ କରି ଦେଇଛନ୍ତି ଏବଂ ବାନର, ଭଲ୍ଲୁକ ଓ ରାକ୍ଷସମାନଙ୍କୁ ନିଜର ବଶରେ ଆଣି-ଅଛନ୍ତି ।୧୫। ରାମ ଯୁଦ୍ଧରେ ରାବଣକୁ ସଂହାର କରି ସୀତାଙ୍କୁ ଉଦ୍ଧାର କଲେ, ମାତ୍ର ନିନ୍ଦାକୁ ପଛରେ ପକାଇ ଦେଇ ସେ ସୀତାଙ୍କୁ ପୁଣି ନିଜ ଘରକୁ ଘେନି ଆସିଲେ ।୧୬। ଯେଉଁ ସୀତାଙ୍କୁ ପ୍ରଥମେ ରାବଣ ବଳାତ୍କାରରେ ନିଜ କୋଳରେ ବସାଇ ନେଇ-ଯାଇଥିଲା, ସେହି ସୀତାଙ୍କର ସମ୍ଭୋଗ ସୁଖ ରାମଙ୍କୁ କିପରି ଭଲ ବୋଧ ହେଉଅଛି ? । ୧୭ । ରାବଣ ସୀତାଙ୍କୁ ଲଙ୍କାକୁ ନେଇଯାଇ ସେଠାରେ ଅଶୋକବନରେ ରଖିଥିଲା । ସେଠାରେ ସେ ରାକ୍ଷସମାନଙ୍କ ବଶରେ ରହିଥିଲେ । ଏ ସମସ୍ତ କଥା ବିଚାରି ରାମଙ୍କ ମନରେ ସୀତାଙ୍କ ପ୍ରତି କାହିଁକି ଘୃଣା ଜାତ ନ ହେଉଛି ? । ୧୮ । ଏବେ ଆମ୍ଭମାନଙ୍କୁ ମଧ୍ୟ ସ୍ତ୍ରୀମାନଙ୍କର ଏପରି ଦୋଷକୁ ସହି ନେବାକୁ ପଡ଼ିବ, କାରଣ ରାଜା ଯେପରି ବ୍ୟବହାର କରନ୍ତି, ତାଙ୍କର ପ୍ରଜାମାନେ ମଧ୍ୟ ସେହିପରି ବ୍ୟବହାର କରନ୍ତି । ୧୯ । ହେ ରାଜନ୍ ! ସବୁ ନଗର ଏବଂ ଜନପଦରେ ପ୍ରଜାମାନେ ଏହିପ୍ରକାର ବହୁ କଥା କହୁ ଅଛନ୍ତି" ।୨୦ । ଭଦ୍ରଙ୍କର ଏହି କଥା ଶୁଣି ରାମ ଅତିଶୟ ବ୍ୟାକୁଳ

ତସ୍ୟୈବଂ ଭାଷିତଂ ଶ୍ରୁତ୍ୱା ରାଘବଃ ପରମାର୍ତ୍ତବତ୍ ।
ଉବାଚ ସୁହୃଦଃ ସର୍ବାନ୍ କଥମେତଦ୍ ବ୍ରବୀଥ ମାମ୍ । ୨୧ ।
ସର୍ବେ ତୁ ଶିରସା ଭୂମାବଭିବାଦ୍ୟ ପ୍ରଣମ୍ୟ ଚ ।
ପ୍ରତ୍ୟୂଚୁ ରାଘବଂ ଦୀନମେବମେତନ୍ନ ସଂଶୟଃ । ୨୨ ।
ଶ୍ରୁତ୍ୱା ତୁ ବାକ୍ୟଂ କାକୁତ୍‌ସ୍ଥଃ ସର୍ବେଷାଂ ସମୁଦୀରିତମ୍ ।
ବିସର୍ଜୟାମାସ ତଦା ବୟସ୍ୟାନ୍ ଶତ୍ରୁସୂଦନଃ । ୨୩ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତ୍‌ସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ଭଦ୍ରବାକ୍ୟଶ୍ରବଣଂ ନାମ ତ୍ରିଚତ୍ୱାରିଂଶଃ ସର୍ଗଃ ।

---

## ଚତୁଶ୍ଚତ୍ୱାରିଂଶଃ ସର୍ଗଃ

### ଲକ୍ଷ୍ମଣାଦ୍ୟାନୟନମ୍

ବିସୃଜ୍ୟ ତୁ ସୁହୃଦ୍‌ବର୍ଗଂ ବୁଦ୍ଧ୍ୟା ନିଶ୍ଚିତ୍ୟ ରାଘବଃ ।
ସମୀପେ ଦ୍ୱାଃସ୍ଥମାସୀନମିଦଂ ବଚନମବ୍ରବୀତ୍ । ୧ ।
ଶୀଘ୍ରମାନୟ ସୌମିତ୍ରିଂ ଲକ୍ଷ୍ମଣଂ ଶୁଭଲକ୍ଷଣମ୍ ।
ଭରତଂ ଚ ମହାଭାଗଂ ଶତ୍ରୁଘ୍ନମପରାଜିତମ୍ । ୨ ।

---

ହୋଇ ସୁହୃଦ୍‌ମାନଙ୍କୁ ପଚାରିଲେ, "କଅଣ ପ୍ରଜାମାନେ ସତେ ମୋ ବିଷୟରେ ଏପରି କଥାବାର୍ତ୍ତା ହେଉଛନ୍ତି ?" । ୨୧ । ସେମାନେ ସମସ୍ତେ ହାତ ଯୋଡ଼ି ଭୂମିରେ ମୁଣ୍ଡ ଲଗାଇ ପ୍ରଣାମ କରି ଦୁଃଖିତଭାବରେ ରାମଙ୍କୁ କହିଲେ, "ଏ କଥା ନିଃସନ୍ଦେହରେ ଏହିପରି ଅଟେ, ଅର୍ଥାତ୍ ସତ୍ୟ ଅଟେ ।" ୨୨ । ଅନନ୍ତର ଶତ୍ରୁସଂହାରକାରୀ ରାମ ସେମାନଙ୍କ ସମସ୍ତଙ୍କ ମୁଖରୁ ଏହା ଶୁଣି ସୁହୃଦ୍‌ମାନଙ୍କୁ ବିଦାୟ ଦେଲେ । ୨୩ ।

---

## ୪୪ଶ ସର୍ଗ

### ( ଲକ୍ଷ୍ମଣାଦିଙ୍କ ଆହ୍ୱାନ )

ରାମ ସୁହୃଦ୍‌ମାନଙ୍କୁ ବିଦାୟ ଦେଇ ଏବଂ ନିଜ ମନରେ ନିଶ୍ଚୟ କରି ସାରି ପାଖରେ ବସିଥିବା ଦ୍ୱାରପାଳକୁ କହିଲେ । ୧ । "ଶୀଘ୍ର ଯାଇ ଶୁଭଲକ୍ଷଣସମ୍ପନ୍ନ ଲକ୍ଷ୍ମଣ, ମହାଭାଗ ଭରତ ଏବଂ ଅଜେୟ ଶତ୍ରୁଘ୍ନଙ୍କୁ

ରାମସ୍ୟ ବଚନଂ ଶ୍ରୁତ୍ୱା ଦ୍ୱାଃସ୍ଥୋ ମୂର୍ଧ୍ନି କୃତାଞ୍ଜଳିଃ ।
ଲକ୍ଷ୍ମଣସ୍ୟ ଗୃହଂ ଗତ୍ୱା ପ୍ରବବେଶାନିବାରିତଃ । ୩ ।
ଉବାଚ ସୁମହାତ୍ମାନଂ ବର୍ଧୟିତ୍ୱା କୃତାଞ୍ଜଳିଃ ।
ଦ୍ରଷ୍ଟୁମିଚ୍ଛତି ରାଜା ତ୍ୱାଂ ଗମ୍ୟତାଂ ତତ୍ର ମା ଚିରମ୍ । ୪ ।
ବାଢ଼ମିତ୍ୟେବ ସୌମିତ୍ରିଃ ଶ୍ରୁତ୍ୱା ରାଘବଶାସନମ୍ ।
ପ୍ରାଦ୍ରବଦ୍ରଥମାରୁହ୍ୟ ରାଘବସ୍ୟ ନିବେଶନମ୍ । ୫ ।
ପ୍ରୟାନ୍ତଂ ଲକ୍ଷ୍ମଣଂ ଦୃଷ୍ଟ୍ୱା ଦ୍ୱାଃସ୍ଥୋ ଭରତମନ୍ତିକାତ୍ ।
ଉବାଚ ଭରତଂ ତତ୍ର ବର୍ଧୟିତ୍ୱା କୃତାଞ୍ଜଳିଃ । ୬ ।
ବିନୟାବନତୋ ଭୂତ୍ୱା ରାଜା ତ୍ୱାଂ ଦ୍ରଷ୍ଟୁମିଚ୍ଛତି ।
ଭରତସ୍ତୁ ବଚଃ ଶ୍ରୁତ୍ୱା ଦ୍ୱାଃସ୍ଥାଦ୍ରାମସମୀରିତମ୍ । ୭ ।
ଉତ୍ପପାତାସନାତ୍ତୂର୍ଣଂ ପଦ୍ଭ୍ୟାମେବ ଯଯୌ ବଲୀ ।
ଦୃଷ୍ଟ୍ୱା ପ୍ରୟାନ୍ତଂ ଭରତଂ ତ୍ୱରମାଣଃ କୃତାଞ୍ଜଳିଃ । ୮ ।
ଶତ୍ରୁଘ୍ନଭବନଂ ଗତ୍ୱା ତତୋ ବାକ୍ୟମୁବାଚ ହ ।
ଏହ୍ୟାଗଚ୍ଛ ରଘୁଶ୍ରେଷ୍ଠ ରାଜା ତ୍ୱାଂ ଦ୍ରଷ୍ଟୁମିଚ୍ଛତି । ୯ ।

---

ଏଠାକୁ ଘେନିଆସ” ।୨। ଦ୍ୱାରପାଳ ରାମଙ୍କର ଏ ଆଜ୍ଞା ଶୁଣି ମୁଣ୍ଡରେ ଅଞ୍ଜଳି ରଖି ଲକ୍ଷ୍ମଣଙ୍କ ଗୃହକୁ ଯାଇ ସେଠାରେ ବିନା ବାଧାରେ ପ୍ରବେଶ କଲା । ୩ । ସେଠାକୁ ଯାଇ ସେ ଲକ୍ଷ୍ମଣଙ୍କୁ ପ୍ରଣାମ କରି କହିଲା, “ମହାରାଜ ଆପଣଙ୍କୁ ଦେଖା କରିବାକୁ ଇଚ୍ଛାକରୁଛନ୍ତି । ଅତଏବ ଆପଣ ସେଠାକୁ ଶୀଘ୍ର ଯାଆନ୍ତୁ” । ୪ । ଲକ୍ଷ୍ମଣ ରାମଚନ୍ଦ୍ରଙ୍କ ଆଜ୍ଞା ଶୁଣି ତଥାସ୍ତୁ ବୋଲି କହି ରଥରେ ବସିଲେ ଏବଂ ଖୁବ ଶୀଘ୍ର-ଗତିରେ ରାମଚନ୍ଦ୍ରଙ୍କ ଭବନ ଆଡ଼କୁ ଯାତ୍ରାକଲେ । ୫ । ଲକ୍ଷ୍ମଣଙ୍କୁ ପ୍ରସ୍ଥାନ କରିବାର ଦେଖି ଦ୍ୱାରପାଳ ଭରତଙ୍କ ପାଖକୁ ଗଲା ଏବଂ ସେଠାରେ ହାତଯୋଡ଼ି ତାଙ୍କୁ କହିଲା । ୬ । ସେ ବିନୀତଭାବରେ ଭରତଙ୍କୁ କହିଲା, “ରାଜା ତୁମକୁ ଦେଖିବାକୁ ଇଚ୍ଛା କରୁଛନ୍ତି” । ଭରତ ଦ୍ୱାରପାଳଠାରୁ ରାମଙ୍କର ଆଜ୍ଞା ଶୁଣି ତତ୍‌କ୍ଷଣାତ୍ ଆସନରୁ ଉଠି ଠିଆ ହେଲେ ଏବଂ ପାଦରେ ଚାଲିକରି ଚାଲିଗଲେ । ଭରତଙ୍କୁ ଯିବାର ଦେଖି ଦ୍ୱାରପାଳ ତରବର ହୋଇ ଶତ୍ରୁଘ୍ନଙ୍କ ଗୃହକୁ ଯାଇ ହାତଯୋଡ଼ି କହିଲା । “ହେ ରଘୁଶ୍ରେଷ୍ଠ ! ଆସନ୍ତୁ, ମହାରାଜ ଆପଣଙ୍କୁ ଶୀଘ୍ର ଦେଖିବାକୁ

ଗତୋ ହି ଲକ୍ଷ୍ମଣଃ ପୂର୍ବଂ ଭରତଶ୍ଚ ମହାଯଶାଃ ।
ଶ୍ରୁତ୍ୱା ତୁ ବଚନଂ ତସ୍ୟ ଶତ୍ରୁଘ୍ନଃ ପରମାସନାତ୍ । ୧୦ ।
ଶିରସା ବନ୍ଦ୍ୟ ଧରଣୀଂ ପ୍ରଯଯୌ ଯତ୍ର ରାଘବଃ ।
ଦ୍ୱାଃସ୍ଥସ୍ତ୍ୱାଗମ୍ୟ ରାମାୟ ସର୍ବାନେବ କୃତାଞ୍ଜଲିଃ । ୧୧ ।
ନିବେଦୟାମାସ ତଦା ଭ୍ରାତୄନ୍ ସ୍ୱାନ୍ ସମୁପସ୍ଥିତାନ୍ ।
କୁମାରାନାଗତାନ୍ ଶ୍ରୁତ୍ୱା ଚିନ୍ତାବ୍ୟାକୁଳିତେନ୍ଦ୍ରିୟଃ । ୧୨ ।
ଅବାଙ୍ମୁଖୋ ଦୀନମନା ଦ୍ୱାଃସ୍ଥଂ ବଚନମବ୍ରବୀତ୍ ।
ପ୍ରବେଶୟ କୁମାରାଂସ୍ତ୍ୱଂ ମତ୍ସମୀପଂ ତ୍ୱରାନ୍ୱିତଃ । ୧୩ ।
ଏତେଷୁ ଜୀବିତଂ ମହ୍ୟମେତେ ପ୍ରାଣାଃ ପ୍ରିୟା ମମ ।
ଆଜ୍ଞପ୍ତାସ୍ତୁ ନରେନ୍ଦ୍ରେଣ କୁମାରାଃ ଶକ୍ରତେଜସଃ । ୧୪ ।
ପ୍ରହ୍ୱାଃ ପ୍ରାଞ୍ଜଳୟୋ ଭୂତ୍ୱା ବିବିଶୁସ୍ତେ ସମାହିତାଃ ।
ତେ ତୁ ଦୃଷ୍ଟ୍ୱା ମୁଖଂ ତସ୍ୟ ସଗ୍ରହଂ ଶଶିନଂ ଯଥା । ୧୫ ।
ସନ୍ଧ୍ୟାଗତମିବାଦିତ୍ୟଂ ପ୍ରଭୟା ପରିବର୍ଜିତମ୍ ।
ବାଷ୍ପପୂର୍ଣେ ଚ ନୟନେ ଦୃଷ୍ଟ୍ୱା ରାମସ୍ୟ ଧୀମତଃ । ୧୬ ।

---

ରହୁଁଛନ୍ତି” । ୭-୯ । ମହାଯଶସ୍ୱୀ ଭରତ ଏବଂ ଲକ୍ଷ୍ମଣ ସେଠାକୁ ଗଲେଣି ବୋଲି ଶୁଣି ଶତ୍ରୁଘ୍ନ ଆସନ ଛାଡ଼ି ଶୀଘ୍ର ଉଠି ଠିଆ ହେଲେ ଏବଂ ଭୂମିରେ ମୁଣ୍ଡ ଲଗାଇ ରାମ ଯେଉଁଠାରେ ଥିଲେ ସେଠାକୁ ପ୍ରସ୍ଥାନ କଲେ । ଦ୍ୱାରପାଳ ମଧ୍ୟ ଏ ମଧ୍ୟରେ ଆସି ହାତ ଯୋଡ଼ି ରାମଙ୍କୁ ଜଣାଇଲା ଯେ ସବୁ ଭାଇ ଆସି ଉପସ୍ଥିତ ହୋଇଛନ୍ତି ।” କୁମାରମାନେ ଆସିଥିବା କଥା ଶୁଣି ଚିନ୍ତାରେ ବ୍ୟଥିତେନ୍ଦ୍ରିୟ ହୋଇ ମୁହଁକୁ ତଳକୁ ପୋତି ଦୁଃଖ ମନରେ ରାମ ଦ୍ୱାରପାଳକୁ କହିଲେ, “କୁମାରମାନଙ୍କୁ ମୋ ନିକଟରେ ଶୀଘ୍ର ଆଣି ପ୍ରବେଶ କରାଅ ।୧୦-୧୩ । କାରଣ ସେମାନେ ମୋର ଜୀବନର ଆଧାର ଏବଂ ମୋର ପ୍ରାଣପ୍ରିୟ ଅଟନ୍ତି” । ରାମଚନ୍ଦ୍ରଙ୍କ ଆଜ୍ଞା ଶୁଣି ଇନ୍ଦ୍ରସଦୃଶ ତେଜସ୍ୱୀ କୁମାରମାନେ ସାବଧାନଭାବରେ ହାତଯୋଡ଼ି ରାମଙ୍କ ଭବନ ଭିତରେ ପ୍ରବେଶ କଲେ । ସେମାନେ ରାମଙ୍କର ମୁଖମଣ୍ଡଳକୁ, ଗ୍ରହଣ ଲାଗିଥିବା ଚନ୍ଦ୍ର ସଦୃଶ କିମ୍ବା ଅସ୍ତୋନ୍ମୁଖ ସୂର୍ଯ୍ୟସଦୃଶ ମଳିନ ଦେଖିଲେ । ଶୋଭାହୀନ ପଦ୍ମପୁଷ୍ପ ସଦୃଶ ରାମଙ୍କ ମୁଖକୁ ଦେଖି ସେମାନେ ରାମଙ୍କ ଚରଣରେ ମୁଣ୍ଡ ଲଗାଇ ତାଙ୍କୁ ପ୍ରଣାମ କଲେ । ତଦନନ୍ତର ସେମାନେ ହାତଯୋଡ଼ି ଠିଆ ହୋଇ ରହିଲେ; କିନ୍ତୁ ରାମ ସେତେବେଳେ

ହୃତଶୋଭଂ ଯଥା ପଦ୍ମଂ ମୁଖଂ ବୀକ୍ଷ୍ୟ ଚ ତସ୍ୟ ତେ ।
ତତୋଽଭିବାଦ୍ୟ ତ୍ୱରିତାଃ ପାଦୌ ରାମସ୍ୟ ମୂର୍ଧଭିଃ ।
ତସ୍ଥୁଃ ସମାହିତାଃ ସର୍ବେ ରାମସ୍ତ୍ୱଶ୍ରୂଣ୍ୟବର୍ତ୍ତୟତ୍ । ୧୭ ।
ତାନ୍ ପରିଷ୍ୱଜ୍ୟ ବାହୁଭ୍ୟାମୁତ୍ଥାପ୍ୟ ଚ ମହାବଲଃ ।
ଆସନେଷ୍ୱାସତେତ୍ୟୁକ୍ତ୍ୱା ତତୋ ବାକ୍ୟଂ ଜଗାଦ ହ । ୧୮ ।
ଭବନ୍ତୋ ମମ ସର୍ବସ୍ୱଂ ଭବନ୍ତୋ ଜୀବିତଂ ମମ ।
ଭବଦ୍ଭିଶ୍ଚ କୃତଂ ରାଜ୍ୟଂ ପାଲୟାମି ନରେଶ୍ୱରାଃ । ୧୯ ।
ଭବନ୍ତଃ କୃତଶାସ୍ତ୍ରାର୍ଥା ବୁଦ୍ଧ୍ୟା ଚ ପରିନିଷ୍ଠିତାଃ ।
ସଂଭୂୟ ଚ ମଦର୍ଥୋଽୟମନ୍ୱେଷ୍ଟବ୍ୟୋ ନରେଶ୍ୱରାଃ । ୨୦ ।
ତଥା ବଦତି କାକୁତ୍ସ୍ଥେ ହ୍ୟବଧାନପରାୟଣାଃ ।
ଉଦ୍‌ବିଗ୍ନମନସଃ ସର୍ବେ କିଂ ନୁ ରାଜାଭିଧାସ୍ୟତି । ୨୧ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ଲକ୍ଷ୍ମଣାଦ୍ୟାନୟନଂ ନାମ ଚତୁଶ୍ଚତ୍ୱାରିଂଶଃ ସର୍ଗଃ ।

---

ଚକ୍ଷୁରୁ ଲୁହ ଗଡ଼ାଉଥିଲେ । ୧୪-୧୭ । ରାମ ଦୁଇ ବାହୁରେ ସେମାନଙ୍କୁ ଆଲିଙ୍ଗନ କରି ଆସନରେ ବସିବାକୁ କହିଲେ । ତତ୍‌ପରେ ସେ କହିଲେ ।୧୮। "ହେ ନରେଶ୍ୱର-ଗଣ ! ଆପଣମାନେହିଁ ମୋର ସର୍ବସ୍ୱ ଅଟନ୍ତି, ଆପଣମାନେ ମୋର ଜୀବନର ଆଧାର ଅଟନ୍ତି । ଆପଣମାନଙ୍କ ଦ୍ୱାରା ଗଠିତ ହୋଇଥିବା ରାଜ୍ୟକୁହିଁ ମୁଁ ପାଳନ କରୁଅଛି । ୧୯ । ଆପଣମାନେ ସମସ୍ତେ ଶାସ୍ତ୍ରରେ ନିପୁଣ ଏବଂ ବୁଦ୍ଧିରେ ମଧ୍ୟ ଉତ୍କୃଷ୍ଟ ଅଟନ୍ତି । ଅତଏବ ଆପଣମାନେ ମିଳିକରି ମୁଁ ଯାହା କହୁଛି ତା ଉପରେ ବିଚାର କରନ୍ତୁ" । ୨୦ । ରାମ ଏହିପରି କହିବା ଉତ୍ତାରୁ ସେମାନେ ସମସ୍ତେ ଉଦ୍‌ବିଗ୍ନ ହୋଇ ଅଭିନିବେଶ ସହକାରେ ଭାବିବାକୁ ଲାଗିଲେ—ଦେଖାଯାଉ ମହାରାଜ କଅଣ କହୁଛନ୍ତି । ୨୧ ।

# ପଞ୍ଚଚତ୍ୱାରିଂଶଃ ସର୍ଗଃ

## ସୀତାସମୁତ୍ସର୍ଗାଦେଶଃ

ତେଷାଂ ସମୁପବିଷ୍ଟାନାଂ ସର୍ବେଷାଂ ଦୀନଚେତସାମ୍ ।
ଉବାଚ ବାକ୍ୟଂ କାକୁତ୍ସ୍ଥୋ ମୁଖେନ ପରିଶୁଷ୍ୟତା । ୧ ।
ସର୍ବେ ଶୃଣୁତ ଭଦ୍ରଂ ବୋ ମା କୁରୁଧ୍ୱଂ ମନୋଽନ୍ୟଥା ।
ପୌରାଣାଂ ମମ ସୀତାୟାଂ ଯାଦୃଶୀ ବର୍ତ୍ତତେ କଥା । ୨ ।
ପୌରାପବାଦଃ ସୁମହାଂସ୍ତଥା ଜନପଦସ୍ୟ ଚ ।
ବର୍ତ୍ତତେ ମୟି ବୀଭତ୍ସୋ ସା ମେ ମର୍ମାଣି କୃନ୍ତତି । ୩ ।
ଅହଂ କିଲ କୁଲେ ଜାତ ଇକ୍ଷ୍ୱାକୂଣାଂ ମହାତ୍ମନାମ୍ ।
ସୀତାପି ସତ୍କୁଲେ ଜାତା ଜନକାନାଂ ମହାତ୍ମନାମ୍ । ୪ ।
ଜାନାସି ତ୍ୱଂ ତଥା ସୌମ୍ୟ ଦଣ୍ଡକେ ବିଜନେ ବନେ ।
ରାବଣେନ ହୃତା ସୀତା ସ ଚ ବିଧ୍ୱଂସିତୋ ମୟା । ୫ ।
ତତ୍ର ମେ ବୁଦ୍ଧିରୁତ୍ପନ୍ନା ଜନକସ୍ୟ ସୁତାଂ ପ୍ରତି ।
ଅତ୍ରୋଷିତାମିମାଂ ସୀତାମାନୟେୟଂ କଥଂ ପୁରୀମ୍ । ୬ ।

---

## ୪୫ଶ ସର୍ଗ

( ସୀତା ପରିତ୍ୟାଗ ଆଦେଶ )

କୁମାରମାନେ ଦୁଃଖିତମନରେ ବସିଯିବା ପରେ ରାମ ମୁହଁଶୁଖାଇ କହିଲେ । ୧ । "ହେ ଭ୍ରାତୃଗଣ ! ତୁମ୍ଭମାନଙ୍କର ମଙ୍ଗଳ ହେଉ, ମୁଁ ଯାହା କହୁଛି ସମସ୍ତେ ଶୁଣ, ଅନ୍ୟମନସ୍କ ହୁଅ ନାହିଁ । ମୋର ଏବଂ ସୀତାଙ୍କ ବିଷୟରେ ପୁରବାସୀମାନଙ୍କ ଭିତରେ ଯାହା ଚର୍ଚ୍ଚା ହେଉଛି ତାହା ଶୁଣ ।୨। ପୁରବାସୀ ଓ ଜନପଦବାସୀଙ୍କ ମଧ୍ୟରେ ମୋ ବିଷୟରେ ଏପରି ଏକ ପ୍ରବଳ ଅପବାଦ ପ୍ରଚଳିତ ହୋଇଅଛି ଯେ ତାହା ମୋ ମର୍ମସ୍ଥଳକୁ ବିଦୀର୍ଣ୍ଣ କରିପକାଉଛି । ୩ । ମୁଁ ମହାତ୍ମା ଇକ୍ଷ୍ୱାକୁ କୁଳରେ ଜନ୍ମହୋଇଅଛି ଏବଂ ସୀତା ମଧ୍ୟ ଜନକଙ୍କ କୁଳୀନ ବଂଶରେ ଉତ୍ପନ୍ନ ହୋଇଅଛନ୍ତି ।୪। ହେ ସୌମ୍ୟ ଲକ୍ଷ୍ମଣ ! ତୁମେ ତ ଜାଣ ଦଣ୍ଡକାରଣ୍ୟରେ ରାବଣ ସୀତାଙ୍କୁ କିପରି ହରଣ କରି ନେଇଯାଇଥିଲା ଏବଂ ସେହି ଦୁରାତ୍ମାକୁ ମୁଁ କିପରି ସମ୍ପୂର୍ଣ୍ଣ ଧ୍ୱଂସ କରିଦେଇଛି । ୫। ସେହି ଲଙ୍କାଠାରେହିଁ ମୋ ମନରେ ଚିନ୍ତା ଜାତହୋଇଥିଲା ଯେ ରାକ୍ଷସ ଗୃହରେ ରହିଥିବା ସୀତାଙ୍କୁ ମୁଁ କିପରି ନିଜ ନଗରକୁ ନେଇକରି ଯିବି । ୬ ।

ପ୍ରତ୍ୟୟାର୍ଥଂ ତତଃ ସୀତା ବିବେଶ ଜ୍ୱଲନଂ ତଦା ।
ପ୍ରତ୍ୟକ୍ଷଂ ତବ ସୌମିତ୍ରେ ଦେବାନାଂ ହବ୍ୟବାହନଃ । ୭ ।
ଅପାପାଂ ମୈଥିଲୀମାହ ବାୟୁଶ୍ଚାକାଶଗୋଚରଃ ।
ଚନ୍ଦ୍ରାଦିତ୍ୟୌ ଚ ଶଂସେତେ ସୁରାଣାଂ ସନ୍ନିଧୌ ପୁରା । ୮ ।
ଋଷୀଣାଂ ଚୈବ ସର୍ବେଷାମପାପାଂ ଜନକାତ୍ମଜାମ୍ ।
ଏବଂ ଶୁଦ୍ଧସମାଚାରା ଦେବଗନ୍ଧର୍ବସନ୍ନିଧୌ । ୯ ।
ଲଙ୍କାଦ୍ୱୀପେ ମହେନ୍ଦ୍ରେଣ ମମ ହସ୍ତେ ନିବେଶିତା ।
ଅନ୍ତରାତ୍ମା ଚ ମେ ବେତ୍ତି ସୀତାଂ ଶୁଦ୍ଧାଂ ଯଶସ୍ୱିନୀମ୍ । ୧୦ ।
ତତୋ ଗୃହୀତ୍ୱା ବୈଦେହୀମଯୋଧ୍ୟାମହମାଗତଃ ।
ଅୟଂ ତୁ ମେ ମହାନ୍ ବାଦଃ ଶୋକଶ୍ଚ ହୃଦି ବର୍ତ୍ତତେ । ୧୧ ।
ପୌରାପବାଦଃ ସୁମହାଂସ୍ତଥା ଜନପଦସ୍ୟ ଚ ।
ଅକୀର୍ତ୍ତିର୍ଯସ୍ୟ ଗୀୟେତ ଲୋକେ ଭୂତସ୍ୟ କସ୍ୟଚିତ୍ । ୧୨ ।
ପତତ୍ୟେବାଧମାଲ୍ଲୋକାନ୍ ଯାବଚ୍ଛବ୍ଦଃ ପ୍ରକୀର୍ତ୍ତ୍ୟତେ ।
ଅକୀର୍ତ୍ତିର୍ନିନ୍ଦ୍ୟତେ ଦେବୈଃ କୀର୍ତ୍ତିର୍ଲୋକେଷୁ ପୂଜ୍ୟତେ ।୧୩।

---

ହେ ଲକ୍ଷ୍ମଣ ! ତୁମେ ତ ସ୍ୱଚକ୍ଷୁରେ ଦେଖିଛ, ମୋର ବିଶ୍ୱାସ ଜନ୍ମାଇବା ନିମନ୍ତେ ସୀତା ଜ୍ୱଳନ୍ତ ଅଗ୍ନିରେ ପ୍ରବେଶ କରିଥିଲେ । ସେତେବେଳେ ହବ୍ୟବାହନ ନିଜେ ପ୍ରକଟ ହୋଇଥିଲେ । ଆକାଶସ୍ଥିତ ବାୟୁ ସୀତାଙ୍କୁ ଦୋଷରହିତ ବୋଲି କହିଥିଲେ । ଦେବତା ଏବଂ ଋଷିମାନଙ୍କ ସମ୍ମୁଖରେ ଚନ୍ଦ୍ର ଏବଂ ସୂର୍ଯ୍ୟ ମଧ୍ୟ ଜାନକୀ ସମ୍ପୂର୍ଣ୍ଣ ପାପରହିତା ବୋଲି କହିଥିଲେ । ଏପରି ଶୁଦ୍ଧଚରିତା ସୀତାଙ୍କୁ ଦେବତା ଏବଂ ଗନ୍ଧର୍ବମାନଙ୍କ ସମ୍ମୁଖରେ ଲଙ୍କାଦ୍ୱୀପରେ ଇନ୍ଦ୍ରଦେବ ମୋ ହାତରେ ସମର୍ପଣ କରିଥିଲେ । ଏହା ଛଡ଼ା ମୋର ଅନ୍ତରାତ୍ମା ମଧ୍ୟ ଜାଣେ ଯେ ଯଶସ୍ୱିନୀ ସୀତା ଶୁଦ୍ଧ ଅଟନ୍ତି । ୭-୧୦ । ତା ଉତ୍ତାରୁ ମୁଁ ବୈଦେହୀଙ୍କୁ ନେଇ ଅଯୋଧ୍ୟାକୁ ଆସିଥିଲି; କିନ୍ତୁ ବର୍ତ୍ତମାନ ଏହି ମହା ଅପବାଦ ମୋ ହୃଦୟରେ ଶୋକ ଜାତ କରୁଅଛି । ୧୧ । ପୁରବାସୀ ଓ ଜନପଦବାସୀ ମୋର ବଡ଼ ନିନ୍ଦା କରୁଛନ୍ତି ଏବଂ ସେହି ନିନ୍ଦା ଓ ଦୁର୍ନାମ ଲୋକଙ୍କ ଭିତରେ ପ୍ରସରିଯାଉଛି । ୧୨ । ଯେପର୍ଯ୍ୟନ୍ତ ଲୋକର ଅକୀର୍ତ୍ତି ପ୍ରସରି ରହିଥାଏ ସେପର୍ଯ୍ୟନ୍ତ ସେ ଅଧମ ଲୋକରେ ପଡ଼ି ରହିଥାଏ । ଦେବତାମାନେ ମଧ୍ୟ ଅକୀର୍ତ୍ତିକୁ ମନ୍ଦ ବୋଲି କହନ୍ତି । କୀର୍ତ୍ତିମାନ୍ ଲୋକ ସର୍ବତ୍ର ପୂଜା ପାଇଥାଏ । ୧୩ । ଅତଏବ ସୁମହାତ୍ମା ଲୋକମାନେ କୀର୍ତ୍ତି ସମ୍ପାଦନ

କୀର୍ତ୍ତ୍ୟର୍ଥଂ ତୁ ସମାରମ୍ଭଃ ସର୍ବେଷାଂ ସୁମହାତ୍ମନାମ୍ ।
ଅପ୍ୟହଂ ଜୀବିତଂ ଜହ୍ୟାଂ ଯୁଷ୍ମାନ୍ ବା ପୁରୁଷର୍ଷଭାଃ । ୧୪ ।
ଅପବାଦଭୟାଦ୍ଭୀତଃ କିଂ ପୁନର୍ଜନକାତ୍ମଜାମ୍ ।
ତସ୍ମାଦ୍ଭବନ୍ତଃ ପଶ୍ୟନ୍ତୁ ପତିତଂ ଶୋକସାଗରେ । ୧୫ ।
ନ ହି ପଶ୍ୟାମ୍ୟହଂ ଭୂତଂ କିଞ୍ଚିଦ୍ଦୁଃଖମତୋଽଧିକମ୍ ।
ଶ୍ୱସ୍ତ୍ୱଂ ପ୍ରଭାତେ ସୌମିତ୍ରେ ସୁମନ୍ତ୍ରାଧିଷ୍ଠିତଂ ରଥମ୍ । । ୧୬ ।
ଆରୁହ୍ୟ ସୀତାମାରୋପ୍ୟ ବିଷୟାନ୍ତେ ସମୁତ୍ସୃଜ ।
ଗଙ୍ଗାୟାସ୍ତୁ ପରେ ପାରେ ବାଲ୍ମୀକେସ୍ତୁ ମହାତ୍ମନଃ । ୧୭ ।
ଆଶ୍ରମୋ ଦିବ୍ୟସଂକାଶସ୍ତମସାତୀରମାଶ୍ରିତଃ ।
ତତ୍ରୈନାଂ ବିଜନେ ଦେଶେ ବିସୃଜ୍ୟ ରଘୁନନ୍ଦନ । ୧୮ ।
ଶୀଘ୍ରମାଗଚ୍ଛ ଭଦ୍ରଂ ତେ କୁରୁଷ୍ୱ ବଚନଂ ମମ ।
ନ ଚାସ୍ମିନ୍ ପ୍ରତିବକ୍ତବ୍ୟଃ ସୀତାଂ ପ୍ରତି କଥଞ୍ଚନ । ୧୯ ।
ତସ୍ମାତ୍ତ୍ୱଂ ଗଚ୍ଛ ସୌମିତ୍ରେ ନାତ୍ର କାର୍ଯ୍ୟା ବିଚାରଣା ।
ଅପ୍ରୀତିର୍ହି ପରା ମହ୍ୟଂ ତ୍ୱୟୈତତ୍ ପ୍ରତିବାରିତେ । ୨୦ ।

---

କରିବା ନିମନ୍ତେ ସବୁପ୍ରକାର ଉଦ୍‌ଯୋଗ କରିଥାନ୍ତି । ହେ ପୁରୁଷଶ୍ରେଷ୍ଠ ! ମୁଁ ହୁଏତ ଜୀବନ ଛାଡ଼ିଦେବି ଅଥବା ତୁମ୍ଭମାନଙ୍କୁ ଛାଡ଼ିଯିବି । ୧୪ । ଅପବାଦ ଭୟରେ ଭୀତ ହୋଇ ମୁଁ ଯେତେବେଳେ ତୁମ୍ଭମାନଙ୍କୁ ଛାଡ଼ିଦେବି ସେତେବେଳେ ଜନକ-କନ୍ୟାଙ୍କ କଥା ଅଧିକ କଅଣ ? ତୁମ୍ଭେମାନେ ଦେଖ, ମୁଁ ବର୍ତ୍ତମାନ ଅଗାଧରୂପ ଶୋକସାଗରରେ ବୁଡ଼ି ରହିଅଛି ।୧୫। ଏହାଠାରୁ ବଳି ମୁଁ ଅଧିକତର ଅନ୍ୟ କୌଣସି ଦୁଃଖକୁ ବଡ଼ ଦେଖୁ ନାହିଁ । ହେ ଲକ୍ଷ୍ମଣ ! ତୁମେ କାଲି ସକାଳେ ସୁମନ୍ତ୍ରଙ୍କଦ୍ୱାରା ରଥ ଯୋଗାଇ ସେଥିରେ ସୀତାଙ୍କୁ ବସାଇ ମୋ ରାଜ୍ୟ ବାହାରେ ଛାଡ଼ିଦେଇ ଆସ । ଗଙ୍ଗାର ଅପର ପାରରେ ମହର୍ଷି ବାଲ୍ମୀକିଙ୍କର ତମସା ନଦୀତଟରେ ଦିବ୍ୟ ଆଶ୍ରମ ଅଛି । ହେ ଲକ୍ଷ୍ମଣ ! ତୁମେ ସେହି ଜନଶୂନ୍ୟ ବନରେ ସୀତାଙ୍କୁ ଛାଡ଼ିଦେଇ ଶୀଘ୍ର ଫେରିଆସ । ହେ ଲକ୍ଷ୍ମଣ ! ତୁମେ ମୋର ଏହି କହିବା କଥା କର ଏବଂ ସୀତାଙ୍କ ବିଷୟରେ ମୋତେ ଆଉ କିଛି କହ ନାହିଁ । ୧୬-୧୯ । ହେ ଲକ୍ଷ୍ମଣ ! ଏବେ ତୁମେ ଯାଅ ଏବଂ ଏ ବିଷୟରେ ଆଉ ଭଲ ମନ୍ଦ ବିଚାର କର ନାହିଁ । ତୁମେ ଯଦି ଏଥିରେ ମୋତେ ବାରଣ କରିବ ତେବେ ମୁଁ ବଡ଼ ଅପ୍ରୀତ ହେବି । ୨୦ । ମୁଁ ତୁମ୍ଭମାନଙ୍କୁ

ଶାପିତା ହି ମୟା ଯୂୟଂ ଭୁଜାଭ୍ୟାଂ ଜୀବିତେନ ଚ ।
ଯେ ମାଂ ବାକ୍ୟାନ୍ତରେ ବ୍ରୂୟୁରନୁନେତୁଂ କଥଞ୍ଚନ ।
ଅହିତା ନାମ ତେ ନିତ୍ୟଂ ମଦଭୀଷ୍ଟବିଘାତନାତ୍ । ୨୧ ।
ମାନୟନ୍ତୁ ଭବନ୍ତୋ ମାଂ ଯଦି ମଚ୍ଛାସନେ ସ୍ଥିତାଃ ।
ଇତୋଽଦ୍ୟ ନୀୟତାଂ ସୀତା କୁରୁଷ୍ୱ ବଚନଂ ମମ । ୨୨ ।
ପୂର୍ବମୁକ୍ତୋଽହମନୟା ଗଙ୍ଗାତୀରେଽହମାଶ୍ରମାନ୍ ।
ପଶ୍ୟେୟମିତି ଯସ୍ୟାଶ୍ଚ କାମଃ ସଂବର୍ତ୍ତ୍ୟତାମୟମ୍ । ୨୩ ।
ଏବମୁକ୍ତ୍ୱା ତୁ କାକୁତ୍ସ୍ଥୋ ବାଷ୍ପେଣ ପିହିତାନନଃ ।
ପ୍ରବିବେଶ ସ ଧର୍ମାତ୍ମା ଭ୍ରାତୃଭିଃ ପରିବାରିତଃ ।
ଶୋକସଂଲଗ୍ନହୃଦୟୋ ନିଶଶ୍ୱାସ ଯଥା ଦ୍ୱିପଃ । ୨୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ସୀତାସମୁତ୍ସର୍ଗୋଦେଶୋ ନାମ ପଞ୍ଚଚତ୍ୱାରିଂଶଃ ସର୍ଗଃ ।

---

ନିଜର ଦୁଇ ବାହୁ ଓ ପ୍ରାଣର ଶପଥ ଦେଉଛି ଯେ ଏ ବିଷୟରେ ତୁମେ ମୋତେ କୌଣସି ପ୍ରକାର ଅନୁନୟ ବିନୟ କରିବ ନାହିଁ ; ଯଦି କରିବ ତେବେ ମୋର ଅଭୀଷ୍ଟ କାର୍ଯ୍ୟରେ ବାଧାପଡ଼ିବ ଏବଂ ମୁଁ ତୁମ୍ଭମାନଙ୍କୁ ସର୍ବଦା ଆପଣା ଅହିତକାରୀ ବୋଲି ବିଚାରିବି । ୨୧ । ଯଦି ତୁମ୍ଭେମାନେ ମୋର ଆଜ୍ଞା ମାନୁ ଥାଅ, ତାହାହେଲେ ମୁଁ ଯାହା କହୁଛି ତାହା କର । ମୁଁ କହୁଛି,ସୀତାଙ୍କୁ ଏଠାରୁ ନେଇଯାଇ ତୁମେ ମୋର ଆଜ୍ଞା ପୂରଣକର । ୨୨ । ଏହା ପୂର୍ବରୁ ସୀତା ମୋତେ କହିଥିଲେ କି ମୁଁ ଗଙ୍ଗାତଟବାସୀ ମୁନିମାନଙ୍କ ଆଶ୍ରମ ଦେଖିବାକୁ ଚାହୁଁଛି । ଅତଏବ ଏପରି କଲେ ତାଙ୍କର ମନ ମଧ୍ୟ ସନ୍ତୁଷ୍ଟ ହେବ" । ୨୩ । ଏହା କହୁ କହୁ ରାମଙ୍କର ଚକ୍ଷୁ ଅଶ୍ରୁପୂର୍ଣ୍ଣ ହୋଇଗଲା । ସେ ଏହା କହି ଭ୍ରାତାମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ନିଜ ଭବନକୁ ଚାଲିଗଲେ । ତାଙ୍କର ହୃଦୟ ଶୋକସନ୍ତପ୍ତ ହୋଇଗଲା ଏବଂ ସେ ହସ୍ତୀ ସଦୃଶ ଦୀର୍ଘନିଶ୍ୱାସ ପକାଇବାକୁ ଲାଗିଲେ । ୨୪ ।

# ଷଟ୍‌ଚତ୍ୱାରିଂଶଃ ସର୍ଗଃ

## ସୀତାଗଙ୍ଗାତୀରନୟନମ୍

ତତୋ ରଜନ୍ୟାଂ ବ୍ୟୁଷ୍ଟାୟାଂ ଲକ୍ଷ୍ମଣୋ ଦୀନଚେତନଃ ।
ସୁମନ୍ତ୍ରମବ୍ରବୀଦ୍ ବାକ୍ୟଂ ମୁଖେନ ପରିଶୁଷ୍ୟତା । ୧ ।
ସାରଥେ ତୁରଗାନ୍ ଶୀଘ୍ରଂ ଯୋଜୟସ୍ୱ ରଥୋତ୍ତମେ ।
ସ୍ୱାସ୍ତୀର୍ଣଂ ରାଜବଚନାତ୍ ସୀତାୟାଶ୍ଚାସନଂ କୁରୁ । ୨ ।
ସୀତା ହି ରାଜବଚନାଦାଶ୍ରମଂ ପୁଣ୍ୟକର୍ମଣାମ୍ ।
ମୟା ନେୟା ମହର୍ଷୀଣାଂ ଶୀଘ୍ରମାନୀୟତାଂ ରଥଃ । ୩ ।
ସୁମନ୍ତ୍ରସ୍ତୁ ତଥେତ୍ୟୁକ୍ତ୍ୱା ଯୁକ୍ତଂ ପରମବାଜିଭିଃ ।
ରଥଂ ସୁରୁଚିରପ୍ରଖ୍ୟଂ ସ୍ୱାସ୍ତୀର୍ଣଂ ସୁଖଶଯ୍ୟୟା । ୪ ।
ଆନୀୟୋବାଚ ସୌମିତ୍ରିଂ ମିତ୍ରାଣାଂ ମାନବର୍ଦ୍ଧନମ୍ ।
ରଥୋଽୟଂ ସମନୁପ୍ରାପ୍ତୋ ଯତ୍ କାର୍ଯଂ କ୍ରିୟତାଂ ପ୍ରଭୋ । ୫ ।
ଏବମୁକ୍ତଃ ସୁମନ୍ତ୍ରେଣ ରାଜବେଶ୍ମନି ଲକ୍ଷ୍ମଣଃ ।
ପ୍ରବିଶ୍ୟ ସୀତାମାସାଦ୍ୟ ବ୍ୟାଜହାର ନରର୍ଷଭଃ । ୬ ।

---

## ୪୬ଶ ସର୍ଗ

( ଗଙ୍ଗାତୀରକୁ ସୀତା ଆନୟନ )

ରାତ୍ରି ବିତିଯାଇ ସକାଳ ହେବାରୁ ବିଷାଦଗ୍ରସ୍ତ ଲକ୍ଷ୍ମଣ ମୁହଁ ଶୁଖାଇ ସୁମନ୍ତ୍ରଙ୍କୁ କହିଲେ । ୧ । "ହେ ସାରଥେ ! ରାମଙ୍କର ଆଜ୍ଞା ଯେ ତୁମେ ଶୀଘ୍ର ଘୋଡ଼ାମାନଙ୍କୁ ଉତ୍ତମ ରଥରେ ଯୋଚି ସୀତାଙ୍କ ବସିବା ଯୋଗ୍ୟ ଆସନ ବିଛାଇବ ।୨। କାରଣ ମହାରାଜଙ୍କ ଆଜ୍ଞାନୁସାରେ ସୀତାଙ୍କୁ ପୁଣ୍ୟକର୍ମା ଋଷିମାନଙ୍କ ଆଶ୍ରମକୁ ନେବାକୁ ହେବ, ଅତଏବ ଶୀଘ୍ର ରଥ ସଜାଇ ଘେନିଆସ" । ୩ । ସୁମନ୍ତ୍ର ଯେ ଆଜ୍ଞା ବୋଲି କହି ରଥରେ ଉତ୍ତମ ଘୋଡ଼ା ଯୋଚି ଏବଂ ସୁଖପ୍ରଦ କୋମଳ ବିଛଣା ବିଛାଇ ରଥ ଘେନି ଆସିଲେ । ୪ । ସେ ରଥ ଆଣି ମିତ୍ରମାନବର୍ଦ୍ଧନକାରୀ ଲକ୍ଷ୍ମଣଙ୍କୁ କହିଲେ, "ହେ ପ୍ରଭୋ ! ଏହି ରଥ ପ୍ରସ୍ତୁତ ହୋଇଅଛି; ବର୍ତ୍ତମାନ ଯାହା କରିବାର କଥା ତାହା କରନ୍ତୁ" । ୫ । ନରଶ୍ରେଷ୍ଠ ଲକ୍ଷ୍ମଣ ସୁମନ୍ତ୍ରଙ୍କ କଥା ଶୁଣି ରାଜଭବନରେ ପଶିଲେ । ସୀତାଙ୍କ ନିକଟକୁ ଯାଇ ତାଙ୍କୁ କହିଲେ । ୬ । ହେ ବୈଦେହି ! ତୁମେ ମହାରାଜଙ୍କୁ

ତ୍ୱୟା କଲୈଷ ନୃପତିର୍ବରଂ ବୈ ଯାଚିତଃ ପ୍ରଭୁଃ ।
ନୃପେଣ ଚ ପ୍ରତିଜ୍ଞାତମାଜ୍ଞପ୍ତଶ୍ଚାଶ୍ରମଂ ପ୍ରତି । ୭ ।
ଗଙ୍ଗାତୀରେ ମୟା ଦେବ ଋଷୀଣାମାଶ୍ରମାନ୍ ଶୁଭାନ୍ ।
ଶୀଘ୍ରଂ ଗତ୍ୱା ତୁ ବୈଦେହି ଶାସନାତ୍ ପାର୍ଥିବସ୍ୟ ନଃ । ୮ ।
ଅରଣ୍ୟେ ମୁନିଭିର୍ଜୁଷ୍ଟେ ଅପନେୟା ଭବିଷ୍ୟସି ।
ଏବମୁକ୍ତା ତୁ ବୈଦେହୀ ଲକ୍ଷ୍ମଣେନ ମହାତ୍ମନା । ୯ ।
ପ୍ରହର୍ଷମତୁଲଂ ଲେଭେ ଗମନଂ ଚାପ୍ୟରୋଚୟତ୍ ।
ବାସାଂସି ଚ ମହାର୍ହାଣି ରତ୍ନାନି ବିବିଧାନି ଚ ।୧୦।
ଗୃହୀତ୍ୱା ତାନି ବୈଦେହୀ ଗମନାୟୋପଚକ୍ରମେ ।
ଇମାନି ମୁନିପତ୍ନୀନାଂ ଦାସ୍ୟାମ୍ୟାଭରଣାନ୍ୟହମ୍ । ୧୧ ।
ବସ୍ତ୍ରାଣି ଚ ମହାର୍ହାଣି ଧନାନି ବିବିଧାନି ଚ ।
ସୌମିତ୍ରିସ୍ତୁ ତଥେତ୍ୟୁକ୍ତ୍ୱା ରଥମାରୋପ୍ୟ ମୈଥିଲୀମ୍ । ୧୨ ।
ପ୍ରୟଯୌ ଶୀଘ୍ରତୁରଗୈ ରାମସ୍ୟାଜ୍ଞାମନୁସ୍ମରନ୍ ।
ଅବ୍ରବୀଚ୍ଚ ତଦା ସୀତା ଲକ୍ଷ୍ମଣଂ ଲକ୍ଷ୍ମିବର୍ଧନମ୍ । ୧୩ ।

---

ଗଙ୍ଗାତଟବାସୀ ଋଷିମାନଙ୍କ ଆଶ୍ରମ ଦେଖିବାକୁ ପ୍ରାର୍ଥନା କରିଥିଲ ଏବଂ ସେ ତୁମ୍ଭର ପ୍ରାର୍ଥନା ଗ୍ରହଣ କରି ଆଶ୍ରମ ଦେଖାଇବାକୁ ସ୍ୱୀକାର କରିଥିଲେ । ମହାରାଜ ତୁମକୁ ନେଇଯିବା ପାଇଁ ମୋତେ ଆଜ୍ଞା ଦେଇଛନ୍ତି । ୭-୭। ଅତଏବ ହେ ଦେବି ! ତୁମେ ଗଙ୍ଗାତଟବାସୀ ଋଷିମାନଙ୍କ ପବିତ୍ର ଆଶ୍ରମ ଦେଖିବା ପାଇଁ ଚାଲ । ମୁଁ ମହାରାଜଙ୍କ ଆଜ୍ଞାରେ ତୁମକୁ ଶୀଘ୍ର ମୁନିସେବିତ ବନକୁ ନେଇଯିବି" । ମହାତ୍ମା ଲକ୍ଷ୍ମଣ ଏପରି କହିବା ପରେ ସୀତା ଅତ୍ୟନ୍ତ ଆନନ୍ଦିତ ହୋଇ ଯିବାକୁ ମନ ବଳାଇଲେ । ସେ ମୁନିପତ୍ନୀମାନଙ୍କ ପାଇଁ ମୂଲ୍ୟବାନ୍ ବସ୍ତ୍ର ଏବଂ ବିବିଧପ୍ରକାର ରତ୍ନ ସଙ୍ଗରେ ନେଲେ ।୮-୧୦। ଏ ସମସ୍ତ ଧରି ବୈଦେହୀ ଯାତ୍ରା କରିବାକୁ ବାହାରିଲେ । ସେ କହିଲେ,"ହେ ଲକ୍ଷ୍ମଣ ! ମୁଁ ମୁନିପତ୍ନୀମାନଙ୍କୁ ଏହି ବହୁମୂଲ୍ୟ ଆଭରଣ ଦେବି ।୧୧। ଏହାଛଡ଼ା ମୁଁ ମହାର୍ଘ ବସ୍ତ୍ର ଓ ବିବିଧ ରତ୍ନ ସେମାନଙ୍କୁ ଦାନ କରିବି" । ଲକ୍ଷ୍ମଣ କହିଲେ, 'ଉତ୍ତମ କଥା' । ଏହା କହି ସେ ସୀତାଙ୍କୁ ରଥ ଉପରେ ବସାଇଲେ ।୧୨। ରାମଙ୍କ ଆଜ୍ଞାକୁ ସ୍ମରଣକରି ସେ ଶୀଘ୍ର ରଥରେ ବସି ଚାଲିଲେ । ସେତେବେଳେ ସୀତା କାନ୍ତିମାନ୍ ଲକ୍ଷ୍ମଣଙ୍କୁ କହିଲେ । ୧୩ । "ହେ ରଘୁନନ୍ଦନ ! ଏ ଯାତ୍ରାରେ ମୋତେ

ଅଶୁଭାନି ବହୂନ୍ୟେବ ପଶ୍ୟାମି ରଘୁନନ୍ଦନ ।
ନୟନଂ ମେ ସ୍ଫୁରତ୍ୟଦ୍ୟ ଗାତ୍ରୋତ୍କମ୍ପଶ୍ଚ ଜାୟତେ । ୧୪ ।
ହୃଦୟଂ ଚୈବ ସୌମିତ୍ରେ ଅସ୍ୱସ୍ଥମିବ ଲକ୍ଷୟେ ।
ଔତ୍ସୁକ୍ୟଂ ପରମଂ ଚାପି ଅଧୃତିଶ୍ଚ ପରା ମମ । ୧୫ ।
ଶୂନ୍ୟାମେବ ଚ ପଶ୍ୟାମି ପୃଥିବୀଂ ପୃଥୁଲୋଚନ ।
ଅପି ସ୍ୱସ୍ତି ଭବେତ୍ତସ୍ୟ ଭ୍ରାତୁସ୍ତେ ଭ୍ରାତୃବତ୍ସଲ । ୧୬ ।
ଶ୍ୱଶ୍ରୂଣାଂ ଚୈବ ମେ ବୀର ସର୍ବାସାମବିଶେଷତଃ ।
ପୁରେ ଜନପଦେ ଚୈବ କୁଶଲଂ ପ୍ରାଣିନାମପି । ୧୭ ।
ଇତ୍ୟଞ୍ଜଳିକୃତା ସୀତା ଦେବତା ଅଭ୍ୟଯାଚତ ।
ଲକ୍ଷ୍ମଣୋଽର୍ଥଂ ତୁ ତଂ ଶ୍ରୁତ୍ୱା ଶିରସା ବନ୍ଦ୍ୟ ମୈଥିଲୀମ୍ । ୧୮ ।
ଶିବମିତ୍ୟବ୍ରବୀଦ୍ଧୃଷ୍ଟୋ ହୃଦୟେନ ବିଶୁଷ୍ୟତା ।
ତତୋ ବାସମୁପାଗମ୍ୟ ଗୋମତୀତୀର ଆଶ୍ରମେ । ୧୯ ।
ପ୍ରଭାତେ ପୁନରୁତ୍ଥାୟ ସୌମିତ୍ରିଃ ସୂତମବ୍ରବୀତ୍ ।
ଯୋଜୟସ୍ୱ ରଥଂ ଶୀଘ୍ରମଦ୍ୟ ଭାଗୀରଥୀଜଲମ୍ ।
ଶିରସା ଧାରୟିଷ୍ୟାମି ତ୍ର୍ୟମ୍ବକଃ ପର୍ବତେ ଯଥା । ୨୦ ।

---

ବହୁ ଅମଙ୍ଗଳ ଦେଖାଯାଉଛି । ମୋର ଦକ୍ଷିଣ ଚକ୍ଷୁ ସ୍ଫୁରୁଅଛି ଏବଂ ମୋର ଶରୀର କମ୍ପୁଅଛି ।୧୪। ହେ ଲକ୍ଷ୍ମଣ ! ମୋତେ ନିଜର ହୃଦୟ ରୋଗଗ୍ରସ୍ତ ପରି ଜଣାଯାଉଛି ; ମୋ ମନରେ ବଡ଼ ଉତ୍କଣ୍ଠା ଓ ଅଧୈର୍ଯ୍ୟ ଜାତ ହେଉଅଛି । ୧୫ । ହେ ବିଶାଳ-ଲୋଚନ ! ମୋତେ ଏ ପୃଥିବୀ ଶୂନ୍ୟ ଦେଖାଯାଉଅଛି । ହେ ଭ୍ରାତୃବତ୍ସଳ ! ତୁମ ବଡ଼ ଭାଇଙ୍କର କିଛି ଅମଙ୍ଗଳ ହୋଇ ନାହିଁ ତ ? । ୧୬ । ହେ ବୀର ! ମୋର ଶାଶୁମାନେ ସମସ୍ତେ କୁଶଳରେ ଅଛନ୍ତି ତ ? ପୁରବାସୀ ଓ ଜନପଦବାସୀମାନେ କୁଶଳରେ ଅଛନ୍ତି ତ ?” ୧୭ । ଏହା କହି ସୀତା ହାତ ଯୋଡ଼ି ଦେବତାମାନଙ୍କୁ ମନାସିବାକୁ ଲାଗିଲେ । ସୀତାଙ୍କର ସବୁ କଥା ଶୁଣି ଲକ୍ଷ୍ମଣ ମୁଣ୍ଡ ନୁଆଇ ସୀତାଙ୍କୁ ପ୍ରଣାମ କଲେ ଏବଂ ହୃଦୟର ଭାବକୁ ଲୁଚାଇ ଶୁଷ୍କହୃଦୟରେ କହିଲେ, “ହେ, ଦେବି ! ସବୁ କୁଶଳ ଅଛି । ତଦନନ୍ତର ଲକ୍ଷ୍ମଣ ଗୋମତୀ ତୀରବର୍ତ୍ତୀ ଆଶ୍ରମରେ ଯାଇ ପହଞ୍ଚିଲେ ଏବଂ ରାତ୍ରକ ସେଠାରେ ରହିଲେ । ୧୮-୧୯ । ସକାଳ ହେବାରୁ ଲକ୍ଷ୍ମଣ ଉଠି ସୁମନ୍ତ୍ରଙ୍କୁ କହିଲେ, “ଶୀଘ୍ର ରଥ ଯୋଚ । ପର୍ବତ ଉପରେ ଶିବ ଗଙ୍ଗାଙ୍କୁ ଧାରଣ କଲାପରି ମୁଁ ଆଜି ଭାଗୀରଥୀ ଜଳକୁ ମସ୍ତକରେ ଧାରଣ କରିବି । ୨୦ ।

ସୋଽଶ୍ୱାନ୍ ରଜ୍ଜୁଭିଥ ଚତୁରୋ ରଥେ ଯୁଙ୍‌କ୍ତ୍ୱା ମନୋଜବାନ୍ ।
ଆରୋହସ୍ୱେତି ବୈଦେହୀଂ ସୂତଃ ପ୍ରାଞ୍ଜଳିରବ୍ରବୀତ୍ ।
ସା ତୁ ସୂତସ୍ୟ ବଚନାଦାରୁରୋହ ରଥୋତ୍ତମମ୍ । ୨୧ ।
ସୀତା ସୌମିତ୍ରିଣା ସାର୍ଧଂ ସୁମନ୍ତ୍ରେଣ ଚ ଧୀମତା ।
ଆସସାଦ ବିଶାଳାକ୍ଷୀ ଗଙ୍ଗାଂ ପାପବିନାଶିନୀମ୍ । ୨୨ ।
ଅଥାର୍ଧଦିବସଂ ଗତ୍ୱା ଭାଗୀରଥ୍ୟା ଜଲାଶୟମ୍ ।
ନିରୀକ୍ଷ୍ୟ ଲକ୍ଷ୍ମଣୋ ଦୀନଃ ପ୍ରରୁରୋଦ ମହାସ୍ୱନଃ ।୨୩ ।
ସୀତା ତୁ ପରମାୟତ୍ତା ଦୃଷ୍ଟ୍ୱା ଲକ୍ଷ୍ମଣମାତୁରମ୍ ।
ଉବାଚ ବାକ୍ୟଂ ଧର୍ମଜ୍ଞା କିମିଦଂ ରୁଦ୍ୟତେ ତ୍ୱୟା । ୨୪ ।
ଜାହ୍ନବୀତୀରମାସାଦ୍ୟ ଚିରାଭିଲଷିତଂ ମମ ।
ହର୍ଷକାଲେ କମର୍ଥଂ ମା ବିଷାଦୟସି ଲକ୍ଷ୍ମଣ । ୨୫ ।
ନିତ୍ୟଂ ତ୍ୱଂ ରାମପାଶ୍ୱେଷୁ ବର୍ତ୍ତସେ ପୁରୁଷର୍ଷଭ ।
କଚ୍ଚିଦ୍‌ବିନାକୃତସ୍ତେନ ଦ୍ୱିରାତ୍ରଂ ଶୋକମାଗତଃ । ୨୬ ।
ମମାପି ଦୟିତୋ ରାମୋ ଜୀବିତାଦପି ଲକ୍ଷ୍ମଣ ।
ନ ଚାହମେବଂ ଶୋଚାମି ମୈବଂ ତ୍ୱଂ ବାଲିଶୋ ଭବ । ୨୭।

---

ରଥରେ ଚାରିଟି ମନସଦୃଶ ବେଗବାନ୍ ଅଶ୍ୱଙ୍କୁ ରଜ୍ଜୁରେ ଯୋଚି ସାରଥି କର ଯୋଡ଼ି ସୀତାଙ୍କୁ କହିଲା, "ଆରୋହଣ କରନ୍ତୁ" । ସୀତା ମଧ୍ୟ ସାରଥିଙ୍କ ବଚନରେ ସେହି ଉତ୍ତମ ରଥ ଉପରେ ଚଢ଼ିଲେ ।୨୧ । ସୀତା ଲକ୍ଷ୍ମଣ ଓ ବୁଦ୍ଧିମାନ୍ ସୁମନ୍ତଙ୍କ ସହିତ ଚାଲିଲେ । ବିଶାଳାକ୍ଷୀ ଜାନକୀ ପାପନାଶିନୀ ଗଙ୍ଗାନଦୀ ତଟରେ ଯାଇ ପହଞ୍ଚିଲେ ।୨୨। ଲକ୍ଷ୍ମଣ ଦୁଇପ୍ରହର ବେଳା ହେବାରୁ ଗଙ୍ଗାତଟରେ ଯାଇ ପହଞ୍ଚିଲେ । ଗଙ୍ଗାଙ୍କୁ ଦେଖି ଲକ୍ଷ୍ମଣ ନିଜକୁ ସମ୍ଭାଳି ପାରିଲେ ନାହିଁ । ସେ ଦୁଃଖିତ ହୋଇ ପାଟିକରି କାନ୍ଦିବାକୁ ଲାଗିଲେ । ୨୩ । ଅନନ୍ତର ଧର୍ମଜ୍ଞା ସୀତା ଲକ୍ଷ୍ମଣଙ୍କୁ ଏପରି ଆତୁର ଦେଖି ଅତିଶୟ ଦୁଃଖିତ ହୋଇ ତାଙ୍କୁ କହିଲେ, "ହେ ଲକ୍ଷ୍ମଣ ! ତୁମେ କାହିଁକି କାନ୍ଦୁଅଛ ? ।୨୪। ହେ ଲକ୍ଷ୍ମଣ ! ମୋର ଚିରଦିନରୁ ଅଭିଳାଷ ଥିବା ଗଙ୍ଗା-ତଟରେ ଆସି ପହଞ୍ଚିଲି । ଏପରି ହର୍ଷକାଳରେ ତୁମେ କାହିଁକି କାନ୍ଦିକରି ମୋତେ ବିଷାଦିତ କରୁଅଛ ? । ୨୫ । ତୁମେ ସର୍ବଦା ରାମଙ୍କ ପାଖରେ ରହୁଥାଅ । ଅତଏବ କଅଣ ଦୁଇଦିନ ଅନ୍ତର ଘଟିବାରୁ ତୁମ ମନରେ ବିଷାଦ ଜାତ ହୋଇଅଛି ?।୨୬। ହେ ଲକ୍ଷ୍ମଣ ! ରାମ ସିନା ମୋ ପ୍ରାଣଠାରୁ ବଳି ପ୍ରିୟ ଅଟନ୍ତି, ତଥାପି ମୁଁ ଦୁଃଖିତ ହେଉ ନାହିଁ । ତୁମେ ଏପରି ବାଳକ ପରି ହୁଅ ନାହିଁ । ୨୭ । ତୁମେ ମୋତେ ଗଙ୍ଗା

ତାରୟସ୍ୱ ଚ ମାଂ ଗଙ୍ଗାଂ ଦର୍ଶୟସ୍ୱ ଚ ତାପସାନ୍ ।
ତତୋ ମୁନିଭ୍ୟୋ ଦାସ୍ୟାମି ବାସାଂସ୍ୟାଭରଣାନି ଚ । ୨୮ ।
ତତଃ କୃତ୍ୱା ମହର୍ଷୀଣାଂ ଯଥାବଦଭିବାଦନମ୍ ।
ତତ୍ର ଚୈକାଂ ନିଶାମୁଷ୍ୟ ଯାସ୍ୟାମସ୍ତାଂ ପୁରୀଂ ପୁନଃ । ୨୯ ।
ମମାପି ପଦ୍ମପତ୍ରାକ୍ଷଂ ସିଂହୋରସ୍କଂ କୃଶୋଦରମ୍ ।
ତ୍ୱରତେ ହି ମନୋ ଦ୍ରଷ୍ଟୁଂ ରାମଂ ରମୟତାଂ ବରମ୍ । ୩୦ ।
ତସ୍ୟାସ୍ତଦ୍‌ବଚନଂ ଶ୍ରୁତ୍ୱା ପ୍ରମୃଜ୍ୟ ନୟନେ ଶୁଭେ ।
ନାବିକାନାହ୍ୱୟାମାସ ଲକ୍ଷ୍ମଣଃ ପରବୀରହା ।
ଇୟଂ ଚ ସଜ୍ଜା ନୌଶ୍ଚେତି ଦାଶାଃ ପ୍ରାଞ୍ଜଲୟୋଽବ୍ରୁବନ୍ ।୩୧।
ତିତୀର୍ଷୁର୍ଲକ୍ଷ୍ମଣୋ ଗଙ୍ଗାଂ ଶୁଭାଂ ନାବମୁପାରୁହତ୍ ।
ଗଙ୍ଗାଂ ସନ୍ତାରୟାମାସ ଲକ୍ଷ୍ମଣସ୍ତାଂ ସମାହିତଃ । ୩୨ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ସୀତାଗଙ୍ଗାତାରଣଂ ନାମ ଷଟ୍‌ଚତ୍ୱାରିଂଶଃ ସର୍ଗଃ ।

---

ଆରପାଖକୁ ନେଇଚାଲ ଏବଂ ସେଠାରେ ତପସ୍ୱୀମାନଙ୍କୁ ଦେଖାଇଦିଅ । ତାପରେ ମୁଁ ସେମାନଙ୍କୁ ବସ୍ତ୍ରାଭରଣ ଆଦି ଦେବି ।୨୮। ସେହି ମହର୍ଷିମାନଙ୍କୁ ମୁଁ ଯଥାଯୋଗ୍ୟ ପ୍ରଣାମ କରିବି । ତଦନନ୍ତର ଗୋଟିଏ ରାତି ସେଠାରେ ରହିବା ଓ ଅଯୋଧ୍ୟାପୁରୀକୁ ପୁଣି ଫେରିଯିବା । ୨୯ । କାରଣ ମୋ ମନ ମଧ୍ୟ ସେହି କମଲଲୋଚନ, ସିଂହବକ୍ଷ, କୃଶୋଦର, ପୁରୁଷୋତ୍ତମ ରାମଙ୍କୁ ଦେଖିବାଲାଗି ଚଞ୍ଚଳ ହେଉଅଛି" ।୩୦। ସୀତାଙ୍କ କଥା ଶୁଣି ଶତ୍ରୁନାଶକାରୀ ଲକ୍ଷ୍ମଣ ନିଜର ଦୁଇ ସୁନ୍ଦର ନେତ୍ରକୁ ପୋଛି ନାଉରିମାନଙ୍କୁ ଡକାଇଲେ । ନାଉରିମାନେ ହାତ ଯୋଡ଼ି କହିଲେ, "ନାଆ ପ୍ରସ୍ତୁତ ଅଛି" । ୩୧ । ଶୁଭମୟୀ ଜାହ୍ନବୀଙ୍କୁ ପାରହେବା ଇଚ୍ଛାରେ ଲକ୍ଷ୍ମଣ ସୀତାଙ୍କ ସହିତ ନୌକା ଉପରେ ଆରୋହଣ କଲେ ଏବଂ ସାବଧାନତା ସହକାରେ ଗଙ୍ଗାପାରରେ ଯାଇ ପହଞ୍ଚିଲେ । ୩୨ ।

# ସପ୍ତଚତ୍ୱାରିଂଶଃ ସର୍ଗଃ

### ରାମଶାସନକଥନମ୍

ଅଥ ନାବଂ ସୁବିସ୍ତୀର୍ଣାଂ ନୈଷାଦୀଂ ରାଘବାନୁଜଃ ।
ଆରୁରୋହ ସମାଯୁକ୍ତାଂ ପୂର୍ବମାରୋପ୍ୟ ମୈଥିଲୀମ୍ । ୧ ।
ସୁମନ୍ତ୍ରଂ ଚୈବ ସରଥଂ ସ୍ଥୀୟତାମିତି ଲକ୍ଷ୍ମଣଃ ।
ଉବାଚ ଶୋକସନ୍ତପ୍ତଃ ପ୍ରଯାହୀତି ଚ ନାବିକମ୍ ।୨ ।
ତତସ୍ତୀରମୁପାଗମ୍ୟ ଭାଗୀରଥ୍ୟାଃ ସ ଲକ୍ଷ୍ମଣଃ ।
ଉବାଚ ମୈଥିଲୀଂ ବାକ୍ୟଂ ପ୍ରାଞ୍ଜଲିର୍ବାଷ୍ପସଂପ୍ଲୁତଃ । ୩ ।
ହୃଦ୍ଗତଂ ମେ ମହଚ୍ଛଲ୍ୟଂ ଯସ୍ମାଦାର୍ଯେଣ ଧୀମତା ।
ଅସ୍ମିନ୍ନିମିତ୍ତେ ବୈଦେହି ଲୋକସ୍ୟ ବଚନୀକୃତଃ । ୪ ।
ଶ୍ରେୟୋ ହି ମରଣଂ ମେଽଦ୍ୟ ମୃତ୍ୟୁର୍ବା ଯତ୍ପରଂ ଭବେତ୍ ।
ନ ଚାସ୍ମିନ୍ନୀଦୃଶେ କାର୍ଯେ ନିଯୋଜ୍ୟୋ ଲୋକନିନ୍ଦିତେ । ୫ ।
ପ୍ରସୀଦ ଚ ନ ମେ ପାପଂ କର୍ତୁମର୍ହସି ଶୋଭନେ ।
ଇତ୍ୟଞ୍ଜଲିକୃତୋ ଭୂମୌ ନିପପାତ ସ ଲକ୍ଷ୍ମଣଃ । ୬ ।

---

## ୪୭ଶ ସର୍ଗ

### (ରାମଙ୍କ ଆଦେଶ କଥନ)

କେଉଟମାନେ ଆଣିଥିବା ସୁସଜ୍ଜିତ ବଡ଼ ନାବ ଉପରେ ପ୍ରଥମେ ଜାନକୀଙ୍କୁ ବସାଇ ତତ୍ପରେ ଲକ୍ଷ୍ମଣ ସ୍ୱୟଂ ତା ଉପରେ ଆରୋହଣ କଲେ । ୧ । ଅନନ୍ତର ସେ ସୁମନ୍ତ୍ରଙ୍କୁ କହିଲେ, "ତୁମେ ରଥ ସହିତ ଏହିଠାରେ ଥାଅ" । ପୁଣି ସେ ଶୋକାକୁଳ ହୋଇ ଧୀବରଙ୍କୁ କହିଲେ "ନାଆ ଚଳାଅ" । ୨ । ଗଙ୍ଗାପାରରେ ପହଞ୍ଚି ଲକ୍ଷ୍ମଣ ଆଖିରେ ଲୋତକ ପୂର୍ଣ୍ଣ କରି ଗଦ୍‌ଗଦ କଣ୍ଠରେ ହାତଯୋଡ଼ି ସୀତାଙ୍କୁ କହିଲେ । ୩। "ହେ ବୈଦେହି ! ବୁଦ୍ଧିମାନ୍ ମହାରାଜ ଏହି ନିନ୍ଦ୍ୟ କର୍ମରେ ମୋତେ ନିଯୁକ୍ତ କରି ସଂସାରରେ ନିନ୍ଦାର ପାତ୍ର କଲେ । ଏଥିପାଇଁ ମୋ କାର୍ଯ୍ୟ ମୋ ହୃଦୟରେ କଣ୍ଟାପରି ଗଳିଯାଉଅଛି ।୪। ଏପରି ଲୋକନିନ୍ଦିତ କର୍ମରେ ନିଯୁକ୍ତ ହେବା ଅପେକ୍ଷା, ଆଜି ହେଉ ବା ପରେ ହେଉ ମୋ ପକ୍ଷରେ ମୃତ୍ୟୁହିଁ ଶ୍ରେୟସ୍କର ଅଟେ । ।୫। ହେ ଶୋଭନେ ! ତୁମେ ପ୍ରସନ୍ନ ହୁଅ, ତୁମେ ମୋତେ ଦୋଷ ଦିଅ ନାହିଁ ।" ଏହା କହି ଲକ୍ଷ୍ମଣ ହାତଯୋଡ଼ି ଭୂମି

ରୁଦନ୍ତଂ ପ୍ରାଞ୍ଜଳିଂ ଦୃଷ୍ଟ୍ୱା କାଙ୍‌କ୍ଷନ୍ତଂ ମୃତ୍ୟୁମାତ୍ମନଃ ।
ମୈଥିଲୀ ଭୃଶସଂବିଗ୍ନା ଲକ୍ଷ୍ମଣଂ ବାକ୍ୟମବ୍ରବୀତ୍ ।୭।
କିମିଦଂ ନାବଗଚ୍ଛାମି ବ୍ରୂହି ତତ୍ତ୍ୱେନ ଲକ୍ଷ୍ମଣ ।
ପଶ୍ୟାମି ତ୍ୱାଂ ନ ଚ ସ୍ୱସ୍ଥମପି କ୍ଷେମଂ ମହୀପତେ ।୮।
ଶାପିତୋଽସି ନରେନ୍ଦ୍ରେଣ ଯତ୍ତ୍ୱଂ ସନ୍ତାପମାଗତଃ ।
ତଦ୍‌ବ୍ରୂୟାଃ ସଂନିଧୌ ମହ୍ୟମହମାଜ୍ଞାପୟାମି ତେ ।୯।
ବୈଦେହ୍ୟା ଚୋଦ୍ୟମାନସ୍ତୁ ଲକ୍ଷ୍ମଣୋ ଦୀନଚେତନଃ ।
ଅବାଙ୍‌ମୁଖୋ ବାଷ୍ପକଳଂ ବାକ୍ୟମେତଦୁବାଚ ହ ।୧୦।
ଶ୍ରୁତ୍ୱା ପରିଷଦୋ ମଧ୍ୟେ ହ୍ୟପବାଦଂ ସୁଦାରୁଣମ୍ ।
ପୁରେ ଜନପଦେ ଚୈବ ତ୍ୱତ୍କୃତେ ଜନକାତ୍ମଜେ ।୧୧।
ରାମଃ ସନ୍ତପ୍ତହୃଦୟୋ ମାଂ ନିବେଦ୍ୟ ଗୃହଂ ଗତଃ ।
ନ ତାନି ବଚନୀୟାନି ମୟା ଦେବି ତବାଗ୍ରତଃ ।୧୨।
ଯାନି ରାଜ୍ଞା ହୃଦି ନ୍ୟସ୍ତାନ୍ୟମର୍ଷାତ୍ ପୃଷ୍ଠତଃ କୃତଃ ।
ସା ତ୍ୱଂ ତ୍ୟକ୍ତା ନୃପତିନା ନିର୍ଦୋଷା ମମ ସନ୍ନିଧୌ ।୧୩।

---

ଉପରେ ପଡ଼ିଗଲେ ।୬। ଲକ୍ଷ୍ମଣ ହାତ ଯୋଡ଼ି ପୃଥିବୀ ଉପରେ ପଡ଼ି ନିଜ ମରଣ ଇଚ୍ଛା କରୁଥିବାର ଦେଖି ସୀତା ଅତିଶୟ ଉଦ୍‌ବିଗ୍ନ ହୋଇ ତାଙ୍କୁ କହିଲେ ।୭। "ହେ ଲକ୍ଷ୍ମଣ ! କଥା କଅଣ ମୁଁ ବୁଝିପାରୁ ନାହିଁ, ମୋତେ ଫିଟାଇ କହ । ମୁଁ ଦେଖୁଛି, ତୁମେ ଅତି ବିକଳ ହୋଇପଡ଼ୁଛ । ମହାରାଜଙ୍କର ସବୁ କୁଶଳ ତ ? ।୮। ହେ ବତ୍ସ ! ତୁମକୁ ମୁଁ ମହାରାଜଙ୍କ ଶପଥ ଦେଉଛି କହ, ତୁମେ ଏପରି ସନ୍ତପ୍ତ ହେବାର କାରଣ କଅଣ, ମୁଁ ତୁମକୁ ଆଜ୍ଞା ଦେଉଛି" ।୯। ସୀତାଙ୍କ ଆଦେଶ ପାଇ ଲକ୍ଷ୍ମଣ ଅତି ଦୀନଭାବରେ ତଳକୁ ମୁହଁକରି ଗଦ୍‌ଗଦ କଣ୍ଠରେ କହିଲେ ।୧୦। "ହେ ଜନକନନ୍ଦିନୀ ରାଜଧାନୀ ଏବଂ ସମଗ୍ର ରାଜ୍ୟରେ ତୁମ ସମ୍ବନ୍ଧରେ ଯେଉଁ ଅତି-ଦାରୁଣ ଅପବାଦ ବ୍ୟାପିଛି, ସେ କଥା ସଭାମଧ୍ୟରେ ଶୁଣି ରାମ ଅତିଶୟ ଦୁଃଖୀ ହେଲେ ଏବଂ ମୋତେ ସମସ୍ତ ବୃତ୍ତାନ୍ତ କହିଦେଇ ରାଜଭବନକୁ ଚାଲିଗଲେ । ହେ ଦେବି ! ସେ ସମସ୍ତ କଥା ଆପଣଙ୍କ ଆଗରେ କହିବା ଉଚିତ ନୁହେଁ । ୧୧-୧୨ । ମହାରାଜ ସେସବୁ ମନରେ ଲୁଚାଇ ରଖିଛନ୍ତି । ମହାରାଜ ତୁମକୁ ତ୍ୟାଗ କରିଛନ୍ତି, କିନ୍ତୁ ମୋ ଦୃଷ୍ଟିରେ ତୁମେ ସର୍ବଥା ନିର୍ଦ୍ଦୋଷ ଅଟ ।୧୩। ମାତ୍ର ସେ ପୁର ବାସୀଙ୍କ ଅପବାଦକୁ

ପୌରାପବାଦଭୀତେନ ଗ୍ରାହ୍ୟଂ ଦେବ ନ ତେଽନ୍ୟଥା ।
ଆଶ୍ରମାନ୍ତେଷୁ ଚ ମୟା ତ୍ୟକ୍ତବ୍ୟା ତ୍ୱଂ ଭବିଷ୍ୟସି । ୧୪ ।
ରାଜ୍ଞଃ ଶାସନମାଜ୍ଞାୟ ତବେଦଂ କିଲ ଦୌହୃଦମ୍ ।
ତଦେତଜ୍ଜାହ୍ନବୀତୀରେ ବ୍ରହ୍ମର୍ଷୀଣାଂ ତପୋବନମ୍ । ୧୫ ।
ପୁଣ୍ୟଂ ଚ ରମଣୀୟଂ ଚ ମା ବିଷାଦଂ କୃଥାଃ ଶୁଭେ ।
ରାଜ୍ଞୋ ଦଶରଥସ୍ୟେଷ୍ଟଃ ପିତୁର୍ମେ ମୁନିପୁଙ୍ଗବଃ ।
ସଖା ପରମକୋ ବିପ୍ରୋ ବାଲ୍ମୀକିଃ ସୁମହାଯଶାଃ । ୧୬ ।
ପାଦଚ୍ଛାୟାମୁପାଗମ୍ୟ ସୁଖମସ୍ୟ ମହାତ୍ମନଃ ।
ଉପବାସପରୈକାଗ୍ରା ବସ ତ୍ୱଂ ଜନକାତ୍ମଜେ । ୧୭ ।
ପତିବ୍ରତାତ୍ୱମାସ୍ଥାୟ ରାମଂ କୃତ୍ୱା ସଦା ହୃଦି ।
ଶ୍ରେୟସ୍ତେ ପରମଂ ଦେବି ତଥା କୃତ୍ୱା ଭବିଷ୍ୟତି । ୧୮ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ରାମଶାସନକଥନଂ ନାମ ସପ୍ତଚତ୍ୱାରିଂଶଃ ସର୍ଗଃ ।

---

---

ଉଚିତ । ତୁମେ ଅନ୍ୟଥା କିଛି ଭାବ ନାହିଁ । ମୁଁ ତୁମକୁ ଏହିଠାରେ ଆଶ୍ରମ ନିକଟରେ ଛାଡ଼ିଦେଇ ଯିବି । ୧୪ । ରାଜାଙ୍କ ଆଜ୍ଞା ଏବଂ ତୁମର ଗର୍ଭ ଅଭିଳାଷ ଉଭୟ ପୂରଣ କରିବାକୁ ହେବ । ଅତଏବ ଗଙ୍ଗାତଟରେ ଏହି ବ୍ରହ୍ମର୍ଷିମାନଙ୍କ ରମଣୀୟ ପବିତ୍ର ତପୋବନରେ ମୁଁ ତୁମକୁ ଛାଡ଼ିଯିବି । ତୁମେ ଏହିଠାରେ ରହ; ଶୋକ କର ନାହିଁ । ହେ ଶୁଭେ ! ମୁନିଶ୍ରେଷ୍ଠ ମହାଯଶସ୍ୱୀ ବିପ୍ର ବାଲ୍ମୀକି ମୋର ପିତା ମହାରାଜ ଦଶରଥଙ୍କର ବଡ଼ ମିତ୍ର ଅଟନ୍ତି । ୧୫-୧୬ । ହେ ସୀତେ ! ଅତଏବ ତୁମେ ଉପବାସ ବ୍ରତ କରି ଏକାଗ୍ରଚିତ୍ତରେ ଓ ସୁଖରେ ଏହିଠାରେ ରହ । ହେ ଦେବି ! ତୁମେ ରାମଙ୍କୁ ନିଜ ହୃଦୟରେ ଧାରଣ କରି ପତିବ୍ରତା ଧର୍ମ ପାଳନକର । ଏହାଦ୍ୱାରା ତୁମର ପରମ କଲ୍ୟାଣ ହେବ" । ୧୭-୧୮ ।

---

# ଅଷ୍ଟଚତ୍ଵାରିଂଶଃ ସର୍ଗଃ

## ସୀତାପରିତ୍ୟାଗଃ

ଲକ୍ଷ୍ମଣସ୍ୟ ବଚଃ ଶ୍ରୁତ୍ଵା ଦାରୁଣଂ ଜନକାତ୍ମଜା ।
ପରଂ ବିଷାଦମାଗମ୍ୟ ବୈଦେହୀ ନିପପାତ ହ । ୧ ।
ସା ମୁହୂର୍ତ୍ତମିବାସଂଜ୍ଞା ବାଷ୍ପପର୍ଯ୍ୟାକୁଲେକ୍ଷଣା ।
ଲକ୍ଷ୍ମଣଂ ଦୀନୟା ବାଚା ଉବାଚ ଜନକାତ୍ମଜା । ୨ ।
ମାମିକେୟଂ ତନୁର୍ନୂନଂ ସୃଷ୍ଟା ଦୁଃଖାୟ ଲକ୍ଷ୍ମଣ ।
ଧାତ୍ରା ଯସ୍ୟାସ୍ତଥା ମେଽଦ୍ୟ ଦୁଃଖମୂର୍ତ୍ତିଃ ପ୍ରଦୃଶ୍ୟତେ । ୩ ।
କିଂ ନୁ ପାପଂ କୃତଂ ପୂର୍ବଂ କୋ ବା ଦାରୈର୍ବିୟୋଜିତଃ ।
ଯାହଂ ଶୁଦ୍ଧସମାଚାରା ତ୍ୟକ୍ତା ନୃପତିନା ସତୀ । ୪ ।
ପୁରାହମାଶ୍ରମେ ବାସଂ ରାମପାଦାନୁବର୍ତ୍ତିନୀ ।
ଅନୁରୁଧ୍ୟାପି ସୌମିତ୍ରେ ଦୁଃଖେ ଚ ପରିବର୍ତ୍ତିନୀ । ୫ ।
ସା କଥଂ ହ୍ୟାଶ୍ରମେ ସୌମ୍ୟ ବତ୍ସ୍ୟାମି ବିଜନୀକୃତା ।
ଆଖ୍ୟାସ୍ୟାମି ଚ କସ୍ୟାହଂ ଦୁଃଖଂ ଦୁଃଖପରାୟଣା । ୬ ।

---

## ୪୮ଶ ସର୍ଗ

( ସୀତାପରିତ୍ୟାଗ )

ଜନକନନ୍ଦିନୀ ବୈଦେହୀ ଲକ୍ଷ୍ମଣଙ୍କ ମୁହଁରୁ ଏହି କଠୋର ବଚନ ଶୁଣି ଅତ୍ୟନ୍ତ ବିଷାଦ ପାଇ ଭୂଇଁରେ ପଡ଼ିଗଲେ । ୧ । ସେ କିଛି ସମୟ ଅଚେତ ହୋଇ ପଡ଼ିରହି ଉଠିଲେ ଏବଂ ଆଖିରେ ଅଶ୍ରୁପୂର୍ଣ୍ଣ କରି ଦୀନଭାବରେ ଲକ୍ଷ୍ମଣଙ୍କୁ କହିଲେ ।୨। "ହେ ଲକ୍ଷ୍ମଣ ! ବିଧାତା ମୋର ଶରୀରକୁ ଦୁଃଖଭୋଗ ନିମନ୍ତେ ନିଶ୍ଚୟ ସୃଷ୍ଟି କରିଛନ୍ତି । ସେହି ହେତୁରୁ ମୋତେ ଦୁଃଖ ମୂର୍ତ୍ତି ଧାରଣ କରି ଦେଖାଦେଉଛି । ୩ । ଜାଣେ ନାହିଁ ପୂର୍ବଜନ୍ମରେ ମୁଁ କି ପାପ କରିଥିଲି ବା କାହାର ସ୍ତ୍ରୀବିୟୋଗ କରାଇଥିଲି । ସେଥିଲାଗି ମୁଁ ଶୁଦ୍ଧଚରିତା ହୋଇଥିଲେ ମଧ୍ୟ ମୁଁ ପତିଙ୍କଦ୍ଵାରା ପରିତ୍ୟକ୍ତ ହେଉଅଛି । ୪ । ପ୍ରଥମେ ରାମଙ୍କ ସଙ୍ଗରେ ବନରେ ବାସକରି ମଧ୍ୟ ମୁଁ ତାଙ୍କର ଚରଣସେବା କରୁଥିଲି, କିନ୍ତୁ ହେ ଲକ୍ଷ୍ମଣ ! ଆଶ୍ରମରେ ରହି ଦୁଃଖ ଭୋଗ କରୁଥିଲେ ମଧ୍ୟ ମୁଁ ସ୍ଵାମୀଙ୍କ ସଙ୍ଗେ ରହି ସେ ଦୁଃଖକୁ ସୁଖଭୋଗ ମଣୁଥିଲି । ୫ । ହେ ସୌମ୍ୟ ! ଏବେ ମୁଁ ଏକାକୀ ହୋଇ ଏ ଆଶ୍ରମରେ କିପରି ରହିବି ? ମୋର

କିଂ ନୁ ବକ୍ଷ୍ୟାମି ମୁନିଷୁ କର୍ମ ବାସନ୍ତ୍ କୃତଂ ଚ କିମ୍ ।
କସ୍ମିଂଶ୍ଚିତ୍ କାରଣେ ତ୍ୟକ୍ତା ରାଘବେଣ ମହାତ୍ମନା ।୭।
ନ ଖଲ୍ୱଦ୍ୟୈବ ସୌମିତ୍ରେ ଜୀବିତଂ ଜାହ୍ନବୀଜଲେ ।
ତ୍ୟଜେୟଂ ରାଜବଂଶସ୍ତୁ ଭର୍ତୁର୍ମେ ପରିହାସ୍ୟତେ ।୮।
ଯଥାଜ୍ଞାଂ କୁରୁ ସୌମିତ୍ରେ ତ୍ୟଜ ମାଂ ଦୁଃଖଭାଗିନୀମ୍ ।
ନିଦେଶେ ସ୍ଥୀୟତାଂ ରାଜ୍ଞଃ ଶୃଣୁ ଚେଦଂ ବଚୋ ମମ ।୯।
ଶ୍ୱଶ୍ରୂଣାମବିଶେଷେଣ ପ୍ରାଞ୍ଜଳିପ୍ରଗ୍ରହେଣ ଚ ।
ଶିରସା ବନ୍ଦ୍ୟ ଚରଣୌ କୁଶଳଂ ବ୍ରୂହି ପାର୍ଥିବମ୍ ।୧୦।
ଶିରସାଭିନତୋ ବ୍ରୂୟାଃ ସର୍ବାସାମେବ ଲକ୍ଷ୍ମଣ ।
ବକ୍ତବ୍ୟଶ୍ଚାପି ନୃପତିର୍ଧର୍ମେଷୁ ସୁସମାହିତଃ ।୧୧।
ଜାନାସି ଚ ଯଥା ଶୁଦ୍ଧା ସୀତା ତତ୍ତ୍ୱେନ ରାଘବ ।
ଭକ୍ତ୍ୟା ଚ ପରୟା ଯୁକ୍ତା ହିତା ଚ ତବ ନିତ୍ୟଶଃ ।୧୨।
ଅହଂ ତ୍ୟକ୍ତା ତ୍ୱୟା ବୀର ଅଯଶୋଭୀରୁଣା ଜନେ ।
ଯଚ୍ଚ ତେ ବଚନୀୟଂ ସ୍ୟାଦପବାଦସମୁତ୍ଥିତମ୍ ।୧୩।

---

ଦୁଃଖ ତାହା ଆଗରେ କହିବି ।୭। ହେ ଲକ୍ଷ୍ମଣ ! ଋଷିମାନେ ପଚାରିଲେ ମୁଁ ସେମାନଙ୍କୁ କଅଣ କହିବି, କାରଣ ମୁଁ କୌଣସି ଦୁଷ୍କର୍ମ କରି ନାହିଁ, ସୁତରାଂ ସେମାନଙ୍କୁ ମହାତ୍ମା ରାମଙ୍କ ଦ୍ୱାରା ପରିତ୍ୟକ୍ତ ହେବାର କାରଣ କଅଣ ବୁଝାଇବି ?।୭। ହେ ଲକ୍ଷ୍ମଣ ! ମୁଁ ତ ଗଙ୍ଗାଜଳରେ ନିଜର ପ୍ରାଣ ଦେଇଦିଅନ୍ତି, ମାତ୍ର ମୁଁ ତାହା କରିପାରିବି ନାହିଁ; ତଦ୍ଦ୍ୱାରା ମୋର ପତିଙ୍କର ରାଜବଂଶ ପରିହାସ ଲଭିବ ।୮। ହେ ସୌମିତ୍ରେ ! ତୁମେ ତାଙ୍କ ଆଜ୍ଞାନୁସାରେହିଁ କାର୍ଯ୍ୟ କର । ମୁଁ ଦୁଃଖଭାଗିନୀ, ମୋତେ ଏହିଠାରେ ଛାଡ଼ିଯାଅ, ମାତ୍ର ମୋର ଏହି କଥା ଶୁଣ ।୯। ତୁମେ ପ୍ରଥମେ ବିଶେଷକରି ମୋ ଆଡ଼ୁ ହାତଯୋଡ଼ି ଏବଂ ଚରଣରେ ମୁଣ୍ଡ ଲଗାଇ ମୋର ଶାଶୁମାନଙ୍କୁ ଓ ମହାରାଜଙ୍କୁ କୁଶଳ ପଚାରିବ ।୧୦। ହେ ଲକ୍ଷ୍ମଣ ! ସମସ୍ତଙ୍କୁ ମୁଣ୍ଡ ନୁଆଁଇ ମୋର ପ୍ରଣାମ କହିବ ଏବଂ ଧର୍ମରେ ସର୍ବଦା ସାବଧାନ ରହିଥିବା ମହାରାଜଙ୍କୁ କହିବ ।୧୧। ହେ ରଘୁନନ୍ଦନ ! ତୁମେ ତ ଜାଣ ସୀତା ଶୁଦ୍ଧଚରିତା ଏବଂ ସେ ତୁମଠାରେ ସର୍ବଦା ଭକ୍ତି ରଖି ତୁମ୍ଭର ହିତ ଚିନ୍ତୁଥାଏ ।୧୨। ହେ ବୀର ! ମୋତେ ତ୍ୟାଗ କରିବା ଦ୍ୱାରା ତୁମ୍ଭର ଯଦି ଅପବାଦ ଦୂର ହୁଏ ତେବେ ସେଥିରେ ମୁଁ ରାଜି,

ମହ୍ୟଂ ହି ପରିହର୍ତ୍ତବ୍ୟଂ ତ୍ୱଂ ହି ମେ ପରମା ଗତିଃ ।
ବକ୍ତବ୍ୟଶ୍ଚେତି ନୃପତିର୍ଧର୍ମେଣ ସୁସମାହିତଃ । ୧୪ ।
ଯଥା ଭ୍ରାତୃଷୁ ବର୍ତ୍ତେଥାସ୍ତଥା ପୌରେଷୁ ନିତ୍ୟଦା ।
ପରମୋ ହ୍ୟେଷ ଧର୍ମସ୍ତେ ତସ୍ମାତ୍ କୀର୍ତ୍ତିରନୁତ୍ତମା ।୧୫।
ଯତ୍ତୁ ପୌରଜନୋ ରାଜନ୍ ଧର୍ମେଣ ସମବାପ୍ନୁୟାତ୍ ।
ଅହଂ ତୁ ନାନୁଶୋଚାମି ସ୍ୱଶରୀରଂ ନରର୍ଷଭ ।୧୬।
ଯଥାପବାଦଂ ପୌରାଣାଂ ତଥୈବ ରଘୁନନ୍ଦନ ।
ପତିର୍ହି ଦେବତା ନାର୍ଯ୍ୟାଃ ପତିର୍ବନ୍ଧୁଃ ପତିର୍ଗୁରୁଃ । ୧୭ ।
ପ୍ରାଣୈରପି ପ୍ରିୟଂ ତସ୍ମାଦ୍ଭର୍ତ୍ତୁଃ କାର୍ଯ୍ୟଂ ବିଶେଷତଃ ।
ଇତି ମଦ୍‌ବଚନାଦ୍ରାମୋ ବକ୍ତବ୍ୟୋ ମମ ସଂଗ୍ରହଃ । ୧୮ ।
ନିରୀକ୍ଷ୍ୟ ମାଦ୍ୟ ଗଚ୍ଛ ତ୍ୱମୃତୁକାଲାତିବର୍ତ୍ତିନୀମ୍ ।
ଏବଂ ବ୍ରୁବତ୍ୟାଂ ସୀତାୟାଂ ଲକ୍ଷ୍ମଣୋ ଦୀନଚେତନଃ । ୧୯ ।
ଶିରସା ବନ୍ଦ୍ୟ ଧରଣୀଂ ବ୍ୟାହର୍ତ୍ତୁଂ ନ ଶଶାକ ହ ।
ପ୍ରଦକ୍ଷିଣଂ ଚ ତାଂ କୃତ୍ୱା ରୁଦନ୍ନେବ ମହାସ୍ୱନଃ ।୨୦।

---

କାରଣ ମୋ ପକ୍ଷରେ ତୁମେହିଁ ପରମ ଗତି ଅଛ, ଏହି କଥା ଧର୍ମରେ ସର୍ବଦା ସାବଧାନ ରହିଥିବା ମହାରାଜଙ୍କୁ କହିବ । ୧୩-୧୪ । ତୁମେ ଭାଇମାନଙ୍କ ସହିତ ଯେପରି ବ୍ୟବହାର କରୁଛ ପୁରବାସୀମାନଙ୍କ ସହିତ ସେହିପରି କରିବ, ଏହାହିଁ ତୁମ୍ଭର କର୍ତ୍ତବ୍ୟ ଅଟେ । ଏହାଦ୍ୱାରା ତୁମ୍ଭର ଉତ୍ତମ କୀର୍ତ୍ତି ଲାଭ ହେବ । ୧୫ । ତାଙ୍କୁ ଆଉ ମଧ୍ୟ କହିଦେବ, ଧର୍ମବଳରେ ପ୍ରଜାବର୍ଗ ଲବ୍ଧ ହୁଏ । ତେଣୁ ହେ ରାଜନ୍ ! ହେ ନରଶ୍ରେଷ୍ଠ ! ନିଜ ଶରୀର ବିଷୟରେ ମୋର ଲେଶମାତ୍ର ଚିନ୍ତା ନାହିଁ । ୧୬ । ଅତଏବ ହେ ରଘୁନନ୍ଦନ ! ଯେପରି ପୁରବାସୀଙ୍କ ଅପବାଦ ଦୂର ହେବ ତୁମେ ସେହିପରି କର, ନାରୀ ପାଇଁ ପତିହିଁ ତାର ଦେବତା, ପତିହିଁ ତାର ବନ୍ଧୁ, ପତିହିଁ ତାର ଗୁରୁ ଅଟେ । ୧୭ । ଏଥିନିମନ୍ତେ ନିଜର ପ୍ରାଣ ଦେଇ ମଧ୍ୟ ପତିଙ୍କ ମନୋମତ କାର୍ଯ୍ୟ ନାରୀର କରିବା ଉଚିତ । ହେ ଲକ୍ଷ୍ମଣ ! ମୋର ଏ ସନ୍ଦେଶ ତୁମେ ମହାରାଜଙ୍କୁ ଯାଇ କହିବ । ୧୮ । ଏହା ମଧ୍ୟ ଦେଖିଯାଅ ଯେ ମୁଁ ବର୍ତ୍ତମାନ ଗର୍ଭବତୀ ଅଟେ ।” ସୀତା ଏପରି କହିବାରୁ ଲକ୍ଷ୍ମଣ ବଡ଼ ଦୁଃଖିତ ହେଲେ ଏବଂ ସୀତାଙ୍କୁ ପ୍ରଣାମ କରିବା ପାଇଁ ଭୂଇଁରେ ମୁଣ୍ଡ ଲଗାଇଲେ । ସେ କିଛି କହି ପାରିଲେ ନାହିଁ ଏବଂ ସୀତାଙ୍କୁ ପ୍ରଦକ୍ଷିଣ କରି ଉଚ୍ଚସ୍ୱରରେ ରୋଦନ କରିବାକୁ ଲଗିଲେ । ୧୯-୨୦ । ସେ ପୁଣି କିଛି ସମୟ ପରେ ଚିନ୍ତାକରି କହିଲେ,

ଧ୍ୟାତ୍ୱା ମୁହୂର୍ତ୍ତଂ ତାମାହ କିଂ ମାଂ ବକ୍ଷ୍ୟସି ଶୋଭନେ ।
ଦୃଷ୍ଟପୂର୍ବଂ ନ ତେ ରୂପଂ ପାଦୌ ଦୃଷ୍ଟୌ ତବାନଘେ । ୨୧ ।
କଥମତ୍ର ହି ପଶ୍ୟାମି ରାମେଣ ରହିତାଂ ବନେ ।
ଇତ୍ୟୁକ୍ତ୍ୱା ତାଂ ନମସ୍କୃତ୍ୟ ପୁନର୍ନାବମୁପାରୁହତ୍ । ୨୨ ।
ଆରୁହ୍ୟ ଚ ପୁନର୍ନାବଂ ନାବିକଂ ଚାଭ୍ୟଚୋଦୟତ୍ ।
ସ ଗତ୍ୱା ଚୋତ୍ତରଂ ତୀରଂ ଶୋକଭାରସମନ୍ୱିତଃ । ୨୩ ।
ସଂମୂଢ଼ ଇବ ଦୁଃଖେନ ରଥମଧ୍ୟାରୁହଦ୍ଦ୍ରୁତମ୍ ।
ମୁହୁର୍ମୁହୁଃ ପରାବୃତ୍ୟ ଦୃଷ୍ଟ୍ୱା ସୀତାମନାଥବତ୍ । ୨୪ ।
ଚେଷ୍ଟନ୍ତୀଂ ପରତୀରସ୍ଥାଂ ଲକ୍ଷ୍ମଣଃ ପ୍ରୟୟାବଥ ।
ଦୂରସ୍ଥଂ ରଥମାଲୋକ୍ୟ ଲକ୍ଷ୍ମଣଂ ଚ ମୁହୁର୍ମୁହୁଃ ।
ନିରୀକ୍ଷମାଣାଂ ତୂଦ୍ୱିଗ୍ନାଂ ସୀତାଂ ଶୋକଃ ସମାବିଶତ୍ । ୨୫ ।
ସା ଦୁଃଖଭାରାବନତା ଯଶସ୍ୱିନୀ ଯଶୋଧନା ନାଥମପଶ୍ୟତୀ ସତୀ ।
ରୁରୋଦ ସା ବର୍ହିଣନାଦିତେ ବନେ ମହାସ୍ୱନଂ ଦୁଃଖପରାୟଣା ସତୀ ।୨୬

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ସୀତାପରିତ୍ୟାଗୋ ନାମ ଅଷ୍ଟଚତ୍ୱାରିଂଶଃ ସର୍ଗଃ ।

---

"ହେ ଶୋଭନେ ! ତୁମେ ଏ କଅଣ କହୁଅଛ । ହେ ଅନଘେ ! ମୁଁ ଆଜଯାଏ ତୁମ୍ଭର ରୂପ ଦେଖି ନାହିଁ । ମୋର ଦୃଷ୍ଟି ସର୍ବଦା ତୁମ ଚରଣରେ ରହିଥାଏ । ୨୧ । ରାମଙ୍କ ଅବର୍ତ୍ତମାନରେ ଏହି ନିର୍ଜନ ବନରେ ମୁଁ ତୁମକୁ କିପରି ଦେଖିବି ।" ଏହା କହି ସୀତାଙ୍କୁ ନମସ୍କାର କରି ଲକ୍ଷ୍ମଣ ନୌକା ଉପରେ ଚଢ଼ିଲେ । ୨୨ । ନାବ ଉପରେ ଚଢ଼ି ସେ ନାବିକମାନଙ୍କୁ ନୌକା ଛାଡ଼ିବାକୁ ଆଦେଶ କଲେ । ଶୋକବିହ୍ୱଳ ହୋଇ ସେ ଗଙ୍ଗାର ଉତ୍ତର ତୀରକୁ ଯାଇ ତତ୍କ୍ଷଣାତ୍ ରଥ ଉପରେ ଚଢ଼ିଲେ; କିନ୍ତୁ ବାରମ୍ବାର ପଛକୁ ମୁହଁ ଫେରାଇ ଅନାଥିନୀ ପରି ବସିଥିବା ଜାନକୀଙ୍କୁ ଚାହୁଁଥିଲେ । ୨୩-୨୪ । ଲକ୍ଷ୍ମଣ ଦେଖିଲେ ଯେ ଦୁଃଖିନୀ ସୀତା ଗଙ୍ଗାର ଆର ପାଖରେ ଛଟପଟ ହେଉଛନ୍ତି । ସୀତା ଯେତେବେଳେ ଦେଖିଲେ ଯେ ଲକ୍ଷ୍ମଣଙ୍କ ରଥ ଧୀରେ ଧୀରେ ଦୂରକୁ ଚାଲିଯାଉଛି, ସେତେବେଳେ ସେ ଆହୁରି ଶୋକରେ ଧାରି ହୋଇ ପଡ଼ିଲେ । ୨୫ । ଦୁଃଖଭାରରେ ଭାଙ୍ଗି ପଡ଼ିଥିବା ପତିବ୍ରତା ଯଶସ୍ୱିନୀ ସୀତା ନିଜ ସ୍ୱାମୀ ରାମଙ୍କୁ ନ ଦେଖି ମୟୂରମାନଙ୍କଦ୍ୱାରା ଶବ୍ଦାୟିତ ସେହି ବନରେ ଅତିଶୟ ଉଚ୍ଚସ୍ୱରରେ ଦୁଃଖରେ ରୋଦନ କରିବାକୁ ଲାଗିଲେ । ୨୬ ।

# ଏକୋନପଞ୍ଚାଶଃ ସର୍ଗଃ

## ବାଲ୍ମୀକ୍ୟାଶ୍ରମପ୍ରବେଶଃ

ସୀତାଂ ରୁଦନ୍ତୀଂ ଦୃଷ୍ଟ୍ୱା ତାଂ ତତ୍ର ବୈ ମୁନିଦାରକାଃ ।
ପ୍ରାଦ୍ରବନ୍ ଯତ୍ର ଭଗବାନାସ୍ତେ ବାଲ୍ମୀକିରୁଗ୍ରଧୀଃ । ୧ ।
ଅଭିବାଦ୍ୟ ମୁନେଃ ପାଦୌ ମୁନିପୁତ୍ରା ମହର୍ଷୟେ ।
ସର୍ବଂ ନିବେଦୟାମାସୁସ୍ତସ୍ୟାସ୍ତୁ ରୁଦିତସ୍ୱନମ୍ । ୨ ।
ଅଦୃଷ୍ଟପୂର୍ବା ଭଗବନ୍ କସ୍ୟାପ୍ୟେଷା ମହାତ୍ମନଃ ।
ପତ୍ନୀ ଶ୍ରୀରିବ ସଂମୋହାଦ୍ ବିରୌତି ବିକୃତାନନା । ୩ ।
ଭଗବନ୍ ସାଧୁ ପଶ୍ୟ ତ୍ୱଂ ଦେବତାମିବ ଖାଚ୍ଚ୍ୟୁତାମ୍ ।
ନଦ୍ୟାସ୍ତୁ ତୀରେ ଭଗବନ୍ ବରସ୍ତ୍ରୀ କାପି ଦୁଃଖିତା । ୪ ।
ଦୃଷ୍ଟ୍ୱାସ୍ମାଭିଃ ପ୍ରରୁଦିତା ଦୃଢ଼ଂ ଶୋକପରାୟଣା ।
ଅନର୍ହା ଦୁଃଖଶୋକାଭ୍ୟାମେକା ଦୀନା ହ୍ୟନାଥବତ୍ । ୫ ।
ନ ହ୍ୟେନାଂ ମାନୁଷୀଂ ବିଦ୍ମଃ ସତ୍କ୍ରିୟାସ୍ୟାଃ ପ୍ରଯୁଜ୍ୟତାମ୍ ।
ଆଶ୍ରମସ୍ୟାବିଦୂରେ ଚ ତାମିୟଂ ଶରଣଂ ଗତା । ୬ ।

---

## ୪୯ଶ ସର୍ଗ

### (ସୀତାଙ୍କର ବାଲ୍ମୀକି ଆଶ୍ରମ ପ୍ରବେଶ)

ମୁନିକୁମାରମାନେ ସୀତାଙ୍କୁ ରୋଦନ କରୁଥିବାର ଦେଖି ମହାବୁଦ୍ଧିମାନ୍ ବାଲ୍ମୀକି ଯେଉଁଠାରେ ଥିଲେ ସେଠାକୁ ଧାଇଁଗଲେ । ୧ । ସେମାନେ ବାଲ୍ମୀକି ମୁନିଙ୍କ ଚରଣରେ ଅଭିବାଦନ କରି ସୀତାଙ୍କ ରୋଦନ ବୃତ୍ତାନ୍ତ ତାଙ୍କୁ କହିଲେ । । ୨ । "ହେ ଭଗବନ୍ ! କୌଣସି ମହାତ୍ମାଙ୍କର ଜଣେ ଅଦୃଷ୍ଟପୂର୍ବା ପତ୍ନୀ ମୁଖ ବିକୃତ କରି ରୋଦନ କରୁଅଛନ୍ତି । ରୂପରେ ସେ ଲକ୍ଷ୍ମୀଙ୍କ ସମାନ ଅଟନ୍ତି । ୩ । ହେ ମହର୍ଷେ ! ଆପଣ ଯାଇ ତାଙ୍କୁ ଗଙ୍ଗାତଟରେ ଦେଖନ୍ତୁ । ସ୍ୱର୍ଗରୁ କୌଣସି ଦେବୀ ଖସି ପଡ଼ିଲପରି ସେ ଦେଖାଯାଉଛନ୍ତି । ଭଗବନ୍ ! ସେ ସୁନ୍ଦରୀ ବଡ଼ ଦୁଃଖିତ ହେଉଛନ୍ତି ।୪ । ସେ ଦୁଃଖିତ ହେବାର ବା ଶୋକ କରିବାର ଯୋଗ୍ୟ ନୁହନ୍ତି, ତଥାପି ବଡ଼ ଶୋକରେ ବିକଳ ହୋଇ ଅନାଥିନୀ ପରି ଏକାକୀ ଉଚ୍ଚସ୍ୱରରେ ରୋଦନ କରୁଅଛନ୍ତି । ୫ । ଆମକୁ ତ ସେ ମାନବୀ ପରି ଜଣାପଡ଼ୁନାହାନ୍ତି । ଆପଣ ଯାଇ ତାଙ୍କର ସତ୍କାର କରନ୍ତୁ । ସେ ଆପଣଙ୍କ

ସୈତାରମିଚ୍ଛତେ ସାଧ୍ୱୀ ଭଗବଂସ୍ତ୍ରାତୁମର୍ହସି ।୭।
ତେଷାଂ ତୁ ବଚନଂ ଶ୍ରୁତ୍ୱା ବୁଦ୍ଧ୍ୟା ନିଶ୍ଚିତ୍ୟ ଧର୍ମବିତ୍ ।
ତପସା ଲବ୍ଧଚକ୍ଷୁଷ୍ମାନ୍ ପ୍ରାଦ୍ରବଦ୍ ଯତ୍ର ମୈଥିଳୀ । ୮ ।
ତଂ ପ୍ରୟାନ୍ତମଭିପ୍ରେତ୍ୟ ଶିଷ୍ୟା ହ୍ୟେନଂ ମହାମତିମ୍ ।
ତଂ ତୁ ଦେଶମଭିପ୍ରେତ୍ୟ କିଞ୍ଚିତ୍ ପଦ୍ଭ୍ୟାଂ ମହାମତିଃ । ୯ ।
ଅର୍ଘ୍ୟମାଦାୟ ରୁଚିରଂ ଜାହ୍ନବୀତୀରମାଗମତ୍ ।
ଦଦର୍ଶ ରାଘବସ୍ୟେଷ୍ଟାଂ ସୀତାଂ ପତ୍ନୀମନାଥବତ୍ । ୧୦ ।
ତାଂ ସୀତାଂ ଶୋକଭାରାର୍ତ୍ତାଂ ବାଲ୍ମୀକିର୍ମୁନିପୁଙ୍ଗବଃ ।
ଉବାଚ ମଧୁରାଂ ବାଣୀଂ ହ୍ଲାଦୟନ୍ନିବ ତେଜସା । ୧୧ ।
ସ୍ନୁଷା ଦଶରଥସ୍ୟ ତ୍ୱଂ ରାମସ୍ୟ ମହିଷୀ ପ୍ରିୟା ।
ଜନକସ୍ୟ ସୁତା ରାଜ୍ଞଃ ସ୍ୱାଗତଂ ତେ ପତିବ୍ରତେ । ୧୨ ।
ଆୟାନ୍ତୀ ଚାପି ବିଜ୍ଞାତା ମୟା ଧର୍ମସମାଧିନା ।
କାରଣଂ ଚୈବ ସର୍ବଂ ମେ ହୃଦୟେନୋପଲକ୍ଷିତମ୍ । ୧୩ ।

---

ଆଶ୍ରମର ନିକଟରେ ଅଛନ୍ତି । ସେ ଆପଣଙ୍କ ଶରଣକୁ ଆସିଛନ୍ତି । ୬ । ସେ ରକ୍ଷକ ଖୋଜୁଛନ୍ତି ଅତଏବ ଆପଣ ତାଙ୍କୁ ତ୍ରାଣ କରିବା ଉଚିତ” ।୭। ମୁନିକୁମାରମାନଙ୍କର ଏହି କଥା ଶୁଣି ଏବଂ ଧ୍ୟାନଦ୍ୱାରା ସବୁ କଥା ଜାଣି ତପପ୍ରଭାବରୁ ଜ୍ଞାନଚକ୍ଷୁ ଦ୍ୱାରା ଦେଖିପାରୁଥିବା ମହର୍ଷି ବାଲ୍ମୀକି ଅତି ସତ୍ୱର ଜାନକୀ ଯେଉଁଠାରେ ବସିଥିଲେ ସେଠାକୁ ଧାଇଁଗଲେ ।୮। ମହାମତି ବାଲ୍ମୀକିଙ୍କୁ ଯିବାର ଦେଖି ତାଙ୍କର ଶିଷ୍ୟମାନେ ମଧ୍ୟ ତାଙ୍କ ପଛେ ପଛେ ଗଲେ । ମହାମତି ବାଲ୍ମୀକି କେତେ ବାଟ ଖୁବ ଯୋରରେ ଚାଲିକରି ଗଲେ । ୯ । ଅର୍ଘ୍ୟ ନେଇ ସେ ଗଙ୍ଗାତଟରେ ପହଞ୍ଚିଲେ । ସେଠାରେ ସେ ରାମଙ୍କର ପ୍ରିୟପତ୍ନୀ ଜାନକୀଙ୍କୁ ଅନାଥିନୀ ପରି ବସିଥିବାର ଦେଖିଲେ । ୧୦ । ମୁନିଶ୍ରେଷ୍ଠ ବାଲ୍ମୀକି ଶୋକରେ ବିକଳ ହୋଇଥିବା ସୀତାଙ୍କୁ ନିଜ ତେଜରେ ଆହ୍ଲାଦିତ କରିପରି ମଧୁର ବାକ୍ୟରେ କହିଲେ । ୧୧ । “ହେ ପତିବ୍ରତେ ! ତୁମେ ଦଶରଥଙ୍କର ପୁତ୍ରବଧୂ, ରାମଙ୍କର ପ୍ରିୟ ପାଟମହିଷୀ ଏବଂ ଜନକଙ୍କର କନ୍ୟା ଅଟ, ମୁଁ ତୁମକୁ ସ୍ୱାଗତ କରୁଅଛି । ୧୨ । ତୁମେ ଏଠାକୁ ଆସୁଥିବାର ମୁଁ ଯୋଗବଳରେ ଜାଣିପାରିଅଛି । ତୁମେ ପରିତ୍ୟକ୍ତ ହେବାର କାରଣ ଆଦି ସମସ୍ତ କଥା ମୁଁ ନିଜ ମନରେ ଜାଣିନେଇଅଛି ।୧୩। ହେ ମହାଭାଗେ !

ତବ ଚୈବ ମହାଭାଗେ ଶୁଦ୍ଧତାଂ ମମ ତତ୍ତ୍ୱତଃ ।
ସର୍ବଂ ଚ ବିଦିତଂ ମହ୍ୟଂ ତ୍ରୈଲୋକ୍ୟେ ଯଦ୍ଧି ବର୍ତ୍ତତେ । ୧୪ ।
ଅପାପାଂ ବେଦ୍ମି ସୀତେ ତ୍ୱାଂ ତପୋଲବ୍ଧେନ ଚକ୍ଷୁଷା ।
ବିସ୍ରବ୍ଧା ଭବ ବୈଦେହି ସାମ୍ପ୍ରତଂ ମୟି ବର୍ତ୍ତସେ । ୧୫ ।
ଆଶ୍ରମସ୍ୟାବିଦୂରେ ମେ ତାପସ୍ୟସ୍ତପସି ସ୍ଥିତାଃ ।
ତାସ୍ତ୍ୱାଂ ବତ୍ସେ ଯଥା ବତ୍ସଂ ପାଲୟିଷ୍ୟନ୍ତି ନିତ୍ୟଶଃ । ୧୬ ।
ଇଦମର୍ଘ୍ୟଂ ପ୍ରତୀଚ୍ଛ ତ୍ୱଂ ବିସ୍ରବ୍ଧା ବିଗତଜ୍ୱରା ।
ଯଥା ସ୍ୱଗୃହମଭ୍ୟେତ୍ୟ ବିଷାଦଂ ଚୈବ ମା କୃଥାଃ । ୧୭ ।
ଶ୍ରୁତ୍ୱା ତୁ ଭାଷିତଂ ସୀତା ମୁନେଃ ପରମମଦ୍ଭୁତମ୍ ।
ଶିରସା ବନ୍ଦ୍ୟ ଚରଣୌ ତଥେତ୍ୟାହ କୃତାଞ୍ଜଲିଃ । ୧୮ ।
ତଂ ପ୍ରୟାନ୍ତଂ ମୁନିଂ ସୀତା ପ୍ରାଞ୍ଜଳିଃ ପୃଷ୍ଠତୋଽନ୍ୱଗାତ୍ ।
ତଂ ଦୃଷ୍ଟ୍ୱା ମୁନିମାୟାନ୍ତଂ ବୈଦେହ୍ୟା ମୁନିପତ୍ନ୍ୟଃ ।
ଉପାଜଗ୍ମୁର୍ମୁଦା ଯୁକ୍ତା ବଚନଂ ଚେଦମବ୍ରୁବନ୍ । ୧୯ ।
ସ୍ୱାଗତଂ ତେ ମୁନିଶ୍ରେଷ୍ଠ ଚିରସ୍ୟାଗମନଂ ଚ ତେ ।
ଅଭିବାଦୟାମସ୍ତ୍ୱାଂ ସର୍ବା ଉଚ୍ୟତାଂ କିଂ ଚ କୁର୍ମହେ । ୨୦ ।

---

ତୁମ୍ଭର ଶୁଦ୍ଧାଚରଣ ମୁଁ ଭଲଭାବରେ ଜାଣେ, କାରଣ ତ୍ରୈଲୋକ୍ୟର ସବୁ କଥା ମୋତେ ଯୋଗବଳରେ ଜଣାଅଛି । ୧୪ । ହେ ସୀତେ ! ମୁଁ ନିଜର ତପଦ୍ୱାରା ଦିବ୍ୟଦୃଷ୍ଟିରେ ତୁମକୁ ପାପଶୂନ୍ୟ ବୋଲି ଜାଣିଛି । ହେ ଜାନକି ! ତୁମେ ନିଶ୍ଚିନ୍ତ ହୋଇ ଏବେ ମୋ ପାଖରେ ରହ । ୧୫ । ମୋର ଆଶ୍ରମ ନିକଟରେ ଅନେକ ତପସ୍ୱିନୀ ତପ କରୁଛନ୍ତି । ସେମାନେ ସମସ୍ତେ ତୁମକୁ ନିଜର କନ୍ୟା ସଦୃଶ ପାଳନ କରିବେ । ୧୬ । ଏହି ଅର୍ଘ୍ୟ ଗ୍ରହଣ କର, ଆଶ୍ୱସ୍ତ ହୁଅ ଏବଂ ସନ୍ତାପରହିତ ହୁଅ । ତୁମେ ଯେପରି ନିଜ ଘରେ ରହୁଥାଅ, ସେହିପ୍ରକାରେ ଏହିଠାରେ ରହ, ଆଉ ଦୁଃଖ କର ନାହିଁ" ।୧୭। ସୀତା ବାଲ୍ମୀକିଙ୍କର ଏ ଅଦ୍ଭୁତ ବଚନ ଶୁଣି ମୁଣ୍ଡ ନୁଆଇଁ ତାଙ୍କ ପାଦ ବନ୍ଦନାକରି ହାତଯୋଡ଼ି ତାଙ୍କ କଥା ମାନିନେଲେ । ୧୮ । ବାଲ୍ମୀକି ଯେତେବେଳେ ନିଜର ଆଶ୍ରମ ଆଡ଼କୁ ଚାଲିଲେ, ସେତେବେଳେ ସୀତା ମଧ୍ୟ ତାଙ୍କ ପଛରେ ହାତଯୋଡ଼ିକରି ଚାଲିଲେ । ମୁନିଙ୍କୁ ଜାନକୀଙ୍କ ସହିତ ଆସୁଥିବାର ଦେଖି ମୁନିପତ୍ନୀମାନେ ଅତିଶୟ ଆନନ୍ଦିତ ହୋଇ ତାଙ୍କୁ କହିଲେ ।୧୯। "ହେ ମୁନିଶ୍ରେଷ୍ଠ ! ଆପଣଙ୍କୁ ସ୍ୱାଗତ କରୁଅଛୁଁ ; ଆପଣଙ୍କ ଆଗମନରେ ବହୁ ବିଳମ୍ବ ଘଟିଛି । ଆମେ ସମସ୍ତେ ଆପଣଙ୍କୁ ପ୍ରଣାମ କରୁଛୁ । ଆଜ୍ଞା ଦିଅନ୍ତୁ ଆମେ କଣ କରିବୁ" । ୨୦ ।

ତାସାଂ ତଦ୍‌ବଚନଂ ଶ୍ରୁତ୍ୱା ବାଲ୍ମୀକିରିଦମବ୍ରବୀତ୍ ।
ସୀତେୟଂ ସମନୁପ୍ରାପ୍ତା ପତ୍ନୀ ରାମସ୍ୟ ଧୀମତଃ । ୨୧ ।
ସ୍ନୁଷା ଦଶରଥସ୍ୟୈଷା ଜନକସ୍ୟ ସୁତା ସତୀ ।
ଅପାପା ପତିନା ତ୍ୟକ୍ତା ପରିପାଲ୍ୟା ମୟା ସଦା । ୨୨ ।
ଇମାଂ ଭବତ୍ୟଃ ପଶ୍ୟନ୍ତୁ ସ୍ନେହେନ ପରମେଣ ହି ।
ଗୌରବାନ୍ମମ ବାକ୍ୟାଚ୍ଚ ପୂଜ୍ୟା ବୋଽସ୍ତୁ ବିଶେଷତଃ । ୨୩ ।
ମୁହୁର୍ମୁହୁଶ୍ଚ ବୈଦେହୀଂ ପ୍ରଣିଧାୟ ମହାଯଶାଃ ।
ସ୍ୱମାଶ୍ରମଂ ଶିଷ୍ୟବୃତଃ ପୁନରାୟାନ୍ମହାତପାଃ । ୨୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ବାଲ୍ମୀକ୍ୟାଶ୍ରମପ୍ରବେଶୋ ନାମ ଏକୋନପଞ୍ଚାଶଃ ସର୍ଗଃ ।

---

ସେମାନଙ୍କ କଥା ଶୁଣି ମହର୍ଷି ବାଲ୍ମୀକି କହିଲେ, "ବୁଦ୍ଧିମାନ୍ ରାଜା ରାମଙ୍କର ଭାର୍ଯ୍ୟା ଏହି ସୀତା ଏଠାରେ ଆସି ପହଞ୍ଚିଛନ୍ତି । ୨୧ । ଏ ମହାରାଜ ଦଶରଥଙ୍କର ପୁତ୍ରବଧୂ ଏବଂ ଜନକଙ୍କର କନ୍ୟା ଅଟନ୍ତି । ଏହାଙ୍କ ବିନା ଅପରାଧରେ ଏହାଙ୍କର ପତି ତ୍ୟାଗ କରିଛନ୍ତି । ଏ ପତିବ୍ରତା ଏବଂ ନିର୍ଦ୍ଦୋଷ ଅଟନ୍ତି । ଏ ମୋର ସର୍ବଦା ପରିପାଳନୀୟା ଅଟନ୍ତି । ୨୨ । ମୋ କହିବା କଥାର ଗୌରବ ରକ୍ଷାକରି ବିଶେଷ ପ୍ରୀତିସହକାରେ ଓ ସମ୍ମାନପୂର୍ବକ ତାଙ୍କୁ ରକ୍ଷାକର । ୨୩ । ଏହିପରି ବାରମ୍ବାର ମହାଯଶସ୍ୱୀ ଓ ମହାତପସ୍ୱୀ ବାଲ୍ମୀକି ସେହି ତପସ୍ୱିନୀମାନଙ୍କୁ ବୁଝାଇ ଓ ଜାନକୀଙ୍କୁ ସେମାନଙ୍କଠାରେ ସମର୍ପିଦେଇ ଶିଷ୍ୟମାନଙ୍କ ସହିତ ଆପଣା ଆଶ୍ରମକୁ ଚାଲି ଆସିଲେ । ୨୪ ।

# ପଞ୍ଚାଶଃ ସର୍ଗଃ

## ସୁମନ୍ତ୍ରରହସ୍ୟକଥନମ୍

ଦୃଷ୍ଟ୍ୱା ତୁ ମୈଥିଲୀଂ ସୀତାମାଶ୍ରମେ ସମ୍ପ୍ରବେଶିତାମ୍ ।
ସନ୍ତାପମଗମଦ୍‌ଘୋରଂ ଲକ୍ଷ୍ମଣୋ ଦୀନଚେତନଃ । ୧ ।
ଅବ୍ରବୀଚ୍ଚ ମହାତେଜାଃ ସୁମନ୍ତ୍ରଂ ମନ୍ତ୍ରସାରଥିମ୍ ।
ସୀତାସନ୍ତାପଜଂ ଦୁଃଖଂ ପଶ୍ୟ ରାମସ୍ୟ ସାରଥେ । ୨ ।
ତତୋ ଦୁଃଖତରଂ କିଂ ନୁ ରାଘବସ୍ୟ ଭବିଷ୍ୟତି ।
ପତ୍ନୀଂ ଶୁଦ୍ଧସମାଚାରାଂ ବିସୃଜ୍ୟ ଜନକାତ୍ମଜାମ୍ । ୩ ।
ବ୍ୟକ୍ତଂ ଦୈବାଦହଂ ମନ୍ୟେ ରାଘବସ୍ୟ ବିନାଭବମ୍ ।
ବୈଦେହ୍ୟା ସାରଥେ ନିତ୍ୟଂ ଦୈବଂ ହି ଦୁରତିକ୍ରମମ୍ । ୪ ।
ଯୋ ହି ଦେବାନ୍ ସଗନ୍ଧର୍ବାନସୁରାନ୍ ସହ ରାକ୍ଷସୈଃ ।
ନିହନ୍ୟାଦ୍‌ରାଘବଃ କ୍ରୁଦ୍ଧଃ ସ ଦୈବମନୁବର୍ତ୍ତତେ । ୫ ।
ପୁରା ରାମଃ ପିତୁର୍ବାକ୍ୟାଦ୍ଦଣ୍ଡକେ ବିଜନେ ବନେ ।
ଉଷିତ୍ୱା ନବ ବର୍ଷାଣି ପଞ୍ଚ ଚୈବ ମହାବନେ ।୬।

---

## ୫୦ଶ ସର୍ଗ

### ( ସୁମନ୍ତ୍ରଙ୍କର ରହସ୍ୟକଥନ )

ସୀତାଙ୍କୁ ବାଲ୍ମୀକିଙ୍କ ଆଶ୍ରମରେ ପ୍ରବେଶ କରିବାର ଦେଖି ଲକ୍ଷ୍ମଣ ଅତିଶୟ ଦୁଃଖିତ ଏବଂ ସନ୍ତାପିତ ହେଲେ । ୧ । ମହାତେଜସ୍ୱୀ ଲକ୍ଷ୍ମଣ ସୁପରାମର୍ଶଦାତା ସାରଥି ସୁମନ୍ତ୍ରଙ୍କୁ କହିଲେ, "ହେ ରାମଙ୍କ ସାରଥେ ! ଦେଖ ସୀତାଙ୍କର ସନ୍ତାପ ବୃତ୍ତାନ୍ତ ଶୁଣି ରାମଙ୍କର ବଡ଼ ଦୁଃଖ ହେବ । ୨ । ମହାରାଜଙ୍କୁ ନିଜର ଶୁଦ୍ଧଚରିତ୍ରା ପତ୍ନୀ ଜାନକୀଙ୍କୁ ତ୍ୟାଗ କରିବାକୁ ପଡ଼ିଲା, ଏହାଠାରୁ ବଳି ରାମଙ୍କର ଆଉ କି ବଡ଼ ଦୁଃଖ ହୋଇପାରେ ।୩। ହେ ସାରଥେ ! ଜାନକୀଙ୍କ ଏ ବିଚ୍ଛେଦ ଦୁଃଖ ମହାରାଜଙ୍କ ଅଦୃଷ୍ଟ ଫଳରୁ ମିଳିଲା । ମୋର ବିଶ୍ୱାସ, ଦୈବକୁ କେହି ଲଙ୍ଘନ କରି ପାରିବ ନାହିଁ ।୪। ଦେଖ, ଯେଉଁ ରାମ କ୍ରୋଧପୂର୍ଣ୍ଣ ହୋଇ ଦେବତା, ଗନ୍ଧର୍ବ, ରାକ୍ଷସ ଏବଂ ଦାନବମାନଙ୍କୁ ନାଶ କରିପାରନ୍ତି ସେହି ରାମ ମଧ୍ୟ ଦୈବର ଅନୁସରଣ କରୁଛନ୍ତି ।୫। ପୂର୍ବେ ରାମ ପ୍ରଥମେ ପିତାଙ୍କ ଆଜ୍ଞାରେ ନିର୍ଜନ ଦଣ୍ଡକାରଣ୍ୟରେ ଚଉଦ ବର୍ଷ ବାସ କଲେ, ମାତ୍ର ତାଙ୍କପାଇଁ ସୀତାଙ୍କ ତ୍ୟାଗରୂପ ଦୁଃଖ ତାଠାରୁ ଖୁବ ଅଧିକ

ତତୋ ଦୁଃଖତରଂ ଭୂୟଃ ସୀତାୟା ବପ୍ରବାସନମ୍ ।
ପୌର୍‌ଣାଂ ବଚନଂ ଶ୍ରୁତ୍ୱା ନୃଶଂସଂ ପ୍ରତିଭାତି ମେ । ୭ ।
କୋ ନୁ ଧର୍ମାଶ୍ରୟଃ ସୂତ କର୍ମଣ୍ୟସ୍ମିନ୍ ଯଶୋହରେ ।
ମୈଥିଲୀଂ ପ୍ରତି ସଂପ୍ରାପ୍ତଃ ପୌରୈର୍ହୀନାର୍ଥବାଦିଭିଃ । ୮ ।
ଏତା ବାଚୋ ବହୁବିଧାଃ ଶ୍ରୁତ୍ୱା ଲକ୍ଷ୍ମଣଭାଷିତାଃ ।
ସୁମନ୍ତ୍ରଃ ଶ୍ରଦ୍ଧୟା ପ୍ରାଜ୍ଞୋ ବାକ୍ୟମେତଦୁବାଚ ହ । ୯ ।
ନ ସଂତାପସ୍ତ୍ୱୟା କାର୍ଯଃ ସୌମିତ୍ରେ ମୈଥିଲୀଂ ପ୍ରତି ।
ଦୃଷ୍ଟମେତତ୍ ପୁରା ବପ୍ରୈଃ ପିତୁସ୍ତେ ଲକ୍ଷ୍ମଣାଗ୍ରତଃ । ୧୦ ।
ଭବିଷ୍ୟତି ଦୃଢ଼ଂ ରାମୋ ଦୁଃଖପ୍ରାୟୋଽପି ସୌଖ୍ୟଭାକ୍ ।
ପ୍ରାପ୍ସ୍ୟତେ ଚ ମହାବାହୁର୍ବିପ୍ରୟୋଗଂ ପ୍ରିୟୈର୍ଧ୍ରୁବମ୍ । ୧୧ ।
ତ୍ୱାଂ ଚୈବ ମୈଥିଲୀଂ ଚୈବ ଶତ୍ରୁଘ୍ନଭରତାବୁଭୌ ।
ସଂତ୍ୟଜିଷ୍ୟତି ଧର୍ମାତ୍ମା କାଲେନ ମହତା ମହାନ୍ ।୧୨ ।
ଇଦଂ ତ୍ୱୟି ନ ବକ୍ତବ୍ୟଂ ସୌମିତ୍ରେ ଭରତେଽପି ବା ।
ରାଜ୍ଞା ବୋ ବ୍ୟାହୃତଂ ବାକ୍ୟଂ ଦୁର୍ବାସା ଯଦୁବାଚ ହ । ୧୩ ।

---

ଦୁଃଖକର ଅଟେ, କାରଣ ନଗରବାସୀଙ୍କ କଥାରେ ସେ ଏ ଦୁଃଖ ପାଇଲେ; ମୋତେ ଏ କଥା ବଡ଼ ନିଷ୍ଠୁର ବୋଧ ହେଉଅଛି । ୬-୭ । ହେ ସୁମନ୍ତ୍ର ! ଅନୁଚିତ କଥା କହୁଥିବା ନଗରବାସୀଙ୍କ କଥାରେହିଁ ସୀତାଙ୍କୁ ତ୍ୟାଗ କରିଦେବା ଏକ ଯଶୋନାଶକାରୀ କାର୍ଯ୍ୟ ଅଟେ; ଏହାହିଁ କି ଧର୍ମସମ୍ମତ କାର୍ଯ୍ୟ ?" ।୮। ଲକ୍ଷ୍ମଣଙ୍କ ଏପରି ଅନେକ କଥା ଶୁଣି ବୁଦ୍ଧିମାନ୍ ସୁମନ୍ତ୍ର ଶ୍ରଦ୍ଧାପୂର୍ବକ କହିଲେ । ୯ । "ହେ ସୌମିତ୍ରେ ! ତୁମେ ମୈଥିଳୀଙ୍କ ଲାଗି ଦୁଃଖ କର ନାହିଁ । ହେ ଲକ୍ଷ୍ମଣ ! ଦୁର୍ବାସା ତୁମ ପିତାଙ୍କ ଆଗରେ ଏହି କଥା ସ୍ପଷ୍ଟ କରି ନିର୍ଣ୍ଣୟ କରିଦେଇଥିଲେ ଯେ ରାମ ପ୍ରାୟ ଦୁଃଖୀହିଁ ରହିବେ, ତାଙ୍କୁ ସୁଖ ମିଳିବ ନାହିଁ ; ତାଙ୍କର ପ୍ରିୟଜନଙ୍କ ଠାରୁ ନିଶ୍ଚୟ ବିଚ୍ଛେଦ ହେବ ।୧୦-୧୧। କେବଳ ସୀତାଙ୍କୁ ନୁହେଁ, ଧର୍ମାତ୍ମା ମହାଭାଗ ରାମ ପରେ ତୁ ଏତ ତୁମକୁ, ଶତ୍ରୁଘ୍ନଙ୍କୁ ଏବଂ ଭରତଙ୍କୁ ମଧ୍ୟ ତ୍ୟାଗ କରିଦେବେ । ୧୨ । ହେ ଲକ୍ଷ୍ମଣ ! ଏ କଥା ତୁମେ ଭରତ ଏବଂ ଶତ୍ରୁଘ୍ନଙ୍କୁ କହିବ ନାହିଁ । ଯେଉଁବେଳେ ଦଶରଥ ଦୁର୍ବାସାଙ୍କୁ ତୁମମାନଙ୍କ ବିଷୟ ପଚାରିଥିଲେ ସେତେବେଳେ ସେ ଏ କଥା କହିଥିଲେ । ୧୩ ।

ମହାଜନସମୀପେ ଚ ମମ ଚୈବ ନରର୍ଷଭ ।
ଋଷିଣା ବ୍ୟାହୃତଂ ବାକ୍ୟଂ ବସିଷ୍ଠସ୍ୟ ଚ ସଂନ୍ନିଧୌ । ୧୪ ।
ଋଷେସ୍ତୁ ବଚନଂ ଶ୍ରୁତ୍ୱା ମାମାହ ପୁରୁଷର୍ଷଭଃ ।
ସୂତ ନ କ୍ୱଚଦେବଂ ତେ ବକ୍ତବ୍ୟଂ ଜନସନ୍ନିଧୌ । ୧୫ ।
ତସ୍ୟାହଂ ଲୋକପାଲସ୍ୟ ବାକ୍ୟଂ ତତ୍ ସୁସମାହିତଃ ।
ନୈବ ଜାତ୍ୱନୃତଂ କାର୍ଯମିତି ମେ ସୌମ୍ୟ ଦର୍ଶନମ୍ । ୧୬ ।
ସର୍ବଥୈବ ନାବକ୍ତବ୍ୟଂ ମୟା ସୌମ୍ୟ ତବାଗ୍ରତଃ ।
ଯଦି ତେ ଶ୍ରବଣେ ଶ୍ରଦ୍ଧା ଶ୍ରୂୟତାଂ ରଘୁନନ୍ଦନ । ୧୭ ।
ଯଦ୍ୟପ୍ୟହଂ ନରେନ୍ଦ୍ରେଣ ରହସ୍ୟଂ ଶ୍ରାବିତଃ ପୁରା ।
ତଥାପ୍ୟୁଦାହରିଷ୍ୟାମି ଦୈବଂ ହି ଦୁରତିକ୍ରମମ୍ । ୧୮ ।
ଯେନେଦମୀଦୃଶଂ ପ୍ରାପ୍ତଂ ଦୁଃଖଂ ଶୋକସମନ୍ୱିତମ୍ ।
ନ ତ୍ୱୟା ଭରତେ ବାଚ୍ୟଂ ଶତ୍ରୁଘ୍ନସ୍ୟାପି ସନ୍ନିଧୌ । ୧୯ ।
ତଚ୍ଛ୍ରୁତ୍ୱା ଭାଷିତଂ ତସ୍ୟ ଗମ୍ଭୀରାର୍ଥପଦଂ ମହତ୍ ।
ତଥ୍ୟଂ ବ୍ରୂହୀତି ସୌମିତ୍ରିଃ ସୂତଂ ବାକ୍ୟମଥାବ୍ରବୀତ୍ । ୨୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ସୁମନ୍ତ୍ରରହସ୍ୟକଥନଂ ନାମ ପଞ୍ଚାଶଃ ସର୍ଗଃ ।

---

ସେ ମୁନି ଏ କଥା ମହାଜନବର୍ଗ, ବଶିଷ୍ଠ ଓ ମୋ ସମ୍ମୁଖରେ ରାଜାଙ୍କୁ କହିଥିଲେ ।୧୪। ଦୁର୍ବାସାଙ୍କ ଏ କଥା ଶୁଣି ମହାରାଜ ଦଶରଥ ମୋତେ କହିଥିଲେ କି 'ହେ ସୂତ ! ତୁମେ ଏ କଥା ଅନ୍ୟ କାହାରିକୁ କହିବ ନାହିଁ' । ୧୫ । ଏହିହେତୁରୁ ଲୋକପାଳ ମହାରାଜ ଦଶରଥଙ୍କ ଆଦେଶ ଯତ୍ନରେ ରକ୍ଷାକରି ମୁଁ ଏ କଥା କାହାରିକୁ କହି ନାହିଁ । ୧୬ । ହେ ସୌମ୍ୟ ! ମୋର ଏ କଥା ତୁମକୁ କହିବା ମଧ୍ୟ ଉଚିତ ନ ଥିଲା; କିନ୍ତୁ ହେ ରଘୁନନ୍ଦନ ! ଯଦି ତୁମେ ଶୁଣିବାକୁ ଚାହୁଁଛ ତେବେ ମୁଁ କହୁଛି ଶୁଣ । ୧୭ । ଯଦିଓ ପୂର୍ବକାଳରେ ଏ କଥା ମହାରାଜ ମୋତେ ଏକାନ୍ତରେ କହିଥିଲେ, ତଥାପି ମୁଁ ତୁମକୁ କହୁଛି, କାରଣ ଭାଗ୍ୟକୁ କେହି ଏଡ଼ିପାରିବ ନାହିଁ । ୧୮ । ଭାଗ୍ୟଦୋଷରୁହିଁ ଏପ୍ରକାର ଦୁଃଖ ଶୋକ ମିଳିଛି, ତଥାପି ଏ ଗୂଢ଼କଥା ତୁମେ ଭରତ ଏବଂ ଶତ୍ରୁଘ୍ନଙ୍କୁ କହିବ ନାହିଁ" । ୧୯ । ସୁମନ୍ତ୍ରଙ୍କର ଏହି ଗମ୍ଭୀର ବଚନ ଶୁଣି ଲକ୍ଷ୍ମଣ କହିଲେ, "ତୁମେ ସମସ୍ତ ବୃତ୍ତାନ୍ତ ଯଥାଯଥଭାବରେ ମୋତେ କହ" । ୨୦ ।

# ଏକପଞ୍ଚାଶଃ ସର୍ଗଃ

## ଦୁର୍ବାସୋବାକ୍ୟକଥନମ୍

ତଥା ସଂଚୋଦିତଃ ସୂତୋ ଲକ୍ଷ୍ମଣେନ ମହାତ୍ମନା ।
ତଦ୍ୱାକ୍ୟମୃଷିଣା ପ୍ରୋକ୍ତଂ ବ୍ୟାହର୍ତୁମୁପଚକ୍ରମେ । ୧ ।
ପୁରା ନାମ୍ନା ହି ଦୁର୍ବାସା ଅତ୍ରେଃ ପୁତ୍ରୋ ମହାମୁନିଃ ।
ବସିଷ୍ଠସ୍ୟାଶ୍ରମେ ପୁଣ୍ୟେ ବାର୍ଷିକ୍ୟଂ ସମୁବାସ ହ । ୨ ।
ତମାଶ୍ରମଂ ମହାତେଜାଃ ପିତା ତେ ସୁମହାଯଶାଃ ।
ପୁରୋହିତଂ ମହାତ୍ମାନଂ ଦିଦୃକ୍ଷୁରଗମତ୍ ସ୍ୱୟମ୍ । ୩ ।
ସ ଦୃଷ୍ଟ୍ୱା ସୂର୍ଯ୍ୟସଂକାଶଂ ଜ୍ୱଳନ୍ତମିବ ତେଜସା ।
ଉପବିଷ୍ଟଂ ବସିଷ୍ଠସ୍ୟ ସବ୍ୟପାର୍ଶ୍ୱେ ମହାମୁନିମ୍ । ୪ ।
ତୌ ମୁନୀ ତାପସଶ୍ରେଷ୍ଠୌ ବିନୀତୋ ହ୍ୟଭିବାଦୟତ୍ ।
ସ ତାଭ୍ୟାଂ ପୂଜିତୋ ରାଜା ସ୍ୱାଗତେନାସନେନ ଚ । ୫ ।
ପାଦ୍ୟେନ ଫଳମୂଳୈଶ୍ଚ ଉବାସ ମୁନିଭିଃ ସହ । ୬ ।

---

## ୫୧ଶ ସର୍ଗ

(ଦୁର୍ବାସାଙ୍କ ବାକ୍ୟକଥନ)

ମହାତ୍ମା ଲକ୍ଷ୍ମଣ ଏହିପ୍ରକାର ଆଗ୍ରହ କରିବାରୁ ସାରଥି ସୁମନ୍ତ୍ର ଋଷିଶ୍ରେଷ୍ଠ ଦୁର୍ବାସାଙ୍କ ଉକ୍ତିକୁ ଏହିପ୍ରକାରେ କହିବାକୁ ଆରମ୍ଭ କଲେ । ୧ । "ପୂର୍ବକାଳରେ ଏକ ସମୟରେ ଅତ୍ରିଙ୍କ ପୁତ୍ର ମହାମୁନି ଦୁର୍ବାସା ବର୍ଷାକାଳୀନ ଚାତୁର୍ମାସ୍ୟ ପାଳନ କରିବା ପାଇଁ ବଶିଷ୍ଠଙ୍କ ପବିତ୍ର ଆଶ୍ରମରେ ଯାଇ ରହିଥିଲେ ।୨। ସେହି ସମୟରେ ଥରେ ତେଜସ୍ୱୀ ଓ ମହାଯଶସ୍ୱୀ ତୁମ ପିତା ନିଜର କୁଳପୁରୋହିତ ବଶିଷ୍ଠଙ୍କୁ ଦେଖିବାକୁ ଇଚ୍ଛାକରି ସେହି ଆଶ୍ରମରେ ଯାଇ ପହଞ୍ଚିଲେ । ୩ । ସେଠାରେ ସେ ଦେଖିଲେ ଯେ ବଶିଷ୍ଠଙ୍କ ବାମପାର୍ଶ୍ୱରେ ତେଜରେ ସୂର୍ଯ୍ୟଙ୍କ ସଦୃଶ ପ୍ରଜ୍ୱଳିତ ହେଉଥିବା ଦୁର୍ବାସା ମୁନି ବସିଛନ୍ତି । ମହାରାଜ ଦଶରଥ ନମ୍ରତାସହକାରେ ତପସ୍ୱୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ସେହି ଦୁଇ ମୁନିଙ୍କୁ ପ୍ରଣାମ କଲେ । ସେହି ଦୁଇ ମହାତ୍ମା ମଧ୍ୟ ମହାରାଜଙ୍କୁ ସ୍ୱାଗତ କରି ତାଙ୍କୁ ସମ୍ମାନପୂର୍ବକ ଆସନରେ ବସାଇଲେ । ଅର୍ଘ୍ୟ, ଫଳ ଏବଂ ମୂଳ ଆଦି ଦ୍ୱାରା ସତ୍କୃତ ହୋଇ ମହାରାଜ ମୁନିମାନଙ୍କ ସହିତ ସେଠାରେ ବସିଲେ । ୪-୬ ।

ତେଷାଂ ତତ୍ରୋପବିଷ୍ଟାନାଂ ତାସ୍ତାଃ ସୁମଧୁରାଃ କଥାଃ ।
ବଭୂବୁଃ ପରମର୍ଷୀଣାଂ ମଧ୍ୟାହ୍ନତ୍ୟଗଚ୍ଛତେଽହନି । ୭ ।
ତତଃ କଥାୟାଂ କସ୍ୟାଞ୍ଚିତ୍ ପ୍ରାଞ୍ଜଳିଃ ପ୍ରଗ୍ରହୋ ନୃପଃ ।
ଉବାଚ ଚ ମହାତ୍ମାନମତ୍ରେଃ ପୁତ୍ରଂ ତପୋଧନମ୍ । ୮ ।
ଭଗବନ୍ କିଂ ପ୍ରମାଣେନ ମମ ବଂଶୋ ଭବିଷ୍ୟତି ।
କିମାୟୁଶ୍ଚ ହି ମେ ରାମଃ ପୁତ୍ରାଶ୍ଚାନ୍ୟେ କିମାୟୁଷଃ । ୯ ।
ରାମସ୍ୟ ଚ ସୁତା ଯେ ସ୍ୟୁସ୍ତେଷାମାୟୁଃ କିମ୍ଭବେତ୍ ।
କାମ୍ୟୟା ଭଗବନ୍ ବ୍ରୂହି ବଂଶସ୍ୟାସ୍ୟ ଗତିଂ ମମ । ୧୦ ।
ତଚ୍ଛ୍ରୁତ୍ୱା ବ୍ୟାହୃତଂ ବାକ୍ୟଂ ରାଜ୍ଞୋ ଦଶରଥସ୍ୟ ଚ ।
ଦୁର୍ବାସାଃ ସୁମହାତେଜାଃ ବ୍ୟାହର୍ତୁମୁପଚକ୍ରମେ । ୧୧ ।
ଶୃଣୁ ରାଜନ୍ ପୁରାବୃତ୍ତଂ ତଦା ଦୈବାସୁରେ ଯୁଧି ।
ଦୈତ୍ୟାଃ ସୁରୈର୍ଭର୍ତ୍ସ୍ୟମାନା ଭୃଗୁପତ୍ନୀଂ ସମାଶ୍ରିତାଃ ।
ତୟା ଦତ୍ତାଭୟାସ୍ତତ୍ର ନ୍ୟବସନ୍ନଭୟାସ୍ତଦା । ୧୨ ।
ତୟା ପରିଗୃହୀତାଂସ୍ତାନ୍ ଦୃଷ୍ଟ୍ୱା କ୍ରୁଦ୍ଧଃ ସୁରେଶ୍ୱରଃ ।
ଚକ୍ରେଣ ଶିତଧାରେଣ ଭୃଗୁପତ୍ନ୍ୟାଃ ଶିରୋଽହରତ୍ । ୧୩ ।

---

ସେମାନେ ସମସ୍ତେ ସେଠାରେ ବସି ଦୁଇପ୍ରହର ଅତୀତ ହୋଇଯିବା ପର୍ଯ୍ୟନ୍ତ ନାନାପ୍ରକାର ସୁମଧୁର କଥାବାର୍ତ୍ତା ହେବାକୁ ଲାଗିଲେ । ୭ । ସେହି ସମୟରେ କୌଣସି ଏକ କଥାପ୍ରସଙ୍ଗରେ ଦଶରଥ ହାତ ଯୋଡ଼ି ବିନୀତଭାବରେ ଅତ୍ରିପୁତ୍ର ମହାତ୍ମା ତପୋଧନ ଦୁର୍ବାସାଙ୍କୁ କହିଲେ । ୮ । "ହେ ଭଗବନ୍ ! ମୋର ବଂଶ କେତେକାଳ ପର୍ଯ୍ୟନ୍ତ ରହିବ, ମୋର ରାମର ପରମାୟୁ କେତେକାଳ ଏବଂ ଅନ୍ୟ ପୁତ୍ରମାନଙ୍କର ଆୟୁ ମଧ୍ୟ କେତେକାଳ ? । ୯ । ରାମର ପୁତ୍ରମାନଙ୍କର କେତେ ଆୟୁ ହେବ ? ହେ ଭଗବନ୍ ! ମୋର ଏକାନ୍ତ ଇଚ୍ଛା ଯେ ମୋର ବଂଶର ଯାହା ଭବିଷ୍ୟତ ଗତି ହେବ ତାହା ଆପଣ କହନ୍ତୁ" । ୧୦ । ମହାରାଜ ଦଶରଥଙ୍କର ଏ କଥା ଶୁଣି ମହାତେଜସ୍ୱୀ ଦୁର୍ବାସା କହିବାକୁ ଆରମ୍ଭ କଲେ । ୧୧ । "ହେ ରାଜନ୍ ! ଶୁଣ, ପୂର୍ବକାଳରେ ଦେବତା ଏବଂ ଦୈତ୍ୟମାନଙ୍କ ମଧ୍ୟରେ ପ୍ରବଳ ଯୁଦ୍ଧ ହୋଇଥିଲା । ସେତେବେଳେ ଦୈତ୍ୟମାନେ ଦେବତାମାନଙ୍କଦ୍ୱାରା ପରାଭୂତ ହୋଇ ଭୃଗୁ ମହର୍ଷିଙ୍କ ପତ୍ନୀଙ୍କର ଶରଣ ନେଲେ । ସେତେବେଳେ ଭୃଗୁପତ୍ନୀ ସେମାନଙ୍କୁ ଅଭୟ ପ୍ରଦାନ କଲେ ଏବଂ ସେମାନେ ସେଠାରେ ନିର୍ଭୟରେ ରହିଲେ । ୧୨ । ଭଗବାନ୍ ବିଷ୍ଣୁ ଯେତେବେଳେ ଦେଖିଲେ ଯେ ଭୃଗୁପତ୍ନୀ ଦୈତ୍ୟମାନଙ୍କୁ ରକ୍ଷା କରୁଛନ୍ତି, ସେତେବେଳେ ସେ କ୍ରୁଦ୍ଧ ହୋଇ ତୀକ୍ଷ୍ଣଧାର

ତତସ୍ତାଂ ନିହତାଂ ଦୃଷ୍ଟ୍ୱା ପତ୍ନୀଂ ଭୃଗୁକୁଳୋଦ୍ୱହଃ ।
ଶଶାପ ସହସା କ୍ରୁଦ୍ଧୋ ବିଷ୍ଣୁଂ ରିପୁକୁଳାର୍ଦ୍ଦନମ୍ । ୧୪ ।
ଯସ୍ମାଦବଧ୍ୟାଂ ମେ ପତ୍ନୀମବଧୀଃ କ୍ରୋଧମୂର୍ଚ୍ଛିତଃ ।
ତସ୍ମାତ୍ତ୍ୱଂ ମାନୁଷେ ଲୋକେ ଜନିଷ୍ୟସି ଜନାର୍ଦ୍ଦନ । ୧୫ ।
ତତ୍ର ପତ୍ନୀବିୟୋଗଂ ତ୍ୱଂ ପ୍ରାପ୍ସ୍ୟସେ ବହୁବାର୍ଷିକମ୍ ।
ଶାପାଭିହତଚେତାଃ ସ ସ୍ୱାତ୍ମନା ଭାବିତୋଽଭବତ୍ । ୧୬ ।
ଅର୍ଚ୍ଚୟାମାସ ତଂ ଦେବଂ ଭୃଗୁଃ ଶାପେନ ପୀଡ଼ିତଃ ।
ତପସାରାଧିତୋ ଦେବୋ ହ୍ୟବ୍ରବୀଦ୍ଭକ୍ତବତ୍ସଳଃ । ୧୭ ।
ଲୋକାନାଂ ସଂପ୍ରିୟାର୍ଥଂ ତୁ ତଂ ଶାପଂ ଗ୍ରାହ୍ୟମୁକ୍ତବାନ୍ ।
ଇତି ଶପ୍ତୋ ମହାତେଜା ଭୃଗୁଣା ପୂର୍ବଜନ୍ମନି । ୧୮ ।
ଇହାଗତୋ ହି ପୁତ୍ରତ୍ୱଂ ତବ ପାର୍ଥିବସତ୍ତମ ।
ରାମ ଇତ୍ୟଭିବିଖ୍ୟାତସ୍ତ୍ରିଷୁ ଲୋକେଷୁ ମାନଦ । ୧୯ ।
ତତ୍ଫଳଂ ପ୍ରାପ୍ସ୍ୟତେ ଚାପି ଭୃଗୁଶାପକୃତଂ ମହତ୍ ।
ଅଯୋଧ୍ୟାୟାଃ ପତୀ ରାମୋ ଦୀର୍ଘକାଳଂ ଭବିଷ୍ୟତି । ୨୦ ।

---

ସୁଦର୍ଶନ ଚକ୍ରଦ୍ୱାରା ଭୃଗୁପତ୍ନୀଙ୍କର ମୁଣ୍ଡ କାଟି ପକାଇଲେ । ୧୩ । ଭୃଗୁ ନିଜର ପତ୍ନୀଙ୍କୁ ମୃତ ହେବାର ଦେଖି କ୍ରୁଦ୍ଧ ହୋଇ ଶତ୍ରୁକୁଳସଂହାରକାରୀ ଭଗବାନ୍ ବିଷ୍ଣୁଙ୍କୁ ଶାପ ଦେଲେ । ୧୪ । "ସେ କହିଲେ, ତୁମେ ମୋର ଅବଧ୍ୟା ପତ୍ନୀଙ୍କୁ କ୍ରୋଧରେ ଆତ୍ମହରା ହୋଇ ବଧ କରିଅଛ ; ଅତଏବ ହେ ଜନାର୍ଦ୍ଦନ ! ତୁମେ ମନୁଷ୍ୟ ରୂପରେ ଜନ୍ମଗ୍ରହଣ କରିବ । ୧୫ । ସେତେବେଳେ ତୁମକୁ ବହୁ ବର୍ଷଯାଏ ପତ୍ନୀବିଚ୍ଛେଦ ସହିବାକୁ ପଡ଼ିବ ।" ଏହି ପ୍ରକାର ଶାପ ଦେଇସାରି ଭୃଗୁ ମନେ ମନେ ବହୁ ଅନୁତାପ କଲେ । ୧୬ । ଶାପପ୍ରଦାନ ଉପରେ ପୀଡ଼ିତ ହୋଇ ଭୃଗୁ ଅତି ଭକ୍ତି ସହକାରେ ତାଙ୍କର ପୂଜା କରିବାକୁ ଲାଗିଲେ । କିଛିକାଳପରେ ଭୃଗୁଙ୍କ ତପସ୍ୟାରେ ପ୍ରସନ୍ନ ହୋଇ ଭକ୍ତବତ୍ସଳ ଭଗବାନ୍ ବିଷ୍ଣୁ ତାଙ୍କୁ କହିଲେ । ୧୭ । "ମୁଁ ଲୋକହିତ ନିମନ୍ତେ ସେହି ଶାପକୁ ଗ୍ରହଣ କରି ନେଇଅଛି ।" ପୂର୍ବଜନ୍ମରେ ପାଇଥିବା ମହାତେଜସ୍ୱୀ ଭୃଗୁଙ୍କର ଶାପ ହେତୁରୁ ହେ ନୃପଶ୍ରେଷ୍ଠ, ହେ ମାନଦ ! ସେହି ଭଗବାନ୍ ବିଷ୍ଣୁ ଇହଲୋକକୁ ଆସି ତୁମ୍ଭର ପୁତ୍ରରୂପରେ ଜନ୍ମ ହୋଇଛନ୍ତି ଏବଂ ତିନିଲୋକରେ ରାମ ନାମରେ ଖ୍ୟାତ ହୋଇଛନ୍ତି । ୧୮-୧୯ । ସେହି ଭୃଗୁଙ୍କର ଶାପର ଫଳ ସେ ପାଇବେ ଏବଂ ଦୀର୍ଘକାଳ ପର୍ଯ୍ୟନ୍ତ

ତତ୍ର ପତ୍ନୀବିୟୋଗଂ ଚ ଦୀର୍ଘକାଳଂ ଗମିଷ୍ୟତି ।
ସୁଖିନଶ୍ଚ ସମୃଦ୍ଧାଶ୍ଚ ଭବିଷ୍ୟନ୍ତ୍ୟସ୍ୟ ଯେଽନୁଗାଃ ।୨୧।
ଦଶ ବର୍ଷସହସ୍ରାଣି ଦଶ ବର୍ଷଶତାନି ଚ ।
ରାମୋ ରାଜ୍ୟମୁପାସିତ୍ୱା ବ୍ରହ୍ମଲୋକଂ ଗମିଷ୍ୟତି ।୨୨।
ସମୃଦ୍ଧୈଶ୍ଚାଶ୍ୱମେଧୈଶ୍ଚ ଇଷ୍ଟ୍ୱା ପରମଦୁର୍ଜୟଃ ।
ରାଜବଂଶାଂଶ୍ଚ ବହୁଶୋ ବହୂନ୍ ସଂସ୍ଥାପୟିଷ୍ୟତି ।୨୩।
ଦ୍ୱୌ ପୁତ୍ରୌ ତୁ ଭବିଷ୍ୟେତେ ସୀତାୟାଂ ରାଘବସ୍ୟ ତୁ ।
ଅନ୍ୟତ୍ର ନ ତ୍ୱୟୋଧ୍ୟାୟାଂ ସତ୍ୟମେତନ୍ନ ସଂଶୟଃ ।୨୪।
ସୀତାୟାଶ୍ଚ ତତଃ ପୁତ୍ରାବଭିଷେକ୍ଷ୍ୟତି ରାଘବଃ ।
ସ ସର୍ବମଖିଳଂ ରାଜ୍ଞୋ ବଂଶସ୍ୟାହ ଗତାଗତମ୍ ।୨୫।
ଆଖ୍ୟାୟ ସୁମହାତେଜାସ୍ତୂଷ୍ଣୀମାସୀନ୍ମହାମୁନିଃ ।
ତୂଷ୍ଣୀଂ ଭୂତେ ତଦା ତସ୍ମିନ୍ ରାଜା ଦଶରଥୋ ମୁନୌ ।୨୬।
ଅଭିବାଦ୍ୟ ମହାତ୍ମାନୌ ପୁନରାୟାତ୍ ପୁରୋତ୍ତମମ୍ ।୨୭।
ଏତଦ୍‌ବଚୋ ମୟା ତତ୍ର ମୁନିନା ବ୍ୟାହୃତଂ ପୁରା ।
ଶ୍ରୁତଂ ହୃଦି ଚ ନିକ୍ଷିପ୍ତଂ ନାନ୍ୟଥା ତଦ୍ଭବିଷ୍ୟତି ।୨୮।

---

ଅଯୋଧ୍ୟାରେ ରାଜତ୍ୱ କରିବେ ।୨୦। ସେଠାରେ ସେ ଦୀର୍ଘକାଳ ପତ୍ନୀବିୟୋଗ ଦୁଃଖ ଭୋଗ କରିବେ; ମାତ୍ର ତାଙ୍କର ଅନୁଗତ ବ୍ୟକ୍ତିମାନେ ସମସ୍ତେ ସୁଖୀ ଓ ସମୃଦ୍ଧିଶାଳୀ ହୋଇ ରହିବେ । ରାମ ଏଗାର ହଜାର ବର୍ଷ ପର୍ଯ୍ୟନ୍ତ ରାଜତ୍ୱ କରି ବ୍ରହ୍ମଲୋକକୁ ଚାଲିଯିବେ ।୨୧-୨୨। ସେହି ପରମଦୁର୍ଜୟ ରାମ ବହୁ ସମୃଦ୍ଧିଶାଳୀ ଅଶ୍ୱମେଧ ଯଜ୍ଞ ସମ୍ପାଦନ କରିବେ ଏବଂ ବହୁ ରାଜବଂଶ ସ୍ଥାପନ କରିବେ ।୨୩। ରାମଙ୍କର ସୀତାଙ୍କ ଗର୍ଭରେ ଦୁଇ ପୁତ୍ର ଜନ୍ମହେବେ ; ମାତ୍ର ସେମାନେ ଅଯୋଧ୍ୟାରେ ଜନ୍ମ ନ ହୋଇ ଅନ୍ୟ ସ୍ଥାନରେ ଜନ୍ମ ହେବେ । ଏ କଥା ମୁଁ ସତ୍ୟ କହୁଛି, ଏଥିରେ ସନ୍ଦେହ ନାହିଁ ।୨୪। ଅନନ୍ତର ରାମ ସୀତାଙ୍କର ସେହି ଦୁଇ ପୁତ୍ରଙ୍କୁ ରାଜ୍ୟରେ ଅଭିଷିକ୍ତ କରାଇବେ ।" ଏହିପରିଭାବରେ ମୁନି ଦୁର୍ବାସା ରାଜା ଦଶରଥଙ୍କ ବଂଶର ଅତୀତ ଓ ଭବିଷ୍ୟତ ସବୁ ବିଷୟ କହିଥିଲେ ।୨୫। ମହାତେଜା ମହାମୁନି ଏହି କଥା କହି ତୁନି ହେଲେ । ସେ ତୁନି ହେବା ପରେ ରାଜା ଦଶରଥ ସେହି ଦୁଇ ମହାତ୍ମାଙ୍କୁ ଅଭିବାଦନ କରି ପୁଣି ନଗରଶ୍ରେଷ୍ଠ ଅଯୋଧ୍ୟାକୁ ଫେରି ଆସିଲେ ।୨୬-୨୭। ମୁଁ ସେତେବେଳେ ଦୁର୍ବାସା ମୁନି କହିଥିବା ଏହି କଥା ଶୁଣିଅଛି ଏବଂ ମନମଧ୍ୟରେ ରଖିଅଛି । ଏହା କଦାପି ଅନ୍ୟଥା

ଏବଂ ଗତେ ନ ସନ୍ତାପଂ କର୍ତ୍ତୁମର୍ହସି ରାଘବ ।
ସୀତାର୍ଥେ ରାଘବାର୍ଥେ ବା ଦୃଢ଼ୋ ଭବ ନରୋତ୍ତମ । ୨୯ ।
ଶ୍ରୁତ୍ୱା ତୁ ବ୍ୟାହୃତଂ ବାକ୍ୟଂ ସୂତସ୍ୟ ପରମାଦ୍ଭୁତମ୍ ।
ପ୍ରହର୍ଷମତୁଳଂ ଲେଭେ ସାଧୁ ସାଧ୍ୱିତି ଚାବ୍ରବୀତ୍ । ୩୦ ।
ତତଃ ସଂବଦତୋରେବଂ ସୂତଲକ୍ଷ୍ମଣୟୋଃ ପଥି ।
ଅସ୍ତମର୍କେ ଗତେ ବାସଂ କେଶିନ୍ୟାଂ ତାବଥୋଷତୁଃ । ୩୧ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ଦୁର୍ବାସୋବାକ୍ୟକଥନଂ ନାମ ଏକପଞ୍ଚାଶଃ ସର୍ଗଃ ।

---

# ଦ୍ୱିପଞ୍ଚାଶଃ ସର୍ଗଃ

## ରାମସମାଧାନମ୍

ତତ୍ର ତାଂ ରଜନୀମୁଷ୍ୟ କେଶିନ୍ୟାଂ ରଘୁନନ୍ଦନଃ ।
ପ୍ରଭାତେ ପୁନରୁତ୍ଥାୟ ଲକ୍ଷ୍ମଣଃ ପ୍ରଯଯୌ ତଦା । ୧ ।

---

ହେବ ନାହିଁ । ୨୮ । ସୁତରାଂ ହେ ରଘୁନନ୍ଦନ ! ଏପରି ଅବସ୍ଥାରେ ତୁମ୍ଭର ସନ୍ତାପ କରିବା ଉଚିତ ନୁହେଁ । ହେ ନରଶ୍ରେଷ୍ଠ ! ତୁମେ ସୀତାଙ୍କ ଲାଗି ବା ରାମଙ୍କ ଲାଗି ଦୁଃଖିତ ନ ହୋଇ ମନକୁ ଦୃଢ଼କର" । ୨୯ । ଏହିପ୍ରକାରେ ସାରଥିଙ୍କର ଅତିଶୟ ଆଶ୍ଚର୍ଯ୍ୟ ବଚନ ଶୁଣି ଲକ୍ଷ୍ମଣ ଅତିଶୟ ଆନନ୍ଦ ଲାଭକଲେ ଏବଂ ସାଧୁ ସାଧୁ ବୋଲି କହିଲେ । ୩୦ । ଲକ୍ଷ୍ମଣ ଓ ସାରଥି ସୁମନ୍ତ୍ର ଏହିପ୍ରକାରେ ପରସ୍ପର କଥାବାର୍ତ୍ତା ହୋଇ ସୂର୍ଯ୍ୟ ଅସ୍ତଯିବା ସମୟରେ କେଶିନୀ ନଗରକୁ ଯାଇ ସେଠାରେ ରହିଲେ । ୩୧ ।

---

## ୫୨ଶ ସର୍ଗ

(ରାମଙ୍କୁ ଲକ୍ଷ୍ମଣଙ୍କର ସାନ୍ତ୍ୱନା)

ରଘୁନନ୍ଦନ ଲକ୍ଷ୍ମଣ ସେହି ରାତ୍ରିରେ କେଶିନୀ ନଗରରେ ବାସ କରି ପ୍ରାତଃକାଳରୁ ଉଠି ସେଠାରୁ ଯାତ୍ରା କଲେ । ୧ । ମହାରଥୀ ଲକ୍ଷ୍ମଣ ଦୁଇପ୍ରହର

ତତୋଽର୍ଦ୍ଧଦିବସେ ପ୍ରାପ୍ତେ ପ୍ରବିବେଶ ମହାରଥଃ ।
ଅଯୋଧ୍ୟାଂ ରତ୍ନସଂପୂର୍ଣ୍ଣାଂ ହୃଷ୍ଟପୁଷ୍ଟଜନାବୃତାମ୍ ।୨।
ସୌମିତ୍ରିସ୍ତୁ ପରଂ ଦୈନ୍ୟଂ ଜଗାମ ସୁମହାମତିଃ ।
ରାମପାଦୌ ସମାସାଦ୍ୟ ବକ୍ଷ୍ୟାମି କିମହଂ ଗତଃ ।୩।
ତସ୍ୟୈବଂ ଚିନ୍ତୟାନସ୍ୟ ଭବନଂ ଶଶିସନ୍ନିଭମ୍ ।
ରାମସ୍ୟ ପରମୋଦାରଂ ପୁରସ୍ତାତ୍ ସମଦୃଶ୍ୟତ ।୪।
ରାଜ୍ଞସ୍ତୁ ଭବନଦ୍ୱାରି ସୋଽବତୀର୍ଯ୍ୟ ନରୋତ୍ତମାତ୍ ।
ଅବାଙ୍ମୁଖୋ ଦୀନମନାଃ ପ୍ରବିବେଶାନିବାରିତଃ ।୫।
ସ ଦୃଷ୍ଟ୍ୱା ରାଘବଂ ଦୀନମାସୀନଂ ପରମାସନେ ।
ନେତ୍ରାଭ୍ୟାମଶ୍ରୁପୂର୍ଣ୍ଣାଭ୍ୟାଂ ଦଦର୍ଶାଗ୍ରଜମଗ୍ରତଃ ।୬।
ଜଗ୍ରାହ ଚରଣୌ ତସ୍ୟ ଲକ୍ଷ୍ମଣୋ ଦୀନଚେତନଃ ।
ଉବାଚ ଦୀନୟା ବାଚା ପ୍ରାଞ୍ଜଳିଃ ସୁସମାହିତଃ ।୭।
ଆର୍ଯ୍ୟସ୍ୟାଜ୍ଞାଂ ପୁରସ୍କୃତ୍ୟ ବିସୃଜ୍ୟ ଜନକାତ୍ମଜାମ୍ ।
ଗଙ୍ଗାତୀରେ ଯଥୋଦ୍ଦିଷ୍ଟେ ବାଲ୍ମୀକେରାଶ୍ରମେ ଶୁଚୌ ।୮।

---

ହେଲାବେଳକୁ ଧନରତ୍ନପୂର୍ଣ୍ଣ ଓ ହୃଷ୍ଟପୁଷ୍ଟ ଜନସମାବୃତ ଅଯୋଧ୍ୟାନଗରୀରେ ପ୍ରବେଶ କଲେ ।୨। ସେତେବେଳେ ବୁଦ୍ଧିମାନ୍ ଲକ୍ଷ୍ମଣ ଅତିଶୟ ଦୁଃଖିତ ହୋଇଥିଲେ; କାରଣ ସେ ନିଜ ମନରେ ଏହି ଚିନ୍ତା କରୁଥିଲେ ଯେ ମୁଁ ରାମଙ୍କ ଚରଣ ନିକଟକୁ ଯାଇ କଅଣ କହିବି ? ।୩। ଏହିପ୍ରକାର ଚିନ୍ତା କରି କରି ଯାଉ ଯାଉ ଲକ୍ଷ୍ମଣ ରାମଙ୍କର ଚନ୍ଦ୍ରସଦୃଶ ଶୁକ୍ଳରଙ୍ଗର ଅତିବିଶାଳ ଭବନକୁ ଦେଖିଲେ ।୪। ଲକ୍ଷ୍ମଣ ସେହି ଭବନ ଦ୍ୱାରରେ ପହଞ୍ଚି ରଥରୁ ଓହ୍ଲାଇପଡ଼ିଲେ ଏବଂ ତଳକୁ ମୁହଁ ପୋତି ଉଦାସଭାବରେ ରାଜଭବନରେ ପ୍ରବେଶ କଲେ । ତାଙ୍କୁ କେହି ଅଟକାଇଲେ ନାହିଁ ।୫। ସେଠାରେ ଯାଇ ସେ ଦେଖିଲେ ଯେ ରାମ ଅତିଶୟ ଦୁଃଖିତ ହୋଇ ଚକ୍ଷୁ ଲୋତକପୂର୍ଣ୍ଣ କରି ଏକ ଉତ୍କୃଷ୍ଟ ଆସନରେ ବସି ରହିଛନ୍ତି । ଲକ୍ଷ୍ମଣ ଦୁଃଖିତ ମନରେ ରାମଙ୍କର ପାଦଦ୍ୱୟ ଛୁଇଁ ପ୍ରଣାମ କଲେ ଏବଂ ହାତ ଯୋଡ଼ି ସାବଧାନ-ଭାବରେ କହିଲେ ।୬। ସେ କହିଲେ "ହେ ଆର୍ଯ୍ୟ ! ମୁଁ ଆପଣଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ଗଙ୍ଗାତଟରେ ଆପଣଙ୍କ ନିର୍ଦ୍ଦିଷ୍ଟ ବାଲ୍ମୀକି ମୁନିଙ୍କର ଶୁଭ ଆଶ୍ରମ ନିକଟରେ ସୀତାଙ୍କୁ ଛାଡ଼ିଦେଇ ଆସିଲି ।୮। ହେ ବୀର ! ସେହି ଶୁଦ୍ଧାଚାରିଣୀ ଯଶସ୍ୱିନୀ

ତଦ୍ ତାଂ ଚ ଶୁଭାଚାରମାଶ୍ରମାନ୍ତେ ଯଶସ୍ୱିନୀମ୍ ।
ପୁନରପ୍ୟାଗତୋ ବୀର ପାଦମୂଲମୁପାସିତୁମ୍ । ୯ ।
ମା ଶୁଚଃ ପୁରୁଷବ୍ୟାଘ୍ର କାଲସ୍ୟ ଗତିରୀଦଶୀ ।
ତ୍ୱଦ୍‌ବିଧା ନ ହି ଶୋଚନ୍ତି ବୁଦ୍ଧିମନ୍ତୋ ମନସ୍ୱିନଃ । ୧୦ ।
ସର୍ବେ କ୍ଷୟାନ୍ତା ନିଚୟାଃ ପତନାନ୍ତାଃ ସମୁଚ୍ଛ୍ରୟାଃ ।
ସଂଯୋଗା ବିପ୍ରଯୋଗାନ୍ତା ମରଣାନ୍ତଂ ଚ ଜୀବିତମ୍ । ୧୧ ।
ତସ୍ମାତ୍ ପୁତ୍ରେଷୁ ଦାରେଷୁ ମିତ୍ରେଷୁ ଚ ଧନେଷୁ ଚ ।
ନାତିପ୍ରସଙ୍ଗଃ କର୍ତ୍ତବ୍ୟୋ ବିପ୍ରଯୋଗୋ ହି ତୈର୍ଧ୍ରୁବମ୍ । ୧୨ ।
ଶକ୍ତସ୍ତ୍ୱମାତ୍ମନାତ୍ମାନଂ ବିନେତୁଂ ମନସୈବ ହି ।
ଲୋକାନ୍ ସର୍ବାଂଶ୍ଚ କାକୁତ୍ସ୍ଥ କିଂ ପୁନଃ ଶୋକମାତ୍ମନଃ । ୧୩ ।
ନେଦୃଶେଷୁ ବିମୁହ୍ୟନ୍ତି ତ୍ୱଦ୍‌ବିଧାଃ ପୁରୁଷର୍ଷଭାଃ ।
ଅପବାଦଃ ସ କିଲ ତେ ପୁନରେଷ୍ୟତି ରାଘବ । ୧୪ ।
ଯଦର୍ଥଂ ମୈଥିଲୀ ତ୍ୟକ୍ତା ଅପବାଦଭୟାନ୍ନୃପ ।
ସୋଽପବାଦଃ ପୁରେ ରାଜନ୍ ଭବିଷ୍ୟତି ନ ସଂଶୟଃ । ୧୫ ।

---

ସୀତାଙ୍କୁ ଆଶ୍ରମ ନିକଟରେ ଛାଡ଼ିଦେଇ ମୁଁ ଆପଣଙ୍କର ପଦସେବା କରିବା ନିମନ୍ତେ ପୁଣି ଏଠାକୁ ଚାଲିଆସିଛି । ୯ । ହେ ପୁରୁଷସିଂହ ! ଆପଣ ଏବେ ଆଉ ଶୋଚନା କରନ୍ତୁ ନାହିଁ; କାରଣ କାଳର ଗତିହିଁ ଏହିପରି ଅଟେ । ଆପଣଙ୍କପରି ବୁଦ୍ଧିମାନ୍ ଓ ମନସ୍ୱୀ ଲୋକ ଶୋକ କରନ୍ତି ନାହିଁ । ୧୦ । ସମସ୍ତ ଐଶ୍ୱର୍ଯ୍ୟ ଶେଷରେ ନଷ୍ଟପ୍ରାୟ କ୍ଷୟ ହେବ । ଯେ ଉପରକୁ ଉଠନ୍ତି ସେ ଶେଷରେ ତଳକୁ ମଧ୍ୟ ପଡ଼ନ୍ତି । ସଂଯୋଗର ଅନ୍ତ ବିଚ୍ଛେଦ ଏବଂ ଜୀବନର ଅନ୍ତ ମରଣ ଅଟେ । ୧୧ । ଅତଏବ ପୁତ୍ର, ପତ୍ନୀ, ମିତ୍ର ବା ଧନ କାହାରି ପ୍ରତି ଅତିମାତ୍ରାରେ ଆସକ୍ତ ହେବା ଉଚିତ ନୁହେଁ; କାରଣ ସେସବୁରୁ ଦିନେହେଲେ ବିଚ୍ଛିନ୍ନ ହେବା ଧ୍ରୁବ ଅଟେ । ୧୨ । ହେ କାକୁତ୍ସ୍ଥ ! ଆପଣ ସ୍ୱୟଂ ନିଜ ମନରେ ନିଜକୁ ଧୈର୍ଯ୍ୟ ଦେବାକୁ ସମର୍ଥ ଅଟନ୍ତି ; କେବଳ ସେତିକି ନୁହେଁ, ଆପଣ ସମସ୍ତ ଜଗତକୁ ମଧ୍ୟ ବୁଝାଇ ପାରନ୍ତି । ସୁତରାଂ ଆପଣଙ୍କ ପକ୍ଷରେ ନିଜର ଶୋକ ନିବାରଣ କରିବା କଷ୍ଟକର ନୁହେଁ । ୧୩ । ହେ ରାଘବ ! ଆପଣଙ୍କ ପରି ଶ୍ରେଷ୍ଠ ପୁରୁଷ ଏପରି ଅବସ୍ଥାରେ ମୋହିତ ହୁଅନ୍ତି ନାହିଁ । ଆପଣ ଯଦି ଏପରି ଦୁଃଖିତ ହୁଅନ୍ତି ତେବେ ଲୋକେ ପୁଣି ଆପଣଙ୍କ ଅପବାଦ ରଟନା କରିବେ । ୧୪ । ଯେଉଁ ଅପବାଦ ଭୟରେ ଆପଣ ସୀତାଙ୍କୁ ତ୍ୟାଗକଲେ ସେହି ଅପବାଦ ପୁଣି ସମଗ୍ର ନଗରରେ ବ୍ୟାପ୍ତ ହୋଇଯିବ,

ସ ତ୍ୱଂ ପୁରୁଷଶାର୍ଦ୍ଦୂଲ ଧୈର୍ଯ୍ୟେଣ ସୁସମାହିତଃ ।
ତ୍ୟଜୈନାଂ ଦୁର୍ବଲାଂ ବୁଦ୍ଧିଂ ସନ୍ତାପଂ ମା କୁରୁଷ୍ୱ ହ । ୧୬ ।
ଏବମୁକ୍ତଃ ସ କାକୁତ୍ସ୍ଥୋ ଲକ୍ଷ୍ମଣେନ ମହାତ୍ମନା ।
ଉବାଚ ପରୟା ପ୍ରୀତ୍ୟା ସୌମିତ୍ରିଂ ମିତ୍ରବତ୍ସଲଃ । ୧୭ ।
ଏବମେତନ୍ନରଶ୍ରେଷ୍ଠ ଯଥା ବଦସି ଲକ୍ଷ୍ମଣ ।
ପରିତୋଷଶ୍ଚ ମେ ବୀର ମମ କାର୍ଯାନୁଶାସନେ । ୧୮ ।
ନିର୍ବୃତିଶ୍ଚାଗତା ସୌମ୍ୟ ସନ୍ତାପଶ୍ଚ ନିରାକୃତଃ ।
ଭବଦ୍‌ବାକ୍ୟୈଃ ସୁରୁଚିରୈରନୁନୀତୋଽସ୍ମି ଲକ୍ଷ୍ମଣ । ୧୯ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ରାମସମାଧାନଂ ନାମ ଦ୍ୱିପଞ୍ଚାଶଃ ସର୍ଗଃ ।

---

ଏଥିରେ ସନ୍ଦେହ ନାହିଁ । ୧୫ । ଅତଏବ ହେ ନରଶାର୍ଦ୍ଦୂଳ ! ଆପଣ ଧୈର୍ଯ୍ୟ ଧାରଣ କରନ୍ତୁ, ମନର ଏ ଦୁର୍ବଳତାକୁ ତ୍ୟାଗ କରନ୍ତୁ ଏବଂ ସନ୍ତାପ କରନ୍ତୁ ନାହିଁ” । ୧୬ । ମହାତ୍ମା ଲକ୍ଷ୍ମଣ ଏହିପ୍ରକାର କହିବା ଉତ୍ତାରୁ ମିତ୍ରବତ୍ସଳ ରାମ ଅତିଶୟ ପ୍ରୀତିସହକାରେ ଲକ୍ଷ୍ମଣଙ୍କୁ କହିଲେ ।୧୭। “ହେ ନରଶ୍ରେଷ୍ଠ ଲକ୍ଷ୍ମଣ ! ତୁମେ ଯାହା କହିଲ, ତାହା ଠିକ । ତୁମେ ଯେ ଜାନକୀଙ୍କୁ ମୋର ଆଦେଶାନୁସାରେ ଛାଡ଼ିଦେଇ ଆସିଲ ତଦ୍ଦ୍ୱାରା ମୋ ମନରେ ବିଶେଷ ସନ୍ତୋଷ ଜାତ ହୋଇଅଛି ।୧୮। ହେ ସୌମ୍ୟ ! ତୁମ କଥା ଶୁଣି ମୋର ମନର ଦୁଃଖ ଏବଂ ସନ୍ତାପ ଦୂର ହୋଇ ଅଛି । ହେ ଲକ୍ଷ୍ମଣ ! ମୁଁ ତୁମ୍ଭର ଏହି ସୁନ୍ଦର କଥାରେ ବିଶେଷ ଅନୁଗୃହୀତ ହୋଇଅଛି” । ୧୯ ।

---

# ତ୍ରିପଞ୍ଚାଶଃ ସର୍ଗଃ

## ନୃଗଶାପକଥନମ୍

ଲକ୍ଷ୍ମଣସ୍ୟ ତୁ ତଦ୍ବାକ୍ୟଂ ନିଶମ୍ୟ ପରମାଦ୍ଭୁତମ୍ ।
ସୁପ୍ରୀତଶ୍ଚାଭବଦ୍ରାମୋ ବାକ୍ୟମେତଦୁବାଚ ହ । ୧ ।
ଦୁର୍ଲଭସ୍ତ୍ୱୀଦୃଶୋ ବନ୍ଧୁରସ୍ମିନ୍ କାଲେ ବିଶେଷତଃ ।
ଯାଦୃଶସ୍ତ୍ୱଂ ମହାବୁଦ୍ଧେ ମମ ସୌମ୍ୟ ମନୋଽନୁଗଃ । ୨ ।
ଯଚ୍ଚ ମେ ହୃଦୟେ କିଂଚିଦ୍ବର୍ତ୍ତତେ ଶୁଭଲକ୍ଷଣ ।
ତନ୍ନିଶାମୟ ଚ ଶ୍ରୁତ୍ୱା କୁରୁଷ୍ୱ ବଚନଂ ମମ । ୩ ।
ଚତ୍ୱାରୋ ଦିବସାଃ ସୌମ୍ୟ କାର୍ଯଂ ପୌରଜନସ୍ୟ ବୈ ।
ଅକୁର୍ବାଣସ୍ୟ ସୌମିତ୍ରେ ତନ୍ମେ ମର୍ମାଣି କୃନ୍ତତି । ୪ ।
ଆହୂୟନ୍ତାଂ ପ୍ରକୃତୟଃ ପୁରୋଧା ମନ୍ତ୍ରିଣସ୍ତଥା ।
କାର୍ଯାର୍ଥିନଶ୍ଚ ପୁରୁଷାଃ ସ୍ତ୍ରିୟୋ ବା ପୁରୁଷର୍ଷଭ । ୫ ।
ପୌରକାର୍ଯାଣି ଯୋ ରାଜା ନ କରୋତି ଦିନେ ଦିନେ ।
ସଂବୃତେ ନରକେ ଘୋରେ ପତିତୋ ନାତ୍ର ସଂଶୟଃ । ୬ ।

---

## ୫୩ଶ ସର୍ଗ

### ( ନୃଗରାଜାଙ୍କ ଶାପବର୍ଣ୍ଣନା )

ଲକ୍ଷ୍ମଣଙ୍କର ସେହି ପରମ ଅଦ୍ଭୁତ ବାକ୍ୟ ଶୁଣି ରାମ ଅତିଶୟ ପ୍ରସନ୍ନ ହେଲେ ଏବଂ କହିଲେ ।୧। "ହେ ସୌମ୍ୟ ! ଏତେବେଳେ ତୁମପରି ମହାବୁଦ୍ଧିମାନ୍ ଏବଂ ମୋର ମନ ଅନୁସାରେ କାର୍ଯ୍ୟ କରିବା ବନ୍ଧୁ ମିଳିବା ଅତିଶୟ ଦୁର୍ଲଭ ।୨। ହେ ଶୁଭଲକ୍ଷଣସମ୍ପନ୍ନ ଲକ୍ଷ୍ମଣ ! ଏବେ ମୋ ମନରେ ଯାହା ଅଛି ସେ କଥା ଶୁଣ ଏବଂ ତାହା ଶୁଣି ତଦନୁସାରେ କାର୍ଯ୍ୟ କର । ୩ । ବର୍ତ୍ତମାନ ଚାରିଦିନ ହୋଇଗଲା; ମୁଁ ପୁରବାସୀମାନଙ୍କର କୌଣସି କାର୍ଯ୍ୟ କରିପାରିଲି ନାହିଁ, ସୁତରାଂ ହେ ସୌମ୍ୟ ! ସେହିହେତୁ ମୋର ମର୍ମସ୍ଥଳ ବିଦୀର୍ଣ୍ଣ ହୋଇଯାଉଅଛି । ୪ । ହେ ନରଶ୍ରେଷ୍ଠ ! ତୁମେ କାର୍ଯ୍ୟାର୍ଥୀ, ପ୍ରଜାମାନଙ୍କୁ ସେ ପୁରୁଷ ହୁଅନ୍ତୁ ବା ସ୍ତ୍ରୀ ହୁଅନ୍ତୁ, ଏବଂ ପୁରୋହିତଙ୍କୁ ତଥା ମନ୍ତ୍ରୀମାନଙ୍କୁ ଡକାଅ । ୫ । କାରଣ ଯେଉଁ ରାଜା ପ୍ରତିଦିନ ପୁରବାସୀମାନଙ୍କର କାର୍ଯ୍ୟ ନ କରେ ସେ ସଂବୃତ ନାମକ ଘୋର ନରକରେ ପତିତ ହୁଏ, ଏଥିରେ ସନ୍ଦେହ ନାହିଁ । ୬ । ଶୁଣାଅଛି ଯେ ପୂର୍ବ କାଳରେ ନୃଗ ନାମରେ

ଶ୍ରୂୟତେ ହି ପୁରା ରାଜା ନୃଗୋ ନାମ ମହାଯଶାଃ ।
ବଭୂବ ପୃଥିବୀପାଲୋ ବ୍ରହ୍ମଣ୍ୟଃ ସତ୍ୟବାକ୍ ଶୁଚିଃ । ୭ ।
ସ କଦାଚିଦ୍ଗବାଂ କୋଟୀଃ ସବତ୍ସାଃ ସ୍ୱର୍ଣ୍ଣଭୂଷିତାଃ ।
ନୃଦେବୋ ଭୂମିଦେବେଭ୍ୟଃ ପୁଷ୍କରେଷୁ ଦଦୌ ନୃପଃ । ୮ ।
ତତଃ ସଙ୍ଗାଦ୍ଗତା ଧେନୁଃ ସବତ୍ସା ସ୍ପର୍ଶିତାନଘ ।
ବ୍ରାହ୍ମଣସ୍ୟାହିତାଗ୍ନେଶ୍ଚ ଦରିଦ୍ରସ୍ୟୋଞ୍ଛବର୍ତ୍ତିନଃ । ୯ ।
ସ ନଷ୍ଟାଂ ଗାଂ କ୍ଷୁଧାର୍ତ୍ତୋ ବୈ ଅନ୍ୱିଷ୍ୟଂସ୍ତତ୍ର ତତ୍ର ଚ ।
ନାପଶ୍ୟତ୍ ସର୍ବରାଜ୍ୟେଷୁ ସମ୍ବତ୍ସରଗଣାନ୍ ବହୂନ୍ । ୧୦ ।
ତତଃ କନଖଲଂ ଗତ୍ୱା ଜୀର୍ଣ୍ଣବତ୍ସାଂ ନିରାମୟାମ୍ ।
ଦଦର୍ଶ ଗାଂ ସ୍ୱକାଂ ଧେନୁଂ ବ୍ରାହ୍ମଣସ୍ୟ ନିବେଶନେ । ୧୧ ।
ଅଥ ତାଂ ନାମଧେୟେନ ସ୍ୱକେନୋବାଚ ସ ଦ୍ୱିଜଃ ।
ଆଗଚ୍ଛ ଶବଲେତ୍ୟେବଂ ସା ତୁ ଶୁଶ୍ରାବ ଗୌଃ ସ୍ୱରମ୍ । ୧୨ ।
ତସ୍ୟ ତୁ ସ୍ୱରମାଜ୍ଞାୟ କ୍ଷୁଧାର୍ତ୍ତସ୍ୟ ଦ୍ୱିଜସ୍ୟ ବୈ ।
ଅନ୍ୱଗାତ୍ ପୃଷ୍ଠତଃ ସା ଗୌର୍ଗଚ୍ଛନ୍ତଂ ପାବକୋପମମ୍ । ୧୩ ।

---

ଜଣେ ରାଜା ଥିଲେ । ସେ ବଡ଼ ଯଶସ୍ୱୀ, ବ୍ରାହ୍ମଣଭକ୍ତ, ସତ୍ୟବାଦୀ, ଶୁଚିମନ୍ତ ଏବଂ ପ୍ରଜାପାଳକ ଥିଲେ ।୭। ସେ ଥରେ ପୁଷ୍କରତୀର୍ଥରେ ବତ୍ସାସହିତ ସୁବର୍ଣ୍ଣଭୂଷିତ ଏକକୋଟି ଗାଈ ବ୍ରାହ୍ମଣମାନଙ୍କୁ ଦାନ କରିଥିଲେ । ୮ । ହେ ଅନଘ ! ଯେଉଁ ଗାଈମାନଙ୍କୁ ରାଜା ଦାନ ନିମନ୍ତେ ଆଣାଇଥିଲେ, ସେମାନଙ୍କ ମଧ୍ୟରେ ଜଣେ ଦରିଦ୍ର ଅଗ୍ନିହୋତ୍ରୀ ଏବଂ ଉଞ୍ଛବୃତ୍ତିଦ୍ୱାରା ଜୀବନ ନିର୍ବାହ କରୁଥିବା ବ୍ରାହ୍ମଣଙ୍କର ଗୋଟିଏ ଗାଈ ଭୁଲରେ ଆସି ମିଶିଯାଇଥିଲା । ୯ । ସେହି ବ୍ରାହ୍ମଣ କ୍ଷୁଧା ତୃଷାରେ ପୀଡ଼ିତ ହୋଇ ସେ ଗାଈକୁ ଏଣେତେଣେ ଖୋଜିବାକୁ ଲାଗିଲେ । ସେହି ବ୍ରାହ୍ମଣ ଅନେକ ବର୍ଷ ପର୍ଯ୍ୟନ୍ତ ସମଗ୍ର ରାଜ୍ୟରେ ଖୋଜି ଖୋଜି ସେ ଗାଈର ସନ୍ଧାନ ପାଇଲେ ନାହିଁ । ୧୦ । ଏହିପରି ଖୋଜି ଖୋଜି ସେ ଯାଇ କନଖଲ ନଗରରେ ପହଞ୍ଚିଲେ । ସେଠାରେ ସେ ଏକ ବ୍ରାହ୍ମଣର ଘରେ ସେ ଗାଈକୁ ନିରୁଗ୍ଣ ଅବସ୍ଥାରେ ଦେଖିଲେ, ମାତ୍ର ତାର ବାଛୁରିଟି ଘର ଶୁଖିଯାଇଥିଲା । ୧୧ । ସେହି ବ୍ରାହ୍ମଣ ସେ ଗାଈକୁ ତାହାର ନିଜ ନାମ ଧରି ଡାକିଲେ, "ହେ ଶବଳେ ! ଆସ ।" ଗାଈ ସେ ବ୍ରାହ୍ମଣଙ୍କ ଡାକ ଶୁଣିପାରିଲା । ୧୨ । କ୍ଷୁଧାର୍ତ୍ତ ବ୍ରାହ୍ମଣଙ୍କ ସ୍ୱର ଜାଣିପାରି ଶବଳା ଅଗ୍ନିସଦୃଶ ତେଜସ୍ୱୀ ସେହି ବ୍ରାହ୍ମଣଙ୍କ ପଛେ ପଛେ ଚାଲିଲା । ୧୩ ।

ଯୋଽପି ପାଲୟତେ ବିପ୍ରଃ ସୋଽପି ଗାମନ୍ୱଗାଦ୍ଭ୍ରୁତମ୍ ।
ଗତ୍ୱା ତମୃଷିମାଚଷ୍ଟ ମମ ଗୌରିତି ସତ୍ୱରମ୍ । ୧୪ ।
ସ୍ପର୍ଶିତା ରାଜସିଂହେନ ମମ ଦତ୍ତା ନୃଗେଣ ହି ।
ତୟୋର୍ବ୍ରାହ୍ମଣୟୋର୍ବାଦୋ ମହାନାସୀଦ୍ୱିପଶ୍ଚିତୋଃ । ୧୫ ।
ବିବଦନ୍ତୌ ତତୋଽନ୍ୟୋନ୍ୟଂ ଦାତାରମଭିଜଗ୍ମତୁଃ ।
ତୌ ରାଜଭବନଦ୍ୱାରି ଅପ୍ରାପ୍ୟ ନୃଗଦର୍ଶନମ୍ । ୧୬ ।
ଅହୋରାତ୍ରାଣ୍ୟନେକାନି ବସନ୍ତୌ କ୍ରୋଧମୀୟତୁଃ ।
ଊଚତୁଶ୍ଚ ମହାତ୍ମାନୌ ତାବୁଭୌ ଦ୍ୱିଜସତ୍ତମୌ ।
କ୍ରୁଦ୍ଧୌ ପରମସଂତପ୍ତୌ ବାକ୍ୟଂ ଘୋରାଭିସଂହିତମ୍ । ୧୭ ।
ଅର୍ଥିନାଂ କାର୍ଯସିଦ୍ଧ୍ୟର୍ଥଂ ଯସ୍ମାତ୍ତ୍ୱଂ ନୈଷି ଦର୍ଶନମ୍ ।
ଅଦୃଶ୍ୟଃ ସର୍ବଭୂତାନାଂ କୃକଲାସୋ ଭବିଷ୍ୟସି । ୧୮ ।
ବହୂନି ବର୍ଷସହସ୍ରାଣି ବହୂନି ବର୍ଷଶତାନି ଚ ।
ଶ୍ୱଭ୍ରେଽସ୍ମିନ୍ କୃକଲାସୋ ବୈ ଦୀର୍ଘକାଲଂ ବସିଷ୍ୟସି । ୧୯ ।
ଉତ୍ପତ୍ସ୍ୟତେ ହି ଲୋକେଽସ୍ମିନ୍ ଯଦୂନାଂ କୀର୍ତ୍ତିବର୍ଧନଃ ।
ବାସୁଦେବ ଇତି ଖ୍ୟାତୋ ଲୋକେ ପୁରୁଷବିଗ୍ରହଃ । ୨୦ ।

---

ଯେଉଁ ବ୍ରାହ୍ମଣ ସେ ଗାଈକୁ ରଖି ପାଳୁଥିଲେ ସେ ମଧ୍ୟ ସାଙ୍ଗେ ସାଙ୍ଗେ ତାର ପଛେ
ଦୌଡ଼ିଲେ ଏବଂ ଋଷିଙ୍କ ନିକଟରେ ପହଞ୍ଚି ତାଙ୍କୁ କହିଲେ, "ଏ ଗାଈ
ମୋର ।୧୪। ଏ ଗାଈକୁ ରାଜସିଂହ ନୃଗ ମୋତେ ଦାନ କରିଛନ୍ତି" । ଏହି ପ୍ରକାରେ
ସେ ଦୁଇ ବ୍ରାହ୍ମଣଙ୍କ ମଧ୍ୟରେ ଘୋର କଳହ ହେବାକୁ ଲାଗିଲା । ୧୫ । ସେ ଦୁହେଁ
ପରସ୍ପର ବିବାଦ କରି ରାଜା ନୃଗଙ୍କ ରାଜଭବନ ଦ୍ୱାରରେ ଯାଇ
ଉପସ୍ଥିତ ହେଲେ, ମାତ୍ର ରାଜଭବନ ଭିତରକୁ ଯିବାକୁ ରାଜାଙ୍କର ଅନୁମତି ପାଇଲେ
ନାହିଁ । ୧୬ । ସେ ଦୁହେଁ ବହୁ ଦିନ ଓ ବହୁ ରାତି ସେ ରାଜଦ୍ୱାରରେ ଅପେକ୍ଷା
କଲାପରେ ମଧ୍ୟ ରାଜାଙ୍କ ଦେଖା ନ ପାଇ ଅତ୍ୟନ୍ତ କ୍ରୁଦ୍ଧ ହୋଇ ଏହି କଠୋର ଶାପ
ଦେଲେ । ୧୭ । "ହେ ରାଜନ୍ ! ତୁମେ ଯେହେତୁ ପ୍ରାର୍ଥୀମାନଙ୍କର କାର୍ଯ୍ୟସିଦ୍ଧି
ନିମନ୍ତେ ସେମାନଙ୍କୁ ଦେଖା ଦେଲ ନାହିଁ, ସୁତରାଂ ତୁମେ ଗୋଟିଏ ଏଣ୍ଡୁଅ ହୋଇ-
ଯିବ ଏବଂ ତୁମ୍ଭଙ୍କୁ କୌଣସି ପ୍ରାଣୀ ଦେଖିପାରିବେ ନାହିଁ । ୧୮ । ବହୁ ସହସ୍ର ଏବଂ
ବହୁ ଶତବର୍ଷ ତୁମେ ଏକ ଗହ୍ୱର ମଧ୍ୟରେ ଏଣ୍ଡୁଅ ହୋଇ ବାସ କରିବ । ୧୯ । ଏ
ଜଗତରେ ବିଷ୍ଣୁ ପୁରୁଷରୂପ ଧରି ଯଦୁବଂଶର କୀର୍ତ୍ତିବର୍ଦ୍ଧନକାରୀ ବାସୁଦେବ
ନାମରେ ଜନ୍ମଗ୍ରହଣ କରିବେ । ୨୦ । ସେ ତୁମକୁ ଏ ଶାପରୁ ମୁକ୍ତ କରିବେ

ସ ତେ ମୋକ୍ଷୟିତା ରାଜଂସ୍ତସ୍ମାଚ୍ଛାପାଦ୍ଭବିଷ୍ୟତି ।
କୃତା ଚ ତେନ କାଲେନ ନିଷ୍କୃତିସ୍ତେ ଭବିଷ୍ୟତି । ୨୧ ।
ଭୂଭାରହରଣାର୍ଥଂ ହି ନରନାରାୟଣାବୁଭୌ ।
ଉତ୍ପତ୍ସ୍ୟେତେ ମହାବୀର୍ଯ୍ୟୌ କଲୌ ଯୁଗ ଉପସ୍ଥିତେ । ୨୨ ।
ଏବଂ ତୌ ଶାପମୁତ୍ସୃଜ୍ୟ ବ୍ରାହ୍ମଣୌ ବିଗତଜ୍ୱରୌ ।
ତାଂ ଗାଂ ହି ଦୁର୍ବଲାଂ ବୃଦ୍ଧାଂ ଦଦତୁର୍ବ୍ରାହ୍ମଣାୟ ବୈ । ୨୩ ।
ଏବଂ ସ ରାଜା ତଂ ଶାପମୁପଭୁଙ୍‌କ୍ତେ ସୁଦାରୁଣମ୍ ।
କାର୍ଯ୍ୟାର୍ଥିନାଂ ବିମର୍ଦୋ ହି ରାଜ୍ଞାଂ ଦୋଷାୟ କଳ୍ପତେ । ୨୪ ।
ତଚ୍ଛୀଘ୍ରଂ ଦର୍ଶନଂ ମହ୍ୟମଭିବର୍ତ୍ତନ୍ତୁ କାର୍ଯ୍ୟିଣଃ ।
ସୁକୃତସ୍ୟ ହି କାର୍ଯ୍ୟସ୍ୟ ଫଳଂ ନାବୈତି ପାର୍ଥିବଃ । ୨୫ ।
ତସ୍ମାଦ୍‌ଗଚ୍ଛ ପ୍ରତୀକ୍ଷସ୍ୱ ସୌମିତ୍ରେ କାର୍ଯ୍ୟବାନ୍ ଜନଃ । ୨୬ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଉତ୍ତରକାଣ୍ଡେ ନୃଗଶାପକଥନଂ ନାମ ତ୍ରିପଞ୍ଚାଶଃ ସର୍ଗଃ ।

---

ଏବଂ ତୁମେ ସେଥିରୁ ଉଦ୍ଧାର ହେବ । ୨୧ । କଳିଯୁଗ ଆରମ୍ଭରେ ଭୂମିର ଭାର ହରଣ କରିବା ପାଇଁ ମହାବଳୀ ନର ଓ ନାରାୟଣ ଅବତାର ଗ୍ରହଣ କରିବେ” । ୨୨ । ଏହି ପ୍ରକାରେ ମହାରାଜ ନୃଗଙ୍କୁ ଶାପ ଦେଇ ସେ ଦୁଇ ବ୍ରାହ୍ମଣ ଶାନ୍ତ ହେଲେ । ଅନନ୍ତର ସେ ଦୁହେଁ ସେହି ଦୁର୍ବଳା ବୃଦ୍ଧା ଗାଈକୁ ଅନ୍ୟ ଜଣେ ବ୍ରାହ୍ମଣଙ୍କୁ ଦେଇ-ଦେଲେ” । ୨୩ । ରାମ କହିଲେ, “ରାଜା ନୃଗ ଏହି ପ୍ରକାରେ ସେହି ଦାରୁଣ ଶାପର ଫଳ ଭୋଗ କରୁଅଛନ୍ତି । କାର୍ଯ୍ୟାର୍ଥୀ ଲୋକମାନଙ୍କୁ ଅବମାନିତ କରିବା ରାଜା ପକ୍ଷରେ ଦୋଷାବହ ଅଟେ । ୨୪ । ଅତଏବ କାର୍ଯ୍ୟାର୍ଥୀମାନଙ୍କୁ ଶୀଘ୍ର ମୋ ସହିତ ଦେଖାକରାଅ । ଉତ୍ତମ କାର୍ଯ୍ୟର ଫଳ ରାଜାଙ୍କୁ ନିଶ୍ଚୟ ପ୍ରାପ୍ତ ହୋଇଥାଏ । ଅତଏବ ହେ ଲକ୍ଷ୍ମଣ ! ତୁମେ ଯାଇ ଦ୍ୱାରଦେଶରେ କାର୍ଯ୍ୟାର୍ଥୀମାନଙ୍କୁ ଅପେକ୍ଷା କର” । ୨୫-୨୬ ।

# ଚତୁଷ୍ପଞ୍ଚାଶଃ ସର୍ଗଃ

## ନୃଗଶ୍ୱଭ୍ରପ୍ରବେଶଃ

ରାମସ୍ୟ ଭାଷିତଂ ଶ୍ରୁତ୍ୱା ଲକ୍ଷ୍ମଣଃ ପରମାର୍ଥବିତ୍ ।
ଉବାଚ ପ୍ରାଞ୍ଜଳିବାକ୍ୟଂ ରାଘବଂ ଦୀପ୍ତତେଜସମ୍ । ୧ ।
ଅଳ୍ପାପରାଧେ କାକୁତ୍ସ୍ଥ ଦ୍ୱିଜାଭ୍ୟାଂ ଶାପ ଈଦୃଶଃ ।
ମହାନ୍ନୃଗସ୍ୟ ରାଜର୍ଷେର୍ୟମଦଣ୍ଡ ଇବାପରଃ । ୨ ।
ଶ୍ରୁତ୍ୱା ତୁ ଶାପସଂଯୁକ୍ତମାତ୍ମାନଂ ପୁରୁଷର୍ଷଭ ।
କିମୁବାଚ ନୃଗୋ ରାଜା ଦ୍ୱିଜୌ କ୍ରୋଧସମନ୍ୱିତୌ । ୩ ।
ଲକ୍ଷ୍ମଣେନୈବମୁକ୍ତସ୍ତୁ ରାଘବଃ ପୁନରବ୍ରବୀତ୍ ।
ଶୃଣୁ ସୌମ୍ୟ ଯଥାପୂର୍ବଂ ସ ରାଜା ଶାପବିକ୍ଷତଃ । ୪ ।
ଅଥାଧ୍ୱନି ଗତୌ ବିପ୍ରୌ ବିଜ୍ଞାୟ ସ ନୃଗସ୍ତଦା ।
ଆହୂୟ ମନ୍ତ୍ରିଣଃ ସର୍ବାନ୍ନୈଗମାନ୍ ସପୁରୋଧସଃ । ୫ ।
ତାନୁବାଚ ନୃଗୋ ରାଜା ସର୍ବାଶ୍ଚ ପ୍ରକୃତୀସ୍ତଥା ।
ଦୁଃଖେନ ସୁସମାବିଷ୍ଟଃ ଶ୍ରୂୟତାଂ ମେ ସମାହିତୈଃ । ୬ ।

---

## ୫୪ଶ ସର୍ଗ

### ( ନୃଗଙ୍କର ଗର୍ତ୍ତରେ ପ୍ରବେଶ )

ପରମାର୍ଥବେତ୍ତା ଲକ୍ଷ୍ମଣ ରାମଙ୍କ କଥା ଶୁଣି ଦୀପ୍ତତେଜା ରାମଙ୍କୁ ହାତ ଯୋଡ଼ି କହିଲେ । ୧ । "ହେ କାକୁତ୍ସ୍ଥ ! ସାମାନ୍ୟ ଅପରାଧରେ ସେହି ବ୍ରାହ୍ମଣ ଦୁହେଁ ରାଜା ନୃଗଙ୍କୁ ଯମଦଣ୍ଡ ସଦୃଶ ଏପରି ଶାପ ଦେଲେ ? ।୨। ହେ ପୁରୁଷଶ୍ରେଷ୍ଠ ! ରାଜା ନୃଗ ଏ ଶାପ କଥା ଶୁଣି ସେ ଦୁଇ କ୍ରୁଦ୍ଧ ବ୍ରାହ୍ମଣଙ୍କୁ କ'ଣ କହିଲେ ?" । ୩ । ଲକ୍ଷ୍ମଣ ଏହିପରି ପଚାରିବାରୁ ରାମ ପୁଣି କହିଲେ, "ହେ ସୌମ୍ୟ ! ଶାପ ଶୁଣିବା ପରେ ରାଜା ନୃଗ କ'ଣ କଲେ ସେ କଥା ମୁଁ କହୁଛି ଶୁଣ । ୪ । ସେ ଦୁଇ ବ୍ରାହ୍ମଣ ନିଜ ବାଟରେ ଚାଲିଯିବା ପରେ ରାଜା ନୃଗ ନିଜର ପୁରୋହିତ, ମନ୍ତ୍ରୀ, ଓ ମୁଖ୍ୟ ମହାଜନମାନଙ୍କୁ ଡକାଇ ସେମାନଙ୍କୁ ଏବଂ ସବୁ ପ୍ରଜାଙ୍କୁ ଦୁଃଖିତ ହୋଇ କହିଲେ, 'ଆପଣମାନେ ସମସ୍ତେ ସାବଧାନ ହୋଇ ମୋ କଥା

ନାରଦଃ ପର୍ବତଶ୍ଚୈବ ମମ ଦତ୍ତ୍ୱା ମହଦ୍ଭୟମ୍ ।
ଗତୌ ତ୍ରିଭୁବନଂ ଭଦ୍ରୌ ବାୟୁଭୂତାବନିନ୍ଦିତୌ । ୭ ।
କୁମାରୋଽୟଂ ବସୁର୍ନାମ ସ ଦେବୋଽଦ୍ୟାଭିଷିଚ୍ୟତାମ୍ ।
ଶ୍ୱଭ୍ରଂ ଚ ଯତ୍ନ୍ ସୁଖସ୍ପର୍ଶଂ କ୍ରିୟତାଂ ଶିଳ୍ପିଭିର୍ମମ । ୮ ।
ଯତ୍ରାହଂ ସଂକ୍ଷୟିଷ୍ୟାମି ଶାପଂ ବ୍ରାହ୍ମଣନିଃସୃତମ୍ ।
ବର୍ଷଘ୍ନମେକଂ ଶ୍ୱଭ୍ରଂ ତୁ ହିମଘ୍ନମପରଂ ତଥା । ୯ ।
ଗ୍ରୀଷ୍ମଘ୍ନଂ ତୁ ସୁଖସ୍ପର୍ଶମେକଂ କୁର୍ବନ୍ତୁ ଶିଳ୍ପିନଃ ।
ଫଳବନ୍ତଶ୍ଚ ଯେ ବୃକ୍ଷାଃ ପୁଷ୍ପବତ୍ୟଶ୍ଚ ଯା ଲତାଃ । ୧୦ ।
ବିରୋପ୍ୟନ୍ତାଂ ବହୁବିଧାଶ୍ଛାୟାବନ୍ତଶ୍ଚ ଗୁଳ୍ମିନଃ ।
କ୍ରିୟତାଂ ରମଣୀୟଂ ଚ ଶ୍ୱଭ୍ରାଣାଂ ସର୍ବତୋ ଦିଶମ୍ । ୧୧ ।
ସୁଖମତ୍ର ବସିଷ୍ୟାମି ଯାବତ୍ କାଲସ୍ୟ ପର୍ଯ୍ୟୟଃ ।
ପୁଷ୍ପାଣି ଚ ସୁଗନ୍ଧୀନି କ୍ରିୟନ୍ତାଂ ତେଷୁ ନିତ୍ୟଶଃ । ୧୨ ।
ପରିବାର୍ଯ୍ୟ ଯଥା ମେ ସ୍ୟୁରଧ୍ୟର୍ଧଂ ଯୋଜନଂ ତଥା ।
ଏବଂ କୃତ୍ୱା ବିଧାନଂ ସ ସଂନ୍ଦିଦେଶ ବସୁଂ ତଦା । ୧୩ ।

---

ଶୁଣନ୍ତୁ । ୫-୭ । ନାରଦ ଓ ପର୍ବତ ଋଷି ସେ ଦୁଇ ବ୍ରାହ୍ମଣ ଦେଇଥିବା ଭୟାନକ ଶାପ କଥା ମୋତେ ଶୁଣାଇ ପବନପରି ବେଗରେ ବ୍ରହ୍ମଲୋକକୁ ଚାଲିଗଲେ । ୭ । ରାଜକୁମାର ବସୁକୁ ବର୍ତ୍ତମାନ ଅଭିଷିକ୍ତ କରାଯାଉ । ଶିଳ୍ପୀମାନେ ମୋ ପାଇଁ ଏକ ସୁନ୍ଦର ସୁଖଦାୟକ ଗର୍ତ୍ତ ତିଆରି କରନ୍ତୁ ।୮। ସେହି ଗର୍ତ୍ତରେ ପଡ଼ି ପଡ଼ି ମୁଁ ବ୍ରାହ୍ମଣ ଦେଇଥିବା ଶାପ ଭୋଗ କରିବି । ମୋ ପାଇଁ ତିନିଗୋଟି ଗର୍ତ୍ତ ତିଆରି କରାଯାଉ । ଗୋଟିକରେ ମୁଁ ଯେପରି ସୁଖରେ ବର୍ଷାକାଳ କଟାଇବି, ଦ୍ୱିତୀୟଟି ଶୀତକାଳର ଉପଯୋଗୀ ହେବ ଏବଂ ତୃତୀୟଟି ଗ୍ରୀଷ୍ମ ଋତୁର କଷ୍ଟ ଦୂର କରିବା ଭଳି ହେବ । ସେହିଠାରେ ଫଳଯୁକ୍ତ ବୃକ୍ଷ, ପୁଷ୍ପିତ ଲତା ଏବଂ ଛାୟାପ୍ରଦ ବୁଦାମାନ ଲଗାଇ ଦିଆହେଉ । ସେହି ଗର୍ତ୍ତଗୁଡ଼ିକୁ ଚତୁର୍ଦ୍ଦିଗରୁ ରମଣୀୟ କରି ତିଆରି କରା-ହେଉ ।୯-୧୧। ସେହିଠାରେ ମୁଁ ଶାପ ଶେଷ ହେବା ପର୍ଯ୍ୟନ୍ତ ସୁଖରେ ରହିପାରିବି । ସେହି ଗର୍ତ୍ତର ଚାରିଆଡ଼େ ଦୁଇକୋଶ ପର୍ଯ୍ୟନ୍ତ ସୁଗନ୍ଧ ପୁଷ୍ପର ବୃକ୍ଷ ଲଗାଇ ଦିଆଯାଉ' । ଏହି ପ୍ରକାରେ ସବୁ କଥା ବୁଝାଇ ଏବଂ ରାଜକୁମାର ବସୁଙ୍କୁ ରାଜ-ସିଂହାସନରେ ବସାଇ ରାଜା ନୃଗ ତାଙ୍କୁ କହିଲେ । ୧୨-୧୩ । 'ହେ ପୁତ୍ର ! ତୁ

ଧର୍ମନିତ୍ୟଃ ପ୍ରଜାଃ ପୁତ୍ର କ୍ଷତ୍ରଧର୍ମେଣ ପାଳୟ ।
ପ୍ରତ୍ୟକ୍ଷଂ ତେ ଯଥା ଶାପୋ ଦ୍ୱିଜାଭ୍ୟାଂ ମୟି ପାତିତଃ ।୧୪।
ନରଶ୍ରେଷ୍ଠ ସରୋଷାଭ୍ୟାମପରାଧେଽପି ତାଦୃଶେ ।
ମା କୃଥାସ୍ତ୍ୱନୁସଂତାପଂ ମତ୍କୃତେଽପି ନରର୍ଷଭ । ୧୫ ।
କୃତାନ୍ତଃ କୁଶଲଃ ପୁତ୍ର ଯେନାସ୍ମି ବ୍ୟସନୀକୃତଃ ।
ପ୍ରାପ୍ତବ୍ୟାନ୍ୟେବ ପ୍ରାପ୍ନୋତି ଗନ୍ତବ୍ୟାନ୍ୟେବ ଗଚ୍ଛତି । ୧୬ ।
ଲବ୍ଧବ୍ୟାନ୍ୟେବ ଲଭତେ ଦୁଃଖାନି ଚ ସୁଖାନି ଚ ।
ପୂର୍ବେ ଜାତ୍ୟନ୍ତରେ ବତ୍ସ ମୟା ପାପଂ ମହତ୍ କୃତମ୍ । ୧୭ ।
ତସ୍ମାତ୍ ପ୍ରାପ୍ତଂ ମୟା ପୁତ୍ର ମା ବିଷାଦଂ କୁରୁଷ୍ୱ ହ ।
ଏବମୁକ୍ତ୍ୱା ନୃଗସ୍ତତ୍ର ସୁତଂ ରାଜା ମହାଯଶାଃ ।
ଶ୍ୱଭ୍ରଂ ଜଗାମ ସୁକୃତଂ ବାସାୟ ପୁରୁଷର୍ଷଭ । ୧୮ ।
ଏବଂ ପ୍ରବିଶ୍ୟୈବ ନୃପସ୍ତଦାନୀମ୍
ଶ୍ୱଭ୍ରଂ ମହାରତ୍ନବିଭୂଷିତଂ ତତ୍ ।
ସଂପାଦୟାମାସ ତଦା ମହାତ୍ମା
ଶାପଂ ଦ୍ୱିଜାଭ୍ୟାଂ ହି ରୁଷା ବିମୁକ୍ତମ୍ । ୧୯ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ନୃଗଶ୍ୱଭ୍ରପ୍ରବେଶୋ ନାମ ଚତୁଷ୍ପଞ୍ଚାଶଃ ସର୍ଗଃ ।

---

ସଦାସର୍ବଦା ଧର୍ମପରାୟଣ ହୋଇ କ୍ଷତ୍ରିୟଧର୍ମ ଅନୁସାରେ ପ୍ରଜାମାନଙ୍କୁ ପାଳନ କରିବୁ । ତୁ ନିଜ ଆଖିରେ ଦେଖିଲୁ, ବ୍ରାହ୍ମଣ ଦୁହେଁ ମୋ ଉପରେ କପରି ଶାପ ପକାଇଲେ । ୧୪। ହେ ନରଶ୍ରେଷ୍ଠ । ମୋର ଅପରାଧ ଯେପରି ଥିଲା, ସେହିପରି ସେ ବ୍ରାହ୍ମଣ ଦୁହେଁ କ୍ରୁଦ୍ଧ ହୋଇ ମୋତେ ଶାପ ଦେଲେ । ଅତଏବ ତୁ ମୋ ଲାଗି ସନ୍ତାପ କର ନାହିଁ । ୧୫ । ହେ ପୁତ୍ର ! ଈଶ୍ୱର ସବୁ କିଛି କରିବାରେ ନିପୁଣ ଅଟନ୍ତି । ସେ ମୋତେ ଏ ଦୁର୍ଦ୍ଦଶାରେ ପକାଇଲେ । ଲୋକ ଯାହା ପାଇବାର ଥାଏ ତାହା ନିଶ୍ଚୟ ପାଏ ଏବଂ ତାର ଯେଉଁ ବାଟରେ ଯିବାର ଥାଏ ସେ ସେହି ବାଟରେ ଯାଏ ।୧୬। ସୁଖ ହେଉ,ଦୁଃଖ ହେଉ, ଯାହା ଭୋଗିବାକୁ ଅଛି ତାହା ଅବଶ୍ୟ ଭୋଗ କରିବାକୁ ହେବ । ମୁଁ ପୂର୍ବଜନ୍ମରେ ମହାପାପ କରିଥିଲି । ସେଥିଲାଗି ଏ ଦୁଃଖ ପାଇଲି । ଅତଏବ ହେ ବତ୍ସ ! ତୁ ଦୁଃଖ କର ନାହିଁ” ।୧୭। ହେ ପୁରୁଷଶ୍ରେଷ୍ଠ ଲକ୍ଷ୍ମଣ ଏହିପ୍ରକାରେ ଯଶସ୍ୱୀ ରାଜା ନୃଗ ନିଜ ପୁତ୍ରକୁ ବୁଝାଇ ସେହି ସୁନିର୍ମିତ ଗର୍ତ୍ତ ମଧ୍ୟରେ ରହିବା ପାଇଁ ଚାଲିଗଲେ ।୧୮। ବହୁ ରତ୍ନବିଭୂଷିତ ସେହି ମହାଗର୍ତ୍ତ ମଧ୍ୟରେ ରାଜା ନୃଗ ପ୍ରବେଶ କରି ଏବଂ ସେହିଠାରେ ବାସକରି, ସେହି କୁପିତ ବ୍ରାହ୍ମଣଦ୍ୱୟଙ୍କର ଶାପର ଫଳ ଭୋଗକଲେ” । ୧୯ ।

# ପଞ୍ଚପଞ୍ଚାଶଃ ସର୍ଗଃ

## ନିମିବସିଷ୍ଠଶାପଃ

ଏଷ ତେ ନୃଗଶାପସ୍ୟ ବିସ୍ତରୋଽଭିହିତୋ ମୟା ।
ଯଦ୍ୟସ୍ତି ଶ୍ରବଣେ ଶ୍ରଦ୍ଧା ଶୃଣୁଷ୍ୱେହାପରାଂ କଥାମ୍ ।
ଏବମୁକ୍ତସ୍ତୁ ରାମେଣ ସୌମିତ୍ରିଃ ପୁନରବ୍ରବୀତ୍ ।
ତୃପ୍ତିରାଶ୍ଚର୍ଯ୍ୟଭୂତାନାଂ କଥାନାଂ ନାସ୍ତି ମେ ନୃପ । ୨ ।
ଲକ୍ଷ୍ମଣେନୈବମୁକ୍ତସ୍ତୁ ରାମ ଇକ୍ଷ୍ୱାକୁନନ୍ଦନଃ ।
କଥାଂ ପରମଧର୍ମିଷ୍ଠାଂ ବ୍ୟାହର୍ତ୍ତୁମୁପଚକ୍ରମେ । ୩ ।
ଆସୀଦ୍ରାଜା ନିମିର୍ନାମ ଇକ୍ଷ୍ୱାକୂଣାଂ ମହାତ୍ମନାମ୍ ।
ପୁତ୍ରୋ ଦ୍ୱାଦଶମୋ ବୀର୍ଯ୍ୟେ ଧର୍ମେ ଚ ପରିନିଷ୍ଠିତଃ । ୪ ।
ସ ରାଜା ବୀର୍ଯ୍ୟସଂପନ୍ନଃ ପୁରଂ ଦେବପୁରୋପମମ୍ ।
ନିବେଶୟାମାସ ତଦା ଅଭ୍ୟାଶେ ଗୌତମସ୍ୟ ତୁ । ୫ ।
ପୁରସ୍ୟ ସୁକୃତଂ ନାମ ବୈଜୟନ୍ତମିତି ଶ୍ରୁତମ୍ ।
ନିବେଶଂ ଯତ୍ର ରାଜର୍ଷିର୍ନିମିଶ୍ଚକ୍ରେ ମହାଯଶାଃ । ୬ ।

---

## ୫୫ଶ ସର୍ଗ

### (ନିମି ଓ ବଶିଷ୍ଠଙ୍କର ପରସ୍ପର ଶାପପ୍ରଦାନ)

ରାମ କହିଲେ, "ହେ ଲକ୍ଷ୍ମଣ ! ମୁଁ ତୁମ୍ଭଙ୍କୁ ରାଜା ନୃଗଙ୍କର ଶାପବୃତ୍ତାନ୍ତ ବିସ୍ତାରଭାବରେ କହିଲି । ଯଦି ତୁମ୍ଭର ଆଉ କିଛି ଶୁଣିବାକୁ ଶ୍ରଦ୍ଧା ଥାଏ, ତେବେ ଅନ୍ୟ ଗୋଟିଏ କଥା କହୁଅଛି ଶୁଣ" । ୧ । ରାମ ଏପରି କହିବାରୁ ଲକ୍ଷ୍ମଣ ପୁଣି କହିଲେ, "ହେ ରାଜନ୍ ! ଏ ପ୍ରକାର ଆଶ୍ଚର୍ଯ୍ୟ କଥା ଶୁଣିବାରେ ମୋର ଆଦୌ ତୃପ୍ତି ନାହିଁ" । ୨ । ଲକ୍ଷ୍ମଣ ଏହିପରି କହିବାରୁ ଇକ୍ଷ୍ୱାକୁକୁଳନନ୍ଦନ ରାମ ଅଉ ଏକ କଥା କହିବାକୁ ଆରମ୍ଭ କଲେ । ୩ । "ହେ ଲକ୍ଷ୍ମଣ ! ମହାତ୍ମା ରାଜା ନିମି ଇକ୍ଷ୍ୱାକୁ ବଂଶରେ ଦ୍ୱାଦଶ ପୁତ୍ର ଥିଲେ । ସେ ବଡ଼ ପରାକ୍ରମୀ ଏବଂ ଧର୍ମରେ ବିଶେଷ ନିବିଷ୍ଟ ଥିଲେ । ୪ । ସେହି ମହାପରାକ୍ରମୀ ନିମି ରାଜା ଗୌତମ ମୁନିଙ୍କର ଆଶ୍ରମ ନିକଟରେ ଦେବପୁରତୁଲ୍ୟ ବୈଜୟନ୍ତ ନାମକ ଏକ ସୁନ୍ଦର ନଗରୀ ବସାଇଲେ । ସେହି ନଗରୀରେ ମହାଯଶସ୍ୱୀ ନିମି ରାଜା ବାସ କରିବାକୁ

ତସ୍ୟ ବୁଦ୍ଧିଃ ସମୁତ୍ପନ୍ନା ନିବେଶ୍ୟ ସୁମହାପୁରମ୍ ।
ଯଜେୟଂ ଦୀର୍ଘସତ୍ରେଣ ପିତୁଃ ପ୍ରହ୍ଲାଦୟନ୍ ମନଃ । ୭ ।
ତତଃ ପିତରମାମନ୍ତ୍ର୍ୟ ଇକ୍ଷ୍ୱାକୁଂ ହି ମନୋଃ ସୁତମ୍ ।
ବସିଷ୍ଠଂ ବରୟାମାସ ପୂର୍ବଂ ବ୍ରହ୍ମର୍ଷିସତ୍ତମମ୍ । ୮ ।
ଅନନ୍ତରଂ ସ ରାଜର୍ଷିର୍ନିମିରିକ୍ଷ୍ୱାକୁନନ୍ଦନଃ ।
ଅତ୍ରିମଙ୍ଗିରସଂ ଚୈବ ଭୃଗୁଂ ଚୈବ ତପୋଧନମ୍ । ୯ ।
ତମୁବାଚ ବସିଷ୍ଠସ୍ତୁ ନିମିଂ ରାଜର୍ଷିସତ୍ତମମ୍ ।
ବୃତୋଽହଂ ପୂର୍ବମିନ୍ଦ୍ରେଣ ଅନ୍ତରଂ ପ୍ରତିପାଳୟ । ୧୦ ।
ଅନନ୍ତରଂ ମହାବିପ୍ରୋ ଗୌତମଃ ପ୍ରତ୍ୟପୂରୟତ୍ ।
ବସିଷ୍ଠୋଽପି ମହାତେଜା ଇନ୍ଦ୍ରଯଜ୍ଞମଥାକରୋତ୍ । ୧୧ ।
ନିମିସ୍ତୁ ରାଜା ବିପ୍ରାଂସ୍ତାନ୍ ସମାନୀୟ ନରାଧିପଃ ।
ଅୟଜଦ୍ଧିମବତ୍ପାର୍ଶ୍ୱେ ସ୍ୱପୁରସ୍ୟ ସମୀପତଃ । ୧୨ ।
ପଞ୍ଚ ବର୍ଷସହସ୍ରାଣି ରାଜା ଦୀକ୍ଷାମୁପାଗମତ୍ ।
ଇନ୍ଦ୍ରଯଜ୍ଞାବସାନେ ତୁ ବସିଷ୍ଠୋ ଭଗବାନୃଷିଃ । ୧୩ ।

---

ଲାଗିଲେ । ୫-୬ । ସେହି ମହାପୁରୀରେ ବାସ କରି ତାଙ୍କର ଇଚ୍ଛା ହେଲା ଯେ 'ମୁଁ ନିଜର ପିତାଙ୍କୁ ପ୍ରସନ୍ନ କରିବାପାଇଁ ଏକ ଦୀର୍ଘ ଯଜ୍ଞ ଅନୁଷ୍ଠାନ କରିବି' ।୭। ଅନନ୍ତର ସେ ନିଜର ପିତା ଏବଂ ମହାରାଜ ମନୁଙ୍କ ପୁତ୍ର ରାଜା ଇକ୍ଷ୍ୱାକୁଙ୍କ ସହିତ ପରାମର୍ଶ କରି ଯଜ୍ଞ କରିବା ନିମନ୍ତେ ସର୍ବପ୍ରଥମେ ବ୍ରହ୍ମର୍ଷିଶ୍ରେଷ୍ଠ ବଶିଷ୍ଠଙ୍କୁ ବରଣ କଲେ । ୮ । ଅନନ୍ତର ଇକ୍ଷ୍ୱାକୁପୁତ୍ର ରାଜର୍ଷି ନିମି ଅତ୍ରି, ଅଙ୍ଗିରସ ଏବଂ ତପୋଧନ ଭୃଗୁଙ୍କୁ ବରଣକଲେ । ୯ । ସେତେବେଳେ ବଶିଷ୍ଠ ରାଜର୍ଷିଶ୍ରେଷ୍ଠ ନିମିଙ୍କୁ କହିଲେ, 'ମୋତେ ଇନ୍ଦ୍ର ପୂର୍ବରୁ ବରଣ କରି ସାରିଛନ୍ତି । ଅତଏବ ତାଙ୍କର ଯଜ୍ଞ ଶେଷ ହେବା ପର୍ଯ୍ୟନ୍ତ ତୁମ୍ଭେ ଅପେକ୍ଷା କର' । ୧୦ । ତଦନନ୍ତର ମହାତେଜସ୍ୱୀ ବଶିଷ୍ଠ ଇନ୍ଦ୍ରଙ୍କ ଯଜ୍ଞ କରିବାକୁ ଲାଗିଲେ । ଏଣେ ଗୌତମ ବଶିଷ୍ଠଙ୍କ ଅଭାବରେ ନିମିଙ୍କ ଯଜ୍ଞକାର୍ଯ୍ୟ ପୂରଣ କଲେ । ୧୧ । ମହାରାଜ ନିମି ବ୍ରାହ୍ମଣମାନଙ୍କୁ ଏକତ୍ର କରାଇ ହିମାଳୟ ପାର୍ଶ୍ୱରେ ନିଜର ନଗର ନିକଟରେ ଯଜ୍ଞ ଆରମ୍ଭ କଲେ । ୧୨ । ରାଜା ନିମି ପାଞ୍ଚହଜାର ବର୍ଷ ପର୍ଯ୍ୟନ୍ତ ଦୀକ୍ଷା ଗ୍ରହଣ କରି ଯଜ୍ଞ କଲେ । ଏଣେ ଇନ୍ଦ୍ରଙ୍କ ଯଜ୍ଞ ପୂର୍ଣ୍ଣ ହେବା ପରେ ଅନିନ୍ଦିତ ଭଗବାନ୍ ବଶିଷ୍ଠ ଯଜ୍ଞ କରାଇବା ପାଇଁ ରାଜା

ସକାଶମାଗତୋ ରାଜ୍ଞୋ ହୌତ୍ରଂ କର୍ତ୍ତୁମନିନ୍ଦିତଃ ।
ତଦନ୍ତରମଥାପଶ୍ୟଦ୍‌ଗୌତମେନାଭିପୂରିତମ୍ ।୧୪।
କୋପେନ ମହତାବିଷ୍ଟୋ ବସିଷ୍ଠୋ ବ୍ରହ୍ମଣଃ ସୁତଃ ।
ସ ରାଜ୍ଞୋ ଦର୍ଶନାକାଙ୍‌କ୍ଷୀ ମୁହୂର୍ତ୍ତଂ ସମୁପାବିଶତ୍ ।୧୫।
ତସ୍ମିନ୍ନହନି ରାଜର୍ଷିର୍ନିଦ୍ରୟାପହୃତୋ ଭୃଶମ୍ ।
ତତୋ ମନ୍ୟୁର୍ବସିଷ୍ଠସ୍ୟ ପ୍ରାଦୁରାସୀନ୍ମହାତ୍ମନଃ ।୧୬।
ଅଦର୍ଶନେନ ରାଜର୍ଷେର୍ବ୍ୟାହର୍ତ୍ତୁମୁପଚକ୍ରମେ ।
ଯସ୍ମାତ୍ତ୍ୱମନ୍ୟଂ ବୃତବାନ୍ ମାମବଜ୍ଞାୟ ପାର୍ଥିବ ।
ଚେତନେନ ବିନା ଭୂତୋ ଦେହସ୍ତବ ଭବିଷ୍ୟତି ।୧୭।
ତତଃ ପ୍ରବୁଦ୍ଧୋ ରାଜର୍ଷିଃ ଶ୍ରୁତ୍ୱା ଶାପମୁଦାହୃତମ୍ ।
ବ୍ରହ୍ମଯୋନିମଥୋବାଚ ସଂରମ୍ଭାତ୍ କ୍ରୋଧମୂର୍ଚ୍ଛିତଃ ।୧୮।
ଅଜାନତଃ ଶୟାନସ୍ୟ କ୍ରୋଧେନ କଲୁଷୀକୃତଃ ।
ମୁକ୍ତବାନ୍ ମୟି ଶାପାଗ୍ନିଂ ଯମଦଣ୍ଡମିବାପରମ୍ ।୧୯।
ତସ୍ମାତ୍ତବାପି ବ୍ରହ୍ମର୍ଷେ ଚେତନେନ ବିନାକୃତଃ ।
ଦେହଃ ସୁରୁଚିରପ୍ରଖ୍ୟୋ ଭବିଷ୍ୟତି ନ ସଂଶୟଃ ।୨୦।

---

ନିମିଙ୍କ ପାଖକୁ ଆସିଲେ । ସେ ଆସି ଦେଖିଲେ ଯେ ଗୌତମ ଯଜ୍ଞକାର୍ଯ୍ୟ ସମ୍ପନ୍ନ କରୁଥାନ୍ତି । ୧୩-୧୪ । ବ୍ରହ୍ମାଙ୍କ ପୁତ୍ର ବଶିଷ୍ଠ ଅତ୍ୟନ୍ତ କ୍ରୁଦ୍ଧ ହୋଇ ରାଜା ନିମିଙ୍କୁ ଦେଖାକରିବା ପାଇଁ ସେଠାରେ କିଛି ସମୟ ଅପେକ୍ଷା କଲେ । ସେଦିନ ରାଜର୍ଷି ନିମି ଅତ୍ୟନ୍ତ ନିଦ୍ରାପୀଡ଼ିତ ହୋଇ ଶୋଇପଡ଼ିଥିଲେ । ତହୁଁ ଉତ୍ତାରୁ ମହାତ୍ମା ବଶିଷ୍ଠଙ୍କର ଅତ୍ୟନ୍ତ କ୍ରୋଧ ଜାତହେଲା । ୧୫-୧୬ । ବଶିଷ୍ଠ କହିଲେ, "ହେ ରାଜନ୍ ! ତୁମେ ମୋତେ ଅବଜ୍ଞା କରି ଅନ୍ୟକୁ ଯଜ୍ଞ କରିବା ନିମନ୍ତେ ବରଣ କରିଥିବାରୁ ତୁମ ଶରୀର ଚେତନାଶୂନ୍ୟ ହୋଇଯିବ" ।୧୭। ରାଜା ନିଦ୍ରାରୁ ଉଠି ଯେତେବେଳେ ଶାପ କଥା ଶୁଣିଲେ, ସେତେବେଳେ ସେ ମଧ୍ୟ ଅତ୍ୟନ୍ତ କ୍ରୁଦ୍ଧ ହୋଇ ବ୍ରହ୍ମପୁତ୍ର ମହର୍ଷି ବଶିଷ୍ଠଙ୍କୁ ଶାପ ଦେଲେ ।୧୮। ସେ ବଶିଷ୍ଠଙ୍କୁ କହିଲେ, "ମୁଁ ଶୋଇରହି ଅଜ୍ଞାନ ଅବସ୍ଥାରେ ଥିବାବେଳେ ତୁମେ କ୍ରୋଧବଶରେ ଦ୍ୱିତୀୟ ଯମଦଣ୍ଡ ସଦୃଶ ମୋ ପ୍ରତି ଶାପାଗ୍ନି ପ୍ରୟୋଗ କରିଅଛ । ଅତଏବ ହେ ମହର୍ଷେ ! ତୁମର ମଧ୍ୟ ଏହି ସୁନ୍ଦର ଶରୀର

ଇତି ରୋଷବଶାଦୁଭୌ ତଦାନୀ-
ମନ୍ୟୋନ୍ୟଂ ଶପିତୌ ନୃପଦ୍ୱିଜେନ୍ଦ୍ରୌ ।
ସହସୈବ ବଭୂବତୁର୍ବିଦେହୌ
ତତ୍ତୁଲ୍ୟାଧିଗତପ୍ରଭାବବନ୍ତୌ । ୨୧ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ନିମିବସିଷ୍ଠଶାପୋ ନାମ ପଞ୍ଚପଞ୍ଚାଶଃ ସର୍ଗଃ ।

---

# ଷଟ୍‌ପଞ୍ଚାଶଃ ସର୍ଗଃ

## ମୈତ୍ରାବରୁଣିତ୍ୱପ୍ରାପ୍ତିଃ

ରାମସ୍ୟ ଭାଷିତଂ ଶ୍ରୁତ୍ୱା ଲକ୍ଷ୍ମଣଃ ପରବୀରହା ।
ଉବାଚ ପ୍ରାଞ୍ଜଲିର୍ବାକ୍ୟଂ ରାଘବଂ ଦୀପ୍ତତେଜସମ୍ । ୧ ।
ନିକ୍ଷିପ୍ତଦେହୌ କାକୁତ୍‌ସ୍ଥ କଥଂ ତୌ ଦ୍ୱିଜପାର୍ଥିବୌ ।
ପୁନର୍ଦେହେନ ସଂଯୋଗଂ ଜଗ୍ମତୁର୍ଦେବସମ୍ମତୌ । ୨ ।
ଲକ୍ଷ୍ମଣେନୈବମୁକ୍ତସ୍ତୁ ରାମଶ୍ଚେକ୍ଷ୍ୱାକୁନନ୍ଦନଃ ।
ପ୍ରତ୍ୟୁବାଚ ମହାତେଜା ଲକ୍ଷ୍ମଣଂ ପୁରୁଷର୍ଷଭଃ । ୩ ।

---

ତେଜନାଶୂନ୍ୟ ହୋଇଯିବ" ।୧୯-୨୦। ଏହିପ୍ରକାରେ ସେହି ରାଜେନ୍ଦ୍ର ଏବଂ ଦ୍ୱିଜେନ୍ଦ୍ର କ୍ରୋଧପୂର୍ଣ୍ଣ ହୋଇ ପରସ୍ପରକୁ ଶାପ ଦେଲେ । ଦୁହେଁଯାକ ସମାନ ପ୍ରଭାବଶାଳୀ ହୋଇଥିବାରୁ ଉଭୟେ ଦେହଶୂନ୍ୟ ହୋଇଗଲେ । ୨୧ ।

---

## ୫୬ଶ ସର୍ଗ

( ବଶିଷ୍ଠଙ୍କର ମୈତ୍ରାବରୁଣତେଜପ୍ରାପ୍ତି )

ଶତ୍ରୁଘାତୀ ଲକ୍ଷ୍ମଣ ରାମଙ୍କ କଥା ଶୁଣି ହାତ ଯୋଡ଼ି ଦୀପ୍ତତେଜା ରାମଙ୍କୁ କହିଲେ । ୧। "ହେ କାକୁତ୍ସ୍ଥ ! ଦେବତାମାନଙ୍କର ଆଦରଭାଜନ ସେହି ରାଜା ଏବଂ ବଶିଷ୍ଠ ଦେହହୀନ ହୋଇ ପୁଣି କପରି ଶରୀରଧାରୀ ହେଲେ" । ୨ । ଲକ୍ଷ୍ମଣଙ୍କର ଏ କଥା ଶୁଣି ଇକ୍ଷ୍ୱାକୁନନ୍ଦନ ପୁରୁଷଶ୍ରେଷ୍ଠ ମହାତେଜସ୍ୱୀ ରାମ ଉତ୍ତର ଦେଲେ ।୩।

ତୌ ପରସ୍ପରଶାପେନ ଦେହାବୁତ୍‌ସୃଜ୍ୟ ଧାର୍ମିକୌ ।
ଅଭୂତାଂ ନୃପବ୍ରହ୍ମର୍ଷୀ ବାୟୁଭୂତୌ ତପୋଧନୌ । ୪ ।
ଅଶରୀରଃ ଶରୀରସ୍ୟ କୃତେଽନ୍ୟସ୍ୟ ମହାମୁନିଃ ।
ବସିଷ୍ଠଃ ସୁମହାତେଜା ଜଗାମ ପିତୁରନ୍ତିକମ୍ । ୫ ।
ସୋଽଭିବାଦ୍ୟ ତତଃ ପାଦୌ ଦେବଦେବସ୍ୟ ଧର୍ମବିତ୍ ।
ପିତାମହମଥୋବାଚ ବାୟୁଭୂତ ଇଦଂ ବଚଃ । ୬ ।
ଭଗବନ୍ନିମିଶାପେନ ବିଦେହତ୍ୱମୁପାଗମମ୍ ।
ଲୋକନାଥ ମହାଦେବ ଅଣ୍ଡଜୋଽପି ତ୍ୱମବ୍ଜଜଃ । ୭ ।
ସର୍ବେଷାଂ ଦେହହୀନାନାଂ ମହଦ୍ଦୁଃଖଂ ଭବିଷ୍ୟତି ।
ଲୁପ୍ୟନ୍ତେ ସର୍ବକାର୍ଯ୍ୟାଣି ହୀନଦେହସ୍ୟ ବୈ ପ୍ରଭୋ । ୮ ।
ଦେହସ୍ୟାନ୍ୟସ୍ୟ ସଦ୍ଭାବେ ପ୍ରସାଦଂ କର୍ତ୍ତୁମର୍ହସି ।
ତମୁବାଚ ତତୋ ବ୍ରହ୍ମା ସ୍ୱୟଂଭୂରମିତପ୍ରଭଃ । ୯ ।
ମିତ୍ରାବରୁଣଜଂ ତେଜଃ ପ୍ରବିଶ ତ୍ୱଂ ମହାଯଶଃ ।
ଅୟୋନିଜସ୍ତ୍ୱଂ ଭବିତା ତତ୍ରାପି ଦ୍ୱିଜସତ୍ତମ ।
ଧର୍ମେଣ ମହତା ଯୁକ୍ତଃ ପୁନରେଷ୍ୟସି ମେ ବଶମ୍ । ୧୦ ।

---

"ହେ ଲକ୍ଷ୍ମଣ ! ତପସ୍ୱୀ ବଶିଷ୍ଠ ଏବଂ ଧର୍ମାତ୍ମା ରାଜା ନିମି ପରସ୍ପର ଶାପ ହେତୁରୁ ନିଜ ନିଜର ଦେହ ତ୍ୟାଗ କରି ବାୟୁରୂପ ହୋଇଗଲେ, ଅର୍ଥାତ୍ ସୂକ୍ଷ୍ମଶରୀରଧାରୀ ହୋଇଗଲେ । ୪ । ମହର୍ଷି ମହାତେଜା ବଶିଷ୍ଠ ଶରୀରହୀନ ହୋଇ ଅନ୍ୟ ସ୍ଥୂଳଶରୀର ପ୍ରାପ୍ତି ଇଚ୍ଛାରେ ନିଜର ପିତା ବ୍ରହ୍ମାଙ୍କ ନିକଟକୁ ଗଲେ । ୫ । ସେଠାକୁ ଯାଇ ଧର୍ମଜ୍ଞ ବାୟୁରୂପୀ ବଶିଷ୍ଠ ବ୍ରହ୍ମାଙ୍କ ଚରଣରେ ପ୍ରଣାମ କରି ଏହି କଥା କହିଲେ । ୬ । "ହେ ଭଗବନ୍ ! ମୁଁ ନିମିଙ୍କ ଶାପ ହେତୁରୁ ଶରୀରହୀନ ହୋଇଯାଇଅଛି । ହେ ଲୋକନାଥ, ହେ ଅଣ୍ଡଜ, ହେ ମହାଦେବ ! ମୁଁ ବର୍ତ୍ତମାନ ବାୟୁଭୂତ ହୋଇ ଯାଇଅଛି । ୭ । ହେ ପ୍ରଭୋ ! ଦେହହୀନ ଲୋକର ବଡ଼ କଷ୍ଟ ହୁଏ ଏବଂ ଏପରି ଲୋକର ସମସ୍ତ କାର୍ଯ୍ୟ ଲୋପ ହୋଇଯାଏ ଅର୍ଥାତ୍, ସେ କୌଣସି କାର୍ଯ୍ୟ କରିପାରେ ନାହିଁ । ୮ । ଅତଏବ ଆପଣ କୃପା କରନ୍ତୁ, ମୁଁ ଯେପରି ଅନ୍ୟ ଏକ ସ୍ଥୂଳଶରୀର ପାଇପାରିବି ।" ଅନନ୍ତର ସ୍ୱୟମ୍ଭୂ, ଅତୁଳପ୍ରଭ ବ୍ରହ୍ମା ତାଙ୍କୁ କହିଲେ ।୯। "ହେ ମହାତେଜସ୍ୱୀ ! ତୁମେ ମିତ୍ରାବରୁଣଙ୍କ ବୀର୍ଯ୍ୟରେ ପ୍ରବେଶ କର । ହେ ଦ୍ୱିଜଶ୍ରେଷ୍ଠ ! ତୁମେ ସେଠାରେ ମଧ୍ୟ ଅଯୋନିଜ ହୋଇ ରହିବ, ଅର୍ଥାତ୍ କୌଣସି ସ୍ତ୍ରୀର ଯୋନିରୁ ଜାତ ହେବ ନାହିଁ । ତୁମେ ଧର୍ମପରାୟଣ ହୋଇ ପୁଣି ମୋର

ଏବମୁକ୍ତସ୍ତୁ ଦେବେନ ଗୃଭିବାଦ୍ୟ ପ୍ରଦକ୍ଷିଣମ୍ ।
କୃତ୍ୱା ପିତାମହଂ ତୂର୍ଣଂ ପ୍ରଯଯୌ ବରୁଣାଳୟମ୍ । ୧୧ ।
ତମେବ କାଳଂ ମିତ୍ରୋଽପି ବରୁଣତ୍ୱମକାରୟତ୍ ।
କ୍ଷୀରୋଦେନ ସହୋପେତଃ ପୂଜ୍ୟମାନଃ ସୁରେଶ୍ୱରୈଃ । ୧୨ ।
ଏତସ୍ମିନ୍ନେବ କାଳେ ତୁ ଉର୍ବଶୀ ପରମାପ୍ସରାଃ ।
ଯଦୃଚ୍ଛୟା ସମୁଦ୍ଦେଶମାଯଯୌ ସଖିଭିର୍ବୃତା । ୧୩ ।
ତାଂ ଦୃଷ୍ଟ୍ୱା ରୂପସମ୍ପନ୍ନାଂ କ୍ରୀଡ଼ନ୍ତୀଂ ବରୁଣାଳୟେ ।
ଆବିଶତ୍ ପରମୋ ହର୍ଷୋ ବରୁଣଂ ଚୋର୍ବଶୀକୃତେ । ୧୪ ।
ସ ତାଂ ପଦ୍ମପଲାଶାକ୍ଷୀଂ ପୂର୍ଣଚନ୍ଦ୍ରନିଭାନନାମ୍ ।
ବରୁଣୋ ବରୟାମାସ ମୈଥୁନାୟାପ୍ସରୋବରାମ୍ । ୧୫ ।
ପ୍ରତ୍ୟୁବାଚ ତତଃ ସା ତୁ ବରୁଣଂ ପ୍ରାଞ୍ଜଳିଃ ସ୍ଥିତା ।
ମିତ୍ରେଣାହଂ ବୃତା ସାକ୍ଷାତ୍ ପୂର୍ବମେବ ସୁରେଶ୍ୱର । ୧୬ ।
ବରୁଣସ୍ତ୍ୱବ୍ରବୀଦ୍‌ବାକ୍ୟଂ କନ୍ଦର୍ପଶରପୀଡ଼ିତଃ ।
ଇଦଂ ତେଜଃ ସମୁତ୍ସ୍ରକ୍ଷ୍ୟେ କୁମ୍ଭେଽସ୍ମିନ୍ ଦେବନିର୍ମିତେ । ୧୭ ।

---

ଅଧୀନକୁ ଚାଲିଆସିବ” ।୧୦। ଲୋକପିତାମହ ବ୍ରହ୍ମା ଏହିପରି କହିବାରୁ ବଶିଷ୍ଠ ତାଙ୍କୁ ପ୍ରଣାମ କରି ଏବଂ ପ୍ରଦକ୍ଷିଣ କରି ଶୀଘ୍ର ବରୁଣଲୋକକୁ ଚାଲିଗଲେ ।୧୧। ସେହି ସମୟରେ ମିତ୍ର ଅର୍ଥାତ୍ ସୂର୍ଯ୍ୟ ଜଳଦେବ ବରୁଣଙ୍କ ସହିତ ସମସ୍ତ ଦେବତାଙ୍କ ଦ୍ୱାରା ପୂଜିତ ହୋଇ ବରୁଣଙ୍କ ରାଜ୍ୟ ଶାସନ କରୁଥିଲେ ।୧୨। ଏହି ସମୟରେ ଅକସ୍ମାତ୍ ଉର୍ବଶୀ ନାମକ ଶ୍ରେଷ୍ଠ ଅପ୍‌ସରା ନିଜର ସହଚରୀମାନଙ୍କ ଦ୍ୱାରା ପରିବୃତ ହୋଇ ସେହି ସ୍ଥାନରେ ଯାଇ ପହଞ୍ଚିଲେ ।୧୩। ବରୁଣାଳୟରେ ଅର୍ଥାତ୍ ସମୁଦ୍ର-କୂଳରେ ସେହି ରୂପଯୌବନସମ୍ପନ୍ନା ଉର୍ବଶୀଙ୍କୁ କ୍ରୀଡ଼ା କରୁଥିବାର ଦେଖି ଓ ତାଙ୍କ ଲାଗି ବରୁଣଙ୍କ ମନରେ ଅତ୍ୟନ୍ତ ପ୍ରୀତି ଜାତ ହେଲା ।୧୪। ସେହି ପଦ୍ମଲୋଚନା ପୂର୍ଣ୍ଣଚନ୍ଦ୍ରମୁଖୀ ଶ୍ରେଷ୍ଠ ଅପ୍‌ସରାଙ୍କ ସହିତ ବରୁଣ ମୈଥୁନ କରିବା ନିମନ୍ତେ ତାଙ୍କୁ ବରଣ କଲେ ।୧୫। ଅନନ୍ତର ସେହି ଅପ୍‌ସରା ହାତ ଯୋଡ଼ି ଉଭାହୋଇ ବରୁଣଙ୍କୁ କହିଲେ, “ହେ ସୁରେଶ୍ୱର ! ମୁଁ ଆଗରୁ ମିତ୍ରଦେବତାଙ୍କ ସହିତ ସଙ୍ଗମ କରିବା ପାଇଁ ବରିତ ହୋଇଅଛି” ।୧୬। ଏହା ଶୁଣି କାମପୀଡ଼ିତ ବରୁଣ କହିଲେ, “ତୁମକୁ ଦେଖି କ୍ଷୁବ୍ଧ ହୋଇ ମୁଁ ମୋର ବୀର୍ଯ୍ୟକୁ ଏହି ଦେବନିର୍ମିତ କଳସମଧ୍ୟରେ

ଏବମୁତ୍ସୃଜ୍ୟ ସୁଶ୍ରୋଣି ତ୍ୱୟ୍ୟହଂ ବରବର୍ଣ୍ଣିନି ।
କୃତକାମୋ ଭବିଷ୍ୟାମି ଯଦି ନେଚ୍ଛସି ସଙ୍ଗମମ୍ । ୧୮ ।
ତସ୍ୟ ତଲ୍ଲୋକପାଲସ୍ୟ ବରୁଣସ୍ୟ ସୁଭାଷିତମ୍ ।
ଉର୍ବ୍ବଶୀ ପରମପ୍ରୀତା ଶ୍ରୁତ୍ୱା ବାକ୍ୟମୁବାଚ ହ । ୧୯ ।
କାମମେତଦ୍ଭବତ୍ୱେବଂ ହୃଦୟଂ ମେ ତ୍ୱୟି ସ୍ଥିତମ୍ ।
ଭାବଶ୍ଚାଭ୍ୟଧିକସ୍ତୁଭ୍ୟଂ ଦେହୋ ମିତ୍ରସ୍ୟ ତୁ ପ୍ରଭୋ । ୨୦ ।
ଉର୍ବ୍ବଶ୍ୟା ଏବମୁକ୍ତସ୍ତୁ ରେତସ୍ତନ୍ମହଦଦ୍ଭୁତମ୍ ।
ଜ୍ୱଲଦଗ୍ନିଶିଖାପ୍ରଖ୍ୟଂ ତସ୍ମିନ୍ କୁମ୍ଭେ ହ୍ୟବାସୃଜତ୍ । ୨୧
ଉର୍ବ୍ବଶୀ ତ୍ୱଗମତ୍ତତ୍ର ମିତ୍ରୋ ବୈ ଯତ୍ର ଦେବତା ।
ତାଂ ତୁ ମିତ୍ରଃ ସୁସଂକ୍ରୁଦ୍ଧ ଉର୍ବ୍ବଶୀମିଦମବ୍ରବୀତ୍ । ୨୨ ।
ମୟା ନିମନ୍ତ୍ରିତା ପୂର୍ବଂ କସ୍ମାତ୍ତ୍ୱମବସର୍ଜ୍ଜିତା ।
ପତିମନ୍ୟଂ ବୃତବତୀ ତସ୍ମାତ୍ତ୍ୱଂ ଦୁଷ୍ଟଚାରିଣୀ । ୨୩ ।
ଅନେନ ଦୁଷ୍କୃତେନ ତ୍ୱଂ ମତ୍କ୍ରୋଧକଲୁଷୀକୃତା ।
ମନୁଷ୍ୟଲୋକମାସ୍ଥାୟ କଞ୍ଚିତ୍ କାଲଂ ନିବତ୍ସ୍ୟସି । ୨୪ ।

---

ଛାଡ଼ିଦେବି ।୧୭। ହେ ନିତମ୍ବିନି ! ଯଦି ମୋ ସହିତ ମୈଥୁନ କରିବାକୁ ଇଚ୍ଛା ନ କରୁଛ, ତେବେ ମୁଁ ଏହି ଘଟମଧ୍ୟରେ ବୀର୍ଯ୍ୟ ନିକ୍ଷେପ କରି ନିଜର କାମ ଲାଳସା ପୂର୍ଣ୍ଣ କରିବି" ।୧୮। ଲୋକନାଥ ବରୁଣଙ୍କର ଏହିସୁନ୍ଦର ବଚନ ଶୁଣି ଉର୍ବଶୀ ଅତ୍ୟନ୍ତ ପ୍ରୀତ ହୋଇ କହିଲେ । ୧୯ । "ଅଚ୍ଛା, ଆପଣ ତାହାହିଁ କରନ୍ତୁ । ଯଦ୍ୟପି ମୋର ଶରୀର ବର୍ତ୍ତମାନ ମିତ୍ରଙ୍କର ଅଧୀନ ହୋଇ ରହିଅଛି, ତଥାପି ମୋର ମନ ତୁମଠାରେହିଁ ଅଧିକ ଆସକ୍ତ ହୋଇଅଛି"।୨୦। ଉର୍ବଶୀ ଏପରି କହିବାରୁ ବରୁଣ ଅତି ଅଦ୍ଭୁତ, ପ୍ରଜ୍ୱଳିତ ଓ ପ୍ରକାଶମାନ ନିଜ ବୀର୍ଯ୍ୟକୁ ସେହି ଘଟମଧ୍ୟରେ ଛାଡ଼ିଦେଲେ ।୨୧। ତତ୍ପରେ ଉର୍ବଶୀ ମିତ୍ରଦେବତା ଯେଉଁଠାରେ ଥିଲେ ସେଠାକୁ ଗଲେ । ମିତ୍ରଦେବତା ତାଙ୍କୁ ଦେଖି ଅତିଶୟ କ୍ରୁଦ୍ଧ ହୋଇ କହିଲେ ।୨୨। "ହେ ଦୁଷ୍ଟଚାରିଣୀ ! ଯେତେବେଳେ ମୁଁ ତୁମକୁ ଆଗରୁ ନିମନ୍ତ୍ରଣ କରିଥିଲି ସେତେବେଳେ ତୁମେ ମୋ ସହିତ ମିଳିତ ନ ହୋଇ ଅନ୍ୟ କେଉଁଆଡ଼େ ଚାଲିଗଲ ? ତୁମେ ଅନ୍ୟ ପତି ବରଣ କରିଥିବାରୁ ଦୁରାଚାରିଣୀ ଅଟ । ଏହି ଅପରାଧ ହେତୁ ତୁମେ ମୋର କ୍ରୋଧରେ ଅଭିଶପ୍ତ ହୋଇ କିଛିଦିନ ମନୁଷ୍ୟଲୋକରେ ବାସ କରିବ ।୨୪। ହେ ଦୁର୍ବୁଦ୍ଧେ ! ବୁଧଙ୍କର ପୁତ୍ର

ବୁଧସ୍ୟ ପୁତ୍ରମ୍ରାଜର୍ଷିଂ କାଶୀରାଜଃ ପୁରୂରବାଃ ।
ତମଦ୍ୟ ଗଚ୍ଛ ଦୁର୍ବୁଦ୍ଧେ ସ ତେ ଭର୍ତ୍ତା ଭବିଷ୍ୟତି । ୨୫ ।
ତତଃ ସା ଶାପଦୋଷେଣ ପୁରୂରବସମଭ୍ୟଗାତ୍ ।
ପ୍ରତିଷ୍ଠାନେ ପୁରୂରବଂ ବୁଧସ୍ୟାତ୍ମଜମୌରସମ୍ । ୨୬ ।
ତସ୍ୟ ଜଜ୍ଞେ ତତଃ ଶ୍ରୀମାନାୟୁଃ ପୁତ୍ରୋ ମହାବଲଃ ।
ନହୁଷୋ ଯସ୍ୟ ପୁତ୍ରସ୍ତୁ ବଭୂବେନ୍ଦ୍ରସମଦ୍ୟୁତିଃ । ୨୭ ।
ବଜ୍ରମୁତ୍ସୃଜ୍ୟ ବୃତ୍ରାୟ ଶ୍ରାନ୍ତେଽଥ ତ୍ରିଦଶେଶ୍ୱରେ ।
ଶତଂ ବର୍ଷସହସ୍ରାଣି ଯେନେନ୍ଦ୍ରତ୍ୱଂ ପ୍ରଶାସିତମ୍ । ୨୮ ।
ସା ତେନ ଶାପେନ ଜଗାମ ଭୂମିମ୍
ତଦୋର୍ବଶୀ ଚାରୁଦତୀ ସୁନେତ୍ରା ।
ବହୂନି ବର୍ଷାଣ୍ୟବସଚ୍ଚ ସୁଭ୍ରୂଃ
ଶାପକ୍ଷୟାଦିନ୍ଦ୍ରସଦୋ ଯଯୌ ଚ । ୨୯ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତ୍ସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ମୈତ୍ରାବରୁଣିଉତ୍ପତ୍ତିର୍ନାମ ଷଟ୍‌ପଞ୍ଚାଶଃ ସର୍ଗଃ ।

---

କାଶିରାଜ ରାଜର୍ଷି ପୁରୂରବାଙ୍କ ପାଖକୁ ତୁମେ ଚାଲିଯାଅ । ସେ ତୁମ୍ଭର ପତି ହେବେ ।" ଏହିପ୍ରକାର ଶାପ ପାଇ ଉର୍ବଶୀ ପ୍ରତିଷ୍ଠାନପୁରରେ ବୁଧଙ୍କର ପୁତ୍ର ମହାରାଜ ପୁରୂରବାଙ୍କ ନିକଟକୁ ଚାଲିଗଲେ । ୨୫-୨୬ । ପୁରୂରବାର ଉର୍ବଶୀଙ୍କ ଗର୍ଭରୁ ଅତି ବଳବାନ୍ ରାଜା ଆୟୁ ଜାତ ହେଲେ । ଇନ୍ଦ୍ରଙ୍କ ସଦୃଶ ଶ୍ରୀମାନ୍ ରାଜା ନହୁଷ ସେହି ଆୟୁଙ୍କର ପୁତ୍ର ଅଟନ୍ତି । ୨୭ । ଇନ୍ଦ୍ର ଯେତେବେଳେ ବଜ୍ର ନିକ୍ଷେପ କରି ବୃତ୍ରାସୁରକୁ ବଧକଲେ ଏବଂ ବ୍ରହ୍ମହତ୍ୟା ପାପଗ୍ରସ୍ତ ହୋଇପଡ଼ିଲେ, ସେତେବେଳେ ଏହି ମହାରାଜ ନହୁଷ ଇନ୍ଦ୍ରାସନକୁ ଲକ୍ଷେବର୍ଷ ପର୍ଯ୍ୟନ୍ତ ସମ୍ଭାଳି ରାଜ୍ୟ ଶାସନ କରିଥିଲେ । ୨୮ । ସୁଦନ୍ତୀ ଓ ସୁନେତ୍ରୀ ଉର୍ବଶୀ ମିତ୍ରଙ୍କ ଶାପ ହେତୁ ମର୍ତ୍ତ୍ୟଲୋକକୁ ଆସି ବହୁ ବର୍ଷଯାଏ ରହିଲେ । ତଦନନ୍ତର ଶାପକ୍ଷୟ ହେବା ଉତ୍ତାରୁ ସେ ପୁଣି ଇନ୍ଦ୍ରଲୋକକୁ ଚାଲିଗଲେ" । ୨୯ ।

# ସପ୍ତପଞ୍ଚାଶଃ ସର୍ଗଃ

## ନିମିନିମୀଷୀକରଣମ୍

ତାଂ ଶ୍ରୁତ୍ୱା ଦିବ୍ୟସଂକାଶାଂ କଥାମଦ୍ଭୁତଦର୍ଶନାମ୍ ।
ଲକ୍ଷ୍ମଣଃ ପରମପ୍ରୀତୋ ରାଘବଂ ବାକ୍ୟମବ୍ରବୀତ । ୧ ।
ନିକ୍ଷିପ୍ତଦେହୌ କାକୁତ୍ସ୍ଥ କଥଂ ତୌ ଦ୍ୱିଜପାର୍ଥିବୌ ।
ପୁନର୍ଦେହେନ ସଂଯୋଗଂ ଜଗ୍ମତୁର୍ଦେବସଂମତୌ । ୨ ।
ତସ୍ୟ ତଦ୍ଭାଷିତଂ ଶ୍ରୁତ୍ୱା ରାମଃ ସତ୍ୟପରାକ୍ରମଃ ।
ତାଂ କଥାଂ କଥୟାମାସ ବସିଷ୍ଠସ୍ୟ ମହାତ୍ମନଃ । ୩ ।
ଯସ୍ତୁ କୁମ୍ଭୋ ରଘୁଶ୍ରେଷ୍ଠ ତେଜଃପୂର୍ଣୋ ମହାତ୍ମନୋଃ ।
ତସ୍ମିଂସ୍ତେଜୋମୟୌ ବିପ୍ରୌ ସଂଭୂତାବୃଷିସତ୍ତମୌ । ୪ ।
ପୂର୍ବଂ ସମଭବତ୍ତତ୍ର ହ୍ୟଗସ୍ତ୍ୟୋ ଭଗବାନୃଷିଃ ।
ନାହଂ ସୁତସ୍ତବେତ୍ୟୁକ୍ତ୍ୱା ମିତ୍ରଂ ତସ୍ମାଦପାକ୍ରମତ୍ । ୫ ।
ତଦ୍ଧି ତେଜସ୍ତୁ ମିତ୍ରସ୍ୟ ଉର୍ବଶ୍ୟାଃ ପୂର୍ବମାହୃତମ୍ ।
ତସ୍ମିନ୍ ସମଭବତ୍ କୁମ୍ଭେ ତତ୍ତେଜୋ ଯତ୍ର ବାରୁଣମ । ୬ ।

---

## ୫୭ଶ ସର୍ଗ

( ନିମି ଚକ୍ଷୁର ପଲକ ହେଲେ )

ଏହି ଅଦ୍ଭୁତ ଏବଂ ଦିବ୍ୟ କଥା ଶୁଣି ଲକ୍ଷ୍ମଣ ଅତିଶୟ ପ୍ରୀତ ହୋଇ ରାମଙ୍କୁ କହିଲେ । ୧ । "ହେ କାକୁତ୍ସ୍ଥ ! ସେତେବେଳେ ସେହି ଦେବସମ୍ମାନିତ ବ୍ରହ୍ମର୍ଷି ବଶିଷ୍ଠ ଓ ରାଜା ନିମି ନିଜ ନିଜ ଶରୀର ତ୍ୟାଗ କରିଦେଲେ, ସେତେବେଳେ ପୁଣି କପରି ସେ ଦୁହେଁ ଶରୀର ଲାଭକଲେ ?" । ୨ । ଲକ୍ଷ୍ମଣଙ୍କ ପ୍ରଶ୍ନ ଶୁଣି ସତ୍ୟପରାକ୍ରମ ରାମ ମହାତ୍ମା ବଶିଷ୍ଠଙ୍କ କଥା ଏହିପ୍ରକାରେ କହିବାକୁ ଲାଗିଲେ ।୩। "ହେ ଲକ୍ଷ୍ମଣ ! ମିତ୍ରାବରୁଣଙ୍କ ବୀର୍ଯ୍ୟରେ ପୂର୍ଣ୍ଣ ହୋଇଥିବା ସେହି ଦେବନିର୍ମିତ ଘଟ ମଧ୍ୟରୁ ଦୁଇ ତେଜସ୍ୱୀ ବ୍ରାହ୍ମଣ ଉତ୍ପନ୍ନ ହେଲେ । ୪ । ପ୍ରଥମେ ସେଥିରୁ ମହର୍ଷି ଅଗସ୍ତି ବାହାରିଲେ ଏବଂ ସେ ମିତ୍ରଙ୍କୁ କହିଲେ, "ମୁଁ ତୁମ୍ଭର ପୁତ୍ର ନୁହେଁ ।" ଏହା କହି ସେ ସେଠାରୁ ଚାଲିଗଲେ । ୫ । ହେ ଲକ୍ଷ୍ମଣ ! ଉର୍ବଶୀଙ୍କୁ ଲକ୍ଷ୍ୟକରି ବରୁଣ ଯେଉଁ ବୀର୍ଯ୍ୟ ତ୍ୟାଗ କରିଥିଲେ, ଘଟରେ

କସ୍ୟଚତ୍ତ୍ୱଥ କାଲସ୍ୟ ମିତ୍ରାବରୁଣସମ୍ଭବଃ ।
ବସିଷ୍ଠସ୍ତେଜସା ଯୁକ୍ତୋ ଜଜ୍ଞେ ଚେକ୍ଷ୍ୱାକୁଦୈବତମ୍ । ୭ ।
ତମିକ୍ଷ୍ୱାକୁର୍ମହାତେଜା ଜାତମାତ୍ରମନିନ୍ଦିତମ୍ ।
ବବ୍ରେ ପୁରୋହିତଂ ସୌମ୍ୟ ବଂଶସ୍ୟାସ୍ୟ ଭବାୟ ନଃ । ୮ ।
ଏବଂ ତ୍ୱପୂର୍ବଦେହସ୍ୟ ବସିଷ୍ଠସ୍ୟ ମହାତ୍ମନଃ ।
କଥିତୋ ନିର୍ଗମଃ ସୌମ୍ୟ ନିମେଃ ଶୃଣୁ ଯଥା ଭବେତ୍ । ୯ ।
ଦୃଷ୍ଟ୍ୱା ବିଦେହଂ ରାଜାନମୃଷୟଃ ସର୍ବ ଏବ ତେ ।
ତଂ ତତୋ ଯୋଜୟାମାସୁର୍ଯାଗଦୀକ୍ଷାଂ ମନୀଷିଣଃ । ୧୦ ।
ତଂ ଚ ଦେହଂ ନରେନ୍ଦ୍ରସ୍ୟ ରକ୍ଷନ୍ତି ସ୍ମ ଦ୍ୱିଜୋତ୍ତମାଃ ।
ଗନ୍ଧୈର୍ମାଲ୍ୟୈଶ୍ଚ ବସ୍ତ୍ରୈଶ୍ଚ ପୌରଭୃତ୍ୟସମନ୍ୱିତାଃ । ୧୧ ।
ତତୋ ଯଜ୍ଞେ ସମାପ୍ତେ ତୁ ଭୃଗୁସ୍ତତ୍ରେଦମବ୍ରବୀତ୍ ।
ଆନୟିଷ୍ୟାମି ତେ ଚେତସ୍ତୁଷ୍ଟୋଽସ୍ମି ତବ ପାର୍ଥିବ । ୧୨ ।
ସୁପ୍ରୀତାଶ୍ଚ ସୁରାଃ ସର୍ବେ ନିମେସ୍ତେଷ୍ଟ ତଥାବ୍ରୁବନ୍ ।
ବରଂ ବରୟ ରାଜର୍ଷେ କ୍ୱ ତେ ଚେତୋ ନିରୂପ୍ୟତାମ୍ । ୧୩ ।

---

ସେହି ସାର୍ଯ୍ୟବିଁ ଥିଲା ।୬। କିଛିଦିନ ଅତୀତ ହୋଇଯିବା ପରେ ସେହି ପାର୍ଯ୍ୟରୁ ମହା-ତେଜସ୍ୱୀ ଇକ୍ଷ୍ୱାକୁକୁଳଶ୍ରେଷ୍ଠ ବଶିଷ୍ଠ ଉତ୍ପନ୍ନ ହେଲେ । ୭ । ସେହି ଅନନ୍ଦିତ ବଶିଷ୍ଠ ଉତ୍ପନ୍ନ ହେବାମାତ୍ରେ ମହାରାଜ ଇକ୍ଷ୍ୱାକୁ ତାଙ୍କୁ କହିଲେ, "ସୌମ୍ୟ ! ଆପଣ ମୋର ବଂଶର କଲ୍ୟାଣ ନିମନ୍ତେ ମୋର ପୁରୋହିତ ହୁଅନ୍ତୁ" । ୮ । ହେ ଲକ୍ଷ୍ମଣ ! ଏହିପ୍ରକାରେ ମହାତ୍ମା ବଶିଷ୍ଠଙ୍କର ଶରୀରପ୍ରାପ୍ତି ଘଟିଲା । ହେ ସୌମ୍ୟ ! ଏବେ ନିମିଙ୍କର ଯାହା ହେଲା ତାହା ଶୁଣ । ୯ । ମହାରାଜ ନିମିଙ୍କ ଶରୀରହୀନ ହେବାର ଦେଖି ବୁଦ୍ଧିମାନ୍ ଋଷିମାନେ ତାଙ୍କର ସେହି ଶରୀର ଦ୍ୱାରା ଯଜ୍ଞଦୀକ୍ଷା ପୂର୍ଣ୍ଣ କରିବାକୁ ଲାଗିଲେ । ୧୦ । ସେହି ଋଷିମାନେ ପୁରବାସୀ ଏବଂ ରାଜାଙ୍କ ଭୃତ୍ୟମାନଙ୍କ ସହାୟତାରେ ରାଜା ନିମିଙ୍କର ପ୍ରାଣହୀନ ଶରୀରକୁ ଗନ୍ଧ, ପୁଷ୍ପ ଓ ବସ୍ତ୍ର ଆଦି ଦ୍ୱାରା ରକ୍ଷା କରିବାକୁ ଲାଗିଲେ ।୧୧। ଯଜ୍ଞ ପୂର୍ଣ୍ଣ ହେବା ଉତ୍ତାରୁ ଭୃଗୁ ନିମିରାଜଙ୍କୁ କହିଲେ, "ହେ ରାଜନ୍ ! ମୁଁ ତୁମ ଉପରେ ପ୍ରୀତ ହୋଇଅଛି । ଅତଏବ ମୁଁ ତୁମ୍ଭର ଏହି ଶରୀରରେ ଚେତନା ଆଣି ଦେବି ଅର୍ଥାତ୍ ତୁମକୁ ପୁନର୍ଜୀବିତ କରାଇଦେବି" । ୧୨ । ଏଣେ ଦେବତାମାନେ ମଧ୍ୟ ରାଜା ନିମିଙ୍କ ଉପରେ ଅତିଶୟ ପ୍ରୀତ ହୋଇ ତାଙ୍କୁ କହିଲେ, "ହେ ରାଜର୍ଷେ ! ତୁମେ ବର ମାଗ, ତୁମ୍ଭର ଜୀବ କେଉଁଠାରେ ରଖାଯିବ" । ୧୩ । ଏହିପ୍ରକାରେ

ଏବମୁକ୍ତଃ ସୁରୈଃ ସର୍ବୈର୍ନିମେଶ୍ଚେ ତସ୍ତଦାବ୍ରବୀତ୍ ।
ନେତ୍ରେଷୁ ସର୍ବଭୂତାନାଂ ବସେୟଂ ସୁରସତ୍ତମାଃ । ୧୪ ।
ବାଢ଼ମିତ୍ୟେବ ବିବୁଧା ନିମେଶ୍ଚେତସ୍ତଦାବ୍ରୁବନ୍ ।
ନେତ୍ରେଷୁ ସର୍ବଭୂତାନାଂ ବାୟୁଭୂତଶ୍ଚରିଷ୍ୟସି । ୧୫ ।
ତ୍ୱତ୍କୃତେ ଚ ନିମିଷ୍ୟନ୍ତି ଚକ୍ଷୂଂଷି ପୃଥିବୀପତେ ।
ବାୟୁଭୂତେନ ଚରତା ବିଶ୍ରମାର୍ଥଂ ମୁହୁର୍ମୁହୁଃ । ୧୬ ।
ଏବମୁକ୍ତ୍ୱା ତୁ ବିବୁଧାଃ ସର୍ବେ ଜଗ୍ମୁର୍ଯଥାଗତମ୍ ।
ଋଷୟୋଽପି ମହାତ୍ମାନୋ ନିମେର୍ଦେହଂ ସମାହରନ୍ । ୧୭ ।
ଅରଣିଂ ତତ୍ର ନିକ୍ଷିପ୍ୟ ମଥନଂ ଚକ୍ରୁରୋଜସା ।
ମନ୍ତ୍ରହୋମୈର୍ମହାତ୍ମାନଃ ପୁତ୍ରହେତୋର୍ନିମେସ୍ତଦା । ୧୮ ।
ଅରଣ୍ୟାଂ ମଥ୍ୟମାନାୟାଂ ପ୍ରାଦୁର୍ଭୂତୋ ମହାତପାଃ ।
ମଥନାନ୍ମିଥିରିତ୍ୟାହୁର୍ଜନନାଜ୍ଜନକୋଽଭବତ୍ । ୧୯ ।
ଯସ୍ମାଦବିଦେହାତ୍ସମ୍ଭୂତୋ ବୈଦେହସ୍ତୁ ତତଃ ସ୍ମୃତଃ ।
ଏବଂ ବିଦେହରାଜଶ୍ଚ ଜନକଃ ପୂର୍ବକୋଽଭବତ୍ ।
ମିଥିର୍ନାମ ମହାତେଜାସ୍ତେନାୟଂ ମୈଥିଲୋଽଭବତ୍ । ୨୦ ।

---

ଦେବଗଣଙ୍କର ବଚନ ଶୁଣି ନିମିଙ୍କର ଆତ୍ମା କହିଲା, "ହେ ଶ୍ରେଷ୍ଠ ଦେବଗଣ ! ମୁଁ ସମସ୍ତ ପ୍ରାଣୀଙ୍କର ଚକ୍ଷୁମଧ୍ୟରେ ରହିବାକୁ ଇଚ୍ଛାକରୁଅଛି" । ୧୪ । ଏହି ପ୍ରାର୍ଥନା ଶୁଣି ଦେବତାମାନେ ରାଜା ନିମିଙ୍କୁ କହିଲେ, "ତାହାହିଁ ହେଉ । ତୁମେ ବାୟୁରୂପୀ ହୋଇ ପ୍ରାଣୀମାନଙ୍କ ନେତ୍ରରେ ବିରାଜମାନ କରିବ ।୧୫। ହେ ପୃଥିବୀପତେ! ବାୟୁରୂପରେ ପ୍ରାଣୀମାନଙ୍କର ନେତ୍ରରେ ତୁମେ ବିଚରଣ କରିବା ଦ୍ୱାରା ସେମାନଙ୍କର ନେତ୍ର ବିଶ୍ରାମ କରିବା ନିମନ୍ତେ ବାରମ୍ବାର ବନ୍ଦ ହୋଇ ଯାଉଥିବ" ।୧୬। ଏହା କହି ଦେବତାମାନେ ସମସ୍ତେ ନିଜ ନିଜ ସ୍ଥାନକୁ ଚାଲିଗଲେ । ଅନନ୍ତର ମହାତ୍ମା ଋଷିମାନେ ନିମିଙ୍କର ପ୍ରାଣହୀନ ଶରୀରକୁ ମନ୍ତ୍ର ଓ ହୋମଦ୍ୱାରା ଅରଣି ନିକ୍ଷେପ କରି ପୁତ୍ର ନିମନ୍ତେ ଖୁବ ଜୋରରେ ମନ୍ଥନ କଲେ । ୧୭-୧୮ । ଏହି ଅରଣିଦ୍ୱାରା ମନ୍ଥନହେତୁ ଏକ ମହାତେଜସ୍ୱୀ ପୁରୁଷ ସେହି ଶରୀରରୁ ଜାତ ହେଲେ । ମନ୍ଥନରୁ ଜାତ ହୋଇଥିବାରୁ ତାଙ୍କର ନାମ ମିଥି ଏବଂ ଋଷିମାନେ ଜାତ କରାଇଥିବାରୁ ତାଙ୍କର ନାମ ଜନକ ହେଲା । ୧୯ । ଚେତନାଶୂନ୍ୟ ଶରୀରରୁ ଉତ୍ପନ୍ନ ହୋଇଥିବାରୁ ସେହି ପୁରୁଷଙ୍କର ଅନ୍ୟ ଏକ ନାମ ବିଦେହ ମଧ୍ୟ ହେଲା । ଏହିପ୍ରକାରେ ବିଦେହରାଜ ଜନକଙ୍କର ପ୍ରଥମ ଉତ୍ପତ୍ତି ହେଲା । ସେହି ମହାତେଜସ୍ୱୀ ମିଥି ବଂଶର

ଇତି ସର୍ବମଶେଷତୋ ମୟା
କଥିତଂ ସମ୍ଭବକାରଣଂ ତୁ ସୌମ୍ୟ ।
ନୃପପୁଙ୍ଗବଶାପଜଂ ଦ୍ୱିଜସ୍ୟ
ଦ୍ୱିଜଶାପାଚ୍ଚ ଯଦଦ୍ଭୁତଂ ନୃପସ୍ୟ । ୨୧ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ନିମିନିମୀଶୀକରଣଂ ନାମ ସପ୍ତପଞ୍ଚାଶଃ ସର୍ଗଃ ।

---

# ଅଷ୍ଟପଞ୍ଚାଶଃ ସର୍ଗଃ

## ଯଯାତିଶାପଃ

ଏବଂ ବ୍ରୁବତି ରାମେ ତୁ ଲକ୍ଷ୍ମଣଃ ପରବୀରହା ।
ପ୍ରତ୍ୟୁବାଚ ମହାତ୍ମାନଂ ଜ୍ୱଲନ୍ତମିବ ତେଜସା । ୧ ।
ମହଦଦ୍ଭୁତମାଶ୍ଚର୍ଯ୍ୟଂ ବିଦେହସ୍ୟ ପୁରାତନମ୍ ।
ନିର୍ବୃତ୍ତଂ ରାଜଶାର୍ଦ୍ଦୂଲ ବସିଷ୍ଠସ୍ୟ ନିମେଃ ସହ । ୨ ।

---

ରାଜାମାନଙ୍କୁ ମୈଥିଳ କୁହାଯାଏ । ୨୦ । ହେ ଲକ୍ଷ୍ମଣ ! ଋଷି ବଶିଷ୍ଠଙ୍କ ଶାପରୁ ରାଜା ନିମିଙ୍କର ଓ ନିମିଙ୍କ ଶାପରୁ ଋଷିଶ୍ରେଷ୍ଠ ବଶିଷ୍ଠଙ୍କର ଦେହହୀନ ହେବା କଥା, ପୁଣି ସେହି ଦୁହିଁଙ୍କର ଅଦ୍ଭୁତ ଶରୀରପ୍ରାପ୍ତି ହେବା କଥା ମୁଁ ବିସ୍ତୃତଭାବରେ ତୁମକୁ କହିଲି" । ୨୧ ।

---

## ୫୮ଶ ସର୍ଗ

( ଯଯାତିଙ୍କୁ ଶୁକ୍ରାଚାର୍ଯ୍ୟଙ୍କ ଶାପ )

ରାମ ଏପରି କହିବା ଉତ୍ତାରୁ ଶତ୍ରୁହନ୍ତା ଲକ୍ଷ୍ମଣ ନିଜ ତେଜରେ ଜାଜ୍ୱଲ୍ୟମାନ ରାମଙ୍କୁ ପୁଣି କହିଲେ । ୧ । "ହେ ରାଜସିଂହ ! ବିଦେହରାଜଙ୍କର ଏହି ପୁରାତନ କଥା, ଯହିଁରେ ବଶିଷ୍ଠ ଓ ନିମିଙ୍କର କଥା ମଧ୍ୟ ସଂପୃକ୍ତ ରହିଛି, ତାହା ଅତ୍ୟନ୍ତ ଆଶ୍ଚର୍ଯ୍ୟଜନକ ଓ ବିସ୍ମୟକାରୀ ଅଟେ । ୨ । ରାଜା ନିମି ତ କ୍ଷତ୍ରିୟ ଓ

ନିମିସ୍ତୁ କ୍ଷତ୍ରିୟଃ ଶୂରୋ ବିଶେଷେଣ ଚ ଦୀକ୍ଷିତଃ ।
ନ କ୍ଷମାଂ କୃତବାନ୍ ରାଜା ବଶିଷ୍ଠସ୍ୟ ମହାତ୍ମନଃ । ୩ ।
ଏବମୁକ୍ତସ୍ତୁ ତେନାୟଂ ଶ୍ରୀମାନ୍ କ୍ଷତ୍ରିୟପୁଙ୍ଗବଃ ।
ଉବାଚ ଲକ୍ଷ୍ମଣଂ ବାକ୍ୟଂ ସର୍ବଶାସ୍ତ୍ରବିଶାରଦମ୍ । ୪ ।
ରାମୋ ରମୟତାଂ ଶ୍ରେଷ୍ଠୋ ଭ୍ରାତରଂ ଦୀପ୍ତତେଜସମ୍ ।
ନ ସର୍ବତ୍ର କ୍ଷମା ବୀର ପୁରୁଷେଷୁ ପ୍ରଦୃଶ୍ୟତେ । ୫ ।
ସୌମିତ୍ରେ ଦୁଃସହୋ ରୋଷୋ ଯଥା କ୍ଷାନ୍ତୋ ଯଯାତିନା ।
ସତ୍ତ୍ୱାନୁଗଂ ପୁରସ୍କୃତ୍ୟ ତଂ ନିବୋଧ ସମାହିତଃ । ୬ ।
ନହୁଷସ୍ୟ ସୁତୋ ରାଜା ଯଯାତିଃ ପୌରବର୍ଦ୍ଧନଃ ।
ତସ୍ୟ ଭାର୍ଯ୍ୟାଦ୍ୱୟଂ ସୌମ୍ୟ ରୂପେଣାପ୍ରତିମଂ ଭୁବି । ୭ ।
ଏକା ତୁ ତସ୍ୟ ରାଜର୍ଷେର୍ନହୁଷସ୍ୟ ପୁରସ୍କୃତା ।
ଶର୍ମିଷ୍ଠା ନାମ ଦୈତେୟୀ ଦୁହିତା ବୃଷପର୍ବଣଃ । ୮ ।
ଅନ୍ୟା ତୂଶନସଃ ପତ୍ନୀ ଯଯାତେଃ ପୁରୁଷର୍ଷଭ ।
ନ ତୁ ସା ଦୟିତା ରାଜ୍ଞୋ ଦେବଯାନୀ ସୁମଧ୍ୟମା । ୯ ।

---

ବୀର, ବିଶେଷତଃ ସେତେବେଳେ ଯଜ୍ଞଦୀକ୍ଷା ଗ୍ରହଣ କରି ରହିଥିଲେ; ସୁତରାଂ ସେ ମହର୍ଷି ବଶିଷ୍ଠଙ୍କୁ କାହିଁକି କ୍ଷମା କଲେ ନାହିଁ ?" । ୩ । ଲକ୍ଷ୍ମଣ ଏହିପରି କହିବାରୁ କ୍ଷତ୍ରିୟଶ୍ରେଷ୍ଠ ଓ ଆନନ୍ଦପ୍ରଦାନକାରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ରାମ ସର୍ବଶାସ୍ତ୍ର-ନିପୁଣ ନିଜର ତେଜସ୍ୱୀ ଭ୍ରାତା ଲକ୍ଷ୍ମଣଙ୍କୁ କହିଲେ, "ହେ ବୀର ! ସବୁ ପୁରୁଷଙ୍କଠାରେ କ୍ଷମାଗୁଣ ଦେଖାଯାଏ ନାହିଁ । ୪-୫ । ହେ ଲକ୍ଷ୍ମଣ ! କ୍ରୋଧ ଅତିଶୟ ଦୁଃସହ ହୋଇଥାଏ । ସତ୍ତ୍ୱଗୁଣସମ୍ପନ୍ନ ରାଜା ଯଯାତି ନିଜର କ୍ରୋଧକୁ ଯେପରି ଶାନ୍ତ କରିଥିଲେ, ମୁଁ ସେ କଥା କହୁଛି, ତୁମେ ମନଦେଇ ଶୁଣ । ୬ । ରାଜା ଯଯାତି ମହାରାଜ ନହୁଷଙ୍କର ପୁତ୍ର । ସେ ପୁରବାସୀମାନଙ୍କର ସୁଖ ସମୃଦ୍ଧି ବଢ଼ାଇବାରେ ସର୍ବଦା ତତ୍ପର ଥିଲେ । ହେ ଲକ୍ଷ୍ମଣ ! ପୃଥିବୀରେ ସବୁଠାରୁ ରୂପବତୀ ତାଙ୍କର ଦୁଇ ଭାର୍ଯ୍ୟା ଥିଲେ । ୭ । ଜଣକର ନାମ ଥିଲା ଶର୍ମିଷ୍ଠା । ସେ ଦୈତ୍ୟଙ୍କର ପୌତ୍ରୀ ଏବଂ ବୃଷପର୍ବା ଦୈତ୍ୟର କନ୍ୟା ଥିଲେ । ସେ ରାଜାଙ୍କର ବଡ଼ ପ୍ରିୟତମା ଥିଲେ । ୮ । ଦ୍ୱିତୀୟ ପତ୍ନୀ ଶୁକ୍ରାଚାର୍ଯ୍ୟଙ୍କ କନ୍ୟା; ତାଙ୍କ ନାମ ଦେବଯାନୀ । ସେହି ସୁମଧ୍ୟମା ରାଜାଙ୍କର ପ୍ରିୟପାତ୍ରୀ ନ ଥିଲେ ।୯।

ତୟୋଃ ପୁତ୍ରୌ ତୁ ସଂଭୂତୌ ରୂପବନ୍ତୌ ସମାହିତୌ ।
ଶର୍ମିଷ୍ଠାଜନୟତ୍ ପୂରୁଂ ଦେବଯାନୀ ଯଦୁଂ ତଦା । ୧୦ ।
ପୂରୁସ୍ତୁ ଦୟିତୋ ରାଜ୍ଞୋ ଗୁଣୈର୍ମାତୃକୃତେନ ଚ ।
ତତୋ ଦୁଃଖସମାବିଷ୍ଟୋ ଯଦୁର୍ମାତରମବ୍ରବୀତ୍ । ୧୧ ।
ଭାର୍ଗବସ୍ୟ କୁଲେ ଜାତା ଦେବସ୍ୟାକ୍ଲିଷ୍ଟକର୍ମଣଃ ।
ସହସେ ହୃଦ୍ଗତଂ ଦୁଃଖମବମାନଂ ଚ ଦୁଃସହମ୍ । ୧୨ ।
ଆବାଂ ଚ ସହିତୌ ଦେବି ପ୍ରବିଶାବ ହୁତାଶନମ୍ ।
ରାଜା ତୁ ରମତାଂ ସାର୍ଧଂ ଦୈତ୍ୟପୁତ୍ର୍ୟା ବହୂକ୍ଷପାଃ । ୧୩ ।
ଯଦି ବା ସହନୀୟଂ ତେ ମାମନୁଜ୍ଞାତୁମର୍ହସି ।
କ୍ଷମ ତ୍ୱଂ ନ କ୍ଷମିଷ୍ୟେଽହଂ ମରିଷ୍ୟାମି ନ ସଂଶୟଃ । ୧୪ ।
ପୁତ୍ରସ୍ୟ ଭାଷିତଂ ଶ୍ରୁତ୍ୱା ପରମାର୍ତ୍ତସ୍ୟ ରୋଦତଃ ।
ଦେବଯାନୀ ତୁ ସଂକ୍ରୁଦ୍ଧା ସସ୍ମାର ପିତରଂ ତଦା । ୧୫ ।
ଇଙ୍ଗିତଂ ତଦଭିଜ୍ଞାୟ ଦୁହିତୁର୍ଭାର୍ଗବସ୍ତଦା ।
ଆଗତସ୍ତ୍ୱରିତଂ ତତ୍ର ଦେବଯାନୀ ତୁ ଯତ୍ର ସା । ୧୬ ।

---

ସେ ଦୁହିଙ୍କର ଦୁଇଟି ରୂପବାନ୍ ପୁତ୍ର ଜାତ ହୋଇଥିଲେ । ଶର୍ମିଷ୍ଠାଙ୍କ ଗର୍ଭରୁ ପୁରୁ ଓ ଦେବଯାନୀଙ୍କ ଗର୍ଭରୁ ଯଦୁଙ୍କର ଜନ୍ମ ହୋଇଥିଲା । ୧୦ । ମାତାଙ୍କ ହେତୁରୁ ଏବଂ ନିଜେ ଗୁଣବାନ୍ ହୋଇଥିବାରୁ ରାଜାଙ୍କର ପୁରୁଙ୍କ ପ୍ରତି ବିଶେଷ ସ୍ନେହ ଥିଲା । ଏହା ଦେଖି ବିଶେଷ ଦୁଃଖିତ ହୋଇ ଜ୍ୟେଷ୍ଠ ରାଜକୁମାର ଯଦୁ ନିଜର ମାତାଙ୍କୁ କହିଲେ ।୧୧। "ହେ ମାତ ! ତୁମେ ଏପରି ସାମର୍ଥ୍ୟସମ୍ପନ୍ନ ଭାର୍ଗବ ଦେବଙ୍କ କୁଳରେ ଜନ୍ମ ହୋଇ ମଧ୍ୟ ଏତାଦୃଶ ମାନସିକ କଷ୍ଟ ଏବଂ ଅନାଦର ସହି ରହିଅଛ? ।୧୨ । ହେ ଦେବି ! ଆସ ତୁମେ ଏବଂ ମୁଁ ଦୁହେଁ ଏକାସଙ୍ଗରେ ଅଗ୍ନିରେ ପ୍ରବେଶ କରିବା । ତେଣିକି ରାଜା ଦୈତ୍ୟପୁତ୍ରୀଙ୍କ ସହିତ ବହୁ ରାତି ନିଷ୍କଣ୍ଟକଭାବରେ ବିହାର କରୁଥାନ୍ତୁ । ୧୩ । ଯଦି ତୁମକୁ ଏ କଷ୍ଟ ଓ ଅପମାନ ସହିବା ପସନ୍ଦ ହୁଏ, ତେବେ ତୁମେ ସହ, କିନ୍ତୁ ମୁଁ ଏହା ସହି ପାରିବି ନାହିଁ, ମୋତେ ଆଜ୍ଞା ଦିଅ, ମୁଁ ନିଶ୍ଚୟ ପ୍ରାଣତ୍ୟାଗ କରିବି, ଏଥିରେ ସନ୍ଦେହ ନାହିଁ" ।୧୪ । ଏହି ପ୍ରକାରେ ପରମଦୁଃଖିତ ହୋଇ ରୋଦନ କରୁଥିବା ପୁତ୍ରର କଥା ଶୁଣି ଦେବଯାନୀ ଅତ୍ୟନ୍ତ କ୍ରୁଦ୍ଧ ହୋଇ ନିଜର ପିତାଙ୍କୁ ସ୍ମରଣ କଲେ ।୧୫। ନିଜର କନ୍ୟାକୁ ଦୁଃଖିତା ଏବଂ କ୍ରୁଦ୍ଧା ଜାଣି ସେ ସ୍ମରଣ କରିବାମାତ୍ରେ ଶୁକ୍ରାଚାର୍ଯ୍ୟ ତାଙ୍କ କନ୍ୟା ଦେବଯାନୀ ଯେଉଁଠାରେ

ଦୃଷ୍ଟ୍ୱା ତୁ ପ୍ରକୃତିସ୍ଥାଂ ତାମପ୍ରହୃଷ୍ଟାମଚେତନାମ୍ ।
ପିତା ଦୁହିତରଂ ବାକ୍ୟଂ କିମେତଦିତି ଚାବ୍ରବୀତ୍ । ୧୭ ।
ପୃଚ୍ଛନ୍ତମସକୃତ୍ତଂ ବୈ ଭାର୍ଗବଂ ଦୀପ୍ତତେଜସମ୍ ।
ଦେବଯାନୀ ତୁ ସଂକ୍ରୁଦ୍ଧା ପିତରଂ ବାକ୍ୟମବ୍ରବୀତ୍ । ୧୮ ।
ଅହମଗ୍ନିଂ ବିଷଂ ତୀକ୍ଷ୍ଣମପୋ ବା ମୁନିସତ୍ତମ ।
ଭକ୍ଷୟିଷ୍ୟେ ପ୍ରବେକ୍ଷ୍ୟାମି ନ ତୁ ଶକ୍ଷ୍ୟାମି ଜୀବିତୁମ୍ । ୧୯ ।
ନ ମାଂ ତ୍ୱମବଜାନୀଷେ ଦୁଃଖିତାମବମାନିତାମ୍ ।
ବୃକ୍ଷସ୍ୟାବଜ୍ଞୟା ବ୍ରହ୍ମନ୍ ଛିଦ୍ୟନ୍ତେ ବୃକ୍ଷଜୀବିନଃ । ୨୦ ।
ଅବଜ୍ଞୟା ଚ ରାଜର୍ଷିଃ ପରିଭୂୟ ଚ ଭାର୍ଗବ ।
ମୟ୍ୟବଜ୍ଞାଂ ପ୍ରଯୁଙ୍କ୍ତେ ହି ନ ଚ ମାଂ ବହୁମନ୍ୟତେ । ୨୧ ।
ତସ୍ୟାସ୍ତଦ୍‌ବଚନଂ ଶ୍ରୁତ୍ୱା କୋପେନାଭିପରିପ୍ଲୁତଃ ।
ବ୍ୟାହର୍ତୁମୁପଚକ୍ରାମ ଭାର୍ଗବୋ ନହୁଷାତ୍ମଜମ୍ । ୨୨ ।
ଯସ୍ମାନ୍ମାମବଜାନୀଷେ ନାହୁଷ ତ୍ୱଂ ଦୁରାତ୍ମବାନ୍ ।
ଜରୟା ପରୟା ଜୀର୍ଣ୍ଣଃ ଶୈଥିଲ୍ୟମୁପଯାସ୍ୟସି । ୨୩ ।

---

ଥିଲେ ସେଠାରେ ଆସି ପହଞ୍ଚିଲେ । ୧୬ । ଦେବଯାନୀଙ୍କୁ ଅସୁସ୍ଥା, ଦୁଃଖିନୀ ଏବଂ କ୍ଷୁବ୍ଧା ଦେଖି ଶୁକ୍ର ନିଜର କନ୍ୟାଙ୍କୁ କହିଲେ, "ହେ ବତ୍ସେ ! ତୋର ଏପରି ଦଶା କାହିଁକି ?" ।୧୭। ମହାତେଜସ୍ୱୀ ଭାର୍ଗବ ବାରମ୍ବାର ପଚାରିବାରୁ ଦେବଯାନୀ କ୍ରୁଦ୍ଧ ହୋଇ ପିତାଙ୍କୁ କହିଲେ ।୧୮। "ହେ ମୁନିଶ୍ରେଷ୍ଠ ! ମୁଁ ଅଗ୍ନିରେ ପ୍ରବେଶ କରିବା ତୀବ୍ର ବିଷ ପାନ କରି ଅଥବା ଜଳରେ ବୁଡ଼ିକରି ମରିଯିବି, ମୁଁ ଆଉ ବଞ୍ଚି ରହି ପାରିବି ନାହିଁ ।୧୯।ତୁମେ ଜାଣ ନାହିଁ, ମୁଁ କିପରି ଦୁଃଖିନୀ ଏବଂ ମୋତେ ଏଠାରେ କିପରି ଅନାଦର କରାଯାଉଛି । ହେ ବ୍ରହ୍ମନ୍ ! ବୃକ୍ଷ କଟା ହୋଇଗଲେ ବୃକ୍ଷଜୀବୀ ଫୁଲ ଫଳମାନଙ୍କ ଦଶା ଯେପରି ହୁଏ, ମୋର ପୁତ୍ରର ଦଶା ସେହିପରି ହେଉଅଛି । । ୨୦ । ହେ ଭାର୍ଗବ ! ରାଜର୍ଷି ଯଯାତି ମୋ ପ୍ରତି ଅନାଦର କରି ମୋତେ ତିରସ୍କାର କରୁଛନ୍ତି ଏବଂ ମୋ ପ୍ରତି କୌଣସି ପ୍ରକାରେ ବହୁମାନ ଦେଖାଉ ନାହାନ୍ତି" ।୨୧। ଭାର୍ଗବ ଦେବଯାନୀଙ୍କ କଥା ଶୁଣି କ୍ରୋଧରେ ଆତ୍ମହରା ହୋଇ ନହୁଷପୁତ୍ର ରାଜା ଯଯାତିଙ୍କୁ ଲକ୍ଷ୍ୟ କରି ଏହି ଶାପ ବଚନ କହିଲେ ।୨୨। "ହେ ଦୁରାତ୍ମନ୍ ନହୁଷପୁତ୍ର ! ଯେହେତୁ ତୁ ମୋ ପ୍ରତି ଅନାଦର କରିଅଛୁ, ଅତଏବ ତୋତେ ବୃଦ୍ଧାବସ୍ଥା ଶୀଘ୍ର ଛୋଟିଯିବ ଏବଂ ତୋର ସମସ୍ତ ଅଙ୍ଗ ଶିଥିଳ ହୋଇଯିବ" । ୨୩ । ଏହି ପ୍ରକାରେ

ଏବମୁକ୍ତ୍ୱା ଦୁହିତରଂ ସମାଶ୍ୱାସ୍ୟ ଚ ଭାର୍ଗବଃ ।
ପୁନର୍ଜଗାମ ବ୍ରହ୍ମର୍ଷିର୍ଭବନଂ ସ୍ୱଂ ମହାଯଶାଃ । ୨୪ ।
ସ ଏବମୁକ୍ତ୍ୱା ଦ୍ୱିଜପୁଙ୍ଗବାଗ୍ର୍ୟଃ
ସୁତାଂ ସମାଶ୍ୱାସ୍ୟ ଚ ଦେବଯାନୀମ୍ ।
ପୁନର୍ଯଯୌ ସୂର୍ଯସମାନତେଜା
ଦତ୍ତ୍ୱା ଚ ଶାପଂ ନହୁଷାତ୍ମଜାୟ । ୨୫ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଉତ୍ତରକାଣ୍ଡେ ଯଯାତିଶାପୋ ନାମ ଅଷ୍ଟପଞ୍ଚାଶଃ ସର୍ଗଃ ।

---

# ଏକୋନଷଷ୍ଟିତମଃ ସର୍ଗଃ

## ପୂରୁରାଜ୍ୟାଭିଷେକଃ

ଶ୍ରୁତ୍ୱା ତୂଶନସଂ କ୍ରୁଦ୍ଧଂ ତଦାର୍ତ୍ତୋ ନହୁଷାତ୍ମଜଃ ।
ଜରାଂ ପରମିକାଂ ପ୍ରାପ୍ୟ ଯଦୁଂ ବଚନମବ୍ରବୀତ୍ । ୧ ।
ଯଦୋ ତ୍ୱମସି ଧର୍ମଜ୍ଞୋ ମଦର୍ଥଂ ପ୍ରତିଗୃହ୍ୟତାମ୍ ।
ଜରାଂ ପରମିକାଂ ପୁତ୍ର ଭୋଗୈ ରଂସ୍ୟେ ମହାଯଶଃ । ୨ ।

---

ରାଜାଙ୍କୁ ଶାପ ଦେଇ ଏବଂ ନିଜ କନ୍ୟାଙ୍କୁ ଆଶ୍ୱାସନା ଦେଇ ବ୍ରହ୍ମର୍ଷି ଶୁକ୍ରାଚାର୍ଯ୍ୟ ନିଜର ଆଶ୍ରମକୁ ଚାଲିଗଲେ । ୨୪ । ସୂର୍ଯ୍ୟଙ୍କ ସଦୃଶ ତେଜସ୍ୱୀ ଦ୍ୱିଜଶ୍ରେଷ୍ଠ ଭାର୍ଗବ ଏହି ପ୍ରକାର କହି ଏବଂ ନିଜର କନ୍ୟା ଦେବଯାନୀଙ୍କୁ ବୋଧ ଦେଇ ଏବଂ ନହୁଷଙ୍କ ପୁତ୍ର ଯଯାତିଙ୍କୁ ଶାପ ଦେଇ ସେଠାରୁ ଚାଲିଗଲେ । ୨୫ ।

---

# ୫୯ତମ ସର୍ଗ

## ( ପୂରୁଙ୍କ ରାଜ୍ୟାଭିଷେକ )

ନହୁଷପୁତ୍ର ରାଜା ଯଯାତି ଶୁକ୍ରାଚାର୍ଯ୍ୟଙ୍କ କୋପ କଥା ଶୁଣି ବଡ଼ ଦୁଃଖିତ ହେଲେ ଏବଂ ଅତିଶୟ ବୃଦ୍ଧାବସ୍ଥାରେ ଆକ୍ରାନ୍ତ ହୋଇ ନିଜର ପୁତ୍ର ଯଦୁଙ୍କୁ କହିଲେ । "ହେ ପୁତ୍ର ଯଦୋ ! ତୁ ଧର୍ମଜ୍ଞ ଅଟୁ । ଅତଏବ ତୁ ମୋର ଏହି ବାର୍ଦ୍ଧକ୍ୟ ଗ୍ରହଣ କର । ତାହାହେଲେ ମୁଁ ଆନନ୍ଦରେ ବିହାର କରିବି । ୨ । ହେ ନରଶ୍ରେଷ୍ଠ !

ନ ତାବତ୍ କୃତକୃତ୍ୟୋଽସ୍ମି ବିଷୟେଷୁ ନରର୍ଷଭ ।
ଅନୁଭୂୟ ତଥା କାମଂ ତତଃ ପ୍ରାପ୍ସ୍ୟାମ୍ୟହଂ ଜରାମ୍ । ୩ ।
ଯଦୁସ୍ତଦ୍‌ବଚନଂ ଶ୍ରୁତ୍ୱା ପ୍ରତ୍ୟୁବାଚ ନରର୍ଷଭମ୍ ।
ପୁତ୍ରସ୍ତେ ଦୟିତଃ ପୂରୁଃ ପ୍ରତିଗୃହ୍ଣାତୁ ବୈ ଜରାମ୍ । ୪ ।
ବହିଷ୍କୃତୋଽହମର୍ଥେଷୁ ସଂନିକର୍ଷାଚ୍ଚ ପାର୍ଥିବ ।
ପ୍ରତିଗୃହ୍ଣାତୁ ବୈ ରାଜନ୍ ଯଃ ସହାଶ୍ନାତି ଭୋଜନମ୍ । ୫ ।
ତସ୍ୟ ତଦ୍‌ବଚନଂ ଶ୍ରୁତ୍ୱା ରାଜା ପୂରୁମଥାବ୍ରବୀତ୍ ।
ଇୟଂ ଜରା ମହାବାହୋ ମଦର୍ଥଂ ପ୍ରତିଗୃହ୍ୟତାମ୍ । ୬ ।
ନାହୁଷେଣୈବମୁକ୍ତସ୍ତୁ ପୂରୁଃ ପ୍ରାଞ୍ଜଳିରବ୍ରବୀତ୍ ।
ଧନ୍ୟୋଽସ୍ମ୍ୟନୁଗୃହୀତୋଽସ୍ମି ଶାସନେଽସ୍ମି ତବ ସ୍ଥିତଃ । ୭ ।
ପୂରୋର୍ବଚନମାଜ୍ଞାୟ ନାହୁଷଃ ପରୟା ମୁଦା ।
ପ୍ରହର୍ଷମତୁଳଂ ଲେଭେ ଜରାଂ ସଂକ୍ରାମୟଚ୍ଚ ତାମ୍ । ୮ ।
ତତଃ ସ ରାଜା ତରୁଣଃ ପ୍ରାପ୍ୟ ଯଜ୍ଞାନ୍ ସହସ୍ରଶଃ ।
ବହୁ ବର୍ଷସହସ୍ରାଣି ପାଳୟାମାସ ମେଦିନୀମ୍ । ୯ ।

---

ମୁଁ ଯେପର୍ଯ୍ୟନ୍ତ ବିଷୟଭୋଗରେ ତୃପ୍ତ ନ ହୋଇଛି ସେ ପର୍ଯ୍ୟନ୍ତ କାମ ଉପଭୋଗ କରି, ପରେ ତୋଠାରୁ ନିଜର ବାର୍ଦ୍ଧକ୍ୟ ଫେରାଇ ଆଣିବି" । ୩ । ରାଜାଙ୍କର ଏହି କଥା ଶୁଣି ଯଦୁ ନୃପଶ୍ରେଷ୍ଠ ଯଯାତିଙ୍କୁ କହିଲେ, "ପୂରୁ ତ ତୁମ୍ଭର ପ୍ରିୟପୁତ୍ର ଅଟେ; ସେ ତୁମ୍ଭର ବାର୍ଦ୍ଧକ୍ୟ ଗ୍ରହଣ କରୁ । ୪ । କାରଣ ହେ ରାଜନ୍ ! ତୁମେ ତ ମୋତେ ନିଜ ପାଖରେ ରହିବାକୁ ଦେଉ ନାହିଁ ଏବଂ ସମସ୍ତ ପଦାର୍ଥରୁ ମୋତେ ବହିଷ୍କୃତ କରି ରଖିଅଛ । ଯାହାକୁ ସଙ୍ଗରେ ବସାଇ ଭୋଜନ କରୁଅଛ, ହେ ରାଜନ୍ ! ସେହି ହିଁ ତୁମ୍ଭର ବାର୍ଦ୍ଧକ୍ୟ ଗ୍ରହଣ କରୁ" । ୫ । ଯଦୁଙ୍କର ଏ କଥା ଶୁଣି ରାଜା ଯଯାତି ନିଜର ଦ୍ୱିତୀୟ ପୁତ୍ର ପୂରୁଙ୍କୁ କହିଲେ, "ହେ ମହାବାହୋ ! ମୋର ପ୍ରୀତି-ବିଧାନ ପାଇଁ ତୁ ମୋର ଏହି ବାର୍ଦ୍ଧକ୍ୟ ଗ୍ରହଣ କର" । ୬ । ରାଜାଙ୍କର ଏ କଥା ଶୁଣିବା ମାତ୍ରେ ପୂରୁ ହାତ ଯୋଡ଼ି କହିଲେ, "ମୁଁ ଧନ୍ୟ ଏବଂ ଅନୁଗୃହୀତ ହୋଇଅଛି । ଆପଣଙ୍କର ଆଜ୍ଞା ମୋର ଶିରୋଧାର୍ଯ୍ୟ ଅଟେ" । ୭ । ପୂରୁଙ୍କର ଏ କଥା ଶୁଣି ରାଜା ଯଯାତି ଅତିଶୟ ପ୍ରସନ୍ନ ଏବଂ ଆନନ୍ଦିତ ହେଲେ । ସେ ନିଜର ବାର୍ଦ୍ଧକ୍ୟକୁ ପୂରୁଙ୍କଠାରେ ସଂକ୍ରମିତ କରାଇଦେଲେ । ଅନନ୍ତର । ୮ । ରାଜା ଯଯାତି ଯୌବନ ଲାଭକରି ବହୁ ସହସ୍ର ବର୍ଷ ପର୍ଯ୍ୟନ୍ତ ସହସ୍ର ସହସ୍ର ଯଜ୍ଞ କରି ପୃଥିବୀକୁ ପାଳନ

ଅଥ ଦୀର୍ଘସ୍ୟ କାଳସ୍ୟ ରାଜା ପୂରୁମଥାବ୍ରବୀତ୍ ।
ଆନୟସ୍ୱ ଜରାଂ ପୁତ୍ର ନ୍ୟାସଂ ନିର୍ଯାତୟସ୍ୱ ମେ ।୧୦।
ନ୍ୟାସଭୂତା ମୟା ପୁତ୍ର ତ୍ୱୟି ସଂକ୍ରାମିତା ଜରା ।
ତସ୍ମାତ୍ ପ୍ରତିଗ୍ରହୀଷ୍ୟାମି ତାଂ ଜରାଂ ମା ବ୍ୟଥାଂ କୃଥାଃ ।୧୧।
ପ୍ରୀତଶ୍ଚାସ୍ମି ମହାବାହୋ ଶାସନସ୍ୟ ପ୍ରତିଗ୍ରହାତ୍ ।
ତ୍ୱାଂ ଚାହମଭିଷେକ୍ଷ୍ୟାମି ପ୍ରୀତିଯୁକ୍ତୋ ନରାଧିପମ୍ ।୧୨।
ଏବମୁକ୍ତ୍ୱା ସୁତଂ ପୂରୁଂ ଯଯାତିର୍ନହୁଷାତ୍ମଜଃ ।
ଦେବଯାନୀସୁତଂ କ୍ରୁଦ୍ଧୋ ରାଜା ବାକ୍ୟମୁବାଚ ହ ।୧୩।
ରାକ୍ଷସସ୍ତ୍ୱଂ ମୟା ଜାତଃ ପୁତ୍ରରୂପୋ ଦୁରାସଦଃ ।
ପ୍ରତିହଂସି ମମାଜ୍ଞାଂ ଯତ୍ ପ୍ରଜାର୍ଥେ ବିଫଳୋ ଭବ ।୧୪।
ପିତରଂ ଗୁରୁଭୂତଂ ମାଂ ଯସ୍ମାତ୍ତ୍ୱମବମନ୍ୟସେ ।
ରାକ୍ଷସାନ୍ ଯାତୁଧାନାଂସ୍ତ୍ୱଂ ଜନୟିଷ୍ୟସି ଦାରୁଣାନ୍ ।୧୫।

---

କରିବାକୁ ଲାଗିଲେ ।୯। ବହୁଦିନ ଅତୀତ ହୋଇଯିବା ପରେ ରାଜା ଯଯାତି ନିଜର ପୁତ୍ର ପୂରୁଙ୍କୁ କହିଲେ, "ହେ ପୁତ୍ର ! ମୁଁ ଯେଉଁ ଜରାକୁ ନ୍ୟାସରୂପରେ ତୁମ ପାଖରେ ରଖିଥିଲି ତାହାକୁ ଏବେ ମୋତେ ଆଣି ଫେରାଇ ଦିଅ ।୧୦। ହେ ବତ୍ସ ! ମୁଁ ତୁମଠାରେ ନ୍ୟାସରୂପରେ ବାର୍ଦ୍ଧକ୍ୟକୁ ରଖିଦେଇଥିଲି ; ବର୍ତ୍ତମାନ ମୁଁ ତାକୁ ପୁନର୍ଗ୍ରହଣ କରୁଛି । ସେଥିପାଇଁ ତୁମେ ଦୁଃଖିତ ହୁଅ ନାହିଁ ।୧୧। ହେ ମହାବାହୋ ! ତୁମେ ମୋର ଆଦେଶ ମାନିଅଛ । ଅତଏବ ମୁଁ ତୁମଠାରେ ଅତିଶୟ ପ୍ରସନ୍ନ ହୋଇଅଛି । ଏବେ ମୁଁ ରାଜସିଂହାସନରେ ତୁମକୁ ଅଭିଷିକ୍ତ କରାଇବି" ।୧୨। ନହୁଷପୁତ୍ର ଯଯାତି ନିଜପୁତ୍ର ପୂରୁଙ୍କୁ ଏପ୍ରକାର କହି ଦେବଯାନୀଙ୍କ ପୁତ୍ର ଯଦୁଙ୍କୁ କ୍ରୁଦ୍ଧ ହୋଇ କହିଲେ ।୧୩। "ରେ ମୂଢ ! ତୁ ମୋର ଔରସରେ ପୁତ୍ରରୂପରେ ଏକ ଦୁରାସଦ ରାକ୍ଷସ ଜନ୍ମ ହୋଇଅଛୁ । ସେଥିଲାଗି ତୁ ମୋର ଆଜ୍ଞା ମାନିଲୁ ନାହିଁ । ସୁତରାଂ ତୁ ଅପତ୍ୟ ବିଷୟରେ ବିଫଳ ହେବୁ ।୧୪। ମୁଁ ତୋର ପିତା ଏବଂ ଗୁରୁଜନ; ତଥାପି ତୁ ମୋତେ ଅବଜ୍ଞା କରୁଅଛୁ ; ଅତଏବ ତୁ ରାକ୍ଷସ ଏବଂ ଦାରୁଣ ପିଶାଚମାନଙ୍କୁ ପୁତ୍ରରୂପେ ଜନ୍ମ କରିବୁ ।୧୫। ହେ ଦୁର୍ମତେ ! ତୁ ଚନ୍ଦ-

ନ ତୁ ସୋମକୁଳୋତ୍ପନ୍ନେ ବଂଶେ ସ୍ଥାସ୍ୟତି ଦୁର୍ମତେ ।
ବଂଶୋଽପି ଭବତସ୍ତୁଲ୍ୟୋ ଦୁର୍ବିନୀତୋ ଭବିଷ୍ୟତି । ୧୬ ।
ତମେବମୁକ୍ତ୍ୱା ରାଜର୍ଷିଃ ପୂରୁଂ ରାଜ୍ୟବିବର୍ଧନମ୍ ।
ଅଭିଷେକେଣ ସଂପୂଜ୍ୟ ଆଶ୍ରମଂ ପ୍ରବିବେଶ ହ । ୧୭ ।
ତତଃ କାଳେନ ମହତା ଦିଷ୍ଟାନ୍ତମୁପଜଗ୍ମିବାନ୍ ।
ତ୍ରିଦିବଂ ସ ଗତୋ ରାଜା ଯଯାତିର୍ନହୁଷାତ୍ମଜଃ । ୧୮ ।
ପୂରୁଶ୍ଚକାର ତଦ୍ରାଜ୍ୟଂ ଧର୍ମେଣ ମହତା ବୃତଃ ।
ପ୍ରତିଷ୍ଠାନେ ପୁରବରେ କାଶୀରାଜ୍ୟେ ମହାଯଶାଃ । ୧୯ ।
ଯଦୁସ୍ତୁ ଜନୟାମାସ ଯାତୁଧାନାନ୍ ସହସ୍ରଶଃ ।
ପୁରେ କ୍ରୌଞ୍ଚବନେ ଦୁର୍ଗେ ରାଜବଂଶବହିଷ୍କୃତଃ । ୨୦ ।
ଏଷ ତୂଶନସା ମୁକ୍ତଃ ଶାପୋତ୍ସର୍ଗୋ ଯଯାତିନା ।
ଧାରିତଃ କ୍ଷତ୍ରଧର୍ମେଣ ଯନ୍ନିମିଶ୍ଚ ନ ଚକ୍ଷମେ । ୨୧ ।
ଏତତ୍ତେ ସର୍ବମାଖ୍ୟାତଂ ଦର୍ଶନଂ ସର୍ବକାରିଣାମ୍ ।
ଅନୁବର୍ତାମହେ ସୌମ୍ୟ ଦୋଷୋ ନ ସ୍ୟାଦ୍ୟଥା ନୃଗେ । ୨୨ ।

---

ବଂଶରେ ଜନ୍ମ ହୋଇଥିଲେ ସୁଦ୍ଧା ଏ ବଂଶରେ ରହି ପାରିବୁ ନାହିଁ । ତୋର ବଂଶ ମଧ୍ୟ ତୋହରିପରି ଦୁର୍ବିନୀତ ହେବ" । ୧୬ । ରାଜର୍ଷି ଯଯାତି ଏହି ପ୍ରକାରେ ଯଦୁଙ୍କୁ ଶାପ ଦେଇ ଏବଂ ରାଜ୍ୟବର୍ଦ୍ଧନ ପୂରୁଙ୍କୁ ରାଜ୍ୟାଭିଷିକ୍ତ କରି ବାନପ୍ରସ୍ଥ ଆଶ୍ରମରେ ପ୍ରବେଶ କଲେ । ୧୭ । ଏହି ଘଟଣାର ବହୁ ଦିନ ପରେ ନହୁଷପୁତ୍ର ରାଜା ଯଯାତି ଉପଯୁକ୍ତ ସମୟ ଆସି ପହଞ୍ଚିବାରୁ ସ୍ୱର୍ଗକୁ ଗମନ କଲେ । ୧୮ । କାଶୀରାଜ୍ୟର ପ୍ରତିଷ୍ଠାନପୁରରେ ମହାଯଶସ୍ୱୀ ରାଜା ପୂରୁ ଧର୍ମପୂର୍ବକ ରାଜ୍ୟ ପାଳନ କରିବାକୁ ଲାଗିଲେ । ୧୯ । ଯଦୁ ସୋମବଂଶରୁ ବହିଷ୍କୃତ ହୋଇଗଲେ । ସେ କ୍ରୌଞ୍ଚବନର ଦୁର୍ଗପୁରରେ ଯାଇ ରହିଲେ ଏବଂ ସେଠାରେ ତାଙ୍କର ସହସ୍ର ସହସ୍ର ପିଶାଚ ସନ୍ତାନ ଜାତ ହେଲେ । ୨୦ । ହେ ଲକ୍ଷ୍ମଣ ! ଏହି ପ୍ରକାରେ ଶୁକ୍ରାଚାର୍ଯ୍ୟଙ୍କ ଶାପକୁ ରାଜା ଯଯାତି କ୍ଷତ୍ରିୟଧର୍ମ ଅନୁସାରେ ନୀରବରେ ସହିନେଲେ; କିନ୍ତୁ ରାଜା ନିମି ତାଦୃଶ କ୍ଷମା ଆଚରଣ କରି ପାରିଲେ ନାହିଁ । ୨୧। ହେ ସୌମ୍ୟ ! ସମସ୍ତ ପୁରାତନ କଥା ମୁଁ ତୁମକୁ ଶୁଣାଇଲି । ଅତଏବ ଆମ୍ଭମାନଙ୍କର ଏପରି ଚଳିବା ଦରକାର, ଯେପରିକି ରାଜା ନୃଗଙ୍କପରି ଆମ ଉପରେ କେହି ଦୋଷାରୋପ କରି ନ-ପାରିବେ" । ୨୨। ଚନ୍ଦ୍ରାନନ ରାମଚନ୍ଦ୍ର ଏହି କଥା କହୁ କହୁ ରାତି ହୋଇଗଲା ।

ଇତି କଥୟତି ରାମେ ଚନ୍ଦ୍ରତୁଲ୍ୟାନନେ ଚ
ପ୍ରବରଲଡରଙ୍ଗାରଂ ବ୍ୟୋମଯଜ୍ଞେ ତଦାନୀମ୍ ।
ଅରୁଣକିରଣରକ୍ତା ଦିଗ୍ ବଭୌ ଚୈବ ପୂର୍ବା
କୁସୁମରସବିମୁକ୍ତଂ ବସ୍ତ୍ରମାକୁଣ୍ଠିତେବ । ୨୩ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ପୂଜ୍ଯରାଜ୍ୟାଭିଷେକୋ ନାମ ଏକୋନଷଷ୍ଟିତମଃ ସର୍ଗଃ ।

---

# ଷଷ୍ଟିତମଃ ସର୍ଗଃ

## ଭାର୍ଗବଚ୍ୟବନାଦ୍ୟାଗମନମ୍

ତୟୋଃ ସଂବଦତୋରେବଂ ରାମଲକ୍ଷ୍ମଣୟୋସ୍ତଦା ।
ବାସନ୍ତିକୀ ନିଶା ପ୍ରାପ୍ତା ନ ଶୀତା ନ ଚ ଘର୍ମଦା । ୧ ।
ତତଃ ପ୍ରଭାତେ ବିମଲେ କୃତପୌର୍ବାହ୍ନିକକ୍ରିୟଃ ।
ଅଭିଚକ୍ରାମ କାକୁତ୍ସ୍ଥୋ ଦର୍ଶନଂ ପୌରକାର୍ଯବିତ୍ । ୨ ।
ତତଃ ସୁମନ୍ତ୍ରସ୍ତ୍ୱାଗମ୍ୟ ରାଘବଂ ବାକ୍ୟମବ୍ରବୀତ୍ ।
ଏତେ ପ୍ରତିହତା ରାଜନ୍ ଦ୍ୱାର୍ଯ୍ୟାସ୍ତିଷ୍ଠନ୍ତି ତାପସାଃ । ୩ ।

---

ଆକାଶରେ ଏଣେତେଣେ ତାରାଗଣ ପ୍ରକାଶ ପାଇବାକୁ ଲାଗିଲେ । ଚନ୍ଦ୍ରୋଦୟ ହୋଇ ଯିବାରୁ ପୂର୍ବାକାଶ ରକ୍ତବର୍ଣ୍ଣ ହୋଇ, କୌଣସି ଜଣେ ସ୍ତ୍ରୀ ନାରଙ୍ଗୀ ରଙ୍ଗର ଶାଢ଼ୀ ପିନ୍ଧିଥିବାଭଳି ଦେଖାଗଲା । ୨୩ ।

---

# ୬୦ତମ ସର୍ଗ

## (ଭାର୍ଗବ ଚ୍ୟବନାଦି ଋଷିମାନଙ୍କ ଆଗମନ)

ରାମ ଓ ଲକ୍ଷ୍ମଣ ଏହିପରି ଭାବରେ କଥୋପକଥନ କରୁ କରୁ ବସନ୍ତକାଳୀନ ରାତି ଆସି ପହଞ୍ଚିଲା, ଯେଉଁଥିରେ କି ବେଶି ଥଣ୍ଡା ନ ଥିଲା କି ବେଶି ଗରମ ନ ଥିଲା । ୧ । ଅନନ୍ତର ନିର୍ମଳ ପ୍ରାତଃକାଳରେ ରାମ ପ୍ରାତଃକୃତ୍ୟ ସମାପନ କରି ପୁରବାସୀମାନଙ୍କର କାର୍ଯ୍ୟ ଦେଖିବା ପାଇଁ ଦରବାରରେ ଆସି ଉପସ୍ଥିତ ହେଲେ । । ୨ । ସେହି ସମୟରେ ସୁମନ୍ତ୍ର ଆସି ରାମଙ୍କୁ କହିଲେ, "ହେ ରାଜନ୍ ! କେତେଜଣ ତପସ୍ୱୀ ଆପଣଙ୍କୁ ଦର୍ଶନ କରିବା ପାଇଁ ଆସିଛନ୍ତି ଓ ଦ୍ୱାରଦେଶରେ ପ୍ରତିହାରୀମାନେ

ଭାର୍ଗବଂ ଚ୍ୟବନଂ ଚୈବ ପୁରସ୍କୃତ୍ୟ ମହର୍ଷୟଃ ।
ଦର୍ଶନଂ ତେ ମହାରାଜ ଚୋଦୟନ୍ତି କୃତତ୍ୱରାଃ । ୪ ।
ପ୍ରୀୟମାଣା ନରବ୍ୟାଘ୍ର ଯମୁନାତୀରବାସିନଃ ।
ତସ୍ୟ ତଦ୍‌ବଚନଂ ଶ୍ରୁତ୍ୱା ରାମଃ ପ୍ରୋବାଚ ଧର୍ମବିତ୍ । ୫ ।
ପ୍ରବେଶ୍ୟନ୍ତାଂ ମହାଭାଗା ଭାର୍ଗବପ୍ରମୁଖା ଦ୍ୱିଜାଃ ।
ରାଜ୍ଞସ୍ତ୍ୱାଜ୍ଞାଂ ପୁରସ୍କୃତ୍ୟ ଦ୍ୱାଃସ୍ଥୋ ମୂର୍ଦ୍ଧ୍ନି କୃତାଞ୍ଜଳିଃ । ୬ ।
ପ୍ରବେଶୟାମାସ ତଦା ତାପସାନ୍ ସୁଦୁରାସଦାନ୍ ।
ଶତଂ ସମଧିକଂ ତତ୍ର ଦୀପ୍ୟମାନଂ ସ୍ୱତେଜସା । ୭ ।
ପ୍ରବିଷ୍ଟଂ ରାଜଭବନଂ ତାପସାନାଂ ମହାତ୍ମନାମ୍ ।
ତେ ଦ୍ୱିଜାଃ ପୂର୍ଣ୍ଣକଲଶୈଃ ସର୍ବତୀର୍ଥାମ୍ବୁସତ୍କୃତୈଃ । ୮ ।
ଗୃହୀତ୍ୱା ଫଳମୂଳଂ ଚ ରାମସ୍ୟାଭ୍ୟାହରନ୍ ବହୁ ।
ପ୍ରତିଗୃହ୍ୟ ତୁ ତତ୍ସର୍ବଂ ରାମଃ ପ୍ରୀତିପୁରସ୍କୃତଃ । ୯ ।
ତୀର୍ଥୋଦକାନି ସର୍ବାଣି ଫଳାନି ବିବିଧାନି ଚ ।
ଉବାଚ ଚ ମହାବାହୁଃ ସର୍ବାନେବ ମହାମୁନୀନ୍ । ୧୦ ।

---

ସେମାନଙ୍କୁ ଅଟକାଇ ରଖିଛନ୍ତି ।୩। ଭୃଗୁବଂଶୀ ଚ୍ୟବନ ସେମାନଙ୍କ ମଧ୍ୟରେ ଅଗ୍ରଣୀ ଅଟନ୍ତି । ସେମାନେ ଆପଣଙ୍କ ଦର୍ଶନ ପାଇଁ ତରବର ହେଉଛନ୍ତି ଏବଂ ସେଥିପାଇଁ ମୋତେ ପଠାଇଛନ୍ତି । ୪ । ହେ ନରବ୍ୟାଘ୍ର ! ଏହି ଋଷିମାନେ ଯମୁନାତଟବାସୀ ଅଟନ୍ତି ଏବଂ ଆପଣଙ୍କୁ ପ୍ରୀତ କରାଇବା ଉଦ୍ଦେଶ୍ୟରେ ଏଠାକୁ ଆସିଛନ୍ତି” । ସୁମନ୍ତ୍ରଙ୍କ ଏ କଥା ଶୁଣି ଧର୍ମଜ୍ଞ ରାମ କହିଲେ । ୫ । “ସେହି ମହାଭାଗ ଭୃଗୁବଂଶୀ ଚ୍ୟବନାଦି ତପସ୍ୱୀମାନଙ୍କୁ ଏଠାକୁ ନେଇଆସ ।” ମହାରାଜଙ୍କର ଆଜ୍ଞା ପାଇ ଦ୍ୱାରୀ କୃତାଞ୍ଜଳି ହୋଇ ସେହି ତେଜସ୍ୱୀ ତପସ୍ୱୀମାନଙ୍କୁ ମହାରାଜଙ୍କ ସମ୍ମୁଖରେ ପହଞ୍ଚାଇଦେଲା । ନିଜର ତେଜରେ ଦୀପ୍ତିମନ୍ତ ଶତାଧିକ ବ୍ରାହ୍ମଣ ରାଜସଭା ମଧ୍ୟରେ ପ୍ରବେଶ କଲେ । । ୬-୭ । ଯେତେବେଳେ ସେମାନେ ସମସ୍ତେ ରାଜସଭାକୁ ଗଲେ ସେତେବେଳେ ସେହି ମହାତ୍ମା ତପସ୍ୱୀମାନେ ତୀର୍ଥଜଳପୂର୍ଣ୍ଣ କଳସ ହାତରେ ଧରିଥିଲେ । ୮ । ସେମାନେ ବହୁ ଫଳ ମୂଳ ଆଦି ମଧ୍ୟ ରାମଙ୍କୁ ଭେଟି ଦେବାପାଇଁ ଆଣିଥିଲେ । ମହାବାହୁ ରାମ ପ୍ରୀତିପୂର୍ବକ ସେ ସମସ୍ତ ଫଳମୂଳ ଏବଂ ତୀର୍ଥଜଳ ଗ୍ରହଣ କରି ସେହି ମହର୍ଷିମାନଙ୍କୁ କହିଲେ । ୯-୧୦ । ଏହି ବିଶେଷ ଆସନ

ଇମାନ୍ୟାସନମୁଖ୍ୟାନି ଯଥାର୍ହମୁପବିଶ୍ୟତାମ୍ ।
ରାମସ୍ୟ ଭାଷିତଂ ଶ୍ରୁତ୍ୱା ସର୍ବ ଏବ ମହର୍ଷୟଃ । ୧୧ ।
ବୃସୀଷୁ ରୁଚିରାଖ୍ୟାସୁ ନିଷେଦୁଃ କାଞ୍ଚନୀଷୁ ତେ ।
ଉପବିଷ୍ଟାନୃଷୀଂସ୍ତତ୍ର ଦୃଷ୍ଟ୍ୱା ପରପୁରଞ୍ଜୟଃ ।
ପ୍ରୟତଃ ପ୍ରାଞ୍ଜଳିର୍ଭୂତ୍ୱା ରାଘବୋ ବାକ୍ୟମବ୍ରବୀତ୍ । ୧୨ ।
କିମାଗମନକାର୍ଯଂ ବଃ କିଂ କରୋମି ସମାହିତଃ ।
ଆଜ୍ଞାପ୍ୟୋଽହଂ ମହର୍ଷୀଣାଂ ସର୍ବକାମକରଃ ସୁଖମ୍ ।୧୩।
ଇଦଂ ରାଜ୍ୟଂ ଚ ସକଳଂ ଜୀବିତଂ ଚ ହୃଦି ସ୍ଥିତମ୍ ।
ସର୍ବମେତଦ୍ଦ୍ୱିଜାର୍ଥଂ ମେ ସତ୍ୟମେତଦ୍ ବ୍ରବୀମି ବଃ । ୧୪ ।
ତସ୍ୟ ତଦ୍ ବଚନଂ ଶ୍ରୁତ୍ୱା ସାଧୁକାରୋ ମହାନଭୂତ୍ ।
ଋଷୀଣାମୁଗ୍ରତପସାଂ ଯମୁନାତୀରବାସିନାମ୍ । ୧୫ ।
ଊଚୁଶ୍ଚ ତେ ମହାତ୍ମାନୋ ହର୍ଷେଣ ମହତା ବୃତାଃ ।
ଉପପନ୍ନଂ ନରଶ୍ରେଷ୍ଠ ତବୈବ ଭୁବି ନାନ୍ୟତଃ । ୧୬ ।
ବହବଃ ପାର୍ଥିବା ରାଜନ୍ନତିକ୍ରାନ୍ତା ମହାବଳାଃ ।
କାର୍ଯସ୍ୟ ଗୌରବଂ ମତ୍ୱା ପ୍ରତିଜ୍ଞାଂ ନାଭ୍ୟରୋଚୟନ୍ । ୧୭ ।

---

ପକାଯାଇଅଛି । ଆପଣମାନେ ଏହି ଯଥାଯୋଗ୍ୟ ଆସନ ଉପରେ ଉପବେଶନ କରନ୍ତୁ ।" ରାମଙ୍କ କଥା ଶୁଣି ମହର୍ଷିମାନେ ଉତ୍ତମରୂପେ ଅଳଙ୍କୃତ ସୁନାର ଚୌକି ଉପରେ ବସିଗଲେ । ସେହି ଋଷିମାନେ ବସିଯିବା ପରେ ଶତ୍ରୁହନ୍ତା ରାମ ମୁଣ୍ଡ ନୁଆଇ ହାତ ଯୋଡ଼ି ସେମାନଙ୍କୁ କହିଲେ । ୧୧-୧୨ । "ଆପଣମାନଙ୍କ ଆସିବାର କାରଣ କଅଣ କହନ୍ତୁ । ମୁଁ ଆପଣମାନଙ୍କର କି କାର୍ଯ୍ୟ କରିପାରିବି, ଆଜ୍ଞା ଦିଅନ୍ତୁ । ଆପଣମାନଙ୍କର ସମସ୍ତ ମନୋରଥ ପୂର୍ଣ୍ଣ ହେବ । ୧୩ । ମୁଁ ସତ୍ୟ କହୁଛି, ଏ ସମସ୍ତ ରାଜ୍ୟ ଓ ମୋର ହୃଦୟସ୍ଥିତ ପ୍ରାଣ ମଧ୍ୟ ବ୍ରାହ୍ମଣମାନଙ୍କ ଉଦ୍ଦେଶ୍ୟରେ ଉତ୍ସୃଷ୍ଟ ଅଛି" । ୧୪ । ରାମଙ୍କର ଏ କଥା ଶୁଣି ଯମୁନାତୀରବାସୀ ଉଗ୍ରତପସ୍ୱୀ ଋଷିମାନେ ବିପୁଳ ସାଧୁବାଦ ପ୍ରକାଶ କଲେ । ୧୫ । ସେହି ମହାତ୍ମାମାନେ ଅତିଶୟ ଆନନ୍ଦିତ ହୋଇ କହିଲେ, "ହେ ନରଶ୍ରେଷ୍ଠ ! ଏ ପୃଥିବୀରେ ଆପଣଙ୍କ ଛଡ଼ା ଅନ୍ୟ କେହି ଏପରି କଥା କହନ୍ତା ନାହିଁ ଏବଂ ଏ କଥା ଆପଣଙ୍କର ହିଁ କହିବାର ଯୋଗ୍ୟ ଅଛି ।୧୬। ହେ ରାଜନ୍ ! ଆମ୍ଭେମାନେ ବହୁ ବଡ଼ ବଡ଼ ରାଜାଙ୍କ ପାଖକୁ ଯାଇଛୁଁ ଏବଂ ନିଜର ଇଚ୍ଛା ପ୍ରକାଶ କରିଛୁଁ, ମାତ୍ର ଆମର କାର୍ଯ୍ୟର ଗୁରୁତ୍ୱ ଜାଣି ମଧ୍ୟ କେହି ଆମର ସେ କାର୍ଯ୍ୟ କରିଦେବା ପାଇଁ

ତ୍ୱୟା ପୁନର୍ବ୍ରାହ୍ମଣଗୌରବାଦସ୍ମମ୍
କୃତା ପ୍ରତିଜ୍ଞା ହ୍ୟନବେକ୍ଷ୍ୟ କାରଣମ୍ ।
ତତଶ୍ଚ କର୍ତ୍ତା ହ୍ୟସି ନାତ୍ର ସଂଶୟୋ
ମହାଭୟାତ୍ତ୍ରାତୁମୃଷୀଂସ୍ତ୍ୱମର୍ହସି । ୧୮ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ଭାର୍ଗବଚ୍ୟବନାଦ୍ୟାଗମନଂ ନାମ ଷଷ୍ଟିତମଃ ସର୍ଗଃ ।

---

# ଏକଷଷ୍ଟିତମଃ ସର୍ଗଃ

## ଲବଣତ୍ରାଣପ୍ରାର୍ଥନା

ଏବଂ ବ୍ରୁବଦ୍ଭିର୍ଋଷିଭିଃ କାକୁତ୍ସ୍ଥୋ ବାକ୍ୟମବ୍ରବୀତ୍ ।
କିଂ କାର୍ଯ୍ୟଂ ବ୍ରୂତ ମୁନୟୋ ଭୟଂ ତାବଦପୈତୁ ବଃ । ୧ ।
ତଥା ବ୍ରୁବତି କାକୁତ୍ସ୍ଥେ ଭାର୍ଗବୋ ବାକ୍ୟମବ୍ରବୀତ୍ ।
ଭୟାନାଂ ଶୃଣୁ ଯନ୍ମୂଲଂ ଦେଶସ୍ୟ ଚ ନରେଶ୍ୱର ।୨।

---

ପ୍ରତିଶ୍ରୁତ ହେଲେ ନାହିଁ । ୧୭ । କିନ୍ତୁ ଆପଣ ବ୍ରାହ୍ମଣମାନଙ୍କର ଗୌରବରକ୍ଷାକରି ଆମ୍ଭମାନଙ୍କର ଆସିବାର କାରଣ ନ ଶୁଣି ମଧ୍ୟ ପ୍ରତିଜ୍ଞା କରିଦେଇଛନ୍ତି । ଏତଦ୍ୱାରା ଆମ୍ଭମାନଙ୍କର ମନରେ ବିଶ୍ୱାସ ହୋଇଛି ଯେ ଆପଣ ଆମ୍ଭମାନଙ୍କ କାର୍ଯ୍ୟ କରିଦେବେ, ଏଥିରେ ସନ୍ଦେହ ନାହିଁ । ଆପଣ ଋଷିମାନଙ୍କୁ ଏତଦ୍ୱାରା ଏକ ମହାଭୟରୁ ତ୍ରାଣ କରିବାକୁ ସମର୍ଥ ଅଟନ୍ତି" । ୧୮ ।

---

# ୬୧ତମ ସର୍ଗ

## (ଲବଣଭୟରୁ ପରିତ୍ରାଣ ପାଇଁ ପ୍ରାର୍ଥନା)

ସେହି ଋଷିମାନଙ୍କର ଏ ପ୍ରକାର କଥା ଶୁଣି ରାମ କହିଲେ, "ହେ ଋଷିଗଣ ! କହନ୍ତୁ, ଆପଣମାନଙ୍କର କାର୍ଯ୍ୟ କଅଣ ଏବଂ କିପରି ଆପଣମାନଙ୍କର ଭୟ ଦୂର ହୋଇପାରିବ" ।୧। ରାମ ଏହା କହିବାରୁ ଭାର୍ଗବ କହିଲେ, "ହେ ନରନାଥ ! ଦେଶର ତଥା ଆମ୍ଭମାନଙ୍କର ଭୟର ଯେ ମୂଳକାରଣ ତାହା ମୁଁ କହୁଛି, ଆପଣ ଶୁଣନ୍ତୁ ।୨।

ପୂର୍ବଂ କୃତଯୁଗେ ରାଜନ୍ ଦୈତେୟଃ ସୁମହାବଳଃ ।
ଲୋଲପୁତ୍ରୋଽଭବଜ୍ଜ୍ୟେଷ୍ଠୋ ମଧୁର୍ନାମ ମହାସୁରଃ । ୩ ।
ବ୍ରହ୍ମଣ୍ୟଶ୍ଚ ଶରଣ୍ୟଶ୍ଚ ବୁଦ୍ଧ୍ୟା ଚ ପରିନିଷ୍ଠିତଃ ।
ସୁରୈଶ୍ଚ ପରମୋଦାରୈଃ ପ୍ରୀତିସ୍ତସ୍ୟାତୁଲାଭବତ୍ । ୪ ।
ସ ମଧୁର୍ବୀର୍ଯ୍ୟସଂପନ୍ନୋ ଧର୍ମେ ଚ ସୁସମାହିତଃ ।
ବହୁ ବର୍ଷସହସ୍ରାଣି ରୁଦ୍ରପ୍ରୀତ୍ୟାକରୋତ୍ତପଃ । ୫ ।
ରୁଦ୍ରଃ ପ୍ରୀତୋଽଭବତ୍ତସ୍ମୈ ବରଂ ଦାତୁଂ ଯଯୌ ଚ ସଃ ।
ବହୁମାନାଚ୍ଚ ରୁଦ୍ରେଣ ଦତ୍ତସ୍ତସ୍ୟାଦ୍ଭୁତୋ ବରଃ । ୬ ।
ଶୂଳଂ ଶୂଳାଦ୍ଵିନିଷ୍କୃଷ୍ୟ ମହାବୀର୍ଯ୍ୟଂ ମହାପ୍ରଭମ୍ ।
ଦଦୌ ମହାତ୍ମା ସୁପ୍ରୀତୋ ବାକ୍ୟଂ ଚୈତଦୁବାଚ ହ । ୭ ।
ତ୍ୱୟାୟମତୁଲୋ ଧର୍ମୋ ମତ୍ପ୍ରସାଦକରଃ କୃତଃ ।
ପ୍ରୀତ୍ୟା ପରମୟା ଯୁକ୍ତୋ ଦଦାମ୍ୟାୟୁଧମୁତ୍ତମମ୍ । ୮ ।
ଯାବତ୍ ସୁରୈଶ୍ଚ ବିପ୍ରୈଶ୍ଚ ନ ବିରୁଧ୍ୟେର୍ମହାସୁର ।
ତାବଚ୍ଛୂଳଂ ତବେଦଂ ସ୍ୟାଦନ୍ୟଥା ନାଶମେଷ୍ୟତି । ୯ ।

---

ପୂର୍ବେ ସତ୍ୟଯୁଗରେ ମଧୁ ନାମରେ ଏକ ବଡ଼ ବୁଦ୍ଧିମାନ୍ ଦୈତ୍ୟ ଥିଲା । ସେ ଲୋଲ ନାମକ ଦୈତ୍ୟର ଜ୍ୟେଷ୍ଠ ପୁତ୍ର ଥିଲା ।୩। ସେ ବ୍ରାହ୍ମଣଭକ୍ତ, ଶରଣାଗତବତ୍ସଳ ଓ ବଡ଼ ବୁଦ୍ଧିମାନ୍ ଥିଲା ଏବଂ ପରମ ଉଦାର ଦେବତାମାନଙ୍କ ସହ ତାହାର ଅତୁଳ ପ୍ରୀତି ଥିଲା । ୪ । ସେ ବଡ଼ ଶୂର ଓ ଧର୍ମନିଷ୍ଠ ଥିଲା । ସେ ବହୁ ବର୍ଷ ପର୍ଯ୍ୟନ୍ତ ରୁଦ୍ରଙ୍କୁ ସନ୍ତୁଷ୍ଟ କରିବା ପାଇଁ ତପସ୍ୟା କରିଥିଲା । ୫ । ରୁଦ୍ର ତାହାଠାରେ ସନ୍ତୁଷ୍ଟ ହୋଇ ତାକୁ ବରଦାନ କରିବାକୁ ବାହାରିଲେ । ରୁଦ୍ର ବହୁମାନପୂର୍ବକ ତାକୁ ଏକ ଅଦ୍ଭୁତ ପ୍ରକାରର ବର ଦେଲେ । ୬ । ଭଗବାନ୍ ଶିବ ଅତିଶୟ ପ୍ରୀତ ହୋଇ ନିଜର ତ୍ରିଶୂଳ ମଧ୍ୟରୁ ଏକ ମହାବଳବାନ୍ ଓ ମହାଦୀପ୍ତିଶାଳୀ ଶୂଳ ବାହାର କରି ମଧୁକୁ ଦେଲେ ଏବଂ ତାକୁ କହିଲେ ।୭। "ତୁ ଅତୁଳମାନ୍ୟ ଧର୍ମାନୁଷ୍ଠାନ କରିଅଛୁ, ଅତଏବ ମୁଁ ତୋ ଉପରେ ଅତିଶୟ ପ୍ରୀତ ହୋଇଅଛି; ସୁତରାଂ ମୁଁ ତୋତେ ଏହି ଉତ୍କୃଷ୍ଟ ଅସ୍ତ୍ର ଦାନ କରୁଅଛି ।୮। ମହାସୁର ! ତୁ ଯେ ପର୍ଯ୍ୟନ୍ତ ଦେବତା ଓ ବ୍ରାହ୍ମଣମାନଙ୍କର ବିରୁଦ୍ଧାଚରଣ ନ କରିବୁ ସେପର୍ଯ୍ୟନ୍ତ, ଏ ଶସ୍ତ୍ର ତୋ ପାଖରେ ରହିବ ଏବଂ ଯେତେବେଳେ ତୁ ସେମାନଙ୍କ ସହ ବୈରିତା କରିବୁ, ସେତେବେଳେ ଏ ଅସ୍ତ୍ର

ଯଶ୍ଚ ତ୍ୱାମଭିଯୁଞ୍ଜୀତ ଯୁଦ୍ଧାୟ ବିଗତଜ୍ୱରଃ ।
ତଂ ଶୂଳୋ ଭସ୍ମସାତ୍‌କୃତ୍ୱା ପୁନରେଷ୍ୟତି ତେ କରମ୍ । ୧୦ ।
ଏବଂ ରୁଦ୍ରାଦ୍‌ବରଂ ଲବ୍‌ଧ୍ୱା ଭୂୟ ଏବ ମହାସୁରଃ ।
ପ୍ରଣିପତ୍ୟ ମହାଦେବଂ ବାକ୍ୟମେତଦୁବାଚ ହ । ୧୧ ।
ଭଗବନ୍ ମମ ବଂଶସ୍ୟ ଶୂଳମେତଦନୁତ୍ତମମ୍ ।
ଭବେତ୍ତୁ ସତତଂ ଦେବ ସୁରାଣାମୀଶ୍ୱରୋ ହ୍ୟସି । ୧୨ ।
ତଂ ବ୍ରୁବାଣଂ ମଧୁଂ ଦେବଃ ସର୍ବଭୂତପତିଃ ଶିବଃ ।
ପ୍ରତ୍ୟୁବାଚ ମହାତେଜା ନୈତଦେବଂ ଭବିଷ୍ୟତି । ୧୩ ।
ମା ଭୂତ୍ତେ ବିଫଳା ବାଣୀ ମତ୍‌ପ୍ରସାଦକୃତା ଶୁଭା ।
ଭବତଃ ପୁତ୍ରମେକଂ ତୁ ଶୂଳମେତଦ୍‌ଗମିଷ୍ୟତି । ୧୪ ।
ଯାବତ୍‌କରସ୍ଥଃ ଶୂଳୋଽୟଂ ଭବିଷ୍ୟତି ସୁତସ୍ୟ ତେ ।
ଅବଧ୍ୟଃ ସର୍ବଭୂତାନାଂ ଶୂଳହସ୍ତୋ ଭବିଷ୍ୟତି । ୧୫ ।
ଏବଂ ମଧୁର୍ବରଂ ଲବ୍‌ଧ୍ୱା ଦେବାତ୍ ସୁମହଦଦ୍ଭୁତମ୍ ।
ଭବନଂ ସୋଽସୁରଶ୍ରେଷ୍ଠଃ କାରୟାମାସ ସୁପ୍ରଭମ୍ । ୧୬ ।

---

ନଷ୍ଟ ହୋଇଯିବ । ୯ । ଯେ ତୋ ସହିତ ନିର୍ଭୟରେ ଯୁଦ୍ଧ କରିବାକୁ ଆସିବ, ତୁ ଏହି ଶୂଳଦ୍ୱାରା ତାକୁ ପ୍ରହାର କରିବୁ । ଏହି ଶୂଳ ସେ ଶତ୍ରୁକୁ ଭସ୍ମ କରିଦେଇ ପୁଣି ତୋ ହାତକୁ ଫେରିଆସିବ" ।୧୦। ଏହିପ୍ରକାରେ ଶିବଙ୍କଠାରୁ ବର ପାଇ ସେହି ମହାଦୈତ୍ୟ ପୁଣି ଶିବଙ୍କୁ ପ୍ରଣାମ କରି କହିଲା ।୧୧ । "ହେ ଭଗବନ୍ ! ମୁଁ ଇଚ୍ଛାକରୁଛି ଯେ ଏହି ଅନୁପମ ଶୂଳ ମୋ ବଂଶରେ ସର୍ବଦା ରହିବ । ଆପଣ ଦେବତାମାନଙ୍କର ଈଶ୍ୱର ଅଟନ୍ତି । ଅତଏବ ଏହି ବର ଆପଣ ମୋତେ ଦିଅନ୍ତୁ" ।୧୨। ମଧୁ ଏହିପରି କହିବାରୁ ସମସ୍ତ ପ୍ରାଣୀଙ୍କର ଅଧିପତି ଶିବ କହିଲେ, "ଏପରି ହୋଇପାରିବ ନାହିଁ" । ୧୩ । କିନ୍ତୁ ମୁଁ ତୋ ଉପରେ ପ୍ରୀତ ହୋଇଅଛି, ଅତଏବ ତୋ କଥାକୁ ମୁଁ ବିଫଳ କରିବାକୁ ଚାହେଁ ନାହିଁ ; ସୁତରାଂ ତୋର ଗୋଟିଏ ପୁତ୍ର ପାଖରେ ଏ ଶୂଳ ରହିବ । ୧୪ । ଯେପର୍ଯ୍ୟନ୍ତ ଏହି ଶୂଳ ତୋ ପୁତ୍ରର ହସ୍ତରେ ଥିବ ସେପର୍ଯ୍ୟନ୍ତ କୌଣସି ପ୍ରାଣୀ ତାକୁ ମାରିପାରିବେ ନାହିଁ" । ୧୫ । ଏହିରୂପେ ଅସୁରଶ୍ରେଷ୍ଠ ମଧୁ ମହାଦେବଙ୍କଠାରୁ ଅଦ୍ଭୁତ ବର ପାଇ ଗୋଟିଏ ବଡ଼ ଉତ୍ତମ ପ୍ରଭାବଶିଷ୍ଟ ଶ୍ରେଷ୍ଠ ଭବନ ନିର୍ମାଣ କରାଇଲା । ୧୬ । ତାହାର ପତ୍ନୀର ନାମ

ତସ୍ୟ ପତ୍ନୀ ମହାଭାଗା ପ୍ରିୟା କୁମ୍ଭୀନସୀତି ଯା ।
ବିଶ୍ୱାବସୋରପତ୍ୟଂ ସା ହ୍ୟନଲାୟାଂ ମହାପ୍ରଭା । ୧୭ ।
ତସ୍ୟାଃ ପୁତ୍ରୋ ମହାବୀର୍ଯ୍ୟୋ ଲବଣୋ ନାମ ଦାରୁଣଃ ।
ବାଲ୍ୟାତ୍ ପ୍ରଭୃତି ଦୁଷ୍ଟାତ୍ମା ପାପାନ୍ୟେବ ସମାଚରତ୍ । ୧୮ ।
ତଂ ପୁତ୍ରଂ ଦୁର୍ବିନୀତଂ ତୁ ଦୃଷ୍ଟ୍ୱା କ୍ରୋଧସମନ୍ୱିତଃ ।
ମଧୁଃ ସ ଶୋକମାପେଦେ ନ ଚୈନଂ କିଞ୍ଚିଦବ୍ରବୀତ୍ । ୧୯ ।
ସ ବିହାୟ ତ୍ୱିମଂ ଲୋକଂ ପ୍ରବିଷ୍ଟୋ ବରୁଣାଲୟମ୍ ।
ଶୂଳଂ ନିବେଶ୍ୟ ଲବଣେ ବରଂ ତସ୍ମୈ ନ୍ୟବେଦୟତ୍ । ୨୦ ।
ସ ପ୍ରଭାବେଣ ଶୂଳସ୍ୟ ଦୌରାତ୍ମ୍ୟେନାତ୍ମନସ୍ତଥା ।
ସନ୍ତାପୟତି ଲୋକାଂସ୍ତ୍ରୀନ୍ ବିଶେଷେଣ ଚ ତାପସାନ୍ । ୨୧ ।
ଏବଂପ୍ରଭାବୋ ଲବଣଃ ଶୂଳଂ ଚୈବ ତଥାବିଧମ୍ ।
ଶ୍ରୁତ୍ୱା ପ୍ରମାଣଂ କାକୁତ୍ସ୍ଥ ତ୍ୱଂ ହି ନଃ ପରମା ଗତିଃ । ୨୨ ।
ବହବଃ ପାର୍ଥିବା ରାମ ଭୟାର୍ତ୍ତୈ ଋଷିଭିଃ ପୁରା ।
ଅଭୟଂ ଯାଚିତା ବୀର ତ୍ରାତାରଂ ନ ଚ ବିଦ୍ମହେ । ୨୩ ।

---

କୁମ୍ଭୀନସୀ ଥିଲେ । ସେ ଅତିଭାଗ୍ୟବତୀ ଥିଲେ ଏବଂ ଅନଳାଙ୍କ ଗର୍ଭରେ ବିଶ୍ୱାବସୁଙ୍କ ଠାରୁ ଜନ୍ମହୋଇଥିଲେ । ୧୭ । ତାହାର ପୁତ୍ର ମହାପରାକ୍ରମୀ ନୃଶଂସ ଲବଣାସୁର ବାଲ୍ୟକାଳରୁ ଅତିଶୟ ଦୁଷ୍ଟସ୍ୱଭାବ ହୋଇଥିବାରୁ ସେ ପାପକାର୍ଯ୍ୟମାନହିଁ କରୁଥିଲେ । ୧୮ । ନିଜର ପୁତ୍ରକୁ ଏପରି ଦୁର୍ବିନୀତ ଦେଖି ମଧୁ କ୍ରୁଦ୍ଧ ଏବଂ ଦୁଃଖିତ ହେଲେ; ମାତ୍ର ଲବଣକୁ ସେ କିଛି କହିଲେ ନାହିଁ । ୧୯ । ଶେଷରେ ମଧୁ ଏହି ଲୋକ ପରିତ୍ୟାଗ କରି ବରୁଣାଲୟ ସମୁଦ୍ରରେ ପ୍ରବେଶ କଲେ । ଯିବା ପୂର୍ବରୁ ମଧୁ ଲବଣକୁ ଏହି ଶୂଳ ପ୍ରଦାନ କଲେ ଏବଂ ଏ ସମ୍ପର୍କୀୟ ବରର ବୃତ୍ତାନ୍ତ ତାକୁ କହିଦେଇଗଲେ । ୨୦ । ବର୍ତ୍ତମାନ ସେ ଲବଣ ଏହି ଶୂଳର ପ୍ରଭାବରୁ ଏବଂ ନିଜର ଦୁରାତ୍ମାର ହେତୁରୁ ତିନିଲୋକକୁ ଓ ବିଶେଷତଃ ତପସ୍ୱୀମାନଙ୍କୁ ସନ୍ତାପିତ କରୁଅଛି । ୨୧ । ହେ କାକୁତ୍ସ୍ଥ ! ଲବଣର ପ୍ରଭାବ ଏବଂ ଶୂଳର ମାହାତ୍ମ୍ୟ ଏହିପରି ଅଟେ । ସେ ସମସ୍ତ ବୃତ୍ତାନ୍ତ ଶୁଣି ଆପଣ ଯାହା ଉଚିତ ମନେକରନ୍ତି ତାହା କରନ୍ତୁ । ଆପଣହିଁ ଆମ୍ଭମାନଙ୍କର ପରମଗତି ଅଟନ୍ତି । ୨୨ । ହେ ରାଜନ୍ ! ଆପଣଙ୍କ ପାଖକୁ ଆସିବା ପୂର୍ବରୁ ଆମ୍ଭମାନଙ୍କ ମଧ୍ୟରୁ ଅନେକ ଋଷି ଭୟରେ ବ୍ୟାକୁଳ ହୋଇ ବହୁ ରାଜାଙ୍କଠାରେ ଲବଣର ଭୟରୁ ତ୍ରାଣ ପାଇବା ପାଇଁ ପ୍ରାର୍ଥନା କରିଅଛନ୍ତି; କିନ୍ତୁ କେହି ଆମ୍ଭମାନଙ୍କୁ ରକ୍ଷା କରିପାରିବାର ଆମ୍ଭେମାନେ ଜାଣି ନାହୁଁ । ୨୩ ।

ତେ ବୟଂ ରାବଣଂ ଶ୍ରୁତ୍ୱା ହତଂ ସବଲବାହନମ୍ ।
ତ୍ରାତାରଂ ବିଦ୍ମହେ ତାତ ନାନ୍ୟଂ ଭୁବି ନରାଧିପମ୍ ।
ତତ୍ ପରିତ୍ରାତୁମିଚ୍ଛାମୋ ଲବଣାଦ୍ଭୟପୀଡ଼ିତାନ୍ । ୨୪ ।
ଇତି ରାମ ନିବେଦିତଂ ତୁ ତେ
ଭୟଜଂ କାରଣମୁତ୍ଥିତଂ ଚ ଯତ୍ ।
ବିନିବାରୟିତୁଂ ଭବାନ୍ କ୍ଷମଃ
କୁରୁ ତଂ କାମମହୀନବିକ୍ରମ । ୨୫ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ଲବଣତ୍ରାଣପ୍ରାର୍ଥନା ନାମ ଏକଷଷ୍ଟିତମଃ ସର୍ଗଃ ।

---

# ଦ୍ୱିଷଷ୍ଟିତମଃ ସର୍ଗଃ

## ଶତ୍ରୁଘ୍ନପ୍ରାର୍ଥନା

ତଥୋକ୍ତେ ତାନୃଷୀନ୍ ରାମଃ ପ୍ରତ୍ୟୁବାଚ କୃତାଞ୍ଜଳିଃ ।
କିମାହାରଃ କିମାଚାରୋ ଲବଣଃ କ୍ୱ ଚ ବର୍ତ୍ତତେ ।୧ ।

---

ହେ ବତ୍ସ ! ଯେତେବେଳେ ଆମ୍ଭେମାନେ ଶୁଣିଲୁ, ଆପଣ ସକୁଟୁମ୍ବରେ ରାବଣକୁ ସଂହାର କରିଛନ୍ତି, ସେତେବେଳେ ଆମ୍ଭେମାନେ ବୁଝିଲୁ ଯେ ଆପଣ ଆମ୍ଭମାନଙ୍କୁ ରକ୍ଷାକରି ପାରିବେ । କାରଣ ଆମ୍ଭେମାନେ ବୁଝିଲୁ ଯେ ପୃଥିବୀରେ ଏପରି କୌଣସି ରାଜା ନାହିଁ ଯେ କି ଆମ୍ଭମାନଙ୍କୁ ଲବଣାସୁରଠାରୁ ରକ୍ଷାକରି ପାରିବ । ଲବଣ ଭୟରେ ପୀଡ଼ିତ ଆମ୍ଭମାନଙ୍କୁ ଆପଣ ରକ୍ଷାକରିବେ ବୋଲି ଆମ୍ଭେମାନେ ଇଚ୍ଛାକରୁଛୁ" ।୨୪।
ଏହିପ୍ରକାରେ ସେହି ତପସ୍ୱୀମାନେ ନିଜର ଭୟର ସମସ୍ତ ବୃତ୍ତାନ୍ତ କହି ରାମଙ୍କୁ ନିବେଦନ କରି କହିଲେ, "ହେ ଭଗବନ୍ ! ଆପଣ ଅତି ବଳବାନ୍ ଅଟନ୍ତି । ଅତଏବ ଆମ୍ଭମାନଙ୍କର ଏ ଭୟ ଦୂର କରିବା ପାଇଁ ଆପଣହିଁ ସମର୍ଥ ଅଟନ୍ତି । ହେ ମହାପରାକ୍ରମଶାଳିନ୍ ! ଆପଣ ଆମ୍ଭମାନଙ୍କର ଏହି କାର୍ଯ୍ୟ କରନ୍ତୁ" । ୨୫ ।

---

## ୬୨ତମ ସର୍ଗ

### ( ଶତ୍ରୁଘ୍ନଙ୍କର ଦୈତ୍ୟବଧପ୍ରାର୍ଥନା )

ଋଷିମାନେ ଏଭଳି କହିବା ଉତ୍ତାରୁ ରାମ ହାତ ଯୋଡ଼ି କହିଲେ, "ଆପଣମାନେ ମୋତେ କହନ୍ତୁ, ଲବଣାସୁର କଅଣ ଖାଏ, ତାର ଆଚାର ବ୍ୟବହାର କିପରି ଏବଂ

ରାଘବସ୍ୟ ବଚଃ ଶ୍ରୁତ୍ୱା ଋଷୟଃ ସର୍ବ ଏବ ତେ ।
ତତୋ ନିବେଦୟାମାସୁର୍ଲବଣୋ ବବୃଧେ ଯଥା । ୨ ।
ଆହାରଃ ସର୍ବସତ୍ତ୍ୱାନି ବିଶେଷେଣ ଚ ତାପସାଃ ।
ଆଚାରୋ ରୌଦ୍ରତା ନିତ୍ୟଂ ବାସୋ ମଧୁବନେ ତଥା । ୩ ।
ହତ୍ୱା ବହୁ ସହସ୍ରାଣି ସିଂହବ୍ୟାଘ୍ରମୃଗଦ୍ୱିପାନ୍ ।
ମାନୁଷାଂଶ୍ଚୈବ କୁରୁତେ ନିତ୍ୟମାହାରମାହ୍ନିକମ୍ । ୪ ।
ତତୋଽନ୍ତରାଣି ସତ୍ତ୍ୱାନି ଖାଦତେ ସ ମହାବଲଃ ।
ସଂହାରେ ସମନୁପ୍ରାପ୍ତେ ବ୍ୟାଦିତାସ୍ୟ ଇବାନ୍ତକଃ । ୫ ।
ତଚ୍ଛ୍ରୁତ୍ୱା ରାଘବୋ ବାକ୍ୟମୁବାଚ ସ ମହାମୁନୀନ୍ ।
ଘାତୟିଷ୍ୟାମି ତଦ୍ରକ୍ଷୋ ହ୍ୟପଗଚ୍ଛତୁ ବୋ ଭୟମ୍ । ୬ ।
ପ୍ରତିଜ୍ଞାୟ ତଥା ତେଷାଂ ମୁନୀନାମୁଗ୍ରତେଜସାମ୍ ।
ସ ଭ୍ରାତୄନ୍ ସହିତାନ୍ ସର୍ବାନୁବାଚ ରଘୁନନ୍ଦନଃ । ୭ ।
କୋ ହନ୍ତା ଲବଣଂ ବୀରଃ କସ୍ୟାଂଶଃ ସ ବିଧୀୟତାମ୍ ।
ଭରତସ୍ୟ ମହାବାହୋଃ ଶତ୍ରୁଘ୍ନସ୍ୟ ଚ ଧୀମତଃ । ୮ ।

---

ସେ କେଉଁଠାରେ ରହେ" । ୧ । ରାମଙ୍କ କଥା ଶୁଣି ସେ ଋଷିମାନେ ସମସ୍ତେ ଲବଣାସୁର ଯେପରିଭାବରେ ବୃଦ୍ଧି ଲାଭ କରିଥିଲା ସେ ସମସ୍ତ କଥା କହିଲେ । ୨ । ସେମାନେ କହିଲେ, "ସେ ସବୁ ପ୍ରାଣୀଙ୍କୁ ଭକ୍ଷଣ କରେ, ମାତ୍ର ବିଶେଷକରି ତପସ୍ୱୀମାନଙ୍କୁହିଁ ଭକ୍ଷଣ କରେ । ତାହାର ଆଚାର ବ୍ୟବହାର ଅତିଭୟଙ୍କର ଏବଂ ସେ ମଧୁବନରେ ବାସକରେ । ୩ । ସେ ପ୍ରତିଦିନ ବହୁ ସହସ୍ର ସିଂହ, ବ୍ୟାଘ୍ର, ମୃଗ, ପକ୍ଷୀ ଏବଂ ମନୁଷ୍ୟଙ୍କୁ ମାରିକରି ଖାଇଯାଏ । ୪ । ଏହା ଛଡ଼ା ସେ ବହୁ ଜୀବଙ୍କୁ ମଧ୍ୟ ମଝିରେ ମଝିରେ ମାରିଦେଇ ଖାଇଯାଏ । ପ୍ରଳୟକାଳରେ ମୃତ୍ୟୁଦେବ ମୁଖବ୍ୟାଦାନ କରି ଯେପରି ଜୀବଙ୍କୁ ଖାଇଯାନ୍ତି, ଲବଣାସୁର ସେହିପରି ଖାଇଯାଏ" । ୫ । ଏହି ବୃତ୍ତାନ୍ତ ଶୁଣି ରାମ ସେହି ମହାମୁନିମାନଙ୍କୁ କହିଲେ, "ମୁଁ ସେ ରାକ୍ଷସକୁ ମରାଇଦେବି; ଆପଣମାନଙ୍କର ଭୟ ଦୂର ହେଉ" । ୬ । ରାମ ଏହିପ୍ରକାରରେ ସେହି ମହାତେଜସ୍ୱୀ ଋଷିମାନଙ୍କ ନିକଟରେ ପ୍ରତିଜ୍ଞା କରି ନିଜର ସବୁ ଭାଇଙ୍କୁ ସମ୍ବୋଧନ କରି କହିଲେ ।୭। "ହେ ଭ୍ରାତୃଗଣ ! ତୁମ୍ଭମାନଙ୍କ ମଧ୍ୟରୁ କିଏ ଲବଣାସୁରକୁ ମାରିବ ? ଏ କାର୍ଯ୍ୟ କାହା ଉପରେ ନ୍ୟସ୍ତ ହେବ; ମହାବାହୁ ଭରତ ନା ବୁଦ୍ଧିମାନ୍ ଶତ୍ରୁଘ୍ନ ?"।୮।

ରାଘବେଣୈବମୁକ୍ତସ୍ତୁ ଭରତୋ ବାକ୍ୟମବ୍ରବୀତ୍ ।
ଅହମେନଂ ବଧିଷ୍ୟାମି ମମାଂଶଃ ସ ବିଧୀୟତାମ୍ । ୯ ।
ଭରତସ୍ୟ ବଚଃ ଶ୍ରୁତ୍ୱା ଧୈର୍ଯଶୌର୍ଯସମନ୍ୱିତମ୍ ।
ଲକ୍ଷ୍ମଣାବରଜସ୍ତସ୍ଥୌ ହିତ୍ୱା ସୌବର୍ଣମାସନମ୍ । ୧୦ ।
ଶତ୍ରୁଘ୍ନସ୍ତ୍ୱବ୍ରବୀଦ୍‌ବାକ୍ୟଂ ପ୍ରଣିପତ୍ୟ ନରାଧିପମ୍ ।
କୃତକର୍ମା ମହାବାହୁର୍ମଧ୍ୟମୋ ରଘୁନନ୍ଦନଃ । ୧୧ ।
ଆର୍ଯେଣ ହି ପୁରୀ ଶୂନ୍ୟା ତ୍ୱୟୋଧ୍ୟା ପରିପାଳିତା ।
ସଂତାପଂ ହୃଦୟେ କୃତ୍ୱା ଆର୍ଯସ୍ୟାଗମନଂ ପ୍ରତି । ୧୨ ।
ଦୁଃଖାନି ଚ ବହୂନୀହ ହ୍ୟନୁଭୂତାନି ପାର୍ଥିବ ।
ଶୟାନୋ ଦୁଃଖଶଯ୍ୟାସୁ ନନ୍ଦିଗ୍ରାମେଽବସତ୍ ପୁରା । ୧୩ ।
ଫଳମୂଳାଶନୋ ଭୂତ୍ୱା ଜଟୀ ଚୀରଧରସ୍ତଥା ।
ଅନୁଭୂୟେଦୃଶଂ ଦୁଃଖମେଷ ରାଘବନନ୍ଦନଃ । ୧୪ ।
ପ୍ରେଷ୍ୟେ ମୟି ସ୍ଥିତେ ରାଜନ୍ନ ଭୂୟଃ କ୍ଳେଶମାପ୍ନୁୟାତ୍ ।
ତଥା ବ୍ରୁବତି ଶତ୍ରୁଘ୍ନେ ରାଘବଃ ପୁନରବ୍ରବୀତ୍ । ୧୫ ।
ଏବଂ ଭବତୁ କାକୁତ୍ସ୍ଥ କ୍ରିୟତାଂ ମମ ଶାସନମ୍ ।
ରାଜ୍ୟେ ତ୍ୱାମଭିଷେକ୍ଷ୍ୟାମି ମଧୋସ୍ତୁ ନଗରେ ଶୁଭେ । ୧୬ ।

---

ରାମ ଏପରି କହିବାରୁ ଭରତ କହିଲେ, "ମୁଁ ଏହାକୁ ମାରିବି; ଏ କାର୍ଯ୍ୟ ମୋତେ ଦିଆଯାଉ" । ୯ । ଭରତଙ୍କର ଏହିପ୍ରକାର ଧୈର୍ଯ୍ୟ ଓ ଶୌର୍ଯ୍ୟଯୁକ୍ତ କଥା ଶୁଣି ଲକ୍ଷ୍ମଣଙ୍କ ସାନ ଭାଇ ଶତ୍ରୁଘ୍ନ ସୁବର୍ଣ୍ଣ ଆସନ ଛାଡ଼ି ଉଠି ଠିଆହେଲେ । ୧୦ । ସେ ରାଜା ରାମଙ୍କୁ ପ୍ରଣାମ କରି କହିଲେ, "ମଧ୍ୟମ ଭ୍ରାତା ମହାବାହୁ ଭରତ ନିଜର କାମ ସମ୍ପୂର୍ଣ୍ଣ କରିସାରିଛନ୍ତି । ୧୧ । କାରଣ ଯେତେବେଳେ ଆପଣ ଅଯୋଧ୍ୟା ଛାଡ଼ି ଚାଲିଗଲେ, ସେତେବେଳେ ସେ ଅଯୋଧ୍ୟାବାସୀଙ୍କୁ ପରିପାଳନ କରିଥିଲେ ଏବଂ ଆପଣ ଫେରିଆସିବା ପର୍ଯ୍ୟନ୍ତ ସନ୍ତପ୍ତହୃଦୟରେ ବହୁ କଷ୍ଟ ସହିଥିଲେ । ୧୨ । ହେ ରାଜନ୍! ସେ ବହୁ ଦୁଃଖ କଷ୍ଟ ସହ୍ୟ କରିଛନ୍ତି । ସେ ପୂର୍ବେ ନନ୍ଦିଗ୍ରାମରେ ବାସ କରି ଦୁଃଖକର ଶଯ୍ୟାରେ ଶୟନ କରୁଥିଲେ । ୧୩ । ସେ ଫଳମୂଳ ଖାଇ, ଜଟା ଧାରଣ କରି ଏବଂ ବଲ୍କଳ ବସନ ପିନ୍ଧି ବହୁ କଷ୍ଟ ଅନୁଭବ କରିଛନ୍ତି । ୧୪ । ହେ ରାଜନ୍! ମୋ ସଦୃଶ ଭୃତ୍ୟ ଥାଉ ଥାଉ ସେ ଆଉ କଷ୍ଟ ପାଇବା ଉଚିତ ନୁହେଁ ।" ଶତ୍ରୁଘ୍ନ ଏପରି କହିବାରୁ ରାମ ପୁଣି କହିଲେ ।୧୫। "ହେ ଶତ୍ରୁଘ୍ନ ! ତାହାହିଁ ହେଉ । ଏବେ ମୁଁ ଯାହା କହୁଛି ତାହା କର । ମୁଁ ମଧୁ ରାକ୍ଷସର ସୁନ୍ଦର

ନିବେଶଯ୍ୟ ମହାବାହୋ ଭରତଂ ଯଦ୍ୟବେକ୍ଷସେ ।
ଶୂରସ୍ତ୍ୱଂ କୃତବିଦ୍ୟଶ୍ଚ ସମର୍ଥଶ୍ଚ ନିବେଶନେ ।୧୭।
ଯୋ ହି ଶତ୍ରୁଂ ସମୁତ୍ପାଟ୍ୟ ପାର୍ଥିବସ୍ୟ ପୁନଃ କ୍ଷୟେ ।
ନ ବିଧତ୍ତେ ନୃପଂ ତତ୍ର ନରକଂ ସ ହି ଗଚ୍ଛତି ।୧୮ ।
ସ ତ୍ୱଂ ହତ୍ୱା ମଧୁସୁତଂ ଲବଣଂ ପାପନିଶ୍ଚୟମ୍ ।
ରାଜ୍ୟଂ ପ୍ରଶାଧି ଧର୍ମେଣ ବାକ୍ୟଂ ମେ ଯଦ୍ୟବେକ୍ଷସେ ।୧୯।
ଉତ୍ତରଂ ଚ ନ ବକ୍ତବ୍ୟଂ ଶୂର ବାକ୍ୟାନ୍ତରେ ମମ ।
ବାଲେନ ପୂର୍ବଜସ୍ୟାଜ୍ଞା କର୍ତ୍ତବ୍ୟା ନାତ୍ର ସଂଶୟଃ ।୨୦ ।
ଅଭିଷେକଂ ଚ କାକୁତ୍ସ୍ଥ ପ୍ରତୀଚ୍ଛସ୍ୱ ମୟୋଦ୍ୟତମ୍ ।
ବସିଷ୍ଠପ୍ରମୁଖୈର୍ବିପ୍ରୈର୍ବିଧିମନ୍ତ୍ରପୁରସ୍କୃତମ୍ । ୨୧ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ଶତ୍ରୁଘ୍ନପ୍ରାର୍ଥନା ନାମ ଦ୍ୱିଷଷ୍ଟିତମଃ ସର୍ଗଃ ।

---

---

ନଗରରେ ତୁମକୁ ଅଭିଷିକ୍ତ କରାଇବ । ୧୬ । ହେ ମହାବାହୋ ! ଯଦି ତୁମେ ଇଚ୍ଛା କର ଭରତ ଏହିଠାରେ ରହିବେ, ତେବେ ସେ ଏହିଠାରେ ରହନ୍ତୁ । ତୁମେ ବୀର ଓ ବିଦ୍ୱାନ୍ ଏବଂ ନୂତନ ନଗର ବସାଇବାକୁ ସମର୍ଥ ଅଛ । ୧୭ । ଅତଏବ ତୁମେ ଯମୁନାତଟରେ ଏକ ସୁନ୍ଦର ନଗର ଓ ଦେଶ ବସାଅ । କାରଣ ଯେଉଁ ବ୍ୟକ୍ତି କୌଣସି ରାଜବଂଶକୁ ନିର୍ମୂଳ କରି ସେ ଦେଶରେ କୌଣସି ରାଜାକୁ ସ୍ଥାପିତ ନ କରେ ସେ ବ୍ୟକ୍ତି ନରକଗାମୀ ହୁଏ । ଅତଏବ ତୁମେ ଏହି ମଧୁପୁତ୍ର ଦୁରାତ୍ମା ପାପୀ ଲବଣାସୁରକୁ ମାରି ତାର ରାଜ୍ୟକୁ ଧର୍ମପୂର୍ବକ ପାଳନ କର । ତୁମେ ଯଦି ମୋ କଥା ମାନୁଛ, ତେବେ ହେ ବୀର ! ମୋ କଥା ଶୁଣି ଆଉ କିଛି ପ୍ରତ୍ୟୁତ୍ତର ଦିଅ ନାହିଁ । କାରଣ କନିଷ୍ଠମାନଙ୍କର ଜ୍ୟେଷ୍ଠଙ୍କ ଆଜ୍ଞା ପାଳନ କରିବା ଏକାନ୍ତ କର୍ତ୍ତବ୍ୟ, ଏଥିରେ ସନ୍ଦେହ ନାହିଁ । ଅତଏବ ମୁଁ ଦେଉଥିବା ରାଜ୍ୟକୁ ଗ୍ରହଣ କର ଏବଂ ବଶିଷ୍ଠାଦି ବ୍ରାହ୍ମଣମାନଙ୍କ ହାତରେ ବିଧିପୂର୍ବକ ମନ୍ତ୍ରଦ୍ୱାରା ନିଜର ଅଭିଷେକ କିୟା କରାଅ" । ୧୮-୨୧ ।

---

# ତ୍ରିଷଷ୍ଟିତମଃ ସର୍ଗଃ

## ଲବଣବଧୋପାୟକଥନମ୍

ଏବମୁକ୍ତସ୍ତୁ ରାମେଣ ପରାଂ ବ୍ରୀଡ଼ାମୁପାଗମତ୍ ।
ଶତ୍ରୁଘ୍ନୋ ବୀର୍ଯସଂପନ୍ନୋ ମନ୍ଦଂ ମନ୍ଦମୁବାଚ ହ । ୧ ।
ଅଧର୍ମଂ ବିଦ୍ମ କାକୁତ୍ସ୍ଥ ହ୍ୟସ୍ମିନ୍ନର୍ଥେ ନରେଶ୍ୱର ।
କଥଂ ତିଷ୍ଠତ୍ସୁ ଜ୍ୟେଷ୍ଠେଷୁ କନୀୟାନଭିଷିଚ୍ୟତେ । ୨ ।
ଅବଶ୍ୟଂ କରଣୀୟଂ ଚ ଶାସନଂ ପୁରୁଷର୍ଷଭ ।
ତବ ଚୈବ ମହାଭାଗ ଶାସନଂ ଦୁରତିକ୍ରମମ୍ । ୩ ।
ତ୍ୱତ୍ତୋ ମୟା ଶ୍ରୁତଂ ବୀର ଶ୍ରୁତିଭ୍ୟଶ୍ଚ ମୟା ଶ୍ରୁତମ୍ ।
ନୋତ୍ତରଂ ହି ମୟା ବାଚ୍ୟଂ ମଧ୍ୟମେ ପ୍ରତିଜାନତି । ୪ ।
ବ୍ୟାହୃତଂ ଦୁର୍ବଚୋ ଘୋରଂ ହନ୍ତାସ୍ମି ଲବଣଂ ମୃଧେ ।
ତସ୍ୟେୟଂ ମେ ଦୁରୁକ୍ତସ୍ୟ ଦୁର୍ଗତିଃ ପୁରୁଷର୍ଷଭ । ୫ ।
ଉତ୍ତରଂ ହି ନ ବକ୍ତବ୍ୟଂ ଜ୍ୟେଷ୍ଠେନାଭିହିତଂ ପୁନଃ ।
ଅଧର୍ମସହିତଂ ଚୈବ ପରଲୋକବିବର୍ଜିତମ୍ । ୬ ।

---

## ୬୩ତମ ସର୍ଗ

### ( ଲବଣବଧର ଉପାୟ )

ରାମ ଏହିପରି କହିବା ଉତ୍ତାରୁ ବୀର୍ଯ୍ୟଶାଳୀ ଶତ୍ରୁଘ୍ନ ଅତିଶୟ ଲଜ୍ଜିତ ହେଲେ ଏବଂ ମନ୍ଦ ମନ୍ଦ ସ୍ୱରରେ କହିଲେ । ୧ । "ହେ କାକୁସ୍ଥ ! ମୁଁ ବୁଝୁଛି ଯେ ଏହା ଅଧର୍ମ ହେବ । ଜ୍ୟେଷ୍ଠ ଭ୍ରାତା ଥାଉଁ ଥାଉଁ କନିଷ୍ଠ ଭ୍ରାତାର କିପରି ଅଭିଷେକ କରାହେବ ? । ୨ । ମାତ୍ର ହେ ପୁରୁଷଶ୍ରେଷ୍ଠ ! ଆପଣଙ୍କ ଆଜ୍ଞା ଅବଶ୍ୟ ପାଳନ କରିବାକୁ ହେବ, କାରଣ ଆପଣଙ୍କ ଆଜ୍ଞାର ବ୍ୟତିକ୍ରମ କରାଯାଇ ନ ପାରେ । ୩ । ମୁଁ ଆପଣଙ୍କଠାରୁ ଶୁଣିଛି ଏବଂ ବେଦରେ ମଧ୍ୟ ଏହା ଶୁଣାଅଛି । ଅତଏବ ମୁଁ ଆପଣଙ୍କ କଥାରେ କୌଣସି ଆପତ୍ତି କରିବ ନାହିଁ । ମଧ୍ୟମ ଭ୍ରାତା ଭରତ ଲବଣକୁ ମାରିବାକୁ ପ୍ରତିଜ୍ଞା କରି ସାରିଥିଲେ, ମାତ୍ର ମୁଁ ମଝିରେ କହି ଉଠିଲି ଯେ ମୁଁ ଲବଣକୁ ମାରିବି । ହେ ପୁରୁଷଶ୍ରେଷ୍ଠ ! ମୋର ସେହି ଅନୁଚିତ କଥନର ଫଳସ୍ୱରୂପ ମୋତେ ଏ ଦୁର୍ଗତି ମିଳିଲା ।୪-୫। ବଡ଼ ଭାଇଙ୍କ କଥାର ଉତ୍ତର ଦେବା ଉଚିତ ନୁହେଁ । କାରଣ ଉତ୍ତର ଦେବାଦ୍ୱାରା ଅଧର୍ମ ହୁଏ ଏବଂ ପରଲୋକ

**ସୋଽହଂ ଦ୍ୱିତୀୟଂ କାକୁତ୍ସ୍ଥ ନ ବକ୍ଷ୍ୟାମି ତବୋତ୍ତରମ୍ ।**
**ମା ଦ୍ୱିତୀୟେନ ଦଣ୍ଡୋ ବୈ ନିପତେନ୍ମୟି ମାନଦ ।୭।**
**କାମକାରୋ ହ୍ୟହଂ ରାଜଂସ୍ତବାସ୍ମି ପୁରୁଷର୍ଷଭ ।**
**ଅଧର୍ମଂ ଜହି କାକୁତ୍ସ୍ଥ ମତ୍କୃତେ ରଘୁନନ୍ଦନ ।୮।**
**ଏବମୁକ୍ତେ ତୁ ଶୂରେଣ ଶତ୍ରୁଘ୍ନେନ ମହାତ୍ମନା ।**
**ଉବାଚ ରାମଃ ସଂହୃଷ୍ଟୋ ଭରତଂ ଲକ୍ଷ୍ମଣଂ ତଥା ।୯।**
**ସଂଭାରାନଭିଷେକସ୍ୟ ଆନୟଧ୍ୱଂ ସମାହିତାଃ ।**
**ଅଦ୍ୟୈବ ପୁରୁଷବ୍ୟାଘ୍ରମଭିଷେକ୍ଷ୍ୟାମି ରାଘବମ୍ ।୧୦।**
**ପୁରୋହିତଂ ଚ କାକୁତ୍ସ୍ଥ ନୈଗମାନୃତ୍ୱିଜସ୍ତଥା ।**
**ମନ୍ତ୍ରିଣଶ୍ଚୈବ ତାନ୍ ସର୍ବାନାନୟଧ୍ୱଂ ମମାଜ୍ଞୟା ।୧୧।**
**ରାଜ୍ଞଃ ଶାସନମାଜ୍ଞାୟ ତଥା କୁର୍ବନ୍ ମହାରଥାଃ ।**
**ଅଭିଷେକସମାରମ୍ଭଂ ପୁରସ୍କୃତ୍ୟ ପୁରୋଧସମ୍ ।୧୨।**
**ପ୍ରବିଷ୍ଟା ରାଜଭବନଂ ରାଜାନୋ ବ୍ରାହ୍ମଣାସ୍ତଥା ।**
**ତଥାଭିଷେକୋ ବବୃଧେ ଶତ୍ରୁଘ୍ନସ୍ୟ ମହାତ୍ମନଃ ।୧୩।**

---

ନଷ୍ଟ ହୋଇଯାଏ ।୬। ମୁଁ ଭରତଙ୍କ କଥାରେ କଥା କହି ପକାଇଥିଲି ; ପୁଣି ଏବେ ଆପଣଙ୍କ କଥାରେ ଉତ୍ତର ଦେଉଛି । ସୁତରାଂ ହେ ମାନଦ ! ଏହି ଦୁଇ ଅଧର୍ମର ଫଳ ସେହି ବାକ୍ୟରୂପ ଦଣ୍ଡ ମୋତେ ଦିଅନ୍ତୁ ନାହିଁ ।୭। ହେ ପୁରୁଷଶ୍ରେଷ୍ଠ ରାଜନ୍ ! ମୁଁ ଆପଣଙ୍କ ଇଚ୍ଛାନୁସାରେ ହିଁ କାର୍ଯ୍ୟ କରିବାର ଲୋକ; କିନ୍ତୁ ଜ୍ୟେଷ୍ଠ ଭ୍ରାତା ଥାଉଁ ଥାଉଁ ନିଜର ରାଜ୍ୟାଭିଷେକ କରାଇବାରେ ମୋତେ ପାପ ଲାଗିବ । ହେ ରଘୁନନ୍ଦନ ! ସେଥିରୁ ମୋତେ ରକ୍ଷା କରନ୍ତୁ ।” ମହା ବଳବାନ୍ ଶତ୍ରୁଘ୍ନ ଏପରି କହିବା ଉତ୍ତାରୁ ରାମ ଅତିଶୟ ଆନନ୍ଦିତ ହୋଇ ଭରତ ଓ ଲକ୍ଷ୍ମଣଙ୍କୁ କହିଲେ ।୯। “ତୁମ୍ଭେମାନେ ଶୀଘ୍ର ଯତ୍ନସହକାରେ ଅଭିଷେକ ସାମଗ୍ରୀମାନ ଆଣ । ମୁଁ ଆଜି ପୁରୁଷସିଂହ ଶତ୍ରୁଘ୍ନଙ୍କର ଅଭିଷେକ କରାଇବି ।୧୦। ହେ ଲକ୍ଷ୍ମଣ ! ମୋର ଆଦେଶ ଅନୁସାରେ ପୁରୋହିତଙ୍କୁ, ବଡ଼ ବଡ଼ ମହାଜନମାନଙ୍କୁ, ଦ୍ୱିଜମାନଙ୍କୁ ଏବଂ ମନ୍ତ୍ରୀମାନଙ୍କୁ ଡକାଇ ଆଣ ।୧୧। ସେହି ମହାରଥୀମାନେ ମହାରାଜଙ୍କର ଆଦେଶ ଜାଣି ତଦନୁସାରେ କାର୍ଯ୍ୟ କଲେ ଏବଂ ପୁରୋହିତଙ୍କୁ ଅଗ୍ରଣୀ କରି ଅଭିଷେକର ଆୟୋଜନ କରାଇଲେ ।୧୨। ରାଜା ଓ ବ୍ରାହ୍ମଣମାନେ ରାଜଭବନରେ ଆସି ପ୍ରବେଶ କଲେ । ତତ୍ପରେ ମହାତ୍ମା ଶତ୍ରୁଘ୍ନଙ୍କର ରାଜ୍ୟାଭିଷେକ ହେବାକୁ

ସଂପ୍ରହର୍ଷକରଃ ଶ୍ରୀମାନ୍ ରାଘବସ୍ୟ ପୁରସ୍ୟ ଚ ।
ଅଭିଷିକ୍ତସ୍ତୁ ଶତ୍ରୁଘ୍ନୋ ବଭୌ ଚାଦିତ୍ୟସଂନିଭଃ । ୧୪ ।
ଅଭିଷିକ୍ତଃ ପୁରା ସ୍କନ୍ଦଃ ସେନ୍ଦ୍ରୈରିବ ମରୁଦ୍ଗଣୈଃ ।
ଅଭିଷିକ୍ତେ ତୁ ଶତ୍ରୁଘ୍ନେ ରାମେଣାକ୍ଲିଷ୍ଟକର୍ମଣା । ୧୫ ।
ପୌରାଃ ପ୍ରମୁଦିତାଶ୍ଚାସନ୍ ବ୍ରାହ୍ମଣାଶ୍ଚ ବହୁଶ୍ରୁତାଃ ।
କୌସଲ୍ୟା ଚ ସୁମିତ୍ରା ଚ ମଙ୍ଗଲଂ କେକୟୀ ତଥା । ୧୬ ।
ଚକ୍ରୁସ୍ତା ରାଜଭବନେ ଯାଶ୍ଚାନ୍ୟା ରାଜଯୋଷିତଃ ।
ଋଷୟଶ୍ଚ ମହାତ୍ମାନୋ ଯମୁନାତୀରବାସିନଃ । ୧୭ ।
ହତଂ ଲବଣମାଶଂସୁଃ ଶତ୍ରୁଘ୍ନସ୍ୟାଭିଷେଚନାତ୍ ।
ତତୋଽଭିଷିକ୍ତଂ ଶତ୍ରୁଘ୍ନମଙ୍କମାରୋପ୍ୟ ରାଘବଃ । ।
ଉବାଚ ମଧୁରାଂ ବାଣୀଂ ତେଜସ୍ତସ୍ୟାଭିପୂରୟନ୍ । ୧୮ ।
ଅୟଂ ଶରସ୍ତ୍ୱମୋଘସ୍ତେ ଦିବ୍ୟଃ ପରପୁରଞ୍ଜୟଃ ।
ଅନେନ ଲବଣଂ ସୌମ୍ୟ ହନ୍ତାସି ରଘୁନନ୍ଦନ । ୧୯ ।
ସୃଷ୍ଟଃ ଶରୋଽୟଂ କାକୁତ୍ସ୍ଥ ଯଦା ଶେତେ ମହାର୍ଣବେ ।
ସ୍ୱୟମ୍ଭୂରଜିତୋ ଦେବୋ ଯଂ ନାପଶ୍ୟନ୍ ସୁରାସୁରାଃ । ୨୦ ।

---

ଲାଗିଲା । ୧୩ । ଏହିପ୍ରକାରେ ଅଭିଷେକ ହୋଇଯିବା ପରେ ଶତ୍ରୁଘ୍ନ ସୂର୍ଯ୍ୟଙ୍କ ସଦୃଶ ଶୋଭାପାଇ ରାମ ତଥା ପୁରବାସୀମାନଙ୍କର ଆନନ୍ଦ ବୃଦ୍ଧି କଲେ । ୧୪ । ଯେପରି ଇନ୍ଦ୍ରାଦି ଦେବତାମାନେ ପୂର୍ବେ କାର୍ତ୍ତିକେୟଙ୍କୁ ଅଭିଷିକ୍ତ କରାଇଥିଲେ, ସେହିପରି ଅକ୍ଲିଷ୍ଟକର୍ମା ରାମଙ୍କ ଦ୍ୱାରା ଶତ୍ରୁଘ୍ନ ଅଭିଷିକ୍ତ ହେଲେ । ୧୫ । ପୁରବାସୀ ଏବଂ ବେଦପାଠୀ ବ୍ରାହ୍ମଣମାନେ ଅତ୍ୟନ୍ତ ଆନନ୍ଦିତ ହେଲେ । କୌଶଲ୍ୟା, ସୁମିତ୍ରା, କୈକେୟୀ ତଥା ଅନ୍ୟ ରାଜପତ୍ନୀଗଣ ମଙ୍ଗଳାଚରଣ କରିବାକୁ ଲାଗିଲେ । ଶତ୍ରୁଘ୍ନଙ୍କର ଅଭିଷେକ ହୋଇଯିବାଦ୍ୱାରା ଯମୁନାତୀରବାସୀ ମହାତ୍ମା ଋଷିମାନଙ୍କ ମନରେ ଲବଣାସୁରର ବିନାଶ ବିଷୟରେ ପୂର୍ଣ୍ଣ ବିଶ୍ୱାସ ଜାତ ହୋଇଗଲା । ତଦନନ୍ତର ଅଭିଷିକ୍ତ ଶତ୍ରୁଘ୍ନଙ୍କୁ ରାମ ନିଜର କୋଳରେ ବସାଇ ଏବଂ ତାଙ୍କର ଦୀପ୍ତିକୁ ଆହୁରି ବଢ଼ାଇ ମଧୁର ବଚନରେ ଏହି କଥା କହିଲେ । ୧୬-୧୮ । ହେ ସୌମ୍ୟ, ହେ ରଘୁନନ୍ଦନ ! ମୁଁ ତୁମକୁ ଏହି ଦିବ୍ୟ ଅମୋଘ ଶର ଦେଉଅଛି । ଏହା ଶତ୍ରୁ ନଗରକୁ ଜୟ କରିବ । ଏହାରି ଦ୍ୱାରା ତୁମେ ଲବଣକୁ ବଧ କରିବ ।୧୯। ଏହି ଶରକୁ ପ୍ରଳୟ ସମୟରେ ସମୁଦ୍ରରେ ଶୋଇଥିବା ବେଳେ ବିଷ୍ଣୁ ନିର୍ମାଣ କରିଥିଲେ ସେତେବେଳେ ଏହାକୁ ଦେବତା ବା ଅସୁର କେହି ଦେଖିପାରି ନ ଥିଲେ । ୨୦ ।

ଅଦୃଶ୍ୟଃ ସର୍ବଭୂତାନାଂ ତେନାୟଂ ତୁ ଶରୋତ୍ତମଃ ।
ସୃଷ୍ଟଃ କ୍ରୋଧାଭିଭୂତେନ ବିନାଶାର୍ଥଂ ଦୁରାତ୍ମନୋଃ । ୨୧ ।
ମଧୁକୈଟଭୟୋର୍ବୀର ବିଘାତେ ବର୍ତ୍ତମାନୟୋଃ ।
ସ୍ରଷ୍ଟୁକାମେନ ଲୋକାଂସ୍ତ୍ରୀଂସ୍ତୌ ଚାନେନ ହତୌ ଯୁଧି ।୨୨।
ତୌ ହତ୍ୱା ଜନଭୋଗାର୍ଥଂ କୈଟଭଂ ତୁ ମଧୁଂ ତଥା ।
ଅନେନ ଶରମୁଖ୍ୟେନ ତତୋ ଲୋକାଂଶ୍ଚକାର ସଃ । ୨୩ ।
ନାୟଂ ମୟା ଶରଃ ପୂର୍ବଂ ରାବଣସ୍ୟ ବଧାର୍ଥିନା ।
ମୁକ୍ତଃ ଶତ୍ରୁଘ୍ନ ଭୂତାନାଂ ମହାଂସ୍ତ୍ରାସୋ ଭବେଦ୍ଦିତି । ୨୪ ।
ଯଚ୍ଚ ତସ୍ୟ ମହଚ୍ଛୂଲଂ ତ୍ର୍ୟମ୍ବକେଣ ମହାତ୍ମନା ।
ଦତ୍ତଂ ଶତ୍ରୁବିନାଶାୟ ମଧୋରାୟୁଧମୁତ୍ତମମ୍ । ୨୫ ।
ସ ତଂ ନିକ୍ଷିପ୍ୟ ଭବନେ ପୂଜ୍ୟମାନଂ ପୁନଃ ପୁନଃ ।
ଦିଶଃ ସର୍ବାଃ ସମାସାଦ୍ୟ ପ୍ରାପ୍ନୋତ୍ୟାହାରମୁତ୍ତମମ୍ । ୨୬ ।
ଯଦା ତୁ ଯୁଦ୍ଧମାକାଙ୍କ୍ଷନ୍ କଶ୍ଚିଦେନଂ ସମାହ୍ୱୟେତ୍ ।
ତଦା ଶୂଳଂ ଗୃହୀତ୍ୱା ତଂ ଭସ୍ମ ରକ୍ଷଃ କରୋତି ହି । ୨୭ ।

---

ସେତେବେଳେ ଏହି ଉତ୍କୃଷ୍ଟ ଶର ମଧ୍ୟ ସମସ୍ତ ପ୍ରାଣୀଙ୍କର ଅଦୃଶ୍ୟ ହୋଇଥିଲା ଓ ଦୁରାତ୍ମାମାନଙ୍କର ବିନାଶ ନିମନ୍ତେ କ୍ରୋଧାନ୍ୱିତ ବିଷ୍ଣୁଙ୍କ ଦ୍ୱାରା ନିର୍ମିତ ହୋଇଥିଲା ।୨୧। ହେ ବୀର ! ସେତେବେଳେ ମଧୁ ଓ କୈଟଭ ତଥା ରାକ୍ଷସମାନଙ୍କର ବିନାଶ ନିମନ୍ତେ ବିଷ୍ଣୁ ଏହାକୁ ସୃଷ୍ଟି କରିଥିଲେ । ଏହି ବାଣଦ୍ୱାରା ସେ ଦୁଇ ଦୁରାତ୍ମାଙ୍କୁ ଯୁଦ୍ଧରେ ମାରି ତିନି ଲୋକ ସୃଷ୍ଟି କରିଥିଲେ ।୨୨। ଲୋକମାନଙ୍କ ସୁଖଭୋଗ ଉଦ୍ଦେଶ୍ୟରେ ସେ ଏହି ମୁଖ୍ୟ ଶରଦ୍ୱାରା ମଧୁ ଓ କୈଟଭଙ୍କୁ ହତ୍ୟା କରି ତଦନନ୍ତର ତିନି ଲୋକ ସୃଷ୍ଟି କରିଥିଲେ । ୨୩ । ହେ ଶତ୍ରୁଘ୍ନ ! ରାବଣକୁ ମାରିବା ପାଇଁ ମଧ୍ୟ ମୁଁ ଏ ଶର ନିକ୍ଷେପ କରି ନ ଥିଲି କାରଣ ଏହାଦ୍ୱାରା ପ୍ରାଣୀମାନଙ୍କ ମଧ୍ୟରେ ମହାତ୍ରାସ ଜାତ ହୋଇଥାନ୍ତା । ୨୪ । ଶିବ ଶତ୍ରୁ ସଂହାର କରିବା ପାଇଁ ମଧୁକୁ ଯେଉଁ ଉତ୍ତମ ଶୂଳ ଦେଇଥିଲେ, ଲବଣ ସେହି ପୂଜ୍ୟ ଶୂଳକୁ ନିଜ ଘରେ ରଖିଦେଇ ଆହାର ସଂଗ୍ରହ ନିମନ୍ତେ ଏଣେତେଣେ ଦଶ ଦିଗକୁ ଯାଉଅଛି । ୨୫-୨୬ । ଯେତେ-ବେଳେ କେହି ଯୁଦ୍ଧ କରିବା ପାଇଁ ଲବଣାସୁରକୁ ଆହ୍ୱାନ କରେ ସେତେବେଳେ ସେ ରାକ୍ଷସ ଏହି ଶୂଳ ଧରି ଏହାଦ୍ୱାରା ତାକୁ ଭସ୍ମ କରିପକାଏ । ୨୭ । ଅତଏବ

ସ ତ୍ୱଂ ପୁରୁଷଶାର୍ଦ୍ଦୂଲ ତମାୟୁଧବିନାକୃତମ୍ ।
ଅପ୍ରବିଷ୍ଟଂ ପୁରଂ ପୂର୍ବଂ ଦ୍ୱାରି ତିଷ୍ଠ ଧୃତାୟୁଧଃ । ୨୮ ।
ଅପ୍ରବିଷ୍ଟଂ ଚ ଭବନଂ ଯୁଦ୍ଧାୟ ପୁରୁଷର୍ଷଭ ।
ଆହ୍ୱୟେଥା ମହାବାହୋ ତତୋ ହନ୍ତାସି ରାକ୍ଷସମ୍ । ୨୯ ।
ଅନ୍ୟଥା କ୍ରିୟମାଣେ ତୁ ଅବଧ୍ୟଃ ସ ଭବିଷ୍ୟତି ।
ଯଦି ତ୍ୱେବଂ କୃତଂ ବୀର ବିନାଶମୁପଯାସ୍ୟତି । ୩୦ ।
ଏତତ୍ତେ ସର୍ବମାଖ୍ୟାତଂ ଶୂଲସ୍ୟ ଚ ବିପର୍ଯ୍ୟୟଃ ।
ଶ୍ରୀମତଃ ଶିତିକଣ୍ଠସ୍ୟ କୃତ୍ୟଂ ହି ଦୁରତିକ୍ରମମ୍ । ୩୧ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ଲବଣବଧୋପାୟକଥନଂ ନାମ ଦ୍ୱିଷଷ୍ଟିତମଃ ସର୍ଗଃ ।

---

ହେ ପୁରୁଷସିଂହ ! ସେ ଯେତେବେଳେ ଏହି ଶୂଳକୁ ସଙ୍ଗରେ ନ ନେଇ ବାହାରକୁ ଯାଇଥିବ, ସେତେବେଳେ ସେ ନଗର ମଧ୍ୟରେ ପ୍ରବେଶ କରିବା ପୂର୍ବରୁ ତୁମେ ଅସ୍ତ୍ର ଧରି ତାର ଦ୍ୱାରଦେଶରେ ଜଗି ରହିବ । ୨୮ । ହେ ନରଶ୍ରେଷ୍ଠ ! ସେ ଗୃହ ମଧ୍ୟରେ ପ୍ରବେଶ କରିବା ପୂର୍ବରୁ ତୁମେ ତାକୁ ଯୁଦ୍ଧ ପାଇଁ ଆହ୍ୱାନ କରିବ । ହେ ମହାବାହୋ ! ତାହାହେଲେ ତୁମେ ସେ ରାକ୍ଷସକୁ ମାରିପାରିବ । ୨୯ । ଏହାର ଅନ୍ୟଥାଚରଣ କଲେ ତାହାକୁ କଦାପି ମାରିହେବ ନାହିଁ । ମୁଁ ଯେପରି କହିଲି ସେପରି କଲେ, ତାର ନିଶ୍ଚୟ ବିନାଶ ହେବ । ୩୦ । ଏ ସମସ୍ତ କଥା ମୁଁ ତୁମକୁ କହିଦେଲି ଏବଂ ଏ ଶୂଳ ଯେପରି ବ୍ୟର୍ଥ ହୋଇଯିବ ତାହା ମଧ୍ୟ କହିଦେଲି । ଅନ୍ୟଥା ଶିବଙ୍କର କାର୍ଯ୍ୟକୁ ଅତିକ୍ରମ କରିହେବ ନାହିଁ ” । ୩୧ ।

---

# ଚତୁଃଷଷ୍ଟିତମଃ ସର୍ଗଃ

## ଶତ୍ରୁଘ୍ନପ୍ରସ୍ଥାନମ୍

ଏବମୁକ୍ତ୍ୱା ଚ କାକୁତ୍ସ୍ଥଂ ପ୍ରଶସ୍ୟ ଚ ପୁନଃ ପୁନଃ ।
ପୁନରେବାପରଂ ବାକ୍ୟମୁବାଚ ରଘୁନନ୍ଦନଃ । ୧ ।
ଇମାନ୍ୟଶ୍ୱସହସ୍ରାଣି ଚତ୍ୱାରି ପୁରୁଷର୍ଷଭ ।
ରଥାନାଂ ଦ୍ୱେ ସହସ୍ରେ ଚ ଗଜାନାଂ ଶତମୁତ୍ତମମ୍ । ୨ ।
ଅନ୍ତରାପଣବୀଥ୍ୟଶ୍ଚ ନାନାପଣ୍ୟୋପଶୋଭିତାଃ ।
ଅନୁଗଚ୍ଛନ୍ତୁ କାକୁତ୍ସ୍ଥଂ ତଥୈବ ନଟନର୍ତ୍ତକାଃ । ୩ ।
ହିରଣ୍ୟସ୍ୟ ସୁବର୍ଣ୍ଣସ୍ୟ ନିୟୁତଂ ପୁରୁଷର୍ଷଭ ।
ଆଦାୟ ଗଚ୍ଛ ଶତ୍ରୁଘ୍ନ ପର୍ଯ୍ୟାପ୍ତଧନବାହନଃ । ୪ ।
ବଲଂ ଚ ସୁଭୃତଂ ବୀର ହୃଷ୍ଟପୁଷ୍ଟମନୁତ୍ତମମ୍ ।
ସଂଭାଷାସଂପ୍ରଦାନେନ ରଞ୍ଜୟସ୍ୱ ନରୋତ୍ତମ । ୫ ।
ନ ହ୍ୟର୍ଥାସ୍ତତ୍ର ତିଷ୍ଠନ୍ତି ନ ଦାରା ନ ଚ ବାନ୍ଧବାଃ ।
ସୁପ୍ରୀତୋ ଭୃତ୍ୟବର୍ଗଶ୍ଚ ଯତ୍ର ତିଷ୍ଠତ ରାଘବ । ୬ ।

---

## ୬୪ତମ ସର୍ଗ

### ( ଶତ୍ରୁଘ୍ନଙ୍କ ଯୁଦ୍ଧଯାତ୍ରା )

ଏହି ପ୍ରକାରେ ଶତ୍ରୁଘ୍ନଙ୍କୁ କହି ଏବଂ ବାରମ୍ବାର ତାଙ୍କର ପ୍ରଶଂସା କରି ରାମ ପୁଣି ତାଙ୍କୁ କହିଲେ । ୧ । "ହେ ପୁରୁଷଶ୍ରେଷ୍ଠ ! ଚାରିଶହ ଯୋଦ୍ଧା, ଦୁଇ-ହଜାର ରଥ, ଏକ ଶହ ବଡ଼ ବଡ଼ ହାତୀ ଏବଂ ନଗର ଭିତରର ବାଣିଜ୍ୟଦ୍ରବ୍ୟପୂର୍ଣ୍ଣ ଦୋକାନମାନ ତଥା ନର୍ତ୍ତକ ଆଦି ସମସ୍ତେ ତୁମ ପଛେ ପଛେ ଯାଆନ୍ତୁ । ୨-୩ । ହେ ପୁରୁଷସିଂହ ଶତ୍ରୁଘ୍ନ ! ତୁମେ ଦଶ ଲକ୍ଷ ସୁନା ମୋହର ଏବଂ ଯଥେଷ୍ଟ ପରିମାଣ ଧନ ଓ ବାହନ ସଙ୍ଗରେ ନେଇକରି ଯାଅ । ୪ । ହେ ବୀର, ହେ ନରଶ୍ରେଷ୍ଠ ! ହୃଷ୍ଟପୁଷ୍ଟ ବହୁ ସୈନ୍ୟଙ୍କୁ ତୁମେ ସାଙ୍ଗରେ ନେଇଯାଅ । ତୁମେ ସେମାନଙ୍କ ସହିତ ମିଷ୍ଟାଳାପ କରି ଓ ସେମାନଙ୍କୁ ଧନାଦି ଉପହାର ପ୍ରଦାନ କରି ସେମାନଙ୍କୁ ସନ୍ତୁଷ୍ଟ ରଖିବ । ୫ । ହେ ରାଘବ ! ଯେଉଁଠାରେ ଧନ, ପତ୍ନୀ ଏବଂ ଭାଇ ବନ୍ଧୁ କେହି ତିଷ୍ଠି ନ ପାରନ୍ତି, ସେଠାରେ ସନ୍ତୁଷ୍ଟଥିବା ଭୃତ୍ୟବର୍ଗ ହିଁ ତିଷ୍ଠି ରହି

ତତୋ ହୃଷ୍ଟଜନାକୀର୍ଣ୍ଣାଂ ପ୍ରସ୍ଥାପ୍ୟ ମହତୀଂ ଚମୂମ୍ ।
ଏକ ଏବ ଧନୁଷ୍ପାଣିର୍ଗଚ୍ଛ ତ୍ୱଂ ମଧୁନୋ ବନମ୍ । ୭ ।
ଯଥା ତ୍ୱାଂ ନ ପ୍ରଜାନାତି ଗଚ୍ଛନ୍ତଂ ଯୁଦ୍ଧକାଙ୍କ୍ଷିଣମ୍ ।
ଲବଣସ୍ତୁ ମଧୋଃ ପୁତ୍ରସ୍ତଥା ଗଚ୍ଛେରଶଙ୍କିତମ୍ । ୮ ।
ନ ତସ୍ୟ ମୃତ୍ୟୁରନ୍ୟୋଽସ୍ତି କଶ୍ଚିଦ୍ଧି ପୁରୁଷର୍ଷଭ ।
ଦର୍ଶନଂ ଯୋଽଭିଗଚ୍ଛେତ ସ ବଧ୍ୟୋ ଲବଣେନ ହି । ୯ ।
ସ ଗ୍ରୀଷ୍ମ ଅପଯାତେ ତୁ ବର୍ଷାରାତ୍ର ଉପାଗତେ ।
ହନ୍ୟାସ୍ତ୍ୱଂ ଲବଣଂ ସୌମ୍ୟ ସ ହି କାଲୋଽସ୍ୟ ଦୁର୍ମତେଃ । ୧୦ ।
ମହର୍ଷୀଂସ୍ତୁ ପୁରସ୍କୃତ୍ୟ ପ୍ରୟାନ୍ତୁ ତବ ସୈନିକାଃ ।
ଯଥା ଗ୍ରୀଷ୍ମାବଶେଷେଣ ତରେୟୁର୍ଜାହ୍ନବୀଜଲମ୍ । ୧୧ ।
ତତ୍ର ସ୍ଥାପ୍ୟ ବଲଂ ସର୍ବଂ ନଦୀତୀରେ ସମାହିତଃ ।
ଅଗ୍ରତୋ ଧନୁଷା ସାର୍ଦ୍ଧଂ ଗଚ୍ଛ ତ୍ୱଂ ଲଘୁବିକ୍ରମଃ । ୧୨ ।
ଏବମୁକ୍ତସ୍ତୁ ରାମେଣ ଶତ୍ରୁଘ୍ନସ୍ତାନ୍ ମହାବଲାନ୍ ।
ସେନାମୁଖ୍ୟାନ୍ ସମାନୀୟ ତତୋ ବାକ୍ୟମୁବାଚ ହ । ୧୩ ।

---

ବିଶେଷ ସହାୟକ ହୁଅନ୍ତୁ । ୬ । ଅତଏବ ତୁମେ ହର୍ଷିତ ତଥା ଜନବହୁଳ ବିଶାଳ ସେନାଙ୍କୁ ସଙ୍ଗରେ ଧରି ଯିବ । ସେମାନଙ୍କୁ ଗୋଟିଏ ସ୍ଥାନରେ ରଖାଇ ଦେଇ ଏକାକୀ ଧନୁଶର ଧରି ମଧୁବନକୁ ଯିବ । ୭ । ତୁମେ ଯୁଦ୍ଧ କରିବା ଉଦ୍ଦେଶ୍ୟରେ ଯାଉଛ ବୋଲି ମଧୁର ପୁତ୍ର ଲବଣ ଯେପରି ଜାଣି ନ ପାରିବ ସେହିପରିଭାବରେ ତୁମେ ନିଃଶଙ୍କ ହୋଇ ଚାଲିଯିବ । ୮ । ହେ ପୁରୁଷଶ୍ରେଷ୍ଠ ! ଲବଣକୁ ମାରିବାର ଅନ୍ୟ କୌଣସି ଉପାୟ ନାହିଁ । ସେ ଯାହାକୁ ଲଢ଼ିବା ପାଇଁ ଆସୁଥିବାର ଜାଣିନିଏ ତାକୁ ମାରିପକାଏ । ୯ । ହେ ସୌମ୍ୟ ! ତୁମେ ଗ୍ରୀଷ୍ମ ଋତୁର ଶେଷରେ ଏବଂ ବର୍ଷା ଋତୁର ଆରମ୍ଭରେ ଲବଣକୁ ମାରିପାରିବ । ତାହାହିଁ ସେହି ଦୁରାତ୍ମାକୁ ମାରିବାର ଉପଯୁକ୍ତ ସମୟ ଅଟେ । ୧୦ । ମହର୍ଷିମାନଙ୍କୁ ଆଗୁଆ କରି ତୁମ୍ଭର ସୈନ୍ୟମାନେ ଏପରିଭାବରେ ଯାତ୍ରା କରନ୍ତୁ, ଯେପରିକି ଗ୍ରୀଷ୍ମଋତୁ ଥାଉଁ ଥାଉଁ ତୁମ୍ଭର ସେନା ଗଙ୍ଗା ନଦୀ ପାରି ହୋଇଯିବେ । ୧୧ । ହେ କ୍ଷିପ୍ରଗାମୀ ଶତ୍ରୁଘ୍ନ ! ନଦୀତଟରେ କୌଣସି ସ୍ଥାନରେ ସମଗ୍ର ସେନାକୁ ରଖାଇଦେଇ, ତୁମେ ଏକାକୀ ଧନୁଶର ନେଇ ଆଗେ ଆଗେ ଶୀଘ୍ର ଚାଲିଯିବ” । ୧୨ । ରାମଙ୍କଠାରୁ ଏ କଥା ଶୁଣି ଶତ୍ରୁଘ୍ନ ମହାବଳବାନ୍ ସେନାପତିମାନଙ୍କୁ ଏକତ୍ର କରାଇ ସେମାନଙ୍କୁ କହିଲେ । ୧୩ । “ତୁମ୍ଭମାନଙ୍କର

ଏତେ ବୋ ଗଣିତା ବାସା ଯତ୍ର ତତ୍ର ନିବତ୍ସ୍ୟଥ ।
ସ୍ଥାତବ୍ୟଂ ଗୃହବିରୋଧେନ ଯଥା ବାଧା ନ କସ୍ୟଚିତ୍ । ୧୪ ।
ତଥା ତାଂସ୍ତୁ ସମାଜ୍ଞାପ୍ୟ ପ୍ରସ୍ଥାପ୍ୟ ଚ ମହଦ୍‌ବଲମ୍ ।
କୌସଲ୍ୟାଂ ଚ ସୁମିତ୍ରାଂ ଚ କୈକେୟୀଂ ଗୃହ୍ୟବାଦୟତ୍ ।୧୫।
ରାମଂ ପ୍ରଦକ୍ଷିଣୀକୃତ୍ୟ ଶିରସାଭିପ୍ରଣମ୍ୟ ଚ ।
ରାମେଣ ଚାଭ୍ୟନୁଜ୍ଞାତଃ ଶତ୍ରୁଘ୍ନଃ ଶତ୍ରୁତାପନଃ । ୧୬ ।
ଲକ୍ଷ୍ମଣଂ ଭରତଂ ଚୈବ ପ୍ରଣିପତ୍ୟ କୃତାଞ୍ଜଳିଃ ।
ପୁରୋହିତଂ ବସିଷ୍ଠଂ ଚ ଶତ୍ରୁଘ୍ନଃ ପ୍ରୟତାତ୍ମବାନ୍ ।
ପ୍ରଦକ୍ଷିଣମଥୋ କୃତ୍ୱା ନିର୍ଜଗାମ ମହାବଲଃ । ୧୭ ।
ପ୍ରସ୍ଥାପ୍ୟ ସେନାମଥ ସୋଽଗ୍ରତସ୍ତଦା
ଗଜେନ୍ଦ୍ରବାଜିପ୍ରବରୌଘସଂକୁଲାମ୍ ।
ଉବାସ ମାସଂ ତୁ ନରେନ୍ଦ୍ରପାର୍ଶ୍ୱତ-
ସ୍ତ୍ୱଥ ପ୍ରୟାତୋ ରଘୁବଂଶବର୍ଦ୍ଧନଃ । ୧୮ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ଶତ୍ରୁଘ୍ନପ୍ରସ୍ଥାନଂ ନାମ ଚତୁଷଷ୍ଟିତମଃ ସର୍ଗଃ ।

---

ପଥରେ ରହିବା ନିମନ୍ତେ ଅମୁକ ଅମୁକ ସ୍ଥାନ ସ୍ଥିର କରାହୋଇଅଛି । ସେହି ସବୁ ସ୍ଥାନରେ ତୁମ୍ଭେମାନେ ନିର୍ଦ୍ଧିଷ୍ଟ ଭାବରେ ରହିବ ; ମାତ୍ର କାହାରି ସଙ୍ଗେ ବିରୋଧ କରିବ ନାହିଁ ବା କାହାରିକୁ କୌଣସି ପ୍ରକାର ବାଧା ଦେବ ନାହିଁ” ।୧୪। ଶତ୍ରୁଘ୍ନ ଏହିରୂପେ ତାଙ୍କ ବିଶାଳ ସେନାକୁ ଆଦେଶ ଦେଇ ଓ ପଠାଇଦେଇ କୌଶଲ୍ୟା, ସୁମିତ୍ରା ଏବଂ କୈକେୟୀଙ୍କୁ ଯାଇ ପ୍ରଣାମ କଲେ । ୧୫ । ଶତ୍ରୁପୀଡକ ଶତ୍ରୁଘ୍ନ ରାମଙ୍କୁ ପରିକ୍ରମା କରି, ତାଙ୍କ ମୁଣ୍ଡ ନୁଆଁଇ ପ୍ରଣାମ କରି ଓ ରାମଙ୍କର ଅନୁମତି ପାଇ ତଥା ଲକ୍ଷ୍ମଣ, ମହାବଳୀ ଭରତ ଓ ପୁରୋହିତ ବଶିଷ୍ଠଙ୍କୁ କର ଯୋଡ଼ି ପ୍ରଣାମ କରି ଏବଂ ସେମାନଙ୍କୁ ପ୍ରଦକ୍ଷିଣ କରିସାରି ଯାତ୍ରାକଲେ । ୧୬-୧୭ । ହସ୍ତୀ ଅଶ୍ୱାଦିଯୁକ୍ତ ସେହି ବିଶାଳବାହିନୀକୁ ସେ ଆଗରୁ ପଠାଇଦେଇଥିଲେ । ପରେ ନରେନ୍ଦ୍ର ରାମଙ୍କ ପାଖରେ ଏକ ମାସ ରହି ଶତ୍ରୁଘ୍ନ ନିଜେ ମଧ୍ୟ ଯାତ୍ରାକଲେ । ୧୮ ।

# ପଞ୍ଚଷଷ୍ଟିତମଃ ସର୍ଗଃ

## ସୌଦାସକଥା

ପ୍ରପସ୍ଥାୟ ତୁ ବଲଂ ସର୍ବଂ ମାସମାତ୍ରୋଷିତଃ ପଥି ।
ଏକ ଏବାଶୁ ଶତ୍ରୁଘ୍ନୋ ଜଗାମ ତ୍ୱରିତଂ ତଦା । ୧ ।
ଦ୍ୱିରାତ୍ରମନ୍ତରେ ଶୂରଃ ଉଷ୍ୟ ରାଘବନନ୍ଦନଃ ।
ବାଲ୍ମୀକେରାଶ୍ରମଂ ପୁଣ୍ୟମଗଚ୍ଛଦ୍‌ବାସମୁତ୍ତମମ୍ । ୨ ।
ସୋଽଭିବାଦ୍ୟ ମହାତ୍ମାନଂ ବାଲ୍ମୀକିଂ ମୁନିସତ୍ତମମ୍ ।
କୃତାଞ୍ଜଳିରଥୋ ଭୂତ୍ୱା ବାକ୍ୟମେତଦୁବାଚ ହ । ୩ ।
ଭଗବନ୍ ବସ୍ତୁମିଚ୍ଛାମି ଗୁରୋଃ କୃତ୍ୟାଦିହାଗତଃ ।
ଶ୍ୱଃ ପ୍ରଭାତେ ଗମିଷ୍ୟାମି ପ୍ରତୀଚୀଂ ବାରୁଣୀଂ ଦିଶମ୍ । ୪ ।
ଶତ୍ରୁଘ୍ନସ୍ୟ ବଚଃ ଶ୍ରୁତ୍ୱା ପ୍ରହସ୍ୟ ମୁନିପୁଙ୍ଗବଃ ।
ପ୍ରତ୍ୟୁବାଚ ମହାତ୍ମାନଂ ସ୍ୱାଗତଂ ତେ ମହାଯଶଃ । ୫ ।
ସ୍ୱମାଶ୍ରମମିଦଂ ସୌମ୍ୟ ରାଘବାଣାଂ କୁଳସ୍ୟ ହି ।
ଆସନଂ ପାଦ୍ୟମର୍ଘ୍ୟଂ ଚ ନିର୍ବିଶଙ୍କଃ ପ୍ରତୀଚ୍ଛ ମେ । ୬ ।

---

## ୬୫ତମ ସର୍ଗ

### (ସୌଦାସ ଉପାଖ୍ୟାନ)

ଶତ୍ରୁଘ୍ନ ସମଗ୍ର ସେନାକୁ ପଠାଇ ଦେଇ ଏବଂ ବାଟରେ ଏକ ମାସ ମାତ୍ର ରହି ଏକାକୀ ସତ୍ୱର ଚାଲିଗଲେ । ୧ । ସେ ମଝିରେ ବାଟରେ ଦୁଇ ଦିନ ରହି ବାଲ୍ମୀକି ମୁନିଙ୍କ ପବିତ୍ର ଆଶ୍ରମରେ ଯାଇ ପହଞ୍ଚିଲେ ।୨। ଶତ୍ରୁଘ୍ନ ମହର୍ଷି ବାଲ୍ମୀକିଙ୍କୁ ଅଭିବାଦନ କରି ଏବଂ ହାତ ଯୋଡ଼ି ତାଙ୍କୁ କହିଲେ । ୩ । "ହେ ଭଗବନ୍ ! ମୁଁ ମୋର ଗୁରୁ ମହାରାଜଙ୍କ କାର୍ଯ୍ୟରେ ଏଠାକୁ ଆସିଛି ଏବଂ ଆଜ ଏଠାରେ ବାସ କରିବାକୁ ଇଚ୍ଛା କରୁଛି । କାଲି ସକାଳେ ମୁଁ ବରୁଣଙ୍କର ଅଧିଷ୍ଠାନ ପଶ୍ଚିମ ଦିଗକୁ ଗମନ କରିବି" । ୪ । ଶତ୍ରୁଘ୍ନଙ୍କର ଏ କଥା ଶୁଣି ମୁନିଶ୍ରେଷ୍ଠ ବାଲ୍ମୀକି ହସିକରି ତାଙ୍କୁ କହିଲେ, "ହେ ମହାଯଶସ୍ୱିନ୍ ! ମୁଁ ତୁମକୁ ସ୍ୱାଗତ କରୁଅଛି । ୫ । ହେ ସୌମ୍ୟ ! ମୋର ଏ ଆଶ୍ରମ ରଘୁକୁଳ ଲୋକଙ୍କର ନିଜର ଅଟେ । ତୁମେ ଅର୍ଘ୍ୟ, ପାଦ୍ୟ ଗ୍ରହଣ

ପ୍ରତିଗୃହ୍ୟ ତଦା ପୂଜାଂ ଫଲମୂଳଂ ଚ ଭୋଜନମ୍ ।
ଭକ୍ଷୟାମାସ କାକୁତ୍ସ୍ଥସ୍ତୃପ୍ତିଂ ଚ ପରମାଂ ଗତଃ । ୭ ।
ସ ଭୁକ୍ତ୍ୱା ଫଲମୂଳଂ ଚ ମହର୍ଷିଂ ତମୁବାଚ ହ ।
ପୂର୍ବା ଯଜ୍ଞବିଭୂତୀୟଂ କସ୍ୟାଶ୍ରମସମୀପତଃ । ୮ ।
ତତ୍ତସ୍ୟ ଭାଷିତଂ ଶ୍ରୁତ୍ୱା ବାଲ୍ମୀକିର୍ବାକ୍ୟମବ୍ରବୀତ୍ ।
ଶତ୍ରୁଘ୍ନ ଶୃଣୁ ଯସ୍ୟେଦଂ ବଭୂବାୟତନଂ ପୁରା । ୯ ।
ଯୁଷ୍ମାକଂ ପୂର୍ବକୋ ରାଜା ସୌଦାସସ୍ତସ୍ୟ ଭୂପତେଃ ।
ପୁତ୍ରୋ ବୀରସହୋ ନାମ ବୀର୍ଯବାନତିଧାର୍ମିକଃ । ୧୦ ।
ସ ବାଲ ଏବ ସୌଦାସୋ ମୃଗୟାମୁପଚକ୍ରମେ ।
ଚଞ୍ଚୂର୍ଯମାଣଂ ଦଦୃଶେ ସ ଶୂରୋ ରାକ୍ଷସଦ୍ୱୟମ୍ । ୧୧ ।
ଶାର୍ଦ୍ଦୂଲରୂପିଣୌ ଘୋରୌ ମୃଗାନ୍ ବହୁ ସହସ୍ରଶଃ ।
ଭକ୍ଷମାଣାବସନ୍ତୁଷ୍ଟୌ ପର୍ଯାପ୍ତିଂ ନୈବ ଜଗ୍ମତୁଃ । ୧୨ ।
ସ ତୁ ତୌ ରାକ୍ଷସୌ ଦୃଷ୍ଟ୍ୱା ନିର୍ମୃଗଂ ଚ ବନଂ କୃତମ୍ ।
କ୍ରୋଧେନ ମହତାବିଷ୍ଟୋ ଜଘାନୈକଂ ମହେଷୁଣା । ୧୩ ।

---

କରି ନିଃଶଙ୍କଭାବରେ ଏଠାରେ ରହ” । ୬ । ଏହି ପ୍ରକାରେ ଶତ୍ରୁଘ୍ନ ବାଲ୍ମୀକଙ୍କର ଆତିଥ୍ୟ ଗ୍ରହଣ କରି ଏବଂ ଫଳ ମୂଳ ଆଦି ଖାଇ ଅତିଶୟ ତୃପ୍ତ ହେଲେ । ୭ । ଫଳ ମୂଳ ଖାଇବା ପରେ ସେ ମହର୍ଷି ବାଲ୍ମୀକଙ୍କୁ କହିଲେ, “ହେ ଭଗବନ୍ ! ଏହି ଆଶ୍ରମ ନିକଟରେ ପୂର୍ବେ ବିଗରେ କାହାର ଏ ଯଜ୍ଞ ଆୟୋଜନ ଦେଖାଯାଉଛି” । ୮ । ତାଙ୍କର ସେ କଥା ଶୁଣି ବାଲ୍ମୀକ କହିଲେ, “ହେ ଶତ୍ରୁଘ୍ନ! ପୂର୍ବକାଳରେ ଏ ଆସ୍ଥାନ ଯାହାଙ୍କର ଥିଲା ସେ କଥା ମୁଁ କହୁଛି ଶୁଣ । ୯ । ତୁମ ବଂଶର ଜଣେ ପୂର୍ବପୁରୁଷ ସୌଦାସ ନାମକ ରାଜା ଥିଲେ । ତାଙ୍କ ପୁତ୍ର ବୀରସହ ଅତି ପରାକ୍ରମୀ ଓ ଧାର୍ମିକ ଥିଲେ । ୧୦ । ରାଜା ସୌଦାସ ବାଲ୍ୟକାଳରୁ ମୃଗୟାରେ ଆସକ୍ତ ଥିଲେ । ଦିନେ ସେ ବନରେ ବୁଲୁ ବୁଲୁ ଦୁଇଟି ରାକ୍ଷସଙ୍କୁ ଦେଖିଲେ । ୧୧ । ସେ ଦୁଇ ରାକ୍ଷସ ଉଭୟଙ୍କର ବ୍ୟାଘ୍ରରୂପ ଧାରଣ କରି ହଜାର ହଜାର ମୃଗାଦି ବନ୍ୟ ପଶୁଙ୍କୁ ଖାଇ ମଧ୍ୟ ଯଥେଷ୍ଟ ତୃପ୍ତିଲାଭ କରୁ ନ ଥିଲେ ।୧୨। ସେ ଦୁଇ ରାକ୍ଷସ ସେ ବନକୁ ପଶୁହୀନ କରି-ପକାଇଥିବାର ଦେଖି ସୌଦାସ ଅତିଶୟ କ୍ରୁଦ୍ଧ ହୋଇ ଗୋଟିଏ ମହା ଶର ଦ୍ୱାରା ସେହି ଦୁଇ ରାକ୍ଷସଙ୍କ ମଧ୍ୟରୁ ଗୋଟାକୁ ମାରିପକାଇଲେ ।୧୩। ପୁରୁଷଶ୍ରେଷ୍ଠ ସୌଦାସ

ବିନପାତ୍ୟ ତମେକଂ ତୁ ସୌଦାସଃ ପୁରୁଷର୍ଷଭଃ ।
ବିକ୍ରୁଶେ ବିଗତାମର୍ଷୋ ହତଂ ରକ୍ଷୋ ହ୍ୟବେକ୍ଷତ ।୧୪।
ନିରୀକ୍ଷମାଣଂ ତଂ ଦୃଷ୍ଟ୍ୱା ସହାୟଂ ତସ୍ୟ ରକ୍ଷସଃ ।
ସନ୍ତାପମକରୋଦ୍ଘୋରଂ ସୌଦାସଂ ଚେଦମବ୍ରବୀତ୍ । ୧୫ ।
ଯସ୍ମାଦନପରାଧଂ ତ୍ୱଂ ସହାୟଂ ମମ ଜଘ୍ନିବାନ୍ ।
ତସ୍ମାତ୍ତବାପି ପାପିଷ୍ଠ ପ୍ରଦାସ୍ୟାମି ପ୍ରତିକ୍ରିୟାମ୍ । ୧୬ ।
ଏବମୁକ୍ତ୍ୱା ତୁ ତଦ୍ରକ୍ଷସ୍ତତ୍ରୈବାନ୍ତରଧୀୟତ ।
କାଲପର୍ଯ୍ୟାୟଯୋଗେନ ରାଜା ମିତ୍ରସହୋଽଭବତ୍ । ୧୭ ।
ରାଜା ତୁ ଯଜତେ ଯଜ୍ଞମସ୍ୟାଶ୍ରମସମୀପତଃ ।
ଅଶ୍ୱମେଧଂ ମହାଯଜ୍ଞଂ ତଂ ବସିଷ୍ଠୋଽଭ୍ୟପାଲୟତ୍ । ୧୮ ।
ତତ୍ର ଯଜ୍ଞୋ ମହାନାସୀଦ୍‌ବହୁବର୍ଷଗଣାୟୁତଃ ।
ସମୃଦ୍ଧଃ ପରୟା ଲକ୍ଷ୍ମ୍ୟା ଦେବଯଜ୍ଞସମୋଽଭବତ୍ । ୧୯ ।
ଅଥାବସାନେ ଯଜ୍ଞସ୍ୟ ପୂର୍ବବୈରମନୁସ୍ମରନ୍ ।
ବସିଷ୍ଠରୂପୀ ରାଜାନମିତି ହୋବାଚ ରାକ୍ଷସଃ । ୨୦ ।
ଅଦ୍ୟ ଯଜ୍ଞସ୍ୟ ଜାତୋଽନ୍ତଃ ସାମିଷଂ ଭୋଜନଂ ମମ ।
ଦୀୟତାମିହ ଶୀଘ୍ରଂ ବୈ ନାତ୍ର କାର୍ଯ୍ୟା ବିଚାରଣା । ୨୧ ।

---

ଗୋଟିଏ ରାକ୍ଷସକୁ ମାରି କ୍ରୋଧ ଓ ସନ୍ତାପରହିତ ହୋଇ ସେହି ମୃତ ରାକ୍ଷସକୁ ଦେଖିବାକୁ ଲାଗିଲେ । ୧୪ । ରାଜା ସୌଦାସ ସେହି ମୃତ ରାକ୍ଷସ ଆଡ଼କୁ ଚାହିଁ ଥିବାର ଦେଖି ତାର ସାଥୀ ଅନ୍ୟ ରାକ୍ଷସଟି ଅତିଶୟ ସନ୍ତାପ କରି ତାଙ୍କୁ କହିଲା । ୧୫ । "ରେ ପାପିଷ୍ଠ ! ତୁ ମୋର ସାଥୀ, ନିରପରାଧ ରାକ୍ଷସକୁ ମାରି ଦେଇଅଛୁ; ଅତଏବ ମୁଁ ତୋତେ ଏହାର ପ୍ରତିଫଳ ଦେବି" । ୧୬ । ଏହା କହି ସେ ରାକ୍ଷସ ସେଠାରେ ଅନ୍ତର୍ଦ୍ଧାନ ହୋଇଗଲା । କିଛିଦିନ ପରେ ସମୟ ଆସିବାରୁ ଅର୍ଥାତ୍ ସୌଦାସଙ୍କର ମୃତ୍ୟୁ ହେବାରୁ ତାଙ୍କ ପୁତ୍ର ମିତ୍ରସହ ରାଜା ହେଲେ । ୧୭ । ସେ ଏହି ଆଶ୍ରମ ନିକଟରେ ଏକ ଅଶ୍ୱମେଧ ଯଜ୍ଞ ଆରମ୍ଭ କଲେ । ବଶିଷ୍ଠ ସେହି ମହାଯଜ୍ଞର ଅନୁଷ୍ଠାନ କରିଥିଲେ । ୧୮ । ସେହି ଯଜ୍ଞ ଖୁବ ଆଡ଼ମ୍ବରରେ ଅନେକ ବର୍ଷ ପର୍ଯ୍ୟନ୍ତ ଅତି ସମୃଦ୍ଧି ସହକାରେ ଦେବଯଜ୍ଞ ସଦୃଶ ହୋଇଥିଲା । ୧୯ । ସେତେବେଳେ ସେହି ରାକ୍ଷସ ପୂର୍ବ ବୈର ସ୍ମରଣ କରି ବଶିଷ୍ଠଙ୍କ ରୂପ ଧାରଣ କରି ରାଜାଙ୍କୁ ଆସି କହିଲା । ୨୦ । "ଆଜ ଏହି ଯଜ୍ଞର ସମାପ୍ତି ପରେ ଅତିଶୀଘ୍ର ମୋତେ ଆମିଷଯୁକ୍ତ ଭୋଜନ ଆହାର କରାଅ; ଏ ବିଷୟରେ କୌଣସି ଦ୍ୱିଧା କର ନାହିଁ" । ୨୧ ।

ତଚ୍ଛ୍ରୁତ୍ୱା ବ୍ୟାହୃତଂ ବାକ୍ୟଂ ରକ୍ଷସା ବ୍ରହ୍ମରୂପିଣା ।
ଭକ୍ଷସଂସ୍କାରକୁଶଳମୁବାଚ ପୃଥିବୀପତିଃ । ୨୨ ।
ହବିଷ୍ୟଂ ସାମିଷଂ ସ୍ୱାଦୁ ଯଥା ଭବତି ଭୋଜନମ୍ ।
ତଥା କୁରୁଷ୍ୱ ଶୀଘ୍ରଂ ବୈ ପରିତୁଷ୍ୟେଦ୍ୟଥା ଗୁରୁଃ । ୨୩ ।
ଶାସନାତ୍ ପାର୍ଥିବେନ୍ଦ୍ରସ୍ୟ ସୂଦଃ ସଂଭ୍ରାନ୍ତମାନସଃ ।
ସ ରାକ୍ଷସଃ ପୁନସ୍ତତ୍ର ସୂଦବେଷମଥାକରୋତ୍ । ୨୪ ।
ସ ମାନୁଷମଥୋ ମାଂସଂ ପାର୍ଥିବାୟ ନ୍ୟବେଦୟତ୍ ।
ଇଦଂ ସ୍ୱାଦୁ ହବିଷ୍ୟଂ ଚ ସାମିଷଂ ଚାନ୍ନମାହୃତମ୍ । ୨୫ ।
ସ ଭୋଜନଂ ବସିଷ୍ଠାୟ ପତ୍ନ୍ୟା ସାର୍ଧମୁପାହରତ୍ ।
ମଦୟନ୍ତ୍ୟା ନରବ୍ୟାଘ୍ର ସାମିଷଂ ରକ୍ଷସାହୃତମ୍ । ୨୬ ।
ଜ୍ଞାତ୍ୱା ତଦାମିଷଂ ବିପ୍ରୋ ମାନୁଷଂ ଭୋଜନଂ ଗତମ୍ ।
କ୍ରୋଧେନ ମହତାବିଷ୍ଟୋ ବ୍ୟାହର୍ତୁମୁପଚକ୍ରମେ । ୨୭ ।
ଯସ୍ମାତ୍ତ୍ୱଂ ଭୋଜନଂ ରାଜନ୍ ମମୈତଦ୍ଦାତୁମିଚ୍ଛସି ।
ତସ୍ମାଦ୍ଭୋଜନମେତତ୍ତେ ଭବିଷ୍ୟତି ନ ସଂଶୟଃ । ୨୮ ।

---

ବ୍ରାହ୍ମଣରୂପଧାରୀ ରାକ୍ଷସର ଏ କଥା ଶୁଣି ଭୋଜନ ପ୍ରସ୍ତୁତ କରିବାରେ ନିପୁଣ ଜଣେ ସୂପକାରକୁ ରାଜା କହିଲେ । ୨୨ । "ତୁମେ ମାଂସ ସହିତ ଏପରି ହବିଷ୍ୟାନ୍ନ ତିଆରି କର, ଯାହା ଖାଇ ମୋର ଗୁରୁ ତୃପ୍ତ ହେବେ" ।୨୩। ରାଜାଙ୍କର ସେ କଥା ଶୁଣି ସୂପକାର ବିଚଳିତ ହୋଇପଡ଼ିଲେ । ଇତିମଧ୍ୟରେ ସେହି ରାକ୍ଷସ ଏକ ସୂପକାର ବେଶ ଧରି ସେଠାରେ ଆସି ଉପସ୍ଥିତ ହୋଇଗଲା । ୨୪ । ସେ ମନୁଷ୍ୟମାଂସ ରାନ୍ଧି ରାଜାଙ୍କୁ ଦେଲା ଏବଂ କହିଲା, "ଏହି ପରମସ୍ୱାଦୁ ଆମିଷ ଅନ୍ନ ପ୍ରସ୍ତୁତ ହୋଇଅଛି" । ୨୫ । ହେ ନରଶ୍ରେଷ୍ଠ ! ରାଜା ନିଜର ପତ୍ନୀ ମଦୟନ୍ତୀଙ୍କ ସହିତ ବଶିଷ୍ଠଙ୍କୁ ରାକ୍ଷସଦ୍ୱାରା ପ୍ରସ୍ତୁତ ମାଂସ ଭୋଜନ ନିମନ୍ତେ ଦେଲେ । । ୨୬ । ବଶିଷ୍ଠ ଯେତେବେଳେ ଏହା ମନୁଷ୍ୟ ମାଂସ ବୋଲି ଜାଣିଲେ ସେତେବେଳେ ସେ ଅତ୍ୟନ୍ତ କ୍ରୁଦ୍ଧ ହୋଇ ରାଜାଙ୍କୁ କହିଲେ ।୨୭। "ହେ ରାଜନ୍ ! ଯେହେତୁ ତୁମେ ମୋତେ ଏପରି ଭୋଜନ ଦେଇଅଛ, ସୁତରାଂ ତୁମର ଭୋଜନ ମଧ୍ୟ ସେହିପ୍ରକାର ହେବ, ଏଥିରେ ସନ୍ଦେହ ନାହିଁ; ଅର୍ଥାତ୍ ତୁମେ ନରମାଂସଭୋଜୀ ରାକ୍ଷସ ହୋଇଯିବ । ୨୮ । ଅନନ୍ତର ରାଜା ସୌଦାସ ମଧ୍ୟ କ୍ରୁଦ୍ଧ ହୋଇ

ତତଃ କ୍ରୁଦ୍ଧସ୍ତୁ ସୌଦାସସ୍ତୋୟଂ ଜଗ୍ରାହ ପାଣିନା ।
ବସିଷ୍ଠଂ ଶପ୍ତୁମାରେଭେ ଭାର୍ଯ୍ୟା ଚୈନମବାରୟତ୍ । ୨୯ ।
ରାଜନ୍ ପ୍ରଭୁର୍ଯତୋଽସ୍ମାକଂ ବସିଷ୍ଠୋ ଭଗବାନୃଷିଃ ।
ପ୍ରତିଶପ୍ତୁଂ ନ ଶକ୍ତସ୍ତ୍ୱଂ ଦେବତୁଲ୍ୟଂ ପୁରୋଧସମ୍ । ୩୦ ।
ତତଃ କ୍ରୋଧମୟଂ ତୋୟଂ ତେଜୋବଲସମନ୍ୱିତମ୍ ।
ବ୍ୟସର୍ଜୟତ ଧର୍ମାତ୍ମା ତତଃ ପାଦୌ ସିଷେଚ ଚ । ୩୧ ।
ତେନାସ୍ୟ ରାଜ୍ଞସ୍ତୌ ପାଦୌ ତଦା କଲ୍ମାଷତାଂ ଗତୌ ।
ତଦାପ୍ରଭୃତି ରାଜାସୌ ସୌଦାସଃ ସୁମହାଯଶାଃ ।
କଲ୍ମାଷପାଦଃ ସଂବୃତ୍ତଃ ଖ୍ୟାତଶ୍ଚୈବ ତଥା ନୃପଃ । ୩୨ ।
ସ ରାଜା ସହ ପତ୍ନ୍ୟା ବୈ ପ୍ରଣିପତ୍ୟ ମୁହୁର୍ମୁହୁଃ ।
ପୁନର୍ବସିଷ୍ଠଂ ପ୍ରୋବାଚ ଯଦୁକ୍ତଂ ବ୍ରହ୍ମରୂପିଣା । ୩୩ ।
ତଚ୍ଛ୍ରୁତ୍ୱା ପାର୍ଥିବେନ୍ଦ୍ରସ୍ୟ ରକ୍ଷସାଧିକୃତଂ ତୁ ତତ୍ ।
ପୁନଃ ପ୍ରୋବାଚ ରାଜାନଂ ବସିଷ୍ଠଃ ପୁରୁଷର୍ଷଭମ୍ । ୩୪ ।
ମୟା ରୋଷପରୀତେନ ଯଦିଦଂ ବ୍ୟାହୃତଂ ବଚଃ ।
ନୈତଚ୍ଛକ୍ୟଂ ବୃଥା କର୍ତୁଂ ପ୍ରଦାସ୍ୟାମି ଚ ତେ ବରମ୍ । ୩୫ ।

---

ହାତରେ ପାଣି ଧରି ବଶିଷ୍ଠଙ୍କୁ ଶାପ ଦେବାକୁ ବାହାରିଲେ । ସେତେବେଳେ ତାଙ୍କର ରାଣୀ ସେଥିରୁ ତାଙ୍କୁ ନିବୃତ୍ତ କରାଇଲେ ।୨୯। ସେ କହିଲେ, "ହେ ରାଜନ୍ ! ଭଗବାନ ବଶିଷ୍ଠ ଆମ୍ଭର ପ୍ରଭୁ ଏବଂ ଦେବତୁଲ୍ୟ ପୁରୋହିତ ଅଟନ୍ତି, ସୁତରାଂ ତୁମେ ତାଙ୍କୁ ଶାପ ଦେଇପାରିବ ନାହିଁ" । ୩୦ । ଅନନ୍ତର ମହାତ୍ମା ରାଜା କ୍ରୋଧମୟ ଓ ତେଜୋବଳଯୁକ୍ତ ସେହି ଜଳକୁ ନିଜର ପାଦଦ୍ୱୟରେ ଛାଡ଼ିଦେଲେ । ୩୧ । ଏହା ଫଳରେ ରାଜାଙ୍କର ସେହି ଦୁଇ ପାଦ କଳା ପଡ଼ିଗଲା । ସେହି ଦିନଠାରୁ ମହାଯଶସ୍ୱୀ ରାଜା ସୌଦାସ କଲ୍ମାଷପାଦ ନାମରେ ବିଖ୍ୟାତ ହେଲେ । ୩୨ । ରାଜା ରାଣୀଙ୍କ ସହ ବାରମ୍ବାର ମୁନିଙ୍କ ଚରଣରେ ପ୍ରଣାମ କରି, ବଶିଷ୍ଠରୂପଧାରୀ ରାକ୍ଷସ ତାଙ୍କୁ ଯାହା କହିଥିଲା, ସେସବୁ କଥା ତାଙ୍କୁ କହିଥିଲେ । ୩୩ । ରାଜାଙ୍କ କଥା ଶୁଣି ଏବଂ ରାକ୍ଷସ କଥାରେ ତାଙ୍କର ମନ ଏପରି ବିକୃତ ହୋଇଥିବାର ଜାଣି, ବଶିଷ୍ଠ ପୁଣି ସେହି ପୁରୁଷଶ୍ରେଷ୍ଠ ରାଜାଙ୍କୁ କହିଲେ । ୩୪ । "ହେ ରାଜନ୍ ! ମୁଁ କ୍ରୋଧପୂର୍ଣ୍ଣ ହୋଇ ଯେଉଁ କଥା କହିପକାଇଛି ତାହା ଅନ୍ୟଥା କରିବାକୁ ମୁଁ ସମର୍ଥ ନୁହେଁ; ମାତ୍ର ମୁଁ ତୁମକୁ

କାଲୋ ଦ୍ୱାଦଶବର୍ଷାଣି ଶାପସ୍ୟାନ୍ତୋ ଭବିଷ୍ୟତି ।
ମତ୍‌ପ୍ରସାଦାଚ୍ଚ ରାଜେନ୍ଦ୍ର ବ୍ୟତୀତଂ ନ ସ୍ମରିଷ୍ୟସି । ୩୬ ।
ଏବଂ ସ ରାଜା ତଂ ଶାପମୁପଭୁଜ୍ୟାରିସୂଦନଃ ।
ପ୍ରତିଲେଭେ ପୁନା ରାଜ୍ୟଂ ପ୍ରଜାଶ୍ଚୈବାନ୍ୱପାଳୟତ୍ । ୩୭ ।
ତସ୍ୟ କଲ୍ମାଷପାଦସ୍ୟ ଯଜ୍ଞସ୍ୟାୟତନଂ ଶୁଭମ୍ ।
ଆଶ୍ରମସ୍ୟ ସମୀପେଽସ୍ୟ ଯନ୍ମାଂ ପୃଚ୍ଛସି ରାଘବ । ୩୮ ।
ତସ୍ୟ ତାଂ ପାର୍ଥିବେନ୍ଦ୍ରସ୍ୟ କଥାଂ ଶ୍ରୁତ୍ୱା ସୁଦାରୁଣାମ୍ ।
ବିବେଶ ପର୍ଣଶାଲାୟାଂ ମହର୍ଷିମଭିବାଦ୍ୟ ଚ । ୩୯ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ସୌଦାସକଥା ନାମ ପଞ୍ଚଷଷ୍ଟିତମଃ ସର୍ଗଃ ।

# ଷଟ୍‌ଷଷ୍ଟିତମଃ ସର୍ଗଃ

## କୁଶଲବଜନନମ୍

ଯାମେବ ରାତ୍ରିଂ ଶତ୍ରୁଘ୍ନଃ ପର୍ଣଶାଲାମୁପାବିଶତ୍ ।
ତାମେବ ରାତ୍ରିଂ ସୀତାପି ପ୍ରସୂତା ଦାରକଦ୍ୱୟମ୍ । ୧ ।

---

ଏ ବର ଦେଉଛି । ୩୫ । ବାରବର୍ଷ ପରେ ଏ ଶାପର ଅନ୍ତ ହୋଇଯିବ । ହେ ରାଜେନ୍ଦ୍ର ! ସେତେବେଳେ ତୁମେ ଆଜ ଅତୀତ କଥା ସ୍ମରଣ କରିବ ନାହିଁ” ।୩୬। ଏହିରୂପେ ସେହି ଶତ୍ରୁଘାତୀ ରାଜା ଏ ଶାପକୁ ଭୋଗ କରି ଓ ଶେଷରେ ରାଜ୍ୟ ଲାଭ କରି ପ୍ରଜାମାନଙ୍କୁ ପୁଣି ଧର୍ମପୂର୍ବକ ପାଳନ କରିବାକୁ ଲାଗିଲେ । ୩୭। ହେ ରାଘବ ! ତୁମେ ମୋର ଆଶ୍ରମ ନିକଟରେ ଥିବା ଯେଉଁ ଯଜ୍ଞସ୍ଥାନର କଥା ପଚାରୁଥିଲ ତାହା ସେହି କଲ୍ମାଷପାଦ ରାଜାଙ୍କର ଯଜ୍ଞସ୍ଥଳ ଅଟେ”।୩୮। ଶତ୍ରୁଘ୍ନ ଏହିପ୍ରକାରେ ସେହି ମହାତ୍ମା ରାଜାଙ୍କର ଦାରୁଣ ବୃତ୍ତାନ୍ତ ଶୁଣି ଏବଂ ମହର୍ଷିଙ୍କୁ ପ୍ରଣାମ କରି ପର୍ଣ୍ଣଶାଳା ମଧ୍ୟରେ ପ୍ରବେଶ କଲେ । ୩୯ ।

---

## ୬୬ତମ ସର୍ଗ

### ( କୁଶ ଲବଙ୍କର ଜନ୍ମ )

ଯେଉଁ ରାତିରେ ଶତ୍ରୁଘ୍ନ ବାଲ୍ମୀକିମୁନିଙ୍କର ପର୍ଣ୍ଣଶାଳାରେ ରହିଥିଲେ, ଠିକ ସେହି ରାତିରେ ସୀତାଙ୍କର ଦୁଇଟି ପୁଅ ଜନ୍ମ ହେଲେ । ୧। ଅଧରାତ୍ର ସମୟରେ

ତତୋଽର୍ଦ୍ଧରାତ୍ରସମୟେ ବାଲକା ମୁନିଦାରକାଃ ।
ବାଲ୍ମୀକେଃ ପ୍ରିୟମାଚଖ୍ୟୁଃ ସୀତାୟାଃ ପ୍ରସବଂ ଶୁଭମ୍ । ୨ ।
ଭଗବନ୍ ରାମପତ୍ନୀ ସା ପ୍ରସୂତା ଦାରକଦ୍ୱୟମ୍ ।
ତତୋ ରକ୍ଷାଂ ମହାତେଜଃ କୁରୁ ଭୂତବିନାଶିନୀମ୍ । ୩ ।
ତେଷାଂ ତଦ୍‌ବଚନଂ ଶ୍ରୁତ୍ୱା ମହର୍ଷିଃ ସମୁପାଗମତ୍ ।
ବାଲଚନ୍ଦ୍ରପ୍ରତୀକାଶୌ ଦେବପୁତ୍ରୌ ମହୌଜସୌ । ୪ ।
ଜଗାମ ତତ୍ର ହୃଷ୍ଟାତ୍ମା ଦଦର୍ଶ ଚ କୁମାରକୌ ।
ଭୂତଘ୍ନୀଂ ଚାକରୋତ୍ତାଭ୍ୟାଂ ରକ୍ଷାଂ ରକ୍ଷୋବିନାଶିନୀମ୍ । ୫ ।
କୁଶମୁଷ୍ଟିମୁପାଦାୟ ଲବଂ ଚୈବ ତୁ ସ ଦ୍ୱିଜଃ ।
ବାଲ୍ମୀକିଃ ପ୍ରଦଦୌ ତାଭ୍ୟାଂ ରକ୍ଷାଂ ଭୂତବିନାଶିନୀମ୍ । ୬ ।
ଯସ୍ତୟୋଃ ପୂର୍ବଜୋ ଜାତଃ ସ କୁଶୈର୍ମନ୍ତ୍ରସଂସ୍କୃତୈଃ ।
ନିର୍ମାର୍ଜନୀୟସ୍ତୁ ତଦା କୁଶ ଇତ୍ୟସ୍ୟ ନାମ ତତ୍ । ୭ ।
ଯଶ୍ଚାପରୋ ଭବେତ୍ତାଭ୍ୟାଂ ଲବେନ ସ ସମାହିତଃ ।
ନିର୍ମାର୍ଜନୀୟୋ ବୃଦ୍ଧାଭିର୍ଲବ ଇତ୍ୟେବ ନାମତଃ । ୮ ।

---

ମୁନିବାଳକମାନେ ଆସି ବାଲ୍ମୀକିଙ୍କୁ ଏହି ଶୁଭ ସମ୍ବାଦ ଶୁଣାଇଲେ । ୨ । "ହେ ଭଗବନ୍ ! ରାମପତ୍ନୀ ସୀତା ଦୁଇଗୋଟି ପୁତ୍ର ଜନ୍ମ କରିଅଛନ୍ତି । ଅତଏବ ହେ ମହାତେଜସ୍ୱିନ୍ ! ଆପଣ ଯାଇ ସେମାନଙ୍କର ବାଳଗ୍ରହନାଶିନୀ ରକ୍ଷା ବିଧାନ କରନ୍ତୁ" । ୩ । ବାଲ୍ମୀକି ସେମାନଙ୍କ କଥା ଶୁଣି, ଯେଉଁଠାରେ ସେହି ବାଳଚନ୍ଦ୍ର ସଦୃଶ କାନ୍ତିମାନ୍ ରାଜପୁତ୍ରଦ୍ୱୟ ଥିଲେ ସେଠାକୁ ଗଲେ । ୪ । ସେଠାକୁ ଯାଇ ଏବଂ ସେ ଦୁଇ ରାଜକୁମାରଙ୍କୁ ଦେଖି ମହର୍ଷି ବାଲ୍ମୀକି ଆନନ୍ଦିତ ହେଲେ ଏବଂ ଭୂତଘ୍ନୀ ଓ ରକ୍ଷୋବିନାଶିନୀ ମନ୍ତ୍ରଦ୍ୱାରା ସେମାନଙ୍କର ରକ୍ଷା ବିଧାନ କଲେ । ୫ । ବାଲ୍ମୀକି ଦ୍ୱିଜ କୁଶମୁଷ୍ଟି ଓ କୁଶମୂଳ ଆଣି ସେହି ଦୁଇ ବାଳକଙ୍କୁ ଭୂତବିନାଶିନୀ ରକ୍ଷା-କବଚ ପ୍ରଦାନ କଲେ ।୬। ମନ୍ତ୍ର ପଢ଼ି କୁଶଦ୍ୱାରା ମାର୍ଜନା କରାଯାଇଥିବାରୁ ସେ ଦୁହିଁଙ୍କ ମଧ୍ୟରୁ ପ୍ରଥମେ ଜନ୍ମ ହୋଇଥିବା ବାଳକର ନାମ 'କୁଶ' ରଖାଗଲା ।୭। ସେ ଦୁହିଁଙ୍କ ମଧ୍ୟରୁ ଯେ ପଛରେ ଜନ୍ମ ହୋଇଥିଲା, ତାହାକୁ କୁଶମୂଳରେ ମାର୍ଜନ କରାହୋଇଥିବାରୁ ତାହାର ନାମ 'ଲବ' ହେଲା । ସେଠାରେ ଥିବା ବୃଦ୍ଧା ତପସ୍ୱିନୀମାନେ ମୁନିଙ୍କ ହାତରୁ କୁଶ ନେଇ ଯଥୋଚିତଭାବରେ ସେ ଦୁହିଁଙ୍କୁ ମାର୍ଜନ କରିଦେଇଥିଲେ । ୮ ।

ଏବଂ କୁଶଲବୌ ନାମ୍ନା ତାବୁଭୌ ଯମଜାତକୌ ।
ମନ୍ତ୍ରିତାଭ୍ୟାଂ ଚ ନାମାଭ୍ୟାଂ ଖ୍ୟାତିଯୁକ୍ତୌ ଭବିଷ୍ୟତଃ । ୯ ।
ତାଂ ରକ୍ଷାଂ ଜଗୃହୁସ୍ତାଶ୍ଚ ମୁନିହସ୍ତାତ୍ସମାହିତାଃ ।
ଅକୁର୍ବଂଶ୍ଚ ତତୋ ରକ୍ଷାଂ ତୟୋର୍ବିଗତକଲ୍ମଷାଃ । ୧୦ ।
ତଥା ତାଂ କ୍ରିୟମାଣାଂ ଚ ବୃଦ୍ଧାଭିର୍ଗୋତ୍ରନାମ ଚ ।
ସଂକୀର୍ତ୍ତନଂ ଚ ରାମସ୍ୟ ସୀତାୟାଃ ପ୍ରସବୌ ଶୁଭୌ । ୧୧ ।
ଅର୍ଦ୍ଧରାତ୍ରେ ତୁ ଶତ୍ରୁଘ୍ନଃ ଶୁଶ୍ରାବ ସୁମହତ୍ ପ୍ରିୟମ୍ ।
ପର୍ଣ୍ଣଶାଲାଂ ତତୋ ଗତ୍ୱା ମାତର୍ଦିଷ୍ଟ୍ୟେତି ଚାବ୍ରବୀତ୍ । ୧୨ ।
ତଥା ତସ୍ୟ ପ୍ରହୃଷ୍ଟସ୍ୟ ଶତ୍ରୁଘ୍ନସ୍ୟ ମହାତ୍ମନଃ ।
ବ୍ୟତୀତା ବାର୍ଷିକୀ ରାତ୍ରିଃ ଶ୍ରାବଣୀ ଲଘୁବିକ୍ରମା । ୧୩ ।
ପ୍ରଭାତେ ସୁମହାବୀର୍ଯଃ କୃତ୍ୱା ପୌର୍ବାହ୍ଣିକୀଂ କ୍ରିୟାମ୍ ।
ମୁନିଂ ପ୍ରାଞ୍ଜଳିରାମନ୍ତ୍ର୍ୟ ଯଯୌ ପଶ୍ଚାନ୍ମୁଖଃ ପୁନଃ । ୧୪ ।
ସ ଗତ୍ୱା ଯମୁନାତୀରଂ ସପ୍ତରାତ୍ରୋଷିତଃ ପଥି ।
ଋଷୀଣାଂ ପୁଣ୍ୟକୀର୍ତ୍ତୀନାମାଶ୍ରମେ ବାସମଭ୍ୟୟାତ୍ । ୧୫ ।

---

ତଦନନ୍ତର ମହର୍ଷି ବାଲ୍ମୀକି କହିଲେ, "ଏ ଦୁଇ ଯମଜ ବାଳକ ମୁଁ ଦେଇଥିବା କୁଶ ଓ ଲବ ନାମରେ ଖ୍ୟାତି ଲାଭକରିବେ" । ୯ । ଏହି ପ୍ରକାରେ ମହର୍ଷି ବାଲ୍ମୀକି ସେ ଦୁହିଁଙ୍କର ରକ୍ଷାବିଧାନ କଲେ ଏବଂ ସେହି କୁଶଗୋଛ ବାଲ୍ମୀକିଙ୍କଠାରୁ ନେଇ ପାପରହିତା ବୃଦ୍ଧା ତପସ୍ୱିନୀମାନେ ଅତି ସାବଧାନଭାବରେ ସେହି ବାଳକଦ୍ୱୟଙ୍କୁ ରକ୍ଷା କରିବାକୁ ଲାଗିଲେ । ୧୦ । ପୁଣି ସେହି ବୃଦ୍ଧାମାନେ ରାମଙ୍କର ଗୋତ୍ର ଓ ନାମ ନେଇ ଏବଂ ସୀତା ଓ ରାମଙ୍କର ନାମ ଉଚ୍ଚାରଣ କରି ସେମାନଙ୍କୁ ରକ୍ଷା କରିବାକୁ ଲାଗିଲେ । ୧୧ । ଅଧରାତି ସମୟରେ ଶତ୍ରୁଘ୍ନ ଏହି ସୁସମ୍ବାଦ ଶୁଣିଲେ ଏବଂ ସୀତାଙ୍କ ପର୍ଣ୍ଣଶାଳାକୁ ଯାଇ କହିଲେ, "ଏ ବଡ଼ ସୌଭାଗ୍ୟର କଥା ଯେ ତୁମ୍ଭର ପୁତ୍ର ଜାତ ହୋଇଅଛି" । ୧୨ । ଶତ୍ରୁଘ୍ନଙ୍କର ସେହି ଶ୍ରାବଣ ମାସ ରାତି ଆନନ୍ଦରେ ଅତିଶୀଘ୍ର ବିତିଗଲା । ୧୩ । ପ୍ରାତଃକାଳ ହେବାରୁ ଅତିପ୍ରତ୍ୟୁଷରେ ପ୍ରାତଃକୃତ୍ୟ ସମାପନ କରି ଶତ୍ରୁଘ୍ନ ମୁନିଙ୍କୁ ପ୍ରଣାମ କରି ଓ ତାଙ୍କର ଅନୁମତି ନେଇ ପୁଣି ପଶ୍ଚିମ ଦିଗକୁ ଚାଲିଗଲେ । ୧୪ । ବାଟରେ ସାତ ରାତି ବିତାଇ ସେ ଯମୁନାତୀରରେ ଯାଇ ପହଞ୍ଚିଲେ ଏବଂ ସେଠାରେ ପୁଣ୍ୟକୀର୍ତ୍ତି ମୁନିମାନଙ୍କର ଆଶ୍ରମରେ ରହିଲେ । ୧୫ ।

ସ ତତ୍ର ମୁନିଭିଃ ସାର୍ଦ୍ଧଂ ଭାର୍ଗବପ୍ରମୁଖୈର୍ନୃପଃ ।
କଥାଭିରଭିରୂପାଭିର୍ବାସଂ ଚକ୍ରେ ମହାଯଶାଃ । ୧୬ ।
ସ କାଞ୍ଚନାଦ୍ୟୈର୍ମୁନିଭିଃ ସମେତୋ
ରଘୁପ୍ରବୀରୋ ରଜନୀଂ ତଦାନୀମ୍ ।
କଥାପ୍ରକାରୈର୍ବହୁଭିର୍ମହାତ୍ମା
ବିରାମୟାମାସ ନରେନ୍ଦ୍ରସୂନୁଃ । ୧୭ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ କୁଶଲବଜନନଂ ନାମ ଷଟ୍‌ଷଷ୍ଟିତମଃ ସର୍ଗଃ ।

---

## ସପ୍ତଷଷ୍ଟିତମଃ ସର୍ଗଃ

### ମାନ୍ଧାତୃବଧଃ

ଅଥ ରାତ୍ର୍ୟାଂ ପ୍ରବୃତ୍ତାୟାଂ ଶତ୍ରୁଘ୍ନୋ ଭୃଗୁନନ୍ଦନମ୍ ।
ପ୍ରପଚ୍ଛ ଚ୍ୟବନଂ ବିପ୍ରଂ ଲବଣସ୍ୟ ଯଥାବଲମ୍ । ୧ ।
ଶୂଳସ୍ୟ ଚ ବଲଂ ବ୍ରହ୍ମନ୍ କେ ଚ ପୂର୍ବଂ ବିନାଶିତାଃ ।
ଅନେନ ଶୂଳମୁଖ୍ୟେନ ଦ୍ୱନ୍ଦ୍ୱଯୁଦ୍ଧମୁପାଗତାଃ । ୨ ।

---

ମହାଯଶସ୍ୱୀ ରାଜା ଶତ୍ରୁଘ୍ନ ସେଠାରେ ରହି ଭୃଗୁବଂଶୀ ଚ୍ୟବନାଦି ମହର୍ଷିମାନଙ୍କଠାରୁ ଅନେକ ମନୋରମ କଥା ଶୁଣିଲେ । ୧୬। ସେହି ରାଜପୁତ୍ର ମହାତ୍ମା ଶତ୍ରୁଘ୍ନ କାଞ୍ଚନାଦି ମହର୍ଷିମାନଙ୍କଠାରୁ ଅନେକ ପ୍ରକାର କଥା ଶୁଣି ସେ ରାତ୍ରି କଟାଇଦେଲେ । ୧୭ ।

---

## ୬୭ତମ ସର୍ଗ

### ( ମାନ୍ଧାତା ବଧ )

ରାତ୍ରି ହେବା ଉତ୍ତାରୁ ଶତ୍ରୁଘ୍ନ ଭୃଗୁନନ୍ଦନ ଚ୍ୟବନ ଋଷିଙ୍କୁ ଲବଣାସୁରର ବଳପରାକ୍ରମ ବିଷୟରେ ପଚାରିଲେ । ୧। ଶତ୍ରୁଘ୍ନ ପଚାରିଲେ, "ହେ ବ୍ରହ୍ମନ୍ ! ତାହାର ମୁଖ୍ୟ ଶୂଳର ପରାକ୍ରମ କିପରି ଏବଂ ପୂର୍ବେ ଦ୍ୱନ୍ଦ୍ୱଯୁଦ୍ଧ କରିବା ନିମନ୍ତେ ଆସିଥିବା କେଉଁ କେଉଁମାନେ ଏହାଦ୍ୱାରା ନିହତ ହୋଇଅଛନ୍ତି ?" । ୨ । ମହାବଳୀ

ତସ୍ୟ ତଦ୍‌ବଚନଂ ଶ୍ରୁତ୍ୱା ଶତ୍ରୁଘ୍ନସ୍ୟ ମହାତ୍ମନଃ ।
ପ୍ରତ୍ୟୁବାଚ ମହାତେଜାଶ୍ଚ୍ୟବନୋ ରଘୁନନ୍ଦନମ୍ । ୩ ।
ଅସଂଖ୍ୟେୟାନ୍ୟାନି କର୍ମାଣି ଯାନ୍ୟସ୍ୟ ରଘୁନନ୍ଦନ ।
ଇକ୍ଷ୍ୱାକୁବଂଶପ୍ରଭବେ ଯଦ୍‌ବୃତ୍ତଂ ତଚ୍ଛୃଣୁଷ୍ୱ ମେ । ୪ ।
ଅଯୋଧ୍ୟାୟାଂ ପୁରା ରାଜା ଯୁବନାଶ୍ୱସୁତୋ ବଲୀ ।
ମାନ୍ଧାତେତି ସ ବିଖ୍ୟାତସ୍ତ୍ରିଷୁ ଲୋକେଷୁ ବୀର୍ଯବାନ୍ । ୫ ।
ସ କୃତ୍ୱା ପୃଥିବୀଂ କୃତ୍ସ୍ନାଂ ଶାସନେ ପୃଥିବୀପତିଃ ।
ସୁରଲୋକମିତୋ ଜେତୁମୁଦ୍ୟୋଗମକରୋନ୍ନୃପଃ । ୬ ।
ଇନ୍ଦ୍ରସ୍ୟ ଚ ଭୟଂ ତୀବ୍ରଂ ସୁରାଣାଂ ଚ ମହାତ୍ମନାମ୍ ।
ମାନ୍ଧାତରି କୃତୋଦ୍ୟୋଗେ ଦେବଲୋକଜିଗୀଷୟା । ୭ ।
ଅର୍ଧାସନେନ ଶକ୍ରସ୍ୟ ରାଜ୍ୟାର୍ଧେନ ଚ ପାର୍ଥିବଃ ।
ବନ୍ଦ୍ୟମାନଃ ସୁରଗଣୈଃ ପ୍ରତିଜ୍ଞାମଧ୍ୟରୋହତ । ୮ ।
ତସ୍ୟ ପାପମଭିପ୍ରାୟଂ ବିଦିତ୍ୱା ପାକଶାସନଃ ।
ସାନ୍ତ୍ୱପୂର୍ବମିଦଂ ବାକ୍ୟମୁବାଚ ଯୁବନାଶ୍ୱଜମ୍ । ୯ ।

---

ଶତ୍ରୁଘ୍ନଙ୍କର ଏ କଥା ଶୁଣି ମହାତେଜସ୍ୱୀ ଚ୍ୟବନ ତାଙ୍କୁ ଉତ୍ତର ଦେଲେ । ୩ । "ହେ ରଘୁନନ୍ଦନ ! ଏହି ଶୂଳଦ୍ୱାରା ଇକ୍ଷ୍ୱାକୁବଂଶର ମାନ୍ଧାତାଙ୍କ ସମ୍ପର୍କରେ ଯେଉଁ ଘଟଣା ଘଟିଥିଲା, ସେ ବୃତ୍ତାନ୍ତ ମୋଠାରୁ ତୁମେ ଶୁଣ । ୪ । ପୂର୍ବକାଳରେ ମହାରାଜ ଯୁବନାଶ୍ୱଙ୍କ ପୁତ୍ର ମହାବଳୀ ମାନ୍ଧାତା ତିନ ଲୋକରେ ପରାକ୍ରମ ଲାଗି ପ୍ରସିଦ୍ଧି ଲାଭ କରିଥିଲେ । ୫ । ସେହି ରାଜା ସମଗ୍ର ପୃଥିବୀକୁ ନିଜର ଶାସନାଧୀନ କରି ସାରି ସ୍ୱର୍ଗଲୋକକୁ ଜୟ କରିବା ପାଇଁ ଉଦ୍‌ଯୋଗ କରିଥିଲେ । ୬ । ମାନ୍ଧାତା ଦେବଲୋକ ଜୟ କରିବା ପାଇଁ ଉଦ୍‌ଯୋଗ କରିବାରୁ ଇନ୍ଦ୍ର ଓ ଅନ୍ୟାନ୍ୟ ମହାତ୍ମା ଦେବଗଣଙ୍କର ବିଶେଷ ଭୟ ଜାତ ହୋଇଥିଲା । ୭ । ସେତେବେଳେ ମାନ୍ଧାତା ପ୍ରତିଜ୍ଞା କରିଥିଲେ ଯେ 'ମୁଁ ଇନ୍ଦ୍ରଙ୍କଠାରୁ ଅର୍ଦ୍ଧ ଆସନ ଓ ସ୍ୱର୍ଗ ରାଜ୍ୟର ଅଧେ ଅଧିକାର କରିନେବି ଏବଂ ଦେବତାମାନେ ମୋତେ ପ୍ରଣାମ କରିବେ' । ୮ । କିନ୍ତୁ ଇନ୍ଦ୍ର ଯୁବନାଶ୍ୱପୁତ୍ର ମାନ୍ଧାତାଙ୍କର ଏହି ପାପ ଅଭିପ୍ରାୟ ଜାଣି ତାଙ୍କୁ ସାନ୍ତ୍ୱନାପୂର୍ବକ କହିଲେ । ୯ ।

ରାଜା ତ୍ୱଂ ମାନୁଷେ ଲୋକେ ନ ତାବତ୍ ପୁରୁଷର୍ଷଭ ।
ଅକୃତ୍ୱା ପୃଥିବୀଂ ବଶ୍ୟାଂ ଦେବରାଜ୍ୟମିହେଚ୍ଛସି । ୧୦ ।
ଯଦି ବୀର ସମଗ୍ରା ତେ ମେଦିନୀ ନିଖିଳା ବଶେ ।
ଦେବରାଜ୍ୟଂ କୁରୁଷ୍ୱେହ ସଭୃତ୍ୟବଲବାହନଃ । ୧୧ ।
ଇନ୍ଦ୍ରମେବଂ ବ୍ରୁବାଣଂ ତଂ ମାନ୍ଧାତା ବାକ୍ୟମବ୍ରବୀତ୍ ।
କ୍ୱ ମେ ଶକ୍ର ପ୍ରତିହତଂ ଶାସନଂ ପୃଥିବୀତଳେ । ୧୨ ।
ତମୁବାଚ ସହସ୍ରାକ୍ଷୋ ଲବଣୋ ନାମ ରାକ୍ଷସଃ ।
ମଧୁପୁତ୍ରୋ ମଧୁବନେ ନାଜ୍ଞାଂ ତେ କୁରୁତେଽନଘ । ୧୩ ।
ତଚ୍ଛ୍ରୁତ୍ୱା ବିପ୍ରିୟଂ ଘୋରଂ ସହସ୍ରାକ୍ଷେଣ ଭାଷିତମ୍ ।
ବ୍ରୀଡ଼ିତୋଽବାଙ୍ମୁଖୋ ରାଜା ବ୍ୟାହର୍ତ୍ତୁଂ ନ ଶଶାକ ହ । ୧୪ ।
ଆମନ୍ତ୍ର୍ୟ ତୁ ସହସ୍ରାକ୍ଷଂ ହ୍ରିୟା କିଞ୍ଚିଦବାଙ୍ମୁଖଃ ।
ପୁନରେବାଗମଚ୍ଛ୍ରୀମାନିମଂ ଲୋକଂ ନରେଶ୍ୱରଃ । ୧୫ ।
ସ କୃତ୍ୱା ହୃଦୟେଽମର୍ଷଂ ସଭୃତ୍ୟବଲବାହନଃ ।
ଆଜଗାମ ମଧୋଃ ପୁତ୍ରଂ ବଶେ କର୍ତ୍ତୁମରିନ୍ଦମଃ । ୧୬ ।

---

"ହେ ପୁରୁଷଶ୍ରେଷ୍ଠ ! ତୁମେ ତ ଏପର୍ଯ୍ୟନ୍ତ ସମଗ୍ର ପୃଥିବୀରାଜ୍ୟକୁ ହସ୍ତଗତ କରିପାରି ନାହିଁ; ସମସ୍ତ ପୃଥିବୀକୁ ନିଜର ଅଧୀନ ନ କରି ତୁମେ ଦେବରାଜ୍ୟକୁ କିପରି ଅଧୀନ କରିବାପାଇଁ ଇଚ୍ଛା କରୁଅଛ ? ।୧୦। ହେ ବୀର ! ଯଦି ସମଗ୍ର ପୃଥିବୀ ତୁମ୍ଭର ବଶୀଭୂତ ହୋଇଯାଏ, ତାହାହେଲେ ତା ପରେ ତୁମେ ଭୃତ୍ୟ, ସୈନ୍ୟ ଓ ବାହନ ସହିତ ଆସି ଦେବଲୋକରେ ରାଜତ୍ୱ କର" ।୧୧। ଇନ୍ଦ୍ର ଏପରି କହିବାରୁ ମାନ୍ଧାତା ତାଙ୍କୁ କହିଲେ "ହେ ଇନ୍ଦ୍ର ! ପୃଥିବୀପୃଷ୍ଠରେ ମୋର ଆଜ୍ଞା କିଏ ପାଳନ ନ କରୁଛି; ତାହା ମୋତେ କହ" ।୧୨। ତା ପରେ ଇନ୍ଦ୍ର କହିଲେ, "ହେ ଅନଘ, ହେ ନିଷ୍ପାପ ! ମଧୁବନରେ ମଧୁର ପୁତ୍ର ଲବଣାସୁର ତୁମ୍ଭର ଆଜ୍ଞାକୁ ପାଳନ କରୁ ନାହିଁ" । ୧୩ । ଇନ୍ଦ୍ରଙ୍କ କଥିତ ଏହି ଅପ୍ରିୟ ବଚନ ଶୁଣି ମାନ୍ଧାତା ଲଜ୍ଜିତ ହୋଇ ମୁହଁକୁ ତଳକୁ ପୋତିଦେଲେ ଏବଂ ତାଙ୍କୁ କୌଣସି ଉତ୍ତର ଦେବାକୁ ସମର୍ଥ ହେଲେ ନାହିଁ । ୧୪ । ଶ୍ରୀମାନ୍ ରାଜା ଇନ୍ଦ୍ରଙ୍କଠାରୁ ବିଦାୟ ନେଇ ଅଧୋମୁଖ ହୋଇ ପୁଣି ଏହି ମର୍ତ୍ତ୍ୟଲୋକକୁ ଫେରି ଆସିଲେ । ୧୫ । ତାଙ୍କ ମନରେ ବିଶେଷ କ୍ରୋଧ ଜାତ ହୋଇଥିଲା ; ସୁତରାଂ ସେହି ଶତ୍ରୁଘାତୀ ରାଜା ମଧୁପୁତ୍ର ଲବଣାସୁରକୁ ବଶୀଭୂତ କରିବା ପାଇଁ ଭୃତ୍ୟ, ସୈନ୍ୟ ଓ ବାହନ ସହିତ ଯାତ୍ରା କଲେ । ୧୬ ।

ସ କାଙ୍କ୍ଷମାଣୋ ଲବଣଂ ଯୁଦ୍ଧାୟ ପୁରୁଷର୍ଷଭଃ ।
ଦୂତଂ ସଂପ୍ରେଷୟାମାସ ସକାଶଂ ଲବଣସ୍ୟ ହି । ୧୭ ।
ସ ଗତ୍ୱା ବିପ୍ରିୟାଣ୍ୟାହ ବହୂନି ମଧୁନଃ ସୁତମ୍ ।
ବଦନ୍ତମେବଂ ତଂ ଦୂତଂ ଭକ୍ଷୟାମାସ ରାକ୍ଷସଃ । ୧୮ ।
ଚିରାୟମାଣେ ଦୂତେ ତୁ ରାଜା କ୍ରୋଧସମନ୍ୱିତଃ ।
ଅର୍ଦ୍ଦୟାମାସ ତଦ୍ରକ୍ଷଃ ଶରବୃଷ୍ଟ୍ୟା ସମନ୍ତତଃ । ୧୯ ।
ତତଃ ପ୍ରହସ୍ୟ ତଦ୍‌ରକ୍ଷଃ ଶୂଳଂ ଜଗ୍ରାହ ପାଣିନା ।
ବଧାୟ ସାନୁବନ୍ଧସ୍ୟ ମୁମୋଚାୟୁଧମୁତ୍ତମମ୍ । ୨୦ ।
ତଚ୍ଛୂଳଂ ଦୀପ୍ୟମାନଂ ତୁ ସଭୃତ୍ୟବଲବାହନମ୍ ।
ଭସ୍ମୀକୃତ୍ୱା ନୃପଂ ଭୂୟୋ ଲବଣସ୍ୟାଗମତ୍କରମ୍ । ୨୧ ।
ଏବଂ ସ ରାଜା ସୁମହାନ୍ ହତଃ ସବଲବାହନଃ ।
ଶୂଳସ୍ୟ ତୁ ବଲଂ ସୌମ୍ୟ ଅପ୍ରମେୟମନୁତ୍ତମମ୍ । ୨୨ ।
ଶ୍ୱଃ ପ୍ରଭାତେ ତୁ ଲବଣଂ ବଧିଷ୍ୟସି ନ ସଂଶୟଃ ।
ଅଗୃହୀତାୟୁଧଂ କ୍ଷିପ୍ରଂ ଧ୍ରୁବୋ ହି ବିଜୟସ୍ତବ । ୨୩ ।

---

ମାନ୍ଧାତା ଲବଣାସୁର ପାଖକୁ ଯୁଦ୍ଧ କରିବା ପାଇଁ ନିଜର ଇଚ୍ଛା ଜଣାଇ ପ୍ରଥମେ ଦୂତ ପଠାଇଲେ । ୧୭ । ସେହି ଦୂତ ଲବଣାସୁର ପାଖକୁ ଯାଇ ଯେତେବେଳେ ବହୁ ଅପ୍ରିୟ କଥା ତାକୁ କହିଲା, ସେତେବେଳେ ଲବଣାସୁର ସେହି ଦୂତକୁ ଖାଇଦେଲା । ୧୮ । ଦୂତ ଫେରିବାରେ ବିଳମ୍ବ ହେବାରୁ ରାଜା ମାନ୍ଧାତା ଅତିଶୟ କ୍ରୁଦ୍ଧ ହୋଇ ଚାରିଆଡ଼ୁ ଶରବୃଷ୍ଟି କରି ସେ ରାକ୍ଷସକୁ ପ୍ରପୀଡ଼ିତ କଲେ । ୧୯ । ଅନନ୍ତର ସେ ରାକ୍ଷସ ଅଟ୍ଟହାସ୍ୟ କରି ସେହି ଶିବଦତ୍ତ ଶୂଳକୁ ଉଠାଇଲା ଏବଂ ସେନା ସହିତ ରାଜା ମାନ୍ଧାତାଙ୍କୁ ମାରିବା ପାଇଁ ତାହାକୁ ନିକ୍ଷେପ କଲା । ୨୦ । ସେହି ଦୀପ୍ୟମାନ ଶୂଳ ଭୃତ୍ୟ, ସୈନ୍ୟ ଓ ବାହନ ସହିତ ରାଜାଙ୍କୁ ଭସ୍ମ କରିଦେଇ ପୁଣି ଲବଣାସୁର ପାଖକୁ ଫେରି ଆସିଲା । ୨୧ । ଏହି ପ୍ରକାରେ ସେହି ରାଜା ସୈନ୍ୟ, ବାହନ ସହିତ ନିହତ ହୋଇଥିଲେ । ହେ ସୌମ୍ୟ ! ସେହି ଶୂଳର ବଳ ଅତି ମହତ୍ ଅଟେ । ୨୨ । କିନ୍ତୁ ତୁମେ କାଲି ସକାଳେ ହିଁ ଲବଣାସୁରକୁ ମାରିଦେବ ଏବଂ ତୁମର ଜୟ ନିଶ୍ଚିତ । ସେ ଯେତେବେଳେ କୌଣସି ଅସ୍ତ୍ର ଧରି ନ ଥିବ, ସେତେବେଳେ ତୁମେ କ୍ଷିପ୍ରଭାବରେ ଆକ୍ରମଣ କଲେ ତାକୁ ଅବଶ୍ୟ ଜିଣିଯିବ ।୨୩।

ଲୋକାନାଂ ସ୍ୱସ୍ତି ଚୈବ ସ୍ୟାତ୍ କୃତେ କର୍ମଣି ଚ ତ୍ୱୟା ।
ଏତତ୍ତେ ସର୍ବମାଖ୍ୟାତଂ ଲବଣସ୍ୟ ଦୁରାତ୍ମନଃ । ୨୪ ।
ଶୂଳସ୍ୟ ଚ ବଳଂ ଘୋରମପ୍ରମେୟଂ ନରର୍ଷଭ ।
ବିନାଶଶ୍ଚୈବ ମାନ୍ଧାତୁର୍ଯତ୍ତେନାଭୂଚ୍ଚ ପାର୍ଥିବ । ୨୫ ।
ତ୍ୱଂ ଶ୍ୱଃ ପ୍ରଭାତେ ଲବଣଂ ମହାତ୍ମନ୍
ବଧିଷ୍ୟସେ ନାତ୍ର ତୁ ସଂଶୟୋ ମେ ।
ଶୂଳଂ ବିନା ନିର୍ଗତମାମିଷାର୍ଥେ
ଧ୍ରୁବୋ ଜୟସ୍ତେ ଭବିତା ନରେନ୍ଦ୍ର । ୨୬ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ମାନ୍ଧାତୃବଧୋ ନାମ ସପ୍ତଷଷ୍ଟିତମଃ ସର୍ଗଃ ।

---

# ଅଷ୍ଟଷଷ୍ଟିତମଃ ସର୍ଗଃ

## ଲବଣଶତ୍ରୁଘ୍ନବିବାଦଃ

କଥାଂ କଥୟତାଂ ତେଷାଂ ଜୟଂ ଚାକାଙ୍କ୍ଷତାଂ ଶୁଭମ୍ ।
ବ୍ୟତୀତା ରଜନୀ ଶୀଘ୍ରଂ ଶତ୍ରୁଘ୍ନସ୍ୟ ମହାତ୍ମନଃ । ୧ ।

---

ତୁମେ ଏପରି କାର୍ଯ୍ୟସାଧନ କଲେ ସମସ୍ତ ଲୋକ ଶାନ୍ତି ଲାଭକରିବେ । ଦୁରାତ୍ମା ଲବଣର ସମସ୍ତ ବୃତ୍ତାନ୍ତ ମୁଁ ଏବେ ତୁମକୁ କହିଦେଲି । ୨୪ । ହେ ନରଶ୍ରେଷ୍ଠ ! ସେହି ଶୂଳର ଶକ୍ତି ଅତିପ୍ରବଳ ଏବଂ ଅତୁଳନୀୟ ଅଟେ । ହେ ରାଜନ୍ ! ମାନ୍ଧାତାଙ୍କର ଏହି ଶୂଳଦ୍ୱାରା ବିନାଶ ହୋଇଥିଲା । ୨୫ । ହେ ନରେନ୍ଦ୍ର ! ତୁମେ କାଲି ସକାଳେ ଲବଣକୁ ମାରିଦେବ, ଏଥିରେ ସନ୍ଦେହ ନାହିଁ । ସେ ଯେତେବେଳେ ଶୂଳ ନ ନେଇ ଆମିଷ ସଂଗ୍ରହ କରିବା ପାଇଁ ଘରୁ ବାହାରି ଯାଇଥିବ ସେତେବେଳେ ତୁମେ ନିଶ୍ଚୟ ତାହାକୁ ଜିଣି ପାରିବ” । ୨୬ ।

---

## ୬୮ତମ ସର୍ଗ

### (ଲବଣ ଓ ଶତ୍ରୁଘ୍ନଙ୍କ ବିବାଦ)

ମହାତ୍ମା ଶତ୍ରୁଘ୍ନ ଏହି ପ୍ରକାରେ କଥାବାର୍ତ୍ତା ହେଉ ହେଉ ଏବଂ ଶୁଭ ବିଜୟ କଥା ଚିନ୍ତା କରୁ କରୁ ଶୀଘ୍ର ରାତି ପାହିଗଲା ।୧। ନିର୍ମଳ ପ୍ରଭାତକାଳ ହେବାମାତ୍ରେ

ତତଃ ପ୍ରଭୃତେ ବିମଲେ ତସ୍ମିନ୍ କାଲେ ସ ରାକ୍ଷସଃ ।
ନିର୍ଗତସ୍ତୁ ପୁରାଦ୍ ବୀରୋ ଭକ୍ଷାହାରପ୍ରଚୋଦିତଃ । ୨ ।
ଏତସ୍ମିନ୍ନନ୍ତରେ ବୀରଃ ଶତ୍ରୁଘ୍ନୋ ଯମୁନାଂ ନଦୀମ୍ ।
ତୀର୍ତ୍ତ୍ୱା ମଧୁପୁରଦ୍ୱାରି ଧନୁଷ୍ପାଣିରତିଷ୍ଠତ । ୩ ।
ତତୋଽର୍ଦ୍ଧଦିବସେ ପ୍ରାପ୍ତେ କ୍ରୂରକର୍ମା ସ ରାକ୍ଷସଃ ।
ଆଗଚ୍ଛଦ୍‌ବହୁସାହସ୍ରଂ ପ୍ରାଣିନାଂ ଭାରମୁଦ୍‌ବହନ୍ । ୪ ।
ତତୋ ଦଦର୍ଶ ଶତ୍ରୁଘ୍ନଂ ସ୍ଥିତଂ ଦ୍ୱାରି ଧୃତାୟୁଧମ୍ ।
ତମୁବାଚ ତତୋ ରକ୍ଷଃ କିମନେନ କରିଷ୍ୟସି । ୫ ।
ଈଦୃଶାନାଂ ସହସ୍ରାଣି ସାୟୁଧାନାଂ ନରାଧମ ।
ଭକ୍ଷିତାନି ମୟା ରୋଷାତ୍ କାଲମାକାଙ୍କ୍ଷସେ ନୁ କିମ୍ । ୬ ।
ଆହାରଶ୍ଚାପ୍ୟସଂପୂର୍ଣ୍ଣୋ ମମାୟଂ ପୁରୁଷାଧମ ।
ସ୍ୱୟଂ ପ୍ରବିଷ୍ଟୋଽଦ୍ୟ ମୁଖଂ କଥମାସାଦ୍ୟ ଦୁର୍ମତେ । ୭ ।
ତସ୍ୟୈବଂ ଭାଷମାଣସ୍ୟ ହସତଶ୍ଚ ମୁହୁର୍ମୁହୁଃ ।
ଶତ୍ରୁଘ୍ନୋ ବୀର୍ଯ୍ୟସଂପନ୍ନୋ ରୋଷାଦଶ୍ରୂଣ୍ୟବାସୃଜତ୍ । ୮ ।

---

ସେହି ଘୋର ଲବଣ ରାକ୍ଷସ ଆହାର ସଂଗ୍ରହ କରିବା ପାଇଁ ନିଜ ପୁରରୁ ବାହାରି-ପଡ଼ିଲା । ୨ । ଏହି ସମୟ ମଧ୍ୟରେ ବୀର ଶତ୍ରୁଘ୍ନ ଯମୁନା ନଦୀ ପାର ହୋଇ ହାତରେ ଧନୁ ଧରି ମଧୁପୁରର ଦ୍ୱାରଦେଶରେ ଯାଇ ଠିଆ ହୋଇଗଲେ । ୩ । ଦୁଇ ପ୍ରହର ହୋଇ ଯିବାରୁ ସେହି କ୍ରୂରକର୍ମା ରାକ୍ଷସ ବହୁ ସହସ୍ର ପ୍ରାଣୀଙ୍କୁ ମାରି ଏବଂ ସେହି ଭାର ବହନ କରି ଆସି ଦେଖିଲା । ୪ । ସେ ଆସି ଦେଖିଲା ଯେ ଶତ୍ରୁଘ୍ନ ଅସ୍ତ୍ର ଧରି ଦ୍ୱାରଦେଶରେ ଉଭା ହୋଇଛନ୍ତି । ରାକ୍ଷସ ତାଙ୍କୁ ପଚାରିଲା, "ତୁ ଏ ଧନୁଃଶରଦ୍ୱାରା କଅଣ କରିବୁ ? ।୫। ରେ ନରାଧମ ! ମୁଁ କ୍ରୋଧରେ ଏହିପରି ହଜାର ହଜାର ଅସ୍ତ୍ରଧାରୀ ବୀରଙ୍କୁ ଖାଇପକାଇଛି ; ଆଜି ତୋର ମଧ୍ୟ ଅନ୍ତିମ କାଳ ଆସି ଉପସ୍ଥିତ ହୋଇଅଛି କି ? ୬ । ରେ ନରାଧମ ! ଆଜି ମୋର ଆହାରର ପରିମାଣରେ କିଛି ନିଅଣ୍ଟ ରହିଯାଇଥିଲା । ରେ ଦୁର୍ମତେ ! ମୋର ଏହି ଖାଦ୍ୟାଭାବ ପୂରଣ କରିବା ପାଇଁ ତୁ କିପରି ଆସି ମୋ ମୁହଁରେ ସ୍ୱୟଂ ପ୍ରବେଶ କଲୁ ?" ୭ । ଲବଣ ଏ ପ୍ରକାର କହି ବାରମ୍ବାର ଉପହାସ କରିବାରୁ କ୍ରୋଧରେ ବୀର୍ଯ୍ୟଶାଳୀ ଶତ୍ରୁଘ୍ନଙ୍କର ଆଖିରୁ ଅଶ୍ରୁ ବୋହିପଡ଼ିଲା ।୮। ମହାବଳୀ ଶତ୍ରୁଘ୍ନଙ୍କର ଅତ୍ୟନ୍ତ କ୍ରୋଧ

ତସ୍ୟ ରୋଷାଭିଭୂତସ୍ୟ ଶତ୍ରୁଘ୍ନସ୍ୟ ମହାତ୍ମନଃ ।
ତେଜୋମୟ୍ୟୋ ମରୀଚ୍ୟସ୍ତୁ ସର୍ବଗାତ୍ରୈର୍ବିନିଷ୍ପତନ୍ ।୯।
ଉବାଚ ଚ ସୁସଂକ୍ରୁଦ୍ଧଃ ଶତ୍ରୁଘ୍ନସ୍ତଂ ନିଶାଚରମ୍ ।
ଯୋଦ୍ଧୁମିଚ୍ଛାମି ଦୁର୍ବୁଦ୍ଧେ ଦ୍ୱନ୍ଦ୍ୱଯୁଦ୍ଧଂ ତ୍ୱୟା ସହ ।୧୦।
ପୁତ୍ରୋ ଦଶରଥସ୍ୟାହଂ ଭ୍ରାତା ରାମସ୍ୟ ଧୀମତଃ ।
ଶତ୍ରୁଘ୍ନୋ ନିତ୍ୟଶତ୍ରୁଘ୍ନୋ ବଧାକାଙ୍କ୍ଷୀ ତବାଗତଃ ।୧୧।
ତସ୍ୟ ମେ ଯୁଦ୍ଧକାମସ୍ୟ ଦ୍ୱନ୍ଦ୍ୱଯୁଦ୍ଧଂ ପ୍ରଦୀୟତାମ୍ ।
ଶତ୍ରୁସ୍ତ୍ୱଂ ସର୍ବଜୀବାନାଂ ନ ମେ ଜୀବନ୍ ଗମିଷ୍ୟସି ।୧୨।
ତସ୍ମିଂସ୍ତଥା ବ୍ରୁବାଣେ ତୁ ରାକ୍ଷସଃ ପ୍ରହସନ୍ନିବ ।
ପ୍ରତ୍ୟୁବାଚ ନରଶ୍ରେଷ୍ଠଂ ଦିଷ୍ଟ୍ୟା ପ୍ରାପ୍ତୋଽସି ଦୁର୍ମତେ ।୧୩।
ମମ ମାତୃଷ୍ୱସୁର୍ଭ୍ରାତା ରାବଣୋ ରାକ୍ଷସାଧିପଃ ।
ହତୋ ରାମେଣ ଦୁର୍ବୁଦ୍ଧେ ସ୍ତ୍ରୀହେତୋଃ ପୁରୁଷାଧମ ।୧୪।
ତଚ୍ଚ ସର୍ବଂ ମୟା କ୍ଷାନ୍ତଂ ରାବଣସ୍ୟ କୁଲକ୍ଷୟମ୍ ।
ଅବଜ୍ଞାଂ ପୁରତଃ କୃତ୍ୱା ମୟା ଯୂୟଂ ବିଶେଷତଃ ।୧୫।
ନିହତାଶ୍ଚ ହି ମେ ସର୍ବେ ପରିଭୂତାସ୍ତୃଣଂ ଯଥା ।
ଭୂତାଶ୍ଚୈବ ଭବିଷ୍ୟାଶ୍ଚ ଯୂୟଂ ଚ ପୁରୁଷାଧମାଃ ।୧୬।

---

ହେବାରୁ ତାଙ୍କର ସମଗ୍ର ଶରୀରରୁ ତେଜୋମୟ ଅଗ୍ନିକଣା ନିର୍ଗତ ହେବାକୁ ଲାଗିଲା । ।୯। ଶତ୍ରୁଘ୍ନ ଅତିଶୟ କ୍ରୁଦ୍ଧ ହୋଇ ସେହି ଲବଣ ରାକ୍ଷସକୁ କହିଲେ, "ରେ ଦୁର୍ବୁଦ୍ଧେ ! ମୁଁ ତୋ ସହ ଦ୍ୱନ୍ଦ୍ୱଯୁଦ୍ଧ କରିବାକୁ ଇଚ୍ଛା କରୁଅଛି ।୧୦। ମୁଁ ମହାରାଜ ଦଶରଥଙ୍କ ପୁତ୍ର ଏବଂ ବୁଦ୍ଧିମାନ୍ ରାମଚନ୍ଦ୍ରଙ୍କ ଭ୍ରାତା ଅଟେଁ, ସଦା ଶତ୍ରୁନାଶକାରୀ ଶତ୍ରୁଘ୍ନ ମୋର ନାମ ଅଟେ । ମୁଁ ତୋତେ ବଧ କରିବା ପାଇଁ ଏଠାକୁ ଆସିଅଛି । ।୧୧। ମୁଁ ଯୁଦ୍ଧ କରିବାକୁ ଇଚ୍ଛା କରୁଅଛି, ସୁତରାଂ ତୁ ମୋ ସହ ଦ୍ୱନ୍ଦ୍ୱ ଯୁଦ୍ଧ କର । ତୁ ସମସ୍ତ ଜୀବଧାରୀଙ୍କର ଶତ୍ରୁ ଅଟୁ, ସୁତରାଂ ତୁ ଆଜି ମୋ ହାତରୁ ବଞ୍ଚିକରି ଯାଇ ପାରିବୁ ନାହିଁ" ।୧୨। ଶତ୍ରୁଘ୍ନଙ୍କର ଏ କଥା ଶୁଣି ଲବଣ ହସିକରି ତାଙ୍କୁ କହିଲା, ରେ ଦୁର୍ମତେ ! ବଡ଼ ସୌଭାଗ୍ୟର କଥା ଯେ ତୁ ମୋ ଆଗରେ ଆସି ପହଞ୍ଚିଯାଇଛୁ ।୧୩। ରେ ନରାଧମ, ରେ ଦୁର୍ବୁଦ୍ଧେ ! ମୋର ମାଉସୀପୁଅ ଭାଇ ରାକ୍ଷସରାଜ ରାବଣକୁ ସ୍ତ୍ରୀଲାଗି ରାମ ମାରିଦେଇଅଛି ।୧୪। ସେହି ରାବଣର କୁଳକ୍ଷୟକୁ ଏବଂ ତାର ବଧକୁ ମୁଁ କ୍ଷମା କରିଥିଲି; କିନ୍ତୁ ତୁ ବିଶେଷତଃ ମୋର ସମ୍ମୁଖରେହିଁ ମୋର ଅପମାନ କରୁଅଛୁ ।୧୫। ତୋର ପୂର୍ବପୁରୁଷମାନେ ପୂର୍ବରୁ ମୋଦ୍ୱାରା ନିହତ ହୋଇ ତୃଣସଦୃଶ ପରାଜିତ ହୋଇଅଛନ୍ତି, ସୁତରାଂ

ତସ୍ୟ ତେ ଯୁଦ୍ଧକାମସ୍ୟ ଯୁଦ୍ଧଂ ଦାସ୍ୟାମି ଦୁର୍ମତେ ।
ତିଷ୍ଠ ତ୍ୱଂ ଚ ମୁହୂର୍ତ୍ତଂ ତୁ ଯାବଦାୟୁଧମାନୟେ ॥ ୧୭ ॥
ଈପ୍ସିତଂ ଯାଦୃଶଂ ତୁଭ୍ୟଂ ସଜ୍ଜୟେ ଯାବଦାୟୁଧମ୍ ।
ତମୁବାଚାଥ ଶତ୍ରୁଘ୍ନଃ କ୍ୱ ମେ ଜୀବନ୍ ଗମିଷ୍ୟସି ॥ ୧୮ ॥
ଶତ୍ରୁର୍ଯଦୃଚ୍ଛୟା ଦୃଷ୍ଟୋ ନ ମୋକ୍ତବ୍ୟଃ କୃତାତ୍ମନା ।
ଯୋ ହି ବିକ୍ଲବୟା ବୁଦ୍ଧ୍ୟା ପ୍ରସରଂ ଶତ୍ରବେ ଦଦୌ ।
ସ ହତୋ ମନ୍ଦବୁଦ୍ଧିତ୍ୱାଦ୍ ଯଥା କାପୁରୁଷସ୍ତଥା ॥ ୧୯ ॥
ତସ୍ମାତ୍ ସୁଦୃଷ୍ଟଂ କୁରୁ ଜୀବଲୋକମ୍
ଶରୈଃ ଶିତୈସ୍ତ୍ୱାଂ ବିବିଧୈର୍ନୟାମି ।
ଯମସ୍ୟ ଗେହାଭିମୁଖଂ ହି ପାପମ୍
ରିପୁଂ ତ୍ରିଲୋକସ୍ୟ ଚ ରାଘବସ୍ୟ ॥ ୨୦ ॥

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ଲବଣଶତ୍ରୁଘ୍ନବିବାଦୋ ନାମ ଅଷ୍ଟଷଷ୍ଟିତମଃ ସର୍ଗଃ ।

---

ଭବିଷ୍ୟତ ଏବଂ ବର୍ତ୍ତମାନ ସମୟରେ ତୁମ୍ଭେମାନେ ମଧ୍ୟ ମୋର ଦୃଷ୍ଟିରେ କିଛି ନୁହଁ ॥ ୧୬ ॥ ରେ ଦୁର୍ମତେ ! ତୁ ଯଦି ମୋ ସହିତ ଯୁଦ୍ଧ କରିବାକୁ ଇଚ୍ଛା କରୁଅଛୁ, ତେବେ ମୁଁ ମଧ୍ୟ ଯୁଦ୍ଧ କରିବାକୁ ପ୍ରସ୍ତୁତ ଅଛି, ମାତ୍ର ଟିକିଏ ଅପେକ୍ଷା କର, ମୁଁ ମୋର ଅସ୍ତ୍ର ନେଇ ଆସେ ॥ ୧୭ ॥ ତୋତେ ମାରିବାପାଇଁ ଯେପ୍ରକାର ଅସ୍ତ୍ର ଆବଶ୍ୟକ ସେ ପ୍ରକାର ଅସ୍ତ୍ର ମୁଁ ଯେନ ଆସୁଅଛି"। ଅନନ୍ତର ଶତ୍ରୁଘ୍ନ ତତ୍‌କ୍ଷଣାତ୍ ତାକୁ କହିଲେ, "ତୁ ଏବେ ମୋଠାରୁ ବର୍ତ୍ତିକରି କୁଆଡ଼େ ଯିବୁ ? ॥ ୧୮ ॥ ଚତୁର ଲୋକ ନିଜର ଆଗକୁ ଆସିବା ଶତ୍ରୁକୁ କଦାପି ଛାଡ଼ିଦିଏ ନାହିଁ । ଯେଉଁ ଲୋକ ହୀନବୁଦ୍ଧି ହେତୁରୁ ଶତ୍ରୁକୁ ଅବସର ଦିଏ ତାହାକୁ ମୂର୍ଖ ବୋଲି ବୁଝିବାକୁ ହେବ ଏବଂ ସେପରି ବ୍ୟକ୍ତି କାପୁରୁଷପରି ନିହତ ହୋଇଥାଏ ॥ ୧୯ ॥ ଅତଏବ ତୁ ଏହି ଜୀବଲୋକକୁ ଭଲକରି ଦେଖି ନିଅ । କାରଣ ମୁଁ ଅତିଶୀଘ୍ର ତୋତେ ନିଜର ତୀକ୍ଷ୍ଣ ଶରଦ୍ୱାରା ଯମପୁରୀକୁ ପଠାଇଦେଉଅଛି । ତୁ ସମସ୍ତ ତ୍ରିଭୁବନର ତଥା ରାମଚନ୍ଦ୍ରଙ୍କର ମଧ୍ୟ ଶତ୍ରୁ ଅଟୁ" ॥ ୨୦ ॥

# ଏକୋନସପ୍ତତିତମଃ ସର୍ଗଃ

## ଲବଣବଧଃ

ତଚ୍ଛ୍ରୁତ୍ୱା ଭାଷିତଂ ତସ୍ୟ ଶତ୍ରୁଘ୍ନସ୍ୟ ମହାତ୍ମନଃ ।
କ୍ରୋଧମାହାରୟତ୍ତୀବ୍ରଂ ତିଷ୍ଠ ତିଷ୍ଠେତି ଚାବ୍ରବୀତ୍ । ୧ ।
ପାଣୌ ପାଣିଂ ବିନିଷ୍ପିଷ୍ୟ ଦନ୍ତାନ୍ କଟକଟାପ୍ୟ ଚ ।
ଲବଣୋ ରଘୁଶାର୍ଦ୍ଦୂଲମାହ୍ୱୟାମାସ ଚାସକୃତ୍ । ୨ ।
ତମାହ୍ୱୟନ୍ତଂ ସୌମିତ୍ରିର୍ଲବଣଂ ଘୋରଦର୍ଶନମ୍ ।
ଶତ୍ରୁଘ୍ନୋ ଦେବଶତ୍ରୁଘ୍ନ ଇଦଂ ବଚନମବ୍ରବୀତ୍ । ୩ ।
ନ ଶତ୍ରୁଘ୍ନସ୍ତଦା ଜାତୋ ଯଦାନ୍ୟେ ନିର୍ଜିତାସ୍ତ୍ୱୟା ।
ତଦଦ୍ୟ ବାଣାଭିହତୋ ବ୍ରଜ ତ୍ୱଂ ଯମସାଦନମ୍ । ୪ ।
ଋଷୟୋଽପ୍ୟଦ୍ୟ ପାପାତ୍ମନ୍ ମୟା ତ୍ୱାଂ ନିହତଂ ରଣେ ।
ପଶ୍ୟନ୍ତୁ ବିପ୍ରା ବିଦ୍ୱାଂସସ୍ତ୍ରିଦଶା ଇବ ରାବଣମ୍ । ୫ ।
ତ୍ୱୟି ମଦ୍ବାଣନିର୍ଦଗ୍ଧେ ପତିତେଽଦ୍ୟ ନିଶାଚର ।
ପୁରେ ଜନପଦେ ଚାପି କ୍ଷେମମେବ ଭବିଷ୍ୟତି । ୬ ।

---

# ୬୯ତମ ସର୍ଗ

## (ଲବଣଦୈତ୍ୟବଧ)

ମହାବଳୀ ଶତ୍ରୁଘ୍ନଙ୍କର ଏ କଥା ଶୁଣି ଅତିଶୟ କ୍ରୁଦ୍ଧ ହୋଇ ଲବଣ କହିଲା, "ରହ ରହ" । ୧ । କ୍ରୋଧରେ ଦୁଇ ହାତ ମୁଠା ମୁଠା କରି ଏବଂ ଦାନ୍ତ କଡ଼ମଡ଼ କରି ଲବଣାସୁର ବାରମ୍ବାର ରଘୁବଂଶସିଂହ ଶତ୍ରୁଘ୍ନଙ୍କୁ ଲଢ଼ିବା ପାଇଁ ଆହ୍ୱାନ କଲା ।୨। ଭୀଷଣାକୃତି ଲବଣାସୁର ଏପରି କହିବାରୁ ଶୁଣି ଦେବଶତ୍ରୁହନ୍ତା ଶତ୍ରୁଘ୍ନ କହିଲେ । ୩ । "ଯେତେବେଳେ ତୁ ଅନ୍ୟ ବୀରମାନଙ୍କୁ ଜିଣିଥିଲୁ, ସେତେବେଳେ ଶତ୍ରୁଘ୍ନ ଜନ୍ମ ହୋଇ ନ ଥିଲା; ଆଜ ତୁ ମୋ ବାଣରେ ନିହତ ହୋଇ ଯମପୁରକୁ ଯାହାକର । ୪ । ରେ ପାପିଷ୍ଠ ! ରାମଚନ୍ଦ୍ରଙ୍କ ଦ୍ୱାରା ନିହତ ହୋଇଥିବା ରାବଣକୁ ଦେବତାମାନେ ଯେପରି ଦେଖିଥିଲେ, ସେହିପରି ଆଜ ମୋ ହାତରେ ତୋତେ ରଣଭୂମିରେ ନିହତ ହେବାର ବ୍ରାହ୍ମଣ, ପଣ୍ଡିତ ଓ ଦେବତାମାନେ ଦେଖନ୍ତୁ । ୫ । ରେ ନିଶାଚର ! ତୁ ଯେତେବେଳେ ମୋ ଶରରେ ଦଗ୍ଧ ହୋଇ ଆଜ ପୃଥିବୀ ଉପରେ ଟଳି ପଡ଼ିବୁ, ସେତେବେଳେ ଏହି ନଗର ଏବଂ

ଅଦ୍ୟ ମଦ୍‌ବାହୁନିଷ୍କ୍ରାନ୍ତଃ ଶରୋ ବଜ୍ରନିଭାନନଃ ।
ପ୍ରବେକ୍ଷ୍ୟତେ ତେ ହୃଦୟଂ ପଦ୍ମମଂଶୁରିବାର୍କଜଃ । ୭ ।
ଏବମୁକ୍ତୋ ମହାବୃକ୍ଷଂ ଲବଣଃ କ୍ରୋଧମୂର୍ଚ୍ଛିତଃ ।
ଶତ୍ରୁଘ୍ନୋରସି ଚିକ୍ଷେପ ସ ଚ ତଂ ଶତଧାଚ୍ଛିନତ୍ । ୮ ।
ତଦ୍ଦୃଷ୍ଟ୍ୱା ବିଫଳଂ କର୍ମ ରାକ୍ଷସଃ ପୁନରେବ ତୁ ।
ପାଦପାନ୍ ସୁବହୂନ୍ ଗୃହ୍ୟ ଶତ୍ରୁଘ୍ନାୟାସୃଜଦ୍ ବଲୀ । ୯ ।
ଶତ୍ରୁଘ୍ନଶ୍ଚାପି ତେଜସ୍ୱୀ ବୃକ୍ଷାନାପତତୋ ବହୂନ୍ ।
ତ୍ରିଭିଶ୍ଚତୁର୍ଭିରେକୈକଂ ଚିଚ୍ଛେଦ ନତପର୍ବଭିଃ । ୧୦ ।
ତତୋ ବାଣମୟଂ ବର୍ଷଂ ବ୍ୟସୃଜଦ୍ରାକ୍ଷସୋରସି ।
ଶତ୍ରୁଘ୍ନୋ ବୀର୍ଯ୍ୟସଂପନ୍ନୋ ବିବ୍ୟଥେ ନ ସ ରାକ୍ଷସଃ । ୧୧ ।
ତତଃ ପ୍ରହସ୍ୟ ଲବଣୋ ବୃକ୍ଷମୁଦ୍ୟମ୍ୟ ବୀର୍ଯ୍ୟବାନ୍ ।
ଶିରସ୍ୟଭ୍ୟହନଚ୍ଛୂରଂ ସ୍ରସ୍ତାଙ୍ଗଃ ସ ମୁମୋହ ବୈ । ୧୨ ।
ତସ୍ମିନ୍ନିପତିତେ ବୀରେ ହାହାକାରୋ ମହାନଭୂତ୍ ।
ଋଷୀଣାଂ ଦେବସଂଘାନାଂ ଗନ୍ଧର୍ବାପ୍ସରସାଂ ତଥା । ୧୩ ।

---

ସମଗ୍ର ଦେଶର ମଙ୍ଗଳ ସାଧିତ ହେବ । ୬ । ଆଜ ମୋ ହସ୍ତରୁ ନିକ୍ଷିପ୍ତ ବଜ୍ରସଦୃଶ ଶର ତୋ ହୃଦୟରେ, ସୂର୍ଯ୍ୟକିରଣ ପଦ୍ମପୁଷ୍ପ ଭିତରେ ପ୍ରବେଶ କଲାଭଳି ପ୍ରବେଶ କରିବ" । ୭ । ଏ କଥା ଶୁଣି ଲବଣ କ୍ରୋଧରେ ଜ୍ଞାନଶୂନ୍ୟ ହୋଇ ଏକ ମହାବୃକ୍ଷ ଉପାଡ଼ି ଶତ୍ରୁଘ୍ନଙ୍କ ବକ୍ଷସ୍ଥଳରେ ନିକ୍ଷେପ କଲା, ମାତ୍ର ଶତ୍ରୁଘ୍ନ ସେହି ବୃକ୍ଷକୁ ଶରଦ୍ୱାରା ଶତଖଣ୍ଡ କରି କାଟିପକାଇଲେ । ୮ । ବଳବାନ୍ ରାକ୍ଷସ ଲବଣ ନିଜଦ୍ୱାରା ନିକ୍ଷିପ୍ତ ବୃକ୍ଷକୁ ବିଫଳ ହେବାର ଦେଖି ଆହୁରି ବହୁ ସଂଖ୍ୟକ ବୃକ୍ଷ ଧରି ଶତ୍ରୁଘ୍ନଙ୍କ ଉପରକୁ ନିକ୍ଷେପ କଲା । ୯ । କିନ୍ତୁ ତେଜସ୍ୱୀ ଶତ୍ରୁଘ୍ନ ଅନେକ ବୃକ୍ଷ ନିଜ ଉପରକୁ ଆସୁଥିବାର ଦେଖି ବହୁ ମୁନିଆଁ ବାଣ ଚଳାଇ ସେଥିମଧ୍ୟରୁ କେତେକ ବୃକ୍ଷକୁ ତିନୋଟି ବାଣଦ୍ୱାରା ଓ କେତେକ ବୃକ୍ଷକୁ ଚାରୋଟି ବାଣଦ୍ୱାରା କାଟି ପକାଇଲେ ।୧୦। ଅନନ୍ତର ସେ ଲବଣାସୁର ଉପରେ ଶରବୃଷ୍ଟି କରିବାକୁ ଲାଗିଲେ, ମାତ୍ର ସେହି ବୀର୍ଯ୍ୟବାନ୍ ଲବଣାସୁର ଏହି ଶରବୃଷ୍ଟିଦ୍ୱାରା ଟିକିଏ ହେଲେ ବିଚଳିତ ହେଲା ନାହିଁ । ୧୧ । ତଦନନ୍ତର ବୀର୍ଯ୍ୟବାନ୍ ଲବଣ ହସିକରି ଗୋଟିଏ ବୃକ୍ଷ ଶତ୍ରୁଘ୍ନଙ୍କର ମୁଣ୍ଡକୁ ଲକ୍ଷ୍ୟକରି ଏପରି ଫୋପାଡ଼ିଲା ଯେ ସେଥିରେ ସେ ମୂର୍ଚ୍ଛିତ ହୋଇ ପଡ଼ିଗଲେ । ୧୨ । ବୀର ଶତ୍ରୁଘ୍ନ ଏପରି ପଡ଼ିଯିବାର ଦେଖି ଋଷି, ଦେବତା, ଗନ୍ଧର୍ବ

ତମବଜ୍ଞାୟ ତୁ ହତଂ ଶତ୍ରୁଘ୍ନଂ ଭୁବି ପାତିତମ୍ ।
ରକ୍ଷୋ ଲବ୍ଧାନ୍ତରମପି ନ ବିବେଶ ସ୍ୱମାଳୟମ୍ । ୧୪ ।
ନାପି ଶୂଳଂ ପ୍ରଜଗ୍ରାହ ତଂ ଦୃଷ୍ଟ୍ୱା ଭୁବି ପାତିତମ୍ ।
ତତୋ ହତ ଇତି ଜ୍ଞାତ୍ୱା ତାନ୍ ଭକ୍ଷାନ୍ ସମୁଦାବହତ୍ । ୧୫ ।
ମୁହୂର୍ତ୍ତାଲ୍ଲବ୍ଧସଂଜ୍ଞସ୍ତୁ ପୁନସ୍ତସ୍ଥୌ ଧୃତାୟୁଧଃ ।
ଶତ୍ରୁଘ୍ନୋ ବୈ ପୁରଦ୍ୱାରି ଋଷିଭିଃ ସଂପ୍ରପୂଜିତଃ । ୧୬ ।
ତତୋ ଦିବ୍ୟମମୋଘଂ ତଂ ଜଗ୍ରାହ ଶରମୁତ୍ତମମ୍ ।
ଜ୍ୱଲନ୍ତଂ ତେଜସା ଘୋରଂ ପୂରୟନ୍ତଂ ଦିଶୋ ଦଶ । ୧୭ ।
ବଜ୍ରାନନଂ ବଜ୍ରବେଗଂ ମେରୁମନ୍ଦରସଂନିଭମ୍ ।
ନତଂ ପର୍ବସୁ ସର୍ବେଷୁ ସଂଯୁଗେଷ୍ୱପରାଜିତମ୍ । ୧୮ ।
ଅସୃକ୍‌ଚନ୍ଦନଦିଗ୍ଧାଙ୍ଗଂ ଚାରୁପତ୍ରଂ ପତତ୍ରିଣମ୍ ।
ଦାନବେନ୍ଦ୍ରାଚଳେନ୍ଦ୍ରାଣାମସୁରାଣାଂ ଚ ଦାରୁଣମ୍ । ୧୯ ।
ତଂ ଦୀପ୍ତମିବ କାଳାଗ୍ନିଂ ଯୁଗାନ୍ତେ ସମୁପସ୍ଥିତେ ।
ଦୃଷ୍ଟ୍ୱା ସର୍ବାଣି ଭୂତାନି ପରିତ୍ରାସମୁପାଗମନ୍ । ୨୦ ।

---

ଏବଂ ଅପ୍‌ସରାମାନେ ଘୋର ହାହାକାର କଲେ । ୧୩ । ଶତ୍ରୁଘ୍ନ ଭୂମି ଉପରେ ମୂର୍ଚ୍ଛିତ ହୋଇ ପଡ଼ିଯିବାପରେ ଲବଣକୁ ସୁବିଧା ମିଳିଥିଲେ ମଧ୍ୟ ସେ ନିଜ ଘର ଭିତରକୁ ଗଲା ନାହିଁ କିମ୍ବା ନିଜ ଶୂଳ ଆଣିଲା ନାହିଁ ଏବଂ ଶତ୍ରୁଘ୍ନ ମୃତ ହୋଇ-ଥିବାର ଜାଣି ନିଜର ଭକ୍ଷ୍ୟ ସେହି ମୃତ ପ୍ରାଣୀମାନଙ୍କୁ ଗୋଟାଇବାକୁ ଲାଗିଲା । ୧୪-୧୫ । ମୁହୂର୍ତ୍ତକ ମଧ୍ୟରେ ଶତ୍ରୁଘ୍ନ ସଂଜ୍ଞା ଲଭିକରି ପୁନର୍ବାର ଅସ୍ତ୍ର ଧରି ନଗର ଦ୍ୱାରକୁ ରୋଧକରି ଠିଆ ହୋଇଗଲେ ଏବଂ ଋଷିମାନେ ତାଙ୍କୁ ପ୍ରଶଂସା କରିବାକୁ ଲାଗିଲେ । ୧୬ । ଅନନ୍ତର ଶତ୍ରୁଘ୍ନ ଅମୋଘ ଦିବ୍ୟଶର ଧାରଣ କଲେ । ଏହି ଶର ନିଜର ଦୀପ୍ତିରେ ଜଳୁଥିଲା ଏବଂ ସେହି ପ୍ରଦୀପ୍ତିଦ୍ୱାରା ଦଶ ଦିଗକୁ ପୂର୍ଣ୍ଣ କରି-ଦେଉଥିଲା । ୧୭ । ସେହି ବଜ୍ରମୁଖ ଓ ବଜ୍ରସଦୃଶ ବେଗବାନ୍ ଶର ମେରୁ ଓ ମନ୍ଦର ପର୍ବତସଦୃଶ ଶକ୍ତିଶାଳୀ ଥିଲା । ଏହାର ସମସ୍ତ ପୁଙ୍ଖ ତଳ ଆଡ଼କୁ ବଙ୍କା ହୋଇଥିଲା । ଏହି ଶର କେବେ କୌଣସିଠାରେ ଯୁଦ୍ଧରେ ପରାଜିତ ହୋଇ ନ ଥିଲା । ୧୮ । ଏହି ଶରରେ ରକ୍ତତୁଲ୍ୟ ରକ୍ତଚନ୍ଦନ ବୋଳା ହୋଇଥିଲା ଏବଂ ସୁନ୍ଦର ପୁଙ୍ଖମାନ ଲାଗିଥିଲା । ଏହା ଦାନବେନ୍ଦ୍ର, ପର୍ବତେନ୍ଦ୍ର ତଥା ଦୈତ୍ୟମାନଙ୍କ-ପ୍ରତି ମଧ୍ୟ ଅତିଶୟ ଦାରୁଣ ଥିଲା । ୧୯ । ଏହି କାଳାଗ୍ନିସଦୃଶ ଓ ପ୍ରଳୟକାରୀ ବାଣକୁ ଦେଖି ପ୍ରାଣୀମାନଙ୍କ ମନରେ ମହାଭୟ ଜାତ ହେଲା । ୨୦ ।

ସଦେବାସୁରଗନ୍ଧର୍ବଂ ମୁନିଭିଃ ସାପ୍ସରୋଗଣମ୍ ।
ଜଗଦ୍ଧି ସର୍ବମସ୍ୱସ୍ଥଂ ପିତାମହମୁପସ୍ଥିତମ୍ । ୨୧ ।
ଊଚୁଶ୍ଚ ଦେବା ଦେବେଶଂ ବରଦଂ ପ୍ରପିତାମହମ୍ ।
କଚ୍ଚିଲ୍ଲୋକକ୍ଷୟୋ ଦେବ ସଂପ୍ରାପ୍ତୋ ବା ଯୁଗକ୍ଷୟଃ । ୨୨ ।
ନେଦୃଶଂ ଦୃଷ୍ଟପୂର୍ବଂ ଚ ନ ଶ୍ରୁତଂ ପ୍ରପିତାମହ ।
ଦେବାନାଂ ଭୟସଂମୋହୋ ଲୋକାନାଂ ସଂକ୍ଷୟଂ ପ୍ରଭୋ । ୨୩ ।
ତେଷାଂ ତଦ୍‌ବଚନଂ ଶ୍ରୁତ୍ୱା ବ୍ରହ୍ମା ଲୋକପିତାମହଃ ।
ଭୟକାରଣମାଚଷ୍ଟ ଲୋକାନାମଭୟଙ୍କରଃ । ୨୪ ।
ଉବାଚ ମଧୁରାଂ ବାଣୀଂ ଶୃଣୁଧ୍ୱଂ ସର୍ବଦେବତାଃ ।
ବଧାୟ ଲବଣସ୍ୟାଜୌ ଶରଃ ଶତ୍ରୁଘ୍ନଧାରିତଃ । ୨୫ ।
ତେଜସା ତସ୍ୟ ସଂମୂଢ଼ା ସର୍ବେ ସ୍ମ ସୁରସତ୍ତମାଃ ।
ଏଷ ପୂର୍ବସ୍ୟ ଦେବସ୍ୟ ଲୋକକର୍ତ୍ତୁଃ ସନାତନଃ । ୨୬ ।
ଶରସ୍ତେଜୋମୟୋ ବତ୍ସା ଯେନ ବୋ ଭୟମାଗତମ୍ ।
ଏଷ ବୈ କୈଟଭସ୍ୟାର୍ଥେ ମଧୁନଶ୍ଚ ମହାଶରଃ । ୨୭ ।

---

ଦେବତା, ଗନ୍ଧର୍ବ, ମୁନି ଓ ଅପ୍ସରାଙ୍କ ସହିତ ସମଗ୍ର ଜଗତ ବ୍ୟାକୁଳ ହୋଇଉଠିଲା ଏବଂ ସମସ୍ତେ ବ୍ରହ୍ମାଙ୍କ ନିକଟକୁ ଗଲେ । ୨୧ । ଦେବତାମାନେ ଦେବଦେବ ବରଦାୟକ ପିତାମହଙ୍କୁ ସେମାନଙ୍କର ଭୟ ଏବଂ ସବୁ ଲୋକର କ୍ଷୟକଥା ଜଣାଇ କହିଲେ, "ହେ ପିତାମହ ! ଆମ୍ଭେମାନେ ଏପରି ଲୋକକ୍ଷୟ ଏବଂ ଦେବତାମାନଙ୍କର ଭୟ ପୂର୍ବେ କେବେ ଶୁଣି ନ ଥିଲୁ, କି ଦେଖି ନ ଥିଲୁ" ।୨୨-୨୩। ଲୋକପିତାମହ ବ୍ରହ୍ମା ଦେବତାମାନଙ୍କର ସେ କଥା ଶୁଣି ସେମାନଙ୍କର ଭୟ ଦୂର କରିବା ଉଦ୍ଦେଶ୍ୟରେ ସେହି ଭୟର କାରଣ ବିଷୟରେ କହିଲେ । ୨୪ । ସେ ମଧୁର ବଚନରେ କହିଲେ, "ହେ ସର୍ବଦେବତାଗଣ ! ତୁମ୍ଭେମାନେ ଶୁଣ, ଶତ୍ରୁଘ୍ନ ବର୍ତ୍ତମାନ ଯୁଦ୍ଧରେ ଲବଣକୁ ମାରିବା ପାଇଁ ଶର ଧାରଣ କରି ଅଛନ୍ତି । ୨୫ । ସେହି ଶରର ତେଜରେ ତୁମେ ଦେବତାମାନେ ସମସ୍ତେ ମୋହଗ୍ରସ୍ତ ହୋଇଯାଇଅଛ । ହେ ଦେବଗଣ ! ଏହି ଶର ଲୋକକର୍ତ୍ତା ଦେବଦେବ ଭଗବାନ୍ ବିଷ୍ଣୁଙ୍କର ଅଟେ ।୨୬। ହେ ବତ୍ସଗଣ ! ଏହି ଶର ଅତିଶୟ ତେଜୋମୟ ଅଟେ । ଏହାକୁ ଦେଖି ତୁମ୍ଭମାନଙ୍କ ମନରେ ଭୟ ଜାତ ହୋଇଅଛି । ମଧୁ ଓ କୈଟଭ ଅସୁର ଦୁହିଙ୍କୁ ମାରିବା ପାଇଁ ମହାତ୍ମା ଭଗବାନ୍ ବିଷ୍ଣୁ ଏହି ମହାଶର ନିର୍ମାଣ କରିଥିଲେ । ଏହି

ସୃଷ୍ଟୋ ମହାତ୍ମନା ଯେନ ବଧାର୍ଥେ ଦୈତ୍ୟୟୋସ୍ତୟୋଃ ।
ଏକ ଏବ ପ୍ରଜାନାତି ବିଷ୍ଣୁସ୍ତେଜୋମୟଂ ଶରମ୍ । ୨୮ ।
ଏଷା ଏବ ତନୁଃ ପୂର୍ବା ବିଷ୍ଣୋସ୍ତସ୍ୟ ମହାତ୍ମନଃ ।
ଇତୋ ଗଚ୍ଛତ ପଶ୍ୟଧ୍ୱଂ ବଧ୍ୟମାନଂ ମହାତ୍ମନା । ୨୯ ।
ରାମାନୁଜେନ ବୀରେଣ ଲବଣଂ ରାକ୍ଷସୋତ୍ତମମ୍ ।
ତସ୍ୟ ତେ ଦେବଦେବସ୍ୟ ନିଶମ୍ୟ ବଚନଂ ସୁରାଃ । ୩୦ ।
ଆଜଗ୍ମୁର୍ୟତ୍ର ଯୁଧ୍ୟେତେ ଶତ୍ରୁଘ୍ନଲବଣାବୁଭୌ ।
ତଂ ଶରଂ ଦିବ୍ୟସଂକାଶଂ ଶତ୍ରୁଘ୍ନକରଧାରିତମ୍ । ୩୧ ।
ଦଦୃଶୁଃ ସର୍ବଭୂତାନି ଯୁଗାନ୍ତାଗ୍ନିମିବୋତ୍ଥିତମ ।
ଆକାଶମାବୃତଂ ଦୃଷ୍ଟ୍ୱା ଦେବୈର୍ହି ରଘୁନନ୍ଦନଃ । ୩୨ ।
ସିଂହନାଦଂ ଭୃଶଂ କୃତ୍ୱା ଦଦର୍ଶ ଲବଣଂ ପୁନଃ ।
ଆହୂତଶ୍ଚ ପୁନସ୍ତେନ ଶତ୍ରୁଘ୍ନେନ ମହାତ୍ମନା । ୩୩ ।
ଲବଣଃ କ୍ରୋଧସଂଯୁକ୍ତୋ ଯୁଦ୍ଧାୟ ସମୁପସ୍ଥିତଃ ।
ଆକର୍ଣାତ୍ ସ ବିକୃଷ୍ୟାଥ ତଦ୍ଧନୁର୍ଧନ୍ୱିନାଂ ବରଃ । ୩୪ ।
ତଂ ମୁମୋଚ ମହାବାଣଂ ଲବଣସ୍ୟ ମହୋରସି ।
ଉରସ୍ତସ୍ୟ ବିଦାର୍ଯାଶୁ ପ୍ରବିବେଶ ରସାତଳମ୍ । ୩୫ ।

---

ମହାତେଜୋଯୁକ୍ତ ଶରର ନିର୍ମାଣବିଧି କେବଳ ସେହି ଭଗବାନ୍ ବିଷ୍ଣୁହିଁ ଜାଣନ୍ତି । ୨୭-୨୮ । ଏହି ବାଣ ମହାତ୍ମା ବିଷ୍ଣୁଙ୍କର ସାକ୍ଷାତ୍ ମୂର୍ତ୍ତି ଅଟେ । ତୁମ୍ଭେମାନେ ଜାଣିରଖ, ଏହି ବାଣଦ୍ୱାରା ରାମଙ୍କର କନିଷ୍ଠ ଭ୍ରାତା ବୀର ଶତ୍ରୁଘ୍ନଙ୍କଦ୍ୱାରା ଲବଣାସୁର ନିହତ ହେବ ।” ଦେବତାମାନେ ଦେବଦେବ ବ୍ରହ୍ମାଙ୍କର ଏ କଥା ଶୁଣି ଶତ୍ରୁଘ୍ନ ଓ ଲବଣ ଯେଉଁଠି ଯୁଦ୍ଧ କରୁଥିଲେ ସେଠାକୁ ଆସିଲେ । ଶତ୍ରୁଘ୍ନ ହାତରେ ଧରିଥିବା କାଳାଗ୍ନିସଦୃଶ ଦେଦୀପ୍ୟମାନ ଶର ଆକାଶକୁ ଆଚ୍ଛାଦନ କରିଥିବାର ଦେବତାମାନେ ଦେଖିଲେ । ୨୯-୩୨ । ମହାବଳୀ ଶତ୍ରୁଘ୍ନ ସିଂହନାଦ କରି ଏବଂ ଲବଣାସୁର ଆଡ଼କୁ ଚାହିଁ ତାକୁ ପୁଣି ଯୁଦ୍ଧ ପାଇଁ ଆହ୍ୱାନ କଲେ । ୩୩ । ଲବଣାସୁର ମଧ୍ୟ କ୍ରୋଧପୂର୍ଣ୍ଣ ହୋଇ ପୁନର୍ବାର ଯୁଦ୍ଧ ପାଇଁ ତିଆରି ହୋଇଗଲା । ଏହା ଦେଖି ଧନୁର୍ଦ୍ଧାରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ଶତ୍ରୁଘ୍ନ କାନ ପର୍ଯ୍ୟନ୍ତ ଧନୁର ଗୁଣକୁ ଆକର୍ଷଣ କରି ଓ ଲବଣର ଛାତିକୁ ଲକ୍ଷ୍ୟକରି ସେହି ମହାବାଣକୁ ନିକ୍ଷେପ କଲେ । ସେହି ଶର ତତ୍‌କ୍ଷଣାତ୍ ଲବଣର ହୃଦୟକୁ ବିଦୀର୍ଣ୍ଣ କରିଦେଇ ରସାତଳକୁ

ଗତ୍ୱା ରସାତଳଂ ଦିବ୍ୟଃ ଶରୋ ବିବୁଧପୂଜିତଃ ।
ପୁନରେବାଗମତ୍ତୂର୍ଣମିକ୍ଷ୍ୱାକୁକୁଳନନ୍ଦନମ୍ । ୩୬ ।
ଶତ୍ରୁଘ୍ନଶରନିର୍ଭିନ୍ନୋ ଲବଣଃ ସ ନିଶାଚରଃ ।
ପପାତ ସହସା ଭୂମୌ ବଜ୍ରାହତ ଇବାଚଲଃ । ୩୭ ।
ତଚ୍ଚ ଶୂଳଂ ମହଦ୍ଭେନ ହତେ ଲବଣରାକ୍ଷସେ ।
ପଶ୍ୟତାଂ ସର୍ବଦେବାନାଂ ରୁଦ୍ରସ୍ୟ ବଶମନ୍ୱଗାତ୍ । ୩୮ ।

ଏକେଷୁପାତେନ ଭୟଂ ନିପାତ୍ୟ
ଲୋକତ୍ରୟସ୍ୟାପି ରଘୁପ୍ରବୀରଃ ।
ବିନିର୍ବଭାବୁତ୍ତମଚାପବାଣ-
ସ୍ତମଃ ପ୍ରଣୁଦ୍ୟେବ ସହସ୍ରରଶ୍ମିଃ । ୩୯ ।
ତତୋ ହି ଦେବା ଋଷିପନ୍ନଗାଶ୍ଚ
ପ୍ରପୂଜିରେ ହ୍ୟପ୍ସରସଶ୍ଚ ସର୍ବାଃ ।
ଦିଷ୍ଟ୍ୟା ଜୟୋ ଦାଶରଥେରବାପ୍ତ-
ସ୍ତ୍ୟକ୍ତ୍ୱା ଭୟଂ ସର୍ପ ଇବ ପ୍ରଶାନ୍ତଃ । ୪୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ଲବଣବଧୋ ନାମ ଏକୋନସପ୍ତତିତମଃ ସର୍ଗଃ ।

---

ପ୍ରବେଶ କଲା । ୩୪-୩୫ । ସେହି ଦିବ୍ୟ ଦେବପୂଜିତ ଶର ରସାତଳରେ ପ୍ରବେଶ କରିବା ପରେ, ପୁଣି ତତ୍କ୍ଷଣାତ୍ ଇକ୍ଷ୍ୱାକୁକୁଳନନ୍ଦନ ଶତ୍ରୁଘ୍ନଙ୍କ ନିକଟକୁ ଫେରି ଆସିଲା । ୩୬ । ସେହି ଲବଣ ରାକ୍ଷସ ଶତ୍ରୁଘ୍ନଙ୍କ ଶରଦ୍ୱାରା ବିଦ୍ଧ ହୋଇ ବଜ୍ରାହତ ପର୍ବତ ପରି ସହସା ଭୂମିରେ ପଡ଼ିଗଲା । ୩୭ । ଲବଣାସୁର ମରିଯିବା ପରେ ସେହି ଦିବ୍ୟ ଶୂଳ ଦେବତାମାନେ ଦେଖୁଁ ଦେଖୁଁ ରୁଦ୍ରଙ୍କ ନିକଟକୁ ଫେରି ଚାଲିଗଲା । ୩୮ । ଶତ୍ରୁଘ୍ନ ସେହି ଗୋଟିଏ ବାଣ ଚଳାଇ ତିନିଲୋକର ଭୟ ଦୂର କରିଦେଲେ । ସେ ଶ୍ରେଷ୍ଠ ଧନୁ ଓ ବାଣ ଧାରଣ କରି, ସୂର୍ଯ୍ୟ ଅନ୍ଧକାର ଦୂରକରି ଯେପରି ଶୋଭା ପାଆନ୍ତି ସେହିପରି ଶୋଭା ପାଇଲେ । ୩୯ । ସେତେବେଳେ ଦେବତା, ଋଷି, ସର୍ପ ଓ ଅପ୍ସରାଦି ସମସ୍ତେ ଶତ୍ରୁଘ୍ନଙ୍କର ପ୍ରଶଂସା କରି କହିଲେ, "ହେ କାକୁତ୍ସ୍ଥ ! ଆପଣ ସୌଭାଗ୍ୟବଶତଃ ନିର୍ଭୟ ହୋଇ ଏହି ରାକ୍ଷସକୁ ବଧକରି ବିଜୟୀ ହୋଇଅଛନ୍ତି ଏବଂ ବିଷାକ୍ତ ସର୍ପସଦୃଶ ଏହି ଲବଣାସୁର ନିହତ ହୋଇଛି" । ୪୦ ।

---

# ସପ୍ତତିତମଃ ସର୍ଗଃ

## ମଧୁପୁରୀନିବେଶଃ

ହତେ ତୁ ଲବଣେ ଦେବାଃ ସେନ୍ଦ୍ରାଃ ସାଗ୍ନିପୁରୋଗମାଃ ।
ଊଚୁଃ ସୁମଧୁରାଂ ବାଣୀଂ ଶତ୍ରୁଘ୍ନଂ ଶତ୍ରୁତାପନମ୍ । ୧ ।
ଦିଷ୍ଟ୍ୟା ତେ ବିଜୟୋ ବତ୍ସ ଦିଷ୍ଟ୍ୟା ଲବଣରାକ୍ଷସଃ ।
ହତଃ ପୁରୁଷଶାର୍ଦ୍ଦୂଲ ବରଂ ବରୟ ସୁବ୍ରତ । ୨ ।
ବରଦାସ୍ତୁ ମହାବାହୋ ସର୍ବ ଏବ ସମାଗତାଃ ।
ବିଜୟାକାଙ୍କ୍ଷିଣସ୍ତୁଭ୍ୟମମୋଘଂ ଦର୍ଶନଂ ହି ନଃ । ୩ ।
ଦେବାନାଂ ଭାଷିତଂ ଶ୍ରୁତ୍ୱା ଶୂରୋ ମୂର୍ଦ୍ଧ୍ନି କୃତାଞ୍ଜଳିଃ ।
ପ୍ରତ୍ୟୁବାଚ ମହାବାହୁଃ ଶତ୍ରୁଘ୍ନଃ ପ୍ରୟତାତ୍ମବାନ୍ । ୪ ।
ଇୟଂ ମଧୁପୁରୀ ରମ୍ୟା ମଧୁରା ଦେବନିର୍ମିତା ।
ନିବେଶଂ ପ୍ରାପ୍ନୁୟାଚ୍ଛୀଘ୍ରମେଷ ମେଽସ୍ତୁ ବରଃ ପରଃ । ୫ ।
ତଂ ଦେବାଃ ପ୍ରୀତମନସୋ ବାଢ଼ମିତ୍ୟେବ ରାଘବମ୍ ।
ଭବିଷ୍ୟତି ପୁରୀ ରମ୍ୟା ଶୂରସେନା ନ ସଂଶୟଃ । ୬ ।

---

## ୭୦ତମ ସର୍ଗ

### ( ମଧୁପୁରୀନଗରସ୍ଥାପନ )

ଲବଣାସୁର ମରିଯିବା ପରେ ଅଗ୍ନି ପ୍ରମୁଖ ଇନ୍ଦ୍ରାଦି ଦେବତାମାନେ ଶତ୍ରୁସନ୍ତାପକାରୀ ଶତ୍ରୁଘ୍ନଙ୍କୁ ମଧୁର ବଚନରେ କହିଲେ । ୧ । "ହେ ବତ୍ସ ! ସୌଭାଗ୍ୟକ୍ରମେ ତୁମ୍ଭର ଏହି ବିଜୟ ହୋଇଅଛି ଏବଂ ଲବଣାସୁର ନିହତ ହୋଇଅଛି । ହେ ପୁରୁଷସିଂହ ! ତୁମେ ଏବେ ବର ମାଗ । ୨ । ହେ ମହାବାହୋ ! ଆମେ ବରଦାତାମାନେ ସମସ୍ତେ ତୁମ୍ଭର ବିଜୟ ଆକାଙ୍କ୍ଷା କରି ଏଠାକୁ ଆସିଛୁଁ । ଆମ୍ଭମାନଙ୍କର ଦର୍ଶନ ନିଷ୍ଫଳ ହୁଏ ନାହିଁ" । ୩ । ଜିତେନ୍ଦ୍ରିୟ ମହାବାହୁ ଶତ୍ରୁଘ୍ନ ଦେବତାମାନଙ୍କର ଏ କଥା ଶୁଣି ଓ କୃତାଞ୍ଜଳିପୂର୍ବକରେ ପ୍ରଣାମ କରି ସେମାନଙ୍କୁ କହିଲେ । ୪ । "ହେ ଦେବଗଣ ! ମୋତେ ଆପଣମାନେ ଏହି ବର ଦିଅନ୍ତୁ ଯେ ଦେବତାମାନଙ୍କ ଦ୍ୱାରା ନିର୍ମିତ ଏହି ମନୋହର ମଧୁପୁରୀ ଶୀଘ୍ର ଧନଜନପୂର୍ଣ୍ଣ ହୋଇ ପ୍ରତିଷ୍ଠିତ ହୋଇଯାଉ" ।୫। ଶତ୍ରୁଘ୍ନଙ୍କର ଏ କଥା ଶୁଣି ଦେବତାମାନେ ପ୍ରସନ୍ନ ହୋଇ ତାଙ୍କୁ କହିଲେ "ତାହାହିଁ ହେବ । ଏହି ପୁରୀ ଅତି ଉତ୍ତମଭାବରେ ଶୂରସେନାମାନଙ୍କ

ତେ ତଥୋକ୍ତ୍ୱା ମହାତ୍ମାନୋ ଦିବମାରୁରୁହୁସ୍ତଦା ।
ଶତ୍ରୁଘ୍ନୋଽପି ମହାତେଜାସ୍ତାଂ ସେନାଂ ସମୁପାନୟତ୍ । ୭ ।
ସା ସେନା ଶୀଘ୍ରମାଗଚ୍ଛଚ୍ଛ୍ରୁତ୍ୱା ଶତ୍ରୁଘ୍ନଶାସନମ୍ ।
ନିବେଶନଂ ଚ ଶତ୍ରୁଘ୍ନଃ ଶ୍ରାବଣେନ ସମାରଭତ୍ । ୮ ।
ସା ପୁରୀ ଦିବ୍ୟସଂକାଶା ବର୍ଷେ ଦ୍ୱାଦଶମେ ଶୁଭେ ।
ନିବିଷ୍ଟା ଶୂରସେନାନାଂ ବିଷୟଶ୍ଚାକୁତୋଭୟଃ । ୯ ।
କ୍ଷେତ୍ରାଣି ସସ୍ୟଯୁକ୍ତାନି କାଲେ ବର୍ଷତି ବାସବଃ ।
ଅରୋଗବୀରପୁରୁଷା ଶତ୍ରୁଘ୍ନଭୁଜପାଳିତା । ୧୦ ।
ଅର୍ଧଚନ୍ଦ୍ରପ୍ରତୀକାଶା ଯମୁନାତୀରଶୋଭିତା ।
ଶୋଭିତା ଗୃହମୁଖ୍ୟୈଶ୍ଚ ଚତ୍ୱରାପଣବୀଥିକୈଃ ।
ଚାତୁର୍ବର୍ଣ୍ୟସମାଯୁକ୍ତା ନାନାବାଣିଜ୍ୟଶୋଭିତା । ୧୧ ।
ଯଚ୍ଚ ତେନ ପୁରା ଶୁଭ୍ରଂ ଲବଣେନ କୃତଂ ମହତ୍ ।
ତଚ୍ଛୋଭୟତ ଶତ୍ରୁଘ୍ନୋ ନାନାବର୍ଣୋପଶୋଭିତମ୍ । ୧୨ ।

---

ସହ ପ୍ରତିଷ୍ଠିତ ହୋଇଯିବ" । ୬ । ଏହା କହି ମହାତ୍ମାମାନେ ସ୍ୱର୍ଗକୁ ଚାଲିଗଲେ ଏବଂ ମହାତେଜସ୍ୱୀ ଶତ୍ରୁଘ୍ନ ଗଙ୍ଗାତୀରରେ ରହିଥିବା ନିଜ ସେନାକୁ ନଗର ଭିତରକୁ ଅଣାଇଲେ । ୭ । ଶତ୍ରୁଘ୍ନଙ୍କ ଆଜ୍ଞା ପାଇ ସେହି ସେନା ଶୀଘ୍ର ଚାଲିଆସିଲେ ଏବଂ ଶତ୍ରୁଘ୍ନ ଶ୍ରାବଣମାସରେ ସେହି ପୁରୀ ବସାଇବାକୁ ଆରମ୍ଭ କଲେ । ୮ । ବାରବର୍ଷରେ ସେହି ପୁରୀ ସୁନ୍ଦରଭାବରେ ପ୍ରତିଷ୍ଠିତ ହୋଇଗଲା । ସେହି ପ୍ରଦେଶ ଶୂରସେନ ନାମରେ ପ୍ରସିଦ୍ଧ ହେଲା ଏବଂ ଲୋକେ ନିର୍ଭୀକଭାବରେ ସେଠାରେ ରହିବାକୁ ଲାଗିଲେ । ୯ । ସେହି ସମଗ୍ର ଦେଶ ଶସ୍ୟପୂର୍ଣ୍ଣ ହୋଇଗଲା । କାରଣ ଇନ୍ଦ୍ର ଯଥାସମୟରେ ସେଠାରେ ବର୍ଷା କରୁଥିଲେ । ଶତ୍ରୁଘ୍ନଙ୍କ ବାହୁବଳରେ ପାଳିତ ସେହି ପୁରବାସୀମାନେ ବୀର ଏବଂ ନିରୋଗୀ ହୋଇଥିଲେ ।୧୦। ସେହି ମଥୁରାପୁରୀ ଯମୁନା-ତୀରରେ ଅର୍ଦ୍ଧଚନ୍ଦ୍ରାକାରରେ ସ୍ଥାପିତ ହେଲା । ସୁନ୍ଦର ସୁନ୍ଦର ଘର ଏବଂ ଦୋକାନ ବଜାର ତଥା ଚାରିବର୍ଣ୍ଣର ଲୋକ ଓ ବିବିଧ ପ୍ରକାର ବାଣିଜ୍ୟଦ୍ରବ୍ୟ ଦ୍ୱାରା ତାହା ଶୋଭିତ ହୋଇଗଲା । ୧୧। ଲବଣ ପୂର୍ବକାଳରେ ଯେଉଁ ବିଶାଳ ଶ୍ୱେତବର୍ଣ୍ଣ ଭବନ ନିର୍ମାଣ କରିଥିଲା, ଶତ୍ରୁଘ୍ନ ତାହାକୁ ନାନାରଙ୍ଗର ଚିତ୍ରଦ୍ୱାରା ଶୋଭିତ କରି ଅତିସୁନ୍ଦର କରିଦେଲେ । ୧୨ । ସେହି ପୁରୀର ସ୍ଥାନେ ସ୍ଥାନେ

ଆରାମୈଶ୍ଚ ବିହାରୈଶ୍ଚ ଶୋଭମାନାଂ ସମନ୍ତତଃ ।
ଶୋଭିତାଂ ଶୋଭନୀୟୈଶ୍ଚ ତଥାନ୍ୟୈର୍ଦେବମାନୁଷୈଃ । ୧୩ ।
ତାଂ ପୁରୀଂ ଦିବ୍ୟସଂକାଶାଂ ନାନାପଣ୍ୟୋପଶୋଭିତାମ୍ ।
ନାନାଦେଶାଗତୈଶ୍ଚାପି ବଣିଗ୍‌ଭିରୁପଶୋଭିତାମ୍ । ୧୪ ।
ତାଂ ସମୃଦ୍ଧାଂ ସମୃଦ୍ଧାର୍ଥଃ ଶତ୍ରୁଘ୍ନୋ ଭରତାନୁଜଃ ।
ନିରୀକ୍ଷ୍ୟ ପରମପ୍ରୀତଃ ପରଂ ହର୍ଷମୁପାଗମତ୍ । ୧୫ ।
ତସ୍ୟ ବୁଦ୍ଧିଃ ସମୁତ୍ପନ୍ନା ନିବେଶ୍ୟ ମଧୁରାଂ ପୁରୀମ୍ ।
ରାମପାଦୌ ନିରୀକ୍ଷେଽହଂ ବର୍ଷେ ଦ୍ୱାଦଶ ଆଗତେ । ୧୬ ।

ତତଃ ସ ତାମମରପୁରୋପମାଂ ପୁରୀମ୍
ନିବେଶ୍ୟ ବୈ ବିବିଧଜନାଭିସଂବୃତାମ୍ ।
ନରାଧିପୋ ରଘୁପତିପାଦଦର୍ଶନେ
ଦଧେ ମତିଂ ରଘୁକୁଲବଂଶବର୍ଧନଃ । ୧୭ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ମଧୁପୁରୀନିବେଶୋ ନାମ ସପ୍ତତିତମଃ ସର୍ଗଃ ।

---

ବାଟିକା ଏବଂ ବିହାର ସ୍ଥାନମାନ ଚାରିଆଡ଼େ ଶୋଭାପାଉଥିଲା । ଶୋଭାଯୁକ୍ତ ଦେବତା ଓ ମନୁଷ୍ୟମାନଙ୍କ ଦ୍ୱାରା ମଧ୍ୟ ସେହି ପୁରୀ ଅତିଶୟ ସୁନ୍ଦର ଦେଖାଯାଉଥିଲା । ୧୩ । ସେହି ଦିବ୍ୟ ପୁରୀରେ ଅନେକ ପ୍ରକାର ବାଣିଜ୍ୟ ଦ୍ରବ୍ୟ ପୂର୍ଣ୍ଣ ହୋଇଥିବାରୁ ଦେଶ ଦେଶାନ୍ତରରୁ ଅନେକ ବେପାରୀ ବାଣିଜ୍ୟ କରିବାପାଇଁ ସେଠାକୁ ଆସିଲେ । ୧୪ । ଭରତଙ୍କ ସାନ ଭାଇ ସମୃଦ୍ଧିଶାଳୀ ଶତ୍ରୁଘ୍ନ ସେହି ପୁରୀକୁ ଦେଖି ଅତିଶୟ ଆନନ୍ଦ ଲାଭକଲେ । ୧୫ । ତଦନନ୍ତର ସେ ଚିନ୍ତାକଲେ, "ମୁଁ ବାର ବର୍ଷ ହେଲା ଅଯୋଧ୍ୟା ଛାଡ଼ି ଏଠାକୁ ଆସିଛି । ଅତଏବ ବର୍ତ୍ତମାନ ମୁଁ ସେଠାକୁ ଯାଇ ରାମଙ୍କ ଚରଣ ଦର୍ଶନ କରିବି" । ୧୬ । ତଦନନ୍ତର ରଘୁବଂଶବର୍ଦ୍ଧନକାରୀ ନରରାଜ ଶତ୍ରୁଘ୍ନ ଦେବପୁରୀ ସଦୃଶ ନିଜର ପୁରୀକୁ ବହୁବିଧ ଜନପୂର୍ଣ୍ଣ କରି ବସାଇ ରାମଙ୍କ ଚରଣ ଦର୍ଶନ କରିବା ପାଇଁ ଇଚ୍ଛାକଲେ । ୧୭ ।

---

# ଏକସପ୍ତତିତମଃ ସର୍ଗଃ

## ଶତ୍ରୁଘ୍ନପ୍ରଶଂସା

ତତୋ ଦ୍ୱାଦଶମେ ବର୍ଷେ ଶତ୍ରୁଘ୍ନୋ ରାମପାଳିତାମ୍ ।
ଅଯୋଧ୍ୟାଂ ଚକ୍ରମେ ଗନ୍ତୁମଳ୍ପଭୃତ୍ୟବଳାନୁଗଃ । ୧ ।
ତତୋ ମନ୍ତ୍ରିପୁରୋଗାଂଶ୍ଚ ବଳମୁଖ୍ୟାନ୍ନିବର୍ତ୍ତ୍ୟ ଚ ।
ଜଗାମ ହୟମୁଖ୍ୟୈଶ୍ଚ ରଥାନାଂ ଚ ଶତେନ ସଃ । ୨ ।
ସ ଗତ୍ୱା ଗଣିତାନ୍ ବାସାନ୍ ସପ୍ତାଷ୍ଟୌ ରଘୁନନ୍ଦନଃ ।
ବାଲ୍ମୀକ୍ୟାଶ୍ରମମାଗତ୍ୟ ବାସଂ ଚକ୍ରେ ମହାଯଶାଃ । ୩ ।
ସୋଽଭିବାଦ୍ୟ ତତଃ ପାଦୌ ବାଲ୍ମୀକେଃ ପୁରୁଷର୍ଷଭଃ ।
ପାଦ୍ୟମର୍ଘ୍ୟଂ ତଥାତିଥ୍ୟଂ ଜଗ୍ରାହ ମୁନିହସ୍ତତଃ ।୪।
ବହ୍ୱୃରୂପାଃ ସୁମଧୁରାଃ କଥାସ୍ତତ୍ର ସହସ୍ରଶଃ ।
କଥୟାମାସ ସ ମୁନିଃ ଶତ୍ରୁଘ୍ନାୟ ମହାତ୍ମନେ । ୫ ।

---

## ୭୧ତମ ସର୍ଗ

( ବାଲ୍ମୀକିଙ୍କ କର୍ତ୍ତୃକ ଶତ୍ରୁଘ୍ନପ୍ରଶଂସା )

ଦ୍ୱାଦଶ ବର୍ଷରେ ଶତ୍ରୁଘ୍ନ ସାମାନ୍ୟ କେତେଜଣ ଭୃତ୍ୟ, ସୈନ୍ୟ ଏବଂ ଅନୁଚର ସଙ୍ଗରେ ନେଇ ରାମଙ୍କ ଦ୍ୱାରା ପାଳିତ ଅଯୋଧ୍ୟା ଯିବାପାଇଁ ଇଚ୍ଛାକରି ପ୍ରସ୍ଥାନ କଲେ । ୧ । ତାଙ୍କ ସଙ୍ଗରେ ମନ୍ତ୍ରୀ ଓ ସେନାପତିଆଦି ବହୁ ଲୋକ ଯିବାକୁ ଇଚ୍ଛା କରୁଥିଲେ, ମାତ୍ର ସମସ୍ତଙ୍କୁ ସେ ଫେରାଇଦେଲେ । ସେ ସାମାନ୍ୟ କେତେକ ଉତ୍କୃଷ୍ଟ ଘୋଡ଼ା ଏବଂ ଏକ ଶତ ରଥ ସଙ୍ଗରେ ଘେନି ଗଲେ । ୨ । ମହାଯଶସ୍ୱୀ ରଘୁନନ୍ଦନ ଶତ୍ରୁଘ୍ନ ବାଟରେ ସାତ ଆଠ ସ୍ଥାନରେ ରହି ରହି ବାଲ୍ମୀକି ମୁନିଙ୍କ ଆଶ୍ରମରେ ଯାଇ ପହଞ୍ଚିଲେ ଏବଂ ସେଠାରେ ରହିଲେ । ୩ । ପୁରୁଷଶ୍ରେଷ୍ଠ ଶତ୍ରୁଘ୍ନ ବାଲ୍ମୀକି ମୁନିଙ୍କୁ ଅଭିବାଦନ କରି ତାଙ୍କ ହସ୍ତରୁ ଅର୍ଘ୍ୟ, ପାଦ୍ୟ ଆଦି ଆତିଥ୍ୟ ଗ୍ରହଣ କଲେ । ୪ । ମହର୍ଷି ବାଲ୍ମୀକି ଶତ୍ରୁଘ୍ନଙ୍କୁ ବିବିଧପ୍ରକାର ଅନେକ ମଧୁର କଥା ସେଠାରେ ଶୁଣାଇଲେ । ୫ । ସେ ଲବଣବଧ ସମ୍ବନ୍ଧରେ ତାଙ୍କୁ

ଉବାଚ ଚ ମୁନିର୍ବାକ୍ୟଂ ଲବଣସ୍ୟ ବଧାଶ୍ରିତମ୍ ।
ସୁଦୁଷ୍କରଂ କୃତଂ କର୍ମ ଲବଣଂ ନିଘ୍ନତା ତ୍ୱୟା । ୬ ।
ବହବଃ ପାର୍ଥିବାଃ ସୌମ୍ୟ ହତାଃ ସବଲବାହନାଃ ।
ଲବଣେନ ମହାବାହୋ ଯୁଧ୍ୟମାନା ମହାବଲାଃ । ୭ ।
ସ ତ୍ୱୟା ନିହତଃ ପାପୋ ଲୀଲୟା ପୁରୁଷର୍ଷଭ ।
ଜଗତଶ୍ଚ ଭୟଂ ତତ୍ର ପ୍ରଶାନ୍ତଂ ତବ ତେଜସା । ୮ ।
ରାବଣସ୍ୟ ବଧୋ ଘୋରୋ ଯତ୍ନେନ ମହତା କୃତଃ ।
ଇଦଂ ତୁ ସୁମହତ୍କର୍ମ ତ୍ୱୟା କୃତମଯତ୍ନତଃ । ୯ ।
ପ୍ରୀତିଶ୍ଚାସ୍ମିନ୍ ପରା ଜାତା ଦେବାନାଂ ଲବଣେ ହତେ ।
ଭୂତାନାଂ ଚୈବ ସର୍ବେଷାଂ ଜଗତଶ୍ଚ ପ୍ରିୟଂ କୃତମ୍ । ୧୦ ।
ତବ ଯୁଦ୍ଧଂ ମୟା ଦୃଷ୍ଟଂ ଯଥାବତ୍ ପୁରୁଷର୍ଷଭ ।
ସଭାୟାଂ ବାସବସ୍ୟାଥ ଉପବିଷ୍ଟେନ ରାଘବ । ୧୧ ।
ମମାପି ପରମା ପ୍ରୀତିର୍ହୃଦି ଶତ୍ରୁଘ୍ନ ବର୍ତ୍ତତେ ।
ଉପାଘ୍ରାସ୍ୟାମି ତେ ମୂର୍ଦ୍ଧ୍ନି ସ୍ନେହସ୍ୟୈଷା ପରା ଗତିଃ । ୧୨ ।
ଇତ୍ୟୁକ୍ତ୍ୱା ମୂର୍ଦ୍ଧ୍ନି ଶତ୍ରୁଘ୍ନମୁପାଘ୍ରାୟ ମହାମୁନିଃ ।
ଆତିଥ୍ୟମକରୋତ୍ତସ୍ୟ ଯେ ଚ ତସ୍ୟ ପଦାନୁଗାଃ । ୧୩ ।

---

କହିଲେ, "ତୁମେ ଲବଣକୁ ବଧକରି ଏକ ବଡ଼ ଦୁଃସାଧ କାର୍ଯ୍ୟ କରିଅଛ । ୬। ହେ ମହାବାହୋ ! ଅନେକ ମହାବଳୀ ରାଜା ଲବଣ ସଙ୍ଗେ ଯୁଦ୍ଧ କରି ସୈନ୍ୟ ଓ ବାହନ ସହିତ ନିହତ ହୋଇଥିଲେ ।୭। କିନ୍ତୁ ହେ ପୁରୁଷଶ୍ରେଷ୍ଠ ! ତୁମେ ଅନାୟାସରେ ସେହି ପାପୀକୁ ମାରିଦେଇଅଛ । ତୁମ୍ଭର ପ୍ରତାପରୁ ଜଗତର ଏକ ବଡ଼ ଭୟ ଦୂର ହୋଇ ଯାଇଅଛି ।୮। ରାବଣକୁ ବଧ କରିବା ପାଇଁ ମହାପ୍ରଯତ୍ନ କରିବାକୁ ପଡ଼ିଥିଲା । ମାତ୍ର ଏ ମହତ୍ତ୍ୱ କାର୍ଯ୍ୟକୁ ତୁମେ ବିନା ଯତ୍ନରେ ସାଧନ କରିଅଛ ।୯। ଲବଣକୁ ବଧ କରିବା ଦ୍ୱାରା ତୁମ ପ୍ରତି ଦେବତାମାନେ ପ୍ରସନ୍ନ ହୋଇଅଛନ୍ତି ଏବଂ ତୁମେ ଏହାଦ୍ୱାରା ଜଗତର ଏବଂ ସମସ୍ତ ପ୍ରାଣୀଙ୍କର ଏକ ବଡ଼ ପ୍ରୀତିକର କାର୍ଯ୍ୟ କରିଅଛ ।୧୦। ହେ ପୁରୁଷଶ୍ରେଷ୍ଠ ରାଘବ ! ମୁଁ ଇନ୍ଦ୍ରଙ୍କ ସଭାରେ ବସି ତୁମ୍ଭର ଏହି ଯୁଦ୍ଧକୁ ଯଥାଯଥଭାବରେ ଦେଖିଅଛି । ୧୧ । ହେ ଶତ୍ରୁଘ୍ନ ! ମୋ ହୃଦୟରେ ମଧ୍ୟ ତୁମ ପ୍ରତି ଅତିଶୟ ପ୍ରୀତି ଜାତ ହୋଇଅଛି । ମୁଁ ତୁମ୍ଭର ଶିର ଆଘ୍ରାଣ କରିବି, କାରଣ ସ୍ନେହର ଏହାହିଁ ପରକାଷ୍ଠା ଅଟେ" । ୧୨ । ଏହା କହି ମହାମୁନି ବାଲ୍ମୀକି ଶତ୍ରୁଘ୍ନଙ୍କର ଶିର ଆଘ୍ରାଣ କଲେ ଏବଂ ତାଙ୍କର ତଥା ତାଙ୍କର ସମସ୍ତ ଅନୁଚରମାନଙ୍କର ଅତିଥି-

ସ ଭୁକ୍ତବାନ୍ନରଶ୍ରେଷ୍ଠୋ ଗୀତମାଧୁର୍ଯ୍ୟମୁତ୍ତମମ୍ ।
ଶୁଶ୍ରାବ ରାମଚରିତଂ ତସ୍ମିନ୍ କାଲେ ଯଥାକ୍ରମମ୍ । ୧୪ ।
ତନ୍ତ୍ରୀଲୟସମାଯୁକ୍ତଂ ତ୍ରିସ୍ଥାନକରଣାନ୍ୱିତମ୍ ।
ସଂସ୍କୃତଂ ଲକ୍ଷଣୋପେତଂ ସମତାଲସମନ୍ୱିତମ୍ । ୧୫ ।
ଶୁଶ୍ରାବ ରାମଚରିତଂ ତସ୍ମିନ୍ କାଲେ ପୁରା କୃତମ୍ ।
ତାନ୍ୟକ୍ଷରାଣି ସତ୍ୟାନି ଯଥାବୃତ୍ତାନି ପୂର୍ବଶଃ । ୧୬ ।
ଶ୍ରୁତ୍ୱା ପୁରୁଷଶାର୍ଦ୍ଦୂଲୋ ବିସଂଜ୍ଞୋ ବାଷ୍ପଲୋଚନଃ ।
ସ ମୁହୂର୍ତ୍ତମିବାସଂଜ୍ଞୋ ବିନଶ୍ୱସ୍ୟ ମୁହୁର୍ମୁହୁଃ । ୧୭ ।
ତସ୍ମିନ୍ ଗୀତେ ଯଥାବୃତ୍ତଂ ବର୍ତ୍ତମାନମିବାଶୃଣୋତ୍ ।
ପଦାନୁଗାଶ୍ଚ ଯେ ରାଜ୍ଞସ୍ତାଂ ଶ୍ରୁତ୍ୱା ଗୀତସଂପଦମ୍ । ୧୮ ।
ଅବାଙ୍ମୁଖାଶ୍ଚ ଦୀନାଶ୍ଚ ଆଶ୍ଚର୍ଯ୍ୟମିତି ଚାବ୍ରୁବନ୍ ।
ପରସ୍ପରଂ ଚ ଯେ ତତ୍ର ସୈନିକାଃ ସଂବଭାଷିରେ । ୧୯ ।
କିମିଦଂ କ୍ୱ ଚ ବର୍ତ୍ତାମଃ କିମେତତ୍ ସ୍ୱପ୍ନଦର୍ଶନମ୍ ।
ଅର୍ଥୋ ଯୋ ନଃ ପୁରା ଦୃଷ୍ଟସ୍ତମାଶ୍ରମପଦେ ପୁନଃ । ୨୦ ।

---

ସତ୍କାର କଲେ ।୧୩। ଶତ୍ରୁଘ୍ନ ଭୋଜନ ସାରିବାପରେ ରାମଙ୍କ ଚରିତସମ୍ବନ୍ଧୀୟ ଉତ୍କୃଷ୍ଟ ମଧୁର ସଙ୍ଗୀତ ଯଥାକ୍ରମରେ ଶ୍ରବଣ କଲେ । ୧୪ । ବୀଣାର ସ୍ୱର ସହିତ କଣ୍ଠସ୍ୱର ମିଳାଇ ସେହି ରାମଚରିତ ବୋଲା ହେଉଥିଲା । ହୃଦୟ, କଣ୍ଠ ଏବଂ ଶିରରୁ ନିର୍ଗତ ହେଉଥିବା ମନ୍ଦ, ମଧ୍ୟମ ଏବଂ ଉଚ୍ଚ ତାନରେ ତାହା ଗାନ କରାହେଉଥିଲା । ସେହି ଗାନ ସଂସ୍କୃତ ଶ୍ଳୋକରେ ରଚନା କରାଯାଇଥିଲା ଏବଂ ସେଥିରେ କାବ୍ୟର ସମସ୍ତ ଲକ୍ଷଣ ବିଦ୍ୟମାନ ରହିଥିଲା । ୧୫ । ଶ୍ରୀରାମଙ୍କ ସମ୍ବନ୍ଧରେ ଯେଉଁ ଯେଉଁ ଘଟଣା ହୋଇଥିଲା ଠିକ ସେହି ସବୁ ସେହି ଗାନରେ ଶୁଣିକରି ଶତ୍ରୁଘ୍ନ ଆଶ୍ଚର୍ଯ୍ୟ ହୋଇଗଲେ, ତାଙ୍କର ଚକ୍ଷୁ ଲୋତକରେ ପୂର୍ଣ୍ଣ ହୋଇଗଲା ଏବଂ ବାରମ୍ବାର ଦୀର୍ଘନିଶ୍ୱାସ ପକାଇ ସେ କିଛି ସମୟ ପାଇଁ ଅଚେତ ହୋଇପଡ଼ିଲେ । ୧୬-୧୭ । ଯେଉଁ ଘଟଣାମାନ ବହୁଦିନ ଆଗରୁ ହୋଇଯାଇଥିଲା, ସେସବୁ ଶୁଣିବାରୁ ତାହା ଅତି ତଟକା ପରି ଜଣାଯାଉଥିଲା । ସେହି ସଙ୍ଗୀତ ଶୁଣି ଶତ୍ରୁଘ୍ନଙ୍କର ସାଥୀ ଲୋକେ ତଳକୁ ମୁହଁ ପୋତିଦେଲେ ଏବଂ 'ଆଶ୍ଚର୍ଯ୍ୟ ଆଶ୍ଚର୍ଯ୍ୟ' ବୋଲି କହିବାକୁ ଲାଗିଲେ । ସୈନିକମାନେ ପରସ୍ପର କହିବାକୁ ଲାଗିଲେ ।୧୮-୧୯। "ଏ କଅଣ ! ଆମ୍ଭେମାନେ ସବୁ ବର୍ତ୍ତମାନ କେଉଁଠାରେ ଥାଇଁ ! ଆମେ ତ ଏ ସ୍ୱପ୍ନ ଦେଖୁ ନାହାଁନ୍ତି ? ଆମେ ପୂର୍ବକାଳରେ ଯେଉଁସବୁ କଥା ନିଜେ

ଶୃଣୁମଃ କିମିଦଂ ସ୍ୱପ୍ନୋ ଗୀତବନ୍ଧଂ ଶ୍ରିତୋ ଭବେତ୍ ।
ବିସ୍ମୟଂ ତେ ପରଂ ଗତ୍ୱା ଶତ୍ରୁଘ୍ନମିଦମବ୍ରୁବନ୍ । ୨୧ ।
ସାଧୁ ପୃଚ୍ଛ ନରଶ୍ରେଷ୍ଠ ବାଲ୍ମୀକିଂ ମୁନିପୁଙ୍ଗବମ୍ ।
ଶତ୍ରୁଘ୍ନସ୍ତ୍ୱବ୍ରବୀତ୍ ସର୍ବାନ୍ କୌତୂହଳସମନ୍ୱିତାନ୍ । ୨୨ ।
ସୈନିକାନକ୍ଷମୋଽସ୍ମାକଂ ପରିପ୍ରଷ୍ଟୁମିହେଦୃଶଃ ।
ଆଶ୍ଚର୍ଯାଣି ବହୂନୀହ ଭବନ୍ତ୍ୟସ୍ୟାଶ୍ରମେ ମୁନେଃ । ୨୩ ।
ନ ତୁ କୌତୂହଲାଦ୍ୟୁକ୍ତମନ୍ୱେଷ୍ଟୁଂ ତଂ ମହାମୁନିମ୍ ।
ଏବଂ ତଦ୍‌ବାକ୍ୟମୁକ୍ତ୍ୱା ଚ ସୈନିକାନ୍ ରଘୁନନ୍ଦନଃ ।
ଅଭିବାଦ୍ୟ ମହର୍ଷିଂ ତଂ ସ୍ୱଂ ନିବେଶଂ ଯଯୌ ତଦା । ୨୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ଶତ୍ରୁଘ୍ନପ୍ରଶଂସା ନାମ ଏକସପ୍ତତିତମଃ ସର୍ଗଃ ।

---

ଦେଖିଥିଲୁଁ ସେ ସବୁ କଥା ଏବେ ଏହି ଆଶ୍ରମରେ ଗୀତରେ ବନ୍ଧା ହୋଇ ଶୁଣାଯାଉଛି ଏହା କଅଣ ଆମେ ସ୍ୱପ୍ନ ଦେଖୁଥାଉଁ ?" ଏହି ପ୍ରକାରେ ସେମାନେ ଅତିଶୟ ଆଶ୍ଚର୍ଯ୍ୟ ହୋଇ ଶତ୍ରୁଘ୍ନଙ୍କୁ କହିଲେ । ୨୦-୨୧ । "ହେ ନରଶ୍ରେଷ୍ଠ ! ଆପଣ ମୁନିଶ୍ରେଷ୍ଠ ବାଲ୍ମୀକିଙ୍କୁ ପଚାରନ୍ତୁ, ଏ ଗୀତ କିଏ ରଚନା କରିଅଛି ।" ତାପରେ ଶତ୍ରୁଘ୍ନ ସେହି କୌତୂହଳାନ୍ୱିତ ଲୋକମାନଙ୍କୁ କହିଲେ । ୨୨ । "ସୈନିକଗଣ ! ମୁନିଙ୍କୁ ଏପରି ପ୍ରଶ୍ନ ପଚାରିବା ମୋ ପକ୍ଷରେ ଉଚିତ ହେବ ନାହିଁ । କାରଣ ଏହି ମୁନିଙ୍କ ଆଶ୍ରମରେ ବହୁ ଆଶ୍ଚର୍ଯ୍ୟ କଥା ହୋଇଥାଏ । ୨୩ । କୌତୂହଳବଶରେ ଆମ୍ଭେମାନେ ଏପରି କଥା ପଚାରି ମୁନିଙ୍କୁ କାହିଁକି କଷ୍ଟ ଦେବା ?" ଏହି ପ୍ରକାରେ ସେସମସ୍ତଙ୍କୁ ବୁଝାଇ-କରି ଶତ୍ରୁଘ୍ନ ବାଲ୍ମୀକିଙ୍କୁ ପ୍ରଣାମ କରି ନିଜର ରହିବା ସ୍ଥାନକୁ ଗଲେ । ୨୪ ।

# ଦ୍ୱିସପ୍ତତିତମଃ ସର୍ଗଃ

## ଶତ୍ରୁଘ୍ନରାମସମାଗମଃ

ତଂ ଶୟାନଂ ନରବ୍ୟାଘ୍ରଂ ନିଦ୍ରା ନାଭ୍ୟାଗମତ୍ତଦା ।
ଚିନ୍ତୟନ୍ତମନେକାର୍ଥଂ ରାମଗୀତମନୁତ୍ତମମ୍ ।
ତସ୍ୟ ଶବ୍ଦଂ ସୁମଧୁରଂ ତନ୍ତ୍ରୀଲୟସମନ୍ୱିତମ୍ ।
ଶ୍ରୁତ୍ୱା ରାତ୍ରିର୍ଜଗାମାଶୁ ଶତ୍ରୁଘ୍ନସ୍ୟ ମହାତ୍ମନଃ । ୨ ।
ତସ୍ୟାଂ ନିଶାୟାଂ ବ୍ୟୁଷ୍ଟାୟାଂ କୃତ୍ୱା ପୌର୍ବାହ୍ଣିକଂ କ୍ରମମ୍ ।
ଉବାଚ ପ୍ରାଞ୍ଜଳିର୍ବାକ୍ୟଂ ଶତ୍ରୁଘ୍ନୋ ମୁନିପୁଙ୍ଗବମ୍ । ୩ ।
ଭଗବନ୍ ଦ୍ରଷ୍ଟୁମିଚ୍ଛାମି ରାଘବଂ ରଘୁନନ୍ଦନମ୍ ।
ତ୍ୱୟ୍ୟାନୁଜ୍ଞାତୁମିଚ୍ଛାମି ସହୈଭିଃ ସଂଶିତବ୍ରତୈଃ । ୪ ।
ଇତ୍ୟେବଂବାଦିନଂ ତଂ ତୁ ଶତ୍ରୁଘ୍ନଂ ଶତ୍ରୁତାପନମ୍ ।
ବାଲ୍ମୀକିଃ ସଂପରିଷ୍ୱଜ୍ୟ ବିସସର୍ଜ ଚ ରାଘବମ୍ । ୫ ।
ସୋଽଭିବାଦ୍ୟ ମୁନିଶ୍ରେଷ୍ଠଂ ରଥମାରୁହ୍ୟ ସୁପ୍ରଭମ୍ ।
ଅଯୋଧ୍ୟାମଗମତ୍ତୂର୍ଣଂ ରାଘବୋତ୍ସୁକଦର୍ଶନମ୍ । ୬ ।

---

# ୭୨ତମ ସର୍ଗ

## ( ଶତ୍ରୁଘ୍ନ ଓ ରାମଙ୍କର ମିଳନ )

ଶତ୍ରୁଘ୍ନ ଯାଇ ଶୋଇଲେ, କିନ୍ତୁ ରାମଙ୍କ ସମ୍ବନ୍ଧୀୟ ଓ ଅନେକ ଅର୍ଥଯୁକ୍ତ ସେହି ଉତ୍ତମ ସଙ୍ଗୀତ କଥା ଚିନ୍ତା କରି କରି ତାଙ୍କୁ ନିଦ ଆସିଲା ନାହିଁ । ୧ । ସେହି ମଧୁର ଗାନ ବୀଣା ସହିତ ଗାନ କରାହେଉଥିଲା । ଶୋଇରହି ତାହା ଶୁଣି ଶୁଣି ମହାତ୍ମା ଶତ୍ରୁଘ୍ନଙ୍କର ରାତି ବିତିଗଲା । ୨ । ସେହି ରାତି ବିତିଯିବା ପରେ ଶତ୍ରୁଘ୍ନ ପ୍ରାତଃକୃତ୍ୟ ସମାପନ କରି ମୁନିଶ୍ରେଷ୍ଠ ବାଲ୍ମୀକଙ୍କୁ କର ଯୋଡ଼ି କହିଲେ । ୩ । "ହେ ଭଗବନ୍! ମୁଁ ରଘୁନନ୍ଦନ ରାମଙ୍କୁ ଦର୍ଶନ କରିବାକୁ ଇଚ୍ଛା କରୁଅଛି । ଅତଏବ ଆପଣ ଓ ଏହି ମହାବ୍ରତଧାରୀ ମୁନିମାନେ ମୋତେ ଯିବାପାଇଁ ଅନୁମତି ଦିଅନ୍ତୁ" ।୪। ଶତ୍ରୁତାପନ ଶତ୍ରୁଘ୍ନ ଏପରି କହିବା ପରେ ମହର୍ଷି ବାଲ୍ମୀକି ତାଙ୍କୁ ଆଲିଙ୍ଗନ କରି ବିଦାୟ ଦେଲେ । ୫ । ଶତ୍ରୁଘ୍ନ ମୁନିଶ୍ରେଷ୍ଠ ବାଲ୍ମୀକିଙ୍କୁ ପ୍ରଣାମ କରି ଏବଂ ନିଜର ଦୀପ୍ତିମାନ୍ ରଥ ଉପରେ ବସି ରାମଙ୍କୁ ଦର୍ଶନ କରିବା ଉତ୍କଣ୍ଠାରେ ଅତିଶୀଘ୍ର

**ସ ପ୍ରବିଷ୍ଟଃ ପୁରୀଂ ରମ୍ୟାଂ ଶ୍ରୀମାନିକ୍ଷ୍ୱାକୁନନ୍ଦନଃ ।**
**ପ୍ରବିବେଶ ମହାବାହୁର୍ଯତ୍ର ରାମୋ ମହାଦ୍ୟୁତିଃ । ୭ ।**
**ସ ରାମଂ ମନ୍ତ୍ରିମଧ୍ୟସ୍ଥଂ ପୂର୍ଣଚନ୍ଦ୍ରନିଭାନନମ୍ ।**
**ପଶ୍ୟନ୍ନମରମଧ୍ୟସ୍ଥଂ ସହସ୍ରନୟନଂ ଯଥା । ୮ ।**
**ଅଭିବାଦ୍ୟ ମହାତ୍ମାନଂ ଜ୍ୱଲନ୍ତମିବ ତେଜସା ।**
**ଉବାଚ ପ୍ରାଞ୍ଜଳିର୍ବାକ୍ୟଂ ରାମଂ ସତ୍ୟପରାକ୍ରମମ୍ । ୯ ।**
**ଯଥାଜ୍ଞପ୍ତଂ ମହାରାଜ ସର୍ବଂ ତତ୍ କୃତବାନହମ୍ ।**
**ହତଃ ସ ଲବଣଃ ପାପଃ ପୁରୀ ଚାସ୍ୟ ନିବେଶିତା । ୧୦ ।**
**ଦ୍ୱାଦଶୈତାନି ବର୍ଷାଣି ତ୍ୱାଂ ବିନା ରଘୁନନ୍ଦନ ।**
**ନୋତ୍ସହେୟମହଂ ବସ୍ତୁଂ ତ୍ୱୟା ବିରହିତୋ ନୃପ । ୧୧ ।**
**ସ ମେ ପ୍ରସାଦଂ କାକୁତ୍ସ୍ଥ କୁରୁଷ୍ୱାମିତବିକ୍ରମ ।**
**ମାତୃହୀନୋ ଯଥା ବତ୍ସୋ ନ ଚିରଂ ପ୍ରବସାମ୍ୟହମ୍ । ୧୨ ।**
**ଏବଂ ବ୍ରୁବାଣଂ ଶତ୍ରୁଘ୍ନଂ ପରିଷ୍ୱଜ୍ୟେଦମବ୍ରବୀତ୍ ।**
**ମା ବିଷାଦଂ କୃଥାଃ ଶୂର ନୈତତ୍ କ୍ଷତ୍ରିୟଚେଷ୍ଟିତମ୍ । ୧୩ ।**

---

ଅଯୋଧ୍ୟା ଯାତ୍ରା କଲେ । ୬ । ଇକ୍ଷ୍ୱାକୁନନ୍ଦନ ମହାବାହୁ ଶତ୍ରୁଘ୍ନ ରମଣୀୟ ଅଯୋଧ୍ୟାପୁରୀରେ ପ୍ରବେଶ କରି ମହାଦୀପ୍ତିମାନ୍ ରାମଚନ୍ଦ୍ର ଯେଉଁଠାରେ ଥିଲେ ସେଠାରେ ଯାଇ ପ୍ରବେଶ କଲେ । ୭ । ସେତେବେଳେ ସେ ପୂର୍ଣ୍ଣଚନ୍ଦ୍ରାନନ ରାମଙ୍କୁ ମନ୍ତ୍ରୀମାନଙ୍କ ମଧ୍ୟରେ ବସିଥିବାର ଦେଖିଲେ । ଦେବତାମାନଙ୍କ ମଧ୍ୟରେ ଇନ୍ଦ୍ର ଶୋଭାପାଇଲା ପରି ସେ ସେତେବେଳେ ଶୋଭାପାଉଥିଲେ । ୮ । ସତ୍ୟପରାକ୍ରମ ତେଜରେ ଦୀପ୍ତିମାନ୍, ମହାବଳୀ ରାମଚନ୍ଦ୍ରଙ୍କୁ ଶତ୍ରୁଘ୍ନ କର ଯୋଡ଼ି ପ୍ରଣାମ କରି କହିଲେ । ୯ । "ହେ ମହାରାଜ ! ଆପଣ ମୋତେ ଯେଉଁ ଆଜ୍ଞା ଦେଇଥିଲେ ମୁଁ ସେ ସମସ୍ତ କାର୍ଯ୍ୟ ସମ୍ପାଦନ କରିଅଛି, ପାପୀ ଲବଣ ନିହତ ହୋଇଅଛି ଏବଂ ମୁଁ ସେଠାରେ ଏକ ପୁରୀ ବସାଇଅଛି । ୧୦ । ହେ ରଘୁନନ୍ଦନ ! ମୋର ସେଠାରେ ରହିବାର ବାର ବର୍ଷ ପୂରିଗଲା । ଆଉ ଆପଣଙ୍କଠାରୁ ବିଚ୍ଛିନ୍ନ ହୋଇ ସେଠାରେ ରହିବାକୁ ମୋର ଉତ୍ସାହ ହେଉ ନାହିଁ । ହେ ଅତୁଳପରାକ୍ରମ କାକୁତ୍ସ୍ଥ ! ଏବେ ଆପଣ ମୋ ପ୍ରତି ଅନୁଗ୍ରହ କରନ୍ତୁ । ବାଛୁରୀ ଯେପରି ମାତୃହୀନ ହୋଇ ରହିପାରେ ନାହିଁ, ସେହିପରି ମୁଁ ଆପଣଙ୍କ ବ୍ୟତୀତ ଏକାକୀ ଦୀର୍ଘକାଳ ରହି ପାରିବି ନାହିଁ" । ୧୨ । ଶତ୍ରୁଘ୍ନଙ୍କର ଏ କଥା ଶୁଣି ରାମ ତାଙ୍କୁ ଆଲିଙ୍ଗନ କରି କହିଲେ, "ହେ ବୀର ! ତୁମେ ଏପରି ଦୁଃଖ କର ନାହିଁ । କ୍ଷତ୍ରିୟଙ୍କ ପକ୍ଷରେ ଏପରି ଇଚ୍ଛା କରିବା

ନାବସୀଦନ୍ତି ରାଜାନୋ ବିପ୍ରବାସେଷୁ ରାଘବ ।
ପ୍ରଜା ନଃ ପରିପାଲ୍ୟା ହି କ୍ଷତ୍ରଧର୍ମେଣ ରାଘବ । ୧୪ ।
କାଲେ କାଲେ ଚ ମାଂ ବୀର ହ୍ୟଯୋଧ୍ୟାମବଲୋକିତୁମ୍ ।
ଆଗଚ୍ଛ ତ୍ୱଂ ନରଶ୍ରେଷ୍ଠ ଗନ୍ତାସି ତଂ ପୁରଂ ତବ । ୧୫ ।
ମମାପି ତ୍ୱଂ ସୁଦୟିତଃ ପ୍ରାଣୈରପି ନ ସଂଶୟଃ ।
ଅବଶ୍ୟଂ କରଣୀୟଂ ଚ ରାଜ୍ୟସ୍ୟ ପରିପାଲନମ୍ । ୧୬ ।
ତସ୍ମାତ୍ତ୍ୱଂ ବସ କାକୁତ୍ସ୍ଥ ସପ୍ତରାତ୍ରମିହାବସ ।
ଊର୍ଦ୍ଧ୍ୱଂ ଗନ୍ତାସି ମଧୁରାଂ ସଭୃତ୍ୟବଲବାହନଃ । ୧୭ ।
ରାମସ୍ୟୈତଦ୍ ବଚଃ ଶ୍ରୁତ୍ୱା ଧର୍ମଯୁକ୍ତଂ ମନୋଗତମ୍ ।
ଶତ୍ରୁଘ୍ନୋ ଦୀନୟା ବାଚା ବାଢମିତ୍ୟେବ ଚାବ୍ରବୀତ୍ । ୧୮ ।
ସପ୍ତରାତ୍ରଂ ଚ କାକୁତ୍ସ୍ଥୋ ରାଘବସ୍ୟ ଯଥାଜ୍ଞୟା ।
ଉଷ୍ୟ ତତ୍ର ମହେଷ୍ୱାସୋ ଗମନାୟୋପଚକ୍ରମେ । ୧୯ ।
ଆମନ୍ତ୍ର୍ୟ ତୁ ମହାତ୍ମାନଂ ରାମଂ ସତ୍ୟପରାକ୍ରମମ୍ ।
ଭରତଂ ଲକ୍ଷ୍ମଣଂ ଚୈବ ମହାରଥମୁପାରୁହତ୍ । ୨୦ ।

---

ଉଚିତ ନୁହେଁ । ୧୩ । ହେ ରାଘବ ! ରାଜାମାନେ ବିଦେଶରେ ରହିଲେ ଦୁଃଖିତ ହୁଅନ୍ତି ନାହିଁ । କାରଣ ଧର୍ମପୂର୍ବକ ପ୍ରଜାଙ୍କୁ ପାଳନ କରିବାହିଁ କ୍ଷତ୍ରିୟର କର୍ତ୍ତବ୍ୟ । ୧୪ । ହେ ନରଶ୍ରେଷ୍ଠ ! ତୁମେ ଇଚ୍ଛା କଲେ ମୋ ସହିତ ମିଳିତ ହେବାକୁ ଏବଂ ଅଯୋଧ୍ୟା ଦେଖିବାକୁ ମଝିରେ ମଝିରେ ଚାଲି ଆସୁଥିବ ଏବଂ ପୁଣି ତୁମ ନଗରକୁ ଫେରି ଯାଉଥିବ । ୧୫ । ତୁମେ ଯେ ମୋର ପ୍ରାଣ ସଦୃଶ ପ୍ରିୟ ଏଥିରେ ସନ୍ଦେହ ନାହିଁ । ତଥାପି ରାଜ୍ୟ ପାଳନ କରିବା ଅବଶ୍ୟ କର୍ତ୍ତବ୍ୟ ଅଟେ । ୧୬ । ଅତଏବ ତୁମେ ସାତ ରାତି ଏଠାରେ ମୋ ସଙ୍ଗରେ ବାସ କର । ତଦନନ୍ତର ନିଜର ଭୃତ୍ୟ, ସୈନ୍ୟ ଓ ବାହନ ସହିତ ତୁମେ ମଥୁରାପୁରୀକୁ ଫେରିଯିବ” । ୧୭ । ରାମଙ୍କର ଏହି ଧର୍ମଯୁକ୍ତ ଏବଂ ମନୋମତ କଥା ଶୁଣି ଶତ୍ରୁଘ୍ନ ଦୁଃଖିତ ହୋଇ କହିଲେ, “ଆଚ୍ଛା ତାହାହିଁ ହେଉ” । ୧୮ । ଏହାପରେ ରାମଙ୍କର ଆଜ୍ଞାରେ ସାତ ରାତି ରହି ଧନୁର୍ଦ୍ଧାରୀ ଶତ୍ରୁଘ୍ନ ପୁଣି ମଥୁରା ଯିବାପାଇଁ ପ୍ରସ୍ତୁତ ହେଲେ । ୧୯ । ସତ୍ୟପରାକ୍ରମ ରାମ, ଭରତ ଏବଂ ଲକ୍ଷ୍ମଣଙ୍କଠାରୁ ବିଦାୟ ନେଇ ଶତ୍ରୁଘ୍ନ ବିଶାଳ ରଥରେ ଆରୋହଣ କଲେ । ୨୦ ।

ଦୂରମାଭ୍ୟାମନୁଗତୋ ଲକ୍ଷ୍ମଣେନ ମହାତ୍ମନା ।
ଭରତେନ ଚ ଶତ୍ରୁଘ୍ନୋ ଜଗାମାଶୁ ପୁରଂ ତତଃ । ୨୧ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତ ସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ଶତ୍ରୁଘ୍ନରାମସମାଗମୋ ନାମ ଦ୍ୱିସପ୍ତତିତମଃ ସର୍ଗଃ ।

---

# ତ୍ରିସପ୍ତତିତମଃ ସର୍ଗଃ

## ବ୍ରାହ୍ମଣପରିଦେବନମ

ପ୍ରସ୍ଥାପ୍ୟ ତୁ ସ ଶତ୍ରୁଘ୍ନଂ ଭ୍ରାତୃଭ୍ୟାଂ ସହ ରାଘବଃ ।
ପ୍ରମୁମୋଦ ସୁଖୀ ରାଜ୍ୟଂ ଧର୍ମେଣ ପରିପାଲୟନ୍ । ୧ ।
ତତଃ କତିପୟାହସ୍ସୁ ବୃଦ୍ଧୋ ଜାନପଦୋ ଦ୍ୱିଜଃ ।
ମୃତଂ ବାଲମୁପାଦାୟ ରାଜଦ୍ୱାରମୁପାଗମତ୍ । ୨ ।
ରୁଦନ୍ ବହୁବିଧା ବାଚଃ ସ୍ନେହଦୁଃଖସମନ୍ୱିତଃ ।
ଅସକୃତ୍ ପୁତ୍ର ପୁତ୍ରେତି ବାକ୍ୟମେତଦୁବାଚ ହ । ୩ ।

---

ମହାତ୍ମା ଭରତ ଏବଂ ଲକ୍ଷ୍ମଣ ଶତ୍ରୁଘ୍ନଙ୍କ ସହିତ ବହୁ ଦୂର ପର୍ଯ୍ୟନ୍ତ ପାଦରେ ଚାଲି ଚାଲି ଯାଇ ଫେରି ଆସିଲେ ଏବଂ ଶତ୍ରୁଘ୍ନ ନିଜର ପୁରୀକୁ ଗମନ କଲେ । ୨୧ ।

---

# ୭୩ତମ ସର୍ଗ

## ( ବ୍ରାହ୍ମଣର ବିଳାପ )

ରାମ ଶତ୍ରୁଘ୍ନଙ୍କୁ ବିଦାୟ ଦେଇ ଭ୍ରାତାଦ୍ୱୟଙ୍କ ସହ ଧର୍ମପୂର୍ବକ ରାଜ୍ୟ ପାଳନ କରି ସୁଖରେ ରହିଲେ । ୧ । କିଛିଦିନ ପରେ ସେ ଦେଶର ଜଣେ ବୃଦ୍ଧ ଗାଉଁଲି ବ୍ରାହ୍ମଣ ନିଜର ମୃତ ବାଳକକୁ ଧରି ରାଜଭବନ ଦ୍ୱାରରେ ଆସି ଉପସ୍ଥିତ ହେଲେ । ୨ । ସେ ପୁତ୍ର ସ୍ନେହବଶରୁ ଅତିଶୟ ଦୁଃଖିତ ହୋଇ ବାରମ୍ବାର 'ହା ପୁତ୍ର, ହା ପୁତ୍ର' ବୋଲି ଚିତ୍କାର କରି ରୋଦନ କରୁଥିଲେ ଏବଂ ବହୁପ୍ରକାର

କିଂ ନୁ ମେ ଦୁଷ୍କୃତଂ କର୍ମ ପୂର୍ବ ଦେହାନ୍ତରେ କୃତମ୍ ।
ଯଦହଂ ପୁତ୍ରମେକଂ ତ୍ୱାଂ ପଶ୍ୟାମି ନିଧନଂ ଗତମ୍ । ୪ ।
ଅପ୍ରାପ୍ତଯୌବନଂ ବାଲଂ ପଞ୍ଚବର୍ଷସହସ୍ରକମ୍ ।
ଅକାଲେ କାଲମାପନ୍ନଂ ମମ ଦୁଃଖାୟ ପୁତ୍ରକ । ୫ ।
ଅଲ୍ପୈରହୋଭିର୍ନିଧନଂ ଗମିଷ୍ୟାମି ନ ସଂଶୟଃ ।
ଅହଂ ଚ ଜନନୀ ଚୈବ ତବ ଶୋକେନ ପୁତ୍ରକ । ୬ ।
ନ ସ୍ମରାମ୍ୟନୃତଂ ହ୍ୟୁକ୍ତଂ ନ ଚ ହିଂସାଂ ସ୍ମରାମ୍ୟହମ୍ ।
ସର୍ବେଷାଂ ପ୍ରାଣିନାଂ ପାପଂ କୃତଂ ନୈବ ସ୍ମରାମ୍ୟହମ୍ । ୭ ।
କେନାଦ୍ୟ ଦୁଷ୍କୃତେନାୟଂ ବାଲ ଏବ ମମାତ୍ମଜଃ ।
ଅକୃତ୍ୱା ପିତୃକାର୍ଯାଣି ଗତୋ ବୈବସ୍ୱତକ୍ଷୟମ୍ । ୮ ।
ନେଦୃଶଂ ଦୃଷ୍ଟପୂର୍ବଂ ମେ ଶ୍ରୁତଂ ବା ଘୋରଦର୍ଶନମ୍ ।
ମୃତ୍ୟୁରପ୍ରାପ୍ତକାଲାନାଂ ରାମସ୍ୟ ବିଷୟେ ଯଥା । ୯ ।
ରାମସ୍ୟ ଦୁଷ୍କୃତଂ କିଞ୍ଚିନ୍ମହଦସ୍ତି ନ ସଂଶୟଃ ।
ଯଥା ହି ବିଷୟସ୍ଥାନାଂ ବାଲାନାଂ ମୃତ୍ୟୁରାଗତଃ । ୧୦ ।

---

ବାକ୍ୟରେ ବିଳାପ କରି କହୁଥିଲେ । ୩ । "ମୁଁ ପୂର୍ବଜନ୍ମରେ କି ପାପ କରିଥିଲି ଯେ ଆଜି ନିଜର ଏକମାତ୍ର ପୁତ୍ରକୁ ମୃତ ହେବାର ଦେଖିଲି । ୪ । ମୋର ପୁତ୍ର ଏପର୍ଯ୍ୟନ୍ତ ଯୌବନ ଲାଭ କରି ନ ଥିଲା । ତାହାକୁ ମୋଟେ ପାଞ୍ଚ ହଜାର ଦିନ ଅର୍ଥାତ୍ ପ୍ରାୟ ପନ୍ଦରବର୍ଷ ହୋଇଥିଲା । ମୋତେ ଦୁଃଖ ଦେବାଲାଗି ଅକାଳରେ ତାହାର ମୃତ୍ୟୁ ହୋଇଅଛି । ୫ । ରେ ବତ୍ସ ! ମୁଁ ଆଉ ତୋର ମା ଆମ୍ଭେ ଦୁହେଁ ତୋର ଶୋକରେ ଅଳ୍ପଦିନରେ ମରିଯିବୁଁ, ଏଥିରେ କୌଣସି ସନ୍ଦେହ ନାହିଁ । ୬ । ମୋର ସ୍ମରଣ ହେଉ ନାହିଁ ଯେ ମୁଁ କେବେ କାହାରିକୁ ମିଥ୍ୟା କହିଛି କିମ୍ବା କାହାର ପ୍ରତି ହିଂସା କରିଛି ବା ଅନ୍ୟ କୌଣସି ପ୍ରକାର ପାପ କରିଛି କେଉଁ ପାପକର୍ମର ଫଳସ୍ୱରୂପ ଏହି ବାଳକ ନିଜର ପିତାର ଅନ୍ତ୍ୟେଷ୍ଟିକ୍ରିୟା ସମାପନ ନ କରି ଯମପୁରକୁ ଗୁଲିଗଲା । ୭-୮ । ରାମଙ୍କ ରାଜ୍ୟରେ ଏ ଯେଉଁ ଭୟାନକ ଘଟଣା ଘଟିଲା, ଏପରି ଅସମୟରେ ବାଳକର ଯେପରି ମୃତ୍ୟୁ ଘଟିଲା ଏହା ମୁଁ କେବେ ପୂର୍ବରୁ ଦେଖି ନ ଥିଲି କି ଶୁଣି ନ ଥିଲି । ୯ । ଅତଏବ ଏହା ନିଃସନ୍ଦେହ ଯେ, ରାମଙ୍କର କୌଣସି ମହାଦୁଷ୍କାର୍ଯ୍ୟ ହେଉଛି ଯିବାଁ ତାଙ୍କ ରାଜ୍ୟରେ

ନ ହ୍ୟନ୍ୟବିଷୟସ୍ଥାନାଂ ବାଲାନାଂ ମୃତ୍ୟୁତୋ ଭୟମ୍ ।
ତ୍ୱଂ ରାଜନ୍ ଜୀବୟସ୍ୱୈନଂ ବାଲଂ ମୃତ୍ୟୁବଶଂ ଗତମ୍ । ୧୧ ।
ରାଜଦ୍ୱାରି ମରିଷ୍ୟାମି ପତ୍ନ୍ୟା ସାର୍ଧମନାଥବତ୍ ।
ବ୍ରହ୍ମହତ୍ୟାଂ ତତୋ ରାମ ସମୁପେତ୍ୟ ସୁଖୀ ଭବ । ୧୨ ।
ଭ୍ରାତୃଭିଃ ସହିତୋ ରାଜନ୍ ଦୀର୍ଘମାୟୁରବାପ୍ସ୍ୟସି ।
ଉଷିତାଃ ସ୍ମ ସୁଖଂ ରାଜ୍ୟେ ତବାସ୍ମିନ୍ ସୁମହାବଳ । ୧୩ ।
ଇଦଂ ତୁ ପତିତଂ ହ୍ୟସ୍ମାତ୍ତବ ରାମ ବଶେ ସ୍ଥିତାଃ ।
କାଳସ୍ୟ ବଶମାପନ୍ନାଃ ସ୍ୱଳ୍ପଂ ହି ନ ହି ନଃ ସୁଖମ୍ । ୧୪ ।
ସଂପ୍ରତ୍ୟନାଥୋ ବିଷୟ ଇକ୍ଷ୍ୱାକୂଣାଂ ମହାତ୍ମନାମ୍ ।
ରାମଂ ନାଥମିହାସାଦ୍ୟ ବାଳାନ୍ତକରଣଂ ଧ୍ରୁବମ୍ । ୧୫ ।
ରାଜଦୋଷୈର୍ବିପଦ୍ୟନ୍ତେ ପ୍ରଜା ହ୍ୟବିଧିପାଳିତାଃ ।
ଅସଦ୍‌ବୃତ୍ତେ ତୁ ନୃପତାବକାଳେ ମ୍ରିୟତେ ଜନଃ । ୧୬ ।
ଯଦ୍ ବା ପୁରେଷ୍ୱଯୁକ୍ତାନି ଜନା ଜନପଦେଷୁ ଚ ।
କୁର୍ବତେ ନ ଚ ରକ୍ଷାସ୍ତି ତଦା କାଳକୃତଂ ଭୟମ୍ । ୧୭ ।

---

ବାସ କରୁଥିବା ଏହି ବାଳକର ଅକାଳମୃତ୍ୟୁ ହୋଇଅଛି । ୧୦ । ଅନ୍ୟ ରାଜ୍ୟରେ ତ ବାଳକମାନଙ୍କର ଏପରି ମୃତ୍ୟୁଭୟ ହେଉ ନାହିଁ । ଅତଏବ ହେ ରାଜନ୍ ! ଆପଣ ମୋର ଏହି ମୃତ ବାଳକକୁ ଜୀବିତ କରାଇ ଦିଅନ୍ତୁ ।୧୧। ଆପଣ ତାହା ନ କଲେ ମୁଁ ମୋର ନିଜ ପତ୍ନୀ ସହିତ ଅନାଥ ପରି ରାଜଦ୍ୱାରରେ ପ୍ରାଣ ହରାଇବି । ହେ ରାମ ! ତମ୍ପରେ ଆପଣ ବ୍ରହ୍ମହତ୍ୟା ଦୋଷ ପାଇ ସୁଖୀ ହୋଇ ରହିଥାଆନ୍ତୁ । ୧୨ । ହେ ରାଜନ୍ ! ଆପଣ ଆପଣଙ୍କର ଭାଇମାନଙ୍କ ସହ ଦୀର୍ଘାୟୁ ଲାଭ କରିବେ । ହେ ମହାବଳବାନ୍ ! ଏପର୍ଯ୍ୟନ୍ତ ଆମେ ଆପଣଙ୍କ ରାଜ୍ୟରେ ସୁଖରେ ବାସ କରୁଥିଲୁଁ ।୧୩। କିନ୍ତୁ ଆପଣଙ୍କ ରାଜ୍ୟରେ ରହିବାରେ ଆମକୁ ଏହି ସୁଖ ମିଳିଲା ଯେ ଆମେ କାଳର ବଶୀଭୂତ ହୋଇଗଲୁଁ । ଏବେ ଆପଣଙ୍କ ରାଜ୍ୟରେ ଆମର କିଛିମାତ୍ର ସୁଖ ନାହିଁ । । ୧୪ । ଇକ୍ଷ୍ୱାକୁବଂଶ ରାଜାମାନଙ୍କର ଏହି ରାଜ୍ୟ ବର୍ତ୍ତମାନ ଅପାଳକ ଓ ରାମଙ୍କୁ ରାଜାରୂପେ ପାଇବାଦ୍ୱାରା ଏ ରାଜ୍ୟରେ ବାଳକମାନଙ୍କର ମୃତ୍ୟୁ ଘଟିବା ନିଶ୍ଚିତ ।୧୫। ବିଧିପୂର୍ବକ ରାଜ୍ୟପାଳନ କରା ନ ହେଲେ ରାଜାର ଦୋଷରୁ ପ୍ରଜାର ବିପଦ ଘଟେ ଏବଂ ରାଜାର ଅସଦାଚରଣ ହେତୁରୁ ଲୋକେ ଅସମୟରେ ମରିଯାଆନ୍ତି । ୧୬ । ଗ୍ରାମ ଓ ନଗରମାନଙ୍କରେ ପ୍ରଜାମାନେ ଅସଦ୍ ବ୍ୟବହାର କରନ୍ତି ଏବଂ ଏହି ହେତୁରୁ ଲୋକଙ୍କର ଅକାଳରେ ମୃତ୍ୟୁଭୟ ହୋଇଥାଏ । ୧୭ ।

ସୁବ୍ୟକ୍ତଂ ରାଜଦୋଷୋ ହି ଭବିଷ୍ୟତି ନ ସଂଶୟଃ ।
ପୁରେ ଜନପଦେ ଚାପି ତତୋ ବାଲବଧୋ ହ୍ୟୟମ୍ ।୧୮।
ଏବଂ ବହୁବିଧୈର୍ବାକ୍ୟୈରୁପରୁଧ୍ୟ ମୁହୁର୍ମୁହୁଃ ।
ରାଜାନଂ ଦୁଃଖସନ୍ତପ୍ତଃ ସୁତଂ ତମୁପଗୂହତେ । ୧୯ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ବ୍ରାହ୍ମଣପରିଦେବନଂ ନାମ ତ୍ରିସପ୍ତତିତମଃ ସର୍ଗଃ ।

---

# ଚତୁଃସପ୍ତତିତମଃ ସର୍ଗଃ

## ନାରଦବଚନମ୍

ତଥା ତୁ କରୁଣଂ ତସ୍ୟ ଦ୍ୱିଜସ୍ୟ ପରିଦେବନମ୍ ।
ଶୁଶ୍ରାବ ରାଘବଃ ସର୍ବଂ ଦୁଃଖଶୋକସମନ୍ୱିତମ୍ । ୧ ।
ସ ଦୁଃଖେନ ଚ ସନ୍ତପ୍ତୋ ମନ୍ତ୍ରିଣସ୍ତାନୁପାହ୍ୱୟତ୍ ।
ବଶିଷ୍ଠଂ ବାମଦେବଂ ଚ ଭ୍ରାତରୌ ସହନୈଗମାନ୍ । ୨ ।

---

ଅତଏବ ଏହା ସ୍ପଷ୍ଟ ଯେ ନଗରରେ ହେଉ ବା ଜନପଦରେ ହେଉ ରାଜଶାସନରେ ନିଶ୍ଚୟ କିଛି ତ୍ରୁଟି ରହିଅଛି ଏବଂ ସେହି ହେତୁରୁ ଏ ବାଳକର ମୃତ୍ୟୁ ହୋଇଅଛି” ।୧୮। ଏହି ପ୍ରକାରରେ ଅନେକ କଥା କହି ସେହି ବ୍ରାହ୍ମଣ ବାରମ୍ବାର ରୋଦନ କରୁଥିଲେ ଏବଂ ନିଜର ମୃତ ପୁତ୍ରକୁ କୁଣ୍ଢାଇ ଧରି ଓ ଦୁଃଖସନ୍ତପ୍ତ ହୋଇ ରାଜାଙ୍କୁ ବାରମ୍ବାର ମୃତ ପୁତ୍ରକୁ ବଞ୍ଚାଇ ଦେବାକୁ ଅନୁରୋଧ କରୁଥିଲେ । ୧୯ ।

---

## ୭୪ତମ ସର୍ଗ

(ନାରଦଙ୍କର ତଥ୍ୟପ୍ରକାଶ)

ରାମ ସେହି ବ୍ରାହ୍ମଣର ଏପ୍ରକାର ଦୁଃଖଶୋକଯୁକ୍ତ ବିଳାପ ଶୁଣିଲେ । ୧ । ସେ ଅତ୍ୟନ୍ତ ଦୁଃଖିତ ହୋଇ ମନ୍ତ୍ରୀମାନଙ୍କ ସମେତ, ବଶିଷ୍ଠ, ବାମଦେବ, ଭରତ ଆଦି ଭ୍ରାତୃଗଣ ଏବଂ ବଡ଼ ବଡ଼ ସାହୁକାର ମହାଜନମାନଙ୍କୁ ଡକାଇଲେ ।୨।

ତତୋ ଦ୍ୱିଜା ବସିଷ୍ଠେନ ସାର୍ଧମଷ୍ଟୌ ପ୍ରବେଶିତାଃ ।
ରାଜାନଂ ଦେବସଂକାଶଂ ବର୍ଧସ୍ୱେତି ତତୋଽବ୍ରୁବନ୍ । ୩ ।
ମାର୍କଣ୍ଡେୟୋଽଥ ମୌଦ୍‌ଗଲ୍ୟୋ ବାମଦେବଶ୍ଚ କାଶ୍ୟପଃ ।
କାତ୍ୟାୟନୋଽଥ ଜାବାଲିର୍ଗୌତମୋ ନାରଦସ୍ତଥା । ୪ ।
ଏତେ ଦ୍ୱିଜର୍ଷଭାଃ ସର୍ବ ଆସନେଷୂପବେଶିତାଃ ।
ମହର୍ଷୀନ୍ ସମନୁପ୍ରାପ୍ତାନଭିବାଦ୍ୟ କୃତାଞ୍ଜଳିଃ । ୫ ।
ମନ୍ତ୍ରିଣୋ ନୈଗମାଂଶ୍ଚୈବ ଯଥାର୍ହମନୁକୂଳତଃ ।
ତେଷାଂ ସମୁପବିଷ୍ଟାନାଂ ସର୍ବେଷାଂ ଦୀପ୍ତତେଜସାମ୍ । ୬ ।
ରାଘବଃ ସର୍ବମାଚଷ୍ଟେ ଦ୍ୱିଜୋଽୟମୁପରୋଧତେ ।
ତସ୍ୟ ତଦ୍ ବଚନଂ ଶ୍ରୁତ୍ୱା ରାଜ୍ଞୋ ଦୀନସ୍ୟ ନାରଦଃ । ୭ ।
ପ୍ରତ୍ୟୁବାଚ ଶୁଭଂ ବାକ୍ୟମୃଷୀଣାଂ ସଂନ୍ନଧୌ ନୃପମ୍ ।
ଶୃଣୁ ରାଜନ୍ ଯଥାକାଲେ ପ୍ରାପ୍ତୋ ବାଲସ୍ୟ ସଂକ୍ଷୟଃ । ୮ ।
ଶ୍ରୁତ୍ୱା କର୍ତ୍ତବ୍ୟତାଂ ରାଜନ୍ କୁରୁଷ୍ୱ ରଘୁନନ୍ଦନ ।
ପୁରା କୃତଯୁଗେ ରାଜନ୍ ବ୍ରାହ୍ମଣା ବୈ ତପସ୍ୱିନଃ । ୯ ।
ଅବ୍ରାହ୍ମଣସ୍ତଦା ରାଜନ୍ନ ତପସ୍ୱୀ କଥଞ୍ଚନ ।
ତସ୍ମିନ୍ ଯୁଗେ ପ୍ରଜ୍ୱଳତେ ବ୍ରହ୍ମଭୂତେ ତ୍ୱନାବୃତେ । ୧୦ ।

---

ବଶିଷ୍ଠଙ୍କ ସହିତ ଆଠଜଣ ବ୍ରାହ୍ମଣ ଆସି ପ୍ରବେଶ କଲେ ଏବଂ ସେମାନେ ଦେବତୁଲ୍ୟ ରାମଙ୍କୁ 'ତୁମ୍ଭର ଅଭିବୃଦ୍ଧି ହେଉ' ବୋଲି କହିଲେ । ୩ । ମାର୍କଣ୍ଡେୟ, ମୌଦ୍‌ଗଲ୍ୟ, ବାମଦେବ, କାଶ୍ୟପ, କାତ୍ୟାୟନ, ଜାବାଲି, ଗୌତମ ଏବଂ ନାରଦ ଏହି ବ୍ରାହ୍ମଣଶ୍ରେଷ୍ଠମାନଙ୍କୁ ଆସନରେ ବସାଇ ଦିଆଗଲା । ଅନନ୍ତର ରାମ ହାତ ଯୋଡ଼ି ଉପସ୍ଥିତ ହୋଇଥିବା ସେହି ମହର୍ଷିମାନଙ୍କୁ ପ୍ରଣାମ କଲେ ତଥା ମନ୍ତ୍ରୀ ଓ ଅନ୍ୟ ମହାଜନମାନଙ୍କୁ ଯଥୋଚିତ ସତ୍କାର କଲେ । ଏହି ସମସ୍ତ ତେଜସ୍ୱୀ ବ୍ୟକ୍ତିମାନେ ବସିଯିବାପରେ ରାମ ରାଜଭବନରେ ଧାରଣା ଦେଇଥିବା ସେହି ବ୍ରାହ୍ମଣ ବିଷୟ ସମସ୍ତ କହିଲେ । ଦୁଃଖିତ ରାଜାଙ୍କର ସେ କଥା ଶୁଣି ସ୍ୱୟଂ ନାରଦ ଋଷିମାନଙ୍କ ଉପସ୍ଥିତିରେ ଏହି ଶୁଭ କଥା କହିଲେ, "ହେ ରାଜନ୍ ! ଏହି ବାଳକର ଅକାଳରେ କପରି ମୃତ୍ୟୁ ହୋଇଲା ସେ କଥା ତୁମେ ଶୁଣ । ୪-୮ । ହେ ରାମ ! ଏହା ଶୁଣିବାପରେ ଯାହା କର୍ତ୍ତବ୍ୟ ତାହା ତୁମେ କରିବ । ହେ ରାଜନ୍ ! ପ୍ରଥମେ ସତ୍ୟ ଯୁଗରେ କେବଳ ବ୍ରାହ୍ମଣମାନେହିଁ ତପସ୍ୟା କରୁଥିଲେ । ୯ । ହେ ରାଜନ୍ ! ସେ ସମୟରେ ବ୍ରାହ୍ମଣେତର ଜାତିମାନେ କଦାପି ତପସ୍ୱୀ ହେଉ ନ ଥିଲେ । ସେ ଯୁଗରେ

ଅମୃତ୍ୟବସ୍ତଦା ସର୍ବେ ଜଜ୍ଞିରେ ଦୀର୍ଘଦର୍ଶିନଃ ।
ତତସ୍ତ୍ରେତାଯୁଗଂ ନାମ ମାନବାନାଂ ବପୁଷ୍ମତାମ୍ । ୧୧ ।
କ୍ଷତ୍ରିୟାସ୍ତତ୍ର ଜାୟନ୍ତେ ପୂର୍ବେଣ ତପସାନ୍ୱିତାଃ ।
ବୀର୍ଯେଣ ତପସା ଚୈବ ତେଽଧିକାଃ ପୂର୍ବଜନ୍ମନ । ୧୨ ।
ମାନବା ଯେ ମହାତ୍ମାନସ୍ତତ୍ର ତ୍ରେତାଯୁଗେ ଯୁଗେ ।
ବ୍ରହ୍ମକ୍ଷତ୍ରଂ ଚ ତତ୍ ସର୍ବଂ ଯତ୍ ପୂର୍ବମପରଂ ଚ ଯତ୍ । ୧୩ ।
ଯୁଗୟୋରୁଭୟୋରାସୀତ୍ ସମବୀର୍ଯସମନ୍ୱିତମ୍ ।
ଅପଶ୍ୟଂସ୍ତୁ ନ ତେ ସର୍ବେ ବିଶେଷମଧିକଂ ତତଃ । ୧୪ ।
ସ୍ଥାପନଂ ଚକ୍ରିରେ ତତ୍ର ଚାତୁର୍ବର୍ଣ୍ୟସ୍ୟ ସଂମତମ୍ ।
ତସ୍ମିନ୍ ଯୁଗେ ପ୍ରଜ୍ୱଳିତେ ଧର୍ମଭୂତେ ହ୍ୟନାବୃତେ । ୧୫ ।
ଅଧର୍ମଃ ପାଦମେକଂ ତୁ ପାତୟତ୍ ପୃଥିବୀତଳେ ।
ଅଧର୍ମେଣ ହି ସଂଯୁକ୍ତାସ୍ତେଜୋ ମନ୍ଦଂ ଭବିଷ୍ୟତି । ୧୬ ।
ଆମିଷଂ ଯଚ୍ଚ ପୂର୍ବେଷାଂ ରାଜସଂ ଚ ମଲଂ ଭୃଶମ୍ ।
ଅନୃତଂ ନାମ ତଦ୍ଭୂତଂ ପାଦେନ ପୃଥିବୀତଳେ । ୧୭ ।

---

ବ୍ରାହ୍ମଣ୍ୟ ଧର୍ମର ପ୍ରାଧାନ୍ୟ ଥିବାରୁ ଲୋକମାନେ ମୃତ୍ୟୁ ରହିତ ଏବଂ ଦୀର୍ଘଦର୍ଶୀ ହୋଇ ଜନ୍ମ ହେଉଥିଲେ । ଅନନ୍ତର ମନୁବଂଶୀୟ ବପୁଷ୍ମାନ୍ କ୍ଷତ୍ରିୟମାନଙ୍କର ତ୍ରେତାଯୁଗ ଆସି ଉପସ୍ଥିତ ହେଲା । ସେତେବେଳେ କ୍ଷତ୍ରିୟମାନେ ପୂର୍ବପର ତପସ୍ୟା-ଯୁକ୍ତ ହୋଇ ଜନ୍ମହେଲେ । ସେମାନେ ବୀର୍ଯ୍ୟ ଏବଂ ତପୋବଳରେ ପୂର୍ବ ଜନ୍ମରୁ ଅଧିକ ପ୍ରଭାବଶାଳୀ ହୋଇଥିଲେ । ସେହି ମନୁବଂଶୀୟ ମହାତ୍ମାମାନେ ତ୍ରେତାଯୁଗରେ ପ୍ରାଧାନ୍ୟ ଲାଭକଲେ । ଯେଉଁ ବ୍ରାହ୍ମଣମାନେ ପ୍ରଥମରୁ ପ୍ରଭାବଶାଳୀ ଥିଲେ ଏବଂ ଯେଉଁ କ୍ଷତ୍ରିୟମାନେ ପଛରେ ପ୍ରଭାବଶାଳୀ ହେଲେ—ଏ ଦୁହେଁ ସେ ତ୍ରେତାଯୁଗରେ ସମାନ ବଳବୀର୍ଯ୍ୟଶାଳୀ ହୋଇଗଲେ । ୧୦-୧୩ । ସେ ଯୁଗରେ ଲୋକେ ବ୍ରାହ୍ମଣ ଓ କ୍ଷତ୍ରିୟଙ୍କ ମଧ୍ୟରେ କୌଣସି ତାରତମ୍ୟ ନ ଦେଖିପାରି ସର୍ବସମ୍ମତିକ୍ରମେ ଚାରି ବର୍ଣ୍ଣ ସ୍ଥାପନ କଲେ । ସେହି ତ୍ରେତାଯୁଗରେ ଧର୍ମ ପ୍ରବଳ ଥିଲେ ମଧ୍ୟ ଅଧର୍ମ ଏକ ପାଦ ପୃଥିବୀରେ ସ୍ଥାପନ କଲା । ପୃଥିବୀ ଏହିପରି ଅଧର୍ମଯୁକ୍ତ ହେବାରୁ ଧର୍ମର ତେଜ ମନ୍ଦ ହୋଇଯିବ । ୧୪-୧୬ । ପୂର୍ବ ଯୁଗରୁ ଲୋକମାନେ ରାଜସ; ଆମିଷଭୋଜନକୁ ମଳସ୍ୱରୂପ ମନେ କରୁଥିଲେ । ତାହାହିଁ ଅସତ୍ୟ ରୂପରେ ପୃଥିବୀରେ ପାଦେ ବ୍ୟାପିଗଲା । ୧୭ । ତ୍ରେତାଯୁଗରେ ଏକ ପାଦ ଅଧର୍ମ ହୋଇ

ଅନୃତଂ ପାତୟିତ୍ୱା ତୁ ପାଦମେକମଧର୍ମତଃ ।
ତତଃ ପ୍ରାଦୁଷ୍କୃତଂ ପୂର୍ବମାୟୁଷଃ ପରିନିଷ୍ଠିତମ୍ । ୧୮ ।
ପତିତେ ତ୍ୱନୃତେ ତସ୍ମିନ୍ନଧର୍ମେ ଚ ମହୀତଳେ ।
ଶୁଭାନ୍ୟେବାଚରଁଲ୍ଲୋକାଃ ସତ୍ୟଧର୍ମପରାୟଣାଃ । ୧୯ ।
ତ୍ରେତାଯୁଗେ ଚ ବର୍ତ୍ତନ୍ତେ ବ୍ରାହ୍ମଣାଃ କ୍ଷତ୍ରିୟାଶ୍ଚ ଯେ ।
ତପୋଽତପ୍ୟନ୍ତ ତେ ସର୍ବେ ଶୁଶ୍ରୂଷାମପରେ ଜନାଃ । ୨୦ ।
ସ୍ୱଧର୍ମଃ ପରମସ୍ତେଷାଂ ବୈଶ୍ୟଶୂଦ୍ରଂ ସମାଗମତ୍ ।
ପୂଜାଂ ଚ ସର୍ବବର୍ଣ୍ଣାନାଂ ଶୂଦ୍ରାଶ୍ଚକ୍ରୁର୍ବିଶେଷତଃ । ୨୧ ।
ଏତସ୍ମିନ୍ନନ୍ତରେ ତେଷାମଧର୍ମେ ଚାନୃତେ ଚ ହ ।
ତତଃ ପୂର୍ବେ ଭୃଶଂ ହ୍ରାସମଗମନ୍ ପରନ୍ତପ । ୨୨ ।
ତତଃ ପାଦମଧର୍ମଃ ସ ଦ୍ୱିତୀୟମବତାରୟତ୍ ।
ତତୋ ଦ୍ୱାପରସଂଜ୍ଞାସ୍ୟ ଯୁଗସ୍ୟ ସମଜାୟତ । ୨୩ ।
ତସ୍ମିନ୍ ଦ୍ୱାପରସଂଜ୍ଞେ ତୁ ବର୍ତ୍ତମାନେ ଯୁଗକ୍ଷୟେ ।
ଅଧର୍ମଶ୍ଚାନୃତଂ ଚୈବ ବବୃଧେ ପୁରୁଷର୍ଷଭ । ୨୪ ।

---

ଅସତ୍ୟ ବ୍ୟାପି ଯିବାରୁ ଲୋକଙ୍କର ଆୟୁ ପୂର୍ବ ଆୟୁର ସୀମାରୁ କମିଗଲା । ୧୮ । ପୃଥିବୀ ଉପରେ ଅଧର୍ମ ଯେତେବେଳେ ନିଜର ଏକ ପାଦ ପକାଇଲା, ସେତେବେଳେ ଲୋକମାନେ ଅଧର୍ମରୁ ରକ୍ଷା ପାଇବା ପାଇଁ ସତ୍ୟଧର୍ମପରାୟଣ ହୋଇ ଉତ୍ତମ ପ୍ରକାର ଶୁଭକାର୍ଯ୍ୟ କରିବାକୁ ଲାଗିଲେ । ୧୯ । ତ୍ରେତାଯୁଗରେ ବ୍ରାହ୍ମଣ ଓ କ୍ଷତ୍ରିୟମାନେ ତପସ୍ୟା କରନ୍ତି ଏବଂ ଅନ୍ୟମାନେ ସେମାନଙ୍କର ସେବାଶୁଶ୍ରୂଷା କରନ୍ତି ।୨୦। ବ୍ରାହ୍ମଣ ଓ କ୍ଷତ୍ରିୟମାନଙ୍କର ସେବା କରିବାହିଁ ବୈଶ୍ୟ ଏବଂ ଶୂଦ୍ରମାନଙ୍କର ପରମଧର୍ମ ଅଟେ; ବିଶେଷତଃ ଅନ୍ୟ ସବୁ ବର୍ଣ୍ଣର ସେବା କରିବା ଶୂଦ୍ରମାନଙ୍କର ପରମଧର୍ମ ଅଟେ । ୨୧ । ହେ ନୃପଶ୍ରେଷ୍ଠ ! ଇତମଧ୍ୟରେ ଯେତେବେଳେ ବୈଶ୍ୟ ଓ ଶୂଦ୍ରଧର୍ମର ଲୋକେ ଅଧର୍ମ ଏବଂ ଅସତ୍ୟର ବ୍ୟବହାର କରିବାକୁ ଆରମ୍ଭ କଲେ, ସେତେବେଳେ ବ୍ରାହ୍ମଣ ଓ କ୍ଷତ୍ରିୟମାନଙ୍କର ମଧ୍ୟ ଧର୍ମହ୍ରାସ ହେଲା ଏବଂ ଅଧର୍ମ ତାହାର ଦ୍ୱିତୀୟ ପାଦ ପୃଥିବୀ ଉପରେ ପକାଇଲା । ସେତେବେଳେ ସେ ଯୁଗକୁ ଦ୍ୱାପର ଯୁଗ ବୋଲି କୁହାଗଲା । ୨୨-୨୩ । ହେ ପୁରୁଷଶ୍ରେଷ୍ଠ ! ଏହି ଦ୍ୱାପର ଯୁଗରେ ଅଧର୍ମ ଓ ଅସତ୍ୟ ବଢ଼ିଗଲା ଏବଂ ତୃତୀୟ ବର୍ଣ୍ଣ ବୈଶ୍ୟମାନେ

ତସ୍ମିନ୍ ଦ୍ୱାପରସଂଖ୍ୟାତେ ତପୋ ବୈଶ୍ୟାନ୍ ସମାବିଶତ୍ ।
ତ୍ରିଭ୍ୟୋ ଯୁଗେଭ୍ୟସ୍ତ୍ରୀନ୍ ବର୍ଣାନ୍ କ୍ରମାଦ୍ ବୈ ତପ ଆଶ୍ରିତମ୍ ।୨୪
ତ୍ରିଭ୍ୟୋ ଯୁଗେଭ୍ୟସ୍ତ୍ରୀନ୍ ବର୍ଣାନ୍ ଧର୍ମଶ୍ଚ ପରିନିଷ୍ଠିତଃ ।
ନ ଶୂଦ୍ରୋ ଲଭତେ ଧର୍ମଂ ଯୁଗତସ୍ତୁ ନରର୍ଷଭ । ୨୬ ।
ହୀନବର୍ଣୋ ନୃପଶ୍ରେଷ୍ଠ ତପ୍ୟତେ ସୁମହତ୍ତପଃ ।
ଭବିଷ୍ୟଚ୍ଛୂଦ୍ରଯୋନ୍ୟାଂ ବୈ ତପଶ୍ଚର୍ଯା କଲୌ ଯୁଗେ । ୨୭ ।
ଅଧର୍ମଃ ପରମୋ ରାଜନ୍ ଦ୍ୱାପରେ ଶୂଦ୍ରଜନ୍ମନଃ ।
ସ ବୈ ବିଷୟପର୍ଯନ୍ତେ ତବ ରାଜନ୍ ମହାତପାଃ । ୨୮ ।
ଅଦ୍ୟ ତପ୍ୟତି ଦୁର୍ବୁଦ୍ଧିସ୍ତେନ ବାଲବଧୋ ହ୍ୟୟମ୍ ।
ଯୋ ହ୍ୟଧର୍ମମକାର୍ଯଂ ବା ବିଷୟେ ପାର୍ଥିବସ୍ୟ ତୁ । ୨୯ ।
କରୋତି ଚାଶ୍ରୀମୂଲଂ ତତ୍ ପୁରେ ବା ଦୁର୍ମତିର୍ନରଃ ।
କ୍ଷିପ୍ରଂ ଚ ନରକଂ ଯାତି ସ ଚ ରାଜା ନ ସଂଶୟଃ । ୩୦ ।
ଅଧୀତସ୍ୟ ଚ ତପ୍ତସ୍ୟ କର୍ମଣଃ ସୁକୃତସ୍ୟ ଚ ।
ଷଷ୍ଠଂ ଭଜତି ଭାଗଂ ତୁ ପ୍ରଜା ଧର୍ମେଣ ପାଲୟନ୍ । ୩୧ ।

---

ତପସ୍ୟା କରିବାକୁ ଲାଗିଲେ । ଏହି ପ୍ରକାରେ ତିନି ଯୁଗରେ ତିନି ବର୍ଣ୍ଣ ଯଥାକ୍ରମେ ତପ କରିବାକୁ ଲାଗିଲେ । ୨୪-୨୫ । ଏହି ରୂପେ ତପୋରୂପୀ ଧର୍ମ ତିନି ଯୁଗରେ ତିନି ବର୍ଣ୍ଣଙ୍କ ମଧ୍ୟରେ ପ୍ରତିଷ୍ଠିତ ହେଲା । କିନ୍ତୁ ହେ ନରଶ୍ରେଷ୍ଠ ! ଏହି ତିନି ଯୁଗରେ ଶୂଦ୍ରର ତପ କରିବାର ଅଧିକାର ନାହିଁ । ୨୬ । ହେ ନୃପଶ୍ରେଷ୍ଠ ! ହୀନବର୍ଣ୍ଣ ଶୂଦ୍ରମାନେ ମଧ୍ୟ ବିଶେଷ ତପ କରୁଛନ୍ତି । କଳିଯୁଗରେ ଶୂଦ୍ରଯୋନିରେ ଜାତ ଲୋକମାନେ ମଧ୍ୟ ତପଶ୍ଚର୍ଯ୍ୟା କରିବେ । ୨୭ । ହେ ରାଜନ୍ ! ଦ୍ୱାପର ଯୁଗରେ ଯଦି ଶୂଦ୍ର ତପ କରେ, ତେବେ ମଧ୍ୟ ତାହା ବଡ଼ ଅଧର୍ମ ଅଟେ; କିନ୍ତୁ ଆପଣଙ୍କ ରାଜ୍ୟରେ ଏବେ ଏକ ମହାତପସ୍ୱୀ ଦୁର୍ବୁଦ୍ଧି ଶୂଦ୍ର ତପସ୍ୟା କରୁଅଛି । ଏହିହେତୁରୁ ଏହି ବ୍ରାହ୍ମଣ ବାଳକର ମୃତ୍ୟୁ ହୋଇଅଛି । କାରଣ ଯେଉଁ ରାଜାଙ୍କ ରାଜ୍ୟରେ କୌଣସି ଅଧର୍ମ ବା ଅକାର୍ଯ୍ୟ ହୁଏ, ସେଠାରେ ଦୁର୍ମତି ଲୋକର ଅକାର୍ଯ୍ୟ ହେତୁରୁ ରାଜ୍ୟରେ ଦାରିଦ୍ର୍ୟ ବ୍ୟାପିଯାଏ ଏବଂ ସେହି ରାଜା ଶୀଘ୍ର ନରକଗାମୀ ହୁଅନ୍ତି, ଏଥିରେ ସନ୍ଦେହ ନାହିଁ । ୨୮-୩୦ । ଧର୍ମପୂର୍ବକ ପ୍ରଜାପାଳନ କରୁଥିବା ରାଜା ପ୍ରଜାର ବେଦାଧ୍ୟୟନ, ତପ ଓ ସୁକୃତର ଷଷ୍ଠ ଭାଗରୁ ଏକ ଭାଗ ପାଆନ୍ତି ।୩୧।

**ଷଡ୍‌ଭାଗସ୍ୟ ଚ ଲୋକାସୌ ରକ୍ଷତେ ନ ପ୍ରଜାଃ କଥମ୍ ।**
**ସ ତ୍ୱଂ ପୁରୁଷଶାର୍ଦ୍ଦୂଳ ମାର୍ଗସ୍ୱ ବିଷୟଂ ସ୍ୱକମ୍ । ୩୨ ।**
**ଦୁଷ୍କୃତଂ ଯତ୍ର ପଶ୍ୟେଥାସ୍ତତ୍ର ଯତ୍ନଂ ସମାଚର ।**
**ଏବଂ ଚେଦ୍ଧର୍ମବୃଦ୍ଧିଶ୍ଚ ନୃଣାଂ ଚାୟୁର୍ବିବର୍ଦ୍ଧନମ୍ ।**
**ଭବିଷ୍ୟତି ନରଶ୍ରେଷ୍ଠ ବାଲସ୍ୟାସ୍ୟ ଚ ଜୀବିତମ୍ । ୩୩ ।**

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଉତ୍ତରକାଣ୍ଡେ ନାରଦବଚନଂ ନାମ ଚତୁଃସପ୍ତତିତମଃ ସର୍ଗଃ ।

---

# ପଞ୍ଚସପ୍ତତିତମଃ ସର୍ଗଃ

## ଶମ୍ବୂକବଚଧଃ

**ନାରଦସ୍ୟ ତୁ ତଦ୍‌ବାକ୍ୟଂ ଶ୍ରୁତ୍ୱାମୃତମୟଂ ତଦା ।**
**ପ୍ରହର୍ଷମତୁଳଂ ଲେଭେ ଲକ୍ଷ୍ମଣଂ ଚେଦମବ୍ରବୀତ୍ । ୧ ।**
**ଗଚ୍ଛ ସୌମ୍ୟ ଦ୍ୱିଜଶ୍ରେଷ୍ଠଂ ସମାଶ୍ୱାସୟ ସୁବ୍ରତମ୍ ।**
**ବାଲସ୍ୟ ତୁ ଶରୀରଂ ତତ୍ତୈଲଦ୍ରୋଣ୍ୟାଂ ନିଧାପୟ । ୨ ।**

---

ରାଜା ଯେତେବେଳେ ପ୍ରଜାର ସୁକୃତାଦିର ଏକଷଷ୍ଠାଂଶ ପାଆନ୍ତି, ସେତେବେଳେ ସେ କାହିଁକି ପ୍ରଜାମାନଙ୍କୁ ଉଚିତ ନିୟମାନୁସାରେ ପାଳନ ନ କରିବେ ? ଅତଏବ ହେ ପୁରୁଷସିଂହ ! ଆପଣ ଏ ବିଷୟରେ ନିଜ ରାଜ୍ୟରେ ଅନୁସନ୍ଧାନ କରନ୍ତୁ । ୩୨ । ହେ ନରଶ୍ରେଷ୍ଠ ! ଆପଣ ଯେଉଁଠାରେ ପାପ ହେବାର ଦେଖିବେ ତାହାକୁ ନିରୋଧ କରନ୍ତୁ । ଏପରି କଲେ ଧର୍ମର ବୃଦ୍ଧି ହେବ, ମନୁଷ୍ୟର ଆୟୁ ବଢ଼ିବ ଏବଂ ଏହି ମୃତ ବ୍ରାହ୍ମଣ ବାଳକ ମଧ୍ୟ ଜୀବିତ ହେବ" । ୩୩ ।

---

## ୭୫ତମ ସର୍ଗ

### (ଶମ୍ବୁକ ତପସ୍ୟାର ଅନ୍ୱେଷଣ)

ନାରଦଙ୍କର ଅମୃତ ତୁଲ୍ୟ ବଚନ ଶୁଣି ରାମ ଅତିଶୟ ଆନନ୍ଦ ଲାଭ କଲେ ଏବଂ ଲକ୍ଷ୍ମଣଙ୍କୁ କହିଲେ ।୧। "ହେ ସୌମ୍ୟ ! ତୁମେ ଯାଅ, ସେହି ବ୍ରତାଚାରୀ ଶ୍ରେଷ୍ଠ ବ୍ରାହ୍ମଣଙ୍କୁ ଆଶ୍ୱାସନା ଦିଅ ଏବଂ ସେହି ମୃତ ବାଳକର ଶବକୁ ତୈଳପାତ୍ରରେ ରଖାଇ ଦିଅ ।୨।

ଗନ୍ଧୈଶ୍ଚ ପରମୋଦାରୈ ସ୍ତୈଲୈଶ୍ଚାପି ସୁଗନ୍ଧିଭିଃ ।
ଯଥା ନ କ୍ଷୀୟତେ ବାଲସ୍ତଥା ସୌମ୍ୟ ବିଧୀୟତାମ୍ । ୩ ।
ଯଥା ଶରୀରେ ବାଲସ୍ୟ ଗୁପ୍ତଃ ସନ୍ କ୍ଲିଷ୍ଟକର୍ମଣଃ ।
ବିପତ୍ତିଃ ପରିଭେଦୋ ବା ନ ଭବେଚ୍ଚ ତଥା କୁରୁ । ୪ ।
ଏବମାଦିଶ୍ୟ କାକୁତ୍ସ୍ଥୋ ଲକ୍ଷ୍ମଣଂ ଶୁଭଲକ୍ଷଣମ୍ ।
ମନସା ପୁଷ୍ପକଂ ଦଧ୍ୟାବାଗଚ୍ଛେତି ମହାଯଶାଃ । ୫ ।
ଇଙ୍ଗିତଂ ସ ତୁ ବିଜ୍ଞାୟ ପୁଷ୍ପକୋ ହେମଭୂଷିତଃ ।
ଆଜଗାମ ମୁହୂର୍ତ୍ତେନ ସମୀପଂ ରାଘବସ୍ୟ ବୈ । ୬ ।
ସୋଽବ୍ରବୀତ୍ ପ୍ରଣତୋ ଭୂତ୍ୱା ଅୟମସ୍ମି ନରାଧିପ ।
ବଶ୍ୟସ୍ତବ ମହାବାହୋ କିଙ୍କରଃ ସମୁପସ୍ଥିତଃ । ୭ ।
ଭାଷିତଂ ରୁଚିରଂ ଶ୍ରୁତ୍ୱା ପୁଷ୍ପକସ୍ୟ ନରାଧିପଃ ।
ଅଭିବାଦ୍ୟ ମହର୍ଷୀଂସ୍ତାନ୍ ବିମାନଂ ସୋଽଧ୍ୟରୋହତ । ୮ ।
ଧନୁର୍ଗୃହୀତ୍ୱା ତୂଣୀ ଚ ଖଡ୍ଗଂ ଚ ରୁଧିରପ୍ରଭମ୍ ।
ନିକ୍ଷିପ୍ୟ ନଗରେ ବୀରୌ ସୌମିତ୍ରିଭରତାବୁଭୌ । ୯ ।

---

ହେ ସୌମ୍ୟ ! ନାନାପ୍ରକାର ସୁଗନ୍ଧ ଦ୍ରବ୍ୟ ଏବଂ ସୁଗନ୍ଧି ତୈଳଦ୍ୱାରା ସେ ବାଳକର ଶବକୁ ଏପରି ବୁଡ଼ାଇ ରଖ ଯେପରିକି ତାହାର କୌଣସି ଅଂଶ କ୍ଷୟ ହୋଇ ନ ଯାଏ । ୩ । ସେହି ଶିଷ୍ଟାଚାରସ୍ପନ୍ନ ବାଳକର ଶରୀରକୁ ଏପରିଭାବରେ ଘୋଡ଼ାଇ ରଖ ଯେପରିକି ତାହାର ଆକୃତି ଖରାପ ହୋଇ ନ ଯାଏ କିମ୍ବା ତାହାର ଶରୀରର ଗ୍ରନ୍ଥିମାନ ଶିଥିଳ ହୋଇ ନ ଯାଏ" । ୪ । ମହାଯଶା ରାମ ଶୁଭଲକ୍ଷଣସମ୍ପନ୍ନ ଲକ୍ଷ୍ମଣଙ୍କୁ ଏହିପ୍ରକାର ଆଦେଶ ଦେଇ ମନ ମଧ୍ୟରେ ପୁଷ୍ପକ ବିମାନକୁ ସ୍ମରଣ କଲେ ଏବଂ ଏଠାକୁ ଆସ ବୋଲି କହିଲେ । ୫ । ସେହି ସୁବର୍ଣ୍ଣଭୂଷିତ ପୁଷ୍ପକ ବିମାନ ରାମଙ୍କର ଇଙ୍ଗିତ ଜାଣିପାରି ମୁହୂର୍ତ୍ତକ ମଧ୍ୟରେ ତାଙ୍କ ନିକଟରେ ଆସି ପହଞ୍ଚିଗଲା ।୬। ସେ ପ୍ରଣାମ କରି କହିଲା, "ହେ ମହାବାହୁ ରାଜନ୍ ! ମୁଁ ଆପଣଙ୍କର ଅଧୀନସ୍ଥ କିଙ୍କର ଏଇ ଆସି ଉପସ୍ଥିତ ହେଲି" । ୭ । ରାମ ପୁଷ୍ପକ ବିମାନର ଏହି ମଧୁର ବାକ୍ୟ ଶୁଣି ଓ ମହର୍ଷିମାନଙ୍କୁ ଅଭିବାଦନ କରି ସେହି ବିମାନ ଉପରେ ଆରୋହଣ କଲେ । ୮ । ସୁନ୍ଦର ଦୀପ୍ତିମାନ୍ ତରବାରି, ଧନୁ ଏବଂ ଶରମୁଣା ଧରି ଏବଂ ଭରତ ଓ ଲକ୍ଷ୍ମଣଙ୍କୁ ନଗରରକ୍ଷା, କାର୍ଯ୍ୟ ସମର୍ପଣ କରି ରାମ ପଶ୍ଚିମଦିଗକୁ ଗଲେ ଏବଂ ସେଠାରେ

ପ୍ରାୟାତ୍ ପ୍ରତୀଚୀଂ ହରିତଂ ବିଚିନ୍ୱଂଶ୍ଚ ତତସ୍ତତଃ ।
ଉତ୍ତରାମଗମଚ୍ଛ୍ରୀମାନ୍ ଦିଶଂ ହିମବତାବୃତାମ୍ । ୧୦ ।
ଅପଶ୍ୟମାନସ୍ତତ୍ରାପି ସ୍ୱଳ୍ପମପ୍ୟଥ ଦୁଷ୍କୃତମ୍ ।
ପୂର୍ବାମପି ଦିଶଂ ସର୍ବାମଥାପଶ୍ୟନ୍ନରାଧିପଃ । ୧୧ ।
ପ୍ରବିଶୁଦ୍ଧସମାଚାରାମାଦର୍ଶତଳନିର୍ମଳାମ୍ ।
ପୁଷ୍ପକସ୍ଥୋ ମହାବାହୁସ୍ତଦାପଶ୍ୟନ୍ନରାଧିପଃ । ୧୨ ।
ଦକ୍ଷିଣାଂ ଦିଶମାକ୍ରାମତ୍ତତୋ ରାଜର୍ଷିନନ୍ଦନଃ ।
ଶୈବଲସ୍ୟୋତ୍ତରେ ପାର୍ଶ୍ୱେ ଦଦର୍ଶ ସୁମହତ୍ ସରଃ । ୧୩ ।
ତସ୍ମିନ୍ ସରସି ତପ୍ୟନ୍ତଂ ତାପସଂ ସୁମହତ୍ତପଃ ।
ଦଦର୍ଶ ରାଘବଃ ଶ୍ରୀମାଁଲ୍ଲମ୍ବମାନମଧୋମୁଖମ୍ । ୧୪ ।
ରାଘବସ୍ତମୁପାଗମ୍ୟ ତପ୍ୟନ୍ତଂ ତପ ଉତ୍ତମମ୍ ।
ଉବାଚ ସ ତଦା ବାକ୍ୟଂ ଧନ୍ୟସ୍ତ୍ୱମସି ସୁବ୍ରତ । ୧୫ ।
କସ୍ୟାଂ ଯୋନ୍ୟାଂ ତପୋବୃଦ୍ଧ ବର୍ତ୍ତସେ ଦୃଢ଼ବିକ୍ରମ ।
କୌତୂହଲାତ୍ତ୍ୱାଂ ପୃଚ୍ଛାମି ରାମୋ ଦାଶରଥିର୍ହ୍ୟହମ୍ । ୧୬ ।

---

ଇତସ୍ତତଃ ଅନ୍ୱେଷଣ କରି ତତ୍ପରେ ହିମାଳୟ ପର୍ବତଦ୍ୱାରା ଆଚ୍ଛାଦିତ ଉତ୍ତର ଦିଗକୁ ଗଲେ । ୯-୧୦ । ସେଠାରେ ମଧ୍ୟ କୌଣସି ପ୍ରକାର ପାପକାର୍ଯ୍ୟ ଦେଖି ନ ପାରି ରାଜା ରାମ ପୂର୍ବଦିଗକୁ ଗଲେ ଏବଂ ସେଠାରେ ଚାରିଆଡ଼ ଭଲକରି ଖୋଜିବାକୁ ଲାଗିଲେ । ୧୧ । ସେ ଦିଗର ଲୋକେ ବିଶେଷ ଶୁଦ୍ଧାଚାରୀ ହୋଇଥିବାରୁ ତାହା ଦର୍ପଣ ସଦୃଶ ନିର୍ମଳ ଥିଲା । ସେତେବେଳେ ରାମ ପୁଷ୍ପକ ବିମାନରେ ବସିରହି ସମସ୍ତ ଦେଖିଲେ । ୧୨ । ଅନନ୍ତର ରାଜର୍ଷିନନ୍ଦନ ରାମ ଦକ୍ଷିଣ ଦିଗକୁ ଆସିଲେ । ସେଠାରେ ଶୈବଳ ପର୍ବତର ଉତ୍ତର ପାର୍ଶ୍ୱରେ ଏକ ବଡ଼ ପୁଷ୍କରିଣୀ ଦେଖିଲେ ।୧୩। ରାମ ସେହି ସରୋବରଠାରେ ଜଣେ ତପସ୍ୱୀଙ୍କୁ ଦେଖିଲେ, ଯେକି ମୁହଁ ତଳକୁ ରଖି ଝୁଲିରହି ଅତି କଠୋର ତପସ୍ୟା କରୁଛନ୍ତି । ୧୪ । ରାଜା ରାମଚନ୍ଦ୍ର ତପସ୍ୟା କରୁଥିବା ସେହି ଉତ୍କୃଷ୍ଟ ତପସ୍ୱୀଙ୍କ ନିକଟକୁ ଯାଇ କହିଲେ "ହେ ସୁବ୍ରତ ! ତୁମେ ଧନ୍ୟ ଅଟ" ।୧୫। ହେ ଦୃଢ଼ବିକ୍ରମ ତପୋବୃଦ୍ଧ ! ତୁମେ କେଉଁ ବର୍ଣ୍ଣର ଲୋକ ଅଟ, ମୁଁ କୌତୂହଳବଶରୁ ଏହା ପଚାରୁଅଛି । ମୁଁ ମହାରାଜ ଦଶରଥଙ୍କର ପୁତ୍ର ଏବଂ ମୋର ନାମ

କୋଽର୍ଥୋ ମନୀଷିତସ୍ତୁଭ୍ୟଂ ସ୍ୱର୍ଗଲାଭଃ ପରୋଽଥବା ।
ବରାଶ୍ରୟୋ ଯଦର୍ଥଂ ତ୍ୱଂ ତପସ୍ୟସି ସୁଦୁଷ୍କରମ୍ । ୧୭ ।
ଯମାଶ୍ରିତ୍ୟ ତପସ୍ତପ୍ତଂ ଶ୍ରୋତୁମିଚ୍ଛାମି ତାପସ ।
ବ୍ରାହ୍ମଣୋ ବାସି ଭଦ୍ରଂ ତେ କ୍ଷତ୍ରିୟୋ ବାସି ଦୁର୍ଜୟଃ ।
ବୈଶ୍ୟସ୍ତୃତୀୟବର୍ଣୋ ବା ଶୂଦ୍ରୋ ବା ସତ୍ୟବାକ୍ ଭବ । ୧୮ ।
ଇତ୍ୟେବମୁକ୍ତଃ ସ ନରାଧିପେନ
ହ୍ୟବାକ୍ଶିରା ଦାଶରଥାୟ ତସ୍ମୈ ।
ଉବାଚ ଜାତିଂ ନୃପପୁଙ୍ଗବାୟ
ଯତ୍କାରଣେ ଚୈବ ତପଃ ପ୍ରୟତ୍ନଃ । ୧୯ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ଶମ୍ବୁକବଚଯୋ ନାମ ପଞ୍ଚସପ୍ତତିତମଃ ସର୍ଗଃ ।

---

ରାମ କହେ ।୧୬। ଏହି ତପ ତୁମେ କାହିଁକି କରୁଛ; ତୁମର ଅଭୀଷ୍ଟ କଅଣ ? ତୁମେ କଅଣ ସ୍ୱର୍ଗଲାଭ କିମ୍ବା ପରମପଦ ଲାଭ ଅଥବା ଅନ୍ୟ କୌଣସି ବର ପାଇବା ନିମନ୍ତେ ଏପରି କଠିନ ତପସ୍ୟା କରୁଅଛ ? ୧୭ । ତୁମେ ଯେ ଉଦ୍ଦେଶ୍ୟରେ ଏ ତପସ୍ୟା କରୁଅଛ ତାହା ମୁଁ ଜାଣିବାକୁ ଚାହୁଁଛି । ତୁମେ ସତ୍ୟକଥା କହ । ତୁମେ ବ୍ରାହ୍ମଣ ନା ଦୁର୍ଜେୟ କ୍ଷତ୍ରିୟ ନା ତୃତୀୟ ବର୍ଣ୍ଣ ବୈଶ୍ୟ ନା ଶୂଦ୍ର, କଅଣ ତୁମେ ?” ।୧୮। ରାଜଶ୍ରେଷ୍ଠ ରାମଚନ୍ଦ୍ର ଏପରି କହିବାରୁ ଅଧୋମୁଖରେ ତପସ୍ୟା କରୁଥିବା ସେ ତପସ୍ୱୀ ତାଙ୍କୁ ନିଜର ଜାତି ଏବଂ ତପସ୍ୟା କରିବାର ଉଦ୍ଦେଶ୍ୟ କହିଲେ । ୧୯ ।

# ଷଟ୍‌ସପ୍ତତିତମଃ ସର୍ଗଃ

## ଶମ୍ବୂକବଧଃ

ତସ୍ୟ ତଦ୍ ବଚନଂ ଶ୍ରୁତ୍ୱା ରାମସ୍ୟାକ୍ଲିଷ୍ଟକର୍ମଣଃ ।
ଅବାକ୍‌ଶିରାସ୍ତଥା ଭୂତ୍ୱା ବାକ୍ୟମେତଦୁବାଚ ହ । ୧ ।
ଶୂଦ୍ରଯୋନ୍ୟାଂ ପ୍ରସୂତୋଽସ୍ମି ଶମ୍ବୂକୋ ନାମ ନାମତଃ ।
ଦେବତ୍ୱଂ ପ୍ରାର୍ଥୟେ ରାମ ସଶରୀରୋ ମହାଯଶଃ । ୨ ।
ନ ମିଥ୍ୟାହଂ ବଦେ ରାମ ଦେବଲୋକଜିଗୀଷୟା ।
ଶୂଦ୍ରଂ ମାଂ ବିଦ୍ଧି କାକୁତ୍ସ୍ଥ ତପ ଉଗ୍ରଂ ସମାସ୍ଥିତମ୍ । ୩ ।
ଭାଷତସ୍ତସ୍ୟ ଶୂଦ୍ରସ୍ୟ ଖଡ୍ଗଂ ସୁରୁଚିରପ୍ରଭମ୍ ।
ନିଷ୍କୃଷ୍ୟ କୋଶାଦ୍‌ବିମଲଂ ଶିରଶ୍ଚିଚ୍ଛେଦ ରାଘବଃ । ୪ ।
ତସ୍ମିନ୍ ଶୂଦ୍ରେ ହତେ ଦେବାଃ ସେନ୍ଦ୍ରାଃ ସାଗ୍ନିପୁରୋଗମାଃ ।
ସାଧୁ ସାଧ୍ୱିତି କାକୁତ୍ସ୍ଥଂ ପ୍ରଶଶଂସୁର୍ମୁହୁର୍ମୁହୁଃ । ୫ ।
ପୁଷ୍ପବୃଷ୍ଟିର୍ମହତ୍ୟାସୀଦ୍ଦିବ୍ୟାନାଂ ସୁସୁଗନ୍ଧିନାମ୍ ।
ପୁଷ୍ପାଣାଂ ବାୟୁମୁକ୍ତାନାଂ ସର୍ବତଃ ପ୍ରପପାତ ହ । ୬ ।

---

## ୭୬ତମ ସର୍ଗ

### ( ଶମ୍ବୂକବଧ )

ଅକ୍ଲିଷ୍ଟକର୍ମା ରାମଙ୍କର ସେ କଥା ଶୁଣି ସେହି ତପସ୍ୱୀ ସେହିପରି ଅଧୋମୁଖ ହୋଇ କହିଲେ ।୧। "ହେ ରାମ ! ମୁଁ ଶୂଦ୍ରଯୋନିରେ ଜନ୍ମହୋଇଅଛି । ମୋର ନାମ ଶମ୍ବୂକ ଅଟେ । ମୁଁ ଏହି ଶରୀରରେ ଦେବତ୍ୱ ଲାଭ କରିବା ଇଚ୍ଛା କରି ଉଗ୍ର ତପସ୍ୟା କରୁଅଛି ।୨। ହେ ରାମ ! ମୁଁ ଦେବଲୋକକୁ ଜୟକରିବା ପାଇଁ ଇଚ୍ଛାକରୁଛି, ସୁତରାଂ ମୁଁ କଦାପି ମିଥ୍ୟା କହୁ ନାହିଁ । ହେ କାକୁତ୍ସ୍ଥ ! ମୋତେ ଶୂଦ୍ର ବୋଲି ଜାଣ; ମୁଁ ଉଗ୍ର ତପସ୍ୟା ଆଚରଣ କରୁଛି ।୩। ରାମ ସେହି ଶୂଦ୍ରର ମୁଖରୁ ଏ କଥା ଶୁଣି ଏକ ଚକଚକଆ ଖଣ୍ଡା ଖାପରୁ ଟାଣି ବାହାର କଲେ ଏବଂ ତଦ୍ୱାରା ତାହାର ମୁଣ୍ଡ କାଟିପକାଇଲେ ।୪। ସେ ଶୂଦ୍ର ମରିଯିବାରୁ ଇନ୍ଦ୍ର ଏବଂ ଅଗ୍ନି ପ୍ରଭୃତି ସମସ୍ତ ଦେବତା ସାଧୁ ସାଧୁ ବୋଲି କହି ରାମଙ୍କୁ ବାରମ୍ବାର ପ୍ରଶଂସା କରିବାକୁ ଲାଗିଲେ ।୫। ସେତେବେଳେ ଦିବ୍ୟସୁଗନ୍ଧ ପୁଷ୍ପମାନଙ୍କର ପ୍ରଚୁର ବୃଷ୍ଟି ହେଲା । ପବନବେଗରେ ଛିଣ୍ଡି ପୁଷ୍ପମାନ ଚାରିଆଡ଼େ ପଡ଼ିଲା ।୬।

ସୁପ୍ରୀତାସ୍ତାବ୍ରୁବନ୍ ରାମଂ ଦେବାଃ ସତ୍ୟପରାକ୍ରମମ୍ ।
ସୁରକାର୍ଯମିଦଂ ସୌମ୍ୟ ସୁକୃତଂ ତେ ମହାମତେ । ୭ ।
ଗୃହାଣ ଚ ବରଂ ସୌମ୍ୟ ଯତ୍ତ୍ୱମିଚ୍ଛସ୍ୟରିନ୍ଦମ ।
ସ୍ୱର୍ଗଭାଙ୍‌ ନ ହି ଶୂଦ୍ରୋଽୟଂ ତ୍ୱତ୍କୃତେ ରଘୁନନ୍ଦନ । ୮ ।
ଦେବାନାଂ ଭାଷିତଂ ଶ୍ରୁତ୍ୱା ରାଘବଃ ସୁସମାହିତଃ ।
ଉବାଚ ପ୍ରାଞ୍ଜଳିର୍ବାକ୍ୟଂ ସହସ୍ରାକ୍ଷଂ ପୁରନ୍ଦରମ୍ । ୯ ।
ଯଦି ଦେବାଃ ପ୍ରସନ୍ନା ମେ ଦ୍ୱିଜପୁତ୍ରଃ ସ ଜୀବତୁ ।
ଦିଶନ୍ତୁ ବରମେତଂ ମ ଈପ୍ସିତଂ ପରମଂ ମମ । ୧୦ ।
ମମାପଚାରାଦ୍‌ବାଲୋଽସୌ ବ୍ରାହ୍ମଣସ୍ୟୈକପୁତ୍ରକଃ ।
ଅପ୍ରାପ୍ତକାଲଃ କାଲେନ ନୀତୋ ବୈବସ୍ୱତକ୍ଷୟମ୍ । ୧୧ ।
ତଂ ଜୀବୟତ ଭଦ୍ରଂ ବୋ ନାନୃତଂ କର୍ତୁମର୍ହଥ ।
ଦ୍ୱିଜସ୍ୟ ସଂଶ୍ରୁତୋଽର୍ଥୋ ମେ ଜୀବୟିଷ୍ୟାମି ତେ ସୁତମ୍ । ୧୨ ।
ରାଘବସ୍ୟ ତୁ ତଦ୍‌ବାକ୍ୟଂ ଶ୍ରୁତ୍ୱା ବିବୁଧସତ୍ତମାଃ ।
ପ୍ରତ୍ୟୂଚୂ ରାଘବଂ ପ୍ରୀତା ଦେବାଃ ପ୍ରୀତିସମନ୍ୱିତମ୍ । ୧୩ ।

---

ସତ୍ୟପରାକ୍ରମ ରାମଙ୍କଠାରେ ପ୍ରସନ୍ନ ହୋଇ ଦେବତାମାନେ କହିଲେ, "ହେ ମହାମତେ ! ଏ କାର୍ଯ୍ୟ ଦେବତାମାନଙ୍କର କାର୍ଯ୍ୟ; ଏହା ସମ୍ପାଦନ କରି ତୁମେ ଅତି ଭଲ କାର୍ଯ୍ୟ କରିଅଛ । ୭ । ହେ ଶତ୍ରୁଦମନକାରୀ ସୌମ୍ୟ ରାମ ! ତୁମ୍ଭର କୃପାରୁହିଁ ଏ ଶୂଦ୍ର ସ୍ୱର୍ଗଲାଭ କରିପାରିଲା ନାହିଁ, ସୁତରାଂ ତୁମେ ଯାହା ଇଚ୍ଛା କରୁଛ ସେ ବର ଗ୍ରହଣ କର" । ୮ । ସତ୍ୟପରାକ୍ରମ ରାମ ଦେବତାମାନଙ୍କର ଏ କଥା ଶୁଣି ହାତ ଯୋଡ଼ି ସହସ୍ରାକ୍ଷ ଇନ୍ଦ୍ରଙ୍କୁ କହିଲେ । ୯ । "ହେ ଦେବଗଣ ! ଆପଣମାନେ ଯଦି ମୋ ଉପରେ ପ୍ରସନ୍ନ ହୋଇଛନ୍ତି ତେବେ ମୋତେ ଏହି ବର ଆଦେଶ କରନ୍ତୁ ଯେ ସେ ବ୍ରାହ୍ମଣପୁତ୍ର ପୁଣି ଜୀଇ ଉଠୁ, ଏହାହିଁ ମୋର ପ୍ରଧାନ ଅଭିଳାଷ ଅଟେ । ୧୦ । ମୋର ଅପରାଧହେତୁରୁ ବ୍ରାହ୍ମଣର ସେହି ଏକମାତ୍ର ପୁତ୍ରର ଅକାଳରେ ମୃତ୍ୟୁ ହୋଇଅଛି ।୧୧। ହେ ଦେବଗଣ ! ଆପଣମାନଙ୍କର ମଙ୍ଗଳ ହେଉ, ଆପଣମାନେ ସେ ବାଳକକୁ ଜୀବିତ କରି ଦିଅନ୍ତୁ । କାରଣ ମୁଁ ସେ ବ୍ରାହ୍ମଣକୁ ପ୍ରତିଶ୍ରୁତି ଦେଇଆସିଛି ଯେ ତୁମ୍ଭର ପୁତ୍ରକୁ ବଞ୍ଚାଇଦେବି । ମୋର ସେ ପ୍ରତିଶ୍ରୁତିକୁ ମିଥ୍ୟା କରିଦିଅନ୍ତୁ ନାହିଁ" । ୧୨ । ରାମଙ୍କର ଏହି କଥା ଶୁଣି ଦେବଶ୍ରେଷ୍ଠମାନେ ପ୍ରୀତିପୂର୍ବକ ତାଙ୍କୁ ଉତ୍ତର ଦେଲେ ।୧୩।

ନିର୍ବୃତୋ ଭବ କାକୁତ୍‌ସ୍ଥ ସୋଽସ୍ମିନ୍ନହନି ବାଳକଃ ।
ଜୀବିତଂ ପ୍ରାପ୍ତବାନ୍ ଭୂୟଃ ସମେତଶ୍ଚାପି ବନ୍ଧୁଭିଃ ।୧୪।
ଯସ୍ମିନ୍ ମୁହୂର୍ତ୍ତେ କାକୁତ୍‌ସ୍ଥ ଶୂଦ୍ରୋଽୟଂ ବିନିପାତିତଃ ।
ତସ୍ମିନ୍ ମୁହୂର୍ତ୍ତେ ବାଲୋଽସୌ ଜୀବେନ ସମଯୁଜ୍ୟତ ।୧୫।
ସ୍ୱସ୍ତି ପ୍ରାପ୍ନୁହି ଭଦ୍ରଂ ତେ ସାଧୁ ଯାମ ନରର୍ଷଭ ।
ଅଗସ୍ତ୍ୟସ୍ୟାଶ୍ରମପଦଂ ଦ୍ରଷ୍ଟୁମିଚ୍ଛାମ ରାଘବ ।୧୬।
ତସ୍ୟ ଦୀକ୍ଷା ସମାପ୍ତା ହି ବ୍ରହ୍ମର୍ଷେ ସୁମହାଦ୍ୟୁତେଃ ।
ଦ୍ୱାଦଶଂ ହି ଗତଂ ବର୍ଷଂ ଜଲଶୟ୍ୟାଂ ସମାସତଃ ।୧୭।
କାକୁତ୍‌ସ୍ଥ ତଦ୍‌ଗମିଷ୍ୟାମୋ ମୁନିଂ ସମଭିନନ୍ଦିତୁମ୍ ।
ତ୍ୱଂ ଚାପ୍ୟାଗଚ୍ଛ ଭଦ୍ରଂ ତେ ଦ୍ରଷ୍ଟୁଂ ତମୃଷିସତ୍ତମମ୍ ।୧୮।
ସ ତଥେତି ପ୍ରତିଜ୍ଞାୟ ଦେବାନାଂ ରଘୁନନ୍ଦନଃ ।
ଆରୁରୋହ ବିମାନଂ ତଂ ପୁଷ୍ପକଂ ହେମଭୂଷିତମ୍ ।୧୯।
ତତୋ ଦେବାଃ ପ୍ରୟାତାସ୍ତେ ବିମାନୈର୍ବହୁବିସ୍ତରୈଃ ।
ରାମୋଽପ୍ୟନୁଜଗାମାଶୁ କୁମ୍ଭଯୋନେସ୍ତପୋବନମ୍ ।୨୦।
ଦୃଷ୍ଟ୍ୱା ତୁ ଦେବାନ୍ ସଂପ୍ରାପ୍ତାନଗସ୍ତ୍ୟସ୍ତପସାଂ ନିଧିଃ ।
ଅର୍ଚ୍ଚୟାମାସ ଧର୍ମାତ୍ମା ସର୍ବାଂସ୍ତାନବିଶେଷତଃ ।୨୧।

---

"ହେ କାକୁତ୍ସ୍ଥ ! ତୁମେ ଏବେ ନିଶ୍ଚିନ୍ତ ହୁଅ, ଆଜହିଁ ସେ ବାଳକ ପୁଣି ଜୀବନ ପାଇ ନିଜ ବନ୍ଧୁମାନଙ୍କ ସହିତ ମିଳିତ ହୋଇଅଛି ।୧୪। ହେ କାକୁତ୍ସ୍ଥ ! ତୁମେ ଯେଉଁ ମୁହୂର୍ତ୍ତରେ ସେ ଶୂଦ୍ରକୁ ମାରିଦେଇଛ, ସେହି ମୁହୂର୍ତ୍ତରେ ସେ ବାଳକଠାରେ ଜୀବନ ସଞ୍ଚାର ହୋଇଅଛି ।୧୫। ହେ ନରଶ୍ରେଷ୍ଠ ରାଘବ ! ତୁମ୍ଭର ମଙ୍ଗଳ ହେଉ, ତୁମେ ସ୍ୱସ୍ତି ଲାଭ କର, ଏବେ ଆମ୍ଭେମାନେ ଅଗସ୍ତ୍ୟ ମହର୍ଷିଙ୍କ ଆଶ୍ରମ ଦେଖିବାକୁ ଯାଉଅଛୁଁ ।୧୬। ସେହି ମହାତେଜସ୍ୱୀ ବ୍ରହ୍ମର୍ଷିଙ୍କର ଯଜ୍ଞଦୀକ୍ଷା ସମାପ୍ତ ହୋଇଅଛି । ତାଙ୍କର ବାରବର୍ଷ କାଳ ଜଳଶଯ୍ୟା ଶେଷ ହୋଇଅଛି ।୧୭। ହେ ରାମ ! ଆମେମାନେ ସେଠାକୁ ଯାଇ ମୁନିଙ୍କୁ ଅଭିନନ୍ଦନ କରିବୁଁ । ତୁମ୍ଭର ମଙ୍ଗଳ ହେଉ, ତୁମେ ମଧ୍ୟ ସେହି ମୁନିଶ୍ରେଷ୍ଠଙ୍କୁ ଦେଖିବା ପାଇଁ ଚାଲ" ।୧୮। ରଘୁନନ୍ଦନ ରାମ ତାହାହିଁ ହେଉ ବୋଲି ଦେବତାମାନଙ୍କୁ ପ୍ରତିଶ୍ରୁତି ଦେଇ ସ୍ୱର୍ଣ୍ଣଭୂଷିତ ପୁଷ୍ପକ ବିମାନରେ ବସିଲେ ।୧୯। ଅନନ୍ତର ଦେବତାମାନେ ନିଜର ଅତି ବଡ଼ ବଡ଼ ବିମାନମାନଙ୍କରେ ବସି ଯାତ୍ରା କଲେ । ରାମ ମଧ୍ୟ ଅଗସ୍ତ୍ୟଙ୍କ ତପୋବନକୁ ସେମାନଙ୍କ ପଛେ ପଛେ ସତ୍ୱର ଗଲେ ।୨୦। ତପସ୍ୱୀ ଧର୍ମାତ୍ମା ଅଗସ୍ତ୍ୟ ଦେବତାମାନଙ୍କୁ ଆସିଥିବାର ଦେଖି ସେମାନଙ୍କୁ ସମସ୍ତଙ୍କୁ ସମାନଭାବରେ ଅର୍ଚ୍ଚନା କଲେ ।୨୧।

ପ୍ରତିଗୃହ୍ୟ ତତଃ ପୂଜାଂ ସଂପୂଜ୍ୟ ଚ ମହାମୁନିମ୍ ।
ଜଗ୍ମୁସ୍ତେ ତ୍ରିଦଶା ହୃଷ୍ଟା ନାକପୃଷ୍ଠଂ ସହାନୁଗୈଃ । ୨୨ ।
ଗତେଷୁ ତେଷୁ କାକୁତ୍ସ୍ଥଃ ପୁଷ୍ପକାଦବରୁହ୍ୟ ଚ ।
ତତୋଽଭିବାଦୟାମାସ ହ୍ୟଗସ୍ତ୍ୟମୃଷିସତ୍ତମମ୍ । ୨୩ ।
ସୋଽଭିବାଦ୍ୟ ମହାତ୍ମାନଂ ଜ୍ୱଲନ୍ତମିବ ତେଜସା ।
ଆତିଥ୍ୟଂ ପରମଂ ପ୍ରାପ୍ୟ ନିଷସାଦ ନରାଧିପଃ । ୨୪ ।
ତମୁବାଚ ମହାତେଜାଃ କୁମ୍ଭଯୋନିର୍ମହାତପାଃ ।
ସ୍ୱାଗତଂ ତେ ନରଶ୍ରେଷ୍ଠ ଦିଷ୍ଟ୍ୟା ପ୍ରାପ୍ତୋଽସି ରାଘବ । ୨୫ ।
ତ୍ୱଂ ମେ ବହୁମତୋ ରାମ ଗୁଣୈର୍ବହୁଭିରୁତ୍ତମୈଃ ।
ଅତିଥିଃ ପୂଜନୀୟଶ୍ଚ ମମ ନିତ୍ୟଂ ହୃଦି ସ୍ଥିତଃ । ୨୬ ।
ସୁରା ହି କଥୟନ୍ତି ତ୍ୱାମାଗତଂ ଶୂଦ୍ରଘାତନମ୍ ।
ବ୍ରାହ୍ମଣସ୍ୟ ତୁ ଧର୍ମେଣ ତ୍ୱୟା ଜୀବାପିତଃ ସୁତଃ । ୨୭ ।
ଉଷ୍ୟତାଂ ଚେହ ରଜନୀଂ ସକାଶେ ମମ ରାଘବ ।
ପ୍ରଭାତେ ପୁଷ୍ପକେଣ ତ୍ୱଂ ଗନ୍ତାସି ପୁରମେବ ହି । ୨୮ ।

---

ଦେବତାମାନେ ଅଗସ୍ତ୍ୟଙ୍କର ପୂଜା ଗ୍ରହଣ କରି ଏବଂ ତାଙ୍କୁ ସମ୍ମାନପ୍ରଦର୍ଶନ କରି ନିଜର ଅନୁଗାମୀମାନଙ୍କ ସହିତ ଆନନ୍ଦମନରେ ସ୍ୱର୍ଗରାଜ୍ୟକୁ ଚାଲିଗଲେ । ୨୨ । ଦେବତାମାନେ ଚାଲିଯିବା ପରେ ରାମ ପୁଷ୍ପକବିମାନରୁ ଓହ୍ଲାଇ ଋଷିଶ୍ରେଷ୍ଠ ଅଗସ୍ତ୍ୟଙ୍କୁ ଅଭିବାଦନ କଲେ । ୨୩ । ନରାଧିପ ରାମ ନିଜ ତେଜରେ ପ୍ରଜ୍ୱଳିତ ହେଉଥିବା ମହାତ୍ମା ଅଗସ୍ତ୍ୟଙ୍କୁ ଅଭିବାଦନ କରି ଏବଂ ତାଙ୍କଠାରୁ ଉତ୍କୃଷ୍ଟ ଆତିଥ୍ୟ ଗ୍ରହଣ କରି ତାଙ୍କ ନିକଟରେ ବସିଲେ । ୨୪ । ମହାତେଜା ମହାତପସ୍ୱୀ ଅଗସ୍ତ୍ୟ ରାମଙ୍କୁ କହିଲେ, "ହେ ନରଶ୍ରେଷ୍ଠ ରାଘବ ! ମୁଁ ତୁମଙ୍କୁ ସ୍ୱାଗତ କରୁଅଛି । ମୋର ସୌଭାଗ୍ୟ ଯେ ତୁମେ ଏଠାରେ ଆସି ପହଞ୍ଚିଛ । ୨୫ । ହେ ରାମ ! ତୁମେ ବହୁ ସଦ୍‌ଗୁଣସମ୍ପନ୍ନ ହୋଇଥିବାରୁ ମୁଁ ତୁମଙ୍କୁ ସମ୍ମାନ କରେ । ତୁମେ ମୋର ପୂଜନୀୟ ଅତିଥି ଏବଂ ସବୁବେଳେ ମୋ ହୃଦୟ ମଧ୍ୟରେ ତୁମେ ବାସକରି ରହିଅଛ । ୨୬ । ଦେବଗଣ ମୋତେ କହିଗଲେ ଯେ ତୁମେ ଶୂଦ୍ର ତପସ୍ୱୀକୁ ହତ୍ୟାକରି ଏଠାକୁ ଆସିଛ ଏବଂ ତୁମେ ଧର୍ମ ରକ୍ଷାକରି ବ୍ରାହ୍ମଣର ପୁଅକୁ ବଞ୍ଚାଇ ଦେଇଅଛ ।୨୭। ହେ ରାଘବ ! ତୁମେ ମୋ ନିକଟରେ ଆଜ ରାତିକ ରହ ଏବଂ କାଲି ସକାଳେ ପୁଷ୍ପକରେ ବସି

ତ୍ୱଂ ହି ନାରାୟଣଃ ଶ୍ରୀମାଂସ୍ତ୍ୱୟି ସର୍ବଂ ପ୍ରତିଷ୍ଠିତମ୍ ।
ତ୍ୱଂ ପ୍ରଭୁଃ ସର୍ବଭୂତାନାଂ ପୁରୁଷସ୍ତ୍ୱଂ ସନାତନଃ । ୨୯ ।
ଇଦଂ ଚାଭରଣଂ ସୌମ୍ୟ ନିର୍ମିତଂ ବିଶ୍ୱକର୍ମଣା ।
ଦିବ୍ୟଂ ଦିବ୍ୟେନ ବପୁଷା ଦୀପ୍ୟମାନଂ ସ୍ୱତେଜସା । ୩୦ ।
ପ୍ରତିଗୃହ୍ଣୀଷ୍ୱ କାକୁତ୍ସ୍ଥ ମତ୍ପ୍ରିୟଂ କୁରୁ ରାଘବ ।
ଦତ୍ତସ୍ୟ ହି ପୁନର୍ଦାନେ ସୁମହତ୍ ଫଲମୁଚ୍ୟତେ । ୩୧ ।
ଭରଣେ ହି ଭବାନ୍ ଶକ୍ତଃ ସେନ୍ଦ୍ରାଣାଂ ମରୁତାମପି ।
ତ୍ୱଂ ହି ଶକ୍ତସ୍ତାରୟିତୁଂ ସେନ୍ଦ୍ରାନପି ଦିବୌକସଃ । ୩୨ ।
ତସ୍ମାତ୍ ପ୍ରଦାସ୍ୟେ ବିଧିବତ୍ତତ୍ ପ୍ରତୀଚ୍ଛ ନରାଧିପ ।
ଦିବ୍ୟମାଭରଣଂ ଚିତ୍ରଂ ପ୍ରଦୀପ୍ତମିବ ଭାସ୍କରମ୍ । ୩୩ ।
ଅଥୋବାଚ ମହାତ୍ମାନମିକ୍ଷ୍ୱାକୂଣାଂ ମହାରଥଃ ।
ରାମୋ ମତିମତାଂ ଶ୍ରେଷ୍ଠଃ କ୍ଷତ୍ରଧର୍ମମନୁସ୍ମରନ୍ । ୩୪ ।
ପ୍ରତିଗ୍ରହୋଽୟଂ ଭଗବନ୍ ବ୍ରାହ୍ମଣସ୍ୟ ବିଗର୍ହିତଃ ।
ଗୃହ୍ଣୀୟାଂ କ୍ଷତ୍ରିୟୋଽହଂ ବୈ କଥଂ ବ୍ରାହ୍ମଣପୂଜିତ ।୩୫।

---

ନିଜ ରାଜଧାମକୁ ଯିବ ।୨୮। ତୁମେ ସ୍ୱୟଂ ଶ୍ରୀମନ୍ ନାରାୟଣ ଅଟ ଏବଂ ତୁମ୍ଭଠାରେ ସମସ୍ତ ଜଗତ ପ୍ରତିଷ୍ଠିତ ହୋଇ ରହିଅଛି । ତୁମେ ସବୁ ପ୍ରାଣୀଙ୍କର ପ୍ରଭୁ ଏବଂ ତୁମେହିଁ ସନାତନ ପୁରୁଷ ଅଟ ।୨୯। ହେ ସୌମ୍ୟ ! ଏହି ଦିବ୍ୟ ଆଭରଣକୁ ବିଶ୍ୱକର୍ମା ତିଆରି କରିଥିଲେ । ଏହା ନିଜର ଦୀପ୍ତିରେ ଦେଦୀପ୍ୟମାନ ହେଉଅଛି ।୩୦। ହେ ରାଘବ ! ତୁମେ ଏହାକୁ ଗ୍ରହଣ କରି ମୋର ପ୍ରିୟକାର୍ଯ୍ୟ କର । ଦାନରେ ପାଇଥିବା ଜିନିଷକୁ ପୁଣି ଦାନ କରିବାରେ ମହାଫଳ ଲାଭ ହୁଏ ବୋଲି ଲୋକେ କହନ୍ତି ।୩୧। ତୁମେହିଁ ଏହି ଅଳଙ୍କାର ପିନ୍ଧିବା ପାଇଁ ସମର୍ଥ ଏବଂ ତୁମେ ଇନ୍ଦ୍ରଙ୍କ ସହିତ ସମସ୍ତ ସ୍ୱର୍ଗବାସୀ ଦେବତାଙ୍କୁ ତାରିବାପାଇଁ ସମର୍ଥ ଅଟ ।୩୨। ସୁତରାଂ ହେ ନରାଧିପ ! ମୁଁ ସୂର୍ଯ୍ୟ ସମାନ ତେଜସ୍କର ଏହି ବିଚିତ୍ର ସ୍ୱର୍ଗୀୟ ଅଳଙ୍କାରକୁ ତୁମକୁ ବିଧି ଅନୁସାରେ ପ୍ରଦାନ କରିବି, ତୁମେ ତାହା ଗ୍ରହଣ କର" ।୩୩। ଅନନ୍ତର ଇକ୍ଷ୍ୱାକୁକୁଳର ମହାରଥୀ, ମତିମାନମାନଙ୍କ ମଧ୍ୟରେ ଶ୍ରେଷ୍ଠ ରାମ କ୍ଷତ୍ରିୟ ଧର୍ମର ବିଧାନ ସ୍ମରଣ କରି ମହାତ୍ମା ଅଗସ୍ତ୍ୟଙ୍କୁ କହିଲେ ।୩୪। "ହେ ଭଗବନ୍ ବ୍ରାହ୍ମଣଶ୍ରେଷ୍ଠ ! ବ୍ରାହ୍ମଣଠାରୁ କ୍ଷତ୍ରିୟର ଦାନ ଗ୍ରହଣ କରିବା ନିତାନ୍ତ ମାନ୍ଦନିନ୍ଦ ଅଟେ । ସୁତରାଂ ମୁଁ କ୍ଷତ୍ରିୟ ହୋଇ କିପରି ଏହା ଗ୍ରହଣ କରିବି ? ।୩୫।

ବ୍ରାହ୍ମଣେନ ବିଶେଷେଣ ଦତ୍ତଂ ତଦ୍ ବକ୍ତୁମର୍ହସି ।
ଏବମୁକ୍ତସ୍ତୁ ରାମେଣ ପ୍ରତ୍ୟୁବାଚ ମହାମୁନିଃ । ୩୬ ।
ଆସନ୍ କୃତଯୁଗେ ରାମ ବ୍ରହ୍ମଭୂତେ ପୁରାଯୁଗେ ।
ଅପାର୍ଥିବାଃ ପ୍ରଜାଃ ସର୍ବାଃ ସୁରାଣାଂ ତୁ ଶତକ୍ରତୁଃ । ୩୭ ।
ତାଃ ପ୍ରଜା ଦେବଦେବେଶଂ ରାଜାର୍ଥଂ ସମୁପାଦ୍ରବନ୍ ।
ସୁରାଣାଂ ସ୍ଥାପିତୋ ରାଜା ତ୍ୱୟା ଦେବ ଶତକ୍ରତୁଃ । ୩୮ ।
ପ୍ରଯଚ୍ଛ ନୋ ହି ଲୋକେଶ ପାର୍ଥିବଂ ନରପୁଙ୍ଗବମ୍ ।
ତସ୍ମୈ ପୂଜାଂ ପ୍ରଯୁଞ୍ଜାନା ଧୂତପାପାଶ୍ଚରେମହି । ୩୯ ।
ନ ବସାମୋ ବିନା ରାଜ୍ଞା ଏଷ ନୋ ନିଶ୍ଚୟଃ ପରଃ ।
ପ୍ରଜାନାଂ ବଚନଂ ଶ୍ରୁତ୍ୱା ନିଶ୍ଚିତ୍ୟିତ୍ୱାର୍ଥମୁତ୍ତମମ୍ । ୪୦ ।
ତତୋ ବ୍ରହ୍ମା ସୁରଶ୍ରେଷ୍ଠୋ ଲୋକପାଲାନ୍ ସବାସବାନ୍ ।
ସମାହୂୟାବ୍ରବୀତ୍ ସର୍ବାଂସ୍ତେଜୋଭାଗାନ୍ ପ୍ରଯଚ୍ଛତ । ୪୧ ।
ତତୋ ଦଦୁର୍ଲୋକପାଲାଃ ସର୍ବେ ଭାଗାନ୍ ସ୍ୱତେଜସଃ ।
ଅକ୍ଷୁପଚ୍ଚ ତତୋ ବ୍ରହ୍ମା ଯତୋ ଜାତଃ କ୍ଷୁପୋ ନୃପଃ । ୪୨ ।

---

ବିଶେଷତଃ ବ୍ରାହ୍ମଣଦ୍ୱାରା ଦାନ କରାହୋଇଥିବା ପଦାର୍ଥକୁ ମୁଁ କିପରି ଗ୍ରହଣ କରିବି, ତାହା ଆପଣ କହନ୍ତୁ ।" ରାମ ଏପରି କହିବାରୁ ମହର୍ଷି ଅଗସ୍ତ୍ୟ ଉତ୍ତର ଦେଲେ । ୩୬ । "ହେ ରାମ ! ପୂର୍ବ କାଳରେ ସାକ୍ଷାତ୍ ବ୍ରହ୍ମମୟ ସତ୍ୟଯୁଗରେ ପୃଥିବୀର ପ୍ରଜାମାନେ ରାଜାହୀନ ଥିଲେ; ମାତ୍ର ଇନ୍ଦ୍ର ଦେବତାମାନଙ୍କର ରାଜା ଥିଲେ । ୩୭ । ପୃଥିବୀର ସେହି ପ୍ରଜାମାନେ ଦେବଦେବ ବ୍ରହ୍ମାଙ୍କ ନିକଟକୁ ଯାଇ ତାଙ୍କୁ କହିଲେ, "ହେ ଦେବ ! ତୁମେ ଇନ୍ଦ୍ରଙ୍କୁ ଦେବତାମାନଙ୍କର ରାଜାରୂପେ ସ୍ଥାପନ କରିଅଛ । ୩୮ । ହେ ଲୋକେଶ ! ସୁତରାଂ ଆମ୍ଭମାନଙ୍କୁ ମଧ୍ୟ ଜଣେ ନରଶ୍ରେଷ୍ଠଙ୍କୁ ରାଜାରୂପେ ପ୍ରଦାନ କରନ୍ତୁ; ଆମେ ତାଙ୍କୁ ପୂଜାକରି ପାପରହିତ ହୋଇ ଏ ପୃଥିବୀରେ ବିଚରଣ କରିବୁ । ୩୯ । ଆମ୍ଭେମାନେ ଶେଷନିଷ୍ପତ୍ତି କରିଛୁ ଯେ ବିନା ରାଜାରେ ବାସ କରିବୁ ନାହିଁ ।" ଅନନ୍ତର ସୁରଶ୍ରେଷ୍ଠ ବ୍ରହ୍ମା ପ୍ରଜାମାନଙ୍କର ଏ କଥା ଶୁଣି ଏବଂ ସେ ବିଷୟରେ ଏକ ଉତ୍ତମ ନିଷ୍ପତ୍ତି କରି ଇନ୍ଦ୍ରଙ୍କ ସହିତ ସମସ୍ତ ଲୋକପାଳଙ୍କୁ ଡକାଇ ସେମାନଙ୍କୁ କହିଲେ, 'ତୁମ୍ଭେମାନେ ନିଜ ନିଜର ତେଜର ଅଂଶ ପ୍ରଦାନ କର' । ୪୦-୪୧ । ତହୁଁ ଲୋକପାଳମାନେ ନିଜ ନିଜ ତେଜରୁ ଅଂଶ ପ୍ରଦାନ କଲେ । ବ୍ରହ୍ମା ସେ ସମସ୍ତ ତେଜକୁ ଏକତ୍ର କଲେ ଏବଂ

ତଂ ବ୍ରହ୍ମା ଲୋକପାଲାନାଂ ସହାଂଶୈଃ ସମଯୋଜୟତ୍ ।
ତତୋ ଦଦୌ ନୃପଂ ତାସାଂ ପ୍ରଜାନାମୀଶ୍ୱରଂ କ୍ଷୁପମ୍ । ୪୩ ।
ତନ୍ତ୍ରୈନ୍ଦ୍ରେଣ ଚ ଭାଗେନ ମହୀମାଜ୍ଞାପୟନ୍ନୃପଃ ।
ବାରୁଣେନ ତୁ ଭାଗେନ ବପୁଃ ପୁଷ୍ୟତ ରାଘବ । ୪୪ ।
କୌବେରେଣ ତୁ ଭାଗେନ ବିତ୍ତମାସାଂ ଦଦୌ ତଦା ।
ଯସ୍ତୁ ଯାମ୍ୟୋଽଭବଦ୍ଭାଗସ୍ତେନ ଶାସ୍ତି ସ୍ମ ସ ପ୍ରଜାଃ । ୪୫ ।
ତନ୍ତ୍ରୈନ୍ଦ୍ରେଣ ନରଶ୍ରେଷ୍ଠ ଭାଗେନ ରଘୁନନ୍ଦନ ।
ପ୍ରତିଗୃହ୍ଣୀଷ୍ୱ ଭଦ୍ରଂ ତେ ତାରଣାର୍ଥଂ ମମ ପ୍ରଭୋ । ୪୬ ।
ତସ୍ୟ ତଦ୍‌ବଚନଂ ଶ୍ରୁତ୍ୱା ଋଷେଃ ପରମଧାର୍ମିକମ୍ ।
ତଦ୍ରାମଃ ପ୍ରତିଜଗ୍ରାହ ମୁନେରାଭରଣଂ ବରମ୍ । ୪୭ ।
ପ୍ରତିଗୃହ୍ୟ ତତୋ ରାମସ୍ତଦାଭରଣମୁତ୍ତମମ୍ ।
ଆଗମଂ ତସ୍ୟ ଦୀପ୍ତସ୍ୟ ପ୍ରଷ୍ଟୁମେବୋପଚକ୍ରମେ । ୪୮ ।
ଅତ୍ୟଦ୍ଭୁତମିଦଂ ଦିବ୍ୟଂ ବପୁଷା ଯୁକ୍ତମୁତ୍ତମମ୍ ।
କଥଂ ଭଗବତା ପ୍ରାପ୍ତଂ କୁତୋ ବା କେନ ବା ହୃତମ୍ । ୪୯ ।

---

ସେଥିରୁ କ୍ଷୁପ ନାମକ ରାଜା ଜାତ ହେଲେ । ୪୨ । ବ୍ରହ୍ମା ଲୋକପାଳମାନଙ୍କ ତେଜର ସମାନ ସମାନ ଅଂଶଦ୍ୱାରା ତାହାଙ୍କୁ ସଂଯୋଜିତ କରାଇଲେ ଏବଂ ସେହି କ୍ଷୁପଙ୍କୁ ରାଜାରୂପେ ସେହି ପ୍ରଜାମାନଙ୍କୁ ପ୍ରଦାନ କଲେ । ୪୩ । ହେ ରାଘବ ! ଇନ୍ଦ୍ରଙ୍କ ଅଂଶଦ୍ୱାରା ସେ ରାଜା ପୃଥିବୀକୁ ଶାସନ କଲେ ଏବଂ ବରୁଣଙ୍କ ଅଂଶଦ୍ୱାରା ନିଜର ଶରୀରକୁ ପୁଷ୍ଟ କଲେ । ୪୪ । କୁବେରଙ୍କ ଭାଗଦ୍ୱାରା ସେ ପ୍ରଜାମାନଙ୍କୁ ଧନ ପ୍ରଦାନ କଲେ ଏବଂ ଯମଙ୍କ ଭାଗଦ୍ୱାରା ପ୍ରଜାମାନଙ୍କୁ ଶାସନ କଲେ । ୪୫ । ଅତଏବ ହେ ନରଶ୍ରେଷ୍ଠ ରାମ ! ଇନ୍ଦ୍ରଙ୍କ ଭାଗହେତୁରୁ (ଅର୍ଥାତ୍ ପୃଥିବୀର ଶାସକ ହୋଇଥିବାରୁ) ତୁମେ ମୋତେ ଉଦ୍ଧାର କରିବା ପାଇଁ ମୋର ଏ ଦାନ ଗ୍ରହଣ କର । ତୁମ୍ଭର ମଙ୍ଗଳ ହେଉ" ।୪୬। ରାମ ଋଷିଙ୍କର ଅତିଶୟ ଧର୍ମସଙ୍ଗତ ବଚନ ଶୁଣି ତାଙ୍କର ସେହି ଉତ୍କୃଷ୍ଟ ଅଳଙ୍କାରକୁ ଗ୍ରହଣ କଲେ । ୪୭ । ଅନନ୍ତର ରାମ ସେହି ଉତ୍ତମ ଅଳଙ୍କାରକୁ ଗ୍ରହଣ କରି ସାରି ତାହା କେଉଁଠାରୁ ଆସିଲା ସେ ବିଷୟରେ ମୁନିଙ୍କୁ ପଚାରିବାକୁ ଆରମ୍ଭ କଲେ । ୪୮ । "ଏହି ଦିବ୍ୟ ବପୁଷ୍ମାନ୍ ଅଳଙ୍କାର ଅତିଶୟ ଆଶ୍ଚର୍ଯ୍ୟଜନକ ଅଟେ । ଆପଣ ଏହାକୁ କେଉଁଠାରୁ ପାଇଲେ ବା କିଏ ଏହାକୁ

କୁତୂହଳତଯ୍ଯା ବ୍ରହ୍ମନ୍ ପୃଚ୍ଛାମି ତ୍ୱାଂ ମହାଯଶଃ ।
ଆଶ୍ଚର୍ଯାଣାଂ ବହୂନାଂ ହି ନିଧିଃ ପରମକୋ ଭବାନ୍ । ୫୦ ।
ଏବଂ ବ୍ରୁବତ କାକୁତ୍ସ୍ଥେ ମୁନିର୍ବାକ୍ୟମଥାବ୍ରବୀତ୍ ।
ଶୃଣୁ ରାମ ଯଥାବୃତ୍ତଂ ପୁରା ତ୍ରେତାଯୁଗେ ଯୁଗେ । ୫୧ ।
ରମଣୀୟପ୍ରଦେଶେଽସ୍ମିନ୍ ବନେ ଯଦ୍ଦୃଷ୍ଟବାନହମ୍ ।
ଆଶ୍ଚର୍ଯଂ ମେ ମହାବାହୋ ଦାନମାଶ୍ରିତ୍ୟ କେବଲମ୍ । ୫୨ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ଶମ୍ବୂକବଧୋ ନାମ ଷଟ୍ସପ୍ତତିତମଃ ସର୍ଗଃ ।

---

# ସପ୍ତସପ୍ତତିତମଃ ସର୍ଗଃ

## ସ୍ୱର୍ଗିପ୍ରଶ୍ନଃ

ପୁରା ତ୍ରେତାଯୁଗେ ରାମ ହ୍ୟରଣ୍ୟଂ ବହୁବିସ୍ତରମ୍ ।
ସମନ୍ତାଦ୍ ଯୋଜନଶତଂ ନିର୍ମୃଗଂ ପକ୍ଷିବର୍ଜିତମ୍ । ୧ ।

---

ଅପହରଣ କରି ଆଣିଥିଲି ।୪୯। ହେ ମହାତପସ୍ୱୀ ଭଗବନ୍ ! ମୁଁ କୌତୂହଳବଶତଃ ଆପଣଙ୍କୁ ଏ କଥା ପଚାରୁଛି । କାରଣ ଆପଣ ବହୁ ଅଶ୍ଚର୍ଯ୍ୟପ୍ରଦ ପଦାର୍ଥମାନଙ୍କର ପ୍ରଧାନ ଭଣ୍ଡାର ଅଟନ୍ତି" । ୫୦ । ରାମଙ୍କର ଏହି କଥା ଶୁଣି ଅଗସ୍ତ୍ୟ ମୁନି କହିଲେ, "ହେ ରାମ ! ପୂର୍ବକାଳରେ ତ୍ରେତାଯୁଗରେ ଯାହା ଘଟିଥିଲି ସେ ବୃତ୍ତାନ୍ତ ତୁମେ ଶୁଣ ।୫୧। ହେ ମହାବାହୋ ! ମୁଁ ଏ ଦାନ ସମ୍ପର୍କରେ ଏହି ରମଣୀୟ ବନ ପ୍ରଦେଶରେ ଯେଉଁ ଆଶ୍ଚର୍ଯ୍ୟ ଘଟଣା ଦେଖିଥିଲି ତାହା ତୁମେ ଶୁଣ" । ୫୨ ।

---

## ୭୭ତମ ସର୍ଗ

### ( ସ୍ୱର୍ଗୀୟ ପୁରୁଷବୃତ୍ତାନ୍ତ )

"ହେ ରାମ ! ପୂର୍ବକାଳରେ ତ୍ରେତାଯୁଗରେ ଏହି ସ୍ଥାନରେ ଏକ ବିସ୍ତୀର୍ଣ୍ଣ ବନ ଥିଲି । ଏହା ଚତୁର୍ଦ୍ଦିଗରେ ଶହେ ଯୋଜନ ପର୍ଯ୍ୟନ୍ତ ବିସ୍ତୃତ ଥିଲି ଏବଂ ଏଥିରେ

ତସ୍ମିନ୍ନିର୍ମାନୁଷେଽରଣ୍ୟେ କୁର୍ବାଣସ୍ତପ ଉତ୍ତମମ୍ ।
ଅହମାକ୍ରମିତୁଂ ସୌମ୍ୟ ତଦରଣ୍ୟମୁପାଗମମ୍ । ୨ ।
ତସ୍ୟ ରୂପମରଣ୍ୟସ୍ୟ ନିର୍ଦ୍ଦେଷ୍ଟୁଂ ନ ଶଶାକ ହ ।
ଫଳମୂଳୈଃ ସୁଖାସ୍ୱାଦୈର୍ବହୁରୂପୈଶ୍ଚ ପାଦପୈଃ । ୩ ।
ତସ୍ୟାରଣ୍ୟସ୍ୟ ମଧ୍ୟେ ତୁ ସରୋ ଯୋଜନମାୟତମ୍ ।
ହଂସକାରଣ୍ଡବାକୀର୍ଣ୍ଣଂ ଚକ୍ରବାକୋପଶୋଭିତମ୍ । ୪ ।
ପଦ୍ମୋତ୍ପଳସମାକୀର୍ଣ୍ଣଂ ସମତିକ୍ରାନ୍ତଶୈବଳମ୍ ।
ତଦାଶ୍ଚର୍ଯମିବାତ୍ୟର୍ଥଂ ସୁଖାସ୍ୱାଦମନୁତ୍ତମମ୍ । ୫ ।
ଅରଜସ୍କଂ ତଥାକ୍ଷୋଭ୍ୟଂ ଶ୍ରୀମତ୍ପକ୍ଷିଗଣାୟୁତମ୍ ।
ସମୀପେ ତସ୍ୟ ସରସୋ ମହଦଦ୍ଭୁତମାଶ୍ରମମ୍ । ୬ ।
ପୁରାଣଂ ପୁଣ୍ୟମତ୍ୟର୍ଥଂ ତପସ୍ୱିଜନବର୍ଜିତମ୍ ।
ତତ୍ରାହମବସଂ ରାତ୍ରିଂ ନୈଦାଘୀଂ ପୁରୁଷର୍ଷଭ । ୭ ।
ପ୍ରଭାତେ କାଲ୍ୟମୁତ୍ଥାୟ ସରସ୍ତଦୁପଚକ୍ରମେ ।
ଅଥାପଶ୍ୟଂ ଶବଂ ତତ୍ର ସୁପୁଷ୍ଟମଜରଂ କଚିତ୍ । ୮ ।

---

କୌଣସି ପଶୁ ପକ୍ଷୀ ବାସ କରୁ ନ ଥିଲେ । ୧ । ହେ ସୌମ୍ୟ ! ମୁଁ ଏହି ମନୁଷ୍ୟହୀନ ଅରଣ୍ୟରେ ଉତ୍କୃଷ୍ଟ ତପ ଆଚରଣ କରିବାପାଇଁ ଏଠାକୁ ଆସିଲି । ୨ । ମୁଁ ଏହି ଅରଣ୍ୟର ଆକାର ଓ ବିସ୍ତାର ନିର୍ଦ୍ଦିଷ୍ଟ କରିପାରିଲି ନାହିଁ । ଏହା ବହୁପ୍ରକାର ସୁସ୍ୱାଦୁ ଫଳମୂଳବିଶିଷ୍ଟ ବୃକ୍ଷମାନଙ୍କରେ ପୂର୍ଣ୍ଣ ହୋଇ ରହିଥିଲା । ୩ । ଏହି ବନ ମଧ୍ୟରେ ଯୋଜନବିସ୍ତୃତ ଏକ ରମଣୀୟ ସରୋବର ଥିଲା । ତାହା ହଂସ, ଚକ୍ରବାକ ଓ କାରଣ୍ଡବ ପକ୍ଷୀମାନଙ୍କ ଦ୍ୱାରା ସୁଶୋଭିତ ହୋଇଥିଲା । ୪ । ସେଥିରେ ପଦ୍ମ ଓ ନୀଳୋତ୍ପଳ -ପୁଷ୍ପମାନ ଫୁଟିଥିଲା ଏବଂ ଆଦୌ ଶିଉଳି ନ ଥିଲା; କିନ୍ତୁ ଅତି ଆଶ୍ଚର୍ଯ୍ୟ କଥା ଯେ ଏହାର ଜଳ ଅତିଶୟ ସୁସ୍ୱାଦୁ ଥିଲା । ୫ । ସେହି ସରୋବରର ନିକଟରେ କୌଣସି ଧୂଳି ବା ଆବର୍ଜନା ନ ଥିଲା ଏବଂ ତାହା ପକ୍ଷୀ-ମାନଙ୍କଦ୍ୱାରା ଶୋଭିତ, କୋଳାହଳରହିତ ଏବଂ ସୁନ୍ଦର ଦେଖାଯାଉଥିଲା । ସେହି ସରୋବରଃ ନିକଟରେ ଗୋଟିଏ ଅତି ଅଦ୍ଭୁତ ଓ ବିଶାଳ ଆଶ୍ରମ ଥିଲା । ୬ । ହେ ନରଶ୍ରେଷ୍ଠ ! ଏହି ଆଶ୍ରମ ଅତି ପୁରାତନ ଓ ପବିତ୍ର ଥିଲା; ମାତ୍ର ସେଥିରେ ତପସ୍ୱୀ କେହିହେଲେ ଜଣେ ନ ଥିଲେ । ମୁଁ ସେହି ଗ୍ରୀଷ୍ମକାଳୀନ ରାତ୍ରିରେ ସେହିଠାରେ ରହିଲି । ୭ । ମୁଁ ପରଦିନ ପ୍ରାତଃକାଳରେ ଉଠି ସେହି ସରୋବର ତଟକୁ ଗଲି । ସେତେବେଳେ ମୁଁ ଏକ ହୃଷ୍ଟପୁଷ୍ଟ ଓ ତାଜା ଶବ ସେହିଠାରେ ଦେଖିଲି । ୮ ।

ପଙ୍କ୍ତିଭେଦେନ ପୁଷ୍ପାଙ୍ଗଂ ସମାଶ୍ରିତସରୋବରମ୍ ।
ତସ୍ଯାନ୍ତଂ ପରୟା ଲକ୍ଷ୍ମ୍ୟା ତସ୍ମିଂସ୍ତୋୟାଶୟେ ନୃପ । ୯ ।
ତମର୍ଥଂ ଚିନ୍ତୟାନୋଽହଂ ମୁହୂର୍ତ୍ତଂ ତତ୍ର ରାଘବ ।
ଉଷିତୋଽସ୍ମି ସରସ୍ତୀରେ କିଂ ନ୍ୱିଦଂ ସ୍ୟାଦିତି ପ୍ରଭୋ । ୧୦ ।
ଅଥାପଶ୍ୟଂ ମୁହୂର୍ତ୍ତେନ ଦିବ୍ୟମଦ୍ଭୁତଦର୍ଶନମ୍ ।
ବିମାନଂ ପରମୋଦାରଂ ହଂସଯୁକ୍ତଂ ମନୋଜବମ୍ । ୧୧ ।
ଅତ୍ୟର୍ଥଂ ସ୍ୱର୍ଗିଣଂ ତତ୍ର ବିମାନେ ରଘୁନନ୍ଦନ ।
ଉପାସ୍ତେଽପ୍ସରସାଂ ବୀର ସହସ୍ରଂ ଦିବ୍ୟଭୂଷଣମ୍ । ୧୨ ।
ଗାୟନ୍ତି ଦିବ୍ୟଗେୟାନି ବାଦୟନ୍ତି ତଥାପରାଃ ।
କ୍ଷ୍ୱେଲୟନ୍ତି ତଥା ଚାନ୍ୟା ନୃତ୍ୟନ୍ତି ଚ ତଥାପରାଃ । ୧୩ ।
ଅପରାଶ୍ଚନ୍ଦ୍ରରଶ୍ମ୍ୟାଭୈର୍ହେମଦଣ୍ଡୈଶ୍ଚ ଚାମରୈଃ
ଦୋଧୂୟୁର୍ବଦନଂ ତସ୍ୟ ପୁଣ୍ଡରୀକନିଭେକ୍ଷଣମ୍ । ୧୪ ।
ତତଃ ସିଂହାସନଂ ତ୍ୟକ୍ତ୍ୱା ମେରୁକୂଟମିବାଂଶୁମାନ୍ ।
ପଶ୍ୟତୋ ମେ ତଦା ରାମ ବିମାନାଦବରୁହ୍ୟ ଚ । ୧୫ ।
ତଂ ଶବଂ ଭକ୍ଷୟାମାସ ସ ସ୍ୱର୍ଗୀ ରଘୁନନ୍ଦନ ।
ତଥା ଭୁକ୍ତ୍ୱା ଯଥାକାମଂ ମାଂସଂ ବହୁ ସୁପୀବରମ୍ । ୧୬ ।

---

ହେ ରାଜନ୍ ! ମୁଁ ସେଠାରେ ସେହି ସରୋବର ତଟକୁ ଯାଇ ଦେଖିଲି ସେହି ହୃଷ୍ଟପୁଷ୍ଟ ଶବ ନିଜର ସୌନ୍ଦର୍ଯ୍ୟରେ ସୁଶୋଭିତ ଓ ଲମ୍ବମାନ ହୋଇ ପଡ଼ିରହିଅଛି । ୯ । ହେ ରାଘବ ! ମୁଁ ସେହି ସରୋବର ତୀରରେ ବସିରହି ମୁହୂର୍ତ୍ତିକ ଯାଏ ଚିନ୍ତା କଲି ଯେ ଏ କଅଣ ହୋଇପାରେ ।୧୦। ଅନନ୍ତର ମୁଁ ସେଠାରେ ମୁହୂର୍ତ୍ତିକ ମଧ୍ୟରେ ଏକ ଦିବ୍ୟ ଓ ଅଦ୍ଭୁତ ହଂସଯୁକ୍ତ, ଅତି ଉତ୍ତମ, ମନସଦୃଶ ଶୀଘ୍ରଗାମୀ ବିମାନ ଆସି ଓହ୍ଲାଇବାର ଦେଖିଲି । ୧୧ । ହେ ରଘୁନନ୍ଦନ ! ମୁଁ ସେହି ବିମାନରେ ଏକ ଅତିଶୟ ରୂପବାନ୍ ସ୍ୱର୍ଗୀୟ ପୁରୁଷଙ୍କୁ ଦେଖିଲି । ଏକ ସହସ୍ର ଅପ୍ସରା ଉତ୍ତମ ଅଳଙ୍କାର ପିନ୍ଧି ତାଙ୍କ ନିକଟରେ ଉପସ୍ଥିତ ରହିଥିଲେ ।୧୨। କେହି କେହି ସ୍ୱର୍ଗୀୟ ଗୀତ ଗାଉଥିଲେ, ଆଉ କିଏ ସୁନ୍ଦର ବାଜାମାନ ବଜାଉଥିଲେ, ଆଉ କିଏ କିଏ ହଁଆ ଡେଇଁ କରୁଥିଲେ ଏବଂ ଅନ୍ୟମାନେ ନୃତ୍ୟ କରୁଥିଲେ ।୧୩। ଅନ୍ୟ ପଦ୍ମଲୋଚନା ରମଣୀମାନେ ସୁବର୍ଣ୍ଣଦଣ୍ଡ-ଯୁକ୍ତ ଚନ୍ଦ୍ରକିରଣସଦୃଶ ଶୁକ୍ଳ ଚାମରଦ୍ୱାରା ସେହି ଦିବ୍ୟ ପୁରୁଷଙ୍କର ମୁଖକୁ ବ୍ୟଜନ କରୁଥିଲେ । ୧୪ । ଯେପରି ସୂର୍ଯ୍ୟ ସୁମେରୁ ପର୍ବତରୁ ଅବତରଣ କରନ୍ତି, ସେହିପରି ସେହି ସ୍ୱର୍ଗୀୟ ପୁରୁଷ ସେହି ବିମାନ ଉପରେ ଥିବା ସିଂହାସନରୁ ଓହ୍ଲାଇଲେ । ହେ ରାମ ! ମୁଁ ତାଙ୍କ ଆଡ଼କୁ ଚାହିଁ ରହିଥାଏଁ । ଏହିପରି ସମୟରେ ସେହି ସ୍ୱର୍ଗୀୟ

ଅବତୀର୍ଯ ସରଃ ସ୍ୱର୍ଗୀ ସଂପ୍ରଷ୍ଟୁମୁପଚକ୍ରମେ ।
ଉପସ୍ପୃଶ୍ୟ ଯଥାନ୍ୟାୟଂ ସ ସ୍ୱର୍ଗୀ ରଘୁପୁଙ୍ଗବ । ୧୭ ।
ଆରୋଢୁମୁପଚକ୍ରାମ ବିମାନବରମୁତ୍ତମମ୍ ।
ତମହଂ ଦେବସଂକାଶମାରୋହନ୍ତମୁଦୀକ୍ଷ୍ୟ ବୈ । ୧୮ ।
ବିମାନମବ୍ରୁବଂ ବାକ୍ୟଂ ସ୍ୱର୍ଗିଣଂ ପୁରୁଷର୍ଷଭ ।
କୋ ଭବାନ୍ ଦେବସଂକାଶ ଆହାରଶ୍ଚ ବିଗର୍ହିତଃ । ୧୯ ।
ତ୍ୱୟେଦଂ ଭୁଜ୍ୟତେ ସୌମ୍ୟ କିମର୍ଥଂ ବକ୍ତୁମର୍ହସି ।
କସ୍ୟ ସ୍ୟାଦୀଦୃଶୋ ଭାବ ଆହାରୋ ଦେବସମ୍ମତଃ । ୨୦ ।
ଆଶ୍ଚର୍ଯଂ ବର୍ତ୍ତତେ ସୌମ୍ୟ ଶ୍ରୋତୁମିଚ୍ଛାମି ତତ୍ତ୍ୱତଃ ।
ନାହମୌପୟିକଂ ମନ୍ୟେ ତବ ଭକ୍ଷ୍ୟମିଦଂ ଶବମ୍ । ୨୧ ।
ଇତ୍ୟେବମୁକ୍ତଃ ସ ନରେନ୍ଦ୍ର ନାକୀ
କୌତୂହଲାତ୍ ସୂନୃତୟା ଗିରା ଚ ।
ଶ୍ରୁତ୍ୱା ଚ ବାକ୍ୟଂ ମମ ସର୍ବମେତତ୍
ସର୍ବଂ ତଥା ଚ୍ୟାକଥୟନ୍ମମେହ । ୨୨ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ସ୍ୱର୍ଗିପ୍ରଶ୍ନୋ ନାମ ସପ୍ତସପ୍ତତିତମଃ ସର୍ଗଃ ।

---

ପୁରୁଷ ବିମାନରୁ ଓହ୍ଲାଇ ସେହି ଶବକୁ ଭକ୍ଷଣ କଲେ । ଅନନ୍ତର ସେ ସେହି ପୃଥୁଳ ମାଂସକୁ ମନଇଚ୍ଛା ଭକ୍ଷଣ କରସାରି ସରୋବରକୁ ଓହ୍ଲାଇ ଯାଇ ମୁହଁ ହାତ ଧୋଇବାକୁ ଲାଗିଲେ । ହେ ରଘୁଶ୍ରେଷ୍ଠ ! ସେହି ସ୍ୱର୍ଗୀୟ ପୁରୁଷ ଯଥାବିଧି ଧୁଆଧୋଇ ହୋଇସାରି ସେହି ଉତ୍କୃଷ୍ଟ ବିମାନରେ ଆରୋହଣ କରିବାକୁ ବାହାରିଲେ । ମୁଁ ସେହି ଦେବତୁଲ୍ୟ ବ୍ୟକ୍ତିଙ୍କୁ ବିମାନରେ ଆରୋହଣ କରିବାର ଦେଖି ତାଙ୍କୁ କହିଲି, ହେ ଦେବତୁଲ୍ୟମୂର୍ତ୍ତି ! ଆପଣ କିଏ ? ଆପଣ ଏପରି ଅନୁଚିତ ଅଭକ୍ଷ୍ୟ କାହିଁକି ଆହାର କରୁଛନ୍ତି, ହେ ସୌମ୍ୟ ! ତାହା ଆପଣ ମୋତେ କହନ୍ତୁ । ହେ ଦେବପୁରୁଷ ! ଆପଣ ଏପରି ଶ୍ରେଷ୍ଠ ଶରୀରବାନ୍ ବ୍ୟକ୍ତି ହୋଇ ଏ ପ୍ରକାର ଆହାର କାହିଁକି କରୁଛନ୍ତି ? । ୧୯-୨୦ । ହେ ସୌମ୍ୟ ! ଆପଣ ଏପରି ଶବ ଭକ୍ଷଣ କରିବା ମୋତେ ଉଚିତ ବୋଧ ହେଉ ନାହିଁ; ସୁତରାଂ ମୋ ମନରେ ବଡ଼ ଆଶ୍ଚର୍ଯ୍ୟ ଜାତ ହୋଇଛି ଏବଂ ମୁଁ ଏହାର ପ୍ରକୃତ ବୃତ୍ତାନ୍ତ ଜାଣିବାକୁ ଇଚ୍ଛା କରୁଅଛି । ୨୧ । ହେ ରାଜନ୍ ! କୌତୂହଳବଶତଃ ଏବଂ ସରଳଭାବରେ ମୁଁ ଏପରି କଥା କହିବାରୁ ସେହି ସ୍ୱର୍ଗୀୟ ପୁରୁଷ ମୋ କଥା ଶୁଣି ମୋତେ ସମସ୍ତ କଥା କହିଲେ । ୨୨ ।

# ଅଷ୍ଟସପ୍ତତିତମଃ ସର୍ଗଃ

## ଆଭରଣାଗମଃ

ଶ୍ରୁତ୍ୱା ତୁ ଭାଷିତଂ ବାକ୍ୟଂ ମମ ରାମ ଶୁଭାକ୍ଷରମ୍ ।
ପ୍ରାଞ୍ଜଳିଃ ପ୍ରତ୍ୟୁବାଚେଦଂ ସ ସ୍ୱର୍ଗୀ ରଘୁନନ୍ଦନ । ୧ ।
ଶୃଣୁ ବ୍ରହ୍ମନ୍ ପୁରା ବୃତ୍ତମେତଦ୍ ସୁଖଦୁଃଖୟୋଃ ।
ଅନତିକ୍ରମଣୀୟଂ ହି ଯଥା ପୃଚ୍ଛସି ମାଂ ଦ୍ୱିଜ । ୨ ।
ପୁରା ବୈଦର୍ଭକୋ ରାଜା ପିତା ମମ ମହାଯଶାଃ ।
ସୁଦେବ ଇତି ବିଖ୍ୟାତସ୍ତ୍ରିଷୁ ଲୋକେଷୁ ବୀର୍ଯବାନ୍ । ୩ ।
ତସ୍ୟ ପୁତ୍ରଦ୍ୱୟଂ ବ୍ରହ୍ମନ୍ ଦ୍ୱାଭ୍ୟାଂ ସ୍ତ୍ରୀଭ୍ୟାମଜାୟତ ।
ଅହଂ ଶ୍ୱେତ ଇତି ଖ୍ୟାତୋ ଯବୀୟାନ୍ ସୁରଥୋଽଭବତ୍ । ୪ ।
ତତଃ ପିତରି ସ୍ୱର୍ଯାତେ ପୌରା ମାମଭ୍ୟଷେଚୟନ୍ ।
ତତ୍ରାହଂ କୃତବାନ୍ ରାଜ୍ୟଂ ଧର୍ମ୍ୟଂ ଚ ସୁସମାହିତଃ । ୫ ।
ଏବଂ ବର୍ଷସହସ୍ରାଣି ସମାତୀତାନି ସୁବ୍ରତ ।
ରାଜ୍ୟଂ କାରୟତୋ ବ୍ରହ୍ମନ୍ ପ୍ରଜା ଧର୍ମେଣ ରକ୍ଷତଃ । ୬ ।

---

## ୭୮ତମ ସର୍ଗ

### (ଅଳଙ୍କାରପ୍ରାପ୍ତି ବୃତ୍ତାନ୍ତ)

"ହେ ରଘୁନନ୍ଦନ ! ମୋର ଏ ଶୁଭାକ୍ଷରଯୁକ୍ତ ବଚନ ଶୁଣି ସେହି ସ୍ୱର୍ଗୀୟ ପୁରୁଷ ହାତ ଯୋଡ଼ି ମୋତେ କହିଲେ ।୧। "ହେ ବ୍ରାହ୍ମଣ ! ମୋର ଏହି ସୁଖ ଦୁଃଖର ପ୍ରାଚୀନ ବୃତ୍ତାନ୍ତ ଯାହା ମୋତେ ପଚାରୁଛ ତାହା ଶୁଣ । ଏହା ମୋ ପକ୍ଷରେ ଅନିବାର୍ଯ୍ୟ ହୋଇପଡ଼ିଛି । ୨ । ପୂର୍ବକାଳରେ ବିଦର୍ଭଦେଶରେ ସୁଦେବ ନାମରେ ଏକ ମହାଯଶସ୍ୱୀ ଓ ବୀର୍ଯ୍ୟବାନ୍ ରାଜା ତିନିଲୋକରେ ବିଖ୍ୟାତ ହୋଇଥିଲେ । ସେ ମୋର ପିତା ଅଟନ୍ତି । ୩ । ହେ ବ୍ରହ୍ମନ୍ ! ତାଙ୍କର ଦୁଇ ରାଣୀଙ୍କଠାରୁ ଦୁଇଟି ପୁତ୍ର ଜାତ ହୋଇଥିଲେ । ଗୋଟିଏ ହେଉଛି ମୁଁ ଶ୍ୱେତ ନାମରେ ବିଖ୍ୟାତ ଏବଂ ଅନ୍ୟଟି ମୋର ସାନ ଭାଇ, ନାମ ସୁରଥ । ୪ । ଅନନ୍ତର ମୋର ପିତା ସ୍ୱର୍ଗଗାମୀ ହେବାରୁ ନଗରବାସୀମାନେ ମୋତେ ରାଜାରୂପେ ଅଭିଷିକ୍ତ କଲେ । ମୁଁ ସାବଧାନତା ସହିତ ଏବଂ ଧର୍ମପୂର୍ବକ ରାଜ୍ୟ ଶାସନ କରିବାକୁ ଲାଗିଲି । ୫ । ହେ ବ୍ରହ୍ମନ୍, ହେ ସୁବ୍ରତ ! ଏହିପ୍ରକାରେ ରାଜ୍ୟ ଶାସନ କରି ଏବଂ ଧର୍ମପୂର୍ବକ ପ୍ରଜାମାନଙ୍କୁ

ସୋଽହଂ କ୍ଷମିତ୍ରେ କସ୍ମିଂଶ୍ଚିଦ୍‌ବଞ୍ଚାଡାୟୁର୍ଦ୍ୱିଜୋତ୍ତମ ।
କାଲଧର୍ମଂ ହୃଦି ନ୍ୟସ୍ୟ ତତୋ ବନମୁପାଗମମ୍ । ୭ ।
ସୋଽହଂ ବନମିଦଂ ଦୁର୍ଗଂ ମୃଗପକ୍ଷିବିବର୍ଜିତମ୍ ।
ତପଶ୍ଚର୍ତୁଂ ପ୍ରବିଷ୍ଟୋଽସ୍ମି ସମୀପେ ସରସଃ ଶୁଭେ । ୮ ।
ଭ୍ରାତରଂ ସୁରଥଂ ରାଜ୍ୟେ ହ୍ୟଭିଷିଚ୍ୟ ମହୀପତିମ୍ ।
ଇଦଂ ସରଃ ସମାସାଦ୍ୟ ତପସ୍ତପ୍ତଂ ମୟା ଚିରମ୍ । ୯ ।
ସୋଽହଂ ବର୍ଷସହସ୍ରାଣି ତପସ୍ତ୍ରୀଣି ମହାବନେ ।
ତପ୍ତ୍ୱା ସୁଦୁଷ୍କରଂ ପ୍ରାପ୍ତୋ ବ୍ରହ୍ମଲୋକମନୁତ୍ତମମ୍ । ୧୦ ।
ତସ୍ୟ ମେ ସ୍ୱର୍ଗଭୂତସ୍ୟ କ୍ଷୁତ୍ପିପାସେ ଦ୍ୱିଜୋତ୍ତମ ।
ବାଧେତେ ପରମୋଦାର ତତୋଽହଂ ବ୍ୟଥିତେନ୍ଦ୍ରିୟଃ । ୧୧ ।
ଗତ୍ୱା ତ୍ରିଭୁବନଶ୍ରେଷ୍ଠଂ ପିତାମହମୁବାଚ ହ ।
ଭଗବନ୍ ବ୍ରହ୍ମଲୋକୋଽୟଂ କ୍ଷୁତ୍ପିପାସାବିବର୍ଜିତଃ । ୧୨ ।
କସ୍ୟାୟଂ କର୍ମଣଃ ପାକଃ କ୍ଷୁତ୍ପିପାସାନୁଗୋ ହ୍ୟହମ୍ ।
ଆହାରଃ କଶ୍ଚ ମେ ଦେବ ତନ୍ମେ ବ୍ରୂହି ପିତାମହ । ୧୩ ।

---

ପାଳନ କରି ମୋର ଏକ ହଜାର ବର୍ଷ ବିତିଗଲା । ୬ । ହେ ଦ୍ୱିଜଶ୍ରେଷ୍ଠ ! ମୁଁ କୌଣସି ପ୍ରକାରେ ମୋର ଆୟୁର ସୀମା ଜାଣିପାରି ଏବଂ ପ୍ରତ୍ୟେକ ଶରୀରଧାରୀର ମରଣ ଅନିବାର୍ଯ୍ୟ, ଏ କଥା ମନରେ ରଖି ମୁଁ ବନକୁ ଚାଲିଆସିଲି ।୭। ଏହି ମୃଗପକ୍ଷୀହୀନ ନିର୍ଜନ ବନକୁ ମୁଁ ଚାଲି ଆସିଲି ଏବଂ ଏହି ଶୁଭ ସରୋବର ନିକଟରେ ତପସ୍ୟା କରିବାକୁ ଲାଗିଲି । ୮ । ମୁଁ ମୋର ଭାଇ ସୁରଥକୁ ରାଜ୍ୟରେ ରାଜାରୂପେ ଅଭିଷିକ୍ତ କରାଇ ଏହି ସରୋବର ନିକଟକୁ ଆସି ଦୀର୍ଘକାଳ ପର୍ଯ୍ୟନ୍ତ ତପସ୍ୟା କଲି । ୯ । ଏହିପରିଭାବରେ ମୁଁ ଏହି ମହାବନରେ ତିନି ହଜାର ବର୍ଷ ପର୍ଯ୍ୟନ୍ତ କଠୋର ତପସ୍ୟା କରି ପରମ ଶ୍ରେଷ୍ଠ ବ୍ରହ୍ମଲୋକ ଲାଭକଲି । ୧୦ । ହେ ବ୍ରାହ୍ମଣଶ୍ରେଷ୍ଠ ! ବ୍ରହ୍ମଲୋକରେ ରହି ମଧ୍ୟ କ୍ଷୁଧା ଓ ପିପାସା ଦୁହେଁ ମୋତେ ଅତିଶୟ କଷ୍ଟ ଦେଲେ ଏବଂ ମୋର ସମଗ୍ର ଇନ୍ଦ୍ରିୟ ଶିଥିଳ ହୋଇଗଲା । ୧୧ । ମୁଁ ତିନିଭୁବନର ଶ୍ରେଷ୍ଠ ଦେବତା ପିତାମହ ବ୍ରହ୍ମାଙ୍କ ନିକଟକୁ ଯାଇ କହିଲି, "ହେ ଭଗବନ୍ ! ଏହା ତ ବ୍ରହ୍ମଲୋକ, ଏଠାରେ ତ କ୍ଷୁଧା ପିପାସା ହୁଏ ନାହିଁ । ୧୨ । ମୋର ଏ କେଉଁ କାର୍ଯ୍ୟର ଫଳ ଯେ କ୍ଷୁଧା ଓ ପିପାସା ମୋ ସଙ୍ଗେ ସଙ୍ଗେ ରହିଛନ୍ତି । ହେ ପିତାମହ ଦେବ ! ମୋର ଆହାର କଅଣ ହେବ ତାହା ତୁମ୍ଭେ ମୋତେ କହ" ।୧୩।

ପିତାମହସ୍ତୁ ମାମାହ ତବାହାରଃ ସୁଦେବଜ ।
ସ୍ୱାଦୂନି ସ୍ୱାନି ମାଂସାନି ତାନି ଭକ୍ଷୟ ନିତ୍ୟଶଃ ।୧୪।
ସ୍ୱଶରୀରଂ ତ୍ୱୟା ପୁଷ୍ଟଂ କୁର୍ବତା ତପ ଉତ୍ତମମ୍ ।
ଅନୁପ୍ତଂ ରୋହତେ ଶ୍ୱେତ ନ କଦାଚିନ୍ମହାମତେ ।୧୫।
ତୃପ୍ତିର୍ନ ତେଽସ୍ତି ସୁକ୍ଷ୍ମାପି ବନେ ସତ୍ତ୍ୱନିଷେବିତେ ।
ପୂର୍ବ ତ୍ୱାଂ ଭିକ୍ଷମାଣାୟ ଭିକ୍ଷା ବୈ ଯତୟେ ନୃପ ।୧୬।
ନ ହି ଦତ୍ତା ତ୍ୱୟେନ୍ଦ୍ରାୟ ଯସ୍ମାଦତିଥୟେଽପି ବୈ ।
ଦତ୍ତଂ ନ ତେଽସ୍ତି ସୂକ୍ଷ୍ମୋଽପି ତପ ଏବ ନିଷେବସେ ।୧୭।
ତେନ ସ୍ୱର୍ଗଗତୋ ବତ୍ସ ବାଧସେ କ୍ଷୁତ୍ପିପାସୟା ।
ସ ତ୍ୱଂ ସୁପୁଷ୍ଟମାହାରୈଃ ସ୍ୱଶରୀରମନୁତ୍ତମମ୍ ।୧୮।
ଭକ୍ଷୟିତ୍ୱାମୃତରସଂ ତେନ ତୃପ୍ତିର୍ଭବିଷ୍ୟତି ।
ଯଦା ତୁ ତଦ୍ୱନଂ ଶ୍ୱେତ ଅଗସ୍ତ୍ୟଃ ସୁମହାନୃଷିଃ ।୧୯।
ଆଗମିଷ୍ୟତି ଦୁର୍ଧର୍ଷସ୍ତଦା କୃଚ୍ଛ୍ରାଦ୍ୱିମୋକ୍ଷ୍ୟସେ ।
ସ ହି ତାରୟିତୁଂ ସୌମ୍ୟ ଶକ୍ତଃ ସୁରଗଣାନପି ।୨୦।

---

ପିତାମହ ବ୍ରହ୍ମା ମୋତେ କହିଲେ, 'ହେ ସୁଦେବପୁତ୍ର ! ତୁମଲାଗି ତୁମ ନିଜର ସୁମିଷ୍ଟ ମାଂସ ହିଁ ଖାଦ୍ୟ ଅଟେ, ତୁମେ ତାହାକୁ ହିଁ ପ୍ରତ୍ୟହ ଭୋଜନ କର ।୧୪। ହେ ମହାମତି ଶ୍ୱେତ, ତୁମେ ଉତ୍ତମ ତପସ୍ୟା କରୁଥିଲାବେଳେ ନିଜର ଶରୀରକୁ ହୃଷ୍ଟପୁଷ୍ଟ ରଖିଥିଲ । ବୀଜବପନ ନ କଲେ ଫଳ କଦାପି ମିଳେ ନାହିଁ ।୧୫। ଏହି ଜୀବଜନ୍ତୁପୂର୍ଣ୍ଣ ବନରେ ତୁମ୍ଭର ଟିକିଏ ହେଲେ ତୃପ୍ତି ହେଉ ନାହିଁ । ହେ ରାଜନ୍ ! ପୂର୍ବକାଳରେ ଇନ୍ଦ୍ର ଅତିଥି ହୋଇ ଭିକ୍ଷା ମାଗିଥିଲାବେଳେ ତୁମେ ତାଙ୍କୁ ଭିକ୍ଷା ଦେଇ ନାହିଁ । ତୁମେ କେବେ ହେଲେ ସାମାନ୍ୟ ଦାନ ମଧ୍ୟ କରିନାହଁ । ତୁମେ କେବଳ ତପସ୍ୟାହିଁ କରିଲାଗିଥିଲ । ଏଇଥିଲାଗିହିଁ ତୁମେ ସ୍ୱର୍ଗକୁ ଆସିଲେ ମଧ୍ୟ କ୍ଷୁଧା ଓ ପିପାସା ତୁମକୁ ପୀଡ଼ା ଦେଉଛନ୍ତି ।୧୬-୧୮। ଅତଏବ ତୁମେ ଯେଉଁ ଉତ୍ତମ ଶରୀରକୁ ଭଲ ଖାଦ୍ୟ ଖାଇ ହୃଷ୍ଟପୁଷ୍ଟ ରଖିଥିଲ, ଏବେ ତାହାର ଅମୃତ ରସକୁ ଖାଅ; ତଦ୍ୱାରା ତୁମ୍ଭର ଜୀବନ ନିର୍ବାହ ହେବ । ହେ ଶ୍ୱେତ ! ଯେତେବେଳେ ସେହି ବନକୁ ଦୁର୍ଧର୍ଷ ଅଗସ୍ତ୍ୟ ମହର୍ଷି ଆସିବେ, ସେତେବେଳେ ତୁମେ ଏ ମହାକଷ୍ଟରୁ ମୁକ୍ତ ପାଇବ ।୧୯-୨୦। ହେ ସୌମ୍ୟ, ହେ

କିଂ ପୁନସ୍ତ୍ୱାଂ ମହାବାହୋ କ୍ଷୁତ୍ପିପାସାବଶଂ ଗତମ୍ ।
ସୋଽହଂ ଭଗବତଃ ଶ୍ରୁତ୍ୱା ଦେବଦେବସ୍ୟ ନିଶ୍ଚୟମ୍ । ୨୧ ।
ଆହାରଂ ଗର୍ହିତଂ କୁର୍ମି ସ୍ୱଶରୀରଂ ଦ୍ୱିଜୋତ୍ତମ ।
ବହୂନ୍ ବର୍ଷଗଣାନ୍ ବ୍ରହ୍ମନ୍ ଭୁଜ୍ୟମାନମିଦଂ ମୟା । ୨୨ ।
କ୍ଷୟଂ ନାଭ୍ୟେତି ବ୍ରହ୍ମର୍ଷେ ତୃପ୍ତିଶ୍ଚାପି ମମୋତ୍ତମା ।
ତସ୍ୟ ମେ କୃଚ୍ଛ୍ରଭୂତସ୍ୟ କୃଚ୍ଛ୍ରାଦସ୍ମାଦ୍ୱିମୋକ୍ଷୟ । ୨୩ ।
ଅନ୍ୟେଷାଂ ନ ଗତିର୍ହ୍ୟତ୍ର କୁମ୍ଭଯୋନିମୃତେ ଦ୍ୱିଜମ୍ ।
ଇଦମାଭରଣଂ ସୌମ୍ୟ ତାରଣାର୍ଥଂ ଦ୍ୱିଜୋତ୍ତମ । ୨୪ ।
ପ୍ରତିଗୃହ୍ଣୀଷ୍ୱ ଭଦ୍ରଂ ତେ ପ୍ରସାଦଂ କର୍ତୁମର୍ହସି ।
ଇଦଂ ତାବତ୍ ସୁବର୍ଣଂ ଚ ଧନଂ ବସ୍ତ୍ରାଣି ଚ ଦ୍ୱିଜ । ୨୫ ।
ଭକ୍ଷ୍ୟଂ ଭୋଜ୍ୟଂ ଚ ବ୍ରହ୍ମର୍ଷେ ଦଦାମ୍ୟାଭରଣାନି ଚ ।
ସର୍ବାନ୍ କାମାନ୍ ପ୍ରୟଚ୍ଛାମି ଭୋଗାଂଶ୍ଚ ମୁନିପୁଙ୍ଗବ ।
ତାରଣେ ଭଗବନ୍ ମହ୍ୟଂ ପ୍ରସାଦଂ କର୍ତୁମର୍ହସି । ୨୬ ।
ତସ୍ୟାହଂ ସ୍ୱର୍ଗିଣୋ ବାକ୍ୟଂ ଶ୍ରୁତ୍ୱା ଦୁଃଖସମନ୍ୱିତମ୍ ।
ତାରଣାୟୋପଜଗ୍ରାହ ତଦାଭରଣମୁତ୍ତମମ୍ । ୨୭ ।

---

ମହାବାହୋ ! ସେ ତ ଦେବତାମାନଙ୍କୁ ମଧ୍ୟ ଉଦ୍ଧାର କରିବାକୁ ସମର୍ଥ ଅଟନ୍ତି, ସୁତରାଂ ତୁମ କଥା କଅଣ ? ତୁମେ ତ କେବଳ କ୍ଷୁଧା ଓ ପିପାସାରେ ପୀଡ଼ିତ ହୋଇଅଛ” ।୨୧। ହେ ଦ୍ୱିଜୋତ୍ତମ ! ମୁଁ ଏହିପ୍ରକାରେ ଦେବଦେବ ବ୍ରହ୍ମାଙ୍କର ନିଷ୍ପତ୍ତି ଶୁଣି, ଗର୍ହିତ ହେଲେ ମଧ୍ୟ ମୋ ନିଜର ଶରୀରକୁ ହିଁ ନିତ୍ୟ ଭୋଜନ କରୁଅଛି । ହେ ବ୍ରହ୍ମର୍ଷେ ! ମୁଁ ବହୁବର୍ଷ ହେଲା ଏ ଶରୀରକୁ ଭକ୍ଷଣ କରୁଥିଲେ ମଧ୍ୟ ତାହାର କୌଣସି କ୍ଷୟ ହେଉ ନାହିଁ ଏବଂ ମୋର ମଧ୍ୟ ପୂର୍ଣ୍ଣ ତୃପ୍ତି ହେଉ ନାହିଁ; ସୁତରାଂ ଏହିପରି ଦୁସ୍ତର କଷ୍ଟରୁ ତୁମେ ମୋତେ ମୁକ୍ତକର ।୨୨-୨୩। ବ୍ରାହ୍ମଣ କୁମ୍ଭଯୋନିଙ୍କୁ ଛାଡ଼ି ଏ ବିଷୟରେ କିଛି କରିବାର ଅନ୍ୟ କାହାର ଶକ୍ତି ନାହିଁ । ହେ ସୌମ୍ୟ, ଦ୍ୱିଜୋତ୍ତମ ! ତୁମେ ଏ ଅଳଙ୍କାରକୁ ମୋତେ ତ୍ରାଣ କରିବା ନିମନ୍ତେ ଗ୍ରହଣ କର, ତୁମ୍ଭର ମଙ୍ଗଳ ହେଉ, ତୁମେ ମୋତେ ଏହି ଅନୁଗ୍ରହ କର । ୨୪-୨୫ । ହେ ବ୍ରହ୍ମର୍ଷେ ! ଏହି ସୁନାର ଅଳଙ୍କାର, ଧନ, ବସ୍ତ୍ର, ଭକ୍ଷ୍ୟ, ଭୋଜ୍ୟ ଏବଂ ସମସ୍ତ କାମ୍ୟ ଓ ଉପଭୋଗ୍ୟ ପଦାର୍ଥ ମୁଁ ତୁମ୍ଭଙ୍କୁ ଦାନ କରୁଛି । ହେ ମୁନିଶ୍ରେଷ୍ଠ ! ଆପଣ ମୋତେ ଉଦ୍ଧାର କରିବା ପାଇଁ ଅନୁଗ୍ରହ କରି ଏହାକୁ ଗ୍ରହଣ କରନ୍ତୁ” ।୨୬। ହେ ରାମ ! ମୁଁ ସେହି ସ୍ୱର୍ଗୀୟ ପୁରୁଷଙ୍କ ଏ ଦୁଃଖପୂର୍ଣ୍ଣ କଥା ଶୁଣି ତାଙ୍କୁ ତାରିବା ପାଇଁ ତାଙ୍କ ପ୍ରଦତ୍ତ ଏହି ଉତ୍କୃଷ୍ଟ ଅଳଙ୍କାର

ମୟ୍ୟା ପ୍ରତିଗୃହୀତେ ତୁ ତସ୍ମିନ୍ନାଭରଣେ ଶୁଭେ ।
ମାନୁଷଃ ପୂର୍ବକୋ ଦେହୋ ରାଜର୍ଷେ ର୍ବିନନାଶ ହ । ୨୮ ।
ପ୍ରନଷ୍ଟେ ତୁ ଶରୀରେଽସୌ ରାଜର୍ଷିଃ ପରୟା ମୁଦା ।
ତୃପ୍ତଃ ପ୍ରମୁଦିତୋ ରାଜା ଜଗାମ ତ୍ରିଦିବଂ ସୁଖମ୍ । ୨୯ ।
ତେନେଦଂ ଶକ୍ରତୁଲ୍ୟେନ ଦିବ୍ୟମାଭରଣଂ ମମ ।
ତସ୍ମିନ୍ନିମିତ୍ତେ କାକୁତ୍ସ୍ଥ ଦତ୍ତମଦ୍ଭୁତଦର୍ଶନମ୍ । ୩୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ଆଭରଣାଗମୋ ନାମ ଅଷ୍ଟସପ୍ତତିତମଃ ସର୍ଗଃ ।

---

# ଏକୋନାଶୀତିତମଃ ସର୍ଗଃ

## ଦଣ୍ଡରାଜ୍ୟନିବେଶଃ

ତଦଦ୍ଭୁତତମଂ ବାକ୍ୟଂ ଶ୍ରୁତ୍ୱାଗସ୍ତ୍ୟସ୍ୟ ରାଘବଃ ।
ଗୌରବାଦ୍ ବିସ୍ମୟାଚ୍ଚୈବ ପୁନଃ ପ୍ରଷ୍ଟୁଂ ପ୍ରଚକ୍ରମେ । ୧ ।
ଭଗବଂସ୍ତଦ୍ ବନଂ ଘୋରଂ ତପସ୍ତପ୍ୟତି ଯତ୍ର ସଃ ।
ଶ୍ୱେତୋ ବୈଦର୍ଭକୋ ରାଜା କଥଂ ତଦଭୂନ୍ମୃଗଦ୍ୱିଜମ୍ । ୨ ।

---

ଗ୍ରହଣ କଲି । ୨୭ । ମୁଁ ଏହି ଅଳଙ୍କାର ଗ୍ରହଣ କରିବା ସଙ୍ଗେ ସଙ୍ଗେ ସେହି ରାଜର୍ଷିଙ୍କର ପୂର୍ବଜନ୍ମର ମୃତଦେହ ନଷ୍ଟ ହୋଇଗଲା । ୨୮ । ସେହି ଶରୀର ନଷ୍ଟ ହୋଇଯିବାରୁ ସେ ରାଜର୍ଷି ଅତ୍ୟନ୍ତ ଆନନ୍ଦିତ ଓ ତୃପ୍ତ ହୋଇଗଲେ ଏବଂ ସୁଖରେ ସ୍ୱର୍ଗକୁ ଚାଲିଗଲେ । ୨୯ । ହେ କାକୁତ୍ସ୍ଥ ! ଏହି ଅଦ୍ଭୁତ ଦିବ୍ୟ ଅଳଙ୍କାର ସେହି ଇନ୍ଦ୍ରସଦୃଶ ସ୍ୱର୍ଗୀୟ ପୁରୁଷ ତାଙ୍କର ଉଦ୍ଧାର ନିମନ୍ତେ ମୋତେ ଦେଇଥିଲେ” । ୩୦ ।

---

## ୭୯ତମ ସର୍ଗ

( ଦଣ୍ଡଙ୍କର ରାଜ୍ୟ ସ୍ଥାପନ )

ରାମ ଅଗସ୍ତ୍ୟଙ୍କର ଏହି ଅଦ୍ଭୁତ ବଚନ ଶୁଣି ଗୌରବ ଏବଂ ବିସ୍ମୟରେ ପୁଣି ପଚାରିବାକୁ ଆରମ୍ଭ କଲେ । ୧ । “ହେ ଭଗବନ୍ ! ଯେଉଁ ବନରେ ବିଦର୍ଭରାଜ ଶ୍ୱେତ ତପସ୍ୟା କରୁଥିଲେ ସେହି ଘୋର ବନ କାହିଁକି ପଶୁପକ୍ଷିହୀନ ହେଲା ? । ୨ ।

ତଦ୍ ବନଂ ସ କଥଂ ରାଜା ଶୂନ୍ୟଂ ମନୁଜବର୍ଜିତମ୍ ।
ତପଶ୍ଚର୍ତୁଂ ପ୍ରବିଷ୍ଟଃ ସ ଶ୍ରୋତୁମିଚ୍ଛାମି ତତ୍ତ୍ୱତଃ । ୩ ।
ରାମସ୍ୟ ବଚନଂ ଶ୍ରୁତ୍ୱା କୌତୂହଳସମନ୍ୱିତମ୍ ।
ବାକ୍ୟଂ ପରମତେଜସ୍ୱୀ ବକ୍ତୁମେବୋପଚକ୍ରମେ । ୪ ।
ପୁରା କୃତଯୁଗେ ରାମ ମନୁର୍ଦଣ୍ଡଧରଃ ପ୍ରଭୁଃ ।
ତସ୍ୟ ପୁତ୍ରୋ ମହାନାସୀଦିକ୍ଷ୍ୱାକୁଃ କୁଳନନ୍ଦନଃ । ୫ ।
ତଂ ପୁତ୍ରଂ ପୂର୍ବକେ ରାଜ୍ୟେ ନିକ୍ଷିପ୍ୟ ଭୁବି ଦୁର୍ଜୟମ୍ ।
ପୃଥିବ୍ୟାଂ ରାଜବଂଶାନାଂ ଭବ କର୍ତ୍ତେତ୍ୟୁବାଚ ହ । ୬ ।
ତଥେତି ଚ ପ୍ରତିଜ୍ଞାତଂ ପିତୁଃ ପୁତ୍ରେଣ ରାଘବ ।
ତତଃ ପରମସନ୍ତୁଷ୍ଟୋ ମନୁଃ ପୁତ୍ରମୁବାଚ ହ । ୭ ।
ପ୍ରୀତୋଽସ୍ମି ପରମୋଦାର ତ୍ୱଂ କର୍ତ୍ତାସି ନ ସଂଶୟଃ ।
ଦଣ୍ଡେନ ଚ ପ୍ରଜା ରକ୍ଷ ମା ଚ ଦଣ୍ଡମକାରଣେ । ୮ ।
ଅପରାଧିଷୁ ଯୋ ଦଣ୍ଡଃ ପାତ୍ୟତେ ମାନବେଷୁ ବୈ ।
ସ ଦଣ୍ଡୋ ବିଧିବନ୍ମୁକ୍ତଃ ସ୍ୱର୍ଗଂ ନୟତି ପାର୍ଥିବମ୍ । ୯ ।

---

ସେହି ପଶୁପକ୍ଷିହୀନ ଏବଂ ମନୁଷ୍ୟଶୂନ୍ୟ ବନରେ ସେ ରାଜା ତପସ୍ୟା କରିବାକୁ କାହିଁକି ଯାଇଥିଲେ, ସେ କଥା ମୁଁ ଠିକକରି ଶୁଣିବାକୁ ଇଚ୍ଛା କରୁଅଛି" ।୩। ପରମତେଜସ୍ୱୀ ଅଗସ୍ତ୍ୟ ରାମଙ୍କର ଏହି କୌତୂହଳ ବଚନ ଶୁଣି କହିବାକୁ ଲାଗିଲେ ।୪। "ହେ ରାମ ! ପୂର୍ବକାଳରେ ସତ୍ୟଯୁଗରେ ମହାରାଜ ମନୁ ଏହି ପୃଥିବୀର ପ୍ରଭୁ ହୋଇ ରାଜତ୍ୱ କରୁଥିଲେ । କୁଳର ଆନନ୍ଦଦାୟକ ତାଙ୍କର ପୁତ୍ର ଥିଲେ ଇକ୍ଷ୍ୱାକୁ ।୫। ମହାରାଜ ମନୁ ନିଜର ଦୁର୍ଜେୟ ପୁତ୍ର ଇକ୍ଷ୍ୱାକୁଙ୍କୁ ରାଜସିଂହାସନରେ ବସାଇ କହିଲେ, 'ତୁମେ ରାଜା ହୋଇ ଏ ପୃଥିବୀରେ ରାଜବଂଶର ପ୍ରତିଷ୍ଠା କର' ।୬। ହେ ରାମ ! ପୁତ୍ର ଇକ୍ଷ୍ୱାକୁ ପିତାଙ୍କର ସେହି କଥାକୁ 'ତାହାହିଁ ହେବ' ବୋଲି ପ୍ରତିଶ୍ରୁତି ଦେବାରୁ ମନୁ ଅତିଶୟ ସନ୍ତୁଷ୍ଟ ହୋଇ ପୁତ୍ରଙ୍କୁ କହିଲେ ।୭। 'ହେ ମହା ଉଦାର ପୁତ୍ର ! ମୁଁ ତୁମଠାରେ ପ୍ରୀତ ହୋଇଅଛି । ତୁମେ ବଂଶସ୍ଥାପନକର୍ତ୍ତା ହେବ, ଏଥିରେ ସନ୍ଦେହ ନାହିଁ । ତୁମେ ଦଣ୍ଡଦ୍ୱାରା ପ୍ରଜାଙ୍କୁ ରକ୍ଷା କରିବ ମାତ୍ର ଦଣ୍ଡକୁ କଦାପି ଅକାରଣରେ ପ୍ରୟୋଗ କରିବ ନାହିଁ ।୮। ପ୍ରକୃତ ଅପରାଧୀ ଲୋକଙ୍କୁ ଯେଉଁ ଦଣ୍ଡ ବିଧିପୂର୍ବକ ଦିଆଯାଏ ତାହା ରାଜାକୁ ସ୍ୱର୍ଗକୁ ନେଇଯାଏ ।୯। ଅତଏବ ହେ

ତସ୍ମାଦ୍ଦଣ୍ଡେ ମହାବାହୋ ଯତ୍ନବାନ୍ ଭବ ପୁତ୍ରକ ।
ଧର୍ମୋ ହି ପରମୋ ଲୋକେ କୁର୍ବତସ୍ତେ ଭବିଷ୍ୟତି । ୧୦ ।

ଇତି ତଂ ବହୁ ସଂଦିଶ୍ୟ ମନୁଃ ପୁତ୍ରଂ ସମାଧିନା ।
ଜଗାମ ତ୍ରିଦିବଂ ହୃଷ୍ଟୋ ବ୍ରହ୍ମଲୋକଂ ସନାତନମ୍ । ୧୧ ।

ପ୍ରୟାତେ ତ୍ରିଦିବଂ ତସ୍ମିନ୍ନିକ୍ଷ୍ୱାକୁରମିତପ୍ରଭଃ ।
ଜନୟିଷ୍ୟେ କଥଂ ପୁତ୍ରାନିତି ଚିନ୍ତାପରୋଽଭବତ୍ । ୧୨ ।
କର୍ମଭିର୍ବହୁରୂପୈଶ୍ଚ ତୈସ୍ତୈର୍ମନୁସୁତଃ ସୁତାନ୍ ।
ଜନୟାମାସ ଧର୍ମାତ୍ମା ଶତଂ ଦେବସୁତୋପମାନ୍ । ୧୩ ।

ତେଷାମବରଜସ୍ତାତ ସର୍ବେଷାଂ ରଘୁନନ୍ଦନ ।
ମୂଢଶ୍ଚାକୃତବିଦ୍ୟଶ୍ଚ ନ ଶୁଶ୍ରୂଷତି ପୂର୍ବଜାନ୍ । ୧୪ ।
ନାମ ତସ୍ୟ ଚ ଦଣ୍ଡେତି ପିତା ଚକ୍ରେଽଲ୍ପମେଧସଃ ।
ଅବଶ୍ୟଂ ଦଣ୍ଡପତନଂ ଶରୀରେଽସ୍ୟ ଭବିଷ୍ୟତି । ୧୫ ।

ଅପଶ୍ୟମାନସ୍ତଂ ଦୋଷଂ ଘୋରଂ ପୁତ୍ରସ୍ୟ ରାଘବ ।
ବିନ୍ଧ୍ୟଶୈବଲୟୋର୍ମଧ୍ୟେ ରାଜ୍ୟଂ ପ୍ରାଦାଦରିନ୍ଦମ । ୧୬ ।

---

ମହାବାହୁ ବତ୍ସ ! ଦଣ୍ଡ ଦେବାରେ ତୁମେ ଖୁବ ସାବଧାନ ହେବ । ଏ ସଂସାରରେ ତୁମେ ଶାସନ କରୁଥିବା ବେଳେ ତୁମ୍ଭର ଧର୍ମହିଁ ଶ୍ରେଷ୍ଠ ବନ୍ଧୁ ହେବ' । ୧୦ । ଏହିପ୍ରକାରେ ନିଜର ପୁତ୍ରଙ୍କୁ ବୁଝାଇ ମହାରାଜ ମନୁ ସମାଧିଦ୍ୱାରା ସନାତନ ବ୍ରହ୍ମଲୋକକୁ ଚାଲିଗଲେ । ସେ ସ୍ୱର୍ଗକୁ ଚାଲିଯିବା ପରେ ମହାପରାକ୍ରମ ଇକ୍ଷ୍ୱାକୁ 'ମୁଁ କପରି ପୁତ୍ରମାନଙ୍କୁ ଜନ୍ମ କରିବି' ଏହି ଚିନ୍ତାକୁ ସବୁବେଳେ ମନରେ ଉଠାଇଲେ । ୧୨ । ମନୁପୁତ୍ର ଇକ୍ଷ୍ୱାକୁ ନାନାପ୍ରକାର ଯଜ୍ଞ ଆଦି କର୍ମକରି ଦେବସୁତସଦୃଶ ଶତସଂଖ୍ୟକ ଧର୍ମାତ୍ମା ପୁତ୍ର ଜନ୍ମ କଲେ । ୧୩ । ହେ ବତ୍ସ ରାମ ! ସେମାନଙ୍କ ମଧ୍ୟରେ ସବୁଠାରୁ ସାନ ପୁଅ ଅତିଶୟ ମୂର୍ଖ ଏବଂ ବିଦ୍ୟାହୀନ ଥିଲେ । ସେ ବୟୋଜ୍ୟେଷ୍ଠମାନଙ୍କ ସେବା କରୁ ନ ଥିଲେ ।୧୪। ମହାରାଜା ଇକ୍ଷ୍ୱାକୁ ସେହି ଅଳ୍ପବୁଦ୍ଧି ପୁତ୍ର ନାମ ଦଣ୍ଡ ବୋଲି ରଖିଲେ; କାରଣ ସେ ବୁଝିନେଇଥିଲେ ଯେ ଏ ମୂର୍ଖ ଉପରେ ନିଶ୍ଚୟ ଦଣ୍ଡପାତ ହେବ । ୧୫ । ହେ ଶତ୍ରୁଘାତି ରାମ ! ଦଣ୍ଡ ଯେପରି ଅଯୋଗ୍ୟ ପୁତ୍ର ଥିଲେ ସେଥିକି ଚାହିଁ ଇକ୍ଷ୍ୱାକୁ ବିନ୍ଧ୍ୟାଚଳ ଓ ଶୈବାଳ ପର୍ବତ ମଧ୍ୟବର୍ତ୍ତୀ ରାଜ୍ୟକୁ ତାଙ୍କୁ ଦେଲେ ।୧୬।

ସ ଦଣ୍ଡସ୍ତତ୍ର ରାଜାଭୂଦ୍ରମ୍ୟେ ପର୍ବତରୋଧସି ।
ପୁରଂ ଚାପ୍ରତିମଂ ରାମ ନ୍ୟବେଶୟଦନୁତ୍ତମମ୍ । ୧୭ ।
ପୁରସ୍ୟ ଚାକରୋନ୍ନାମ ମଧୁମନ୍ତମିତି ପ୍ରଭୋ ।
ପୁରୋହିତଂ ତୁଶନସଂ ବରୟାମାସ ସୁବ୍ରତମ୍ । ୧୮ ।
ଏବଂ ସ ରାଜା ହୃଷ୍ଟାକ୍ୟମକରୋତ୍ ସପୁରୋହିତଃ ।
ପ୍ରହୃଷ୍ଟମନୁଜାକୀର୍ଣଂ ଦେବରାଜ୍ୟଂ ଯଥା ଦିବି । ୧୯ ।
ତତଃ ସ ରାଜା ମନୁଜେନ୍ଦ୍ରପୁତ୍ରଃ
ସାର୍ଧଂ ଚ ତେନୋଶନସା ତଦାନୀମ୍ ।
ଚକାର ରାଜ୍ୟଂ ସୁମହନ୍ମହାତ୍ମା
ଶକ୍ରୋ ଦିବୀବୋଶନସା ସମେତଃ । ୨୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ଦଣ୍ଡରାଜ୍ୟନିବେଶୋ ନାମ ଏକୋନାଶୀତିତମଃ ସର୍ଗଃ ।

---

ସେହି ରମ୍ୟ ପର୍ବତ ଉପତ୍ୟକା ମଧ୍ୟରେ ଥିବା ଦେଶରେ ଦଣ୍ଡ ରାଜା ହେଲେ । ହେ ରାମ ! ସେଠାରେ ସେ ଏକ ଅତି ଉତ୍ତମ ନଗର ବସାଇଲେ । ୧୭ । ହେ ରାମ ! ସେ ସେହି ପୁରର ନାମ ମଧୁମନ୍ତ ବୋଲି ରଖିଲେ ଏବଂ ଉତ୍ତମ ବ୍ରତାଚାରୀ ଉଶନସଙ୍କୁ ପୁରୋହିତରୂପେ ବରଣ କଲେ । ୧୮ । ରାଜା ଦଣ୍ଡ ନିଜର ପୁରୋହିତଙ୍କ ସହିତ ସେହି ପ୍ରହୃଷ୍ଟ ପ୍ରଜାଜନପରିପୂର୍ଣ୍ଣ ରାଜ୍ୟକୁ, ଇନ୍ଦ୍ର ଦେବଲୋକକୁ ଶାସନ କଲାପରି ଶାସନ କଲେ । ୧୯ । ସେତେବେଳେ ମାନବେନ୍ଦ୍ର ଇକ୍ଷ୍ୱାକୁଙ୍କ ପୁତ୍ର ମହାତ୍ମା ଦଣ୍ଡ ସ୍ୱର୍ଗରେ ଇନ୍ଦ୍ରଙ୍କ ପରି ଉଶନସଙ୍କ ସହିତ ସେହି ବିଶାଳ ରାଜ୍ୟକୁ ଶାସନ କଲେ" । ୨୦ ।

# ଅଶୀତିତମଃ ସର୍ଗଃ

## ଅରଜାସଙ୍ଗମଃ

ଏତଦାଖ୍ୟାୟ ରାମାୟ ମହର୍ଷିଃ କୁମ୍ଭସମ୍ଭବଃ ।
ଅସ୍ୟାମେବାପରଂ ବାକ୍ୟଂ କଥାୟାମୁପଚକ୍ରମେ । ୧ ।
ତତଃ ସ ଦଣ୍ଡଃ କାକୁତ୍‌ସ୍ଥ ବହୁବର୍ଷଗଣାୟୁତମ୍ ।
ଅକରୋତ୍ତତ୍ର ଦାନ୍ତାତ୍ମା ରାଜ୍ୟଂ ନିହତକଣ୍ଟକମ୍ । ୨ ।
ଅଥ କାଲେ ତୁ କସ୍ମିଂଶ୍ଚିଦ୍ରାଜା ଭାର୍ଗବମାଶ୍ରମମ୍ ।
ରମଣୀୟମୁପାକ୍ରାମଚ୍ଚୈତ୍ରେ ମାସି ମନୋହରେ । ୩ ।
ତତ୍ର ଭାର୍ଗବକନ୍ୟାଂ ସ ରୂପେଣାପ୍ରତିମାଂ ଭୁବି ।
ବିଚରନ୍ତୀଂ ବନୋଦ୍ଦେଶେ ଦଣ୍ଡୋଽପଶ୍ୟଦନୁତ୍ତମାମ୍ । ୪ ।
ସ ଦୃଷ୍ଟ୍ୱା ତାଂ ସୁଦୁର୍ମେଧା ଅନଙ୍ଗଶରପୀଡ଼ିତଃ ।
ଅଭିଗମ୍ୟ ସୁସଂବିଗ୍ନାଂ କନ୍ୟାଂ ବଚନମବ୍ରବୀତ୍ । ୫ ।
କୁତସ୍ତ୍ୱମସି ସୁଶ୍ରୋଣି କସ୍ୟ ବାସି ସୁତା ଶୁଭେ ।
ପୀଡ଼ିତୋଽହମନଙ୍ଗେନ ଗଚ୍ଛାମି ତ୍ୱାଂ ଶୁଭାନନେ । ୬ ।

---

# ୮୦ତମ ସର୍ଗ

## (ଅରଜାଙ୍କ ସହିତ ସଙ୍ଗମ)

କୁମ୍ଭଯୋନି ଅଗସ୍ତ୍ୟ ରାମଙ୍କୁ ଏ କଥା କହି ଏହାର ପୂର୍ବ ବୃତ୍ତାନ୍ତ କହିବାକୁ ଆରମ୍ଭ କଲେ । ୧ । ସେ କହିଲେ, "ହେ ରାମ ! ଏହି ପ୍ରକାରେ ସେହି ରାଜା ଦଣ୍ଡ ବହୁ ବର୍ଷଯାଏ ଜିତେନ୍ଦ୍ରିୟ ହୋଇ ନିଷ୍କଣ୍ଟକ ରାଜ୍ୟ ଶାସନ କରିଥିଲେ । ୨ । ଅନନ୍ତର ଦିନେ ଚୈତ୍ର ମାସର ମନୋହର ଦିବସରେ ରାଜା ଦଣ୍ଡ ଶୁକ୍ରାଚାର୍ଯ୍ୟଙ୍କ ରମଣୀୟ ଆଶ୍ରମକୁ ଗଲେ । ୩ । ସେଠାରେ ସେ ଆଶ୍ରମ ଅଞ୍ଚଳରେ ବିଚରଣ କରୁଥିବା ଶୁକ୍ରାଚାର୍ଯ୍ୟଙ୍କର ଅନୁପମା ସୁନ୍ଦରୀ କନ୍ୟାଙ୍କୁ ଦେଖିଲେ । ୪ । ସେହି ଦୁର୍ମତି ରାଜା ସେ କନ୍ୟାଙ୍କୁ ଦେଖି କାମଶରରେ ପୀଡ଼ିତ ହେଲେ ଏବଂ ଅତିଶୟ ବିକଳ ହୋଇ ସେହି କନ୍ୟା ନିକଟକୁ ଯାଇ ତାଙ୍କୁ କହିଲେ ।୫। "ହେ ସୁଶ୍ରୋଣି ! ତୁମେ କେଉଁଠାରୁ ଆସିଛ, ଆଉ ତୁମେ କାହାର ସୁନ୍ଦରୀ କନ୍ୟା ଅଟ । ହେ ଶୋଭନେ ! ମୁଁ ବର୍ତ୍ତମାନ କାମପୀଡ଼ିତ ହୋଇ ତୁମ୍ଭ ନିକଟକୁ ଆସିଛି" । ୬ । ସେ ମୋହୋନ୍ମତ୍ତ ହୋଇ ଏପରି

ତସ୍ୟ ଚୈବଂ ବ୍ରୁବାଣସ୍ୟ ମୋହୋନ୍ମତ୍ତସ୍ୟ କାମିନଃ ।
ଭାର୍ଗବୀ ପ୍ରତ୍ୟୁବାଚେଦଂ ବଚଃ ସାନୁନୟଂ ନୃପମ୍ । ୭ ।
ଭାର୍ଗବସ୍ୟ ସୁତାଂ ବିଦ୍ଧି ଦେବସ୍ୟାକ୍ଲିଷ୍ଟକର୍ମଣଃ ।
ଅରଜାଂ ନାମ ରାଜେନ୍ଦ୍ର ଜ୍ୟେଷ୍ଠାମାଶ୍ରମବାସିନୀମ୍ । ୮ ।
ମା ମାଂ ସ୍ପୃଶ ବଲାଦ୍‌ରାଜନ୍ କନ୍ୟା ପିତୃବଶା ହ୍ୟହମ୍ ।
ଗୁରୁଃ ପିତା ମେ ରାଜେନ୍ଦ୍ର ତ୍ୱଂ ଚ ଶିଷ୍ୟୋ ମହାତ୍ମନଃ । ୯ ।
ବ୍ୟସନଂ ସୁମହତ୍ କ୍ରୁଦ୍ଧଃ ସ ତେ ଦଦ୍ୟାନ୍ମହାତପାଃ ।
ଯଦିବାନ୍ୟନ୍ମୟା କାର୍ଯ୍ୟଂ ଧର୍ମଦୃଷ୍ଟେନ ସତ୍ପଥା । ୧୦ ।
ବରୟସ୍ୱ ନୃପଶ୍ରେଷ୍ଠ ପିତରଂ ମେ ମହାଦ୍ୟୁତମ୍ ।
ଅନ୍ୟଥା ତୁ ଫଲଂ ତୁଭ୍ୟଂ ଭବେଦ୍ଘୋରାଭିସଂହିତମ୍ । ୧୧ ।
କ୍ରୋଧେନ ହି ପିତା ମେଽସୌ ତ୍ରୈଲୋକ୍ୟମପି ନିର୍ଦହେତ
ଦାସ୍ୟତେ ଚାନବଦ୍ୟାଙ୍ଗ ତବ ମାଂ ଯାଚିତଃ ପିତା । ୧୨ ।
ଏବଂ ବ୍ରୁବାଣାମରଜାଂ ଦଣ୍ଡଃ କାମବଶଂ ଗତଃ ।
ପ୍ରତ୍ୟୁବାଚ ମଦୋନ୍ମତ୍ତଃ ଶିରସ୍ୟାଧାୟ ଚାଞ୍ଜଳିମ୍ । ୧୩ ।

---

କହିବାରୁ ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ନମ୍ରତାପୂର୍ବକ ରାଜାଙ୍କୁ କହିଲେ ।୭। "ହେ ରାଜେନ୍ଦ୍ର ! ମୁଁ ଅକ୍ଲିଷ୍ଟକର୍ମା ଶୁକ୍ରାଚାର୍ଯ୍ୟଙ୍କର ଜ୍ୟେଷ୍ଠା କନ୍ୟା ଅଟେଁ । ମୋର ନାମ ଅରଜା, ମୁଁ ଏ ଆଶ୍ରମରେ ବାସ କରେ । ୮ । ହେ ରାଜେନ୍ଦ୍ର ! ତୁମେ ମୋତେ ବଳପୂର୍ବକ ଛୁଅଁ ନାହିଁ, କାରଣ ମୁଁ କୁମାରୀ ଏବଂ ପିତାଙ୍କର ଅଧୀନ ଅଟେଁ । ମୋର ପିତା ତୁମ୍ଭର ଗୁରୁ ଏବଂ ତୁମେ ସେ ମହାତ୍ମାଙ୍କର ଶିଷ୍ୟ ଅଛ । ୯ । ଯଦି ତୁମେ କୌଣସି ଅନୁଚିତ କାର୍ଯ୍ୟ କରିବ, ତାହାହେଲେ ସେ ମହାତପା ଅତିଶୟ କ୍ରୁଦ୍ଧ ହୋଇ ତୁମକୁ ମହା-ବିପଦରେ ପକାଇବେ । ଅଥବା ଯଦି ତୁମ୍ଭର ମୋଠାରେ ପ୍ରୟୋଜନ ଥାଏ, ତେବେ ତୁମେ ଧର୍ମସମ୍ମତ ରୀତିରେ ମୋର ମହାଦୀପ୍ତିମାନ୍ ପିତାଙ୍କୁ ମୋତେ ବିବାହ ଦେବାକୁ କହ । ହେ ନରଶ୍ରେଷ୍ଠ ! ତୁମେ ଅନ୍ୟଥା କଲେ ତୁମ ଉପରେ ଘୋର ବିପଦ ପଡ଼ିବ ।୧୦-୧୧। ମୋର ପିତା କ୍ରୁଦ୍ଧ ହେଲେ ତିନଲୋକକୁ ମଧ୍ୟ ପୋଡ଼ି ପକାଇବେ । ହେ ଅନିନ୍ଦିତବପୁଷ୍ମାନ୍! ତୁମେ ମୋ ଲାଗି ପିତାଙ୍କୁ ପ୍ରାର୍ଥନା କର । ସେ ମୋତେ ତୁମକୁ ଦେଇ ଦେଇ ପାରନ୍ତି" । ୧୨ । ଅରଜା ଏପରି କହିବାରୁ କାମପୀଡ଼ିତ ଏବଂ ମଦୋନ୍ମତ୍ତ ରାଜା ଦଣ୍ଡ ପ୍ରାଞ୍ଜଳି ହୋଇ ତାଙ୍କୁ କହିଲେ । ୧୩ । "ହେ ସୁଶ୍ରୋଣି !

ପ୍ରସାଦଂ କୁରୁ ସୁଶ୍ରୋଣି ନ କାଲଂ କ୍ଷେପ୍ତୁମର୍ହସି ।
ତ୍ୱତ୍କୃତେ ହି ମମ ପ୍ରାଣା ବିଦୀର୍ଯନ୍ତେ ବରାନନେ । ୧୪ ।
ତ୍ୱାଂ ପ୍ରାପ୍ୟ ମେ ବଧୋ ବା ସ୍ୟାଚ୍ଛାପୋ ବା ଯଦି ଦାରୁଣଃ ।
ଭକ୍ତଂ ଭଜସ୍ୱ ମାଂ ଭୀରୁ ଭଜମାନଂ ସୁବିହ୍ୱଲମ୍ । ୧୫ ।
ଏବମୁକ୍ତ୍ୱା ତୁ ତାଂ କନ୍ୟାଂ ଦୋର୍ଭ୍ୟାଂ ଗୃହ୍ୟ ବଲାଦ୍ ବଲୀ ।
ବିସ୍ଫୁରନ୍ତୀଂ ଯଥାକାମଂ ମୈଥୁନାୟୋପଚକ୍ରମେ । ୧୬ ।
ଏତମର୍ଥଂ ମହାଘୋରଂ ଦଣ୍ଡଃ କୃତ୍ୱା ସୁଦାରୁଣମ୍ ।
ନଗରଂ ପ୍ରୟଯାବାଶୁ ମଧୁମନ୍ତମନୁତ୍ତମମ୍ । ୧୭ ।
ଅରଜାପି ରୁଦନ୍ତୀ ସା ଆଶ୍ରମସ୍ୟାବିଦୂରତଃ ।
ପ୍ରତୀକ୍ଷନ୍ତୀ ସୁସଂତ୍ରସ୍ତା ପିତରଂ ଦେବସନ୍ନିଭମ୍ । ୧୮ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଉତ୍ତରକାଣ୍ଡେ ଅରଜାସଙ୍ଗମୋ ନାମ ଅଶୀତିତମଃ ସର୍ଗଃ ।

---

ତୁମେ ମୋ ଉପରେ କୃପା କର, ବୃଥା କାଳକ୍ଷେପ କର ନାହିଁ । ହେ ବରାନନେ ! ତୁମଲାଗି ମୋର ପ୍ରାଣ ବାହାରିଯାଉଛି । ୧୪ । ତୁମକୁ ଯଦି ମୁଁ ପାଏ ତେବେ ମୋର ମୃତ୍ୟୁ ହେଲେ ବା ମୋ ଉପରେ ଘୋର ଶାପ ପଡ଼ିଲେ ମଧ୍ୟ ମୁଁ ସେଥିପାଇଁ ପ୍ରସ୍ତୁତ ଅଛି । ହେ ଭୀରୁ ! ମୁଁ ଅତିଶୟ ବିକଳ ହୋଇ ତୁମକୁ ଆଶ୍ରୟ କରୁଅଛି, ସୁତରାଂ ତୁମେ ମୋତେ ଭଜ" । ୧୫ । ଏହା କହି ବଳବାନ୍ ରାଜା ଦଣ୍ଡ ବଳାତ୍କାରରେ ଦୁଇ ହାତରେ ସେ କନ୍ୟାଙ୍କୁ ଧରି, ସେ ଛଟପଟ ହେଉଥିବା ଅବସ୍ଥାରେ ମନଇଚ୍ଛା ତାଙ୍କ ସହିତ ରମଣ କଲେ । ୧୬ । ଏହିପ୍ରକାରେ ସେ ରାଜା ଦଣ୍ଡ ଏହିଭଳି ଗର୍ହିତ ଓ ଅତିଭୟାନକ ଅନର୍ଥ କରିସାରି ଅତିସତ୍ୱର ଆପଣାର ରାଜଧାନୀ ମଧୁମନ୍ତ ନଗରକୁ ଚାଲିଗଲେ । ୧୭ । ଏଣେ ଅରଜା ଆଶ୍ରମର କିଛି ଦୂରରେ ରହି ଅତ୍ୟନ୍ତ ଦୁଃଖିତ ଭାବରେ ରୋଦନ କରିବାକୁ ଲାଗିଲେ ଏବଂ ଅତିଶୟ ଭୟଭୀତ ହୋଇ ନିଜର ଦେବତୁଲ୍ୟ ପିତାଙ୍କୁ ଅପେକ୍ଷା କରିବାକୁ ଲାଗିଲେ" । ୧୮ ।

# ଏକାଶୀତିତମଃ ସର୍ଗଃ

## ଦଣ୍ଡଶାପଃ

ସ ମୁହୂର୍ତ୍ତାଦୁପଶ୍ରୁତ୍ୟ ଦେବର୍ଷିରମିତପ୍ରଭଃ ।
ସ୍ୱମାଶ୍ରମଂ ଶିଷ୍ୟବୃତଃ କ୍ଷୁଧାର୍ତ୍ତଃ ସଂନ୍ୟବର୍ତ୍ତତ । ୧ ।
ସୋଽପଶ୍ୟଦରଜାଂ ଦୀନାଂ ରଜସା ସମଭିପ୍ଲୁତାମ୍ ।
ଜ୍ୟୋତ୍ସ୍ନାମିବାରୁଣଗ୍ରସ୍ତାଂ ପ୍ରତ୍ୟୁଷେ ନ ବିରାଜତୀମ୍ । ୨ ।
ତସ୍ୟ ରୋଷଃ ସମଭବତ୍ କ୍ଷୁଧାର୍ତ୍ତସ୍ୟ ବିଶେଷତଃ ।
ନିର୍ଦ୍ଦହନ୍ନିବ ଲୋକାଂସ୍ତ୍ରୀଂଶିଷ୍ୟାଂସ୍ତୈତଦୁବାଚ ହ । ୩ ।
ପଶ୍ୟଧ୍ୱଂ ବିପରୀତସ୍ୟ ଦଣ୍ଡସ୍ୟାବିଜିତାତ୍ମନଃ ।
ବିପତ୍ତିଂ ଘୋରସଂକାଶାଂ କ୍ରୁଦ୍ଧାମଗ୍ନିଶିଖାମିବ । ୪ ।
କ୍ଷୟୋଽସ୍ୟ ଦୁର୍ମତେଃ ପ୍ରାପ୍ତଃ ସାନୁଗସ୍ୟ ଦୁରାତ୍ମନଃ ।
ଯଃ ପ୍ରଦୀପ୍ତାଂ ହୁତାଶସ୍ୟ ଶିଖାଂ ବୈ ସ୍ପ୍ରଷ୍ଟୁମିଚ୍ଛତି । ୫ ।
ଯସ୍ମାତ୍ ସ କୃତବାନ୍ ପାପମୀଦୃଶଂ ଘୋରସଂହିତମ୍ ।
ତସ୍ମାତ୍ ପ୍ରାପ୍ସ୍ୟତି ଦୁର୍ମେଧାଃ ଫଳଂ ପାପସ୍ୟ କର୍ମଣଃ । ୬ ।

---

## ୮୧ତମ ସର୍ଗ

### ( ଦଣ୍ଡଙ୍କ ପ୍ରତି ଶାପ )

"ମହାପ୍ରତାପୀ ଦେବର୍ଷି ଶୁକ୍ରାଚାର୍ଯ୍ୟ ମୁହୂର୍ତ୍ତକ ପରେ ଏହି କଥା ଶୁଣି ଶିଷ୍ୟଙ୍କ ଦ୍ୱାରା ପରିବେଷ୍ଟିତ ହୋଇ କ୍ଷୁଧାର୍ତ୍ତ ଅବସ୍ଥାରେ ନିଜ ଆଶ୍ରମକୁ ଫେରି ଆସିଲେ । ୧ । ସେ ଅରଜାଙ୍କୁ ଦୀନ ଏବଂ ଧୂଳିଧୂସରିତ ଅବସ୍ଥାରେ. ପ୍ରାତଃକାଳରେ ମଳିନ ପଡ଼ି-ଯାଇଥିବା ପ୍ରତ୍ୟୁଷର ମଳିନ ଚନ୍ଦ୍ର ଜ୍ୟୋତ୍ସ୍ନା ପରି ଦେଖିଲେ ।୨। ବିଶେଷତଃ ସେ କ୍ଷୁଧାର୍ତ୍ତ ହୋଇଥିବାରୁ ତାଙ୍କର ଅନ୍ତଃସ୍ଥ କ୍ରୋଧ ଜାତ ହେଲା । କ୍ରୋଧରେ ସେ ସତେ ଯେପରି ତ୍ରିଲୋକକୁ ପୋଡ଼ିପକାଇବେ, ଏପରିଭାବରେ ନିଜର ଶିଷ୍ୟମାନଙ୍କୁ କହିଲେ । ୩ । 'ଅସଂଯତ ଏବଂ ବିପରୀତକାର୍ଯ୍ୟକାରୀ ଦଣ୍ଡଙ୍କ ଉପରେ ଆଜି ମୋର ଅଗ୍ନିଶିଖା ସଦୃଶ କ୍ରୋଧରୁ ଘୋର ବିପତ୍ତି ପଡ଼ିବ । ୪ । ସେହି ଦୁରାତ୍ମା ଜ୍ୱଳନ୍ତ ଅଗ୍ନିଶିଖାକୁ ସ୍ପର୍ଶ କରିଅଛି । ଅତଏବ ନିଜର ଅନୁଗାମୀମାନଙ୍କ ସହିତ ସେହି ଦୁରାତ୍ମାର ବିନାଶ ଆସି ଉପସ୍ଥିତ ହୋଇଅଛି । ୫ । ସେ ପାପୀ ଏ ପ୍ରକାର ଘୋର ଦୁଷ୍କୃତ ଘଟାଇଅଛି ।'ଅତଏବ ସେ ଦୁର୍ବୁଦ୍ଧିକୁ ସେ ପାପକାର୍ଯ୍ୟର ଫଳ ମିଳିବ ।୬।

ସପ୍ତରାତ୍ରେଣ ରାଜାସୌ ସଭୃତ୍ୟବଲବାହନଃ ।
ପାପକର୍ମସମାଚାରୋ ବଧଂ ପ୍ରାପ୍ସ୍ୟତି ଦୁର୍ମତିଃ । ୭ ।
ସମନ୍ତାଦ୍ ଯୋଜନଶତଂ ବିଷୟଂ ଚାସ୍ୟ ଦୁର୍ମତେଃ ।
ଧକ୍ଷ୍ୟତେ ପାଂସୁବର୍ଷେଣ ମହତା ପାକଶାସନଃ । ୮ ।
ସର୍ବସତ୍ତ୍ୱାନି ଯାନୀହ ସ୍ଥାବରାଣି ଚରାଣି ଚ ।
ମହତା ପାଂସୁବର୍ଷେଣ ବିଲୟଂ ସର୍ବତୋଽଗମନ୍ । ୯ ।
ଦଣ୍ଡସ୍ୟ ବିଷୟୋ ଯାବତ୍ତାବତ୍ ସର୍ବସମୁଚ୍ଛ୍ରୟମ୍ ।
ପାଂସୁବର୍ଷମିବାଲକ୍ଷ୍ୟଂ ସପ୍ତରାତ୍ରଂ ଭବିଷ୍ୟତି । ୧୦ ।
ଇତ୍ୟୁକ୍ତ୍ୱା କ୍ରୋଧତାମ୍ରାକ୍ଷସ୍ତଦାଶ୍ରମନିବାସିନମ୍ ।
ଜନଂ ଜନପଦାନ୍ତେଷୁ ସ୍ଥୀୟତାମିତି ଚାବ୍ରବୀତ୍ । ୧୧ ।
ଶ୍ରୁତ୍ୱା ତୂଶନସୋ ବାକ୍ୟଂ ସୋଽଶ୍ରମାବସଥୋ ଜନଃ ।
ନିଷ୍କ୍ରାନ୍ତୋ ବିଷୟାତ୍ତସ୍ମାତ୍ ସ୍ଥାନଂ ଚକ୍ରେଽଥ ବାହ୍ୟତଃ । ୧୨ ।
ସ ତଥୋକ୍ତ୍ୱା ମୁନିଜନମରଜାମିଦମବ୍ରବୀତ୍ ।
ଇହୈବ ବସ ଦୁର୍ମେଧେ ଆଶ୍ରମେ ସୁସମାହିତା । ୧୩ ।
ଇଦଂ ଯୋଜନପର୍ଯନ୍ତଂ ସରଃ ସୁରୁଚିରପ୍ରଭମ୍ ।
ଅରଜେ ବିଜ୍ୱରା ଭୁଙ୍କ୍ଷ୍ୱ କାଲଶ୍ଚାତ୍ର ପ୍ରତୀକ୍ଷତାମ୍ । ୧୪ ।

---

ସେହି ଦୁର୍ମତି ରାଜା ସାତରାତି ଭିତରେ ଭୃତ୍ୟ, ସେନା ଏବଂ ବାହନମାନଙ୍କ ସହିତ ମୃତ୍ୟୁ ଲାଭ କରିବ । ୭ । ସେହି ଦୁଷ୍ଟ ରାଜାର ଚତୁର୍ଦ୍ଦିଗରେ ଶହେ ଯୋଜନ ପର୍ଯ୍ୟନ୍ତ ବିସ୍ତୃତ ରାଜ୍ୟକୁ ଇନ୍ଦ୍ର ପ୍ରବଳ ପାଂଶୁବୃଷ୍ଟି କରି ପୋଡ଼ି ପକାଇବେ ।୮। ଏଠାରେ ଯେତେ ସ୍ଥାବର ଏବଂ ଚର ଜୀବ ଅଛନ୍ତି ସେ ସମସ୍ତେ ଏହି ପାଂଶୁବୃଷ୍ଟି ଫଳରେ ସମ୍ପୂର୍ଣ୍ଣ ଅଦୃଶ୍ୟ ହୋଇଯିବେ । ୯ । ଦଣ୍ଡର ଯେତିକି ରାଜ୍ୟ ଅଛି ସେ ସମସ୍ତ ସାତଦିନ ପାଂଶୁବୃଷ୍ଟି ଫଳରେ ସମ୍ପୂର୍ଣ୍ଣ ଅଦୃଶ୍ୟ ହୋଇଯିବ' । ୧୦ । ସେ ଏହା କହି କ୍ରୋଧରେ ରକ୍ତଚକ୍ଷୁ ହୋଇ ସେହି ଆଶ୍ରମବାସୀ ଲୋକଙ୍କୁ ପୁଣି କହିଲେ, 'ତୁମ୍ଭେମାନେ ଯାଇ ଅନ୍ୟ ରାଜ୍ୟରେ ବାସ କର' ।୧୧। ଶୁକ୍ରାଚାର୍ଯ୍ୟଙ୍କର ଏ କଥା ଶୁଣି ସେହି ଆଶ୍ରମବାସୀ ସମସ୍ତ ଲୋକେ ସେ ରାଜ୍ୟରୁ ବାହାରି ଯାଇ, ତା ବାହାରେ ଅନ୍ୟ ସ୍ଥାନରେ ରହିଲେ ।୧୨। ସେ ଆଶ୍ରମବାସୀମାନଙ୍କୁ ଏପରି କହି ଅରଜାଙ୍କୁ କହିଲେ, 'ହେ ଦୁର୍ବୁଦ୍ଧେ ! ତୁ ସାବଧାନ ହୋଇ ଏ ଆଶ୍ରମରେ ରହ । ୧୩। ହେ ଅରଜେ, ଏଠାରେ ଯେଉଁ ଏକ-ଯୋଜନବ୍ୟାପୀ ସୁନ୍ଦର ସରୋବର ଅଛି, ସେହିଠାରେ ତୁ ନିଶ୍ଚିନ୍ତ ହୋଇ ନିଜର କର୍ମଫଳ ଭୋଗକରି ରହ ଏବଂ ତୋର ଉଦ୍ଧାରର ସମୟ କେତେବେଳେ ଆସିବ

ତ୍ୱତ୍ସମୀପେ ଚ ଯେ ସତ୍ତ୍ୱା ବାସମେଷ୍ୟନ୍ତି ତାଂ ନିଶାମ୍ ।
ଅବଧ୍ୟା ପାଂସୁବର୍ଷେଣ ତେ ଭବିଷ୍ୟନ୍ତି ନିତ୍ୟଦା । ୧୫ ।
ଶ୍ରୁତ୍ୱା ନିୟୋଗଂ ବ୍ରହ୍ମର୍ଷେଃ ସାରଜା ଭାର୍ଗବୀ ତଦା ।
ତଥେତି ପିତରଂ ପ୍ରାହ ଭାର୍ଗବଂ ଭୃଶଦୁଃଖିତା । ୧୬ ।
ଇତ୍ୟୁକ୍ତ୍ୱା ଭାର୍ଗବୋ ବାସମନ୍ୟତ୍ର ସମକାରୟତ୍ ।
ତଚ୍ଚ ରାଜ୍ୟଂ ନରେନ୍ଦ୍ରସ୍ୟ ସଭୃତ୍ୟବଲବାହନମ୍ । ୧୭ ।
ସପ୍ତାହାଦ୍ଭସ୍ମସାଦ୍ଭୂତଂ ଯଥୋକ୍ତଂ ବ୍ରହ୍ମବାଦିନା ।
ତସ୍ୟାସୌ ଦଣ୍ଡବିଷୟୋ ବିନ୍ଧ୍ୟଶୈବଲୟୋର୍ନୃପ । ୧୮ ।
ଶପ୍ତୋ ବ୍ରହ୍ମର୍ଷିଣା ତେନ ବୈଧର୍ମ୍ୟେ ସହିତେ କୃତେ ।
ତତଃ ପ୍ରଭୃତି କାକୁତ୍ସ୍ଥ ଦଣ୍ଡକାରଣ୍ୟମୁଚ୍ୟତେ । ୧୯ ।
ତପସ୍ୱିନଃ ସ୍ଥିତା ହ୍ୟତ୍ର ଜନସ୍ଥାନମତୋଽଭବତ୍ ।
ଏତତ୍ତେ ସର୍ବମାଖ୍ୟାତଂ ଯନ୍ମାଂ ପୃଚ୍ଛସି ରାଘବ । ୨୦ ।
ସନ୍ଧ୍ୟାମୁପାସିତୁଂ ବୀର ସମୟୋ ହ୍ୟତିବର୍ତତେ ।
ଏତେ ମହର୍ଷୟଃ ସର୍ବେ ପୂର୍ଣକୁମ୍ଭାଃ ସମନ୍ତତଃ । ୨୧ ।

---

ସେଥିକୁ ଅପେକ୍ଷା କରି ରହିଥାଅ ।୧୪। ଏହି ସାତରାତି ମଧ୍ୟରେ ଯେଉଁ ପଶୁ ପକ୍ଷୀମାନେ ତୋ ନିକଟରେ ରହିବେ ସେମାନେ ସେହି ପାଂଶୁବୃଷ୍ଟିରେ କଦାପି ନଷ୍ଟ ହୋଇଯିବେ ନାହିଁ' । ୧୫ । ବ୍ରହ୍ମର୍ଷିଙ୍କର ଏ ଆଜ୍ଞା ଶୁଣି ଭାର୍ଗବି କନ୍ୟା ଅରଜା ଅତ୍ୟନ୍ତ ଦୁଃଖିତ ହୋଇ ପିତାଙ୍କୁ କହିଲେ 'ତାହାହିଁ ହେଉ' । ୧୬ । ଏହା କହି ଶୁକ୍ରାଚାର୍ଯ୍ୟ ଅନ୍ୟତ୍ର ଯାଇ ବାସ କଲେ । ଭୃତ୍ୟ, ସୈନ୍ୟ ଏବଂ ବାହନମାନଙ୍କ ସହିତ ସେ ରାଜାଙ୍କର ରାଜ୍ୟ ବ୍ରହ୍ମବାଦୀ ଭାର୍ଗବ ମୁନିଙ୍କ କଥାନୁସାରେ ସାତଦିନ ମଧ୍ୟରେ ଭସ୍ମୀଭୂତ ହୋଇଗଲା । ହେ ରାଜନ୍ ! ଏହି ବିନ୍ଧ୍ୟାଚଳ ଏବଂ ଶୈବଳ ପର୍ବତ ମଧ୍ୟରେ ସେହି ଦଣ୍ଡଙ୍କ ରାଜ୍ୟ ଥିଲା ।୧୭-୧୮। ହେ କାକୁତ୍ସ୍ଥ ! ବ୍ରହ୍ମର୍ଷିଙ୍କ ଶାପରୁ ତାଙ୍କୁ ସେହି ଅଧର୍ମର ଫଳ ମିଳିଲା । ସେହିଦିନଠାରୁ ଏ ଦେଶର ନାମ ଦଣ୍ଡକାରଣ୍ୟ ନାମରେ ପ୍ରସିଦ୍ଧ ହେଲା । ୧୯ । ହେ ରାଘବ ! ପରେ ଏଠାରେ ତପସ୍ୱୀମାନେ ବାସ କରିବାରୁ ଏହାର ନାମ ଜନସ୍ଥାନ ମଧ୍ୟ ହେଲା । ତୁମେ ମୋତେ ଯାହା ପଚାରିଲ, ସେ କଥା ମୁଁ ସମସ୍ତ କହିଲି । ୨୦ । ହେ ବୀର ! ଏବେ ସନ୍ଧ୍ୟା ଉପାସନାର ସମୟ ଅତିକ୍ରାନ୍ତ ହୋଇଯାଉଛି । ଏଇ ଦେଖ, ମହର୍ଷିମାନେ କଳସରେ ଜଳପୂର୍ଣ୍ଣ କରି ସ୍ନାନାଦି ସାରି

କୃତୋଦକା ନରବ୍ୟାଘ୍ର ଆଦିତ୍ୟଂ ପର୍ଯୁପାସତେ ।
ସ ତୈର୍ବ୍ରାହ୍ମଣମଭ୍ୟସ୍ତଂ ସହିତୈର୍ବ୍ରହ୍ମବତ୍ତମୈଃ ।
ରବିରସ୍ତଂ ଗତୋ ରାମ ଗଚ୍ଛୋଦକମୁପସ୍ପୃଶ । ୨୨ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ଦଣ୍ଡଶାପୋ ନାମ ଏକାଶୀତିତମଃ ସର୍ଗଃ ।

---

# ଦ୍ୟଶୀତିତମଃ ସର୍ଗଃ

## ରାମନିବର୍ତ୍ତନମ୍

ଋଷେର୍ବଚନମାଜ୍ଞାୟ ରାମଃ ସନ୍ଧ୍ୟାମୁପାସିତୁମ୍ ।
ଅପାକ୍ରାମତ୍ ସରଃ ପୁଣ୍ୟମପ୍ସରୋଗଣସେବିତମ୍ । ୧ ।
ତତ୍ରୋଦକମୁପସ୍ପୃଶ୍ୟ ସନ୍ଧ୍ୟାମନ୍ୱାସ୍ୟ ପଶ୍ଚିମାମ୍ ।
ଆଶ୍ରମଂ ପ୍ରାବିଶଦ୍ରାମଃ କୁମ୍ଭଯୋନେର୍ମହାତ୍ମନଃ । ୨ ।
ତସ୍ୟାଗସ୍ତ୍ୟୋ ବହୁଗୁଣଂ କନ୍ଦମୂଳଂ ତଥୌଷଧୀମ୍ ।
ଶାଲ୍ୟାଦୀନି ପବିତ୍ରାଣି ଭୋଜନାର୍ଥମକଳ୍ପୟତ୍ । ୩ ।

---

କରି ଆସି ସୂର୍ଯ୍ୟଙ୍କ ପୂଜା କରୁଛନ୍ତି । ହେ ପୁରୁଷସିଂହ ! ତୁମେ ସେହି ବ୍ରହ୍ମବିଦ୍ ବ୍ରାହ୍ମଣମାନଙ୍କ ସହିତ ବସିକରି ସନ୍ଧ୍ୟା ଉପାସନା କର । ହେ ରାମ ! ସୂର୍ଯ୍ୟ ଅସ୍ତ ହୋଇଗଲେଣି, ଏବେ ତୁମେ ଯାଅ ଜଳରେ ସ୍ନାନାଦି କର" । ୨୧-୨୨ ।

---

## ୮୨ତମ ସର୍ଗ

### ( ରାମଙ୍କ ପ୍ରତ୍ୟାବର୍ତ୍ତନ )

ଅଗସ୍ତ୍ୟଙ୍କ ନିର୍ଦ୍ଦେଶ ଜାଣି ରାମ ଅପ୍ସରାଗଣସେବିତ ସେହି ନିର୍ମଳ ଜଳପୂର୍ଣ୍ଣ ସରୋବର ନିକଟକୁ ସନ୍ଧ୍ୟା ଉପାସନା କରିବା ପାଇଁ ଗଲେ । ୧ । ରାମ ଆଚମନ-ପୂର୍ବକ ସାୟଂ ସନ୍ଧ୍ୟା ଉପାସନା କରି ସାରି ମହାତ୍ମା ଅଗସ୍ତ୍ୟଙ୍କ ଆଶ୍ରମକୁ ଫେରି ଆସିଲେ । ୨ । ଋଷି ଅଗସ୍ତ୍ୟ ରାମଙ୍କୁ ବହୁପରିମାଣରେ କନ୍ଦମୂଳ, ମସଲ୍ ଏବଂ ଶାଳିଅନ୍ନ ଆଦି ପବିତ୍ର ଭୋଜ୍ୟ ପଦାର୍ଥ ଖାଇବାକୁ ଦେଲେ ।୩। ରାମ ସେହି ଅମୃତ

ସ ଭୁକ୍ତବାନ୍ନରଶ୍ରେଷ୍ଠସ୍ତଦନ୍ନମମୃତୋପମମ୍ ।
ପ୍ରୀତଶ୍ଚ ପରିତୁଷ୍ଟଶ୍ଚ ତାଂ ରାତ୍ରିଂ ସମୁପାବିଶତ୍ । ୪ ।
ପ୍ରଭାତେ କାଲ୍ୟମୁତ୍ଥାୟ କୃତ୍ୱାହ୍ନିକମରିନ୍ଦମଃ ।
ଋଷିଂ ସମୁପଚକ୍ରାମ ଗମନାୟ ରଘୂତ୍ତମଃ । ୫ ।
ଅଭିବାଦ୍ୟାବ୍ରବୀଦ୍ରାମୋ ମହର୍ଷିଂ କୁମ୍ଭସମ୍ଭବମ୍ ।
ଆପୃଚ୍ଛେ ସ୍ୱାଂ ପୁରୀଂ ଗନ୍ତୁଂ ମାମନୁଜ୍ଞାତୁମର୍ହସି । ୬ ।
ଧନ୍ୟୋଽସ୍ମ୍ୟନୁଗୃହୀତୋଽସ୍ମି ଦର୍ଶନେନ ମହାତ୍ମନଃ ।
ଦ୍ରଷ୍ଟୁଂ ଚୈବାଗମିଷ୍ୟାମି ପାବନାର୍ଥଂ ମହାତ୍ମନଃ । ୭ ।
ତଥା ବଦତି କାକୁତ୍ସ୍ଥେ ବାକ୍ୟମଦ୍ଭୁତଦର୍ଶନମ୍ ।
ଉବାଚ ପରମପ୍ରୀତୋ ଧର୍ମନେତ୍ରସ୍ତପୋଧନଃ । ୮ ।
ଅତ୍ୟଦ୍ଭୁତମିଦଂ ବାକ୍ୟଂ ତବ ରାମ ଶୁଭାକ୍ଷରମ୍ ।
ପାବନଃ ସର୍ବଭୂତାନାଂ ତ୍ୱମେବ ରଘୁନନ୍ଦନ । ୯ ।
ମୁହୂର୍ତ୍ତମପି ରାମ ତ୍ୱାଂ ଯେ ଚ ପଶ୍ୟନ୍ତି କେଚନ ।
ପାବିତାଃ ସ୍ୱର୍ଗଭୂତାଶ୍ଚ ପୂଜ୍ୟାସ୍ତେ ସର୍ବଦୈବତୈଃ । ୧୦ ।

---

ସମାନ ଦ୍ରବ୍ୟମାନ ଭୋଜନ କରି ଅତିଶୟ ସନ୍ତୁଷ୍ଟ ଓ ପ୍ରୀତ ହୋଇ ସେହି ଆଶ୍ରମରେ ରାତ୍ରି କଟାଇଲେ । ୪ । ପୁଣି ପ୍ରାତଃକାଳରୁ ଉଠି ଏବଂ ନିତ୍ୟକର୍ମ ସାରି ରଘୁଶ୍ରେଷ୍ଠ ରାମ ବିଦାୟ ନେବାପାଇଁ ଅଗସ୍ତ୍ୟଙ୍କ ନିକଟକୁ ଗଲେ । ୫ । ରାମ ପ୍ରଣାମ କରି କୁମ୍ଭଯୋନି ଅଗସ୍ତ୍ୟ ମହର୍ଷିଙ୍କୁ କହିଲେ, "ଭଗବନ୍! ମୁଁ ନିଜ ସ୍ଥାନକୁ ଯିବାକୁ ଅନୁମତି ଚାହୁଁଛି; ମୋତେ ଯିବାକୁ ଆଜ୍ଞା ଦିଅନ୍ତୁ ।୬। ମୁଁ ଆପଣଙ୍କ ଭଳି ମହାତ୍ମାଙ୍କ ଦର୍ଶନଲାଭରେ ଧନ୍ୟ ହୋଇଅଛି ଏବଂ ଅନୁଗୃହୀତ ହୋଇଅଛି । ମୁଁ ନିଜକୁ ପବିତ୍ର କରିବା ପାଇଁ ଆପଣଙ୍କୁ ଦେଖିବାକୁ ବାରମ୍ବାର ଆସିବି" । ୭ । ରାମଙ୍କର ଏପରି ଅଦ୍ଭୁତ କଥା ଶୁଣି ଧର୍ମଦ୍ରଷ୍ଟା ତପସ୍ୱୀ ଅଗସ୍ତ୍ୟ ଅତିଶୟ ପ୍ରୀତ ହୋଇ କହିଲେ । ୮ । "ହେ ରଘୁନନ୍ଦନ ! ସୁନ୍ଦର ଅକ୍ଷରଯୋଜନାରେ ଯୁକ୍ତ ତୁମ୍ଭର ଏହି ବଚନ ଅତିଶୟ ଅଦ୍ଭୁତ ଅଟେ । ତୁମେ ସ୍ୱୟଂ ସମସ୍ତ ପ୍ରାଣୀଙ୍କର ପବିତ୍ରକାରୀ ଅଟ । ।୯। ହେ ରାମ ! ଯଦି କେହି ଲୋକ ମୁହୂର୍ତ୍ତକ ପାଇଁ ତୁମ୍ଭର ଦର୍ଶନ ପାଏ, ତେବେ ସେ ପବିତ୍ର ହୋଇ ଏବଂ ସ୍ୱର୍ଗବାସୀ ହୋଇ ଦେବତାମାନଙ୍କଠାରୁ ପୂଜାପାଏ । ୧୦ ।

ଯେ ଚ ତ୍ୱାଂ ଘୋରଚକ୍ଷୁର୍ଭିଃ ପଶ୍ୟନ୍ତି ପ୍ରାଣିନୋ ଭୁବି ।
ହତାସ୍ତେ ଯମଦଣ୍ଡେନ ସଦ୍ୟୋ ନିରୟଗାମିନଃ । ୧୧ ।
ଈଦୃଶସ୍ତ୍ୱଂ ରଘୁଶ୍ରେଷ୍ଠ ପାବନଃ ସର୍ବଦେହିନାମ୍ ।
ଭୁବି ତ୍ୱାଂ କଥୟନ୍ତୋଽପି ସିଦ୍ଧିମେଷ୍ୟନ୍ତି ରାଘବ । ୧୨ ।
ଗଚ୍ଛ ଶୀଘ୍ରମିତୋଽବ୍ୟଗ୍ରଃ ପନ୍ଥାନମକୁତୋଭୟମ୍ ।
ପ୍ରଶାଧି ରାଜ୍ୟଂ ଧର୍ମେଣ ଗତିର୍ହି ଜଗତୋ ଭବାନ୍ । ୧୩ ।
ଏବମୁକ୍ତସ୍ତୁ ମୁନିନା ପ୍ରାଞ୍ଜଳିଃ ପ୍ରଗ୍ରହୋ ନୃପଃ ।
ଅଭ୍ୟବାଦୟତ ପ୍ରାଜ୍ଞସ୍ତମୃଷିଂ ପୁଣ୍ୟଶୀଳିନମ୍ । ୧୪ ।
ଅଭିବାଦ୍ୟ ମୁନିଶ୍ରେଷ୍ଠଂ ତାଂଶ୍ଚ ସର୍ବାଂସ୍ତପୋଧନାନ୍ ।
ଅଧ୍ୟାରୋହତ୍ତଦବ୍ୟଗ୍ରଃ ପୁଷ୍ପକଂ ହେମଭୂଷିତମ୍ । ୧୫ ।
ତଂ ପ୍ରୟାନ୍ତଂ ମୁନିଗଣା ଆଶୀର୍ବାଦୈଃ ସମନ୍ତତଃ ।
ଅପୂଜୟନ୍ମହେନ୍ଦ୍ରାଭଂ ସହସ୍ରାକ୍ଷମିବାମରାଃ । ୧୬ ।
ଖସ୍ଥଃ ସ ଦଦୃଶେ ରାମଃ ପୁଷ୍ପକେ ହେମଭୂଷିତେ ।
ଶଶୀ ମେଘସମୀପସ୍ଥୋ ଯଥା ଜଳଧରାଗମେ । ୧୭ ।

---

ଏହି ପୃଥିବୀରେ ଯେଉଁ ପ୍ରାଣୀମାନେ ତୁମକୁ ଖରାପ ଦୃଷ୍ଟିରେ ଦେଖନ୍ତି, ସେମାନେ ଯମଦଣ୍ଡରେ ମୃତ ହୋଇ ନରକଗାମୀ ହୁଅନ୍ତି । ୧୧ । ହେ ରଘୁଶ୍ରେଷ୍ଠ ! ତୁମେ ସମସ୍ତ ପ୍ରାଣୀଙ୍କର ଏହିପ୍ରକାରେ ପବିତ୍ରକାରୀ ଅଛ । ହେ ରାଘବ !, ଏ ପୃଥିବୀରେ ଯେଉଁମାନେ ତୁମ୍ଭର ଗୁଣ କୀର୍ତ୍ତନ କରନ୍ତି ସେମାନେ ସିଦ୍ଧି ପାଇବେ । । ୧୨ । ତୁମେ ବର୍ତ୍ତମାନ ନିର୍ଭୟରେ ନିଜ ସ୍ଥାନକୁ ଯାଅ । ପଥରେ ତୁମ୍ଭର କୌଣସି ବିପଦ ବା ଉଦ୍‌ବେଗ ନ ହେଉ । ତୁମେ ରାଜ୍ୟକୁ ଧର୍ମରେ ଶାସନ କର । କାରଣ ଆପଣହିଁ ଜଗତର ଏକମାତ୍ର ଗତି ଅଟନ୍ତି" । ୧୩ । ମୁନି ଏପରି କହିବାରୁ ବିଜ୍ଞ ରାଜା ରାମ ସେହି ପୁଣ୍ୟସ୍ୱଭାବ ଋଷିଙ୍କୁ କର ଯୋଡ଼ି ପ୍ରଣାମ କଲେ । ୧୪ । ଏହି ପ୍ରକାରେ ଋଷିଶ୍ରେଷ୍ଠ ଅଗସ୍ତ୍ୟ ଏବଂ ସେଠାର ଅନ୍ୟ ତପସ୍ୱୀମାନଙ୍କୁ ପ୍ରଣାମ କରି ରାମ ସୁସ୍ଥଚିତ୍ତରେ ସୁବର୍ଣ୍ଣଭୂଷିତ ସେହି ପୁଷ୍ପକ ବିମାନରେ ଯାଇ ଆରୋହଣ କଲେ । ୧୫ । ଇନ୍ଦ୍ରଙ୍କୁ ଯେପରି ଦେବତାମାନେ ସ୍ତୁତି କରନ୍ତି ସେହିପରି ଚାରିଆଡ଼ୁ ଋଷିମାନେ ରାମଙ୍କୁ ଆଶୀର୍ବାଦ ଏବଂ ସ୍ତୁତିକଲେ । ୧୬ । ରାମ ସୁବର୍ଣ୍ଣଭୂଷିତ ପୁଷ୍ପକ ବିମାନରେ ବସି ଆକାଶରେ, ବର୍ଷାଗମରେ ମେଘମଣ୍ଡଳ ନିକଟରେ ଥିବା

ତତୋଽର୍ଦ୍ଧଦିବସେ ପ୍ରାପ୍ତେ ପୂଜ୍ୟମାନସ୍ତତସ୍ତତଃ ।
ଅଯୋଧ୍ୟାଂ ପ୍ରାପ୍ୟ କାକୁତ୍‌ସ୍ଥୋ ମଧ୍ୟକକ୍ଷ୍ୟାମବାରୁହତ୍ । ୧୮ ।
ତତୋ ବିସୃଜ୍ୟ ରୁଚିରଂ ପୁଷ୍ପକଂ କାମଗାମି ତତ୍ ।
ବିସର୍ଜୟିତ୍ୱା ଗଚ୍ଛେତି ସ୍ୱସ୍ତି ତେଽସ୍ତ୍ୱିତି ଚ ପ୍ରଭୁଃ । ୧୯ ।
କକ୍ଷ୍ୟାନ୍ତରବିନିକ୍ଷିପ୍ତଂ ଦ୍ୱାଃସ୍ଥଂ ରାମୋଽବ୍ରବୀଦ୍ ବଚଃ ।
ଲକ୍ଷ୍ମଣଂ ଭରତଂ ଚୈବ ଗତ୍ୱା ତୌ ଲଘୁବିକ୍ରମୌ ।
ମମାଗମନମାଖ୍ୟାୟ ଶବ୍ଦାପୟତ ମା ଚିରମ୍ । ୨୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ରାମନିବର୍ତ୍ତନଂ ନାମ ଦ୍ୱ୍ୟଶୀତିତମଃ ସର୍ଗଃ ।

---

ଚନ୍ଦ୍ରପରି ଶୋଭା ପାଇଲେ । ୧୭ । ଏହି ପ୍ରକାରେ ରାମ ପଥରେ ସ୍ଥାନେ ସ୍ଥାନେ ପୂଜିତ ହୋଇ, ଦିନ ଦ୍ୱିପ୍ରହର ବେଳକୁ ଅଯୋଧ୍ୟାରେ ଯାଇ ପହଞ୍ଚିଲେ ଏବଂ ରାଜଭବନର ମଝି ମହଲରେ ବିମାନରୁ ଓହ୍ଲାଇଲେ । ୧୮ । ଅନନ୍ତର ସେ ସେହି ଶ୍ରେଷ୍ଠ ଇଚ୍ଛାଗାମୀ ବିମାନକୁ ବିସର୍ଜନ ଦେଇ 'ତୁମ୍ଭର ମଙ୍ଗଳ ହେଉ, ତୁମେ ଯାଅ' ବୋଲି କହିଲେ । ୧୯ । ରାମ ଅନ୍ୟ କକ୍ଷରେ ଥିବା ଦ୍ୱାରୀକୁ ସତ୍ୱର କହିଲେ, "ତୁମେ ଲକ୍ଷ୍ମଣ ଓ ଭରତଙ୍କ ନିକଟକୁ ଯାଇ କ୍ଷିପ୍ରଗାମୀ ଲକ୍ଷ୍ମଣ ଓ ଭରତଙ୍କୁ ମୁଁ ଆସିଥିବା କଥା କହି ଏଠାକୁ ଡାକିଆଣ, ଡେରି କର ନାହିଁ" । ୨୦ ।

# ତ୍ର୍ୟଶୀତିତମଃ ସର୍ଗଃ

## ରାଜସୂୟାଚିକୀର୍ଷା

ତଚ୍ଛ୍ରୁତ୍ୱା ହର୍ଷିତଂ ତସ୍ୟ ରାମସ୍ୟାକ୍ଲିଷ୍ଟକର୍ମଣଃ ।
ଦ୍ୱାଃସ୍ଥଃ କୁମାରାବାହୂୟ ରାଘବାୟ ନ୍ୟବେଦୟତ୍ । ୧ ।
ଦୃଷ୍ଟ୍ୱା ତୁ ରାଘବଃ ପ୍ରାପ୍ତୌ ପ୍ରିୟୌ ଭରତଲକ୍ଷ୍ମଣୌ ।
ପରିଷ୍ୱଜ୍ୟ ତଦା ରାମୋ ବାକ୍ୟମେତଦୁବାଚ ହ । ୨ ।
କୃତଂ ମୟା ଯଥାତଥ୍ୟଂ ଦ୍ୱିଜକାର୍ଯମନୁତ୍ତମମ ।
ଧର୍ମସେତୁମଥୋ ଭୂୟଃ କର୍ତ୍ତୁମିଚ୍ଛାମି ରାଘବୌ । ୩ ।
ଅକ୍ଷୟ୍ୟଶ୍ଚାବ୍ୟୟଶ୍ଚୈବ ଧର୍ମସେତୁର୍ମତୋ ମମ ।
ଧର୍ମପ୍ରସାଧକଂ ହ୍ୟେତତ୍ ସର୍ବପାପପ୍ରଣାଶନମ୍ । ୪ ।
ଯୁବାଭ୍ୟାମାତ୍ମଭୂତାଭ୍ୟାଂ ରାଜସୂୟମନୁତ୍ତମମ୍ ।
ସହିତୋ ଯଷ୍ଟୁମିଚ୍ଛାମି ତତ୍ର ଧର୍ମୋ ହି ଶାଶ୍ୱତଃ । ୫ ।
ଇଷ୍ଟ୍ୱା ତୁ ରାଜସୂୟେନ ମିତ୍ରଃ ଶତ୍ରୁନିବର୍ହଣଃ ।
ସୁହୁତେନ ସୁଯଜ୍ଞେନ ବରୁଣତ୍ୱମୁପାଗମତ୍ । ୬ ।

---

## ୮୩ତମ ସର୍ଗ

(ରାଜସୂୟଯଜ୍ଞ ବିଧାନ ଇଚ୍ଛା)

ଅକ୍ଲିଷ୍ଟକର୍ମା ରାମଙ୍କ କଥା ଶୁଣି ଦ୍ୱାରପାଳ ସେହି ଦୁଇ ରାଜକୁମାରଙ୍କୁ ଡାକି ଆଣିଲେ ଏବଂ ରାମଙ୍କ ନିକଟରେ ଉପସ୍ଥିତ କରାଇଦେଲେ । ୧ । ଦୁଇ ଭାଇ ଭରତ ଓ ଲକ୍ଷ୍ମଣଙ୍କୁ ଆସି ପହଞ୍ଚିବାର ଦେଖି, ରାମ ସେମାନଙ୍କୁ କୁଣ୍ଢାଇ ପକାଇ ଏହି କଥା କହିଲେ ।୨। "ମୁଁ ତ ବ୍ରାହ୍ମଣର କାର୍ଯ୍ୟ ଯଥାର୍ଥଭାବରେ କରିଦେଲି; ହେ ରଘୁନନ୍ଦନଦ୍ୱୟ ! ମୁଁ ବର୍ତ୍ତମାନ ଧର୍ମସେତୁ ଅର୍ଥାତ୍ ରାଜସୂୟ ଯଜ୍ଞ କରିବାକୁ ଇଚ୍ଛା କରୁଅଛି । ୩ । ମୁଁ ରାଜସୂୟ ଯଜ୍ଞକୁ ଅକ୍ଷୟ ଏବଂ ଅବିନାଶୀ ଏବଂ ପୁଣ୍ୟ ଫଳପ୍ରଦ ତଥା ସର୍ବପାପନାଶକାରୀ ବୋଲି ମନେକରେ । ୪ । ଅତଏବ ମୁଁ ତୁମ ଦୁଇ ଭାଇଙ୍କ ସହାୟତାରେ ଏହି ଶ୍ରେଷ୍ଠ ରାଜସୂୟ ଯଜ୍ଞ କରିବାକୁ ଇଚ୍ଛା କରୁଅଛି, କାରଣ ଏଥିରେହିଁ ସନାତନ ଧର୍ମ ରହିଅଛି ।୫। ଶତ୍ରୁତାପନ ମିତ୍ର ଦେବତା ବିଧିପୂର୍ବକ ହୋମଯୁକ୍ତ ରାଜସୂୟ ଯଜ୍ଞ ଦ୍ୱାରା ବରୁଣତ୍ୱ ଲାଭକରିଥିଲେ ।୬। ଧର୍ମପୂର୍ବକ

ସୋମଶ୍ଚ ରାଜସୂୟେନ ଇଷ୍ଟ୍ୱା ଧର୍ମେଣ ଧର୍ମବିତ୍ ।
ପ୍ରାପ୍ତଶ୍ଚ ସର୍ବଲୋକେଷୁ କୀର୍ତ୍ତିସ୍ଥାନଂ ଚ ଶାଶ୍ୱତମ୍ । ୭ ।
ଅସ୍ମିନ୍ନହନି ଯଚ୍ଛ୍ରେୟଶ୍ଚିନ୍ତ୍ୟତାଂ ତନ୍ମୟା ସହ ।
ହିତଂ ଚାୟତିଯୁକ୍ତଂ ଚ ପ୍ରୟତୌ କର୍ତ୍ତୁମର୍ହଥଃ । ୮ ।
ଶ୍ରୁତ୍ୱା ତୁ ରାଘବସ୍ୟୈତଦ୍‌ବାକ୍ୟଂ ବାକ୍ୟବିଶାରଦଃ ।
ଭରତଃ ପ୍ରାଞ୍ଜଳିର୍ଭୂତ୍ୱା ବାକ୍ୟମେତଦୁବାଚ ହ । ୯ ।
ତ୍ୱୟି ଧର୍ମଃ ପରଃ ସାଧୋ ତ୍ୱୟି ସର୍ବା ବସୁନ୍ଧରା ।
ପ୍ରତିଷ୍ଠିତା ମହାବାହୋ ଯଶଶ୍ଚାମିତବିକ୍ରମ । ୧୦ ।
ମହୀପାଲାଶ୍ଚ ସର୍ବେ ତ୍ୱାଂ ପ୍ରଜାପତିମିବାମରାଃ ।
ନିରୀକ୍ଷନ୍ତେ ମହାତ୍ମାନଂ ଲୋକନାଥଂ ଯଥା ବୟମ୍ । ୧୧ ।
ପ୍ରଜାଶ୍ଚ ପିତୃବଦ୍‌ରାଜନ୍ ପଶ୍ୟନ୍ତି ତ୍ୱାଂ ମହାବଳ ।
ପୃଥିବ୍ୟା ଗତିଭୂତୋଽସି ପ୍ରାଣିନାମପି ରାଘବ । ୧୨ ।
ସ ତ୍ୱମେବଂବିଧଂ ଯଜ୍ଞମାହର୍ତ୍ତାସି କଥଂ ନୃପ ।
ପୃଥିବ୍ୟାଂ ରାଜବଂଶାନାଂ ବିନାଶୋ ଯତ୍ର ଦୃଶ୍ୟତେ । ୧୩ ।
ପୃଥିବ୍ୟାଂ ଯେ ଚ ପୁରୁଷା ରାଜନ୍ ପୌରୁଷମାଗତାଃ ।
ସର୍ବେଷାଂ ଭବିତା ତତ୍ର ସଂକ୍ଷୟଃ ସର୍ବକୋପଜଃ । ୧୪ ।

---

ରାଜସୂୟ ଯଜ୍ଞାନୁଷ୍ଠାନ କରି ଧର୍ମାତ୍ମା ସୋମ ସବୁ ଲୋକରେ ଚିରନ୍ତନ କୀର୍ତ୍ତି ପାଇଲେ । ଅତଏବ ଆଜି ତୁମେ ଦୁହେଁ ମୋ ସହିତ ବିଚାର କରି ଏ ବିଷୟରେ ଯାହା ହିତକର ଏବଂ ଭବିଷ୍ୟତରେ ସୁଖଦାୟକ ତାହା ମୋତେ କହ" ।୮। ବାକ୍ୟପ୍ରୟୋଗରେ ପ୍ରବୀଣ ଭରତ ରାମଙ୍କର ଏ କଥା ଶୁଣି ହାତ ଯୋଡ଼ି କହିଲେ । ୯ । "ହେ ଅମିତପରାକ୍ରମ ମହାବାହୁ ରାମ, ହେ ସାଧୋ ! ତୁମେହିଁ ସର୍ବୋତ୍କୃଷ୍ଟ ଧର୍ମ ଏବଂ ତୁମଠାରେ ହିଁ ସମସ୍ତ ପୃଥିବୀ ଓ ସମସ୍ତ ଯଶ ପ୍ରତିଷ୍ଠିତ ହୋଇ ରହିଅଛି ।୧୦। ଯେତେ ରାଜା ଅଛନ୍ତି ସମସ୍ତେ ଏବଂ ଆମ୍ଭେମାନେ ତୁମକୁ, ବ୍ରହ୍ମାଙ୍କୁ ସବୁ ଦେବତା ମାନିଲପରି ମାନୁଁ । ଆମ୍ଭେମାନେ ତୁମକୁ ମହାତ୍ମା ଲୋକନାଥ ବୋଲି ଜାଣୁ । ୧୧ । ହେ ମହାବଳ ! ପୁତ୍ର ନିଜର ପିତାକୁ ଯେପରି ଦୃଷ୍ଟିରେ ଦେଖେ ପ୍ରଜାମାନେ ତୁମକୁ ସେହି ଦୃଷ୍ଟିରେ ଦେଖନ୍ତି । ହେ ରାଘବ ! ତୁମେ ପୃଥିବୀ ଏବଂ ସମସ୍ତ ପ୍ରାଣୀଙ୍କର ଗତିସ୍ୱରୂପ ଅଛ ।୧୨। ଯେଉଁ ଯଜ୍ଞ କଲେ ପୃଥିବୀର ଅନେକ ରାଜବଂଶର କ୍ଷୟ ହେବାର ସମ୍ଭାବନା ଅଛି, ହେ ରଘୁନାଥ ! ତୁମେ ସେହି ରାଜସୂୟ ଯଜ୍ଞ ଅନୁଷ୍ଠାନ କରିବା ପାଇଁ କାହିଁକି ଇଚ୍ଛା କରୁଅଛ ? । ୧୩ । ହେ ରାଜନ୍ ! ପୃଥିବୀରେ ଯେତେ ପରାକ୍ରମୀ ପୁରୁଷ ଅଛନ୍ତି ଆପଣଙ୍କ କ୍ରୋଧରୁ ସେ ସମସ୍ତଙ୍କର ବିନାଶ ହୋଇଯିବ । ୧୪ ।

ସ ତ୍ୱଂ ପୁରୁଷଶାର୍ଦ୍ଦୂଲ ଗୁଣୈରତୁଲବିକ୍ରମ ।
ପୃଥିବୀଂ ନାର୍ହସେ ହନ୍ତୁଂ ବଶେ ହି ତବ ବର୍ତ୍ତତେ । ୧୫ ।
ଭରତସ୍ୟ ତୁ ତଦ୍‌ବାକ୍ୟଂ ଶ୍ରୁତ୍ୱାମୃତମୟଂ ତଦା ।
ପ୍ରହର୍ଷମତୁଲଂ ଲେଭେ ରାମଃ ସତ୍ୟପରାକ୍ରମଃ । ୧୬ ।
ଉବାଚ ଚ ଶୁଭଂ ବାକ୍ୟଂ କୈକେୟ୍ୟାନନ୍ଦବର୍ଧନମ୍ ।
ପ୍ରୀତୋଽସ୍ମି ପରିତୁଷ୍ଟୋଽସ୍ମି ତବାଦ୍ୟ ବଚନେଽନଘ । ୧୭ ।
ଇଦଂ ବଚନମକ୍ଲୀବଂ ତ୍ୱୟା ଧର୍ମସମାହିତମ୍ ।
ବ୍ୟାହୃତଂ ପୁରୁଷବ୍ୟାଘ୍ର ପୃଥିବ୍ୟାଃ ପରିପାଳନମ୍ । ୧୮ ।
ଏଷ୍ୟଦସ୍ମଦଭିପ୍ରାୟାଦ୍ରାଜସୂୟାତ୍ କ୍ରତୂତ୍ତମାତ୍ ।
ନିବର୍ତ୍ତୟାମି ଧର୍ମଜ୍ଞ ତବ ସୁବ୍ୟାହୃତେନ ଚ । ୧୯ ।
ଲୋକପୀଡ଼ାକରଂ କର୍ମ ନ କର୍ତ୍ତବ୍ୟଂ ବିଚକ୍ଷଣୈଃ ।
ବାଲାନାଂ ତୁ ଶୁଭଂ ବାକ୍ୟଂ ଗ୍ରାହ୍ୟଂ ଲକ୍ଷ୍ମଣପୂର୍ବଜ ।
ତସ୍ମାଚ୍ଛୃଣୋମି ତେ ବାକ୍ୟଂ ସାଧୁଯୁକ୍ତଂ ମହାମତେ । ୨୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ରାଜସୂୟାକର୍ଷା ନାମ ତ୍ର୍ୟଶୀତିତମଃ ସର୍ଗଃ ।

---

ଅତଏବ ହେ ପୁରୁଷସିଂହ, ହେ ଅତୁଳବିକ୍ରମ ! ସମସ୍ତ ପୃଥିବୀର ବୀରମାନଙ୍କୁ ନାଶ କରିବା ଉଚିତ ନୁହେଁ । କାରଣ ସମସ୍ତେ ତୁମ୍ଭର ବଶୀଭୂତ ହୋଇ ରହିଛନ୍ତି" । ୧୫ । ସତ୍ୟପରାକ୍ରମ ରାମ ଭରତଙ୍କର ଏହି ଅମୃତମୟ ବଚନ ଶୁଣି ଅତିଶୟ ପ୍ରସନ୍ନ ହେଲେ । ୧୬ । କୈକେୟୀଙ୍କର ଆନନ୍ଦବର୍ଦ୍ଧନକାରୀ ଭରତଙ୍କୁ ସେ ଏହି ଶୁଭବଚନ କହିଲେ । "ହେ ନିଷ୍ପାପ ! ମୁଁ ଆଜ ତୁମ କଥାରେ ଅତିଶୟ ପ୍ରୀତ ଏବଂ ସନ୍ତୁଷ୍ଟ ହୋଇଅଛି । ୧୭ । ହେ ପୁରୁଷସିଂହ ! ତୁମ୍ଭର ଏହି ବଚନ ବୀରତାଯୁକ୍ତ, ସର୍ବଧର୍ମସମ୍ମତ ତଥା ପୃଥିବୀର ପରିପାଳନକାରକ ଅଟେ । ୧୮ । ହେ ଧର୍ମଜ୍ଞ ! ତୁମ୍ଭର ଏ ସୁନ୍ଦର କଥା ଶୁଣି ମୁଁ ଏହି ସର୍ବଶ୍ରେଷ୍ଠ ରାଜସୂୟ ଯଜ୍ଞ କରିବା ଅଭିପ୍ରାୟରୁ ନିବୃତ୍ତ ହେଉଅଛି । ୧୯ । ଲୋକଙ୍କୁ ପୀଡ଼ାଦେବାଭଳି କାର୍ଯ୍ୟ କରିବା ଉଚିତ ନୁହେ । ହେ ଲକ୍ଷ୍ମଣାଗ୍ରଜ ! ବାଳକମାନଙ୍କର ଯୁକ୍ତିଯୁକ୍ତ କଥା ମଧ୍ୟ ଗ୍ରହଣ କରିବା ଉଚିତ । ସୁତରାଂ ହେ ମହାବଳ ! ମୁଁ ତୁମ୍ଭର ଏହି ସାଧୁ କଥାକୁ ମାନିନେଉଛି" । ୨୦ ।

# ଚତୁରଶୀତିତମଃ ସର୍ଗଃ

## ବୃତ୍ରତପୋବର୍ଣନମ୍

ତଥୋକ୍ତବତି ରାମେ ତୁ ଭରତେ଼ଚ ମହାତ୍ମନି ।
ଲକ୍ଷ୍ମଣୋଽଥ ଶୁଭଂ ବାକ୍ୟମୁବାଚ ରଘୁନନ୍ଦନମ୍ । ୧ ।
ଅଶ୍ୱମେଧୋ ମହାଯଜ୍ଞଃ ପାବନଃ ସର୍ବପାପ୍ମନାମ୍ ।
ପାବନସ୍ତବ ଦୁର୍ଧର୍ଷୋ ରୋଚତାଂ ରଘୁନନ୍ଦନ । ୨ ।
ଶ୍ରୂୟତେ ହି ପୁରାବୃତ୍ତଂ ବାସବେ ସୁମହାତ୍ମନି ।
ବ୍ରହ୍ମହତ୍ୟାବୃତଃ ଶକ୍ରୋ ହୟମେଧେନ ପାବିତଃ । ୩ ।
ପୁରା କିଲ ମହାବାହୋ ଦେବାସୁରସମାଗମେ ।
ବୃତ୍ରୋ ନାମ ମହାନାସୀଦ୍ଦୈତେୟୋ ଲୋକସମ୍ମତଃ । ୪ ।
ବିସ୍ତୀର୍ଣୋ ଯୋଜନଶତମୁଚ୍ଛ୍ରିତସ୍ତ୍ରିଗୁଣଂ ତତଃ ।
ଅନୁରାଗେଣ ଲୋକାଂସ୍ତ୍ରୀନ୍ ସ୍ନେହାତ୍ପଶ୍ୟତି ସର୍ବତଃ । ୫ ।
ଧର୍ମଜ୍ଞଶ୍ଚ କୃତଜ୍ଞଶ୍ଚ ବୁଦ୍ଧ୍ୟା ଚ ପରିନିଷ୍ଠିତଃ ।
ଶଶାସ ପୃଥିବୀଂ ସ୍ଫୀତାଂ ଧର୍ମେଣ ସୁସମାହିତଃ । ୬ ।

---

## ୮୪ତମ ସର୍ଗ

( ବୃତ୍ରାସୁରର ତପସ୍ୟାବର୍ଣ୍ଣନା )

ମହାତ୍ମା ଭରତ ଏବଂ ରାମ ଏପରି କହିବାରୁ ଲକ୍ଷ୍ମଣ ରାମଚନ୍ଦ୍ରଙ୍କୁ ଏହି ମନୋହର ବଚନ କହିଲେ ।୧। "ହେ ରଘୁନନ୍ଦନ ! ଅଶ୍ୱମେଧ ଯଜ୍ଞ ଏକ ମହାଯଜ୍ଞ ଅଟେ । ଏହା ସବୁ ପାପରୁ ଲୋକଙ୍କୁ ପବିତ୍ର କରଏ, ଏହି ଦୁର୍ଦ୍ଧର୍ଷ ଓ ପବିତ୍ରକାରୀ ଯଜ୍ଞ ଆପଣ ଅନୁଷ୍ଠାନ କରନ୍ତୁ । ୨ । ଏକ ପୁରାକାଳୀନ ବୃତ୍ତାନ୍ତ ଶୁଣାଅଛୁ ଯେ ଇନ୍ଦ୍ରଙ୍କୁ ଯେତେବେଳେ ବ୍ରହ୍ମହତ୍ୟା ପାପ ଲାଗିଥିଲା, ସେତେବେଳେ ସେ ଏ ଅଶ୍ୱମେଧ ଯଜ୍ଞ କରି ପବିତ୍ର ହୋଇଯାଇଥିଲେ । ୩ । ହେ ମହାବାହୋ ! ପୂର୍ବେ ଦେବାସୁର ଯୁଦ୍ଧ ସମୟରେ ଲୋକପୂଜିତ ବୃତ୍ର ନାମକ ଏକ ବଡ଼ ଦୈତ୍ୟ ଥିଲା ।୪। ସେ ଶହେ ଯୋଜନ ଓସାର ଏବଂ ତିନିଶହ ଯୋଜନ ଲମ୍ବା ଥିଲା । ତିନିଲୋକରେ ଏହାର ସ୍ୱତ୍ୱାଧିକାର ଥିବାରୁ ସେ ତିନିଲୋକକୁ ସ୍ନେହ ଦୃଷ୍ଟିରେ ଦେଖୁଥିଲା ।୫। ସେ ବଡ଼ ଧର୍ମଜ୍ଞ, କୃତଜ୍ଞ ଏବଂ ବୁଦ୍ଧିମାନ୍ ଥିଲା । ସେ ସମଗ୍ର ସମୃଦ୍ଧିଶାଳୀ ପୃଥିବୀକୁ ଧର୍ମରେ ଓ

ତସ୍ମିନ୍ ପ୍ରଶାସତି ତଦା ସର୍ବକାମଦୁଘା ମହୀ ।
ରସବନ୍ତି ପ୍ରସୂନାନି ମୂଳାନି ଚ ଫଳାନି ଚ । ୭ ।
ଅକୃଷ୍ଟପଚ୍ୟା ପୃଥିବୀ ସୁସମ୍ପନ୍ନା ମହାତ୍ମନଃ ।
ସ ରାଜ୍ୟଂ ତାଦୃଶଂ ଭୁକ୍ତଂ ସ୍ଫୀତମଭୁତଦର୍ଶନମ୍ । ୮ ।
ତସ୍ୟ ବୁଦ୍ଧିଃ ସମୁତ୍ପନ୍ନା ତପଃ କୁର୍ଯାମନୁତ୍ତମମ୍ ।
ତପୋ ହି ପରମଂ ଶ୍ରେୟଃ ସଂମୋହମିତରତ୍ ସୁଖମ୍ । ୯ ।
ସ ନିକ୍ଷିପ୍ୟ ସୁତଂ ଜ୍ୟେଷ୍ଠଂ ପୌରେଷୁ ମଧୁରେଶ୍ୱରମ୍ ।
ତପ ଉଗ୍ରଂ ସମାତିଷ୍ଠତ୍ତାପୟନ୍ ସର୍ବଦେବତାଃ । ୧୦ ।
ତପସ୍ତପ୍ୟତି ବୃତ୍ରେ ତୁ ବାସବଃ ପରମାର୍ତ୍ତବତ୍ ।
ବିଷ୍ଣୁଂ ସମୁପସଂକ୍ରମ୍ୟ ବାକ୍ୟମେତଦୁବାଚ ହ । ୧୧ ।
ତପସ୍ୟତା ମହାବାହୋ ଲୋକା ବୃତ୍ରେଣ ନିର୍ଜିତାଃ ।
ବଳବାନ୍ ସ ହି ଧର୍ମାତ୍ମା ନୈନଂ ଶକ୍ଷ୍ୟାମି ଶାସିତୁମ୍ । ୧୨ ।
ଯଦ୍ୟସୌ ତପଃ ଆତିଷ୍ଠେଦ୍ଭୂୟ ଏବ ସୁରେଶ୍ୱର ।
ଯାବଲ୍ଲୋକା ଧରିଷ୍ୟନ୍ତି ତାବଦସ୍ୟ ବଶାନୁଗାଃ । ୧୩ ।

---

ସାବଧାନତା ସହକାରେ ଶାସନ କରୁଥିଲା । ୬ । ସେ ସେ ସମୟରେ ଶାସନ କରୁଥିବାବେଳେ ପୃଥିବୀ ସର୍ବକାମପ୍ରଦାୟିନୀ ହୋଇଥିଲା ଏବଂ ଫୁଲ, ଫଳ ଓ ମୂଳ ସବୁ ଅତିଶୟ ରସଯୁକ୍ତ ହୋଇଥିଲେ । ୭ । ବିନା କୃଷିରେ ପୃଥିବୀରେ ଶସ୍ୟ ଉତ୍ପନ୍ନ ହେଉଥିଲା । ଏହିପରି ସେ ବହୁ ସମୟଯାଏ ଏହି ଅଦ୍ଭୁତ ସମୃଦ୍ଧିସମ୍ପନ୍ନ ରାଜ୍ୟକୁ ଭୋଗ କରୁଥିଲା । ୮ । ପରେ ତାହାର ମନକୁ ଆସିଲା ଯେ, ମୁଁ ଉତ୍ତମ ତପ କରିବି, କାରଣ ତପହିଁ ଉତ୍କୃଷ୍ଟ ଶ୍ରେୟଃ ଅଟେ । ସଂସାରର ଅନ୍ୟ ସୁଖ ମୋହ ଉତ୍ପନ୍ନ କରାଏ । ୯ । ସୁତରାଂ ସେ ଜ୍ୟେଷ୍ଠପୁତ୍ର ମଧୁରେଶ୍ୱରକୁ ରାଜ୍ୟ ଦେଇ ସମସ୍ତ ଦେବତାଙ୍କର ଭୟ ଉତ୍ପାଦକ ଉଗ୍ର ତପସ୍ୟା କରିବାକୁ ଲାଗିଲା । ୧୦ । ବୃତ୍ର ଏପରି ତପସ୍ୟା କରୁଥିବାର ଦେଖି ଇନ୍ଦ୍ର ଅତିଶୟ କାତର ହୋଇ ବିଷ୍ଣୁଙ୍କ ନିକଟକୁ ଯାଇ ତାଙ୍କୁ କହିଲେ । ୧୧ । 'ହେ ମହାବାହୋ ! ବୃତ୍ର ତପବଳରେ ସମସ୍ତ ଲୋକକୁ ଜୟ କରିଅଛି । ସେ ବଳବାନ୍ ଏବଂ ଧର୍ମାତ୍ମା । ଅତଏବ ମୁଁ ତାକୁ ଶାସନ କରିବାକୁ ସମର୍ଥ ନୁହେଁ । ୧୨ । ହେ ସୁରେଶ୍ୱର ! ସେ ଯଦି ପୁଣି ତପସ୍ୟା ଆରମ୍ଭ କରିଦେବ, ତାହାହେଲେ ଯେତେଦିନଯାଏ ଏ ସବୁ ଲୋକ ରହିଥିବେ, ସେତେଦିନ ପର୍ଯ୍ୟନ୍ତ ସମସ୍ତେ ତାହାର ଅନୁଗତ ହୋଇ ରହିଥିବେ । ୧୩ ।

ତଂ ଚୈନଂ ପରମୋଦାରମୁପେକ୍ଷସି ମହାବଳ ।
କ୍ଷଣଂ ହି ନ ଭବେଦ୍‌ବୃତ୍ରଃ କ୍ରୁଦ୍ଧେ ତ୍ୱୟି ସୁରେଶ୍ୱର । ୧୪ ।
ଯଦା ହି ପ୍ରୀତିସଂଯୋଗଂ ତ୍ୱୟ୍ୟା ବସ୍ତୋ ସମାଗତଃ ।
ତଦାପ୍ରଭୃତି ଲୋକାନାଂ ନାଥତ୍ୱମୁପଲବ୍ଧବାନ୍ । ୧୫ ।
ସ ତ୍ୱଂ ପ୍ରସାଦଂ ଦେବାନାଂ କୁରୁଷ୍ୱ ସୁସମାହିତଃ ।
ତ୍ୱତ୍‌କୃତେନ ହି ସର୍ବଂ ସ୍ୟାତ୍ ପ୍ରଶାନ୍ତମରୁଜଂ ଜଗତ୍ । ୧୬ ।
ଇମେ ହି ସର୍ବେ ବସ୍ତୋ ତ୍ୱାଂ ନିରୀକ୍ଷନ୍ତେ ଦିବୌକସଃ ।
ବୃତ୍ରଘାତେନ ମହତା ତେଷାଂ ସାହ୍ୟଂ କୁରୁଷ୍ୱ ହି । ୧୭ ।
ତ୍ୱୟ୍ୟା ହି ନିତ୍ୟଶଃ ସାହ୍ୟଂ କୃତମେଷାଂ ମହାତ୍ମନାମ୍ ।
ଅସହ୍ୟମିଦମନ୍ୟେଷାମଗତୀନାଂ ଗତିର୍ଭବାନ୍ । ୧୮ ।

ଇତ୍ୟାର୍ଷେ ଶ୍ରୀମଦ୍‌ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ବୃତ୍ରତପୋବର୍ଣ୍ଣନଂ ନାମ ଚତୁରଶୀତିତମଃ ସର୍ଗଃ ।

---

ହେ ମହାବଳ ସୁରେଶ୍ୱର ! ଆପଣ ସେହି ପରମ ଉଦାର ବୃତ୍ରକୁ ଉପେକ୍ଷା କରନ୍ତୁ ନାହିଁ ଆପଣ ଯଦି କ୍ରୋଧ କରିବେ ତାହାହେଲେ ସେ କ୍ଷଣେମାତ୍ର ମଧ୍ୟ ଜୀବିତ ରହିପାରିବ ନାହିଁ ।୧୪। ହେ ବିଷ୍ଣୋ ! ସେ ଯେଉଁଦିନଠାରୁ ଆପଣଙ୍କର ପ୍ରୀତିପାତ୍ର ହୋଇପାରିଛି ସେହିଦିନଠାରୁ ସେ ସମସ୍ତ ଲୋକର ପ୍ରଭୁ ହୋଇଯାଇଅଛି । ୧୫ । ହେ ଭଗବନ୍ ! ଆପଣ ଦେବତାମାନଙ୍କ ଉପରେ କୃପା କରନ୍ତୁ । ଆପଣଙ୍କ କାର୍ଯ୍ୟଦ୍ୱାରାହିଁ ସମସ୍ତ ଜଗତ୍ ଶାନ୍ତ ଏବଂ ପୀଡ଼ାଶୂନ୍ୟ ହୋଇଯିବ । ୧୬ ! ହେ ବିଷ୍ଣୋ ! ଏ ସମସ୍ତ ସ୍ୱର୍ଗବାସୀ ଦେବତା ଆପଣଙ୍କୁହିଁ ଚାହିଁ ରହିଛନ୍ତି । ଅତଏବ ବୃତ୍ରାସୁରକୁ ନିହତ କରି ଆପଣ ସେମାନଙ୍କର ସହାୟତା କରନ୍ତୁ । ୧୭ । ଆପଣ ଏହି ମହାତ୍ମାମାନଙ୍କର ସବୁବେଳେ ସହାୟତା କରି ଆସିଛନ୍ତି । ଆପଣଙ୍କୁ ଛାଡ଼ି ଅନ୍ୟ କେହି ଏହା କରି ପାରିବେ ନାହିଁ, କାରଣ ଯେଉଁମାନଙ୍କର କୌଣସି ଗତି ନାହିଁ ସେମାନଙ୍କର ଆପଣହିଁ ଗତି ଅଟନ୍ତି” । ୧୮ ।

# ପଞ୍ଚାଶୀତିତମଃ ସର୍ଗଃ

## ବୃତ୍ରବଧଃ

ଲକ୍ଷ୍ମଣସ୍ୟ ତୁ ତଦ୍‌ବାକ୍ୟଂ ଶ୍ରୁତ୍ୱା ଶତ୍ରୁନିବର୍ହଣଃ ।
ବୃତ୍ରଘାତମଶେଷେଣ କଥୟେତ୍ୟାହ ସୁବ୍ରତ । ୧ ।
ରାଘବେଣୈବମୁକ୍ତସ୍ତୁ ସୁମିତ୍ରାନନ୍ଦବର୍ଧନଃ ।
ଭୂୟ ଏବ କଥାଂ ଦିବ୍ୟାଂ କଥୟାମାସ ସୁବ୍ରତଃ । ୨ ।
ସହସ୍ରାକ୍ଷବଚଃ ଶ୍ରୁତ୍ୱା ସର୍ବେଷାଂ ଚ ଦିବୌକସାମ୍ ।
ବିଷ୍ଣୁର୍ଦେବାନୁବାଚେଦଂ ସର୍ବାନିନ୍ଦ୍ରପୁରୋଗମାନ୍ । ୩ ।
ପୂର୍ବଂ ସୌହୃଦବଦ୍ଧୋଽସ୍ମି ବୃତ୍ରସ୍ୟ ତୁ ମହାତ୍ମନଃ ।
ତେନ ଯୁଷ୍ମତ୍‌ପ୍ରିୟାର୍ଥଂ ହି ନାହଂ ହନ୍ମି ମହାସୁରମ୍ । ୪ ।
ଅବଶ୍ୟଂ କରଣୀୟଂ ଚ ଭବତାଂ ସୁଖମୁତ୍ତମମ୍ ।
ତସ୍ମାଦୁପାୟମାଖ୍ୟାସ୍ୟେ ଯେନ ବଜ୍ରୀ ନିହନ୍ୟତେ । ୫ ।
ତ୍ରିଧାଭୂତଂ କରିଷ୍ୟାମି ହ୍ୟାତ୍ମାନଂ ସୁରସତ୍ତମାଃ ।
ତେନ ବୃତ୍ରଂ ସହସ୍ରାକ୍ଷୋ ବଧିଷ୍ୟତି ନ ସଂଶୟଃ । ୬ ।

---

## ୮୫ତମ ସର୍ଗ

### ( ବୃତ୍ରାସୁରବଧ )

ଲକ୍ଷ୍ମଣଙ୍କର ଏ କଥା ଶୁଣି ଶତ୍ରୁଘାତୀ ରାମ କହିଲେ, "ହେ ସୁବ୍ରତ ! ତୁମେ ବୃତ୍ରାସୁର ବଧ କଥା ପୂର୍ଣ୍ଣଭାବରେ କହ" । ୧ । ରାମଙ୍କର ଏ କଥା ଶୁଣି ସୁମିତ୍ରାଙ୍କର ଆନନ୍ଦବର୍ଦ୍ଧନକାରୀ ଏବଂ ଉତ୍ତମ ବ୍ରତାଚାରୀ ଲକ୍ଷ୍ମଣ ପୁନର୍ବାର ସେହି ଦିବ୍ୟକଥା କହିବାକୁ ଲାଗିଲେ । ୨ । ବିଷ୍ଣୁ ଇନ୍ଦ୍ରାଦି ସମସ୍ତ ଦେବତାଙ୍କର କଥା ଶୁଣି ସେମାନଙ୍କୁ କହିଲେ । ୩ । 'ହେ ଦେବତାଗଣ ! ମୁଁ ମହାତ୍ମା ବୃତ୍ରାସୁର ସହିତ ପୂର୍ବରୁ ମିତ୍ରତା ବନ୍ଧନରେ ଆବଦ୍ଧ ହୋଇଥିବାରୁ ଆପଣମାନଙ୍କ ପ୍ରିୟ କାର୍ଯ୍ୟ କରିବା ନିମନ୍ତେ ସେହି ମହାଦୈତ୍ୟକୁ ହତ୍ୟା କରିବ ନାହିଁ । ୪ । ମାତ୍ର ଆପଣମାନଙ୍କର ସୁଖପ୍ରାପ୍ତିର ଉପାୟ ମୋତେ ଅବଶ୍ୟ କରିବାକୁ ହେବ । ସୁତରାଂ ବୃତ୍ର ଯେପରି ନିହତ ହେବ ତାହାର ଉପାୟ ମୁଁ ଆପଣମାନଙ୍କୁ କହିଦେବି ।୫। ହେ ଦେବଶ୍ରେଷ୍ଠଗଣ ! ମୁଁ ନିଜକୁ ତିନିଭାଗ କରିଦେବି । ତାହାହେଲେ ସହସ୍ରାକ୍ଷ

ଏକାଂଶୋ ବାସବଂ ଯାତୁ ଦ୍ୱିତୀୟୋ ବଜ୍ରମେବ ତୁ ।
ତୃତୀୟୋ ଭୂତଳଂ ଶକ୍ରସ୍ତଦା ବୃତ୍ରଂ ବଧିଷ୍ୟତି ।୭।
ତଥା ବ୍ରୁବତି ଦେବେଶେ ଦେବା ବାକ୍ୟମଥାବ୍ରୁବନ୍ ।
ଏବମେତନ୍ନ ସନ୍ଦେହୋ ଯଥା ବଦସି ଦୈତ୍ୟହନ୍ ।୮।
ଭଦ୍ରଂ ତେଽସ୍ତୁ ଗମିଷ୍ୟାମୋ ବୃତ୍ରାସୁରବଧୈଷିଣଃ ।
ଭଜସ୍ୱ ପରମୋଦାର ବାସବଂ ସ୍ୱେନ ତେଜସା ।୯।
ତତଃ ସର୍ବେ ମହାତ୍ମାନଃ 'ସହସ୍ରାକ୍ଷପୁରୋଗମାଃ ।
ତଦରଣ୍ୟମୁପାକ୍ରାମନ୍ ଯତ୍ର ବୃତ୍ରୋ ମହାସୁରଃ ।୧୦।
ତେଽପଶ୍ୟଂସ୍ତେଜସା ଭୂତଂ ତପ୍ୟନ୍ତମସୁରୋତ୍ତମମ୍ ।
ପିବନ୍ତମିବ ଲୋକାଂସ୍ତ୍ରୀନ୍ନିର୍ଦହନ୍ତମିବାମ୍ବରମ୍ ।୧୧।
ଦୃଷ୍ଟ୍ୱୈବ ଚାସୁରଶ୍ରେଷ୍ଠଂ ଦେବାସ୍ତ୍ରାସମୁପାଗମନ୍ ।
କଥମେନଂ ବଧିଷ୍ୟାମଃ କଥଂ ନ ସ୍ୟାତ୍ ପରାଜୟଃ ।୧୨।
ତେଷାଂ ଚିନ୍ତୟତାଂ ତତ୍ର ସହସ୍ରାକ୍ଷଃ ପୁରନ୍ଦରଃ ।
ବଜ୍ରଂ ପ୍ରଗୃହ୍ୟ ପାଣିଭ୍ୟାଂ ପ୍ରାହିଣୋଦ୍‌ବୃତ୍ରମୂର୍ଦ୍ଧନି ।୧୩।

---

ଇନ୍ଦ୍ର ବୃତ୍ରକୁ ମାରିଦେବେ, ଏଥିରେ ସନ୍ଦେହ ନାହିଁ ।୬। ମୋର ତିନିଭାଗରୁ ଏକ ଭାଗ ଇନ୍ଦ୍ରଙ୍କଠାକୁ ଯିବ, ଦ୍ୱିତୀୟ ଭାଗ ବଜ୍ରରେ ରହିବ ଏବଂ ତୃତୀୟ ଭାଗ ଭୂତଳରେ ଯାଇ ରହିବ । ତାହାହେଲେ ଇନ୍ଦ୍ର ବୃତ୍ରକୁ ମାରିଦେବେ'।୭। ଦେବଦେବ ବିଷ୍ଣୁ ଏପରି କହିବା ପରେ ଦେବତାମାନେ କହିଲେ, 'ହେ ଦୈତ୍ୟହନ୍ତା ! ଆପଣ ଯାହା କହିଲେ ସେଥିରେ ଆମର କୌଣସି ସନ୍ଦେହ ନାହିଁ; ଆପଣଙ୍କର ମଙ୍ଗଳ ହେଉ, ଆମେ ବୃତ୍ରାସୁରର ବଧହିଁ ଇଚ୍ଛାକରୁଛୁଁ; ଅତଏବ ଆମ୍ଭେମାନେ ଏବେ ଯାଉଛୁଁ । ହେ ପରମ ଉଦାର ! ଆପଣ ନିଜର ତେଜଦ୍ୱାରା ଇନ୍ଦ୍ରଙ୍କୁ ବ୍ୟାପ୍ତ କରିଦିଅନ୍ତୁ' ।୮-୯। ତଦନନ୍ତର ଇନ୍ଦ୍ର ପ୍ରଭୃତି ମହାତ୍ମାଗଣ, ମହାସୁର ବୃତ୍ର ଯେଉଁ ଅରଣ୍ୟରେ ଥିଲା, ସେହି ଅରଣ୍ୟକୁ ଗଲେ । ୧୦ । ସେମାନେ ଦେଖିଲେ, ସେହି ଶ୍ରେଷ୍ଠ ଅସୁର ତପସ୍ୟା କରୁଅଛି । ସେ ନିଜର ତପସ୍ୟାର ତେଜରେ ସତେ ଯେପରି ତିନିଲୋକକୁ ପିଇଯାଉଛି ଏବଂ ଆକାଶକୁ ସତେ ଯେପରି ପୋଡ଼ିପକାଉଛି ।୧୧। ବୃତ୍ରାସୁରକୁ ଏହିପରିଭାବରେ ଦେଖି ଦେବତାମାନେ ଭୟଭୀତ ହୋଇଗଲେ । ସେମାନେ କୁହାକୁହିହେଲେ ଯେ ଏହାକୁ କିପରି ମାରିବା ଏବଂ କିପରି ଆମର ପରାଜୟ ନ ହେବ । ୧୨ । ସେମାନେ ଏପରିଭାବରେ ଚିନ୍ତା କରୁଥିବା ସମୟରେ ସହସ୍ରଲୋଚନ ଇନ୍ଦ୍ର ହାତରେ ବଜ୍ର

କାଳାଗ୍ନିନେବ ଘୋରେଣ ତପ୍ତେନେବ ମହାର୍ଚ୍ଚିଷା ।
ପତତା ବୃତ୍ରଶିରସା ଜଗତ୍ତ୍ରାସମୁପାଗମତ୍ । ୧୪ ।
ଅସମ୍ଭାବ୍ୟଂ ବଧଂ ତସ୍ୟ ବୃତ୍ରସ୍ୟ ବିବୁଧାଧିପଃ ।
ଚିନ୍ତୟାନୋ ଜଗାମାଶୁ ଲୋକସ୍ୟାନ୍ତଂ ମହାଯଶାଃ । ୧୫ ।
ତମିନ୍ଦ୍ରଂ ବ୍ରହ୍ମହତ୍ୟାଶୁ ଗଚ୍ଛନ୍ତମନୁଗଚ୍ଛତି ।
ଅପତଚ୍ଚାସ୍ୟ ଗାତ୍ରେଷୁ ତମିନ୍ଦ୍ରଂ ଦୁଃଖମାବିଶତ୍ । ୧୬ ।
ହତାରୟଃ ପ୍ରନଷ୍ଟେନ୍ଦ୍ରା ଦେବାଃ ସାଗ୍ନିପୁରୋଗମାଃ ।
ବିଷ୍ଣୁଂ ତ୍ରିଭୁବନେଶାନଂ ମୁହୁର୍ମୁହୁରପୂଜୟନ୍ । ୧୭ ।
ତ୍ୱଂ ଗତିଃ ପରମେଶାନ ପୂର୍ବଜୋ ଜଗତଃ ପିତା ।
ରକ୍ଷାର୍ଥଂ ସର୍ବଭୂତାନାଂ ବିଷ୍ଣୁତ୍ୱମୁପଜଗ୍ମିବାନ୍ । ୧୮ ।
ହତଶ୍ଚାୟଂ ତ୍ୱୟା ବୃତ୍ରୋ ବ୍ରହ୍ମହତ୍ୟା ଚ ବାସବମ୍ ।
ବାଧତେ ସୁରଶାର୍ଦ୍ଦୂଲ ମୋକ୍ଷଂ ତସ୍ୟା ବିନିର୍ଦ୍ଦିଶ । ୧୯ ।
ତେଷାଂ ତଦ୍ବଚନଂ ଶ୍ରୁତ୍ୱା ଦେବାନାଂ ବିଷ୍ଣୁରବ୍ରବୀତ୍ ।
ମାମେବ ଯଜତାଂ ଶକ୍ରଃ ପାବୟିଷ୍ୟାମି ବଜ୍ରିଣମ୍ । ୨୦ ।

---

ଧରି ବୃତ୍ରର ମସ୍ତକରେ ପ୍ରହାର କଲେ । ୧୩ । କାଳାଗ୍ନିସଦୃଶ ଭୟଙ୍କର, ପ୍ରଦୀପ୍ତ ଓ ମହାଶିଖାଯୁକ୍ତ ସେହି ବଜ୍ରର ପ୍ରହାରରେ ବୃତ୍ରର ଶିର ତଳେ ପଡ଼ିଗଲା ଏବଂ ସମସ୍ତ ଜଗତ ଭୟଗ୍ରସ୍ତ ହୋଇ ଉଠିଲା । ୧୪ । ମହାଯଶସ୍ୱୀ ଇନ୍ଦ୍ର ତାହାର ବଧକୁ ଅନୁଚିତ ବିଚାର କରି ତତ୍କ୍ଷଣାତ୍ ଲୋକାଚଳର ଅପରପାର୍ଶ୍ୱକୁ ଚାଲିଗଲେ । ୧୫ । ଇନ୍ଦ୍ର ଏହିପରି ପଳାଉଥିବା ବେଳେ ବ୍ରହ୍ମହତ୍ୟା ତାଙ୍କ ପଛେ ପଛେ ଗୋଡ଼ାଉଥିଲା । ଶେଷରେ ସେ ଇନ୍ଦ୍ରଙ୍କ ଦେହରେ ପଡ଼ିଗଲା ଏବଂ ଇନ୍ଦ୍ର ଅତ୍ୟନ୍ତ ଦୁଃଖିତ ହୋଇପଡ଼ିଲେ । ୧୬ । ଏହି ପ୍ରକାରେ ଶତ୍ରୁ ବୃତ୍ରର ମୃତ୍ୟୁ ହେବା ସଙ୍ଗେ ସଙ୍ଗେ ଇନ୍ଦ୍ର ଲୁଚିଯିବାରୁ ଅଗ୍ନିଙ୍କୁ ସଙ୍ଗରେ ନେଇ ଦେବତାମାନେ ସମସ୍ତେ ତ୍ରିଲୋକେଶ୍ୱର ଭଗବାନ୍ ବିଷ୍ଣୁଙ୍କୁ ବାରମ୍ବାର ପୂଜା କରିବାକୁ ଲାଗିଲେ । ୧୭ । ହେ ପ୍ରଭୋ ! ତୁମେହିଁ ଏ ଜଗତର ପିତା ଅଟ, ତୁମେହିଁ ଏ ବ୍ରହ୍ମାଣ୍ଡର ପୂର୍ବରୁ ଜାତ ହୋଇଅଛ ଏବଂ ସମସ୍ତ ପ୍ରାଣୀଙ୍କୁ ରକ୍ଷା କରିବା ନିମନ୍ତେ ତୁମେ ବିଷ୍ଣୁରୂପ ଧାରଣ କରିଅଛ । ୧୮ । ହେ ଦେବଶ୍ରେଷ୍ଠ ! ବୃତ୍ର ଅବଶ୍ୟ ତୁମଦ୍ୱାରା ନିହତ ହେଲା; ମାତ୍ର ବ୍ରହ୍ମହତ୍ୟା ଇନ୍ଦ୍ରଙ୍କୁ ବିଶେଷ ପୀଡ଼ା ଦେଉଅଛି । ସେ ସେଥିରୁ କିପରି ମୁକ୍ତ ପାଇବେ, ତାହା ତୁମେ ବତାଇଦିଅ" । ୧୯ । ଦେବତାମାନଙ୍କର କଥା ଶୁଣି ବିଷ୍ଣୁ କହିଲେ, "ହେ ଦେବଗଣ ! ଇନ୍ଦ୍ର ମୋ ଉଦ୍ଦେଶ୍ୟରେ ଯଜ୍ଞ କରନ୍ତୁ; ତାହାହେଲେ

ପୂର୍ଣ୍ଣେୟନ ହୟମେଧେନ ମାମିଷ୍ଟ୍ୱା ପାକଶାସନଃ ।
ପୁନରେଷ୍ୟତି ଦେବାନାମିନ୍ଦ୍ରତ୍ୱମକୁତୋଭୟମ୍ । ୨୧ ।
ଏବଂ ସଂଦଶ୍ୟ ତାଂ ବାଣୀଂ ଦେବାନାମମୃତୋପମାମ୍ ।
ଜଗାମ ବିଷ୍ଣୁର୍ଦେବେଶଃ ସ୍ତୂୟମାନସ୍ତ୍ରିବିଷ୍ଟପମ୍ । ୨୨ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ
ସଂହିତାୟାଂ ଉତ୍ତରକାଣ୍ଡେ ବୃତ୍ରବଧୋ ନାମ ପଞ୍ଚାଶୀତିତମଃ ସର୍ଗଃ ।

---

# ଷଡ଼ଶୀତିତମଃ ସର୍ଗଃ

## ବ୍ରହ୍ମହତ୍ୟାହରଣମ୍

ତଦା ବୃତ୍ରବଧଂ ସର୍ବମଖିଲେନ ସ ଲକ୍ଷ୍ମଣଃ ।
କଥୟିତ୍ୱା ନରଶ୍ରେଷ୍ଠଃ କଥାଶେଷଂ ପ୍ରଚକ୍ରମେ । ୧ ।
ତତୋ ହତେ ମହାବୀର୍ଯେ ବୃତ୍ରେ ଦେବଭୟଙ୍କରେ ।
ବ୍ରହ୍ମହତ୍ୟାବୃତଃ ଶକ୍ରଃ ସଂଜ୍ଞାଂ ଲେଭେ ନ ବୃତ୍ରହା । ୨ ।

---

ମୁଁ ସେ ବଜ୍ରଧାରୀଙ୍କୁ ପବିତ୍ର କରିଦେବି । ୨୦ । ଇନ୍ଦ୍ର ଅଶ୍ୱମେଧ ଯଜ୍ଞରେ ମୋତେ ଆରାଧନା କରି ପୁଣି ନିର୍ଭୟରେ ଦେବତାମାନଙ୍କ ମଧ୍ୟରେ ଇନ୍ଦ୍ରତ୍ୱ ଲାଭ କରିବେ” । ୨୧ । ଏହି ପ୍ରକାରେ ଦେବତାମାନଙ୍କୁ ଅମୃତତୁଲ୍ୟ ବାକ୍ୟରେ ଉପଦେଶ ଦେଇ ଏବଂ ସେମାନଙ୍କ ଦ୍ୱାରା ପୂଜିତ ହୋଇ ଭଗବାନ୍ ବିଷ୍ଣୁ ବୈକୁଣ୍ଠକୁ ଚାଲିଗଲେ” । ୨୨ ।

---

## ୮୬ତମ ସର୍ଗ

### ( ଇନ୍ଦ୍ରଙ୍କର ବ୍ରହ୍ମହତ୍ୟାରୁ ମୁକ୍ତିଲାଭ )

ଏହିପ୍ରକାରେ ଲକ୍ଷ୍ମଣ ବୃତ୍ରାସୁରବଧର ସମସ୍ତ ବୃତ୍ତାନ୍ତ କହି କଥାର ଅବଶିଷ୍ଟ ଅଂଶ କହିବାକୁ ଆରମ୍ଭ କଲେ । ୧ । “ଦେବତାମାନଙ୍କୁ ଭୟଭୀତ କରାଉଥିବା ମହାବଳୀ ବୃତ୍ର ନିହତ ହୁଅନ୍ତେ ବ୍ରହ୍ମହତ୍ୟା ଲାଗିବା ହେତୁ ଇନ୍ଦ୍ର ଅଚେତ ହୋଇ

ପୋଽନ୍ତମାଶ୍ରିତ୍ୟ ଲୋକାନାଂ ନଷ୍ଟସଂଜ୍ଞୋ ବଚେତନଃ ।
କାଲଂ ତତ୍ରାବସତ୍ କଞ୍ଚିଦ୍ ବେଷ୍ଟମାନ ଇବୋରଗଃ । ୩ ।
ଅଥ ନଷ୍ଟେ ସହସ୍ରାକ୍ଷ ଉଦ୍‌ବଗ୍ନମଭବଜ୍ଜଗତ୍ ।
ଭୂମିଶ୍ଚ ଧ୍ୱସ୍ତସଂକାଶା ନିଃସ୍ନେହା ଶୁଷ୍କକାନନା । ୪ ।
ନିଃସ୍ରୋତସଶ୍ଚ ତେ ସର୍ବେ ହ୍ରଦାଶ୍ଚ ସରିତସ୍ତଥା ।
ସଂକ୍ଷୋଭଶ୍ଚୈବ ସତ୍ତ୍ୱାନାମନାବୃଷ୍ଟିକୃତୋଽଭବତ୍ । ୫ ।
କ୍ଷୀୟମାଣେ ତୁ ଲୋକେଽସ୍ମିନ୍ ସଂଭ୍ରାନ୍ତମନସଃ ସୁରାଃ ।
ଯଦୁକ୍ତଂ ବିଷ୍ଣୁନା ପୂର୍ବଂ ତଂ ଯଜ୍ଞଂ ସମୁପାନୟନ୍ । ୬ ।
ତତଃ ସର୍ବେ ସୁରଗଣାଃ ସୋପାଧ୍ୟାୟାଃ ସହର୍ଷିଭିଃ ।
ତଂ ଦେଶଂ ସମୁପାଜଗ୍ମୁର୍ୟତ୍ରେନ୍ଦ୍ରୋ ଭୟମୋହିତଃ । ୭ ।
ତେ ତୁ ଦୃଷ୍ଟ୍ୱା ସହସ୍ରାକ୍ଷମାବୃତଂ ବ୍ରହ୍ମହତ୍ୟୟା ।
ତଂ ପୁରସ୍କୃତ୍ୟ ଦେବେଶମଶ୍ୱମେଧମୁପାକ୍ରମନ୍ । ୮ ।
ତତୋଽଶ୍ୱମେଧଃ ସୁମହାନ୍ ମହେନ୍ଦ୍ରସ୍ୟ ମହାତ୍ମନଃ ।
ବବୃଧେ ବ୍ରହ୍ମହତ୍ୟାୟାଃ ପାବନାର୍ଥଂ ନରେଶ୍ୱର । ୯ ।

---

ପଡ଼ିଲେ ।୨। ସେ ଲୋକାଚଳର ଅପର ପାର୍ଶ୍ୱରେ ଅଚେତନ ହୋଇ, କୁଣ୍ଡଳୀ ଧରି ରହିଥିବା ସାପପରି ସେହିଠାରେ ସଙ୍କୁଚିତ ହୋଇ ପଡ଼ିରହିଲେ । ୩ । ଇନ୍ଦ୍ର ଗୁପ୍ତ ହୋଇଯିବାଦ୍ୱାରା ସମଗ୍ର ଜଗତ ଅତିଶୟ ଉଦ୍‌ବିଗ୍ନ ହୋଇଉଠିଲା, ପୃଥିବୀ ଧ୍ୱସ୍ତପ୍ରାୟ ହୋଇ ରସହୀନ ହୋଇଗଲା ଏବଂ ସବୁ ଜଙ୍ଗଲ ଶୁଖିଗଲା ।୪। ବଡ଼ ବଡ଼ ହ୍ରଦ ଏବଂ ନଦୀମାନେ ଜଳହୀନ ହୋଇଗଲେ । ଅନାବୃଷ୍ଟି ହେତୁ ସମସ୍ତ ପ୍ରାଣୀ ବ୍ୟତିବ୍ୟସ୍ତ ହୋଇପଡ଼ିଲେ । ୫ । ସଂସାର ଏହିପରି କ୍ଷୟ ପାଉଥିବାର ଦେଖି ଦେବତାମାନେ ମଧ୍ୟ ଉଦ୍‌ବିଗ୍ନ ହୋଇ ଉଠିଲେ ଏବଂ ପୂର୍ବେ ବିଷ୍ଣୁଙ୍କର ଆଦେଶ ଅନୁସାରେ ସେହି ଅଶ୍ୱମେଧ ଯଜ୍ଞ କରିବାପାଇଁ ଆୟୋଜନ କଲେ । ୬ । ଦେବତାମାନେ ସମସ୍ତେ ନିଜ ସାଙ୍ଗରେ ଉପାଧ୍ୟାୟ ଓ ମହର୍ଷିମାନଙ୍କୁ ନେଇ, ଇନ୍ଦ୍ର ଯେଉଁଠାରେ ଭୟଭୀତ ହୋଇ ଲୁଚି ରହିଥିଲେ ସେହି ସ୍ଥାନକୁ ଗଲେ । ୭ । ଦେବତାମାନେ ଦେବରାଜ ଇନ୍ଦ୍ରଙ୍କୁ ବ୍ରହ୍ମହତ୍ୟାଦ୍ୱାରା ଆଚ୍ଛାଦିତ ହୋଇଥିବାର ଦେଖି, ତାହାଙ୍କୁ ଅଗ୍ରଣୀ କରି ଅଶ୍ୱମେଧ ଯଜ୍ଞ ଆରମ୍ଭ କଲେ । ୮ । ହେ ରାଜନ୍! ଅନନ୍ତର ଇନ୍ଦ୍ରଙ୍କୁ ବ୍ରହ୍ମହତ୍ୟାରୁ ମୁକ୍ତକରି ପବିତ୍ର କରାଇବା ପାଇଁ ମହାନ୍ ଅଶ୍ୱମେଧଯଜ୍ଞ

ତତୋ ଯଜ୍ଞେ ସମାପ୍ତେ ତୁ ବ୍ରହ୍ମହତ୍ୟା ମହାତ୍ମନଃ ।
ଅଭିଗମ୍ୟାବ୍ରବୀଦ୍ ବାକ୍ୟଂ କ୍ୱ ମେ ସ୍ଥାନଂ ବିଧାସ୍ୟଥ । ୧୦ ।
ତେ ତାମୂଚୁସ୍ତଦା ଦେବାସ୍ତୁଷ୍ଟାଃ ପ୍ରୀତିସମନ୍ୱିତାଃ ।
ଚତୁର୍ଧା ବିଭଜାତ୍ମାନମାତ୍ମନୈବ ଦୁରାସଦେ । ୧୧ ।
ଦେବାନାଂ ଭାଷିତଂ ଶ୍ରୁତ୍ୱା ବ୍ରହ୍ମହତ୍ୟା ମହାତ୍ମନାମ୍ ।
ସଂନିଧୌ ସ୍ଥାନମନ୍ୟତ୍ର ବରୟାମାସ ଦୁର୍ବସା ।୧୨ ।
ଏକେନାଂଶେନ ବତ୍ସ୍ୟାମି ପୂର୍ଣୋଦାସୁ ନଦୀଷୁ ବୈ ।
ଚତୁରୋ ବାର୍ଷିକାନ୍ ମାସାନ୍ ଦର୍ପଘ୍ନୀ କାମଚାରିଣୀ । ୧୩ ।
ଭୂମ୍ୟାମହଂ ସର୍ବକାଲମେକେନାଂଶେନ ଦୁର୍ବସା ।
ବସିଷ୍ୟାମି ନ ସନ୍ଦେହଃ ସତ୍ୟେନୈତଦ୍ ବ୍ରବୀମି ବଃ । ୧୪ ।
ଯୋଽୟମଂଶସ୍ତୃତୀୟୋ ମେ ସ୍ତ୍ରୀଷୁ ଯୌବନଶାଳିଷୁ ।
ତ୍ରିରାତ୍ରଂ ଦର୍ପପୂର୍ଣାସୁ ବସିଷ୍ୟେ ଦର୍ପଘାତିନୀ । ୧୫ ।
ହନ୍ତାରୋ ବ୍ରାହ୍ମଣାନ୍ ଯେ ତୁ ମୃଷାପୂର୍ବମଦୂଷକାନ୍ ।
ତାଂଶ୍ଚତୁର୍ଥେନ ଭାଗେନ ସଂଶ୍ରୟିଷ୍ୟେ ସୁରର୍ଷଭାଃ । ୧୬ ।

---

କ୍ରମେ ବୃଦ୍ଧି ପାଇବାକୁ ଲାଗିଲା ।୯। ଯଜ୍ଞ ସମାପ୍ତ ହେବା ଉତ୍ତାରୁ ବ୍ରହ୍ମହତ୍ୟା ମହାତ୍ମା
ଇନ୍ଦ୍ରଙ୍କ ନିକଟକୁ ଆସି କହିଲା 'ମୁଁ କେଉଁଠାରେ ରହିବି ତାର ବ୍ୟବସ୍ଥା କରନ୍ତୁ'
।୧୦ । ବ୍ରହ୍ମହତ୍ୟାର ଏ କଥା ଶୁଣି ଦେବତାମାନେ ସନ୍ତୁଷ୍ଟ ଏବଂ ପ୍ରସନ୍ନ ହୋଇ
କହିଲେ, "ହେ ଦୁରାସଦେ ! ତୁ ନିଜକୁ ଚାରିଖଣ୍ଡରେ ବିଭକ୍ତ କରିପକାଅ" । ୧୧ ।
ଦେବତାମାନଙ୍କର କଥା ଶୁଣି ବ୍ରହ୍ମହତ୍ୟା ନିଜକୁ ଚାରିଖଣ୍ଡ କରି ପକାଇଲା ଏବଂ
ଅନ୍ୟତ୍ର ରହିବା ବିଷୟରେ ସେମାନଙ୍କୁ କହିଲା । ୧୨ । 'ହେ ଦେବତାଗଣ ! ମୁଁ
ଆପଣାର ଏକ ଅଂଶଦ୍ୱାରା ବର୍ଷା ସମୟରେ ଚାରିମାସଯାଏ ଜଳପୂର୍ଣ୍ଣ ନଦୀରେ ମନଇଚ୍ଛା
ସଞ୍ଚାର କରି ସେ ନଦୀମାନଙ୍କର ଦର୍ପ ଚୂର୍ଣ୍ଣ କରିବି । ୧୩ । ଦ୍ୱିତୀୟ ଅଂଶରେ ମୁଁ
ସର୍ବଦା ପୃଥିବୀ ଉପରେ ବାସ କରିବି, ଏ ବିଷୟରେ କିଛିମାତ୍ର ସନ୍ଦେହ ନାହିଁ; ମୁଁ
ଏ କଥା ସତ୍ୟକରି କହୁଅଛି । ୧୪ । ତୃତୀୟ ଅଂଶରେ ମୁଁ ଦର୍ପବତୀ ଯୁବତୀ
ସ୍ତ୍ରୀମାନଙ୍କ ଦର୍ପ ଚୂର୍ଣ୍ଣ କରିବାପାଇଁ ମାସରେ ତିନିଦିନ ସେମାନଙ୍କ ମଧ୍ୟରେ ବାସ
କରିବି । ୧୫ । ହେ ସୁରଶ୍ରେଷ୍ଠଗଣ ! ଚତୁର୍ଥ ଅଂଶରେ, ଯେଉଁମାନେ ବୃଥା
ଦୋଷାରୋପ କରି ବ୍ରାହ୍ମଣମାନଙ୍କୁ ହତ୍ୟା କରନ୍ତି, ମୁଁ ସେମାନଙ୍କଠାରେ ଆଶ୍ରା କରି

ପ୍ରତ୍ୟୂଚୁସ୍ତାଂ ତତୋ ଦେବା ଯଥା ବଦସି ଦୁର୍ବସେ ।
ତଥା ଭବତୁ ଭଦ୍ରଂ ତେ ସାଧୟସ୍ୱ ଯଦୀପ୍ସିତମ୍ । ୧୭ ।
ତତଃ ପ୍ରୀତ୍ୟାନ୍ୱିତା ଦେବାଃ ସହସ୍ରାକ୍ଷଂ ବବନ୍ଦିରେ ।
ବିଜ୍ୱରଃ ସ ଚ ପୂତାତ୍ମା ବାସବଃ ସମପଦ୍ୟତ । ୧୮ ।
ପ୍ରଶାନ୍ତଂ ଚ ଜଗତ୍ସର୍ବଂ ସହସ୍ରାକ୍ଷେ ପ୍ରତିଷ୍ଠିତେ ।
ଯଜ୍ଞଂ ଚାଦ୍ଭୁତସଂକାଶଂ ତଦା ଶକ୍ରୋଽଭ୍ୟପୂଜୟତ୍ । ୧୯ ।
ଈଦୃଶୋ ହ୍ୟଶ୍ୱମେଧସ୍ୟ ପ୍ରଭାବୋ ରଘୁନନ୍ଦନ ।
ଯଜସ୍ୱ ସୁମହାଭାଗ ହୟମେଧେନ ପାର୍ଥିବ । ୨୦ ।
ଇତି ଲକ୍ଷ୍ମଣବାକ୍ୟମୁତ୍ତମମ୍
ନୃପତିରତୀବ ମନୋହରଂ ମହାତ୍ମା ।
ପରିତୋଷମବାପ ହୃଷ୍ଟଚେତା
ନିଶମ୍ୟେନ୍ଦ୍ରସମାନବିକ୍ରମୌଜାଃ । ୨୧ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ବ୍ରହ୍ମହତ୍ୟାହରଣଂ ନାମ ଷଡ଼ଶୀତିତମଃ ସର୍ଗଃ ।

---

ରହିବ' । ୧୬ । ବ୍ରହ୍ମହତ୍ୟାର ଏପରି କଥା ଶୁଣି ଦେବତାମାନେ କହିଲେ, "ହେ ଦୁଷ୍ପ୍ରବାସିନି ! ତୁ ଯେପରି କହୁଅଛୁ ତାହାହିଁ ହେଉ" । ୧୭ । ଅନନ୍ତର ଦେବତାମାନେ ପ୍ରସନ୍ନ ହୋଇ ଇନ୍ଦ୍ରଙ୍କୁ ବନ୍ଦନା କଲେ । ଇନ୍ଦ୍ର ମଧ ପାପରୁ ପବିତ୍ର ହୋଇ ବେଦନାରୁ ରକ୍ଷା ପାଇଲେ । ୧୮ । ଇନ୍ଦ୍ର ନିଜ ଆସନରେ ପୁନଃ-ପ୍ରତିଷ୍ଠିତ ହେବା ଉତ୍ତାରୁ ସମଗ୍ର ଜଗତ ଶାନ୍ତ ହୋଇଗଲା ଏବଂ ଇନ୍ଦ୍ର ସେହି ଅଦ୍ଭୁତ ଯଜ୍ଞକୁ ବିଶେଷ ସମ୍ମାନ କଲେ । ୧୯ । ହେ ରାଜନ୍ ! ଅଶ୍ୱମେଧ ଯଜ୍ଞର ମହିମା ଏ ପ୍ରକାର ଅଟେ । ଅତଏବ ଆପଣ ଏହି ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ କରନ୍ତୁ" । ୨୦ । ଇନ୍ଦ୍ରଙ୍କ ସମାନ ପରାକ୍ରମୀ ଓ ତେଜସ୍ୱୀ ରାମ ଲକ୍ଷ୍ମଣଙ୍କର ଏହି ଉତ୍ତମ ତଥା ମନୋହର ବଚନ ଶୁଣି ଅତିଶୟ ଆନନ୍ଦିତ ହେଲେ ଏବଂ ପରମ ପରିତୋଷ ଲାଭକଲେ । ୨୧ ।

---

# ସପ୍ତାଶୀତିତମଃ ସର୍ଗଃ

## ଇଳସ୍ତ୍ରୀତ୍ୱପ୍ରାପ୍ତି

ତଚ୍ଛ୍ରୁତ୍ୱା ଲକ୍ଷ୍ମଣେନୋକ୍ତଂ ବାକ୍ୟଂ ବାକ୍ୟବିଶାରଦଃ ।
ପ୍ରତ୍ୟୁବାଚ ମହାତେଜାଃ ପ୍ରହସନ୍ ରାଘବୋ ବଚଃ ॥ ୧ ॥
ଏବମେବ ନରଶ୍ରେଷ୍ଠ ଯଥା ବଦସି ଲକ୍ଷ୍ମଣ ।
ବୃତ୍ରଘାତମଶେଷେଣ ବାଜିମେଧଫଳଂ ଚ ଯତ୍ ॥ ୨ ॥
ଶ୍ରୂୟତେ ହି ପୁରା ସୌମ୍ୟ କର୍ଦ୍ଦମସ୍ୟ ପ୍ରଜାପତେଃ ।
ପୁତ୍ରୋ ବାହ୍ଲୀଶ୍ୱରଃ ଶ୍ରୀମାନିଳୋ ନାମ ମହାଯଶାଃ ॥ ୩ ॥
ସ ରାଜା ପୃଥିବୀଂ ସର୍ବାଂ ବଶେ କୃତ୍ୱା ସୁଧାର୍ମିକଃ ।
ରାଜ୍ୟଂ ଚୈବ ନରବ୍ୟାଘ୍ର ପୁତ୍ରବତ୍ ପର୍ଯ୍ୟପାଲୟତ୍ ॥ ୪ ॥
ସୁରୈଶ୍ଚ ପରମୋଦାରୈର୍ଦୈତେୟୈଶ୍ଚ ମହାଧନୈଃ ।
ନାଗରାକ୍ଷସଗନ୍ଧର୍ବୈର୍ଯକ୍ଷୈଶ୍ଚ ସୁମହାତ୍ମଭିଃ ॥ ୫ ॥
ପୂଜ୍ୟତେ ନିତ୍ୟଶଃ ସୌମ୍ୟ ଭୟାର୍ତ୍ତୈ ରଘୁନନ୍ଦନ ।
ଅବିଭ୍ୟଂଶ୍ଚ ତ୍ରୟୋ ଲୋକାଃ ସରୋଷସ୍ୟ ମହାତ୍ମନଃ ॥ ୬ ॥

---

## ୮୭ତମ ସର୍ଗ

### (ଇଳଙ୍କର ସ୍ତ୍ରୀତ୍ୱପ୍ରାପ୍ତି)

ବାକ୍ୟନିପୁଣ ମହାତେଜସ୍ୱୀ ରାମ ଲକ୍ଷ୍ମଣଙ୍କର ଏ କଥା ଶୁଣି ଟିକିଏ ହସିକରି କହିଲେ । ୧। "ହେ ନରଶ୍ରେଷ୍ଠ ଲକ୍ଷ୍ମଣ ! ତୁମେ ଏ ଯେଉଁ କଥା କହିଲ ତାହା ଠିକ । ବୃତ୍ରାସୁରର ବଧକଥା ଏବଂ ଅଶ୍ୱମେଧର ଫଳକଥା ଠିକ ସେହିପରି ଅଟେ । ୨ । ହେ ସୌମ୍ୟ ! ଶୁଣାଅଛି, ପୂର୍ବକାଳରେ କର୍ଦ୍ଦମ ପ୍ରଜାପତିଙ୍କର ପୁତ୍ର ଇଳ ବଡ଼ ଧର୍ମାତ୍ମା ଥିଲେ ଓ ସେ ବାହ୍ଲୀକ ଦେଶର ରାଜା ଥିଲେ । ହେ ନରଶାର୍ଦ୍ଦୂଳ ! ସେହି ମହାଯଶସ୍ୱୀ ରାଜା ଇଳ ସମଗ୍ର ପୃଥିବୀକୁ ଆପଣାର ଅଧୀନ କରି ପୁତ୍ରସଦୃଶ ତାହାକୁ ପାଳନ କରୁଥିଲେ । ୩-୪ । ହେ ରଘୁନନ୍ଦନ ! ଅତି ଉଦାର ଦେବତା, ମହାଧନ ଦୈତ୍ୟ, ନାଗ, ରାକ୍ଷସ, ଗନ୍ଧର୍ବ ଓ ଯକ୍ଷ ସମସ୍ତେ ତାହାଙ୍କୁ ଡରୁଥିଲେ ଏବଂ ତାଙ୍କୁ ସର୍ବଦା ସମ୍ମାନ କରୁଥିଲେ । ସେ ମହାକ୍ରୋଧୀ ହୋଇଗଲେ ତିନିଲୋକ ଭୟଭୀତ ହୋଇ ଯାଉଥିଲା ।

ସ ରାଜା ତାଦୃଶୋ ହ୍ୟାସୀଦ୍ଧର୍ମେ ବୀର୍ଯେ ଚ ନିଷ୍ଠିତଃ ।
ବୁଦ୍ଧ୍ୟା ଚ ପରମୋଦାରୋ ବାହ୍ଲୀକେଶୋ ମହାଯଶାଃ । ୭ ।
ସ ପ୍ରଚକ୍ରେ ମହାବାହୁର୍ମୃଗୟାଂ ରୁଚିରେ ବନେ ।
ଚୈତ୍ରେ ମନୋରମେ ମାସି ସଭୃତ୍ୟବଲବାହନଃ । ୮ ।
ପ୍ରଜଘ୍ନେ ଚ ନୃପୋଽରଣ୍ୟେ ମୃଗାନ୍ ଶତସହସ୍ରଶଃ ।
ହତ୍ୱୈବ ତୃପ୍ତିର୍ନାଭୂଚ୍ଚ ରାଜ୍ଞସ୍ତସ୍ୟ ମହାତ୍ମନଃ । ୯ ।
ନାନାମୃଗାଣାମୟୁତଂ ବଧ୍ୟମାନଂ ମହାତ୍ମନା ।
ଯତ୍ର ଜାତୋ ମହାସେନସ୍ତଂ ଦେଶମୁପଚକ୍ରମେ । ୧୦ ।
ତସ୍ମିନ୍ ପ୍ରଦେଶେ ଦେବେଶଃ ଶୈଳରାଜସୁତାଂ ହରଃ ।
ରମୟାମାସ ଦୁର୍ଧର୍ଷଃ ସର୍ବୈରନୁଚରୈଃ ସହ । ୧୧ ।
କୃତ୍ୱା ସ୍ତ୍ରୀରୂପମାତ୍ମାନମୁମେଶୋ ଗୋପତିଧ୍ୱଜଃ ।
ଦେବ୍ୟାଃ ପ୍ରିୟଚିକୀର୍ଷୁଃ ସଂସ୍ତସ୍ମିନ୍ ପର୍ବତନିର୍ଝରେ । ୧୨ ।
ଯେ ତୁ ତତ୍ର ବନୋଦ୍ଦେଶେ ସତ୍ତ୍ୱାଃ ପୁରୁଷବାଦିନଃ ।
ବୃକ୍ଷାଃ ପୁରୁଷନାମାନସ୍ତେଽଭବନ୍ ସ୍ତ୍ରୀଜନାସ୍ତଦା । ୧୩ ।

---

। ୫-୭ । ପରମ ଉଦାର ମହାଯଶସ୍ୱୀ ଧର୍ମାତ୍ମା ଓ ବୀର୍ଯ୍ୟବାନ୍ ରାଜା ଇଳ ଏହି ପ୍ରକାରେ ବିଶେଷ ବୁଦ୍ଧିମତ୍ତାର ସହିତ ବାହ୍ଲୀକ ଦେଶକୁ ଶାସନ କରୁଥିଲେ । ୭ । ଥରେ ଚୈତ୍ରମାସରେ ସେହି ରାଜା ନିଜର ସେନା, ଭୃତ୍ୟ ଏବଂ ବାହନମାନଙ୍କୁ ନେଇ ରମଣୀୟ ବନରେ ମୃଗୟା କରିବାକୁ ଗଲେ । ୮ । ରାଜା ବନରେ ଯାଇ ଶହ ଶହ ହଜାର ହଜାର ପଶୁଙ୍କୁ ମାରିଦେଲେ; ମାତ୍ର ସେଥିରେ ମଧ୍ୟ ତାଙ୍କର ତୃପ୍ତି ହେଲା ନାହିଁ ।୯। ଏହାପରେ ମୃଗୟା କରି କରି ସେ ରାଜା ନାନାଜାତିୟ ଦଶହଜାର ହରିଣ ମାରି; ଯେଉଁ ସ୍ଥାନରେ ଦେବସେନାପତି କାର୍ତ୍ତିକେୟଙ୍କର ଜନ୍ମ ହୋଇଥିଲା, ସେହି ସ୍ଥାନରେ ଯାଇ ପହଞ୍ଚିଲେ । ୧୦ । ସେହି ବନରେ ଦୁର୍ଦ୍ଧର୍ଷ ଦେବାଧିଦେବ ମହାଦେବ ପାର୍ବତୀଙ୍କ ସହିତ ନିଜର ସମସ୍ତ ଅନୁଚରଙ୍କୁ ନେଇ ବିହାର କରୁଥିଲେ । ୧୧ । ସେତେବେଳେ ବୃଷଭଧ୍ୱଜ ଶିବ ପାର୍ବତୀଙ୍କୁ ଖୁସି କରିବା ଲାଗି ନିଜକୁ ସ୍ତ୍ରୀରୂପ କରିଦେଇଥିଲେ ଏବଂ ସେହି ପର୍ବତଝରଣା ନିକଟରେ ବୁଲୁଥିଲେ ।୧୨ । ସେତେବେଳେ ସେ ବନରେ ଯେତେ ପୁରୁଷ ଜାତିର ବୃକ୍ଷ ବା ପ୍ରାଣୀ ଥିଲେ ସେମାନେ ସମସ୍ତେ ସ୍ତ୍ରୀଜାତି ହୋଇଯାଇଥିଲେ ।୧୩ । ସେହି ସମୟରେ ସେ ବନରେ

ଯଚ୍ଚ କିଞ୍ଚନ ତତ୍ସର୍ବଂ ନାରୀସଂଜ୍ଞଂ ବଭୂବ ହ ।
ଏତସ୍ମିନ୍ନନ୍ତରେ ରାଜା ସ ଇଲଃ କର୍ଦମାତ୍ମଜଃ ।୧୪।
ନିଘ୍ନନ୍ ମୃଗସହସ୍ରାଣି ତଂ ଦେଶମୁପଚକ୍ରମେ ।
ସ ଦୃଷ୍ଟ୍ୱା ସ୍ତ୍ରୀକୃତଂ ସର୍ବଂ ସବ୍ୟାଲମୃଗପକ୍ଷିକମ୍ ।୧୫।
ଆତ୍ମାନଂ ସ୍ତ୍ରୀକୃତଂ ଚୈବ ସାନୁଗଂ ରଘୁନନ୍ଦନ ।
ତସ୍ୟ ଦୁଃଖଂ ମହଚ୍ଚାସୀଦ୍ଦୃଷ୍ଟ୍ୱାତ୍ମାନଂ ତଥାଗତମ୍ ।୧୬।
ଉମାପତେସ୍ତୁ ତତ୍ କର୍ମ ଜ୍ଞାତ୍ୱା ତ୍ରାସମୁପାଗମତ୍ ।
ତତୋ ଦେବଂ ମହାତ୍ମାନଂ ଶିତିକଣ୍ଠଂ କପର୍ଦିନମ୍ ।୧୭।
ଜଗାମ ଶରଣଂ ରାଜା ସଭୃତ୍ୟବଲବାହନଃ ।
ତତଃ ପ୍ରହସ୍ୟ ବରଦଃ ସହ ଦେବ୍ୟା ମହେଶ୍ୱରଃ ।୧୮।
ପ୍ରଜାପତିସୁତଂ ବାକ୍ୟମୁବାଚ ବରଦଃ ସ୍ୱୟମ୍ ।
ଉତ୍ତିଷ୍ଠୋତ୍ତିଷ୍ଠ ରାଜର୍ଷେ କାର୍ଦମେୟ ମହାବଲ ।୧୯।
ପୁରୁଷତ୍ୱମୃତେ ସୌମ୍ୟ ବରଂ ବରୟ ସୁବ୍ରତ ।
ତତଃ ସ ରାଜା ଦୁଃଖାର୍ତ୍ତଃ ପ୍ରତ୍ୟାଖ୍ୟାତୋ ମହାତ୍ମନା ।୨୦।
ନ ଚ ଜଗ୍ରାହ ସ୍ତ୍ରୀଭୂତୋ ବରମନ୍ୟଂ ସୁରୋତ୍ତମାତ୍ ।
ତତଃ ଶୋକେନ ମହତା ଶୈଳରାଜସୁତାଂ ନୃପଃ ।୨୧।

---

ଯେ ଯେଉଁଠି ଥିଲେ, ସେ ସମସ୍ତେ ସ୍ତ୍ରୀରୂପ ହୋଇଗଲେ । ସେତିକିବେଳେ କର୍ଦ୍ଦମଙ୍କ ପୁତ୍ର ରାଜା ଇଲ ମୃଗମାନଙ୍କୁ ଶିକାର କରି ସେ ବନରେ ଯାଇ ପହଞ୍ଚିଲେ ଏବଂ ଦେଖିଲେ ଯେ ସେ ବନର ସମସ୍ତ ସର୍ପ, ମୃଗ ଏବଂ ପକ୍ଷୀ ସ୍ତ୍ରୀରୂପ ହୋଇଯାଇଛନ୍ତି ।୧୪-୧୫। ହେ ରଘୁନନ୍ଦନ ! ତଦନନ୍ତର ସେ ଦେଖିଲେ ଯେ ସେ ନିଜେ ଏବଂ ତାଙ୍କର ଅନୁଚରମାନେ ମଧ୍ୟ ସ୍ତ୍ରୀ ହୋଇଗଲେ । ଏହା ଦେଖି ସେ ବଡ଼ ଦୁଃଖିତ ହେଲେ ।୧୬। ଯେତେବେଳେ ସେ ଜାଣିଲେ, ଶିବଙ୍କର ପ୍ରଭାବରୁ ଏପରି ହୋଇଛି ସେତେବେଳେ ସେ ରାଜା ଅତ୍ୟନ୍ତ ଭୟଭୀତ ହୋଇ ନିଜର ଅନୁଚର ସୈନିକ ଏବଂ ବାହନମାନଙ୍କ ସହିତ ଶିତିକଣ୍ଠ କପର୍ଦ୍ଦୀ ମହାତ୍ମା ମହାଦେବଙ୍କର ଶରଣାପନ୍ନ ହେଲେ । ଅନନ୍ତର ବରଦ ନିଜେ ମହେଶ୍ୱର ନିଜେ ପାର୍ବତୀଙ୍କ ସହିତ ହସିକରି ପ୍ରଜାପତିପୁତ୍ର ଇଲଙ୍କୁ କହିଲେ, "ହେ କର୍ଦ୍ଦମପୁତ୍ର ମହାବଳୀ ରାଜର୍ଷି ! ତୁମେ ଉଠ, ଉଠ ।୧୭-୧୯। ହେ ସୁବ୍ରତ ! ପୁରୁଷତ୍ୱପ୍ରାପ୍ତି ଛଡ଼ା ଅନ୍ୟ ଯେ ବର ଇଚ୍ଛା କରୁଛ ମାଗ ।" ସୁରଶ୍ରେଷ୍ଠ ଭଗବାନ୍ ଶିବ ଏପରି କହିବାରୁ ସ୍ତ୍ରୀ ହୋଇଯାଇଥିବା ରାଜା ଇଲ ତାଙ୍କଠାରୁ ଅନ୍ୟ କୌଣସି ବର ମାଗିଲେ ନାହିଁ । ରାଜା ଅତିଶୟ

ପ୍ରଣିପତ୍ୟ ସ୍ତୁ୍ୟମାଂ ଦେବୀଂ ସର୍ବୈଶୈବାନ୍ତରାତ୍ମନା ।
ଈଶେ ବରାଣାଂ ବରଦେ ଲୋକାନାମସି ଭାମିନୀ । ୨୨ ।
ଆମୋଘଦର୍ଶନେ ଦେବି ଭଜ ସୌମ୍ୟେନ ଚକ୍ଷୁଷା ।
ହୃଦ୍‌ଗତଂ ତସ୍ୟ ରାଜର୍ଷେର୍ବିଜ୍ଞାୟ ହରସଂନଧୌ । ୨୩ ।
ପ୍ରତ୍ୟୁବାଚ ଶୁଭଂ ବାକ୍ୟଂ ଦେବୀ ରୁଦ୍ରସ୍ୟ ସଂମତା ।
ଅର୍ଧସ୍ୟ ଦେବୋ ବରଦୋ ବରାର୍ଧସ୍ୟ ତବ ହ୍ୟହମ୍ । ୨୪ ।
ତସ୍ମାଦର୍ଧଂ ଗୃହାଣ ତ୍ୱଂ ସ୍ତ୍ରୀପୁଂସୋର୍ଯାବଦିଚ୍ଛସି ।
ତଦଦ୍ଭୁତତରଂ ଶ୍ରୁତ୍ୱା ଦେବ୍ୟା ବରମନୁତ୍ତମମ୍ । ୨୫ ।
ସଂପ୍ରହୃଷ୍ଟମନା ଭୂତ୍ୱା ରାଜା ବାକ୍ୟମଥାବ୍ରବୀତ୍ ।
ଯଦି ଦେବି ପ୍ରସନ୍ନା ମେ ରୂପେଣାପ୍ରତିମା ଭୁବି । ୨୬ ।
ମାସଂ ସ୍ତ୍ରୀତ୍ୱମୁପାସିତ୍ୱା ମାସଂ ସ୍ୟାଂ ପୁରୁଷଃ ପୁନଃ ।
ଈପ୍ସିତଂ ତସ୍ୟ ବିଜ୍ଞାୟ ଦେବୀ ସୁରୁଚିରାନନା । ୨୭ ।
ପ୍ରତ୍ୟୁବାଚ ଶୁଭଂ ବାକ୍ୟମେବମେବ ଭବିଷ୍ୟତି ।
ରାଜନ୍ ପୁରୁଷଭୂତସ୍ତ୍ୱଂ ସ୍ତ୍ରୀଭାବଂ ନ ସ୍ମରିଷ୍ୟସି । ୨୮ ।

---

ଦୁଃଖିତ ହୋଇ ଶୈଳରାଜକନ୍ୟା ଉମାଙ୍କୁ ଅନ୍ତରେ ଭକ୍ତି ଓ ବିନୟରେ ପ୍ରଣାମକରି କହିଲେ, "ହେ ଭବାନି, ହେ ବରଦାୟିନି ! ତୁମେ ସବୁ ଲୋକଙ୍କୁ ଏବଂ ସବୁ ଦେବତାଙ୍କୁ ବରଦାନ କରିବାରେ ସମର୍ଥ ଅଛ । ୨୦-୨୨ । ହେ ଦେବି ! ତୁମ୍ଭର ଦର୍ଶନ କେବେ ବୃଥା ଯାଏ ନାହିଁ । ଅତଏବ ମୋତେ ଶୁଭଦୃଷ୍ଟିରେ ଚାହଁ" । ରାଜର୍ଷିଙ୍କର ହୃଦ୍‌ଗତ ଭାବ ଜାଣି ଦେବୀ ହରଙ୍କ ନିକଟରେ ଥାଇ ତାଙ୍କ ସମର୍ଥନ ସ୍ୱହିତ ଏହି ଶୁଭବଚନରେ ଉତ୍ତର ଦେଲେ । "ହେ ରାଜନ୍ ! ତୁମକୁ ଏ ବରର ଅର୍ଧେ ମହାଦେବ ଦେବେ ଏବଂ ଅନ୍ୟ ଅଧେକ ମୁଁ ଦେବି । ୨୩-୨୪ । ଅତଏବ ସ୍ତ୍ରୀତ୍ୱ ଓ ପୁରୁଷତ୍ୱ ସମ୍ବନ୍ଧରେ ମୁଁ ତୁମକୁ ଅଧେ ବର ଦେଉଅଛି, ତୁମେ ତାହା ଗ୍ରହଣ କର ।" ପାର୍ବତୀଙ୍କର ଏହି ଅଦ୍ଭୁତ ବଚନ ଶୁଣି ରାଜା ଅତ୍ୟନ୍ତ ହର୍ଷିତ ହୋଇ କହିଲେ, "ହେ ଦେବି ! ତୁମେ ଏ ଜଗତରେ ରୂପରେ ଅତୁଳନୀୟା ଅଛ । ଯଦି ତୁମେ ମୋ ପ୍ରତି ପ୍ରସନ୍ନ ହେଲ ତେବେ ମୋତେ ଏହି ବର ଦିଅ ଯେ ମୁଁ ଏକମାସ ପର୍ଯ୍ୟନ୍ତ ସ୍ତ୍ରୀ ଏବଂ ଏକମାସ ପର୍ଯ୍ୟନ୍ତ ପୁରୁଷ ହୋଇ ରହିବି ।" ସୁନ୍ଦରବଦନା ପାର୍ବତୀ ରାଜାଙ୍କର ଅଭୀଷ୍ଟ ଜାଣି ଶୁଭ ବାକ୍ୟରେ କହିଲେ, "ଆଚ୍ଛା, ସେହିପରି ହେବ । ହେ ରାଜନ୍ ! ତୁମେ ଯେତେବେଳେ ପୁରୁଷ ରୂପ ହେବ, ସେତେବେଳେ ସ୍ତ୍ରୀଭାବକୁ ସ୍ମରଣ କରି ପାରିବ

ସ୍ତ୍ରୀଭୂତସ୍ତୁ ପରଂ ମାସଂ ନ ସ୍ମରିଷ୍ୟସି ପୌରୁଷମ୍ ।
ଏବଂ ସ ରାଜା ପୁରୁଷୋ ମାସଂ ଭୂତ୍ୱାଥ କାର୍ଦମିଃ ।
ତ୍ରୈଲୋକ୍ୟସୁନ୍ଦରୀ ନାରୀ ମାସମେକମିଳାଭବତ୍ । ୨୯ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ଇଲସ୍ତ୍ରୀତ୍ୱପ୍ରାପ୍ତିର୍ନାମ ସପ୍ତାଶୀତିତମଃ ସର୍ଗଃ ।

---

# ଅଷ୍ଟାଶୀତିତମଃ ସର୍ଗଃ

## ବୁଧସମାଗମଃ

ତାଂ କଥାମିଲସଂବଦ୍ଧାଂ ରାମେଣ ସମୁଦୀରିତାମ୍ ।
ଲକ୍ଷ୍ମଣୋ ଭରତଶ୍ଚୈବ ଶ୍ରୁତ୍ୱା ପରମବିସ୍ମିତୌ । ୧ ।
ତୌ ରାମଂ ପ୍ରାଞ୍ଜଲୀ ଭୂତ୍ୱା ତସ୍ୟ ରାଜ୍ଞୋ ମହାତ୍ମନଃ ।
ବିସ୍ତରଂ ତସ୍ୟ ଭାବସ୍ୟ ତଦା ପପ୍ରଚ୍ଛତୁଃ ପୁନଃ । ୨ ।
କଥଂ ସ ରାଜା ସ୍ତ୍ରୀଭୂତୋ ବର୍ତ୍ତୟାମାସ ଦୁର୍ଗତିଃ ।
ପୁରୁଷଃ ସ ଯଦା ଭୂତଃ କାଂ ବୃତ୍ତିଂ ବର୍ତ୍ତୟତ୍ୟସୌ । ୩ ।

---

ନାହିଁ ।୨୫-୨୮। ପରବର୍ତ୍ତୀ ମାସରେ ତୁମେ ସ୍ତ୍ରୀରୂପ ଧରିବାବେଳେ ପୁରୁଷ-ଭାବକୁ ସ୍ମରଣ କରି ପାରିବ ନାହିଁ ।'' ତଦନୁସାରେ ସେହିଦିନଠାରୁ କର୍ଦ୍ଦମପୁତ୍ର ରାଜା ଇଲ ଏକ ମାସ ସ୍ତ୍ରୀ ଏବଂ ଏକ ମାସ ପୁରୁଷ ହେବାକୁ ଲାଗିଲେ । ମାସକ ପାଇଁ ଇଲ ତ୍ରିଭୁବନରେ ସର୍ବଶ୍ରେଷ୍ଠ ସୁନ୍ଦରୀ ନାରୀ ହେଲେ ଏବଂ ସେତେବେଳେ ତାଙ୍କର ନାମ ଇଳା ହେଲା'' । ୨୯ ।

---

## ୮୮ତମ ସର୍ଗ

(ଇଳାଙ୍କର ବୁଧଙ୍କ ସହ ମିଳନ)

ରାମଙ୍କ ମୁଖରୁ ରାଜା ଇଲଙ୍କ ସମ୍ବନ୍ଧୀୟ କଥା ଶୁଣି ଭରତ ଓ ଲକ୍ଷ୍ମଣ ଅତିଶୟ ବିସ୍ମିତ ହେଲେ ।୧। ସେ ଦୁହେଁ ରାମଙ୍କଠାରୁ ସେହି ମହାତ୍ମା ରାଜାଙ୍କ ବିଷୟ ବିସ୍ତୃତଭାବରେ ଶୁଣିବାକୁ ଇଚ୍ଛା କରି ହାତ ଯୋଡ଼ି ତାଙ୍କୁ ପୁଣି ପଚାରିଲେ ।୨। ''ହେ ପ୍ରଭୋ ! ସେ ରାଜା ଯେତେବେଳେ ସ୍ତ୍ରୀ ହୋଇଯାଉଥିଲେ, ସେତେବେଳେ ସେ କି କି ଦୁର୍ଗତି ଭୋଗୁଥିଲେ ଏବଂ ପୁରୁଷ ହୋଇଗଲେ କଅଣ କଅଣ କରୁଥିଲେ'' ? ୩ ।

ତସ୍ୟୋସ୍ତଭାଷିତଂ ଶ୍ରୁତ୍ୱା କୌତୂହଲସମନ୍ୱିତମ୍ ।
କଥୟାମାସ କାକୁତ୍ସ୍ଥସ୍ତସ୍ୟ ରାଜ୍ଞୋ ଯଥାଗତମ୍ । ୪ ।
ତମେବ ପ୍ରଥମଂ ମାସଂ ସ୍ତ୍ରୀଭୂତା ଲୋକସୁନ୍ଦରୀ ।
ତାଭିଃ ପରିବୃତା ସ୍ତ୍ରୀଭିର୍ଯେ ଚ ପୂର୍ବପଦାନୁଗାଃ । ୫ ।
ତତ୍ କାନନଂ ବିଗାହ୍ୟାଶୁ ବିଜହ୍ରେ ଲୋକସୁନ୍ଦରୀ ।
ଦ୍ରୁମଗୁଲ୍ମଲତାକୀର୍ଣ୍ଣଂ ପଦ୍ଭ୍ୟାଂ ପଦ୍ମଦଳେକ୍ଷଣା । ୬ ।
ବାହନାନି ଚ ସର୍ବାଣି ସା ତ୍ୟକ୍ତ୍ୱା ବୈ ସମନ୍ତତଃ ।
ପର୍ବତାଭୋଗବିବରେ ତସ୍ମିନ୍ ରେମେ ଇଳା ତଦା । ୭ ।
ଅଥ ତସ୍ମିନ୍ ବନୋଦ୍ଦେଶେ ପର୍ବତସ୍ୟାବିଦୂରତଃ ।
ସରଃ ସୁରୁଚିରପ୍ରଖ୍ୟଂ ନାନାପକ୍ଷିଗଣୈର୍ଯୁତମ୍ । ୮ ।
ଦଦର୍ଶ ସା ତ୍ୱିଳା ତସ୍ମିନ୍ ବୁଧଂ ସୋମସୁତଂ ତତଃ ।
ଜ୍ୱଲନ୍ତଂ ସ୍ୱେନ ବପୁଷା ପୂର୍ଣ୍ଣସୋମମିବୋଦିତମ୍ । ୯ ।
ତପନ୍ତଂ ଚ ତପସ୍ତୀବ୍ରମମ୍ଭୋମଧ୍ୟେ ଦୁରାସଦମ୍ ।
ଯଶସ୍କରଂ କାମକରଂ ତାରୁଣ୍ୟେ ପର୍ଯ୍ୟବସ୍ଥିତମ୍ । ୧୦ ।
ସା ତଂ ଜଲାଶୟଂ ସର୍ବଂ କ୍ଷୋଭୟାମାସ ବିସ୍ମିତା ।
ସହତୈଃ ପୂର୍ବପୁରୁଷୈଃ ସ୍ତ୍ରୀଭୂତୈ ରଘୁନନ୍ଦନ । ୧୧ ।

---

ରାମ ସେ ବୁଧଙ୍କର କୌତୂହଳବଚନ ଶୁଣି ପରେ ସେ ରାଜାଙ୍କର ଯାହା ଘଟିଥିଲା ସେକଥା କହିଲେ ।୪। ସେ କହିଲେ, "ପ୍ରଥମ ମାସରେ ଯେତେବେଳେ ସେ ଲୋକସୁନ୍ଦରୀ ସ୍ତ୍ରୀ ହେଲେ, ସେତେବେଳେ ସ୍ତ୍ରୀ ହୋଇଥିବା ନିଜର ଅନୁଗତ ଲୋକଙ୍କ ସହିତ ସେହି ବଣରେ ପ୍ରବେଶ କରି ପଦ୍ମଲୋଚନା ନାରୀରୂପରେ ପାଦରେ ବିଚରଣ କରିବାକୁ ଲାଗିଲେ । ସେହି ବନରେ ଅନେକ ବୃକ୍ଷ, ଲତା ଓ ଗୁଳ୍ମ ଥିବାରୁ ତାହା ଅତି ମନୋହର ଶୋଭା ଧାରଣ କରିଥିଲା ।୫-୬। ସେଠାରେ ଇଳା ନିଜର ବାହନମାନଙ୍କୁ ଛାଡ଼ିଦେଇ ପର୍ବତକନ୍ଦରା ଭିତରେ ବିଚରଣ କରିବାକୁ ଲାଗିଲେ ।୭। ସେହି ବନରେ ପର୍ବତ ନିକଟରେ ବିବିଧ ପଶୁପକ୍ଷୀରେ ପରିପୂର୍ଣ୍ଣ ଏକ ସୁନ୍ଦର ସରୋବର ଥିଲା । ସେ ସେହି ସରୋବର ନିକଟରେ ପୂର୍ଣ୍ଣିମାରେ ଉଦିତ ପୂର୍ଣ୍ଣଚନ୍ଦ୍ରସଦୃଶ ଚନ୍ଦ୍ରଙ୍କ ପୁତ୍ର ବୁଧଙ୍କୁ ସ୍ୱତେଜରେ ଦେଦୀପ୍ୟମାନ ହେଉଥିବାର ଦେଖିଲେ ।୮-୯। ସେ ସେହି ପୁଷ୍କରଣୀର ଜଳ ମଧ୍ୟରେ ଠିଆ ହୋଇ ଉଗ୍ରତପସ୍ୟା କରୁଥିଲେ । ସେ ବଡ଼ ଯଶସ୍ୱୀ ଓ ପରୋପକାରୀ ଥିଲେ ଏବଂ ତାଙ୍କର ସେତେବେଳେ ତରୁଣ ଅବସ୍ଥା ଥିଲା ।୧୦। ହେ ରଘୁନନ୍ଦନ ! ସେହି ସ୍ତ୍ରୀ ଇଳା ସ୍ତ୍ରୀରୂପୀ ନିଜର ସାଥୀମାନଙ୍କ ସହିତ ସେହି ସରୋବରକୁ ଯାଇ ବିସ୍ମିତ ହୋଇ ଉକ୍ତ ସରୋବରର ଜଳକୁ ଆଲୋଡ଼ିତ

ବୁଧସ୍ତୁ ତାଂ ସମୀକ୍ଷ୍ୟୈବ କାମବାଣବଶଂ ଗତଃ ।
ନୋପଲେଭେ ତଦାତ୍ମାନଂ ସଂଚଚାଲ ତଦାମ୍ଭସି । ୧୨ ।
ଇଲାଂ ନିରୀକ୍ଷମାଣସ୍ତୁ ତ୍ରୈଲୋକ୍ୟାଭ୍ୟଧିକାଂ ଶୁଭାମ୍ ।
ଚିନ୍ତାଂ ସମଭ୍ୟତିକ୍ରାମତ୍ କା ନ୍ୱିୟଂ ଦେବତାଧିକା । ୧୩ ।
ନ ଦେବୀଷୁ ନ ନାଗୀଷୁ ନାସୁରୀଷ୍ୱପ୍‌ସରଃସୁ ଚ ।
ଦୃଷ୍ଟପୂର୍ବା ମୟା କାଚିଦ୍ରୂପେଣାନେନ ଶୋଭିତା । ୧୪ ।
ସଦୃଶୀୟଂ ମମ ଭବେଦ୍ ଯଦି ନାନ୍ୟପରିଗ୍ରହଃ ।
ଇତି ବୁଦ୍ଧିଂ ସମାସ୍ଥାୟ ଜଲାତ୍ କୂଲମୁପାଗମତ୍ । ୧୫ ।
ଆଶ୍ରମଂ ସମୁପାଗମ୍ୟ ତତସ୍ତାଃ ପ୍ରମଦୋତ୍ତମାଃ ।
ଶବ୍ଦାପୟତ ଧର୍ମାତ୍ମା ତାଶ୍ଚୈନଂ ଚ ବବନ୍ଦିରେ । ୧୬ ।
ସ ତାଃ ପପ୍ରଚ୍ଛ ଧର୍ମାତ୍ମା କସ୍ୟୈଷା ଲୋକସୁନ୍ଦରୀ ।
କିମର୍ଥମାଗତା ଚୈବ ସର୍ବମାଖ୍ୟାତ ମା ଚିରମ୍ । ୧୭ ।
ଶୁଭଂ ତୁ ତସ୍ୟ ତଦ୍‌ବାକ୍ୟଂ ମଧୁରଂ ମଧୁରାକ୍ଷରମ୍ ।
ଶ୍ରୁତ୍ୱା ସ୍ତ୍ରିୟଶ୍ଚ ତାଃ ସର୍ବା ଊଚୁର୍ମଧୁରୟା ଗିରା । ୧୮ ।
ଅସ୍ମାକମେଷା ସୁଶ୍ରୋଣୀ ପ୍ରଭୁତ୍ୱେ ବର୍ତ୍ତତେ ସଦା ।
ଅପତିଃ କାନନାନ୍ତେଷୁ ସହାସ୍ମାଭିଶ୍ଚରତ୍ୟସୌ । ୧୯ ।

---

କରିପକାଇଲେ । ୧୧ । ଇଲାଙ୍କୁ ଦେଖି ବୁଧ କାମଶରରେ ପୀଡ଼ିତ ହୋଇ ନିଜକୁ ସମ୍ଭାଳି ପାରିଲେ ନାହିଁ ଏବଂ ସେହି ଜଳ ମଧ୍ୟରେ ବିଚଳିତ ହୋଇପଡ଼ିଲେ ।୧୨। ତ୍ରୈଲୋକ୍ୟସୁନ୍ଦରୀ ଇଲାଙ୍କ ଆଡ଼କୁ ଚାହିଁ ବୁଧ ମନେ ମନେ କହିଲେ, ଏହି ଦେବାଙ୍ଗନା ମାନଙ୍କଠାରୁ ଅଧିକ ସୁନ୍ଦରୀଟି କିଏ ? ୧୩ । ଏପରି ରୂପରେ ଶୋଭିତା ଅନ୍ୟ କୌଣସି ନାରୀଙ୍କୁ ଏଥିପୂର୍ବରୁ ମୁଁ ଦେବୀ, ନାଗିନୀ,ଅସୁରୀ ଏବଂ ଅପ୍‌ସରାମାନଙ୍କ ମଧ୍ୟରେ ମଧ୍ୟ କାହାରିକୁ ଦେଖିନାହିଁ ।୧୪। ଯଦି ଆଗରୁ ଏହାର ଅନ୍ୟ କାହାରି ସହିତ ବିବାହ ହୋଇ ନ ଥିବ, ତାହାହେଲେ ଏ ନାରୀ ମୋର ଯୋଗ୍ୟ ହେବ । ଏହି ବିଚାର କରି ବୁଧ ଜଳରୁ ବାହାରି କୂଳକୁ ଆସିଲେ । ୧୫ । ତଦନନ୍ତର ସେ ନିଜର ଆଶ୍ରମକୁ ଯାଇ ସେହି ସୁନ୍ଦରୀ ସ୍ତ୍ରୀମାନଙ୍କୁ ଡାକିଲେ । ତା ପରେ ସେ ସ୍ତ୍ରୀମାନେ ସେଠାକୁ ଯାଇ ବୁଧଙ୍କୁ ପ୍ରଣାମ କଲେ ।୧୬। ଧର୍ମାତ୍ମା ବୁଧ ସେମାନଙ୍କୁ ପଚାରିଲେ, "ଏହି ତ୍ରୈଲୋକ୍ୟ ସୁନ୍ଦରୀ କାହାର ସ୍ତ୍ରୀ ଅଟନ୍ତି ଏବଂ ଏଠାକୁ କାହିଁକି ଆସିଛନ୍ତି, ମୋତେ ଏସବୁ କଥା ଶୀଘ୍ର କହ, ବିଳମ୍ବ କରନାହିଁ "।୧୭। ତାଙ୍କର ସେହି ମଧୁର ଏବଂ ସୁନ୍ଦର ବଚନ ଶୁଣି ସେହି ସ୍ତ୍ରୀମାନେ ମଧୁର ବାକ୍ୟରେ କହିଲେ ।୧୮। "ଏହି ସୁଶ୍ରୋଣୀ ସର୍ବଦା ଆମ୍ଭମାନଙ୍କର ପ୍ରଭୁ ହୋଇ ରହିଛନ୍ତି । ଏହାଙ୍କର ପତି କେହି ନାହାନ୍ତି । ଏ

ତଦ୍ ବାକ୍ୟମବ୍ୟକ୍ତପଦଂ ତାସାଂ ସ୍ତ୍ରୀଣାଂ ନିଶମ୍ୟ ଚ ।
ବିଦ୍ୟାମାବର୍ତ୍ତିନୀଂ ପୁଣ୍ୟାମାବର୍ତ୍ତୟତ ସ ଦ୍ୱିଜଃ । ୨୦ ।
ସୋଽର୍ଥଂ ବିଦିତ୍ୱା ସକଳଂ ତସ୍ୟ ରାଜ୍ଞୋ ଯଥାଗତମ୍ ।
ସର୍ବା ଏବ ସ୍ତ୍ରିୟସ୍ତାଶ୍ଚ ବଭାଷେ ମୁନିପୁଙ୍ଗବଃ । ୨୧ ।
ଅତ୍ର କିଂପୁରୁଷୀର୍ଭୂତ୍ୱା ଶୈଳରୋଧସି ବତ୍ସ୍ୟଥ ।
ଆବାସସ୍ତୁ ଗିରାବସ୍ମିନ୍ ଶୀଘ୍ରମେବ ବିଧୀୟତାମ୍ । ୨୨ ।
ମୂଳପତ୍ରଫଳୈଃ ସର୍ବା ବର୍ତ୍ତୟିଷ୍ୟଥ ନିତ୍ୟଦା ।
ସ୍ତ୍ରିୟଃ କିଂପୁରୁଷାନ୍ନାମ ଭର୍ତ୍ତୄନ୍ ସମୁପଲପ୍ସ୍ୟଥ ।୨୩।
ତାଂ ଶ୍ରୁତ୍ୱା ସୋମପୁତ୍ରସ୍ୟ ବାଚଂ କିଂପୁରୁଷୀକୃତାଃ ।
ଉପାସାଂଚକ୍ରିରେ ଶୈଳଂ ବଧ୍ୱସ୍ତା ବହୁଳାସ୍ତଦା । ୨୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ବୁଧସମାଗମୋ ନାମ ଅଷ୍ଟାଶୀତିତମଃ ସର୍ଗଃ ।

---

ଆମ୍ଭମାନଙ୍କ ସହିତ ଏହି ବନପ୍ରାନ୍ତରରେ ବିଚରଣ କରୁଅଛନ୍ତି" । ୧୯ । ସ୍ତ୍ରୀମାନଙ୍କର ଏହି ସ୍ୱଚ୍ଛବଚନ ଶୁଣି ଦ୍ୱିଜ (କ୍ଷତ୍ରିୟ) ବୁଧ ନିଜର ପୁଣ୍ୟ ଆବର୍ତ୍ତିନୀ ବିଦ୍ୟା ସ୍ମରଣ କଲେ । ୨୦ । ସେ ଯୋଗବଳରେ ଇଳ ରାଜାଙ୍କର ଯାହା ଯେପରି ଘଟିଛି ସମସ୍ତ ବୃତ୍ତାନ୍ତ ଜାଣି ସେହି ସ୍ତ୍ରୀମାନଙ୍କୁ କହିଲେ ।୨୧। "ତୁମ୍ଭେମାନେ ଏହିଠାରେ କିନ୍ନରୀ ହୋଇ ଏହି ପର୍ବତ ପ୍ରାନ୍ତରେ ବାସକର ଏବଂ ଏ ପର୍ବତ ଉପରେ ଶୀଘ୍ର ତୁମ୍ଭମାନଙ୍କର ବାସସ୍ଥାନ ନିର୍ମାଣ କର । ୨୨ । ଏଠାରେ ତୁମ୍ଭମାନଙ୍କୁ ଭୋଜନ ପାଇଁ ସର୍ବଦା ଫଳ ମୂଳ ଏବଂ ପତ୍ର ମିଳିବ ଓ ତୁମ୍ଭେମାନେ ନିଜ ନିଜ ପାଇଁ କିନ୍ନର ପତିମାନଙ୍କୁ ମଧ୍ୟ ପାଇବ" । ୨୩ । ସୋମପୁତ୍ର ବୁଧଙ୍କର ବାକ୍ୟ ଶୁଣି ସେହି ସ୍ତ୍ରୀମାନେ କିନ୍ନରୀ ରୂପରେ ସେହି ପର୍ବତ ଉପରେ ସୁନ୍ଦର ଗୃହ ନିର୍ମାଣ କରି ସେହିଠାରେ ବାସ-କରିବାକୁ ଲାଗିଲେ" । ୨୪ ।

# ଏକୋନନବତିତମଃ ସର୍ଗଃ

## ପୁରୂରବୋଜନନମ୍

ଶ୍ରୁତ୍ୱା କଂପୁରୁଷୋତ୍ପତ୍ତିଂ ଲକ୍ଷ୍ମଣୋ ଭରତସ୍ତଦା ।
ଆଶ୍ଚର୍ଯମିତି ଚୋଚତୁସ୍ତାବୁଭୌ ରାମଂ ଜନେଶ୍ୱରମ୍ । ୧ ।
ଅଥ ରାମଃ କଥାମେତାଂ ଭୂୟ ଏବ ମହାଯଶାଃ ।
କଥୟାମାସ ଧର୍ମାତ୍ମା ପ୍ରଜାପତିସୁତସ୍ୟ ବୈ । ୨ ।
ସର୍ବାସ୍ତା ଦ୍ରବିତା ଦୃଷ୍ଟ୍ୱା କିଂନରୀର୍‌ଋଷିସତ୍ତମଃ ।
ଉବାଚ ରୂପସମ୍ପନ୍ନାଂ ତାଂ ସ୍ତ୍ରିୟଂ ପ୍ରହସନ୍ନିବ । ୩ ।
ସୋମସ୍ୟାହଂ ସୁଦୟିତଃ ସୁତଃ ସୁରୁଚିରାନନେ ।
ଭଜସ୍ୱ ମାଂ ବରାରୋହେ ଭକ୍ତ୍ୟା ସ୍ନିଗ୍ଧେନ ଚକ୍ଷୁଷା । ୪ ।
ତସ୍ୟ ତଦ୍‌ବଚନଂ ଶ୍ରୁତ୍ୱା ଶୂନ୍ୟେ ସ୍ୱଜନବର୍ଜିତା ।
ଇଲା ସୁରୁଚିରପ୍ରଖ୍ୟଂ ପ୍ରତ୍ୟୁବାଚ ମହାଗ୍ରହମ୍ । ୫ ।
ଅହଂ କାମଚରୀ ସୌମ୍ୟ ତବାସ୍ମି ବଶବର୍ତ୍ତିନୀ ।
ପ୍ରଶାଧି ମାଂ ସୋମସୁତ ଯଥେଚ୍ଛସି ତଥା କୁରୁ । ୬ ।

---

## ୮୯ତମ ସର୍ଗ

### ( ପୁରୂରବାଙ୍କ ଜନ୍ମ )

ଏହିପ୍ରକାରେ କଂପୁରୁଷମାନଙ୍କର ଉତ୍ପତ୍ତି କଥା ଶୁଣି ଭରତ ଓ ଲକ୍ଷ୍ମଣ ରଜା ରାମଙ୍କୁ କହିଲେ, "ଆପଣ ଯାହା କହିଲେ ଏହା ଅତି ଅଦ୍ଭୁତକଥା" ।୧। ଅନନ୍ତର ମହାଯଶସ୍ୱୀ ରାମ ପୁଣି ପ୍ରଜାପତିପୁତ୍ର ଧର୍ମାତ୍ମା ଇଳଙ୍କ ବିଷୟରେ କହିବାକୁ ଲାଗିଲେ ।୨। ରାମ କହିଲେ, "ବୁଧ ଅନ୍ୟ ସମସ୍ତ କନ୍ୟାମାନଙ୍କୁ ବିଦାୟ କରୁଥିବାର ଦେଖି ସେହି ରୂପଯୌବନସମ୍ପନ୍ନା ଇଳାଙ୍କୁ ହସି ହସି କହିଲେ ।୩। "ହେ ବରାରୋହେ ! ମୁଁ ଚନ୍ଦ୍ରଙ୍କର ପ୍ରିୟପୁତ୍ର ଅଟେଁ । ତୁମେ ସ୍ନେହ ଓ ଭକ୍ତିପୂର୍ଣ୍ଣ ଦୃଷ୍ଟିରେ ଦେଖି ମୋତେ ସନ୍ତୁଷ୍ଟ କର" । ୪ । ସ୍ୱଜନଶୂନ୍ୟ ସେହି ନିର୍ଜନ ସ୍ଥାନରେ ବୁଧଙ୍କର ଏ କଥା ଶୁଣି ଇଳା ସେହି ମନୋହର ମହାଗ୍ରହ ବୁଧଙ୍କୁ କହିଲେ ।୫। "ହେ ସୌମ୍ୟ ! ମୁଁ ସ୍ୱତନ୍ତ୍ର ଅଟେଁ ଏବଂ ତୁମର ବଶୀଭୂତ ହୋଇରହିଛି । ହେ ଚନ୍ଦ୍ରପୁତ୍ର ! ତୁମେ ମୋତେ ଆଦେଶ ଦିଅ ଏବଂ ତୁମେ ଯେପରି ଇଚ୍ଛା କରୁଛ ସେପରି

ତସ୍ୟାସ୍ତଦଦ୍ଭୁତପ୍ରଖ୍ୟଂ ଶ୍ରୁତ୍ୱା ହର୍ଷମୁପାଗତଃ ।
ସ ବୈ କାମୀ ସହ ତୟା ରେମେ ଚନ୍ଦ୍ରମସଃ ସୁତଃ । ୭ ।
ବୁଧସ୍ୟ ମାଧବୋ ମାସସ୍ତାମିଳାଂ ରୁଚିରାନନାମ୍ ।
ଗତୋ ରମୟତୋଽତ୍ୟର୍ଥଂ କ୍ଷଣବତ୍ତସ୍ୟ କାମିନଃ । ୮ ।
ଅଥ ମାସେ ତୁ ସମ୍ପୂର୍ଣ୍ଣେ ପୂର୍ଣ୍ଣେନ୍ଦୁସଦୃଶାନନଃ ।
ପ୍ରଜାପତିସୁତଃ ଶ୍ରୀମାନ୍ ଶୟନେ ପ୍ରତ୍ୟବୁଧ୍ୟତ । ୯ ।
ସୋଽପଶ୍ୟତ୍ ସୋମଜଂ ତତ୍ର ତପନ୍ତଂ ସଲିଳାଶୟେ ।
ଊର୍ଦ୍ଧ୍ୱବାହୁଂ ନିରାଲମ୍ବଂ ତଂ ରାଜା ପ୍ରତ୍ୟଭାଷତ । ୧୦ ।
ଭଗବନ୍ ପର୍ବତଂ ଦୁର୍ଗଂ ପ୍ରବିଷ୍ଟୋଽସ୍ମି ସହାନୁଗଃ ।
ନ ତୁ ପଶ୍ୟାମି ତତ୍ ସୈନ୍ୟଂ କ୍ୱ ନୁ ତେ ମାମକା ଗତାଃ ।୧୧।
ତଚ୍ଛ୍ରୁତ୍ୱା ତସ୍ୟ ରାଜର୍ଷେର୍ନଷ୍ଟସଂଜ୍ଞସ୍ୟ ଭାଷିତମ୍ ।
ପ୍ରତ୍ୟୁବାଚ ଶୁଭଂ ବାକ୍ୟଂ ସାନ୍ତ୍ୱୟନ୍ ପରୟା ଗିରା । ୧୨ ।
ଶ୍ମବର୍ଷେଣ ମହତା ଭୃତ୍ୟାସ୍ତେ ବିନିପାତିତାଃ ।
ତ୍ୱଂ ଚାଶ୍ରମପଦେ ସୁପ୍ତୋ ବାତବର୍ଷଭୟାର୍ଦ୍ଦିତଃ । ୧୩ ।

---

କର" ।୭। ଇଳାଙ୍କର ସେହି ଅଦ୍ଭୁତ ବଚନ ଶୁଣି କାମାସକ୍ତ ଚନ୍ଦ୍ରପୁତ୍ର ବୁଧ ଅତିଶୟ ଆନନ୍ଦିତ ହେଲେ ଓ ଇଳାଙ୍କ ସହିତ ସେହି ସ୍ଥାନରେ ବିହାର କରିବାକୁ ଲାଗିଲେ ।୭। ସେହି ସୁନ୍ଦରୀ ଇଳାଙ୍କ ସହିତ ବିହାର କରି କାମାସକ୍ତ ବୁଧଙ୍କର ମଧୁମାସ ମୁହୂର୍ତ୍ତିକ ପରି ବିତିଗଲା । ୮ । ଅନନ୍ତର ମାସକ ପୂର୍ଣ୍ଣ ହୋଇଯିବା ପରେ ପୂର୍ଣ୍ଣଚନ୍ଦ୍ରାନନ ପ୍ରଜାପତିପୁତ୍ର ଶ୍ରୀମାନ୍ ଇଳ ନିଦରୁ ଉଠିଲାପରି ଜାଗିଉଠିଲେ । ୯ । ସେଠାରେ ସରୋବର ମଧ୍ୟରେ ବୁଧଙ୍କୁ ଊର୍ଦ୍ଧ୍ୱବାହୁ ଓ ନିରାଲମ୍ବ ହୋଇ ତପସ୍ୟା କରୁଥିବାର ଦେଖିଲେ ଏବଂ ରାଜା ଇଳ ତାଙ୍କୁ କହିଲେ । ୧୦ । "ହେ ଭଗବନ୍ ! ମୁଁ ମୋର ଅନୁଚରମାନଙ୍କୁ ସଙ୍ଗରେ ଧରି ଏହି ଦୁର୍ଗମ ପର୍ବତକୁ ଆସିଥିଲି; କିନ୍ତୁ ଏଠାରେ ସେ ସୈନ୍ୟଦଳରୁ କାହାରିକୁ ଦେଖୁନାହିଁ । ମୋର ସେ ଲୋକେ କୁଆଡ଼େ ଗଲେ" । ୧୧ । ରାଜର୍ଷି ଇଳ ନିଜର ସ୍ତ୍ରୀସ୍ୱଭାବକୁ ଭୁଲିଯାଇଥିଲେ । ତାଙ୍କର କଥା ଶୁଣି ବୁଧ ତାଙ୍କୁ ସାନ୍ତ୍ୱନା ଦେଇ ମଧୁର ବଚନରେ କହିଲେ । ୧୨ । "ବିଶାଳ ପ୍ରସ୍ତରବୃଷ୍ଟି ହେବାରୁ ତୁମ୍ଭର ଭୃତ୍ୟମାନେ ସମସ୍ତେ ମରିଗଲେ; ମାତ୍ର ବାୟୁ ଓ ବର୍ଷାର ଭୟରେ ପୀଡ଼ିତ ହୋଇ ତୁମେ ଏ ଆଶ୍ରମରେ ଶୋଇପଡ଼ିଥିଲ ।୧୩। ହେ ବୀର ! ତୁମ୍ଭର ମଙ୍ଗଳ ହେଉ,

ସମାଶ୍ୱସିହି ଭଦ୍ରଂ ତେ ନିର୍ଭୟୋ ବିଗତଜ୍ୱରଃ ।
ଫଲମୂଲାଶନୋ ବୀର ନିବସେହ ଯଥାସୁଖମ୍ । ୧୪ ।
ସ ରାଜା ତେନ ବାକ୍ୟେନ ପ୍ରତ୍ୟାଶ୍ୱସ୍ତୋ ମହାମତିଃ ।
ପ୍ରତ୍ୟୁବାଚ ତତୋ ବାକ୍ୟଂ ଦୀନୋ ଭୃତ୍ୟକ୍ଷୟାଦ୍ଭୃଶମ୍ । ୧୫ ।
ତ୍ୟକ୍ଷ୍ୟାମ୍ୟହଂ ସ୍ୱକଂ ରାଜ୍ୟଂ ନାହଂ ଭୃତ୍ୟୈର୍ବିନାକୃତଃ ।
ବର୍ତ୍ତୟେୟଂ କ୍ଷଣଂ ବ୍ରହ୍ମନ୍ ସମନୁଜ୍ଞାତୁମର୍ହସି । ୧୬ ।
ସୁତୋ ଧର୍ମପରୋ ବ୍ରହ୍ମନ୍ ଜ୍ୟେଷ୍ଠୋ ମମ ମହାଯଶାଃ ।
ଶଶବିନ୍ଦୁରିତି ଖ୍ୟାତଃ ସ ମେ ରାଜ୍ୟଂ ପ୍ରପତ୍ସ୍ୟତେ । ୧୭ ।
ନ ହି ଶକ୍ଷ୍ୟାମ୍ୟହଂ ହିତ୍ୱା ଭୃତ୍ୟଦାରାନ୍ ସୁଖାନ୍ୱିତାନ୍ ।
ପ୍ରତିବକ୍ତୁଂ ମହାତେଜଃ କିଞ୍ଚିଦପ୍ୟଶୁଭଂ ବଚଃ । ୧୮ ।
ତଥା ବ୍ରୁବତି ରାଜେନ୍ଦ୍ରେ ବୁଧଃ ପରମମଦ୍ଭୁତମ୍ ।
ସାନ୍ତ୍ୱପୂର୍ବମଥୋବାଚ ବାସସ୍ତ ଇହ ରୋଚତାମ୍ । ୧୯ ।
ନ ସନ୍ତାପସ୍ତ୍ୱୟା କାର୍ଯ୍ୟଃ କାର୍ଦ୍ଦମେୟ ମହାବଲ ।
ସମ୍ବତ୍ସରୋଷିତସ୍ୟେହ କାରୟିଷ୍ୟାମି ତେ ହିତମ୍ । ୨୦ ।
ତସ୍ୟ ତଦ୍‌ବଚନଂ ଶ୍ରୁତ୍ୱା ବୁଧସ୍ୟାକ୍ଲିଷ୍ଟକର୍ମଣଃ ।
ବାସାୟ ବିଦଧେ ବୁଦ୍ଧିଂ ଯଦୁକ୍ତଂ ବ୍ରହ୍ମବାଦିନା । ୨୧ ।

---

ତୁମେ ଆଶ୍ୱସ୍ତ ହୁଅ ଏବଂ ନିର୍ଭୟରେ ତଥା ନିଶ୍ଚିନ୍ତରେ ଏହିଠାରେ ମନଖୁସିରେ ବାସକର” । ୧୪ । ମହାମତି ରାଜା ଇଲ ବୁଧଙ୍କର କଥାରେ ଆଶ୍ୱସ୍ତ ହେଲେ, ମାତ୍ର ଭୃତ୍ୟମାନଙ୍କ ବିନାଶରେ ଦୁଃଖିତ ହୋଇ କହିଲେ ।୧୫। “ହେ ବ୍ରହ୍ମନ୍! ମୁଁ ଭୃତ୍ୟମାନଙ୍କ ବିନାଶ ହେତୁ ରାଜ୍ୟ ଛାଡ଼ିଦେବି । କାରଣ ମୁଁ ସେମାନଙ୍କ ବିନା କ୍ଷଣେମାତ୍ର ରହିପାରିବି ନାହିଁ । ଅତଏବ ତୁମେ ମୋତେ ଯିବାକୁ ଆଜ୍ଞା ଦିଅ ।୧୬। ହେ ବ୍ରହ୍ମନ୍ ! ମୋର ମହାଯଶସ୍ୱୀ ଧର୍ମାତ୍ମା ଶଶବିନ୍ଦୁ ନାମକ ଜ୍ୟେଷ୍ଠ ପୁତ୍ର ମୋର ରାଜ୍ୟ ପାଇବ ।୧୭। ସୁଖରେ ଦେଶରେ ବାସ କରୁଥିବା ମୋର ସେହି ଭୃତ୍ୟମାନଙ୍କ ସ୍ତ୍ରୀମାନଙ୍କୁ ଛାଡ଼ି ମୁଁ ଏଠାରେ ରହିପାରିବି ନାହିଁ । ହେ ମହାତେଜସ୍ୱିନ୍ ! ଆପଣ ମୋତେ ଏଠାରେ ରହିବାର ଅପ୍ରିୟ କଥା କହନ୍ତୁ ନାହିଁ” । ୧୮ । ରାଜା ଇଲଙ୍କର ଏହି ଅତି ଅଦ୍ଭୁତ ବଚନ ଶୁଣି ବୁଧ ତାଙ୍କୁ ବୁଝାଇ କହିଲେ, “ତୁମେ ଏହିଠାରେ ବର୍ତ୍ତମାନ ପାଇଁ ରହ ।୧୯। ହେ କର୍ଦ୍ଦମପୁତ୍ର ! ତୁମେ ସନ୍ତାପ କର ନାହିଁ । ତୁମେ ଆଜିଠାରୁ ଏକ ବର୍ଷ ଏହିଠାରେ ରହିଲେ ମୁଁ ତୁମ୍ଭର ହିତକାର୍ଯ୍ୟ କରିବି” ।୨୦ । ସେହି ବ୍ରହ୍ମବାଦୀ ଋଷି ଅକ୍ଲିଷ୍ଟକର୍ମା ବୁଧଙ୍କର ଏ କଥା ଶୁଣି ତାଙ୍କର କଥାନୁସାରେ ରାଜା ଇଲ ସେହିଠାରେ

ମାସଂ ସ ସ୍ତ୍ରୀ ତଥା ଭୂତ୍ୱା ରମୟତ୍ୟନିଶଂ ଶୁଭା ।
ମାସଂ ପୁରୁଷଭାବେନ ଧର୍ମବୁଦ୍ଧିଂ ଚକାର ସଃ । ୨୨ ।
ତତଃ ସା ନବମେ ମାସି ଇଲା ସୋମସୁତାତ୍ସୁତମ୍ ।
ଜନୟାମାସ ସୁଶ୍ରୋଣୀ ପୁରୂରବସମୂର୍ଜିତମ୍ । ୨୩ ।
ଜାତମାତ୍ରଂ ତୁ ସୁଶ୍ରୋଣୀ ପିତୃହସ୍ତେ ନ୍ୟବେଶୟତ୍ ।
ବୁଧସ୍ୟ ସମବର୍ଣାଭମିଲାପୁତ୍ରଂ ମହାବଳମ୍ । ୨୪ ।
ବୁଧସ୍ତୁ ପୁରୁଷୀଭୂତଂ ସ ବୈ ସମ୍ବତ୍ସରାନ୍ତରମ୍ ।
କଥାଭୀ ରମୟାମାସ ଧର୍ମଯୁକ୍ତାଭିରାତ୍ମବାନ୍ । ୨୫ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ପୁରୂରବୋଜନନଂ ନାମ ଏକୋନନବତିତମଃ ସର୍ଗଃ ।

---

ରହିବା ପାଇଁ ମନକଲେ । ୨୧ । ସେ ମାସେ ସ୍ତ୍ରୀ ହୋଇ ସର୍ବଦା ବୁଧଙ୍କ ସହିତ ରମଣ କରୁଥିଲେ ଏବଂ ମାସେ ପୁରୁଷ ହୋଇ ଧର୍ମଜ୍ଞାନ ଅର୍ଜନ କରୁଥିଲେ ।୨୨। ଏହିପ୍ରକାରେ ନବମ ମାସରେ ସୁନ୍ଦରୀ ଇଲା ବୁଧଙ୍କ ଔରସରୁ ପୁରୂରବା ନାମକ ଏକ ତେଜସ୍ୱୀ ପୁତ୍ର ପ୍ରସବ କଲେ । ୨୩ । ସେହି ସୁଶ୍ରୋଣୀ ଇଲା ପୁତ୍ର ଜନ୍ମହେବା ମାତ୍ରେ ତାଙ୍କୁ ବୁଧଙ୍କ ହାତରେ ଅର୍ପଣ କରିଦେଲେ । ଇଲାଙ୍କର ସେ ପୁତ୍ର ବୁଧଙ୍କ ସମାନ ବର୍ଣ୍ଣ ଓ ବଳ ପାଇଥିଲେ । ୨୪ । ବର୍ଷେଯାଏ ରାଜା ଇଳ ଯେତେବେଳେ ପୁରୁଷ ହୋଇଯାଉଥିଲେ, ସେତେବେଳେ ବୁଧ ତାଙ୍କୁ ଅନେକ ଧର୍ମକଥା ଶୁଣାଇ ତାଙ୍କର ମନ ଖୁସି କରାଉଥିଲେ । ୨୫ ।

---

# ନବତିତମଃ ସର୍ଗଃ

## ଇଲାପୌରୁଷପ୍ରାପ୍ତିଃ

ତଥୋକ୍ତବତି ରାମେ ତୁ ତସ୍ୟ ଜନ୍ମ ତଦଦ୍ଭୁତମ୍ ।
ଉବାଚ ଲକ୍ଷ୍ମଣୋ ଭୂୟୋ ଭରତଶ୍ଚ ମହାଯଶାଃ । ୧ ।
ଇଲା ସା ସୋମପୁତ୍ରସ୍ୟ ସମ୍ବତ୍ସରମଥୋଷିତା ।
ଅକରୋତ୍ କିଂ ନରଶ୍ରେଷ୍ଠ ତତ୍ତ୍ୱଂ ଶଂସିତୁମର୍ହସି । ୨ ।
ତୟୋସ୍ତଦ୍ବାକ୍ୟମାଧୁର୍ଯ୍ୟଂ ନିଶମ୍ୟ ପରିପୃଚ୍ଛତୋଃ ।
ରାମଃ ପୁନରୁବାଚେମାଂ ପ୍ରଜାପତିସୁତେ କଥାମ୍ । ୩ ।
ପୁରୁଷତ୍ୱଂ ଗତେ ଶୂରେ ବୁଧଃ ପରମବୁଦ୍ଧିମାନ୍ ।
ସମ୍ବର୍ତ୍ତଂ ପରମୋଦାରମାଜୁହାବ ମହାଯଶାଃ । ୪ ।
ଚ୍ୟବନଂ ଭୃଗୁପୁତ୍ରଂ ଚ ମୁନିଂ ଚାରିଷ୍ଟନେମିନମ୍ ।
ପ୍ରମୋଦନଂ ମୋଦକରଂ ତଥା ଦୁର୍ବାସସଂ ମୁନିମ୍ । ୫ ।
ଏତାନ୍ ସର୍ବାନ୍ ସମାନୀୟ ବାକ୍ୟଜ୍ଞସ୍ତତ୍ତ୍ୱଦର୍ଶିନଃ ।
ଉବାଚ ସର୍ବାନ୍ ସୁହୃଦୋ ଧୈର୍ଯ୍ୟେଣ ସୁସମାହିତାନ୍ । ୬ ।

---

# ୯୦ତମ ସର୍ଗ

## ( ଇଳାଙ୍କର ପୁରୁଷତ୍ୱପ୍ରାପ୍ତି )

ରାମଙ୍କ ମୁଖରୁ ଏହି ପ୍ରକାରେ ପୁରୂରବାଙ୍କ ଜନ୍ମର ଅଦ୍ଭୁତ କଥା ଶୁଣି ଲକ୍ଷ୍ମଣ ଓ ଭରତ ମହାଯଶସ୍ୱୀ ରାମଙ୍କୁ ପୁଣି କହିଲେ । ୧ । "ହେ ନରଶ୍ରେଷ୍ଠ ! ଇଳା ସୋମପୁତ୍ର ବୁଧଙ୍କ ସହିତ ବର୍ଷେପର୍ଯ୍ୟନ୍ତ ରହି ତା ପରେ କଅଣ କଲେ, ସେ କଥା ଆମକୁ କହନ୍ତୁ" । ୨ । ରାମ ପୁଣି ଭରତ ଓ ଲକ୍ଷ୍ମଣଙ୍କର ଏହି ମଧୁର ବଚନ ଶୁଣି ପ୍ରଜାପତିପୁତ୍ର ରାଜା ଇଳଙ୍କ କଥା କହିବାକୁ ଆରମ୍ଭ କଲେ । ୩ । "ବାର ମାସ ପରେ ମହାବଳୀ ରାଜା ଇଳ ପୁଣି ଯେତେବେଳେ ପୁରୁଷ ହେଲେ, ସେତେବେଳେ ବାକ୍ୟନିପୁଣ ବୁଦ୍ଧିମାନ୍ ବୁଧ ମହାଯଶସ୍ୱୀ ସଂବର୍ତ୍ତ,ଭୃଗୁପୁତ୍ର ଚ୍ୟବନ, ଅରିଷ୍ଟନେମି, ପ୍ରମୋଦନ, ମୋଦକର, ଦୁର୍ବାସା ଆଦି ଋଷିମାନଙ୍କୁ ଡକାଇ ସେହି ମିତ୍ରମାନଙ୍କୁ ଧୈର୍ଯ୍ୟ ଏବଂ ସାବଧାନତା ସହକାରେ କହିଲେ ।୪-୬। "ହେ ବନ୍ଧୁଗଣ !

ଅୟଂ ରାଜା ମହାବାହୁଃ କର୍ଦ୍ଦମସ୍ୟ ଇଲଃ ସୁତଃ ।
କାର୍ତ୍ତିକେନଂ ଯଥାଭୂତଂ ଶ୍ରେୟୋ ହ୍ୟସ୍ୟ ବିଧୀୟତାମ୍ । ୭ ।
ତେଷାଂ ସମ୍ୱଦତାମେବ ତମାଶ୍ରମମୁପାଗମତ୍ ।
କର୍ଦ୍ଦମସ୍ତୁ ମହାତେଜା ଦ୍ୱିଜୈଃ ସହ ମହାତ୍ମଭିଃ । ୮ ।
ପୁଲସ୍ତ୍ୟଶ୍ଚ କ୍ରତୁଶ୍ଚୈବ ବଷଟ୍‌କାରସ୍ତଥୈବ ଚ ।
ଓଁକାରଶ୍ଚ ମହାତେଜାସ୍ତମାଶ୍ରମମୁପାଗମନ୍ । ୯ ।
ତେ ସର୍ବେ ହୃଷ୍ଟମନସଃ ପରସ୍ପରସମାଗମେ ।
ହିତୈଷିଣୋ ବାହ୍ଲିପତେଃ ପୃଥଗ୍‌ବାକ୍ୟାନ୍ୟଥାବ୍ରୁବନ୍ । ୧୦ ।
କର୍ଦ୍ଦମସ୍ତ୍ୱବ୍ରବୀଦ୍ ବାକ୍ୟଂ ସୁତାର୍ଥଂ ପରମଂ ହିତମ୍ ।
ଦ୍ୱିଜାଃ ଶୃଣୁତ ମଦ୍‌ବାକ୍ୟଂ ଯଚ୍ଛ୍ରେୟଃ ପାର୍ଥିବସ୍ୟ ହି । ୧୧ ।
ନାନ୍ୟଂ ପଶ୍ୟାମି ଭୈଷଜ୍ୟମନ୍ତରା ବୃଷଭଧ୍ୱଜମ୍ ।
ନାଶ୍ୱମେଧାତ୍ ପରୋ ଯଜ୍ଞଃ ପ୍ରିୟଶ୍ଚୈବ ମହାତ୍ମନଃ । ୧୨ ।
ତସ୍ମାଦ୍ ଯଜାମହେ ସର୍ବେ ପାର୍ଥିବାର୍ଥେ ଦୁରାସଦମ୍ ।
କର୍ଦ୍ଦମେନୈବମୁକ୍ତାସ୍ତୁ ସର୍ବ ଏବ ଦ୍ୱିଜର୍ଷଭାଃ । ୧୩ ।

---

ଇଏ କର୍ଦ୍ଦମ ପ୍ରଜାପତିଙ୍କ ପୁତ୍ର ମହାବଳୀ ରାଜା ଇଳ ଅଟନ୍ତି । ଏହାଙ୍କର ଯାହା ଦଶା ହୋଇଛି, ତାହା ଆପଣମାନେ ଜାଣନ୍ତି । ସୁତରାଂ ଏପରି କୌଣସି ବ୍ୟବସ୍ଥା କରନ୍ତୁ ଯଦ୍ଦ୍ୱାରା ଏହାଙ୍କର ଶ୍ରେୟ ହେବ" । ୭ । ସେମାନେ ଏହିପରି କଥାବାର୍ତ୍ତା ହେଉଥିବାବେଳେ ମହାତେଜସ୍ୱୀ ମହାତ୍ମା କର୍ଦ୍ଦମ ବହୁ ବ୍ରାହ୍ମଣ ମହାତ୍ମାମାନଙ୍କ ସହିତ ସେଠାରେ ଆସି ପହଞ୍ଚିଲେ । ୮ । ପୁଲସ୍ତ୍ୟ, କ୍ରତୁ, ବଷଟ୍‌କାର ଏବଂ ଓଁକାର ଆଦି ମହାତେଜସ୍ୱୀ ଋଷିମାନେ ସେହି ଆଶ୍ରମରେ ଆସି ଏକତ୍ର ହେଲେ । ୯ । ସେମାନେ ପରସ୍ପର ମିଳିତ ହୋଇ ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ସମସ୍ତେ ମିଳି ବାହ୍ଲିକ ରାଜ୍ୟର ରାଜା ଇଳଙ୍କ ଉଦ୍ଧାର କରିବା ପାଇଁ ନିଜ ନିଜ ସମ୍ମତି ପୃଥଗ୍ ଭାବରେ ଜଣାଇଲେ । ୧୦ । କର୍ଦ୍ଦମ ମୁନି ନିଜ ପୁତ୍ରର ମଙ୍ଗଳ ନିମନ୍ତେ କହିଲେ, "ହେ ବ୍ରାହ୍ମଣଗଣ ! ଏହି ରାଜାର ମଙ୍ଗଳ ନିମନ୍ତେ ମୁଁ ଯାହା କହୁଛି ତାହା ତୁମ୍ଭେମାନେ ଶୁଣ । ୧୧ । ମୁଁ ଦେଖୁଛି, ଶିବଙ୍କ ଛଡ଼ା ଏହାର ଅନ୍ୟ କୌଣସି ଔଷଧ ନାହିଁ । ଶିବଙ୍କର ଅଶ୍ୱମେଧଯଜ୍ଞ ଛଡ଼ା ଅନ୍ୟ ପ୍ରିୟ ଯଜ୍ଞ ଆଉ ନାହିଁ । ୧୨ । ଅତଏବ ରାଜାଙ୍କର ମଙ୍ଗଳ ନିମନ୍ତେ ଶିବଙ୍କୁ ପ୍ରସନ୍ନ କରାଇବା ପାଇଁ ଚାଲ ଅଶ୍ୱମେଧ ଯଜ୍ଞ କରିବା ।" କର୍ଦ୍ଦମଙ୍କର ଏ କଥା ଶୁଣି

ରୋଚୟନ୍ତି ସ୍ମ ତଂ ଯଜ୍ଞଂ ରୁଦ୍ରସ୍ୟାରାଧନଂ ପ୍ରତି ।
ସମ୍ବର୍ତ୍ତସ୍ୟ ତୁ ରାଜର୍ଷେଃ ଶିଷ୍ୟଃ ପରପୁରଞ୍ଜୟଃ । ୧୪ ।
ମରୁତ୍ତ ଇତି ବିଖ୍ୟାତସ୍ତଂ ଯଜ୍ଞଂ ସମୁପାହରତ୍ ।
ତତୋ ଯଜ୍ଞୋ ମହାନାସୀଦ୍ ବୁଧାଶ୍ରମସମୀପତଃ । ୧୫ ।
ରୁଦ୍ରଶ୍ଚ ପରମଂ ତୋଷଂ ଜଗାମ ସୁମହାଯଶାଃ ।
ଅଥ ଯଜ୍ଞେ ସମାପ୍ତେ ତୁ ପ୍ରୀତଃ ପରମୟା ମୁଦା । ୧୬ ।
ଉମାପତିର୍ଦ୍ୱିଜାନ୍ ସର୍ବାନୁବାଚ ଇଳସନ୍ନିଧୌ ।
ପ୍ରୀତୋଽସ୍ମି ହୟମେଧେନ ଭକ୍ତ୍ୟା ଚ ଦ୍ୱିଜସତ୍ତମାଃ । ୧୭ ।
ଅସ୍ୟ ବାହ୍ଲୀପତେଶ୍ଚୈବ କିଂ କରୋମି ପ୍ରିୟଂ ଶୁଭମ୍ ।
ତଥା ବଦତି ଦେବେଶେ ଦ୍ୱିଜାସ୍ତେ ସୁସମାହିତାଃ । ୧୮ ।
ପ୍ରସାଦୟନ୍ତି ଦେବେଶଂ ଯଥା ସ୍ୟାତ୍ ପୁରୁଷସ୍ତ୍ୱିଳା ।
ତତଃ ପ୍ରୀତୋ ମହାଦେବଃ ପୁରୁଷତ୍ୱଂ ଦଦୌ ପୁନଃ । ୧୯ ।
ଇଳାୟୈ ସ ମହାତେଜା ଦତ୍ତ୍ୱା ଚାନ୍ତରଧୀୟତ ।
ନିବୃତ୍ତେ ହୟମେଧେ ତୁ ଗତଶ୍ଚାଦର୍ଶନଂ ହରଃ । ୨୦ ।

---

ସେହି ଶ୍ରେଷ୍ଠ ବ୍ରାହ୍ମଣମାନେ ଶିବଙ୍କୁ ଆରାଧନା କରିବା ପାଇଁ ଅଶ୍ୱମେଧ ଯଜ୍ଞ କରିବାକୁ ପସନ୍ଦ କଲେ । ରାଜର୍ଷି ସଂବର୍ତ୍ତଙ୍କ ଶିଷ୍ୟ ଶତ୍ରୁପୁରଜୟକାରୀ ମରୁତ୍ତ ଯଜ୍ଞର ଆୟୋଜନ କଲେ । ବୁଧଙ୍କ ଆଶ୍ରମ ନିକଟରେ ସେହି ମହାଯଜ୍ଞ ଅନୁଷ୍ଠାନ କରାହେଲା । ୧୩-୧୫ । ଅଶ୍ୱମେଧ ଯଜ୍ଞଦ୍ୱାରା ମହାଯଶସ୍ୱୀ ଶିବ ଅତିଶୟ ସନ୍ତୁଷ୍ଟ ହେଲେ ଏବଂ ଯଜ୍ଞ ସମାପ୍ତ ହେବାପରେ ସେ ପ୍ରୀତ ହୋଇ ଇଳଙ୍କ ନିକଟରେ ଥିବା ବ୍ରାହ୍ମଣମାନଙ୍କୁ କହିଲେ, "ହେ ବ୍ରାହ୍ମଣଶ୍ରେଷ୍ଠଗଣ ! ମୁଁ ଏ ଅଶ୍ୱମେଧ ଯଜ୍ଞ ଏବଂ ଆପଣମାନଙ୍କ ଭକ୍ତିଦ୍ୱାରା ବିଶେଷ ପ୍ରୀତ ହୋଇଅଛି । ୧୬-୧୭ । ଏହି ବାହ୍ଲିକପତିଙ୍କ ଲାଗି ମୁଁ କି ପ୍ରିୟ ଓ ଶୁଭକାର୍ଯ୍ୟ କରିବି ଆପଣମାନେ ମୋତେ କହନ୍ତୁ ।" ଦେବାଧିପତି ଶିବ ଏପରି କହିବାରୁ ସେହି ବ୍ରାହ୍ମଣମାନେ ସାବଧାନତା ସହକାରେ ଶିବଙ୍କୁ ପ୍ରସନ୍ନ କରାଇ ପ୍ରାର୍ଥନା କରି କହିଲେ, "ଇଳା ଯେପରି ପୁରୁଷ ହେବେ ସେହି ବର ଦିଅନ୍ତୁ ।" ତା ଉତ୍ତାରୁ ଶିବ ପ୍ରସନ୍ନ ହୋଇ ଇଳାଙ୍କୁ ପୁରୁଷତ୍ୱ ପ୍ରଦାନ କଲେ । ୧୮-୧୯ । ଇଳାଙ୍କୁ ଏହିରୂପେ ବର ଦେଇ ମହାତେଜସ୍ୱୀ ଶିବ ଅନ୍ତର୍ଦ୍ଧାନ ହୋଇଗଲେ । ଅଶ୍ୱମେଧ ଯଜ୍ଞ ଶେଷ ହୋଇଯିବାରୁ ଏବଂ ଶିବ ଅନ୍ତର୍ଦ୍ଧାନ ହୋଇ-

ଯଥାଗତଂ ଦ୍ୱିଜାଃ ସର୍ବେ ହ୍ୟଗଚ୍ଛନ୍ ଦୀର୍ଘଦର୍ଶିନଃ ।
ରାଜା ତୁ ବାହ୍ଲିମୁତ୍ସୃଜ୍ୟ ମଧ୍ୟଦେଶେ ହ୍ୟନୁତ୍ତମମ୍ । ୨୧ ।
ନିବେଶୟାମାସ ପୁରଂ ପ୍ରତିଷ୍ଠାନଂ ଯଶସ୍କରମ୍ ।
ଶଶବିନ୍ଦୁସ୍ତୁ ରାଜର୍ଷିର୍ବାହ୍ଲିଂ ପରପୁରଞ୍ଜୟଃ । ୨୨ ।
ପ୍ରତିଷ୍ଠାନେ ଇଲୋ ରାଜା ପ୍ରଜାପତିସୁତୋ ବଲୀ ।
ସ କାଲେ ପ୍ରାପ୍ତବାଁଲ୍ଲୋକମିଲୋ ବ୍ରାହ୍ମମନୁତ୍ତମମ୍ । ୨୩ ।
ଐଳଃ ପୁରୂରବା ରାଜା ପ୍ରତିଷ୍ଠାନମବାପ୍ତବାନ୍ ।
ଈଦୃଶୋ ହ୍ୟଶ୍ୱମେଧସ୍ୟ ପ୍ରଭାବଃ ପୁରୁଷର୍ଷଭୌ ।
ସ୍ତ୍ରୀଭୂତଃ ପୌରୁଷଂ ଲେଭେ ଯଚ୍ଚାନ୍ୟଦପି ଦୁର୍ଲଭମ୍ । ୨୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ଇଳାପୌରୁଷପ୍ରାପ୍ତିର୍ନାମ ନବଷଷ୍ଟିତମଃ ସର୍ଗଃ ।

---

ଯିବାରୁ ଦୀର୍ଘଦର୍ଶୀ ଋଷିମାନେ ସେ ଯେଉଁଆଡ଼ୁ ଆସିଥିଲେ ସେଠାକୁ ଚାଲିଗଲେ । ରାଜା ଇଳ ମଧ୍ୟ ବାହ୍ଲିକ ଦେଶ ତ୍ୟାଗକରି ମଧ୍ୟଦେଶରେ ପ୍ରତିଷ୍ଠାନପୁର ନାମକ ଏକ କୀର୍ତ୍ତିଶାଳୀ ଓ ସୁନ୍ଦର ନଗର ବସାଇଲେ । ରାଜର୍ଷି ଓ ଶତ୍ରୁପୁରଜୟକାରୀ ଶଶବିନ୍ଦୁ ବାହ୍ଲିକ ରାଜ୍ୟର ରାଜା ହେଲେ । ୨୦-୨୨ । ପ୍ରତିଷ୍ଠାନପୁରରେ ପ୍ରଜାପତିଙ୍କ ପୁତ୍ର ମହାବଳୀ ରାଜା ଇଳ ବହୁଦିନ ପର୍ଯ୍ୟନ୍ତ ରାଜତ୍ୱ କରି ଶେଷରେ ଉତ୍କୃଷ୍ଟ ବ୍ରହ୍ମଲୋକକୁ ଗଲେ । ୨୩ । ଇଳଙ୍କ ପୁତ୍ର ପୁରୂରବା ପ୍ରତିଷ୍ଠାନପୁରର ରାଜତ୍ୱ ପାଇଲେ । ହେ ନରଶ୍ରେଷ୍ଠ ! ଅଶ୍ୱମେଧ ଯଜ୍ଞର ପ୍ରଭାବ ଏପରି ପ୍ରବଳ ଅଟେ, ଯଦ୍ଦ୍ୱାରା ପୂର୍ବରୁ ସ୍ତ୍ରୀ ଥିବା ବ୍ୟକ୍ତି ପୁରୁଷତ୍ୱ ଲାଭକଲେ, ଯାହାକି ଅନ୍ୟ କୌଣସି ଉପାୟରେ ପାଇବା ଅସମ୍ଭବ ଅଟେ" । ୨୪ ।

# ଏକନବତିତମଃ ସର୍ଗଃ

## ଯଜ୍ଞସଂବଧାନମ୍

ଏତଦାଖ୍ୟାୟ କାକୁତ୍‌ସ୍ଥୋ ଭ୍ରାତୃଭ୍ୟାମମିତପ୍ରଭଃ ।
ଲକ୍ଷ୍ମଣଂ ପୁନରେବାହ ଧର୍ମଯୁକ୍ତମିଦଂ ବଚଃ । ୧ ।
ବସିଷ୍ଠଂ ବାମଦେବଂ ଚ ଜାବାଳମଥ କାଶ୍ୟପମ୍ ।
ଦ୍ୱିଜାଂଶ୍ଚ ସର୍ବପ୍ରବରାନଶ୍ୱମେଧପୁରସ୍କୃତାନ୍ । ୨ ।
ଏତାନ୍ ସର୍ବାନ୍ ସମାନୀୟ ମନ୍ତ୍ରୟିତ୍ୱା ଚ ଲକ୍ଷ୍ମଣ ।
ହୟଂ ଲକ୍ଷଣସମ୍ପନ୍ନଂ ବମୋକ୍ଷ୍ୟାମି ସମାଧିନା । ୩ ।
ତଦ୍‌ବାକ୍ୟଂ ରାଘବେଣୋକ୍ତଂ ଶ୍ରୁତ୍ୱା ତ୍ୱରିତବିକ୍ରମଃ ।
ଦ୍ୱିଜାନ୍ ସର୍ବାନ୍ ସମାହୂୟ ଦର୍ଶୟାମାସ ରାଘବମ୍ । ୪ ।
ତେ ଦୃଷ୍ଟ୍ୱା ଦେବସଂକାଶଂ କୃତପାଦାଭିବନ୍ଦନମ୍ ।
ରାଘବଂ ସୁଦୁରାଧର୍ଷମାଶୀର୍ଭିଃ ସମପୂଜୟନ୍ । ୫ ।
ପ୍ରାଞ୍ଜଳିଃ ସ ତଦା ଭୂତ୍ୱା ରାଘବୋ ଦ୍ୱିଜସତ୍ତମାନ୍ ।
ଆଚଚକ୍ଷେଽଶ୍ୱମେଧସ୍ୟ ହ୍ୟଭିପ୍ରାୟଂ ମହାଯଶାଃ । ୬ ।

---

## ୯୧ତମ ସର୍ଗ

### (ଯଜ୍ଞ ଆୟୋଜନ)

ଅମିତପରାକ୍ରମ ରାମ ନିଜର ଭାଇ ଦୁହିଙ୍କୁ ଏ କଥା କହି, ପୁଣି ଲକ୍ଷ୍ମଣଙ୍କୁ ଏହି ଧର୍ମଯୁକ୍ତ କଥା କହିଲେ । ୧ । "ହେ ଲକ୍ଷ୍ମଣ ! ତୁମେ ବଶିଷ୍ଠ, ବାମଦେବ, ଜାବାଳ, କାଶ୍ୟପ ଏବଂ ଅଶ୍ୱମେଧ ଯଜ୍ଞ କରାଇବାରେ ନିପୁଣ ସମସ୍ତ ବ୍ରାହ୍ମଣଙ୍କୁ ଡକାଇ ଏକତ୍ର କର । ସେମାନଙ୍କ ସହିତ ପରାମର୍ଶ କରି ମୁଁ ସାବଧାନତାପୂର୍ବକ ଉତ୍ତମ ଲକ୍ଷଣଯୁକ୍ତ ଅଶ୍ୱକୁ ପୂଜାକରି ଛାଡ଼ିଦେବି" ।୨-୩। ରାମଙ୍କର ସେ କଥା ଶୁଣି ଲଘୁବିକ୍ରମ ଲକ୍ଷ୍ମଣ ସେହି ବ୍ରାହ୍ମଣମାନଙ୍କୁ ଡକାଇ ଆଣିଲେ ଏବଂ ରାମଙ୍କ ସହିତ ସେମାନଙ୍କର ଦେଖା କରାଇଦେଲେ ।୪। ଦେବତୁଲ୍ୟ ଦୁର୍ଦ୍ଧର୍ଷ ରାମ ସେମାନଙ୍କୁ ପ୍ରଣାମ କରିବାର ଦେଖି ସେମାନେ ସମସ୍ତେ ତାଙ୍କୁ ଆଶୀର୍ବାଦଦ୍ୱାରା ପ୍ରତ୍ୟଭିବାଦନ କଲେ । ୫ । ମହାଯଶା ରାଘବ କର ଯୋଡ଼ି ସେହି ଶ୍ରେଷ୍ଠ ବ୍ରାହ୍ମଣମାନଙ୍କୁ ନିଜର ଅଶ୍ୱମେଧଯଜ୍ଞ କରିବାର ଅଭିପ୍ରାୟ ଜଣାଇଲେ । ୬ । ବ୍ରାହ୍ମଣମାନେ ମଧ୍ୟ ରାମଙ୍କର

ତେ ତୁ ରାମସ୍ୟ ତଚ୍ଛ୍ରୁତ୍ୱା ନମସ୍କୃତ୍ୱା ବୃଷଧ୍ୱଜମ୍ ।
ଅଶ୍ୱମେଧଂ ଦ୍ୱିଜାଃ ସର୍ବେ ପୂଜୟନ୍ତି ସ୍ମ ସର୍ବଶଃ । ୭ ।
ସ ତେଷାଂ ଦ୍ୱିଜମୁଖ୍ୟାନାଂ ବାକ୍ୟମଦ୍ଭୁତଦର୍ଶନମ୍ ।
ଅଶ୍ୱମେଧାଶ୍ରିତଂ ଶ୍ରୁତ୍ୱା ଭୃଶଂ ପ୍ରୀତୋଽଭବତ୍ତଦା । ୮ ।
ବିଜ୍ଞାୟ କର୍ମ ତତ୍ତେଷାଂ ରାମୋ ଲକ୍ଷ୍ମଣମବ୍ରବୀତ୍ ।
ପ୍ରେଷୟସ୍ୱ ଦ୍ରୁତଂ ଦୂତାନ୍ ସୁଗ୍ରୀବାୟ ମହାତ୍ମନେ । ୯ ।
ଯଥା ମହଦ୍ଭିର୍ହରିଭିର୍ବହୁଭିଶ୍ଚ ବନୌକସାମ୍ ।
ସାର୍ଧମାଗଚ୍ଛ ଭଦ୍ରଂ ତେ ହ୍ୟନୁଭୋକ୍ତୁଂ ମହୋତ୍ସବମ୍ । ୧୦ ।
ବିଭୀଷଣଶ୍ଚ ରକ୍ଷୋଭିଃ କାମଗୈର୍ବହୁଭିର୍ବୃତଃ ।
ଅଶ୍ୱମେଧଂ ମହାଯଜ୍ଞମାୟାତ୍ୱତୁଲବିକ୍ରମଃ । ୧୧ ।
ରାଜାନଶ୍ଚ ମହାଭାଗା ଯେ ମେ ପ୍ରିୟଚିକୀର୍ଷବଃ ।
ସାନୁଗାଃ କ୍ଷିପ୍ରମାୟାନ୍ତୁ ଯଜ୍ଞଂ ଦ୍ରଷ୍ଟୁମନୁତ୍ତମମ୍ । ୧୨ ।
ଦେଶାନ୍ତରଗତା ଯେ ଚ ଦ୍ୱିଜା ଧର୍ମସମାହିତାଃ ।
ଆମନ୍ତ୍ରୟସ୍ୱ ତାନ୍ ସର୍ବାନଶ୍ୱମେଧାୟ ଲକ୍ଷ୍ମଣ । ୧୩ ।
ଋଷୟଶ୍ଚ ମହାବାହୋ ଆହୂୟନ୍ତାଂ ତପୋଧନାଃ ।
ଦେଶାନ୍ତରଗତାଃ ସର୍ବେ ସଦାରାଶ୍ଚ ଦ୍ୱିଜାତୟଃ । ୧୪ ।

---

ଏ କଥା ଶୁଣି ଶିବଙ୍କୁ ନମସ୍କାର କରି ରାମଙ୍କର ଅଶ୍ୱମେଧ ଯଜ୍ଞ କରିବାର ଇଚ୍ଛାକୁ ପ୍ରଶଂସା କରି ତାହା ସ୍ୱୀକାର କଲେ । ୭ । ରାମ ସେହି ଶ୍ରେଷ୍ଠ ବ୍ରାହ୍ମଣମାନଙ୍କଠାରୁ ଅଶ୍ୱମେଧଯଜ୍ଞର ଅଦ୍ଭୁତ ମାହାତ୍ମ୍ୟ ଶୁଣି ଅତିଶୟ ପ୍ରୀତ ହେଲେ । ୮ । ବ୍ରାହ୍ମଣମାନେ ଅଶ୍ୱମେଧଯଜ୍ଞ କରିବାକୁ ରାଜି ହେବା ଜାଣି ରାମ ଲକ୍ଷ୍ମଣଙ୍କୁ କହିଲେ, "ତୁମେ ଶୀଘ୍ର ସୁଗ୍ରୀବଙ୍କଠାକୁ ଦୂତମାନ ପଠାଅ । ୯ । ତାଙ୍କୁ କହିପଠାଅ, ସେ ବନବାସୀ ବାନର ଏବଂ ଭଲ୍ଲୁକମାନଙ୍କ ସହିତ ଏହି ମହୋତ୍ସବ ଉପଭୋଗ କରିବାକୁ ଏଠାକୁ ଆସନ୍ତୁ । ୧୦ । ଅତୁଳବିକ୍ରମ ବିଭୀଷଣଙ୍କୁ ମଧ୍ୟ ଡକାଅ । ସେ ବହୁ ଇଚ୍ଛାଗାମୀ ରାକ୍ଷସମାନଙ୍କୁ ସଙ୍ଗରେ ଧରି ଏହି ଅଶ୍ୱମେଧ ମହାଯଜ୍ଞ ଦେଖିବାକୁ ଆସନ୍ତୁ । ୧୧ । ଏହାଛଡ଼ା ଯେଉଁ ମହାଭାଗ ରାଜାମାନେ ମୋର ହିତୈଷୀ ଅଟନ୍ତି, ସେମାନଙ୍କୁ ମଧ୍ୟ ଅନୁଚରମାନଙ୍କ ସହିତ ଏ ଉତ୍କୃଷ୍ଟ ଯଜ୍ଞ ଦେଖିବାକୁ ଶୀଘ୍ର ଆସିବାକୁ କହ । ୧୨ । ହେ ଲକ୍ଷ୍ମଣ ! ଯେଉଁ ବ୍ରାହ୍ମଣମାନେ ଅନ୍ୟ ଦେଶମାନଙ୍କରେ ରହିଛନ୍ତି ଏବଂ ଧର୍ମରେ ନିଷ୍ଠ ରହିଛନ୍ତି ସେମାନଙ୍କୁ ସମସ୍ତଙ୍କୁ ଏ ଅଶ୍ୱମେଧ ଯଜ୍ଞକୁ ନିମନ୍ତ୍ରଣ କର ।୧୩। ହେ ମହାବାହୋ ! ଋଷି ଓ ତପସ୍ୱୀମାନଙ୍କୁ ଡକାଅ ଏବଂ ଦେଶାନ୍ତରବାସୀ

ତଥୈବ ତାଳାବଚରାସ୍ତଥୈବ ନଟନର୍ତ୍ତକାଃ ।
ଯଜ୍ଞବାଟଶ୍ଚ ସୁମହାନ୍ ଗୋମତ୍ୟା ନୈମିଷେ ବନେ । ୧୫ ।
ଆଜ୍ଞାପ୍ୟତାଂ ମହାବାହୋ ତଦ୍ଧି ପୁଣ୍ୟମନୁତ୍ତମମ୍ ।
ଶାନ୍ତୟଶ୍ଚ ମହାବାହୋ ପ୍ରବର୍ତ୍ତ୍ୟନ୍ତାଂ ସମନ୍ତତଃ । ୧୬ ।
ଶତଶଶ୍ଚାପି ଧର୍ମଜ୍ଞାଃ କ୍ରତୁମୁଖ୍ୟମନୁତ୍ତମମ୍ ।
ଅନୁଭୂୟ ମହାଯଜ୍ଞଂ ନୈମିଷେ ରଘୁନନ୍ଦନ । ୧୭ ।
ତୁଷ୍ଟାଃ ପୁଷ୍ଟାଶ୍ଚ ସର୍ବେଽସୌ ମାନିତାଶ୍ଚ ଯଥାବିଧି ।
ପ୍ରୀତିଂ ଯାସ୍ୟନ୍ତି ଧର୍ମଜ୍ଞ ଶୀଘ୍ରମାମନ୍ତ୍ର୍ୟତାଂ ଜନଃ । ୧୮ ।
ଶତଂ ବାହସହସ୍ରାଣାଂ ତଣ୍ଡୁଲାନାଂ ବପୁଷ୍ମତାମ୍ ।
ଅୟୁତଂ ତିଲମୁଦ୍ଗାନାଂ ପ୍ରୟାତ୍ୱଗ୍ରେ ମହାବଳ । ୧୯ ।
ଚଣକାନାଂ କୁଳତ୍ଥାନାଂ ମାଷାଣାଂ ଲବଣସ୍ୟ ଚ ।
ଅତୋଽନୁରୂପଂ ସ୍ନେହଂ ଚ ଗନ୍ଧଂ ସଂକ୍ଷିପ୍ତମେବ ଚ । ୨୦ ।
ସୁବର୍ଣ୍ଣକୋଟ୍ୟୋ ବହୁଲା ହିରଣ୍ୟସ୍ୟ ଶତୋତ୍ତରାଃ ।
ଅଗ୍ରତୋ ଭରତଃ କୃତ୍ୱା ଗଚ୍ଛତ୍ୱଗ୍ରେ ସମାଧିନା । ୨୧ ।

---

ବ୍ରାହ୍ମଣମାନଙ୍କୁ ସେମାନଙ୍କ ପତ୍ନୀମାନଙ୍କ ସହିତ ଡକାଅ । ତାଳ ତାଳରେ ବଜାଇବା-ବାଲା ନଟ ଏବଂ ନର୍ତ୍ତକମାନଙ୍କୁ ମଧ୍ୟ ଡକାଅ । ଗୋମତୀ ନଦୀର ତଟରେ ନୈମିଷ ଅରଣ୍ୟରେ ଏକ ବିଶାଳ ଯଜ୍ଞଶାଳା ନିର୍ମାଣ କରାହେଉ । ୧୫ । ହେ ମହାବାହୋ ! ସେ ସ୍ଥାନ ଅତିଶୟ ପବିତ୍ର ଅଟେ । ସୁତରାଂ ସେହିଠାରେ ଯଜ୍ଞଶାଳା କରିବାକୁ ଆଦେଶ ଦିଅ ଏବଂ ତୁମେ ଦେଖ ଯେ ଗୃହଆଡ଼େ ଯେପରି ପୂର୍ଣ୍ଣ ଶାନ୍ତି ପ୍ରତିଷ୍ଠିତ ହୁଏ । ୧୬ । ସେହି ନୈମିଷାରଣ୍ୟର ମହାତ୍ମା ଧର୍ମଜ୍ଞ ବ୍ୟକ୍ତିମାନେ ଶତ ଶତ ମହାଯଜ୍ଞର ଅନୁଭବ କରିଛନ୍ତି । ୧୭ । ହେ ଧର୍ମଜ୍ଞ ! ସେମାନଙ୍କୁ ସମସ୍ତଙ୍କୁ ଡକାଇବାପାଇଁ ଏପରି ଲୋକଙ୍କୁ ପଠାଅ, ଯେଉଁମାନେ କି ଦାନ ଓ ସମ୍ମାନଦ୍ୱାରା ସେମାନଙ୍କୁ ଯଥାବିଧି ସନ୍ତୁଷ୍ଟ କରି ଆମନ୍ତ୍ରଣ କରି ଆଣିବେ । ୧୮ । ହେ ମହାବଳ ! ଅକ୍ଷତ ଚାଉଳ ଏକ ଲକ୍ଷ ଗାଡ଼ି ଏବଂ ମୁଗ ଓ ତିଳ ଦଶହଜାର ଗାଡ଼ି ଆଗରେ ପଠାଇଦିଅ । ୧୯ । ଏହି ଅନୁରୂପ ଚଣା, କୋଳଥ, ବିରି ଏବଂ ଲବଣ ଓ ସେହି ହିସାବରେ ଘିଅ ତୈଳାଦି ଓ ସୁଗନ୍ଧ ଦ୍ରବ୍ୟ ତଥା ଶହେ କୋଟି ସୁବର୍ଣ୍ଣ ମୋହର ଏବଂ ରୁପାର ଟଙ୍କା ନେଇ ଭରତ ସାବଧାନତା ସହକାରେ ପ୍ରଥମେ

ଅନ୍ତରା ପଣ୍ୟବୀଥ୍ୟଶ୍ଚ ସର୍ବେ ଚ ନଟନର୍ତ୍ତକାଃ ।
ସୂଦା ନାର୍ଯଶ୍ଚ ବହବୋ ନିତ୍ୟଂ ଯୌବନଶାଳିନଃ । ୨୨ ।
ଭରତେନ ତୁ ସାର୍ଧଂ ତେ ଯାନ୍ତୁ ସୈନ୍ୟାନି ଚାଗ୍ରତଃ ।
ନୈଗମା ବାଲବୃଦ୍ଧାଶ୍ଚ ଦ୍ୱିଜାଶ୍ଚ ସୁସମାହିତାଃ । ୨୩ ।
କର୍ମାନ୍ତିକାନ୍ ବର୍ଧକିନଃ କୋଷାଧ୍ୟକ୍ଷାଂଶ୍ଚ ନୈଗମାନ୍ ।
ମମ ମାତୄସ୍ତଥା ସର୍ବାଃ କୁମାରାନ୍ତଃପୁରାଣି ଚ । ୨୪ ।
କାଞ୍ଚନୀଂ ମମ ପତ୍ନୀଂ ଚ ଦୀକ୍ଷାର୍ହାଂ ଜ୍ଞାଂଶ୍ଚ କର୍ମଣି ।
ଅଗ୍ରତୋ ଭରତଃ କୃତ୍ୱା ଗଚ୍ଛତ୍ୱଗ୍ରେ ମହାଯଶାଃ । ୨୫ ।
ଉପକାର୍ଯା ମହାର୍ହାଶ୍ଚ ପାର୍ଥିବାନାଂ ମହୌଜସାମ୍ ।
ସାନୁଗାନାଂ ନରଶ୍ରେଷ୍ଠୋ ବ୍ୟାଦିଦେଶ ମହାବଲଃ । ୨୬ ।
ଅନ୍ନପାନାନି ବସ୍ତ୍ରାଣି ଅନୁଗାନାଂ ମହାତ୍ମନାମ୍ ।
ଭରତଃ ସ ତଦା ଯାତଃ ଶତ୍ରୁଘ୍ନସହିତସ୍ତଦା । ୨୭ ।
ବାନରାଶ୍ଚ ମହାତ୍ମାନଃ ସୁଗ୍ରୀବସହିତାସ୍ତଦା ।
ବିପ୍ରାଣାଂ ପ୍ରବରାଃ ସର୍ବେ ଚକ୍ରୁଶ୍ଚ ପରିବେଷଣମ୍ । ୨୮ ।

---

ସେଠାକୁ ଯାଆନ୍ତୁ । ୨୦-୨୧ । ତାଙ୍କ ସଙ୍ଗରେ ହାଟରେ ବ୍ୟବସ୍ଥା କରିବା ପାଇଁ ବଜାରର ଉପକରଣ ନେଇ ଦୋକାନୀମାନେ ମଧ୍ୟ ଯାଆନ୍ତୁ । ନଟ, ନର୍ତ୍ତକ, ପାଚକ ତଥା ଅନେକ ଯୁବତୀ ରମଣୀ ମଧ୍ୟ ଭରତଙ୍କ ସଙ୍ଗରେ ଯାଆନ୍ତୁ । ୨୨ । ଭରତଙ୍କ ଆଗେ ଆଗେ ସୈନ୍ୟମାନେ ଯାଆନ୍ତୁ । ମହାଜନ, ବାଳକ, ବୃଦ୍ଧ, ବ୍ରାହ୍ମଣ, କାରିଗର, ବଢ଼େଇ, କୋଷାଧ୍ୟକ୍ଷ, ଶେଠ, ସାହୁକାର, ଆମ ମାତାମାନେ, ଭରତ, ଲକ୍ଷ୍ମଣ, ଶତ୍ରୁଘ୍ନ ପ୍ରଭୃତିଙ୍କର ପତ୍ନୀମାନଙ୍କୁ ନେଇ ଭରତ ଅତି ସାବଧାନତା ସହକାରେ ସେମାନଙ୍କୁ ରକ୍ଷା କରି ଯାଆନ୍ତୁ । ୨୩-୨୪ । ମହାଯଶସ୍ୱୀ ଭରତ ଯଜ୍ଞଦୀକ୍ଷା ନିମନ୍ତେ ମୋର ପତ୍ନୀ ସୀତାଙ୍କର ସୁବର୍ଣ୍ଣ ପ୍ରତିମା ନିର୍ମାଣ କରାଇ ନିଜ ସଙ୍ଗରେ ନେଇ ଆଗରେ ଯାଆନ୍ତୁ" ।୨୫। ମହାବଳୀ ରାମଚନ୍ଦ୍ର ଆମନ୍ତ୍ରିତ ମହାପରାକ୍ରମଶାଳୀ ରାଜାମାନଙ୍କର ଓ ସେମାନଙ୍କର ସହଯାତ୍ରୀ ଅନୁଚରମାନଙ୍କ ରହିବା ନିମନ୍ତେ ତମ୍ବୁ ଆଦି ପଠାଇବାକୁ ଆଦେଶ ଦେଲେ । ୨୬ । ତଦନନ୍ତର ଭରତ ନିଜ ସଙ୍ଗରେ ଶତ୍ରୁଘ୍ନଙ୍କୁ ଏବଂ ଅନ୍ନ, ପାନ, ବସ୍ତ୍ର ଏବଂ ଗୃହକରିବାକର ଧରି ଚାଲିଲେ । ୨୭ । ସୁଗ୍ରୀବଙ୍କ ସହିତ ମହାତ୍ମା ବାନରମାନେ ଆସି ପହଞ୍ଚିଲେ ଏବଂ ବ୍ରାହ୍ମଣଶ୍ରେଷ୍ଠମାନଙ୍କର

ବିଭୀଷଣଶ୍ଚ ରକ୍ଷୋଭିଃ ସ୍ତ୍ରୀଭିଶ୍ଚ ବହୁଭିର୍ବୃତଃ ।
ଋଷୀଣାମୁଗ୍ରତପସାଂ ପୂଜାଂ ଚକ୍ରେ ମହାତ୍ମନାମ୍‌ । ୨୯ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ଯଜ୍ଞସଂବିଧାନଂ ନାମ ଏକନବତିତମଃ ସର୍ଗଃ ।

---

# ଦ୍ୱିନବତିତମଃ ସର୍ଗଃ

## ହୟଚର୍ଯ୍ୟା

ତତ୍ସର୍ବମଖିଳେନାଶୁ ସଂସ୍ଥାପ୍ୟ ଭରତାଗ୍ରଜଃ ।
ହୟଂ ଲକ୍ଷଣସଂପନ୍ନଂ କୃଷ୍ଣସାରଂ ମୁମୋଚ ହ । ୧ ।
ଋତ୍ୱିଗ୍‌ଭିର୍ଲକ୍ଷ୍ମଣଂ ସାର୍ଧମଶ୍ୱେତନ୍ତ୍ରେ ନିଯୋଜ୍ୟ ଚ ।
ତତୋଽଭ୍ୟଗଚ୍ଛତ୍‌ କାକୁତ୍‌ସ୍ଥଃ ସହ ସୈନ୍ୟେନ ନୈମିଷମ୍‌ ।୨।
ଯଜ୍ଞବାଟଂ ମହାବାହୁର୍ଦୃଷ୍ଟ୍ୱା ପରମମଦ୍ଭୁତମ୍‌ ।
ପ୍ରହର୍ଷମତୁଲଂ ଲେଭେ ଶ୍ରୀମାନିତି ବଚୋଽବ୍ରବୀତ୍‌ । ୩ ।

---

ପରିବେଷଣ ଆଦି ପରିଚର୍ଯ୍ୟା କରିବାକୁ ଲାଗିଲେ । ୨୮ । ବିଭୀଷଣ ମଧ୍ୟ ଅନେକ ରାକ୍ଷସ ଓ ରାକ୍ଷସ ସ୍ତ୍ରୀମାନଙ୍କ ସହିତ ଆସି ପହଞ୍ଚିଲେ ଏବଂ ବଡ଼ ବଡ଼ ତପସ୍ୱୀ ମହାତ୍ମା ଋଷିମାନଙ୍କର ସେବା କରିବାକୁ ଲାଗିଲେ । ୨୯ ।

---

## ୯୨ତମ ସର୍ଗ

### (ଅଶ୍ୱସେବା)

ଏହିପ୍ରକାରେ ସମସ୍ତ ସାମଗ୍ରୀ ପଠାଇ ଦେଇ ଭରତଙ୍କ ଜ୍ୟେଷ୍ଠ ଭ୍ରାତା ରାମ ଗୋଟିଏ ସୁଲକ୍ଷଣସମ୍ପନ୍ନ କଳା ରଙ୍ଗର ଘୋଡ଼ାକୁ ଛାଡ଼ିଦେଲେ । ୧ । ରାମଚନ୍ଦ୍ର ଘୋଡ଼ାର ରକ୍ଷା ନିମନ୍ତେ ତା ସହିତ ଲକ୍ଷ୍ମଣଙ୍କୁ ଏବଂ ଋତ୍ୱିକ୍‌ମାନଙ୍କୁ ପଠାଇଦେଇ ଷଚରେ ସେନା ସହିତ ନୈମିଷାରଣ୍ୟକୁ ଯାତ୍ରା କଲେ । ୨ । ମହାବାହୁ ରାମ ଅତି ଆଶ୍ଚର୍ଯ୍ୟଜନକ ଯଜ୍ଞଶାଳାକୁ ଦେଖି ଅତୁଳ ଆନନ୍ଦ ଲାଭକଲେ ଏବଂ ଏହା

ନୈମିଷେ ବସତସ୍ତସ୍ୟ ସର୍ବ ଏବ ନରାଧିପାଃ ।
ଆନନ୍ୟୁରୁପହାରାଂଶ୍ଚ ତାନ୍ ରାମଃ ପ୍ରତ୍ୟପୂଜୟତ୍ । ୪ ।
ଉପକାର୍ଯା ମହାର୍ହାଶ୍ଚ ପାର୍ଥିବାନାଂ ମହାତ୍ମନାମ୍ ।
ସାନୁଗାନାଂ ନରଶ୍ରେଷ୍ଠୋ ବ୍ୟାଦିଦେଶ ମହାମତିଃ । ୫ ।
ଅନ୍ନପାନାନି ବସ୍ତ୍ରାଣି ସାନୁଗାନାଂ ମହାତ୍ମନାମ୍ ।
ଭରତଃ ସଂଦଦାବାଶୁ ଶତ୍ରୁଘ୍ନସହିତସ୍ତଦା । ୬ ।
ବାନରାଶ୍ଚ ମହାତ୍ମାନଃ ସୁଗ୍ରୀବସହିତାସ୍ତଦା ।
ବିପ୍ରାଣାଂ ପ୍ରଣତାଃ ସର୍ବେ ଚକ୍ରିରେ ପରିବେଷଣମ୍ । ୭ ।
ବିଭୀଷଣଶ୍ଚ ରକ୍ଷୋଭିର୍ବହୁଭିଃ ସୁସମାହିତଃ ।
ଋଷୀଣାମୁଗ୍ରତପସାଂ ପୂଜାଂ ଚକ୍ରେ ମହାତ୍ମନାମ୍ । ୮ ।
ଏବଂ ସୁବିହିତୋ ଯଜ୍ଞୋ ହୟମେଧୋଽଭ୍ୟବର୍ତ୍ତତ ।
ଲକ୍ଷ୍ମଣେନାଭିଗୁପ୍ତା ଚ ହୟଚର୍ଯା ପ୍ରବର୍ତ୍ତତ । ୯ ।
ଈଦୃଶଂ ରାଜସିଂହସ୍ୟ ଯଜ୍ଞପ୍ରବରମୁତ୍ତମମ୍ ।
ନାନ୍ୟଃ ଶବ୍ଦୋଽଭବତ୍ତତ୍ର ହୟମେଧେ ମହାତ୍ମନଃ । ୧୦ ।

---

ଅତି ଶୋଭାସମ୍ପନ୍ନ ହୋଇଛି ବୋଲି କହିଲେ । ୩ । ସେ ନୈମିଷାରଣ୍ୟରେ ବାସ କଲାବେଳେ ରାଜାମାନେ ତାଙ୍କ ପାଇଁ ଉପହାରମାନ ଆଣିଲେ ଏବଂ ରାମ ମଧ୍ୟ ସେମାନଙ୍କର ସତ୍କାର କଲେ । ୪ । ଅନୁଚରମାନଙ୍କ ସହିତ ସେହି ମହାତ୍ମା ରାଜାମାନଙ୍କ ପାଇଁ ମହାବଳୀ ନରଶ୍ରେଷ୍ଠ ରାମ ବହୁମୂଲ୍ୟ ତମ୍ବୁମାନ ଦେବାକୁ ଆଦେଶ ଦେଲେ । ୫ । ଭରତ ଓ ଶତ୍ରୁଘ୍ନ ମିଶି ସେହି ମହାତ୍ମା ରାଜାମାନଙ୍କୁ ଏବଂ ସେମାନଙ୍କ ଅନୁଚରମାନଙ୍କୁ ତତ୍କ୍ଷଣାତ୍ ଅନ୍ନ, ପାନ, ବସ୍ତ୍ର ଏବଂ ଅନ୍ୟ ସମସ୍ତ ଉପକରଣମାନ ପ୍ରଦାନ କଲେ । ୬ । ସୁଗ୍ରୀବଙ୍କ ସହିତ ମହାତ୍ମା ବାନରମାନେ ସାବଧାନ ହୋଇ ବ୍ରାହ୍ମଣମାନଙ୍କର ପରିଚର୍ଯ୍ୟା କଲେ ।୭। ବିଭୀଷଣ ବହୁସଂଖ୍ୟକ ମାଳାଧାରୀ ରାକ୍ଷସମାନଙ୍କ ଦ୍ୱାରା ପରିବୃତ ହୋଇ ମହାତ୍ମା ଉଗ୍ରତପା ଋଷିମାନଙ୍କର ଅର୍ଚ୍ଚନା କଲେ ।୮। ଏହିପ୍ରକାରେ ବିଧିପୂର୍ବକ ଅଶ୍ୱମେଧ ଯଜ୍ଞ ଆରମ୍ଭ ହୋଇଗଲା । ଲକ୍ଷ୍ମଣ ଘୋଡ଼ାର ପରିଚର୍ଯ୍ୟା ଏବଂ ତାକୁ ରକ୍ଷା କରିବାରେ ନିଯୁକ୍ତ ଥିଲେ । ୯ । ରାଜସିଂହ ମହାରାଜ ରାମଙ୍କର ସେହି ଶ୍ରେଷ୍ଠ ଯଜ୍ଞ ଯେପର୍ଯ୍ୟନ୍ତ ଚାଲିଥିଲା, ସେପର୍ଯ୍ୟନ୍ତ ଏହି କଥାହିଁ ଶୁଣାଯାଉଥିଲା ଯେ ମାଗିବା ଲୋକେ ଯାହା ମାଗୁଛନ୍ତି ତାହା ତାଙ୍କୁ ଦେଇ ସନ୍ତୁଷ୍ଟ କର । ତଦନୁସାରେ ସେ ଯଜ୍ଞରେ ସର୍ବଦା ସମସ୍ତଙ୍କୁ ସବୁ ପଦାର୍ଥ ଦିଆଯାଉ-

ଛନ୍ଦତୋ ଦେହି ଦେହୀତି ଯାବତ୍ତୁଷ୍ୟନ୍ତି ଯାଚକାଃ ।
ତାବତ୍ ସର୍ବାଣି ଵିତ୍ତାନି କ୍ରତୁମଧ୍ୟେ ମହାତ୍ମନଃ । ୧୧ ।
ବହୁଧାନି ଚ ଗୌଡ଼ାନି ଖାଣ୍ଡବାନି ତଥୈବ ଚ ।
ନ ନିଃସୃତଂ ଭବତ୍ୟୋଷ୍ଠାଦ୍ ବଚନଂ ଯାବଦର୍ଥିନାମ୍ । ୧୨ ।
ତାବଦ୍ ବାନରରକ୍ଷୋଭିର୍ଦତ୍ତମେବାଭ୍ୟଦୃଶ୍ୟତ ।
ନ କଶ୍ଚିନ୍ମଲିନସ୍ତତ୍ର ଦୀନୋ ବାପ୍ୟଥ କର୍ଶିତଃ । ୧୩ ।
ତସ୍ମିନ୍ ଯଜ୍ଞବରେ ରାଜ୍ଞୋ ହୃଷ୍ଟପୁଷ୍ଟଜନାବୃତେ ।
ଯେ ଚ ତତ୍ର ମହାତ୍ମାନୋ ମୁନୟଶ୍ଚିରଜୀବିନଃ । ୧୪ ।
ନାସ୍ମରଂସ୍ତାଦୃଶଂ ଯଜ୍ଞଂ ନାପ୍ୟାସୀତ୍ର କଦାଚନ ।
ଯଃ କୃତ୍ୟବାନ୍ ସୁବର୍ଣ୍ଣେନ ସୁବର୍ଣ୍ଣଂ ଲଭତେ ସ ସଃ । ୧୫ ।
ବିତ୍ତାର୍ଥୀ ଲଭତେ ବିତ୍ତଂ ରତ୍ନାର୍ଥୀ ରତ୍ନମେବ ଚ ।
ରଜତାନାଂ ସୁବର୍ଣ୍ଣାନାମଶ୍ମନାମଥ ବାସସାମ୍ । ୧୬ ।
ଅନିଶଂ ଦୀୟମାନାନାଂ ରାଶିଃ ସମୁପଦୃଶ୍ୟତେ ।
ନ ଶକ୍ରସ୍ୟ ଧନେଶସ୍ୟ ଯମସ୍ୟ ବରୁଣସ୍ୟ ବା । ୧୭ ।
ଈଦୃଶୋ ଦୃଷ୍ଟପୂର୍ବୋ ନ ଏବମୂଚୁସ୍ତପୋଧନାଃ ।
ସର୍ବତ୍ର ବାନରାସ୍ତସ୍ଥୁଃ ସର୍ବତ୍ରୈବ ଚ ରାକ୍ଷସାଃ । ୧୮ ।

---

ଥିଲା । ୧୦-୧୧ । ଅନେକ ପ୍ରକାର ଗୁଡ଼ ଏବଂ ଖଣ୍ଡରେ ତିଆରି ମିଷ୍ଟାନ୍ନ ପ୍ରାର୍ଥୀମାନଙ୍କ ମୁହଁରୁ କଥା ନ ବାହାରିବା ପୂର୍ବରୁ ରାକ୍ଷସ ଓ ବାନରମାନେ ଦେଇଦେଉଥିବାର ଦେଖାଗଲା । ସେଠାରେ ମଳିନ, ଦୁଃଖୀ ବା କ୍ଷୀଣଦେହ ଲୋକ କେହି ଦେଖାଯାଉ ନ ଥିଲେ । ୧୨-୧୩ । ରାଜାଙ୍କର ସେହି ଯଜ୍ଞରେ ସବୁ ଲୋକ ହୃଷ୍ଟପୁଷ୍ଟ ଦେଖାଯାଉଥିଲେ । ସେ ଯଜ୍ଞରେ ଯେଉଁ ବଡ଼ ବଡ଼ ପୁରୁଣା ଦୀର୍ଘଜୀବୀ ଋଷିମାନେ ଥିଲେ, ସେମାନେ ଏପରି ଦାନଯୁକ୍ତ ଯଜ୍ଞ କେବେ ଦେଖିଥିବାର ସ୍ମରଣ କରିପାରୁନ ଥିଲେ । ଯାହାର ସୁବର୍ଣ୍ଣ ଦରକାର ଥିଲା ସେ ସୁବର୍ଣ୍ଣ ପାଉଥିଲା । ୧୪-୧୫ । ବିତ୍ତ ମାଗିବା ଲୋକକୁ ବିତ୍ତ, ରତ୍ନ ମାଗିବା ଲୋକକୁ ରତ୍ନ ଦିଆଯାଉଥିଲା । ସୁନା ଏବଂ ବସ୍ତ୍ରାଦି ଗଦା ଗଦା ହୋଇ ଦାନ କରିବା ପାଇଁ ରଖାଯାଇଥିଲା । ସେଠାରେ ଥିବା ଋଷିମାନେ କହିଲେ ଯେ "କି ଇନ୍ଦ୍ର, କି କୁବେର, କି ଯମ କି ବରୁଣ କେହି ଏପରି ଯଜ୍ଞ କରିବାର ଆମେ ଦେଖିନାହୁଁ । ଯେଉଁଠାରେ ଦେଖିବ, ସର୍ବତ୍ର ବାନର

ବାସୋଧନାନ୍ୟର୍ଥିଭ୍ୟଃ ପୂର୍ଣ୍ଣହସ୍ତା ଦଦୁର୍ଭୃଶମ୍ ।
ଈଦୃଶୋ ରାଜସିଂହସ୍ୟ ଯଜ୍ଞଃ ସର୍ବଗୁଣାନ୍ୱିତଃ ।
ସମ୍ବତ୍ସରମଥୋ ସାଗ୍ରଂ ବର୍ତ୍ତତେ ନ ଚ ହୀୟତେ । ୧୯ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଉତ୍ତରକାଣ୍ଡେ ହୟଚର୍ଯା ନାମ ଦ୍ୱିନବତିତମଃ ସର୍ଗଃ ।

# ତ୍ରିନବତିତମଃ ସର୍ଗଃ

## ବାଲ୍ମୀକିସନ୍ଦେଶଃ

ବର୍ତ୍ତମାନେ ତଥାଭୂତେ ଯଜ୍ଞେ ଚ ପରମାଦ୍ଭୁତେ ।
ସଶିଷ୍ୟ ଆଜଗାମାଶୁ ବାଲ୍ମୀକିର୍ମୁନିପୁଙ୍ଗବଃ । ୧ ।
ସ ଦୃଷ୍ଟ୍ୱା ଦିବ୍ୟସଂକାଶଂ ଯଜ୍ଞମଦ୍ଭୁତଦର୍ଶନମ୍ ।
ଏକାନ୍ତେ ଋଷିବାଟାନାଂ ଚକାର ଉଟଜାନ୍ ଶୁଭାନ୍ । ୨ ।
ଶକଟାଂଶ୍ଚ ବହୂନ୍ ପୂର୍ଣ୍ଣାନ୍ ଫଳମୂଳୈଶ୍ଚ ଶୋଭନାନ୍ ।
ବାଲ୍ମୀକିବାଟେ ରୁଚିରେ ସ୍ଥାପୟନ୍ନବିଦୂରତଃ । ୩ ।

---

ଓ ରାକ୍ଷସମାନେ ଉପସ୍ଥିତ ରହିଥିଲେ ।୧୭-୧୮ । ସେମାନେ ପ୍ରାର୍ଥୀମାନଙ୍କୁ ବସ୍ତ୍ର ଓ ଧନାଦି ପୁନଃ ପୁନଃ ପୂର୍ଣ୍ଣହସ୍ତରେ ଦେଉଥିଲେ । ରାଜଶ୍ରେଷ୍ଠ ରାମଙ୍କର ସର୍ବଗୁଣ-ସମନ୍ୱିତ ଏତାଦୃଶ ଯଜ୍ଞ ଏକବର୍ଷ ବା ତାଠାରୁ ଅଧିକ ସମୟ ପର୍ଯ୍ୟନ୍ତ ଚାଲିଥିଲା; ମାତ୍ର କୌଣସି ଦ୍ରବ୍ୟ କମ ହୋଇଯାଇ ନ ଥିଲା । ୧୯ ।

# ୯୩ତମ ସର୍ଗ

## ( ବାଲ୍ମୀକିଙ୍କ ସନ୍ଦେଶ )

ଏହି ପ୍ରକାରେ ସେହି ପରମ ଅଦ୍ଭୁତ ଯଜ୍ଞ ଚାଲିଥିବାବେଳେ ଭଗବାନ୍ ମୁନିଶ୍ରେଷ୍ଠ ବାଲ୍ମୀକି ନିଜର ଶିଷ୍ୟବର୍ଗଙ୍କ ସହିତ ସେଠାରେ ଆସି ପହଞ୍ଚିଲେ । ୧ । ସେ ସେହି ପରମ ଅଦ୍ଭୁତ ଯଜ୍ଞ ଦେଖି ଯେଉଁଠାରେ ଋଷିମାନେ ରହିଥିଲେ, ତାହାରି ନିକଟରେ ଏକାନ୍ତ ସ୍ଥାନରେ କୁଡ଼ିଆମାନ ତିଆରି କରି ରହିଲେ ।୨। ଋଷିମାନଙ୍କର ଭୋଜନଯୋଗ୍ୟ ସୁନ୍ଦର ଫଳମୂଳାଦି ଖାଦ୍ୟ ପଦାର୍ଥରେ ପୂର୍ଣ୍ଣ ହୋଇ ଶଗଡ଼ମାନ

ଆସୀତ୍ ସୁପୂଜିତୋ ରାଜ୍ଞା ମୁନିଭିଶ୍ଚ ମହାତ୍ମଭିଃ ।
ବାଲ୍ମୀକିଃ ସୁମହାତେଜା ନ୍ୟବସତ୍ ପରମାତ୍ମବାନ୍ । ୪ ।
ସ ଶିଷ୍ୟାବବ୍ରବୀଦ୍ଧୃଷ୍ଟୌ ଯୁବାଂ ଗତ୍ୱା ସମାହିତୌ ।
କୃତ୍ସ୍ନଂ ରାମାୟଣଂ କାବ୍ୟଂ ଗାୟେଥାଂ ପରୟା ମୁଦା । ୫ ।
ଋଷିବାଟେଷୁ ପୁଣ୍ୟେଷୁ ବ୍ରାହ୍ମଣାବସଥେଷୁ ଚ ।
ରଥ୍ୟାସୁ ରାଜମାର୍ଗେଷୁ ପାର୍ଥିବାନାଂ ଗୃହେଷୁ ଚ । ୬ ।
ରାମସ୍ୟ ଭବନଦ୍ୱାରି ଯତ୍ର କର୍ମ ପ୍ରବର୍ତ୍ତତେ ।
ଋତ୍ୱିଜାମଗ୍ରତଶ୍ଚୈବ ଯତ୍ର ଗେୟଂ ବିଶେଷତଃ । ୭ ।
ଇମାନି ଚ ଫଲାନ୍ୟତ୍ର ସ୍ୱାଦୂନି ବିବିଧାନି ଚ ।
ଜାତାନି ପର୍ବତାଗ୍ରେଷୁ ଚାସ୍ୱାଦ୍ୟାସ୍ୱାଦ୍ୟ ଗାୟତାମ୍ । ୮ ।
ନ ଯାସ୍ୟଥଃ ଶ୍ରମଂ ବତ୍ସୌ ଭକ୍ଷୟିତ୍ୱା ଫଲାନି ବୈ ।
ମୂଲାନି ଚ ସୁମୃଷ୍ଟାନି ନ ରାଗାତ୍ ପରିହାସ୍ୟଥଃ । ୯ ।
ଯଦି ଶବ୍ଦାପୟେଦ୍ରାମଃ ଶ୍ରବଣାୟ ମହୀପତିଃ ।
ଋଷୀଣାମୁପବିଷ୍ଟାନାଂ ତତୋ ଗେୟଂ ପ୍ରବର୍ତ୍ତତାମ୍ । ୧୦ ।

---

ବାଲ୍ମୀକଙ୍କ କୁଟୀର ପାଖରେ ଆସି ରହୁଥା ହେଲା ।୩। ମହାତେଜା ମହାସଂଯମୀ ବାଲ୍ମୀକି ରାଜାଙ୍କଦ୍ୱାରା ଓ ମୁନିମାନଙ୍କଦ୍ୱାରା ଉତ୍ତମରୂପେ ପୂଜିତ ହୋଇ ସେହିଠାରେ ବାସକଲେ ।୪। ତାପରେ ବାଲ୍ମୀକି ମୁନି କୁଶ ଓ ଲବଙ୍କୁ କହିଲେ, "ତୁମ୍ଭେ ସାବଧାନ ଭାବରେ ଯଜ୍ଞଭୂମିରେ ବୁଲି ଅତି ଆନନ୍ଦରେ ସମଗ୍ର ରାମାୟଣ କାବ୍ୟକୁ ଗାନ କର । ୫ । ଋଷିମାନଙ୍କର ପବିତ୍ର ଆଶ୍ରମରେ, ବ୍ରାହ୍ମଣମାନଙ୍କର କୁଡ଼ିଆରେ, ଗଳିରେ, ରାଜମାର୍ଗରେ, ରାଜାମାନଙ୍କ କୁଡ଼ିଆରେ, ରାମଚନ୍ଦ୍ରଙ୍କ ଗୃହଦ୍ୱାରରେ, ଯେଉଁଠାରେ ବ୍ରାହ୍ମଣମାନେ ଯଜ୍ଞାନୁଷ୍ଠାନ କରୁଛନ୍ତି ସେଠାରେ ଏବଂ ବିଶେଷତଃ ଋତ୍ୱିକ୍‌ମାନଙ୍କ ସମୀପରେ ତୁମେ ଦୁହେଁ ରାମାୟଣ କାବ୍ୟ ଗାନ କରିବ । ୬-୭ । ଏହି ଯେଉଁ ଅମୃତ ସଦୃଶ ନାନାପ୍ରକାର ମିଠା ଫଳ ପର୍ବତ ଉପରେ ଫଳିଛି, ତାହାକୁ ତୁମେମାନେ ଚାଖି ଚାଖି ଏହି କାବ୍ୟକୁ ଗାଅ । । ୮ । ହେ ବତ୍ସ ! ତୁମ୍ଭେମାନେ ଏହିପରି ସୁମିଷ୍ଟ ଫଳ ଖାଇ ଖାଇ ଗାନ କଲେ ତୁମ୍ଭର କ୍ଳାନ୍ତି ଲାଗିବ ନାହିଁ ଏବଂ ତୁମ୍ଭର ସ୍ୱର ମଧ୍ୟ ଖରାପ ହୋଇଯିବ ନାହିଁ । ୯ । ଯଦି ରାମ ତୁମକୁ ଡକାଇବେ, ତାହାହେଲେ ତୁମେ ଋଷିମାନଙ୍କ ସମ୍ମୁଖରେ ତାଙ୍କ ପାଖରେ ବିଧିପୂର୍ବକ ଗାଇବାକୁ ଆରମ୍ଭ କରିବ । ୧୦ ।

ଦିବସେ ବିଂଶତିଃ ସର୍ଗା ଗେୟା ମଧୁରୟା ଗିରା ।
ପ୍ରମାଣୈର୍ବହୁଭିସ୍ତତ୍ର ଯଥୋଦ୍ଦିଷ୍ଟା ମୟା ପୁରା ।୧୧।
ଲୋଭଶ୍ଚାପି ନ କର୍ତ୍ତବ୍ୟଃ ସ୍ୱଳ୍ପୋଽପି ଧନକାଙ୍କ୍ଷୟା ।
କିଂ ଧନେନାଶ୍ରମସ୍ଥାନାଂ ଫଳମୂଳୋପଜୀବିନାମ୍ ।୧୨।
ଯଦି ପୃଚ୍ଛେତ୍ସ କାକୁତ୍ସ୍ଥୋ ଯୁବାଂ କସ୍ୟେତି ଦାରକୌ ।
ଆବାଂ ବାଲ୍ମୀକିଶିଷ୍ୟୌ ଦ୍ୱୌ ବ୍ରୂତମେବଂ ନରାଧିପମ୍ ।୧୩।
ଇମାସ୍ତନ୍ତ୍ରୀଃ ସୁମଧୁରାଃ ସ୍ଥାନଂ ବା ପୂର୍ବଦର୍ଶନମ୍ ।
ମୂର୍ଚ୍ଛୟିତ୍ୱା ସୁମଧୁରଂ ଗାୟେଥାଂ ବିଗତଜ୍ୱରୌ ।୧୪।
ଆଦିପ୍ରଭୃତି ଗେୟଂ ସ୍ୟାନ୍ନ ଚାବଜ୍ଞାୟ ପାର୍ଥିବମ୍ ।
ପିତା ହି ସର୍ବଭୂତାନାଂ ରାଜା ଭବତି ଧର୍ମତଃ ।୧୫।
ତଦ୍ୟୁବାଂ ହୃଷ୍ଟମନସୌ ଶ୍ୱଃ ପ୍ରଭାତେ ସମାହିତୌ ।
ଗାୟେଥାଂ ମଧୁରଂ ଗେୟଂ ତନ୍ତ୍ରୀଲୟସମନ୍ୱିତମ୍ ।୧୬।
ଇତି ସନ୍ଦିଶ୍ୟ ବହୁଶୋ ମୁନିଃ ପ୍ରାଚେତସସ୍ତଦା ।
ବାଲ୍ମୀକିଃ ପରମୋଦାରସ୍ତୂଷ୍ଣୀମାସୀନ୍ମହାଯଶାଃ ।୧୭।

---

ମୁଁ ଆଗରୁ ଯେପରି ସ୍ୱରର ପ୍ରମାଣ ତୁମ୍ଭଙ୍କୁ ବତାଇଦେଇଛି, ତଦନୁସାରେ ତୁମେ ଦିନକରେ କୋଡ଼ିଏ ସର୍ଗ ମଧୁର ସ୍ୱରରେ ଗାଇବ ।୧୧। ତୁମ୍ଭେମାନେ ଧନପ୍ରାପ୍ତି ପାଇଁ ସାମାନ୍ୟ ଲୋଭ ମଧ୍ୟ କରିବ ନାହିଁ । ଯେଉଁମାନେ ଆଶ୍ରମରେ ଥାଇ ଫଳମୂଳାଦି ଦ୍ୱାରା ଜୀବିକା ନିର୍ବାହ କରନ୍ତି, ସେମାନଙ୍କର ଧନରେ କି ପ୍ରୟୋଜନ ଅଛି ? ।୧୨। ଯଦି ରାମ ପଚାରିବେ 'ତୁମେ କିଏ ଏବଂ କାହାର ପୁଅ' ତାହା-ହେଲେ ତୁମେ ତାଙ୍କୁ କହିବ ଯେ 'ଆମେ ଦୁହେଁ ବାଲ୍ମୀକିଙ୍କର ଶିଷ୍ୟ ଅଟୁଁ' ।୧୩। ଏହି ବୀଣା ନେଇଯାଅ, ଏହାର ସ୍ଥାନ ଅର୍ଥାତ୍ ଆରୋହ, ଅବରୋହ ତୁମେ ଆଗରୁ ଜାଣିଛ ; ସୁତରାଂ ନିଜ ସ୍ୱର ସହିତ ବୀଣାର ସ୍ୱରକୁ ମିଳାଇ ମଧୁରଭାବରେ ମୂର୍ଚ୍ଛନା ଦେଇ ଅପୂର୍ବ ତାଳ ଲୟ ସହିତ ତୁମେ ଦୁହେଁ ନିଶ୍ଚିନ୍ତ ହୋଇ ଗାଇବ ।୧୪। ତୁମେ ପ୍ରଥମ କଥାରୁ ଆରମ୍ଭ କରି ଗାଇବ, ରାଜାଙ୍କୁ କୌଣସି ପ୍ରକାର ଅବଜ୍ଞା ଦେଖାଇବ ନାହିଁ । ରାଜା ଧର୍ମାନୁସାରେ ସବୁ ପ୍ରାଣୀଙ୍କର ପିତା ଅଟନ୍ତି ।୧୫। ସୁତରାଂ ତୁମେ ହର୍ଷମନରେ କାଲି ସକାଳେ ବୀଣା ଉପରେ ତାଳ ସ୍ୱର ସହିତ ଏହି କାବ୍ୟ ଗାଇବ" ।୧୬। ପ୍ରଚେତାପୁତ୍ର ବାଲ୍ମୀକି ମୁନି ସେ ଦୁହିଁଙ୍କୁ ଏହିପରି ବହୁପ୍ରକାର ନିର୍ଦ୍ଦେଶ ଦେଇ ତୁନି ହୋଇଗଲେ ।୧୭। ସୀତାଙ୍କର ସେହି ଦୁଇ

ସନ୍ଦିଷ୍ଟୌ ମୁନିନା ତେନ ତାବୁଭୌ ମୈଥିଲୀସୁତୌ ।
ତଥୈବ କରବାବେତି ନିର୍ଜଗ୍ମତୁରରିନ୍ଦମୌ । ୧୮ ।
ତାମଦ୍ଭୁତାଂ ତୌ ହୃଦୟେ କୁମାରୌ
ନିବେଶ୍ୟ ବାଣୀମୃଷିଭାଷିତାଂ ତଦା ।
ସମୁତ୍‌ସୁକୌ ତୌ ସମମୂଷତୁର୍ନିଶାମ୍
ଯଥାଶ୍ୱିନୌ ଭାର୍ଗବନୀତିସଂହିତାମ୍ । ୧୯ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ବାଲ୍ମୀକିସନ୍ଦେଶୋ ନାମ ତ୍ରିନବତିତମଃ ସର୍ଗଃ ।

---

## ଚତୁର୍ନବତିତମଃ ସର୍ଗଃ

### ରାମାୟଣଗାନମ୍

ତୌ ରଜନ୍ୟାଂ ପ୍ରଭାତାୟାଂ ସ୍ନାତୌ ହୁତହୁତାଶନୌ ।
ଯଥୋକ୍ତମୃଷିଣା ପୂର୍ବଂ ସର୍ବଂ ତତ୍ରୋପଗାୟତାମ୍ । ୧ ।

---

ଶତ୍ରୁଘ୍ନ ପୁଣି ଏହିପରିଭାବରେ ମୁନିଙ୍କ ଦ୍ୱାରା ଆଦିଷ୍ଟ ହେବାପରେ "ଆଚ୍ଛା, ତାହାହିଁ କରିବୁଁ" ବୋଲି କହି ସେଠାରୁ ଚାଲିଗଲେ । ୧୮ । ଭୃଗୁପୁତ୍ର ଚ୍ୟବନଙ୍କ ଆଶ୍ରମରେ ଶୁକ୍ରନୀତିସଂହିତାର ଉପଦେଶ ପାଇ ଅଶ୍ୱିନୀକୁମାରଦ୍ୱୟ ଯେପରି ଶୋଇଥିଲେ ସେହିପରି ଏହି ଦୁଇ ଉତ୍ସୁକ କୁମାର ମହର୍ଷି ବାଲ୍ମୀକିଙ୍କର ସେହି ଅଦ୍ଭୁତ ଉପଦେଶକୁ ଆପଣା ମନ ମଧ୍ୟରେ ରଖି ଏବଂ ହର୍ଷିତ ହୋଇ ସେ ରାତିରେ ଆଶ୍ରମରେ ଏକାଠି ଶୋଇଲେ । ୧୯ ।

---

## ୯୪ତମ ସର୍ଗ

### ( ରାମାୟଣଗାନ )

ରାତି ପାଇ ସକାଳ ହେବାରୁ ଲବ କୁଶ ଦୁହେଁ ଉଠି ସ୍ନାନ କରି ଏବଂ ଅଗ୍ନିରେ ହୋମ କରିସାରି ବାଲ୍ମୀକି ମହର୍ଷି ପୂର୍ବରେ ଯେପରି କହିଥିଲେ, ସେହିପରି

ତାଂ ସ ଶୁଶ୍ରାବ କାକୁତ୍ସ୍ଥଃ ପୂର୍ବାଚାର୍ଯ୍ୟବିନିର୍ମିତାମ୍ ।
ଅପୂର୍ବାଂ ପାଠ୍ୟଜାତିଂ ଚ ଗେୟେନ ସମଲଙ୍କୃତାମ୍ । ୨ ।
ପ୍ରମାଣୈର୍ବହୁଭିର୍ଯୁକ୍ତାଂ ତନ୍ତ୍ରୀଲୟସମନ୍ୱିତାମ୍ ।
ବାଲାଭ୍ୟାଂ ରାଘବଃ ଶ୍ରୁତ୍ୱା କୌତୂହଲପରୋଽଭବତ୍ । ୩ ।
ଅଥ କର୍ମାନ୍ତରେ ରାଜା ସମାହୂୟ ମହାମୁନୀନ୍ ।
ପାର୍ଥିବାଂଶ୍ଚ ନରବ୍ୟାଘ୍ରଃ ପଣ୍ଡିତାନ୍ନୈଗମାଂସ୍ତଥା । ୪ ।
ପୌରାଣିକାନ୍ ଶବ୍ଦବିଦୋ ଯେ ଚ ବୃଦ୍ଧା ଦ୍ୱିଜାତୟଃ ।
ସ୍ୱରାଣାଂ ଲକ୍ଷଣଜ୍ଞାଂଶ୍ଚ ଉତ୍ସୁକାନ୍ ଦ୍ୱିଜସତ୍ତମାନ୍ । ୫ ।
ଲକ୍ଷଣଜ୍ଞାଂଶ୍ଚ ଗାନ୍ଧର୍ବାନ୍ନୈଗମାଂଶ୍ଚ ବିଶେଷତଃ ।
ପାଦାକ୍ଷରସମାସଜ୍ଞାଂଶ୍ଛନ୍ଦଃସୁ ପରିନିଷ୍ଠିତାନ୍ । ୬ ।
କଲାମାତ୍ରାବିଭାଗଜ୍ଞାନ ଜ୍ୟୋତିଷେ ଚ ପରଂ ଗତାନ୍ ।
କ୍ରିୟାକଳ୍ପବିଦଶ୍ଚୈବ ତଥା କାବ୍ୟବିଦୋ ଜନାନ୍ । ୭ ।
ଭାଷାଜ୍ଞାନଙ୍ଗିତଜ୍ଞାଂଶ୍ଚ ନୈଗମାଂଶ୍ଚାପ୍ୟଶେଷତଃ ।
ହେତୂପଚାରକୁଶଲାନ ବଚନେ ଚାପି ହୈତୁକାନ୍ । ୮ ।
ଛନ୍ଦୋବିଦଃ ପୁରାଣଜ୍ଞାନ୍ ବୈଦିକାନ୍ ଦ୍ୱିଜସତ୍ତମାନ୍ ।
ଚିତ୍ରଜ୍ଞାନ୍ ବୃତ୍ତସୂତ୍ରଜ୍ଞାନ୍ ଗୀତନୃତ୍ୟବିଶାରଦାନ୍ । ୯ ।

---

ଯଜ୍ଞସ୍ଥଳରେ ଯାଇ ସମସ୍ତ ରାମାୟଣ ଗାନ କରିବାକୁ ଲାଗିଲେ । ୧ । ବାଲ୍ମୀକିଙ୍କ ନିର୍ମିତ ପାଠ ଏବଂ ଗାନର ସ୍ୱରରେ ଭୂଷିତ; ଧ୍ୱନି ଓ ପଦଚ୍ଛେଦ ଆଦି ପ୍ରମାଣଯୁକ୍ତ ଏବଂ ବୀଣାର ଲୟରେ ମିଶ୍ରିତ ସେହି ଅପୂର୍ବ ମନୋହର କାବ୍ୟ ଏହି ଦୁଇ ଋଷି-କୁମାରଙ୍କ ମୁଖରୁ ଶୁଣି ରାମଙ୍କର ବିଶେଷ କୌତୂହଳ ଜାତ ହେଲା । ୨-୩ । ପୁରୁଷ-ଶ୍ରେଷ୍ଠ ରାଜା ରାମଙ୍କୁ ଯେତେବେଳେ ଯଜ୍ଞ କାର୍ଯ୍ୟରୁ ଅବସର ମିଳିଲା, ସେତେବେଳେ ସେ ମହର୍ଷି, ରାଜା, ବିଦ୍ୱାନ୍, ଶେଠ ସାହୁକାର, ପୌରାଣିକ, ବ୍ୟାକରଣାଚାର୍ଯ୍ୟ ବୃଦ୍ଧ ବ୍ରାହ୍ମଣ, ସ୍ୱରଜ୍ଞ, ସଙ୍ଗୀତାଚାର୍ଯ୍ୟ, ଅନ୍ୟ ଉତ୍ସୁକ ବ୍ରାହ୍ମଣଶ୍ରେଷ୍ଠମାନଙ୍କୁ, ସାମୁଦ୍ରିକାଚାର୍ଯ୍ୟମାନଙ୍କୁ, ସଙ୍ଗୀତବିଦ୍ୟା ଜାଣିଥିବା ପୁରବାସୀମାନଙ୍କୁ, ପାଦ ଅକ୍ଷର ସମାସ ଆଦି ଛନ୍ଦବିଦ୍ୟାନିପୁଣ ଲୋକଙ୍କୁ, ଜ୍ୟୋତିଷାଚାର୍ଯ୍ୟମାନଙ୍କୁ, ବ୍ୟବହାର-କୁଶଳ ବ୍ୟକ୍ତିଙ୍କୁ, କଳ୍ପସୂତ୍ର ଜାଣିଥିବା ଲୋକଙ୍କୁ, ତର୍କଶାସ୍ତ୍ରଜ୍ଞମାନଙ୍କୁ, ବହୁ ବେଦ ଓ ପୁରାଣ ଜାଣିଥିବା ବ୍ରାହ୍ମଣମାନଙ୍କୁ, ଚିତ୍ରକାବ୍ୟଜ୍ଞମାନଙ୍କୁ ଏବଂ ଗୀତ ଓ ନୃତ୍ୟକଳାରେ

ଶାସ୍ତ୍ରଜ୍ଞାନ୍ନୀତିଜ୍ଞନିପୁଣାନ୍ ବେଦାନ୍ତାର୍ଥପ୍ରବୋଧକାନ୍ ।
ଏତାନ୍ ସର୍ବାନ୍ ସମାନୀୟ ଗାତାରୌ ସମବେଶୟତ୍ । ୧୦ ।
ଦୃଷ୍ଟ୍ୱା ମୁନିଗଣାଃ ସର୍ବେ ପାର୍ଥିବାଶ୍ଚ ମହୌଜସଃ ।
ପିବନ୍ତ ଇବ ଚକ୍ଷୁର୍ଭ୍ୟାଂ ରାଜାନଂ ଗାୟକୌ ଚ ତୌ । ୧୧ ।
ଊଚୁଃ ପରସ୍ପରଂ ଚେଦଂ ସର୍ବ ଏବ ସମନ୍ତତଃ ।
ଉଭୌ ରାମସ୍ୟ ସଦୃଶୌ ବିମ୍ବାଦ୍‌ବିମ୍ବମିବୋଥିତୌ । ୧୨।
ଜଟିଳୌ ଯଦି ନ ସ୍ୟାତାଂ ନ ବଲ୍କଲଧରୌ ଯଦି ।
ବିଶେଷଂ ନାଧିଗଚ୍ଛାମୋ ଗାୟତୋ ରାଘବସ୍ୟ ଚ । ୧୩ ।
ଏଷାଂ ସମ୍ବଦତାମେବଂ ଶ୍ରୋତୃଣାଂ ହର୍ଷବର୍ଧନମ୍ ।
ଗେୟଂ ପ୍ରଚକ୍ରତୁସ୍ତତ୍ର ତାବୁଭୌ ମୁନିଦାରକୌ । ୧୪ ।
ତତଃ ପ୍ରବୃତ୍ତଂ ମଧୁରଂ ଗାନ୍ଧର୍ବମତିମାନୁଷମ୍ ।
ନ ଚ ତୃପ୍ତିଂ ଯଯୁଃ ସର୍ବେ ଶ୍ରୋତାରୋ ଗାନସମ୍ପଦା । ୧୫ ।
ପ୍ରବୃତ୍ତମାଦିତଃ ପୂର୍ବଂ ସର୍ଗଂ ନାରଦଦର୍ଶିତମ୍ ।
ତତଃ ପ୍ରଭୃତି ସର୍ଗାଂଶ୍ଚ ଯାବଦ୍‌ବିଂଶତ୍ୟଗାୟତାମ୍ । ୧୬ ।

---

ବିଶାରଦ ଲୋକମାନଙ୍କୁ ଡକାଇ ଏକତ୍ର କରି, ଗାନକାରୀ ସେହି ଲବ କୁଶଙ୍କୁ ସେହିଠାକୁ ଡକାଇଲେ । ୪-୧୦ । ସେଠାରେ ଥିବା ମୁନିମାନେ ସମସ୍ତେ ଏବଂ ମହାତେଜସ୍ୱୀ ରାଜାମାନେ ବାରମ୍ବାର ରାଜାଙ୍କୁ ଓ ସେ ଗାୟକ ଦୁହିଁଙ୍କୁ ନିରୀକ୍ଷଣ କରିବାକୁ ଲାଗିଲେ ଏବଂ ସତେ ଯେପରି ଚକ୍ଷୁଦ୍ୱାରା ସେମାନଙ୍କର ସୌନ୍ଦର୍ଯ୍ୟକୁ ପାନ କରିପକାଉଥିଲେ । ୧୧ । ସମସ୍ତେ ଗୁହାରିଆଡ଼ୁ ପରସ୍ପରକୁ କହିବାକୁ ଲାଗିଲେ ଯେ, "ଏ ଦୁହେଁ ଏକ ପ୍ରତିବିମ୍ବରୁ ଅନ୍ୟ ଏକ ପ୍ରତିବିମ୍ବକୁ ଉଦ୍ଧୃତ ହୋଇଥିବା ପରି ରାମଙ୍କ ସହିତ ପୁରାପୁରି ସମାନ ଦେଖାଯାଉଛନ୍ତି । ୧୨ । ଯଦି ଏ ଦୁହିଙ୍କର ଜଟା ନ-ଥାନ୍ତା ବା ଏ ଦୁହେଁ ବଲ୍କଳ ପିନ୍ଧି ନ ଥାନ୍ତେ, ତେବେ ଏ ଦୁହିଁଙ୍କ ଭିତରେ ଓ ରାମଙ୍କ ଭିତରେ କୌଣସି ପ୍ରଭେଦ ଆମେ ଜାଣିପାରନ୍ତେନି ନାହିଁ" ।୧୩। ସେମାନେ ଏହିପରି କଥାବାର୍ତ୍ତା ହେଉଥିବାବେଳେ ସେହି ମୁନିକୁମାର ଦୁହେଁ ଶ୍ରୋତାମାନଙ୍କର ହର୍ଷ ବୃଦ୍ଧି କରି ରାମାୟଣ ଗାନ ଆରମ୍ଭ କଲେ । ୧୪ । ଅନନ୍ତର ତାଳ ସ୍ୱରଯୁକ୍ତ ସେହି ଅପୂର୍ବ କାବ୍ୟର ମଧୁର ଗାନ ଚାଲିଲା । ଶ୍ରୋତାମାନେ ସେହି ଉତ୍କୃଷ୍ଟ ଗାନକୁ ଯେତେ ଶୁଣିଲେ ମଧ୍ୟ ସେମାନଙ୍କର ତୃପ୍ତି ହେଲା ନାହିଁ । ୧୫ । ପ୍ରଥମରୁ ନାରଦ ବତାଇ ଦେଇଥିବା ପ୍ରଥମ ସର୍ଗରୁ ଆରମ୍ଭ କରି ସେମାନେ କୋଡ଼ିଏ ସର୍ଗ ପର୍ଯ୍ୟନ୍ତ

ତତୋଽପରାହ୍ନସମୟେ ରାଘବଃ ସମଭାଷତ ।
ଶ୍ରୁତ୍ୱା ବିଂଶତିସର୍ଗାଂସ୍ତାନ ଭ୍ରାତରଂ ଭ୍ରାତୃବତ୍ସଲଃ । ୧୭ ।
ଅଷ୍ଟାଦଶସହସ୍ରାଣି ସୁବର୍ଣସ୍ୟ ମହାତ୍ମନୋଃ ।
ପ୍ରଯଚ୍ଛ ଶୀଘ୍ରଂ କାକୁତ୍ସ୍ଥ ଯଦନ୍ୟଦଭିକାଂକ୍ଷିତମ୍ । ୧୮ ।
ଦଦୌ ଶୀଘ୍ରଂ ସ କାକୁତ୍ସ୍ଥୋ ବାଲୟୋର୍ବୈ ପୃଥକ୍ ପୃଥକ୍ ।
ଦୀୟମାନଂ ସୁବର୍ଣଂ ତୁ ନାଗୃହ୍ଣୀତାଂ କୁଶୀଲବୌ । ୧୯ ।
ଊଚତୁଶ୍ଚ ମହାତ୍ମାନୌ କିମନେନେତି ବିସ୍ମିତୌ ।
ବନ୍ୟେନ ଫଳମୂଳେନ ନିରତୌ ବନବାସିନୌ । ୨୦ ।
ସୁବର୍ଣେନ ହିରଣ୍ୟେନ କିଂ କରିଷ୍ୟାବହେ ବନେ ।
ତଥା ତୟୋଃ ପ୍ରବ୍ରୁବତୋଃ କୁତୂହଳସମନ୍ୱିତାଃ । ୨୧ ।
ଶ୍ରୋତାରଶ୍ଚୈବ ରାମଶ୍ଚ ସର୍ବ ଏବ ସୁବିସ୍ମିତାଃ ।
ତସ୍ୟ ଚୈବାଗମଂ ରାମଃ କାବ୍ୟସ୍ୟ ଶ୍ରୋତୁମୁତ୍ସୁକଃ । ୨୨ ।
ପପ୍ରଚ୍ଛ ତୌ ମହାତେଜାସ୍ତାବୁଭୌ ମୁନିଦାରକୌ ।
କିଂପ୍ରମାଣମିଦଂ କାବ୍ୟଂ କା ପ୍ରତିଷ୍ଠା ମହାତ୍ମନଃ । ୨୩ ।
କର୍ତ୍ତା କାବ୍ୟସ୍ୟ ମହତଃ କ୍ୱ ଚାସୌ ମୁନିପୁଙ୍ଗବଃ ।
ପୃଚ୍ଛନ୍ତଂ ରାଘବଂ ବାକ୍ୟମୂଚତୁର୍ମୁନିଦାରକୌ । ୨୪ ।

---

ଗାନ କଲେ । ୧୬ । ଅନନ୍ତର କୋଡ଼ିଏ ସର୍ଗ ପର୍ଯ୍ୟନ୍ତ ଶୁଣିସାରି ଅପରାହ୍ଣ ସମୟରେ ଭ୍ରାତୃବତ୍ସଳ ରାମ ନିଜ ଭାଇଙ୍କୁ କହିଲେ । ୧୭ । "ଏମାନଙ୍କୁ ଅଠର ସହସ୍ର ସୁବର୍ଣ୍ଣ ମୁଦ୍ରା ଆଣି ଶୀଘ୍ର ଦିଅ । ଏହାଛଡ଼ା ଯେମାନେ ଯାହା ମାଗିବେ ତାହା ମଧ୍ୟ ଦିଅ" ।୧୮। ଏହା ଶୁଣି ଭରତ ସେ ଦୁଇ କୁମାରଙ୍କୁ ପୃଥକ୍ ପୃଥକ୍‌ଭାବରେ ସୁବର୍ଣ୍ଣ ମୁଦ୍ରା ଦେଲେ, ମାତ୍ର କୁଶ ଓ ଲବ ସେହି ଦିଆଯାଉଥିବା ସୁବର୍ଣ୍ଣକୁ ଗ୍ରହଣ କଲେ ନାହିଁ । ୧୯ । ସେ ଦୁଇ ମହାତ୍ମା ବିସ୍ମିତ ହୋଇ କହିଲେ, "ଏହା ନେଇ ଆମେ କଅଣ କରିବୁ ? ଆମ୍ଭେମାନେ ବନବାସୀ ଓ ବନ୍ୟ ଫଳମୂଳ ଖାଇ ରହୁଅଛୁଁ । ଆମେ ଏ ସୁବର୍ଣ୍ଣ ନେଇ ବନରେ କଅଣ କରିବୁ ?" ସେ ଦୁହିଁଙ୍କର ଏ ଅଦ୍ଭୁତ କଥା ଶୁଣି ଶ୍ରୋତାମାନେ ସମସ୍ତେ ଓ ରାମ ମଧ୍ୟ ବିଶେଷ ବିସ୍ମିତ ହେଲେ । ରାମ ସେହି କାବ୍ୟ ଶୁଣିବା ପାଇଁ ଉତ୍ସୁକ ହୋଇ ସେମାନଙ୍କୁ ପଚାରିଲେ, "ଏ କାବ୍ୟ କେତେ ବଡ଼ ଏବଂ ଯେଉଁ ମହାତ୍ମା ଏ କାବ୍ୟ ରଚନା କରିଛନ୍ତି, ତାଙ୍କର ପ୍ରତିଷ୍ଠା କେତେ ଦୂର; ଆଉ ଯେଉଁ ମୁନିଶ୍ରେଷ୍ଠ ଏ ମହାକାବ୍ୟ ରଚନା କରିଛନ୍ତି ସେ କେଉଁଠାରେ ଅଛନ୍ତି ?" ରାମ ଏହିପରି ପଚାରିବାରୁ ସେ ଦୁଇ ମୁନିକୁମାର କହିଲେ, "ଭଗବାନ

ବାଲ୍ମୀକିର୍ଭଗବାନ୍ କର୍ତ୍ତା ସଂପ୍ରାପ୍ତୋ ଯଜ୍ଞସଂବଧାମ୍ ।
ଯେନେଦଂ ଚରିତଂ ତୁଭ୍ୟମଶେଷଂ ସଂପ୍ରଦର୍ଶିତମ୍ । ୨୫ ।
ସଂନିବଦ୍ଧଂ ହି ଶ୍ଳୋକାନାଂ ଚତୁର୍ବିଂଶତ୍ସହସ୍ରକମ୍ ।
ଉପାଖ୍ୟାନଶତଂ ଚୈବ ଭାର୍ଗବେଣ ତପସ୍ୱିନା । ୨୬ ।
ଆଦିପ୍ରଭୃତି ବୈ ରାଜନ୍ ପଞ୍ଚ ସର୍ଗଶତାନି ଚ ।
କାଣ୍ଡାନି ଷଟ୍ କୃତାନୀହ ସୋତ୍ତରାଣି ମହାତ୍ମନା । ୨୭ ।
କୃତାନି ଗୁରୁଣାସ୍ମାକମୃଷିଣା ଚରିତଂ ତବ ।
ପ୍ରତିଷ୍ଠା ଜୀବିତଂ ଯାବତ୍ତାବତ୍ ସର୍ବସ୍ୟ ବର୍ତ୍ତତେ । ୨୮ ।
ଯଦି ବୁଦ୍ଧିଃ କୃତା ରାଜନ୍ ଶ୍ରବଣାୟ ମହାରଥ ।
କର୍ମାନ୍ତରେ କ୍ଷଣୀଭୂତସ୍ତଚ୍ଛୃଣୁଷ୍ୱ ସହାନୁଜଃ । ୨୯ ।
ବାଢ଼ମିତ୍ୟବ୍ରବୀଦ୍ରାମସ୍ତୌ ଚାନୁଜ୍ଞାପ୍ୟ ରାଘବମ୍ ।
ପ୍ରହୃଷ୍ଟୌ ଜଗ୍ମତୁଃ ସ୍ଥାନଂ ଯତ୍ରାସ୍ତେ ମୁନିପୁଙ୍ଗବଃ । ୩୦ ।
ରାମୋଽପି ମୁନିଭିଃ ସାର୍ଧଂ ପାର୍ଥିବୈଶ୍ଚ ମହାତ୍ମଭିଃ ।
ଶ୍ରୁତ୍ୱା ତଦ୍ଗୀତମାଧୁର୍ଯ୍ୟଂ କର୍ମଶାଳାମୁପାଗମତ୍ । ୩୧ ।

---

ବାଲ୍ମୀକି ଏହି କାବ୍ୟ ରଚନା କରିଛନ୍ତି । ସେ ଏହି ଯଜ୍ଞସ୍ଥଳକୁ ଆସିଛନ୍ତି ଏବଂ ସେ ଏଥିରେ ଆପଣଙ୍କର ସମଗ୍ର ଚରିତ ପ୍ରକାଶ କରିଅଛନ୍ତି । ୨୦-୨୫ । ଏହି ମହାକାବ୍ୟରେ ଚବିଶ ସହସ୍ର ଶ୍ଳୋକ ଏବଂ ଶହେ ଉପାଖ୍ୟାନ ସନ୍ନିବେଶିତ କରିହୋଇଅଛି । ଭୃଗୁବଂଶୀୟ ମହର୍ଷି ବାଲ୍ମୀକି ଏହାକୁ ରଚନା କରିଛନ୍ତି । ୨୬ । ପ୍ରଥମ କାଣ୍ଡରୁ ଆରମ୍ଭ କରି ସେ ମହାତ୍ମା ଏଥିରେ ପାଞ୍ଚଶହ ସର୍ଗ, ଛ କାଣ୍ଡ ଏବଂ ସପ୍ତମ ଉତ୍ତରକାଣ୍ଡ ରଚନା କରିଛନ୍ତି । ୨୭ । ଆମ୍ଭର ଗୁରୁ ମହର୍ଷି ବାଲ୍ମୀକି ଏଥିରେ ଆପଣ ଜୀବିତ ରହିଥିବା ପର୍ଯ୍ୟନ୍ତ ସମସ୍ତ ବୃତ୍ତାନ୍ତ ଉଲ୍ଲେଖ କରି ଅଛନ୍ତି । ୨୮ । ହେ ରାଜନ୍, ହେ ମହାରଥ ! ଆପଣ ଯଦି ଏହାକୁ ଶୁଣିବାକୁ ଇଚ୍ଛା କରୁଛନ୍ତି, ତେବେ ଯେତେବେଳେ ଆପଣଙ୍କୁ ଯଜ୍ଞ କାର୍ଯ୍ୟରୁ ଅବସର ମିଳିବ ସେତେବେଳେ ଆପଣ ଭାଇମାନଙ୍କ ସହିତ ତାହା ଶୁଣନ୍ତୁ" ।୨୯। ରାମ କହିଲେ "ତାହାହିଁ ହେଉ ।" ଅନନ୍ତର ସେ ଦୁହେଁ ରାମଚନ୍ଦ୍ରଙ୍କଠାରୁ ବିଦାୟ ମାଗି ଆନନ୍ଦମନରେ ଯେଉଁଠାରେ ମହର୍ଷି ବାଲ୍ମୀକି ଥିଲେ ସେହି ସ୍ଥାନକୁ ଚାଲିଗଲେ । ୩୦ । ରାମ ମଧ୍ୟ ମୁନି ଓ ମହାତ୍ମା ରାଜାମାନଙ୍କ ସହିତ ସେହି ମଧୁର କାବ୍ୟଗାନ ଶୁଣିସାରି ଯଜ୍ଞଶାଳାକୁ

ଶୁଶ୍ରାବ ତତ୍ତାଳଲୟୋପପନ୍ନମ୍
ସର୍ଗାନ୍ୱିତଂ ସୁସ୍ୱରଶବ୍ଦଯୁକ୍ତମ୍ ।
ତନ୍ତ୍ରୀଲୟବ୍ୟଞ୍ଜନଯୋଗଯୁକ୍ତମ୍
କୁଶୀଲବାଭ୍ୟାଂ ପରିଗୀୟମାନମ୍ । ୩୨ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତ୍ସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ରାମାୟଣଗାନଂ ନାମ ଚତୁର୍ନବତିତମଃ ସର୍ଗଃ ।

— — — —

# ପଞ୍ଚନବତିତମଃ ସର୍ଗଃ

## ବାଲ୍ମୀକିଦୂତପ୍ରେଷଣମ୍

ରାମୋ ବହୂନ୍ୟହାନ୍ୟେବଂ ତଦ୍ ଗୀତଂ ପରମଂ ଶୁଭମ୍ ।
ଶୁଶ୍ରାବ ମୁନିଭିଃ ସାର୍ଧଂ ପାର୍ଥିବୈଃ ସହ ବାନରୈଃ । ୧ ।
ତସ୍ମିନ୍ ଗୀତେ ତୁ ବିଜ୍ଞାୟ ସୀତାପୁତ୍ରୌ କୁଶୀଲବୌ ।
ତସ୍ୟାଃ ପରିଷଦୋ ମଧ୍ୟେ ରାମୋ ବଚନମବ୍ରବୀତ୍ । ୨ ।
ଦୂତାନ୍ ଶୁଦ୍ଧସମାଚାରାନାହୂୟାତ୍ମମନୀଷୟା ।
ମଦ୍‌ବଚୋ ବ୍ରୂତ ଗଚ୍ଛଧ୍ୱମିତୋ ଭଗବତୋଽନ୍ତିକମ୍ । ୩ ।

---

ଗଲେ । ୩୧ । ଏହି ପ୍ରକାରେ ତାଳ ଲୟ ସୁସ୍ୱର ସହିତ ବୀଣାସ୍ୱରରେ ମିଳାଇ ଗାଉଥିବା କୁଶ ଲବଙ୍କ ମୁଖରୁ ସର୍ଗବଦ୍ଧ ଏହି ମହାକାବ୍ୟକୁ ରାମଚନ୍ଦ୍ର ଶୁଣିଲେ । ୩୨ ।

---

## ୯୫ତମ ସର୍ଗ

### (ବାଲ୍ମୀକିଙ୍କଠାକୁ ଦୂତପ୍ରେରଣ)

ଏହି ପ୍ରକାରେ ରାମ ସେହି ମଙ୍ଗଳମୟ ଗୀତ କାବ୍ୟକୁ ଋଷି, ରାଜା ଏବଂ ବାନରମାନଙ୍କ ସହିତ ବହୁତ ଦିନ ଧରି ଶୁଣିଲେ । ୧ । ରାମ ସେହି ଗୀତରୁ କୁଶ ଲବ ଦୁହେଁ ସୀତାଙ୍କର ପୁଅ ବୋଲି ଜାଣି ସେହି ସଭା ମଧ୍ୟରେ କହିଲେ । ୨ । "ଶୁଦ୍ଧାଚାରୀ ଶୀଘ୍ରଗାମୀ ଦୂତମାନଙ୍କୁ ଡକାଇ ସେ କହିଲେ, "ମୋ କଥାନୁସାରେ ତୁମ୍ଭେମାନେ ଭଗବାନ୍ ବାଲ୍ମୀକିଙ୍କ ନିକଟକୁ ଯାଇ କହିବ । ୩ । ଯଦି ସୀତା ଶୁଦ୍ଧ-

ଯଦି ଶୁଦ୍ଧସମାଚାରା ଯଦି ବା ବୀତକଲ୍ମଷା ।
କରୋତ୍ୱିହାତ୍ମନଃ ଶୁଦ୍ଧିମନୁମାନ୍ୟ ମହାମୁନିମ୍ । ୪ ।
ଛନ୍ଦଂ ମୁନେଶ୍ଚ ବିଜ୍ଞାୟ ସୀତାୟାଶ୍ଚ ମନୋଗତମ୍ ।
ପ୍ରତ୍ୟୟଂ ଦାତୁକାମାୟାସ୍ତତଃ ଶଂସତ ମେ ଲଘୁ । ୫ ।
ଶ୍ୱଃ ପ୍ରଭାତେ ତୁ ଶପଥଂ ମୈଥିଲୀ ଜନକାତ୍ମଜା ।
କରୋତୁ ପରିଷନ୍ମଧ୍ୟେ ଶୋଧନାର୍ଥଂ ମମୈବ ଚ । ୬ ।
ଶ୍ରୁତ୍ୱା ତୁ ରାଘବସ୍ୟୈତଦ୍ ବଚଃ ପରମମଦ୍ଭୁତମ୍ ।
ଦୂତାଃ ସଂପ୍ରୟୟୁର୍ବାଟଂ ଯତ୍ରାସ୍ତେ ମୁନିପୁଙ୍ଗବଃ । ୭ ।
ତେ ପ୍ରଣମ୍ୟ ମହାତ୍ମାନଂ ଜ୍ୱଲନ୍ତମମିତପ୍ରଭମ୍ ।
ଊଚୁସ୍ତେ ରାମବାକ୍ୟାନି ମୃଦୂନି ମଧୁରାଣି ଚ । ୮ ।
ତେଷାଂ ତଦ୍ ବ୍ୟାହୃତଂ ଶ୍ରୁତ୍ୱା ରାମସ୍ୟ ଚ ମନୋଗତମ୍ ।
ବିଜ୍ଞାୟ ସୁମହାତେଜା ମୁନିର୍ବାକ୍ୟମଥାବ୍ରବୀତ୍ । ୯ ।
ଏବଂ ଭବତୁ ଭଦ୍ରଂ ବୋ ଯଥା ବଦତି ରାଘବଃ ।
ତଥା କରିଷ୍ୟତେ ସୀତା ଦୈବତଂ ହି ପତିଃ ସ୍ତ୍ରିୟାଃ । ୧୦ ।
ତଥୋକ୍ତା ମୁନିନା ସର୍ବେ ରାମଦୂତା ମହୌଜସମ୍ ।
ପ୍ରତ୍ୟେତ୍ୟ ରାଘବଂ କ୍ଷିପ୍ରଂ ମୁନିବାକ୍ୟଂ ବଭାଷିରେ । ୧୧ ।

---

ଚରିତ୍ରା ଏବଂ ପାପରହିତା ଅଟନ୍ତି, ତେବେ ମହାମୁନିଙ୍କର ଅନୁମତି ନେଇ ଏଠାକୁ ଆସି ନିଜର ଶୁଦ୍ଧତା ପ୍ରମାଣ କରନ୍ତୁ । ୪ । ତୁମ୍ଭେମାନେ ମୁନିଙ୍କର ଅଭିପ୍ରାୟ ଏବଂ ସୀତାଙ୍କର ମନୋଗତ ଭାବ ବୁଝି ସେ ପ୍ରମାଣ ଦେବାକୁ ରାଜି ଅଛନ୍ତି କି ନାହିଁ ତାହା ମୋତେ ଶୀଘ୍ର ଏଠାକୁ ଆସି କହ । ୫ । କାଲି ସକାଳେ ଏ ସଭା ମଧ୍ୟରେ ସୀତା ନିଜର ଶୁଦ୍ଧାଚାର ସମ୍ବନ୍ଧରେ ଏବଂ ମୋତେ ଶୁଦ୍ଧ କରିବା ପାଇଁ ଶପଥ କରନ୍ତୁ” । ୬ । ରାମଙ୍କର ଏହି ପରମ ଅଦ୍ଭୁତ ବଚନ ଶୁଣି ଏବଂ ଯେ ଆଜ୍ଞା ବୋଲି କହି ଦୂତମାନେ ଶୀଘ୍ର ମୁନିଶ୍ରେଷ୍ଠ ବାଲ୍ମୀକି ଯେଉଁଠାରେ ଥିଲେ ସେଠାକୁ ଗଲେ ।୭। ସେମାନେ ଦୀପ୍ତିମାନ୍ ମହାତ୍ମା ବାଲ୍ମୀକିଙ୍କୁ ପ୍ରଣାମ କରି ରାମ କହିଥିବା ମୃଦୁ ଓ ମଧୁର ବାକ୍ୟମାନ ତାଙ୍କୁ କହିଲେ । ୮ । ଦୂତମାନଙ୍କର ସେ କଥା ଶୁଣି ଏବଂ ରାମଙ୍କର ମନୋଗତ ଭାବ ଜାଣି ମହାତେଜସ୍ୱୀ ବାଲ୍ମୀକି କହିଲେ । ୯ । ସେ କହିଲେ, “ତୁମ୍ଭମାନଙ୍କର ମଙ୍ଗଳ ହେଉ, ତାହାହିଁ ହେବ, ରାମ ଯେପରି କହୁଛନ୍ତି, ସୀତା ସେହିପରି କରିବେ; କାରଣ ସ୍ତ୍ରୀମାନଙ୍କର ପତିହିଁ ଦେବତା ଅଟନ୍ତି” । ୧୦ । ମୁନିଙ୍କର ଏ କଥା ଶୁଣି ଦୂତମାନେ ସତ୍ୱର ତାହା ରାମଙ୍କୁ ଜଣାଇଲେ । ୧୧ ।

ତତଃ ପ୍ରହୃଷ୍ଟଃ କାକୁତ୍‌ସ୍ଥଃ ଶ୍ରୁତ୍ୱା ବାକ୍ୟଂ ମହାତ୍ମନଃ ।
ଋଷୀଂସ୍ତତ୍ର ସମେତାଂଶ୍ଚ ରାଜ୍ଞଶ୍ଚୈବାଭ୍ୟଭାଷତ । ୧୨ ।
ଭଗବନ୍ତଃ ସଶିଷ୍ୟା ବୈ ସାନୁଗାଶ୍ଚ ନରାଧିପାଃ ।
ପଶ୍ୟନ୍ତୁ ସୀତାଶପଥଂ ଯଶ୍ଚୈବାନ୍ୟୋଽପି କାଙ୍‌କ୍ଷତେ । ୧୩ ।
ତସ୍ୟ ତଦ୍ ବଚନଂ ଶ୍ରୁତ୍ୱା ରାଘବସ୍ୟ ମହାତ୍ମନଃ ।
ସର୍ବେଷାମୃଷିମୁଖ୍ୟାନାଂ ସାଧୁବାଦୋ ମହାନଭୂତ୍ । ୧୪ ।
ରାଜାନଶ୍ଚ ମହାତ୍ମାନଂ ପ୍ରଶଂସନ୍ତି ସ୍ମ ରାଘବମ୍ ।
ଉପପନ୍ନଂ ନରଶ୍ରେଷ୍ଠ ତ୍ୱଯ୍ୟେବ ଭୁବି ନାନ୍ୟତଃ । ୧୫ ।
ଏବଂ ବିନିଶ୍ଚୟଂ କୃତ୍ୱା ଶ୍ୱୋଭୂତ ଇତି ରାଘବଃ ।
ବିସର୍ଜୟାମାସ ତଦା ସର୍ବାଂସ୍ତାନ୍ ଶତ୍ରୁସୂଦନଃ । ୧୬ ।

ଇତ୍ୟସଂପ୍ରଧାର୍ଯ୍ୟ ରାଜସିଂହଃ
ଶ୍ୱୋଭୂତେ ଶପଥସ୍ୟ ନିଶ୍ଚୟଂ ବୈ ।
ବିସସର୍ଜ ମୁନୀନ୍ନୃପାଂଶ୍ଚ ସର୍ବାନ୍
ସ ମହାତ୍ମା ମହତୋ ମହାନୁଭାବଃ । ୧୭ ।

ଇତ୍ୟାର୍ଷେ ଶ୍ରୀମଦ୍‌ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ବାଲ୍ମୀକିଦୂତପ୍ରେଷଣଂ ନାମ ପଞ୍ଚନବତିତମଃ ସର୍ଗଃ ।

---

ମହାତ୍ମା ବାଲ୍ମୀକିଙ୍କ କଥା ଶୁଣି ରାମ ଅତିଶୟ ଆନନ୍ଦିତ ହେଲେ ଓ ସମ୍ମବେତ ହୋଇଥିବା ରାଜା ଏବଂ ଋଷିମାନଙ୍କୁ କହିଲେ । ୧୨ । "ହେ ମୁନିଗଣ ! ଆପଣମାନେ ନିଜ ନିଜର ଶିଷ୍ୟମାନଙ୍କ ସହିତ, ରାଜାମାନେ ନିଜର ଅନୁଗାମୀମାନଙ୍କ ସହିତ ଏବଂ ଅନ୍ୟ ଯେଉଁ ଲୋକେ ଦେଖିବାକୁ ଇଚ୍ଛା କରୁଛନ୍ତି ସେମାନେ ସମସ୍ତେ ଏକତ୍ର ହୋଇ ସୀତାଙ୍କର ଶପଥ ଦେଖନ୍ତୁ" । ୧୩ । ମହାତ୍ମା ରାମଙ୍କର ଏହି କଥା ଶୁଣି ମୁଖ୍ୟ ଋଷିମାନେ ସମସ୍ତେ ଖୁବ ସାଧୁବାଦ କଲେ । ୧୪ । ମହାତ୍ମା ରାଜାମାନେ ମଧ୍ୟ ରାମଙ୍କୁ ପ୍ରଶଂସା କରି କହିଲେ, "ହେ ନରଶ୍ରେଷ୍ଠ ! ଆପଣଙ୍କ ଛଡ଼ା ଏ ପୃଥିବୀରେ ଆଉ କେହି ଏପରି କଥା କହିପାରିବେ ନାହିଁ" ।୧୫। ଶତ୍ରୁପୀଡ଼କ ରାମ ଏହିପ୍ରକାରେ "କାଲି ସକାଳେ ସୀତାଙ୍କର ଶପଥ ହେବ" ବୋଲି ନିଶ୍ଚୟ କରି ସେମାନଙ୍କୁ ସମସ୍ତଙ୍କୁ ବିଦାୟ ଦେଲେ । ୧୬ । ମହାପ୍ରତାପୀ ମହାତ୍ମା ରାଜସିଂହ ରାମ ବିଚାର କରି ଓ କାଲି ସୀତାଙ୍କର ଶପଥ ହେବାର ନିଶ୍ଚୟ କରି ସେ ସମସ୍ତ ଋଷି ଏବଂ ରାଜାମାନଙ୍କୁ ବିଦାୟ ଦେଲେ । ୧୭ ।

# ଷଣ୍ଣବତିତମଃ ସର୍ଗଃ

## ବାଲ୍ମୀକିପ୍ରତ୍ୟୟଦାନମ୍

ତସ୍ୟାଂ ରଜନ୍ୟାଂ ବ୍ୟୁଷ୍ଟାୟାଂ ଯଜ୍ଞବାଟଗତୋ ନୃପଃ ।
ଋଷୀନ୍ ସର୍ବାନ୍ ମହାତେଜାଃ ଶବ୍ଦାପୟତ ରାଘବଃ ।୧।
ବସିଷ୍ଠୋ ବାମଦେବଶ୍ଚ ଜାବାଲିରଥ କାଶ୍ୟପଃ ।
ବିଶ୍ୱାମିତ୍ରୋ ଦୀର୍ଘତମା ଦୁର୍ବାସାଶ୍ଚ ମହାତପାଃ ।୨।
ପୁଲସ୍ତ୍ୟୋଽପି ତଥା ଶକ୍ତିର୍ଭାର୍ଗବଶ୍ଚୈବ ବାମନଃ ।
ମାର୍କଣ୍ଡେୟଶ୍ଚ ଦୀର୍ଘାୟୁର୍ମୌଦ୍ଗଲ୍ୟଶ୍ଚ ମହାଯଶାଃ ।୩।
ଗର୍ଗଶ୍ଚ ଚ୍ୟବନଶ୍ଚୈବ ଶତାନନ୍ଦଶ୍ଚ ଧର୍ମବିତ୍ ।
ଭରଦ୍ୱାଜଶ୍ଚ ତେଜସ୍ୱୀ ହ୍ୟଗ୍ନିପୁତ୍ରଶ୍ଚ ସୁପ୍ରଭଃ ।୪।
ନାରଦଃ ପର୍ବତଶ୍ଚୈବ ଗୌତମଶ୍ଚ ମହାଯଶାଃ ।
କାତ୍ୟାୟନଃ ସୁଯଜ୍ଞଶ୍ଚ ହ୍ୟଗସ୍ତ୍ୟସ୍ତପସାଂ ନିଧିଃ ।୫।
ଏତେ ଚାନ୍ୟେ ଚ ବହବୋ ମୁନୟଃ ସଂଶିତବ୍ରତାଃ ।
କୌତୂହଳସମାବିଷ୍ଟାଃ ସର୍ବ ଏବ ସମାଗତାଃ ।୬।
ରାକ୍ଷସାଶ୍ଚ ମହାବୀର୍ଯା ବାନରାଶ୍ଚ ମହାବଳାଃ ।
ସର୍ବ ଏବ ସମାଜଗ୍ମୁର୍ମହାତ୍ମାନଃ କୁତୂହଳାତ୍ ।୭।

---

## ୯୬ତମ ସର୍ଗ

( ବାଲ୍ମୀକିଙ୍କର ବିଶ୍ୱାସପ୍ରଦାନ )

ସେହି ରାତ୍ର ବିତବା ଉତ୍ତାରୁ ମହାତେଜସ୍ୱୀ ରାଘବ ଯଜ୍ଞଶାଳାକୁ ଯାଇ ସମସ୍ତ ଋଷିଙ୍କୁ ଡକାଇଲେ ।୧। ବଶିଷ୍ଠ, ବାମଦେବ, ଜାବାଲି, କାଶ୍ୟପ, ବିଶ୍ୱାମିତ୍ର, ଦୀର୍ଘତମା, ମହାତପସ୍ୱୀ ଦୁର୍ବାସା, ପୁଲସ୍ତ୍ୟ, ଶକ୍ତି, ଭାର୍ଗବ, ବାମନ, ଦୀର୍ଘାୟୁ ମାର୍କଣ୍ଡେୟ, ମହାଯଶସ୍ୱୀ ମୌଦ୍ଗଲ୍ୟ, ଗର୍ଗ, ଚ୍ୟବନ, ଧର୍ମାତ୍ମା ଶତାନନ୍ଦ, ତେଜସ୍ୱୀ ଭରଦ୍ୱାଜ, ଅଗ୍ନିପୁତ୍ର ସୁପ୍ରଭ, ନାରଦ, ପର୍ବତ, ମହାଯଶସ୍ୱୀ ଗୌତମ, କାତ୍ୟାୟନ, ସୁଯଜ୍ଞ ଏବଂ ତପୋନିଧି ଅଗସ୍ତ୍ୟ ଆଦି ଅନେକ ମହାବ୍ରତଧାରୀ ମୁନି ସେହି ଅଦ୍ଭୁତ ବ୍ୟାପାର ଦେଖିବା ପାଇଁ ସେଠାରେ ସମବେତ ହେଲେ । ଏହା-ଛଡ଼ା ବଡ଼ ବଡ଼ ପରାକ୍ରମୀ ରାକ୍ଷସ ଏବଂ ମହାତ୍ମା ବାନରଗଣ ତଥା ଅନ୍ୟ ଅନେକ ମହାତ୍ମା ଲୋକ ବିଶେଷ କୌତୂହଳବଶତଃ ଯଜ୍ଞଶାଳାରେ ଏକତ୍ର ହେଲେ ।୨-୭।

କ୍ଷତ୍ରିୟା ଯେ ଚ ଶୂଦ୍ରାଶ୍ଚ ବୈଶ୍ୟାଶ୍ଚୈବ ସହସ୍ରଶଃ ।
ନାନାଦେଶଗତାଶ୍ଚୈବ ବ୍ରାହ୍ମଣାଃ ସଂଶିତବ୍ରତାଃ । ୮ ।
ଜ୍ଞାନନିଷ୍ଠାଃ କର୍ମନିଷ୍ଠା ଯୋଗନିଷ୍ଠାସ୍ତଥାପରେ ।
ସୀତାଶପଥବୀକ୍ଷ୍ୟାର୍ଥଂ ସର୍ବ ଏବ ସମାଗତାଃ । ୯ ।
ତଦା ସମାଗତଂ ସର୍ବମଶ୍ମଭୂତମିବାଚଲମ୍ ।
ଶ୍ରୁତ୍ୱା ମୁନିବରସ୍ତୂର୍ଣ୍ଣଂ ସସୀତଃ ସମୁପାଗମତ୍ । ୧୦ ।
ତମୃଷିଂ ପୃଷ୍ଠତଃ ସୀତା ତ୍ୱନ୍ୱଗଚ୍ଛଦବାଙ୍ମୁଖୀ ।
କୃତାଞ୍ଜଳିର୍ବାଷ୍ପଗଲା କୃତ୍ୱା ରାମଂ ମନୋଗତମ୍ । ୧୧ ।
ଦୃଷ୍ଟ୍ୱା ଶ୍ରୁତିମିବାୟାନ୍ତୀଂ ବ୍ରହ୍ମାଣମନୁଗାମିନୀମ୍ ।
ବାଲ୍ମୀକେଃ ପୃଷ୍ଠତଃ ସୀତାଂ ସାଧୁବାଦୋ ମହାନଭୂତ୍ । ୧୨ ।
ତତୋ ହଲହଲାଶବ୍ଦଃ ସର୍ବେଷାମେବମାବଭୌ ।
ଦୁଃଖଜନ୍ମବଶାଂଲେନ ଶୋକେନାକୁଳିତାତ୍ମନାମ୍ । ୧୩ ।
ସାଧୁ ରାମେତି କେଚିତ୍ତୁ ସାଧୁ ସୀତେତି ଚାପରେ ।
ଉଭାବେବ ଚ ତତ୍ରାନ୍ୟେ ପ୍ରେକ୍ଷକାଃ ସଂପ୍ରଚୁକ୍ରୁଶୁଃ । ୧୪ ।

---

ଏହା ଛଡ଼ା ସହସ୍ର ସହସ୍ର କ୍ଷତ୍ରିୟ, ବୈଶ୍ୟ ଏବଂ ଶୂଦ୍ର ତଥା ଅନେକ ଦେଶବାସୀ ମହାବ୍ରତଧାରୀ, ଜ୍ଞାନନିଷ୍ଠ, କର୍ମନିଷ୍ଠ ଓ ଯୋଗନିଷ୍ଠ ବ୍ରାହ୍ମଣ ମଧ୍ୟ ସୀତାଙ୍କ ଶପଥ ଦେଖିବା ପାଇଁ ସେହି ସଭାରେ ଜମାହୋଇଗଲେ । ୬-୯ । ସେହି ଦର୍ଶକମାନେ ଆସି ସଭାରେ ନିଶ୍ଚଳ ପ୍ରସ୍ତର ମୂର୍ତ୍ତିପରି ନୀରବରେ ବସିରହିଲେ । ଏ ସମ୍ବାଦ ପାଇ ମୁନିଶ୍ରେଷ୍ଠ ବାଲ୍ମୀକି ତତ୍‌କ୍ଷଣାତ୍ ସୀତାଙ୍କୁ ସଙ୍ଗରେ ନେଇ ସେଠାକୁ ଆସିଲେ । ୧୦ । ସୀତା ମହର୍ଷିଙ୍କ ପଛରେ ରହି, ମୁହଁକୁ ତଳକୁ କରି, ଚକ୍ଷୁକୁ ଅଶ୍ରୁପୂର୍ଣ୍ଣ କରି, ହାତଯୋଡ଼ି, ମନେ ମନେ ରାମଙ୍କୁ ଧ୍ୟାନକରି ଆସିଲେ । ୧୧ । ସେତେବେଳେ ମହର୍ଷି ବାଲ୍ମୀକିଙ୍କ ପଛରେ ଆସୁଥିବା ସୀତା, ବ୍ରହ୍ମାଙ୍କ ପଛେ ପଛେ ଶ୍ରୁତି ଆସୁଥିବାପରି ଦେଖାଗଲେ । ସୀତାଙ୍କୁ ଏପରି ଆସୁଥିବାର ଦେଖି ସଭାରେ ବିପୁଳ ସାଧୁବାଦ ଉଠିଲା । ୧୨ । ତଦନନ୍ତର ସେ ସଭାରେ ମହାନ୍ କୋଳାହଳ ଜାତ ହେଲା; କାରଣ ସୀତାଙ୍କୁ ସେପରି ଦୀନଦଶାରେ ଦେଖି ଲୋକଙ୍କ ମନରେ ବଡ଼ ଦୁଃଖ ହେଲା ଏବଂ ଶୋକରେ ସେମାନେ ବିକଳ ହୋଇଉଠିଲେ । ୧୩ । ସେ ଦର୍ଶକମାନଙ୍କ ମଧ୍ୟରୁ କେଏ ରାମଙ୍କର, କେଏ ସୀତାଙ୍କର, କେଏ ବା ସେ ଦୁହିଁଙ୍କଯାକର ସାଧୁବାଦ

ତତୋ ମଧ୍ୟେ ଜନୌଘସ୍ୟ ପ୍ରବିଶ୍ୟ ମୁନିପୁଙ୍ଗବଃ ।
ସୀତାସହାୟୋ ବାଲ୍ମୀକିରିତି ହୋବାଚ ରାଘବମ୍ । ୧୫ ।
ଇୟଂ ଦାଶରଥେ ସୀତା ସୁବ୍ରତା ଧର୍ମଚାରିଣୀ ।
ଅପବାଦାତ୍ ପରିତ୍ୟକ୍ତା ମମାଶ୍ରମସମୀପତଃ । ୧୬ ।
ଲୋକାପବାଦଭୀତସ୍ୟ ତବ ରାମ ମହାବ୍ରତ ।
ପ୍ରତ୍ୟୟଂ ଦାସ୍ୟତେ ସୀତା ତଦନୁଜ୍ଞାତୁମର୍ହସି । ୧୭ ।
ଇମୌ ତୁ ଜାନକୀପୁତ୍ରାବୁଭୌ ଚ ଯମଜାତକୌ ।
ସୁତୌ ତବୈବ ଦୁର୍ଧର୍ଷୌ ସତ୍ୟମେତଦ୍ ବ୍ରବୀମି ତେ । ୧୮ ।
ପ୍ରଚେତସୋଽହଂ ଦଶମଃ ପୁତ୍ରୋ ରାଘବନନ୍ଦନ ।
ନ ସ୍ମରାମ୍ୟନୃତଂ ବାକ୍ୟମିମୌ ତୁ ତବ ପୁତ୍ରକୌ । ୧୯ ।
ବହୁ ବର୍ଷସହସ୍ରାଣି ତପଶ୍ଚର୍ଯା ମୟା କୃତା ।
ନୋପାଶ୍ନୀୟାଂ ଫଲଂ ତସ୍ୟା ଦୁଷ୍ଟେୟଂ ଯଦି ମୈଥିଲୀ । ୨୦ ।
ମନସା କର୍ମଣା ବାଚା ଭୂତପୂର୍ବଂ ନ କିଲ୍ବିଷମ୍ ।
ତସ୍ୟାହଂ ଫଲମଶ୍ନାମି ଅପାପା ଯଦି ମୈଥିଲୀ । ୨୧ ।

---

କରିବାକୁ ଲାଗିଲେ । ୧୪ । ମହର୍ଷି ବାଲ୍ମୀକି ସୀତାଙ୍କୁ ଆପଣା ସଙ୍ଗରେ ଧରି ସେହି ଜନମଣ୍ଡଳ ମଧ୍ୟରେ ପଶି ରାମଙ୍କୁ କହିଲେ । ୧୫ । "ହେ ଦାଶରଥେ ! ତୁମେ ଯେଉଁ ସୀତାଙ୍କୁ ଅପବାଦ ଭୟରେ ମୋ ଆଶ୍ରମ ନିକଟରେ ଛାଡ଼ିଦେଇଥିଲ, ହେଇଟି, ସେହି ସୁବ୍ରତା ଧର୍ମଚାରିଣୀ ସୀତା । ୧୬। ହେ ମହାବ୍ରତ ରାମ ! ତୁମେ ଲୋକାପବାଦକୁ ଭୟ କରୁଛ, ଅତଏବ ସୀତା ନିଜର ଶୁଦ୍ଧତାର ପ୍ରମାଣ ଦେବେ, ତୁମେ ତାଙ୍କୁ ଆଜ୍ଞା ଦିଅ । ୧୭ । ମୁଁ ତୁମକୁ ସତ୍ୟ କହୁଛି, ଏ ଦୁଇ ବାଳକ ଏକ ସମୟରେ ଏକ-ସଙ୍ଗରେ ଜନ୍ମ ହୋଇଛନ୍ତି । ଏ ଦୁଇ ଦୁର୍ଦ୍ଧର୍ଷ ବାଳକ ତୁମ୍ଭରି ପୁତ୍ର ଅଟନ୍ତି । ୧୮ । ହେ ରଘୁନନ୍ଦନ ! ମୁଁ ପ୍ରଚେତାଙ୍କର ଦଶମ ପୁତ୍ର ଅଟେଁ । ମୁଁ ଏପର୍ଯ୍ୟନ୍ତ କେବେହେଲେ ଅସତ୍ୟ କଥା ସ୍ମରଣ ମଧ୍ୟ କରି ନାହିଁ; ଏ ଦୁହେଁ ତୁମ୍ଭରି ପୁତ୍ର ଅଟନ୍ତି ।୧୯। ମୁଁ ଶପଥ କରି କହୁଛି, ଯଦି ସୀତା ଦୁଷ୍ଟଚରିତ୍ରା ହୋଇଥାନ୍ତି, ତେବେ ମୋତେ ମୋର ବହୁ ସହସ୍ର ବର୍ଷର ତପସ୍ୟାର ଫଳ ମିଳିବ ନାହିଁ । ୨୦ । ମନରେ, କର୍ମରେ ବା ବାକ୍ୟରେ ମୁଁ କଦାପି ପାପାଚରଣ କରି ନାହିଁ । ଯଦି ସୀତା ପାପ-ରହିତା ହୋଇଥାନ୍ତି ତେବେ ମୋତେ ତାର ଫଳ ନିଶ୍ଚୟ ମିଳିବ ।୨୧। ହେ ରାଘବ !

ଅହଂ ପଞ୍ଚସୁ ଭୂତେଷୁ ମନଃଷଷ୍ଠେଷୁ ରାଘବ ।
ବିଚିନ୍ତ୍ୟ ସୀତା ଶୁଦ୍ଧେତି ଜଗ୍ରାହ ବନନିର୍ଝରେ । ୨୨ ।
ଇୟଂ ଶୁଦ୍ଧସମାଚାରା ଅପାପା ପତିଦେବତା ।
ଲୋକାପବାଦଭୀତସ୍ୟ ପ୍ରତ୍ୟୟଂ ତବ ଦାସ୍ୟତି । ୨୩ ।
ତସ୍ମାଦିୟଂ ନରବରାତ୍ମଜ ଶୁଦ୍ଧଭାବା
ଦିବ୍ୟେନ ଦୃଷ୍ଟିବିଷୟେଣ ମୟା ପ୍ରଦିଷ୍ଟା ।
ଲୋକାପବାଦକଳୁଷୀକୃତଚେତସା ଯା
ତ୍ୟକ୍ତା ତ୍ୱୟା ପ୍ରିୟତମା ବିଦିତାପି ଶୁଦ୍ଧା । ୨୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ବାଲ୍ମୀକିପ୍ରତ୍ୟୟଦାନଂ ନାମ ଷଣ୍ଣବତିତମଃ ସର୍ଗଃ ।

---

# ସପ୍ତନବତିତମଃ ସର୍ଗଃ

## ସୀତାରସାତଳପ୍ରବେଶଃ

ବାଲ୍ମୀକିନୈବମୁକ୍ତସ୍ତୁ ରାଘବଃ ପ୍ରତ୍ୟଭାଷତ ।
ପ୍ରାଞ୍ଜଳିର୍ଜଗତୋ ମଧ୍ୟେ ଦୃଷ୍ଟ୍ୱା ତାଂ ବରବର୍ଣ୍ଣିନୀମ୍ । ୧ ।

---

ପଞ୍ଚଭୂତରୁ ଜାତ ପଞ୍ଚ ଜ୍ଞାନେନ୍ଦ୍ରିୟ ଏବଂ ଷଷ୍ଠ ମନ—ଏ ସବୁଦ୍ୱାରା ମୁଁ ଯେତେବେଳେ ଜାଣିଲି ଯେ ସୀତା ଶୁଦ୍ଧା ଅଟନ୍ତି, ସେତେବେଳେ ମୁଁ ସେହି ବନମଧ୍ୟରେ ନଦୀକୂଳରେ ତାହାଙ୍କୁ ଗ୍ରହଣ କରିଥିଲି । ୨୨ । ଏହି ପତିବ୍ରତା ସୀତା ଶୁଦ୍ଧାଚରଣୀ ଓ ପାପଶୂନ୍ୟା ଅଟନ୍ତି; ମାତ୍ର ତୁମେ ଲୋକାପବାଦକୁ ଭୟ କରୁଥିବାରୁ ସେ ତୁମକୁ ବିଶ୍ୱାସ ଦିଆଇବେ ।୨୩। ହେ ରାଜପୁତ୍ର ରାମ ! ମୁଁ ଦିବ୍ୟଦୃଷ୍ଟିରେ ଦେଖିଛି ଯେ ସୀତା ଶୁଦ୍ଧସ୍ୱଭାବା ଅଟନ୍ତି । ତୁମେ ନିଜେ ନିଜର ପ୍ରେୟସୀ ସୀତାଙ୍କୁ ଶୁଦ୍ଧା ବୋଲି ଜାଣି ମଧ୍ୟ ଲୋକାପବାଦ ଭୟରେ ଏହାଙ୍କୁ ତ୍ୟାଗକରିଅଛ" । ୨୪ ।

---

## ୯୭ତମ ସର୍ଗ

### ( ସୀତାଙ୍କର ରସାତଳପ୍ରବେଶ )

ବାଲ୍ମୀକି ଏହିପରି କହିବା ପରେ ଏବଂ ବରାଙ୍ଗନା ସୀତାଙ୍କୁ ସେହି ସଭାମଧ୍ୟରେ ଉଭା ହୋଇଥିବାର ଦେଖି ରାମ ହାତ ଯୋଡ଼ି କହିଲେ । ୧ ।

ଏବମେତନ୍ମହାଭାଗ ଯଥା ବଦସି ଧର୍ମବିତ୍‌ ।
ପ୍ରତ୍ୟୟସ୍ତୁ ମମ ବ୍ରହ୍ମଂସ୍ତବ ବାକ୍ୟୈରକଲ୍ମଷୈଃ । ୨ ।
ପ୍ରତ୍ୟୟସ୍ତୁ ପୁରାବୃତ୍ତୋ ବୈଦେହ୍ୟାଃ ସୁରସଂନ୍ନିଧୌ ।
ଶପଥସ୍ତୁ କୃତସ୍ତନ୍ନ ତେନ ବେଶ୍ମ ପ୍ରବେଶିତା । ୩ ।
ଲୋକାପବାଦୋ ବଲବାନ୍‌ ଯେନ ତ୍ୟକ୍ତା ହି ମୈଥିଲୀ ।
ସେୟଂ ଲୋକଭୟାଦ୍‌ ବ୍ରହ୍ମନ୍ନପାପେତ୍ୟଭିଜାନତା । ୪ ।
ପରିତ୍ୟକ୍ତା ମୟା ସୀତା ତଦ୍ଭବାନ୍‌ କ୍ଷନ୍ତୁମର୍ହତି ।
ଜାନାମି ଚେମୌ ପୁତ୍ରୌ ମେ ଯମଜାତୌ କୁଶୀଲବୌ । ୫ ।
ଶୁଦ୍ଧାୟାଂ ଜଗତୋ ମଧ୍ୟେ ମୈଥିଲ୍ୟାଂ ପ୍ରୀତିରସ୍ତୁ ମେ ।
ଅଭିପ୍ରାୟଂ ତୁ ବିଜ୍ଞାୟ ରାମସ୍ୟ ସୁରସତ୍ତମାଃ । ୬ ।
ସୀତାୟାଃ ଶପଥେ ତସ୍ମିନ୍‌ ମହେନ୍ଦ୍ରାଦ୍ୟା ମହୌଜସଃ ।
ପିତାମହଂ ପୁରସ୍କୃତ୍ୟ ସର୍ବ ଏବ ସମାଗତାଃ । ୭ ।
ଆଦିତ୍ୟା ବସବୋ ରୁଦ୍ରା ହ୍ୟଶ୍ୱିନୌ ସମରୁଦ୍‌ଗଣାଃ ।
ଗନ୍ଧର୍ବାପ୍ସରସଶ୍ଚୈବ ସର୍ବ ଏବ ସମାଗତାଃ । ୮ ।

---

"ହେ ଭଗବନ୍‌ ! ହେ ଧର୍ମଜ୍ଞ ! ତୁମେ ଯାହା କହିଲ ତାହା ଯଥାର୍ଥ । ତୁମ୍ଭର ଏଇ ଦୋଷଶୂନ୍ୟ କଥାରେ ମୋର ସଂପୂର୍ଣ୍ଣ ବିଶ୍ୱାସ ଅଛି । ୨ । ପୂର୍ବେ ଦେବତାମାନଙ୍କ ସମ୍ମୁଖରେ ବୈଦେହୀ ମୋତେ ବିଶ୍ୱାସ କରାଇଦେଇଥିଲେ ଏବଂ ଶପଥ ମଧ୍ୟ କରିଥିଲେ; ସେଥିପାଇଁ ମୁଁ ତାଙ୍କୁ ଘରକୁ ଆଣିଥିଲି । ୩ । କିନ୍ତୁ ହେ ବ୍ରହ୍ମନ୍‌ ! ମୁଁ କଅଣ କରିବି, ଲୋକାପବାଦ ବଳବାନ୍‌ ଅଟେ । ସେଥିଲାଗି ମୋତେ ମୈଥିଳୀଙ୍କୁ ତ୍ୟାଗ କରିବାକୁ ପଡ଼ିଲା । ସୀତା ସଂପୂର୍ଣ୍ଣ ନିଷ୍ପାପା, ଏହା ଜାଣିକରି ମଧ୍ୟ ଲୋକାପବାଦ ଭୟରେ ମୋତେ ତାଙ୍କୁ ଛାଡ଼ିବାକୁ ପଡ଼ିଲା ; ସୁତରାଂ ସେଥିପାଇଁ ଆପଣ ମୋତେ କ୍ଷମା ଦିଅନ୍ତୁ । ମୁଁ ମଧ୍ୟ ଜାଣେ ଯେ ଏହି ଲବ କୁଶ ଦୁହେଁ ମୋହରିହିଁ ଯମଜ ପୁତ୍ର ଅଟନ୍ତି ।୪-୫। ସମଗ୍ର ଜଗତ ସମକ୍ଷରେ ଶୁଦ୍ଧଚରିତା ବୋଲି ପ୍ରମାଣିତ ହେବା ସୀତାଙ୍କଠାରେ ମୋର ପ୍ରୀତି ଅକ୍ଷୁଣ୍ଣ ରହୁ ।" ମହେନ୍ଦ୍ର ଆଦି ମହାତେଜସ୍ୱୀ ଦେବଶ୍ରେଷ୍ଠମାନେ ରାମଙ୍କର ଅଭିପ୍ରାୟ ଜାଣି ପିତାମହ ବ୍ରହ୍ମାଙ୍କୁ ଅଗ୍ରଣୀ କରି ସମସ୍ତେ ସେଠାରେ ଆସି ମିଳିତ ହୋଇଥିଲେ । ୬-୭ । ଦ୍ୱାଦଶ ଆଦିତ୍ୟ, ଅଷ୍ଟବସୁ ଏକାଦଶ ରୁଦ୍ର, ଅଶ୍ୱିନୀକୁମାର, ଅଣଞ୍ଚାଶ ପବନ, ଗନ୍ଧର୍ବ ଏବଂ ଅପ୍‌ସରାମାନେ ମଧ୍ୟ ସମବେତ ଏକତ୍ର ହୋଇଥିଲେ । ୮ । ସାଧ୍ୟମାନେ,

ସାଧ୍ୟାଶ୍ଚ ବିଶ୍ୱେଦେବାଶ୍ଚ ସର୍ବେ ଚ ପରମର୍ଷୟଃ ।
ନାଗାଃ ସୁପର୍ଣାଃ ସିଦ୍ଧାଶ୍ଚ ତେ ସର୍ବେ ହୃଷ୍ଟମାନସାଃ । ୯ ।
ସୀତାଶପଥସଂଭ୍ରାନ୍ତା ସର୍ବ ଏବ ସମାଗତାଃ ।
ଦୃଷ୍ଟ୍ୱା ଦେବାନୃଷୀଂଶ୍ଚୈବ ରାଘବଃ ପୁନରବ୍ରବୀତ୍ । ୧୦ ।
ପ୍ରତ୍ୟୟୋ ମେ ସୁରଶ୍ରେଷ୍ଠା ଋଷିବାକୈ୍ୟରକଲ୍ମଷୈଃ ।
ଶୁଦ୍ଧାୟାଂ ଜଗତୋ ମଧ୍ୟେ ବୈଦେହ୍ୟାଂ ପ୍ରୀତିରସ୍ତୁ ମେ । ୧୧ ।
ତତୋ ବାୟୁଃ ଶୁଭଃ ପୁଣ୍ୟୋ ଦିବ୍ୟଗନ୍ଧୋ ମନୋରମଃ ।
ତଜ୍ଜନୌଘଂ ସୁରଶ୍ରେଷ୍ଠୋ ହ୍ଲାଦୟାମାସ ସର୍ବତଃ । ୧୨ ।
ତଦଦ୍ଭୁତମିବାଚିନ୍ତ୍ୟଂ ନିରୈକ୍ଷନ୍ତ ସମାଗତାଃ ।
ମାନବାଃ ସର୍ବରାଷ୍ଟ୍ରେଭ୍ୟଃ ପୂର୍ବଂ କୃତଯୁଗେ ଯଥା । ୧୩ ।
ସର୍ବାନ୍ ସମାଗତାନ୍ ଦୃଷ୍ଟ୍ୱା ସୀତା କାଷାୟବାସିନୀ ।
ଅବ୍ରବୀତ୍ ପ୍ରାଞ୍ଜଲିର୍ବାକ୍ୟମଧୋଦୃଷ୍ଟିରବାଙ୍ମୁଖୀ । ୧୪ ।
ଯଥାହଂ ରାଘବାଦନ୍ୟଂ ମନସାପି ନ ଚିନ୍ତୟେ ।
ତଥା ମେ ମାଧବୀ ଦେବୀ ବିବରଂ ଦାତୁମର୍ହତି । ୧୫ ।

---

ବିଶ୍ୱେଦେବମାନେ, ମହର୍ଷିମାନେ, ନାଗ, ସୁପର୍ଣ୍ଣ ଏବଂ ସିଦ୍ଧମାନେ ସମସ୍ତେ ଆନନ୍ଦ ମନରେ ସୀତାଙ୍କର ଶପଥ ଦେଖିବା ପାଇଁ ଉତ୍ସୁକ ହୋଇ ସେଠାରେ ସମବେତ ହୋଇଥିଲେ । ଦେବତା ଏବଂ ଋଷିମାନଙ୍କ ଆଡ଼କୁ ଚାହିଁ ରାମ ପୁଣି କହିଲେ । ୮-୧୦ । "ହେ ଶ୍ରେଷ୍ଠ ଦେବଗଣ ! ବାଲ୍ମୀକି ଋଷିଙ୍କ ଅନାବିଳ ବାକ୍ୟରେ ମୋର ପୂର୍ଣ୍ଣ ବିଶ୍ୱାସ ଅଛି । ଏହି ଜଗତ ମଧ୍ୟରେ ଶୁଦ୍ଧଚରିତ୍ରା ସୀତାଙ୍କଠାରେ ମୋର ପ୍ରୀତି ଅକ୍ଷୁଣ୍ଣ ରହୁ" । ୧୧ । ସେହି ସମୟରେ ଦେବଶ୍ରେଷ୍ଠ ପବନଦେବ ଶୁଭକର, ପବିତ୍ର ଏବଂ ଦିବ୍ୟ ସୁଗନ୍ଧ ବହନ କରି ଚାରିଆଡ଼େ ପ୍ରବାହିତ ହୋଇ ସମଗ୍ର ଜନସଙ୍ଘକୁ ଆନନ୍ଦ ପ୍ରଦାନ କଲେ । ୧୨ । ଏହିପ୍ରକାର ଅଦ୍ଭୁତ ଓ ଅଚିନ୍ତ୍ୟ ପବନ ବହିବାର ଦେଖି, ପୂର୍ବେ ସତ୍ୟଯୁଗରେ ଯେପରି ହୋଇଥିଲା ବର୍ତ୍ତମାନ ତାହାହିଁ ହେଲା ବୋଲି ସବୁ ରାଜ୍ୟରୁ ଆସିଥିବା ମନୁଷ୍ୟମାନେ ମନେକଲେ । ୧୩ । ସମସ୍ତେ ସେଠାରେ ଏକତ୍ର ହୋଇଥିବାର ଦେଖି କଷାୟବସ୍ତ୍ର ପରିଧାନ କରିଥିବା ଦେବୀ ସୀତା ମୁହଁକୁ ତଳକୁ ପୋତି କରି ଯୋଡ଼ି କହିଲେ ।୧୪। "ମୁଁ ଯଦି ରାମଙ୍କ ଛଡ଼ା ଅନ୍ୟ କାହାକୁ ମନ ମଧ୍ୟରେ ଚିନ୍ତା ମଧ୍ୟ କରି ନ ଥିବି, ତେବେ ବସୁଧା ଦେବୀ

ମନସା କର୍ମଣା ବାଚା ଯଥା ରାମଂ ସମର୍ଚ୍ଚୟେ ।
ତଥା ମେ ମାଧବୀ ଦେବୀ ବିବରଂ ଦାତୁମର୍ହତି । ୧୬ ।
ଯଥୈତତ୍‌ସତ୍ୟମୁକ୍ତଂ ମେ ବେଦ୍ମି ରାମାତ୍ପରଂ ନ ଚ ।
ତଥା ମେ ମାଧବୀ ଦେବୀ ବିବରଂ ଦାତୁମର୍ହତି । ୧୭ ।
ତଥା ଶପନ୍ତ୍ୟାଂ ବୈଦେହ୍ୟାଂ ପ୍ରାଦୁରାସୀତ୍ତଦଦ୍ଭୁତମ୍ ।
ଭୂତଳାଦୁତ୍ଥିତଂ ଦିବ୍ୟଂ ସିଂହାସନମନୁତ୍ତମମ୍ । ୧୮ ।
ଧ୍ରିୟମାଣଂ ଶିରୋଭିସ୍ତୁ ନାଗୈରମିତବିକ୍ରମୈଃ ।
ଦିବ୍ୟଂ ଦିବ୍ୟେନ ବପୁଷା ଦିବ୍ୟରତ୍ନବିଭୂଷିତୈଃ । ୧୯ ।
ତସ୍ମିଂସ୍ତୁ ଧରଣୀ ଦେବୀ ବାହୁଭ୍ୟାଂ ଗୃହ୍ୟ ମୈଥିଲୀମ୍ ।
ସ୍ୱାଗତେନାଭିନନ୍ଦ୍ୟୈନାମାସନେ ଚୋପବେଶୟତ୍ । ୨୦ ।
ତାମାସନଗତାଂ ଦୃଷ୍ଟ୍ୱା ପ୍ରବିଶନ୍ତୀଂ ରସାତଳମ୍ ।
ପୁଷ୍ପବୃଷ୍ଟିରବିଚ୍ଛିନ୍ନା ଦିବ୍ୟା ସୀତାମବାକିରତ୍ । ୨୧ ।
ସାଧୁକାରଶ୍ଚ ସୁମହାନ୍ ଦେବାନାଂ ସହସୋତ୍ଥିତଃ ।
ସାଧୁ ସାଧ୍ୱିତି ବୈ ସୀତେ ଯସ୍ୟାସ୍ତେ ଶୀଳମୀଦୃଶମ୍ । ୨୨ ।

---

ଫାଟିଯାଇ ମୋତେ ତାଙ୍କ ଗର୍ଭରେ ସ୍ଥାନ ଦିଅନ୍ତୁ । ୧୫ । ମୁଁ ଯଦି ମନରେ, କର୍ମରେ ଏବଂ ବାକ୍ୟରେ ସର୍ବଦା ରାମଙ୍କୁହିଁ ଅର୍ଚ୍ଚନା କରି ଆସିଥିବି, ତେବେ ବସୁଧା ଦେବୀ ମୋତେ ତାଙ୍କ ଗର୍ଭରେ ସ୍ଥାନ ଦିଅନ୍ତୁ । ୧୬ । ମୁଁ ରାମଙ୍କ ଛଡ଼ା ଅନ୍ୟ କାହାରିକୁ ଜାଣେ ନାହିଁ, ଏ କଥା ଯଦି ସତ୍ୟ କହୁଥାଏଁ, ତେବେ ବସୁଧା ଦେବୀ ମୋତେ ତାଙ୍କ ଗର୍ଭରେ ସ୍ଥାନ ଦିଅନ୍ତୁ" । ୧୭ । ସୀତା ଏହିପ୍ରକାର ଶପଥ କରୁଥିବା ବେଳେ ପୃଥିବୀ ଫାଟିଗଲା ଏବଂ ସେଥିମଧ୍ୟରୁ ଏକ ଦିବ୍ୟ ସିଂହାସନ ବାହାରିଲା । ୧୮ । ସେହି ସିଂହାସନକୁ ଅତୁଳବିକ୍ରମ, ଦିବ୍ୟରତ୍ନବିଭୂଷିତ ଏବଂ ଦିବ୍ୟ ବପୁଷ୍ମାନ୍ ନାଗମାନେ ମସ୍ତକରେ ଧାରଣ କରିଥିଲେ । ୧୯ । ବସୁଧା ଦେବୀ ଦୁଇ ବାହୁରେ ସୀତାଙ୍କୁ ଧରି ଏବଂ ସ୍ୱାଗତ ଅଭିନନ୍ଦନ କରି ସେହି ଆସନରେ ନେଇ ବସାଇଲେ । ୨୦ । ସୀତାଙ୍କୁ ସେହି ସିଂହାସନରେ ବସି ପୃଥିବୀଗର୍ଭରେ ପ୍ରବେଶ କରୁଥିବାର ଦେଖି, ସ୍ୱର୍ଗରୁ ତାଙ୍କ ଉପରେ ନିରବଚ୍ଛିନ୍ନ ପୁଷ୍ପବୃଷ୍ଟି ହେବାକୁ ଲାଗିଲା । ୨୧ । ଦେବତାମାନଙ୍କ ମଧ୍ୟରୁ ମହାନ୍ ସାଧୁବାଦ ଉତ୍ଥିତ ହେଲା । ସମସ୍ତେ କହିଲେ, "ହେ ସୀତେ ! ତୁମ୍ଭର ଚରିତ୍ର ଏପରି ମହତ୍ ଯେ ତୁମଙ୍କୁ ଧନ୍ୟବାଦ" । ୨୨ ।

ଏବଂ ବହୁବିଧା ବାଚ୍ୟେ ହ୍ୟନ୍ତରିକ୍ଷଗତାଃ ସୁରାଃ ।
ବ୍ୟାଜହ୍ରୁର୍ହୃଷ୍ଟମନସୋ ଦୃଷ୍ଟ୍ୱା ସୀତାପ୍ରବେଶନମ୍ । ୨୩ ।
ଯଜ୍ଞବାଟଗତାଶ୍ଚାପି ମୁନୟଃ ସର୍ବ ଏବ ତେ ।
ରାଜାନଶ୍ଚ ନରବ୍ୟାଘ୍ରା ବିସ୍ମୟାନ୍ନୋପରେମିରେ । ୨୪ ।
ଅନ୍ତରିକ୍ଷେ ଚ ଭୂମୌ ଚ ସର୍ବେ ସ୍ଥାବରଜଙ୍ଗମାଃ ।
ଦାନବାଶ୍ଚ ମହାକାୟାଃ ପାତାଳେ ପନ୍ନଗାଧିପାଃ । ୨୫ ।
କେଚିଦ୍ ବିନେଦୁଃ ସଂହୃଷ୍ଟାଃ କେଚିଦ୍ଧ୍ୟାନପରାୟଣାଃ ।
କେଚିଦ୍ରାମଂ ନିରୀକ୍ଷନ୍ତେ କେଚିତ୍ସୀତାମଚେତନାଃ । ୨୬ ।
ସୀତାପ୍ରବେଶନଂ ଦୃଷ୍ଟ୍ୱା ତେଷାମାସୀତ୍ ସମାଗମଃ ।
ତନ୍ମୁହୂର୍ତ୍ତମିବାତ୍ୟର୍ଥଂ ସମଂ ସମ୍ମୋହିତଂ ଜଗତ୍ । ୨୭ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ସୀତାରସାତଳପ୍ରବେଶୋ ନାମ ସପ୍ତନବତିତମଃ ସର୍ଗଃ ।

---

ସୀତାଙ୍କର ବସୁଧାପ୍ରବେଶ ଦେଖି ଆକାଶରେ ରହିଥିବା ଦେବତାମାନେ ଆନନ୍ଦିତ ହୋଇ ଏହିପରି ବହୁ ପ୍ରକାର କଥା କହିବାକୁ ଲାଗିଲେ । ୨୩ । ସେତେବେଳେ ଯଜ୍ଞଭୂମିରେ ଯେତେ ମୁନି ଏବଂ ନରଶ୍ରେଷ୍ଠ ରାଜାମାନେ ଥିଲେ, ସେ ସମସ୍ତେ ଅତ୍ୟନ୍ତ ବିସ୍ମିତ ହେଲେ । ୨୪ । ଆକାଶରେ ଏବଂ ପୃଥିବୀରେ ସ୍ଥାବର ଏବଂ ଜଙ୍ଗମ, ମହାକାୟ ଦାନବମାନେ ଏବଂ ପାତାଳରେ ଥିବା ନାଗମାନେ କେହି ବା ଅତ୍ୟନ୍ତ ଆନନ୍ଦିତ ହୋଇ ହର୍ଷଧ୍ୱନି କରୁଥିଲେ, କିଏ ଅବା ଚିନ୍ତାମଗ୍ନ ହୋଇ ରହିଥିଲେ, କିଏ ରାମଙ୍କ ଆଡ଼କୁ, କିଏ ବା ସୀତାଙ୍କ ଆଡ଼କୁ ଚାହିଁ ଅଚେତନପ୍ରାୟ ହୋଇରହିଥିଲେ । ୨୫-୨୬ । ସୀତାଙ୍କର ବସୁଧାପ୍ରବେଶ ଦେଖି ସେହି ସମଗ୍ର ଜନସମାଗମ ଏବଂ ସମଗ୍ର ଜଗତ ମୋହାଚ୍ଛନ୍ନ ହୋଇଯାଇଥିଲା । ୨୭ ।

---

# ଅଷ୍ଟନବତିତମଃ ସର୍ଗଃ

## ରାମକୋପୋପଶମଃ

ରସାତଳଂ ପ୍ରବିଷ୍ଟାୟାଂ ବୈଦେହ୍ୟାଂ ସର୍ବବାନରାଃ ।
ଚୁକ୍ରୁଶୁଃ ସାଧୁ ସାଧ୍ୱିତି ମୁନୟୋ ରାମସଂନିଧୌ । ୧ ।
ଦଣ୍ଡକାଷ୍ଠମବଷ୍ଟଭ୍ୟ ବାଷ୍ପବ୍ୟାକୁଲିତେକ୍ଷଣଃ ।
ଅବାକ୍‌ଶିରା ଦୀନମନା ରାମୋ ହ୍ୟାସୀତ୍ ସୁଦୁଃଖିତଃ । ୨ ।
ସ ରୁଦିତ୍ୱା ଚିରଂ କାଲଂ ବହୁଶୋ ବାଷ୍ପମୁତ୍ସୃଜନ୍ ।
କ୍ରୋଧଶୋକସମାବିଷ୍ଟୋ ରାମୋ ବଚନମବ୍ରବୀତ୍ । ୩ ।
ଅଭୂତପୂର୍ବଂ ଶୋକଂ ମେ ମନଃ ସ୍ପ୍ରଷ୍ଟୁମିବେଚ୍ଛତି ।
ପଶ୍ୟତୋ ମେ ଯଥା ନଷ୍ଟା ସୀତା ଶ୍ରୀରିବ ରୂପିଣୀ । ୪ ।
ସାଦର୍ଶନଂ ପୁରା ସୀତା ଲଙ୍କାପାରେ ମହୋଦଧେଃ ।
ତତଶ୍ଚାପି ମୟା ନୀତା କିଂ ପୁନର୍ବସୁଧାତଳାତ୍ । ୫ ।
ବସୁଧେ ଦେବି ଭବତି ସୀତା ନିର୍ଯାତ୍ୟତାଂ ମମ ।
ଦର୍ଶୟିଷ୍ୟାମି ବା ରୋଷଂ ଯଥା ମାମବଗଚ୍ଛସି । ୬ ।

---

## ୯୮ତମ ସର୍ଗ

(ରାମଙ୍କର କ୍ରୋଧଶାନ୍ତି)

ବୈଦେହୀ ରସାତଳରେ ପ୍ରବେଶ କରିଯିବାର ଦେଖି ରାମଙ୍କ ନିକଟରେ ଥିବା ମୁନିଗଣ ଓ ବାନରମାନେ ଧନ୍ୟ ଧନ୍ୟ କରିବାକୁ ଲାଗିଲେ । ସେତେବେଳେ ରାମ ଯଜ୍ଞଦଣ୍ଡ କାଷ୍ଠ ଉପରେ ଭର ଦେଇ, ଚକ୍ଷୁକୁ ଲୋତକପୂର୍ଣ୍ଣ କରି ଏବଂ ମୁଣ୍ଡକୁ ତଳକୁ ପୋତି ଅତିଶୟ ଦୁଃଖିତ ହୋଇପଡ଼ିଲେ । ୨ । ସେ ବହୁକାଳ ପର୍ଯ୍ୟନ୍ତ ଲୁହ ଗଡ଼ାଇ କାନ୍ଦି, ପରେ କ୍ରୋଧ ଏବଂ ଶୋକରେ କହିଲେ ।୩। "ଲକ୍ଷ୍ମୀଙ୍କ ସଦୃଶ ରୂପବତୀ ସୀତା ମୋ ଆଖି ଆଗରେ ଅଦୃଶ୍ୟ ହୋଇଯିବାର ଦେଖି ମୋ ମନରେ ଅଭୂତପୂର୍ବ ଶୋକ ଜାତହେଉଅଛି । ୪ । ଯେତେବେଳେ ସମୁଦ୍ରର ଅପର ପାରରେ ଲଙ୍କାରେ ଯାଇ ସୀତା ଅଦୃଶ୍ୟ ହୋଇରହିଥିଲେ ଏବଂ ସେଠାରୁ ମୁଁ ତାଙ୍କୁ ଉଦ୍ଧାର କରି ଆଣିଲି, ସେତେବେଳେ ପୃଥିବୀଗର୍ଭରୁ ତାଙ୍କୁ ଫେରି ଆଣିବା ମୋ ପକ୍ଷରେ କିଛି କଷ୍ଟ କଥା ନୁହେଁ ।୫। ହେ ବସୁଧା ଦେବି ! ତୁମେ ମୋର ସୀତାଙ୍କୁ ମୋତେ ଫେରାଇ ଦିଅ, ନ ହେଲେ ମୋର ଏହି ଅପମାନ ଲାଗି ମୁଁ ତୁମ ଉପରେ କ୍ରୋଧ

କାମଂ ଶ୍ୱଶ୍ରୂର୍ମମୈବ ତ୍ୱଂ ତ୍ୱତ୍ତଃକାଶାଙ୍କ୍ଷି ମୈଥିଲୀ ।
କର୍ଷତା ହଲହସ୍ତେନ ଜନକେନୋଦ୍ଧୃତା ପୁରା । ୭ ।
ତସ୍ମାନ୍ନିର୍ଯାତ୍ୟତାଂ ସୀତା ବିବରଂ ବା ପ୍ରଯଚ୍ଛ ମେ ।
ପାତାଳେ ନାକପୃଷ୍ଠେ ବା ବସେୟଂ ସହିତସ୍ତୟା । ୮ ।
ଆନୟ ତ୍ୱଂ ହି ତାଂ ସୀତାଂ ମତ୍ତୋଽହଂ ମୈଥିଲୀକୃତେ ।
ନ ମେ ଦାସ୍ୟସି ଚେତ୍ସୀତାଂ ଯଥାରୂପାଂ ମହୀତଳେ । ୯ ।
ସପର୍ବତବନାଂ କୃତ୍ସ୍ନାଂ ବିଧମିଷ୍ୟାମି ତେ ସ୍ଥିତିମ୍ ।
ନାଶୟିଷ୍ୟାମ୍ୟହଂ ଭୂମିଂ ସର୍ବମାପୋ ଭବନ୍ତ୍ୱିହ । ୧୦ ।
ଏବଂ ବ୍ରୁବାଣେ କାକୁତ୍ସ୍ଥେ କ୍ରୋଧଶୋକସମନ୍ୱିତେ ।
ବ୍ରହ୍ମା ସୁରଗଣୈଃ ସାର୍ଧମୁବାଚ ରଘୁନନ୍ଦନମ୍ । ୧୧ ।
ରାମ ରାମ ନ ସନ୍ତାପଂ କର୍ତୁମର୍ହସି ସୁବ୍ରତ ।
ସ୍ମର ତ୍ୱଂ ପୂର୍ବକଂ ଭାବଂ ମନ୍ତ୍ରଂ ଚାମିତ୍ରକର୍ଶନ । ୧୨ ।
ନ ଖଲୁ ତ୍ୱାଂ ମହାବାହୋ ସ୍ମାରୟେୟମନୁତ୍ତମମ୍ ।
ଇମଂ ମୁହୂର୍ତଂ ଦୁର୍ଧର୍ଷ ସ୍ମର ତ୍ୱଂ ଜନ୍ମ ବୈଷ୍ଣବମ୍ । ୧୩ ।

---

ପ୍ରକାଶ କରିବ । ୬ । ତୁମେ ମୋର ଏକପ୍ରକାର ଶାଶୁ ଅଟ, କାରଣ ରାଜର୍ଷି ଜନକ ହଳ ଧରି ଯଜ୍ଞପାଇଁ ଚାଷ କଲାବେଳେ ତୁମଠାରୁ ସୀତାଙ୍କୁ ପାଇଥିଲେ । ୭ । ଅତଏବ ହେ ପୃଥିବୀଦେବି ! ହୁଏତ ତୁମେ ମୋର ସୀତାଙ୍କୁ ଫେରାଇ ଦିଅ କିମ୍ବା ମୋତେ ତୁମ ଗର୍ଭରେ ସ୍ଥାନ ଦିଅ, କାରଣ ସୀତା ପାତାଳରେ ଥାଆନ୍ତୁ ବା ସ୍ୱର୍ଗରେ ଥାଆନ୍ତୁ, ମୁଁ ତାଙ୍କର ସହିତ ରହିବାକୁ ଚାହେଁ । ୮ । ହେ ବସୁଧାଦେବି ! ତୁମେ ସୀତାଙ୍କୁ ଆଣିଦିଅ, ମୁଁ ତାଙ୍କଲାଗି ପାଗଳ ହୋଇଯାଇଛି । ସୀତା ପୂର୍ବରୁ ଯେପରି ଏ ପୃଥିବୀରେ ରହିଥିଲେ, ସେହିପରିଭାବରେ ତୁମେ ଯଦି ତାଙ୍କୁ ମୋତେ ଫେରାଇ ନ ଦେବ, ତାହାହେଲେ ମୁଁ ପର୍ବତ ଏବଂ ବନମାନଙ୍କ ସହିତ ତୁମକୁ ଧ୍ୱସ୍ତ କରିଦେବି ଏବଂ ସମଗ୍ର ପୃଥିବୀ ଜଳମୟ ହୋଇଯିବ" । ୧୦ । କ୍ରୋଧ ଓ ଶୋକରେ ପୂର୍ଣ୍ଣ ହୋଇ ରାମ ଏ କଥା କହିବାରୁ ବ୍ରହ୍ମା ଦେବତାମାନଙ୍କ ସହିତ ତାଙ୍କୁ କହିଲେ ।୧୧। "ହେ ରାମ, ହେ ସୁବ୍ରତ, ହେ ଶତ୍ରୁଘାତକ ! ତୁମ୍ଭର ଏପରି ସନ୍ତାପ କରିବା ଉଚିତ ନୁହେଁ । ତୁମେ ତୁମ୍ଭର ପୂର୍ବ ଭାବକୁ (ଅର୍ଥାତ୍ ତୁମେ ଯେ ସ୍ୱୟଂ ବିଷ୍ଣୁ ଏ କଥା) ସ୍ମରଣ କର । ୧୨ । ହେ ମହାବାହୋ ! ମୁଁ ତୁମକୁ ସ୍ମରଣ କରାଇବାକୁ ଆସି ନାହିଁ । ମୁଁ ତୁମକୁ ପ୍ରାର୍ଥନା କରୁଛି, ତୁମେ ନିଜର ଦୁର୍ଦ୍ଧର୍ଷ ବୈଷ୍ଣବ ଜନ୍ମକୁ ସ୍ମରଣ କର ।୧୩।

ସୀତା ହି ବିମଲା ସାଧ୍ୱୀ ତବ ପୂର୍ବପରାୟଣା ।
ନାଗଲୋକଂ ସୁଖଂ ପ୍ରାପ୍ୟାତ୍ତ୍ୱଦାଶ୍ରୟତପୋବଲାତ୍ । ୧୪ ।
ସ୍ୱର୍ଗେ ତେ ସଙ୍ଗମୋ ଭୂୟୋ ଭବିଷ୍ୟତି ନ ସଂଶୟଃ ।
ଅସ୍ୟାସ୍ତୁ ପରିଷନ୍ମଧ୍ୟେ ଯଦ୍‌ବ୍ରବୀମି ନିବୋଧ ତତ୍ । ୧୫ ।
ଏତଦେବ ହି କାବ୍ୟଂ ତେ କାବ୍ୟାନାମୁତ୍ତମଂ ଶ୍ରୁତମ୍ ।
ସର୍ବଂ ବିସ୍ତରଶୋ ରାମ ବ୍ୟାଖ୍ୟାସ୍ୟତି ନ ସଂଶୟଃ । ୧୬ ।
ଜନ୍ମପ୍ରଭୃତି ତେ ବୀର ସୁଖଦୁଃଖୋପସେବନମ୍ ।
ଭବିଷ୍ୟଦୁତ୍ତରଂ ଚେହ ସର୍ବଂ ବାଲ୍ମୀକିନା କୃତମ୍ । ୧୭ ।
ଆଦିକାବ୍ୟମିଦଂ ରାମ ତ୍ୱୟି ସର୍ବଂ ପ୍ରତିଷ୍ଠିତମ୍ ।
ନ ହ୍ୟନ୍ୟୋଽର୍ହତି କାବ୍ୟାନାଂ ଯଶୋଭାକ୍ ରାଘବାଦୃତେ । ୧୮ ।
ଶ୍ରୁତଂ ତେ ପୂର୍ବମେତଦ୍ଧି ମୟା ସର୍ବଂ ସୁରୈଃ ସହ ।
ଦିବ୍ୟମଦ୍ଭୁତରୂପଂ ଚ ସତ୍ୟବାକ୍ୟମନାବୃତମ୍ । ୧୯ ।
ସ ତ୍ୱଂ ପୁରୁଷଶାର୍ଦ୍ଦୂଲ ଧର୍ମେଣ ସୁସମାହିତଃ ।
ଶେଷଂ ଭବିଷ୍ୟଂ କାକୁତ୍ସ୍ଥ କାବ୍ୟଂ ରାମାୟଣଂ ଶୃଣୁ । ୨୦ ।

---

ସୀତା ସ୍ୱଭାବତଃ ଶୁଦ୍ଧା ଓ ପତିବ୍ରତା ଅଟନ୍ତି ଏବଂ ସର୍ବଦା ତୁମ ପ୍ରତି ଆସକ୍ତ ରହିଥିଲେ । ତୁମ ଆଶ୍ରୟରୂପ ତପୋବଳରୁ ସେ ନାଗଲୋକକୁ ସୁଖରେ ଚାଲି ଯାଇଛନ୍ତି । ୧୪ । ସ୍ୱର୍ଗରେ ପୁଣି ତୁମ୍ଭର ଏହାଙ୍କ ସହିତ ମିଳନ ହେବ, ଏଥିରେ ସନ୍ଦେହ ନାହିଁ । ଏହି ସଭା ମଧ୍ୟରେ ମୁଁ ଯାହା କହୁଛି ତାହା ତୁମେ ବୁଝ । ୧୫ । ଏହି କାବ୍ୟ ସମସ୍ତ କାବ୍ୟ ମଧ୍ୟରେ ଉତ୍ତମ ଅଟେ । ଏହାଦ୍ୱାରା ତୁମ୍ଭର ସମଗ୍ର ଚରିତ ବିସ୍ତୃତଭାବରେ ପ୍ରକଟ ହେବ, ଏଥିରେ ସନ୍ଦେହ ନାହିଁ । ୧୬ । ହେ ରାମ ! ଜନ୍ମରୁ ଆରମ୍ଭ କରି ତୁମେ ଯେଉଁ ଦୁଃଖ ଏବଂ ସୁଖ ଭୋଗ କରିଅଛ, ସେ ସମସ୍ତର ବର୍ଣ୍ଣନା ଏହି ବାଲ୍ମୀକିକୃତ ମହାକାବ୍ୟରେ ରହିଅଛି ଏବଂ ତୁମ୍ଭର ଭବିଷ୍ୟତରେ ଯାହା ହେବ ତାହାର ବର୍ଣ୍ଣନା ମଧ୍ୟ ଏହାର ଉତ୍ତର କାଣ୍ଡରେ ରହିଅଛି । ୧୭ । ହେ ରାମ ! ଏହା ଆଦିକାବ୍ୟ ଅଟେ । ଏଥିରେ ମୁଖ୍ୟତଃ ତୁମ୍ଭର ଚରିତ୍ର ହିଁ ବର୍ଣ୍ଣନା କରାହୋଇଅଛି । ତୁମଛଡ଼ା ଏ କାବ୍ୟର ଯଶ ଅନ୍ୟ କେହି ପାଇ-ପାରିବ ନାହିଁ । ୧୮ । ଅଦ୍ଭୁତ ଓ ସତ୍ୟଘଟଣାତ୍ମକ ଏବଂ ଅଜ୍ଞାନଦୂରକାରୀ ଏହି କାବ୍ୟକୁ ମୁଁ ଦେବତାମାନଙ୍କ ସହିତ ଏ ଯଜ୍ଞରେ ପୂର୍ବରୁ ଶୁଣିଅଛି । ୧୯ । ଅତଏବ ହେ ପୁରୁଷସିଂହ ! ତୁମେ ଅଭିନିବେଶପୂର୍ବକ ଏହି ମହାକାବ୍ୟ

ଉତ୍ତରଂ ନାମ କାବ୍ୟସ୍ୟ ଶେଷମତ୍ର ମହାଯଶଃ ।
ତଚ୍ଛୃଣୁଷ୍ୱ ମହାତେଜ ଋଷିଭିଃ ସାର୍ଧମୁତ୍ତମମ୍ । ୨୧ ।
ନ ଖଲ୍ୱନ୍ୟେନ କାକୁତ୍ସ୍ଥ ଶ୍ରୋତବ୍ୟମିଦମୁତ୍ତମମ୍ ।
ପରମଂ ଋଷିଣା ବୀର ତ୍ୱୟୈବ ରଘୁନନ୍ଦନ । ୨୨ ।
ଏତାବଦୁକ୍ତ୍ୱା ବଚନଂ ବ୍ରହ୍ମା ତ୍ରିଭୁବନେଶ୍ୱରଃ ।
ଜଗାମ ତ୍ରିଦିବଂ ଦେବୋ ଦେବୈଃ ସହ ସବାନ୍ଧବୈଃ । ୨୩ ।
ଯେ ଚ ତତ୍ର ମହାତ୍ମାନ ଋଷୟୋ ବ୍ରାହ୍ମଲୌକିକାଃ ।
ବ୍ରହ୍ମଣା ସମନୁଜ୍ଞାତା ନ୍ୟବର୍ତ୍ତନ୍ତ ମହୌଜସଃ । ୨୪ ।
ଉତ୍ତରଂ ଶ୍ରୋତୁମନସୋ ଭବିଷ୍ୟଂ ଯଚ୍ଚ ରାଘବେ ।
ତତୋ ରାମଃ ଶୁଭାଂ ବାଣୀଂ ଦେବଦେବେନ ଭାଷିତାମ୍ ।୨୫।
ଶ୍ରୁତ୍ୱା ପରମତେଜସ୍ୱୀ ବାଲ୍ମୀକିମିଦମବ୍ରବୀତ୍ ।
ଭଗବନ୍ ଶ୍ରୋତୁମନସ ଋଷୟୋ ବ୍ରାହ୍ମଲୌକିକାଃ । ୨୬ ।
ଭବିଷ୍ୟଦୁତ୍ତରଂ ଯନ୍ମେ ଶ୍ୱୋଭୂତେ ସଂପ୍ରବର୍ତ୍ତତାମ୍ ।
ଏବଂ ବିନିଶ୍ଚୟଂ କୃତ୍ୱା ସଂପ୍ରଗୃହ୍ୟ କୁଶୀଲବୌ । ୨୭ ।

---

ରାମାୟଣର ଅବଶିଷ୍ଟ ଅଂଶ ଶୁଣ । ୨୦ । ହେ ମହାଯଶସ୍ୱୀ, ମହାତେଜସ୍ୱୀ ରାମ ! ଏହି କାବ୍ୟର ଅବଶିଷ୍ଟ ଅଂଶର ନାମ ଉତ୍ତରକାଣ୍ଡ ହେବ । ଏବେ ତୁମେ ଋଷିମାନଙ୍କ ସହିତ ବସିକରି ତାହା ଶୁଣ । ୨୧ । ଏହି ଉତ୍ତର କାଣ୍ଡକୁ ତୁମେହିଁ ଶୁଣିବା ଉଚିତ । ସୁତରାଂ ହେ ରଘୁନନ୍ଦନ ! ତୁମେ ଋଷିମାନଙ୍କ ସହିତ ଏହାକୁ ଶୁଣ" । ୨୨ । ତ୍ରିଭୁବନେଶ୍ୱର ବ୍ରହ୍ମା ଏତିକ କହି ଦେବତାମାନଙ୍କ ସହିତ ସ୍ୱର୍ଗକୁ ଚାଲିଗଲେ । ୨୩ । ସେଠାରେ ଅନ୍ୟ ଯେଉଁ ବ୍ରହ୍ମଲୋକବାସୀ ମହାତେଜସ୍ୱୀ ଋଷିମାନେ ଥିଲେ, ସେମାନେ ବ୍ରହ୍ମାଙ୍କ ଆଦେଶାନୁସାରେ ସେହିଠାରେ ରହିଲେ । ୨୪ । ସେମାନେ ରାମଙ୍କ ବିଷୟରେ ଭବିଷ୍ୟତରେ ଯାହା ହେବ, ଉତ୍ତରକାଣ୍ଡରୁ ତାହା ଶୁଣିବାପାଇଁ ଇଚ୍ଛା କରି ରହିଲେ । ଏହି ପ୍ରକାରେ ରାମ ଦେବଦେବ ବ୍ରହ୍ମାଙ୍କ ମଙ୍ଗଳମୟ ବଚନ ଶୁଣି ପରମତେଜସ୍ୱୀ ବାଲ୍ମୀକିଙ୍କୁ କହିଲେ, "ହେ ଭଗବନ୍ ! ଏହି ବ୍ରହ୍ମଲୋକବାସୀ ଋଷିମାନେ ମୋର ଭବିଷ୍ୟତ ବୃତ୍ତାନ୍ତ ଶୁଣିବାକୁ ଇଚ୍ଛା କରୁଛନ୍ତି । ୨୫-୨୬ । ମୋ ବିଷୟରେ ଭବିଷ୍ୟତରେ ଯାହା ହେବାର ଅଛି ତାହା କାଲି ସକାଳେ ଶୁଣାଯାଉ ।" ଏହିପରି ନିଶ୍ଚୟ କରି ଏବଂ କୁଶ ଓ ଲବଙ୍କୁ ସଙ୍ଗରେ

**ତଂ ଜନୌଘଂ ବିସୃଜ୍ୟାଥ ପର୍ଣଶାଲାମୁପାଗମତ୍ ।**
**ତାମେବ ଶୋଚତଃ ସୀତାଂ ସା ବ୍ୟତୀୟାୟ ଶର୍ବରୀ । ୨୮ ।**

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ରାମକୋପୋପଶମୋ ନାମ ଅଷ୍ଟନବତିତମଃ ସର୍ଗଃ ।

---

# ଏକୋନଶତତମଃ ସର୍ଗଃ

## କୌସଲ୍ୟାଦିକାଳଧର୍ମଃ

**ରଜନ୍ୟାଂ ତୁ ପ୍ରଭାତାୟାଂ ସମାନୀୟ ମହାମୁନୀନ୍ ।**
**ଗୀୟତାମବିଶଙ୍କାଭ୍ୟାଂ ରାମଃ ପୁତ୍ରାବୁବାଚ ହ । ୧ ।**
**ତତଃ ସମୁପବିଷ୍ଟେଷୁ ବ୍ରହ୍ମର୍ଷିଷୁ ମହାତ୍ମସୁ ।**
**ଭବିଷ୍ୟଦୁତ୍ତରଂ କାବ୍ୟଂ ଜଗତୁସ୍ତୌ କୁଶୀଲବୌ । ୨ ।**
**ପ୍ରବିଷ୍ଟାୟାଂ ତୁ ସୀତାୟାଂ ଭୂତଳଂ ସତ୍ୟସମ୍ପଦା ।**
**ତସ୍ୟାବସାନେ ଯଜ୍ଞସ୍ୟ ରାମଃ ପରମଦୁର୍ମନାଃ । ୩ ।**

---

ନେଇ ଏବଂ ସମବେତ ଜନତାକୁ ବିଦାୟ ଦେଇ ରାମ ବାଲ୍ମୀକଙ୍କ ପର୍ଣ୍ଣଶାଳାକୁ ଗଲେ ଏବଂ ସେଠାରେ ସୀତାଙ୍କ ବିଷୟରେ ଅନୁଶୋଚନା କରୁ କରୁ ତାଙ୍କର ସେ ରାତ୍ର ପାହିଗଲା । ୨୭-୨୮ ।

---

# ୯୯ତମ ସର୍ଗ

## (କୌଶଲ୍ୟା ପ୍ରଭୃତଙ୍କର ସ୍ୱର୍ଗପ୍ରାପ୍ତି)

ସକାଳ ହେଲକ୍ଷଣି ସମସ୍ତ ମହାମୁନଙ୍କୁ ଡକାଇ ଏକତ୍ର କରାଇ ରାମ କୁଶ ଲବଙ୍କୁ କହିଲେ, "ତୁମ୍ଭେମାନେ ନିର୍ଭୟ ହୋଇ ଭବିଷ୍ୟତ ଚରିତ୍ର ଗାନକର" । ୧ । ଅନନ୍ତର ମହାତ୍ମା ବ୍ରହ୍ମର୍ଷିମାନେ ଯଥାସ୍ଥାନରେ ବସିଗଲା ଉତ୍ତାରୁ କୁଶ ଲବ ଦୁହେଁ ଭବିଷ୍ୟତ ଘଟଣା ବର୍ଣ୍ଣନା କରାଯାଇଥିବା ଉତ୍ତରକାଣ୍ଡକୁ ଗାଇବାକୁ ଆରମ୍ଭ କଲେ । ୨ । ସତ୍ୟପ୍ରଭାବରୁ ସୀତା ପୃଥିବୀରେ ପ୍ରବେଶ କରିଯିବା ପରେ ଯଜ୍ଞ ସମାପ୍ତ ହେଲା ଏବଂ ରାମ ସୀତାଙ୍କ ବିୟୋଗରେ ଅତିଶୟ ଦୁଃଖିତ ହୋଇପଡ଼ିଲେ । ୩ ।

ଅପଶ୍ୟମାନୋ ବୈଦେହୀଂ ମେନେ ଶୂନ୍ୟମିଦଂ ଜଗତ୍ ।
ଶୋକେନ ପରମାୟସ୍ତୋ ନ ଶାନ୍ତିଂ ମନସାଗମତ୍ । ୪ ।
ବିସୃଜ୍ୟ ପାର୍ଥିବାନ୍ ସର୍ବାନ୍ ଋକ୍ଷବାନରରାକ୍ଷସାନ୍ ।
ଜନୌଘଂ ବିପ୍ରମୁଖ୍ୟାନାଂ ବିତ୍ତପୂର୍ବଂ ବିସୃଜ୍ୟ ଚ । ୫ ।
ଏବଂ ସମାପ୍ୟ ଯଜ୍ଞଂ ତୁ ବିଧିବତ୍ ସ ତୁ ରାଘବଃ ।
ତତୋ ବିସୃଜ୍ୟ ତାନ୍ ସର୍ବାନ୍ ରାମୋ ରାଜୀବଲୋଚନଃ । ୬ ।
ହୃଦି କୃତ୍ୱା ତଦା ସୀତାମଯୋଧ୍ୟାଂ ପ୍ରବିବେଶ ହ ।
ଇଷ୍ଟୟଜ୍ଞୋ ନରପତିଃ ପୁତ୍ରଦ୍ୱୟସମନ୍ୱିତଃ । ୭ ।
ନ ସୀତାୟାଃ ପରାଂ ଭାର୍ଯ୍ୟାଂ ବବ୍ରେ ସ ରଘୁନନ୍ଦନଃ ।
ଯଜ୍ଞେ ଯଜ୍ଞେ ଚ ପତ୍ନ୍ୟର୍ଥଂ ଜାନକୀ କାଞ୍ଚନୀ ଭବତ୍ । ୮ ।
ଦଶ ବର୍ଷସହସ୍ରାଣି ବାଜିମେଧାନଥାକରୋତ୍ ।
ବାଜପେୟାନ୍ ଦଶଗୁଣାଂସ୍ତଥା ବହୁସୁବର୍ଣକାନ୍ । ୯ ।
ଅଗ୍ନିଷ୍ଟୋମାତିରାତ୍ରାଭ୍ୟାଂ ଗୋସବୈଶ୍ଚ ମହାଧନୈଃ ।
ଈଜେ କ୍ରତୁଭିରନ୍ୟୈଶ୍ଚ ସ ଶ୍ରୀମାନାପ୍ତଦକ୍ଷିଣୈଃ । ୧୦ ।

---

ସୀତାଙ୍କୁ ନ ଦେଖି ସେ ଏ ସମଗ୍ର ଜଗତକୁ ଶୂନ୍ୟ ମନେକଲେ । ସେ ଶୋକରେ ଏତେ ଅଭିଭୂତ ହୋଇପଡ଼ିଲେ ଯେ ତାଙ୍କର ମନ କୌଣସିପ୍ରକାରେ ଶାନ୍ତ ହେଲା ନାହିଁ । ୪। ରାମ ସମବେତ ହୋଇଥିବା ସମସ୍ତ ରାଜା, ଋକ୍ଷ, ବାନର, ରାକ୍ଷସ, ବ୍ରାହ୍ମଣ ଏବଂ ଅନ୍ୟ ଜନସମୂହଙ୍କୁ ବିବିଧ ପ୍ରକାର ଧନ ଦେଇ ବିଦାୟ ଦେଲେ । ୫ । ଏହିପ୍ରକାରେ ପଦ୍ମଲୋଚନ ରାମ ସେହି ଯଜ୍ଞ ସମାପନ କରି ସେ ସମସ୍ତଙ୍କୁ ବିଦାୟ ଦେଲେ । ୬ । ରାଜା ଏହି ପ୍ରକାରେ ଯଜ୍ଞ ସମାପନ କରି, ପୁତ୍ର ଦୁହିଙ୍କୁ ସାଙ୍ଗରେ ଧରି ଏବଂ ସୀତାଙ୍କୁ ହୃଦୟ ମଧ୍ୟରେ ଚିନ୍ତା କରି କରି ଅଯୋଧ୍ୟାରେ ପ୍ରବେଶ କଲେ । ୭ । ରଘୁନନ୍ଦନ ରାମ ସୀତାଙ୍କୁ ଛାଡ଼ି ଆଉ କୌଣସି ସ୍ତ୍ରୀଙ୍କୁ ଭାର୍ଯ୍ୟାରୂପେ ବରଣ କଲେ ନାହିଁ । ସେ ଯେତେ ଯେତେ ଯଜ୍ଞ କଲେ, ସବୁଥିରେ ସୀତାଙ୍କର ସେହି ସୁବର୍ଣ୍ଣ ପ୍ରତିମା ଧର୍ମପତ୍ନୀର ସ୍ଥାନ ଅଧିକାର କଲା । ୮ । ଏହିପ୍ରକାରେ ସେ ଦଶ ସହସ୍ର ବର୍ଷ ପର୍ଯ୍ୟନ୍ତ ଅଶ୍ୱମେଧ ଯଜ୍ଞ କଲେ ଏବଂ ଅଶ୍ୱମେଧ ଯଜ୍ଞର ଦଶଗୁଣ ଅଧିକ ଫଳପ୍ରଦ ବାଜପେୟ ଯଜ୍ଞ ମଧ୍ୟ କଲେ । ଏହିସବୁ ଯଜ୍ଞରେ ବହୁ ସୁବର୍ଣ୍ଣ ଦାନ କରା ହୋଇଥିଲା । ୯ । ଅନନ୍ତର ଅଗ୍ନିଷ୍ଟୋମ, ଅତିରାତ୍ର, ଗୋସବ ଏବଂ ଏହାଛଡ଼ା ଆହୁରି ଅନେକ ଯଜ୍ଞ ମଧ୍ୟ ଶ୍ରୀମାନ୍ ରାମ ଅନୁଷ୍ଠାନ କଲେ । ଏହି ସମସ୍ତ ଯଜ୍ଞରେ ସେ ଦକ୍ଷିଣା ଦେବାରେ ବହୁ ଧନ ବ୍ୟୟ କଲେ ।୧୦। ଏହିପ୍ରକାରେ ମହାତ୍ମା

ଏବଂ ସ କାଳଃ ସୁମହାନ୍ ରାଜ୍ୟସ୍ଥସ୍ୟ ମହାତ୍ମନଃ ।
ଧର୍ମେ ପ୍ରବୃତ୍ତମାନସ୍ୟ ବ୍ୟତୀୟାଦ୍ରାଘବସ୍ୟ ତୁ । ୧୧ ।
ଅନୁରଜ୍ଜନ୍ତି ରାଜାନମହନ୍ୟହନି ରାଘବମ୍ ।
ଋକ୍ଷବାନରରକ୍ଷାଂସି ସ୍ଥିତା ରାମସ୍ୟ ଶାସନେ । ୧୨ ।
କାଲେ ବର୍ଷତି ପର୍ଜନ୍ୟଃ ସୁଭିକ୍ଷଂ ବିମଲା ଦିଶଃ ।
ହୃଷ୍ଟପୁଷ୍ଟଜନାକୀର୍ଣଂ ପୁରଂ ଜାନପଦାସ୍ତଥା । ୧୩ ।
ନାକାଲେ ମ୍ରିୟତେ କଶ୍ଚିନ୍ନ ବ୍ୟାଧିଃ ପ୍ରାଣିନାଂ ତଥା ।
ନାନର୍ଥୋ ବିଦ୍ୟତେ କଶ୍ଚିଦ୍ରାମେ ରାଜ୍ୟଂ ପ୍ରଶାସତି । ୧୪ ।
ଅଥ ଦୀର୍ଘସ୍ୟ କାଲସ୍ୟ ରାମମାତା ତପସ୍ୱିନୀ ।
ପୁତ୍ରପୌତ୍ରୈଃ ପରିବୃତା କାଲଧର୍ମମୁପାଗମତ୍ । ୧୫ ।
ଅନ୍ୱୟାସୁ ସୁମିତ୍ରା ଚ କୈକେୟୀ ଚ ଯଶସ୍ୱିନୀ ।
ଧର୍ମଂ କୃତ୍ୱା ବହୁବିଧଂ ତ୍ରିଦିବେ ପର୍ଯ୍ୟବସ୍ଥିତା । ୧୬ ।
ସର୍ବାଃ ପ୍ରମୁଦିତାଃ ସ୍ୱର୍ଗେ ରାଜ୍ଞା ଦଶରଥେନ ଚ ।
ସମାଗତାଃ ମହାଭାଗାଃ ସର୍ବଧର୍ମଂ ଚ ଲେଭିରେ । ୧୭ ।

---

ରାମଚନ୍ଦ୍ରଙ୍କର ଧର୍ମପୂର୍ବକ ରାଜ୍ୟପାଳନ କରିବାରେ ବହୁ ସମୟ ବିତିଗଲା ।୧୧ । ଋକ୍ଷ, ବାନର ଓ ରାକ୍ଷସମାନେ ସର୍ବଦା ରାମଙ୍କ ଆଜ୍ଞାନୁବର୍ତ୍ତୀ ହୋଇ ରହିଲେ । ଅନ୍ୟ ରାଜାମାନେ ମଧ୍ୟ ସବୁବେଳେ ରାମଙ୍କର ଅନୁରକ୍ତ ହୋଇ ରହିଥିଲେ । ୧୨ । ସେହିବେଳେ ଯଥାସମୟରେ ମେଘ ଜଳ ବୃଷ୍ଟି କରୁଥିଲା ଏବଂ ସର୍ବଦା ସୁଭିକ୍ଷ ରହିଥିଲା । ଦିଗମାନେ ସର୍ବଦା ନିର୍ମଳ ରହିଥିଲେ । ନଗର ଏବଂ ଜନପଦ-ମାନଙ୍କରେ ହୃଷ୍ଟପୁଷ୍ଟ ପ୍ରଜାମାନେ ପୂର୍ଣ୍ଣ ହୋଇ ରହିଥିଲେ । ୧୩ । ରାମ ରାଜ୍ୟଶାସନ କରୁଥିବାବେଳେ ଅକାଳରେ କାହାରି ମୃତ୍ୟୁ ହେଉ ନ ଥିଲା । ପ୍ରାଣୀମାନଙ୍କର କୌଣସି ରୋଗ ବ୍ୟାଧି ନ ଥିଲା କିମ୍ବା କୌଣସି ପ୍ରକାର ଅନର୍ଥ ଜାତ ହେଉ ନ ଥିଲା । ୧୪ । ଅନନ୍ତର ଦୀର୍ଘକାଳ ପରେ ରାମଙ୍କର ତପସ୍ୱିନୀ ମାତା କୌଶଲ୍ୟା ପୁତ୍ରପୌତ୍ରପରିବେଷ୍ଟିତ ହୋଇ କାଳଧର୍ମାନୁସାରେ ସ୍ୱର୍ଗକୁ ଗଲେ । ୧୫ । ତାଙ୍କ ପଛେ ପଛେ ଯଶସ୍ୱିନୀ ସୁମିତ୍ରା ଏବଂ କୈକେୟୀ ମଧ୍ୟ ବିବିଧ ପ୍ରକାର ଧର୍ମାଚରଣ କରି ସ୍ୱର୍ଗବାସିନୀ ହେଲେ । ୧୬ । ଏହି ସମସ୍ତ ମହାଭାଗା ରାଣୀ ଅତିଶୟ ଆନନ୍ଦିତ ହୋଇ ସ୍ୱର୍ଗରେ ରାଜା ଦଶରଥଙ୍କ ସହିତ ମିଳିଲେ ଏବଂ ନିଜ ନିଜ କୃତ

ତାସାଂ ରାମୋ ମହାଦାନଂ କାଲେ କାଲେ ପ୍ରଯଚ୍ଛତ ।
ମାତୃଣାମବଶେଷେଣ ବ୍ରାହ୍ମଣେଷୁ ତପସ୍ୱିଷୁ । ୧୮ ।
ପିତ୍ର୍ୟାଣି ବ୍ରହ୍ମରତ୍ନାନି ଯଜ୍ଞାନ୍ ପରମଦୁସ୍ତରାନ୍ ।
ଚକାର ରାମୋ ଧର୍ମାତ୍ମା ପିତୄନ୍ ଦେବାନ୍ ବିବର୍ଦ୍ଧୟନ୍ । ୧୯ ।
ଏବଂ ବର୍ଷସହସ୍ରାଣି ବହୂନ୍ୟଥ ଯଯୁଃ ସୁଖମ୍ ।
ଯଜ୍ଞୈର୍ବହୁବିଧଂ ଧର୍ମଂ ବର୍ଦ୍ଧୟାନସ୍ୟ ସର୍ବଦା । ୨୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ କୌସଲ୍ୟାଦିକାଲଧର୍ମୋ ନାମ ଏକୋନଶତତମଃ ସର୍ଗଃ ।

---

## ଶତତମଃ ସର୍ଗଃ

ଗନ୍ଧର୍ବବିଷୟବିଜୟଯାତ୍ରା

କସ୍ୟଚିତ୍ତ୍ୱଥ କାଲସ୍ୟ ଯୁଧାଜିତ୍ କେକୟୋ ନୃପଃ ।
ସ୍ୱଗୁରୁଂ ପ୍ରେଷୟାମାସ ରାଘବାୟ ମହାତ୍ମନେ । ୧ ।

---

ସମସ୍ତ ଧର୍ମର ଫଳ ଲାଭକଲେ । ୧୭ । ରାମ କୌଣସି ଭେଦ ବିଚାର ନ କରି ମାତାମାନଙ୍କର ମଙ୍ଗଳ ନିମନ୍ତେ ମଧ୍ୟେ ମଧ୍ୟେ ତପସ୍ୱୀ ଏବଂ ବ୍ରାହ୍ମଣମାନଙ୍କୁ ନାନା-ପ୍ରକାର ଦାନ ଦେଉଥିଲେ । ୧୮ । ଧର୍ମାତ୍ମା ରାମ ପିତୃଗଣ ଏବଂ ଦେବତାମାନଙ୍କ ଅଭିବୃଦ୍ଧି ନିମନ୍ତେ ବିବିଧ ରତ୍ନଦାନ ଏବଂ ଅତିଦୁସ୍ତର ଯଜ୍ଞମାନ କରୁଥିଲେ ।୧୯। ଏହିପ୍ରକାରେ ରାମ ଯଜ୍ଞାନୁଷ୍ଠାନଦ୍ୱାରା ସର୍ବଦା ଧର୍ମର ଅଭିବୃଦ୍ଧି କରି ବହୁ ସହସ୍ର ବର୍ଷ ପର୍ଯ୍ୟନ୍ତ ସୁଖରେ ରାଜ୍ୟ କଲେ । ୨୦ ।

---

## ୧୦୦ତମ ସର୍ଗ

( ଗନ୍ଧର୍ବଦେଶ ବିଜୟଯାତ୍ରା )

କିଛିକାଳ ଉତ୍ତାରୁ କେକୟ ଦେଶରେ ରାଜା ଯୁଧାଜିତ୍ ମହାତ୍ମା ରାମଚନ୍ଦ୍ରଙ୍କ ନିକଟକୁ ନିଜର ଗୁରୁଙ୍କୁ ପଠାଇଲେ । ୧ । ସେ ଗର୍ଗବଂଶରେ ଉତ୍ପନ୍ନ ଓ ମହର୍ଷି

ଗାର୍ଗ୍ୟମଙ୍ଗିରସଃ ପୁତ୍ରଂ ବ୍ରହ୍ମର୍ଷିମମିତପ୍ରଭମ୍ ।
ଦଶ ଚାଶ୍ୱସହସ୍ରାଣି ପ୍ରୀତିଦାନମନୁତ୍ତମମ୍ । ୨ ।
କମ୍ବଳାନି ଚ ରତ୍ନାନି ଚିତ୍ରବସ୍ତ୍ରମଥୋତ୍ତମମ୍ ।
ରାମାୟ ପ୍ରଦଦୌ ରାଜା ଶୁଭାନ୍ୟାଭରଣାନି ଚ । ୩ ।
ଶ୍ରୁତ୍ୱା ତୁ ରାଘବୋ ଧୀମାନ୍ ବ୍ରହ୍ମର୍ଷିଂ ଗାର୍ଗ୍ୟମାଗତମ୍ ।
ମାତୁଲସ୍ୟାଶ୍ୱପତେଃ ପ୍ରହିତଂ ତନ୍ମହଦ୍ଧନମ୍ । ୪ ।
ପ୍ରତ୍ୟୁଦ୍ଗମ୍ୟ ଚ କାକୁତ୍‌ସ୍ଥଃ କ୍ରୋଶମାତ୍ରଂ ସହାନୁଜଃ ।
ଗାର୍ଗ୍ୟଂ ସଂପୂଜୟାମାସ ଯଥା ଶକ୍ରୋ ବୃହସ୍ପତିମ୍ । ୫ ।
ତଥା ସଂପୂଜ୍ୟ ତମୃଷିଂ ତଦ୍ଧନଂ ପ୍ରତିଗୃହ୍ୟ ଚ ।
ପୃଷ୍ଟ୍ୱା ପ୍ରତିପଦଂ ସର୍ବଂ କୁଶଳଂ ମାତୁଳସ୍ୟ ଚ । ୬ ।
ଉପବିଷ୍ଟଂ ମହାଭାଗଂ ରାମଃ ପ୍ରଷ୍ଟୁଂ ପ୍ରଚକ୍ରମେ ।
କିମାହ ମାତୁଲୋ ବାକ୍ୟଂ ଯଦର୍ଥଂ ଭଗବାନିହ । ୭ ।
ପ୍ରାପ୍ତୋ ବାକ୍ୟବିଦାଂ ଶ୍ରେଷ୍ଠଃ ସାକ୍ଷାଦିବ ବୃହସ୍ପତିଃ ।
ରାମସ୍ୟ ଭାଷିତଂ ଶ୍ରୁତ୍ୱା ମହର୍ଷିଃ କାର୍ଯ୍ୟବିସ୍ତରମ୍ । ୮ ।
ବକ୍ତୁମଦ୍ଭୁତସଂକାଶଂ ରାଘବାୟୋପଚକ୍ରମେ ।
ମାତୁଲସ୍ତେ ମହାବାହୋ ବାକ୍ୟମାହ ନରର୍ଷଭଃ । ୯ ।

---

ଅଙ୍ଗିରାଙ୍କର ପୁତ୍ର ଏବଂ ମହାତେଜସ୍ୱୀ ବ୍ରହ୍ମର୍ଷି ଥିଲେ । ପ୍ରୀତିଦାନସ୍ୱରୂପ ସେ ଦଶ ସହସ୍ର ଅଶ୍ୱ, କମ୍ବଳ, ରତ୍ନଖଚିତ ବସ୍ତ୍ର ଏବଂ ସୁନ୍ଦର ସୁନ୍ଦର ଅଳଙ୍କାରମାନ ରାମଙ୍କ ନିକଟକୁ ପଠାଇଥିଲେ । ୨-୩ । ରାମଚନ୍ଦ୍ର ଯେତେବେଳେ ଶୁଣିଲେ ମହର୍ଷି ଗାର୍ଗ୍ୟ ତାଙ୍କର ମାତୁଳ ଅଶ୍ୱପତିଙ୍କ ପ୍ରେରିତ ବହୁ ଧନ ରତ୍ନ ନେଇ ଆସିଛନ୍ତି, ସେତେବେଳେ ସେ ଭାଇମାନଙ୍କ ସହିତ ସ୍ୱୟଂ ଏକ କ୍ରୋଶ ଆଗକୁ ଯାଇ, ଇନ୍ଦ୍ର ବୃହସ୍ପତିଙ୍କୁ ସ୍ୱାଗତ କଲାପରି ତାଙ୍କୁ ଅଭିବାଦନ କଲେ । ୪-୫ । ସେ ଉତ୍ତମରୂପେ ଋଷିଙ୍କର ସତ୍କାର କରି ଏବଂ ମାତୁଳଙ୍କ ପ୍ରେରିତ ଧନ ରତ୍ନ ଗ୍ରହଣ କରି ତାଙ୍କର ସର୍ବବିଧ କୁଶଳ ପଚାରିଲେ । ରାମ ଋଷିଙ୍କୁ ବସାଇ ତାଙ୍କୁ ପଚାରିଲେ, "ମାତୁଳ ମୋତେ କି ସନ୍ଦେଶ ପଠାଇଛନ୍ତି, ଯାହା ନେଇ ଆପଣ ଏଠାକୁ ଆସିଛନ୍ତି ? ଆପଣ ବାକ୍ୟବିଦ୍‌ମାନଙ୍କ ମଧ୍ୟରେ ସାକ୍ଷାତ୍ ବୃହସ୍ପତିଙ୍କ ସଦୃଶ ଅଟନ୍ତି ।" ରାମଙ୍କର ଏ କଥା ଶୁଣି ମହର୍ଷି ନିଜ ଆସିବାର ପ୍ରୟୋଜନ ବିସ୍ତାରପୂର୍ବକ ତାଙ୍କୁ କହିବାକୁ ଆରମ୍ଭ କଲେ । "ହେ ମହାବାହୋ ! ତୁମ୍ଭର ମାତୁଳ ନରଶ୍ରେଷ୍ଠ ଯୁଧାଜିତ୍ ପ୍ରୀତିପୂର୍ବକ ଏହି କଥା କହିଛନ୍ତି,

ଯୁଧାଜିତ୍ ପ୍ରୀତିସଂଯୁକ୍ତଂ ଶ୍ରୂୟତାଂ ଯଦି ରୋଚତେ ।
ଅୟଂ ଗନ୍ଧର୍ବବିଷୟଃ ଫଳମୂଳୋପଶୋଭିତଃ । ୧୦ ।
ସିନ୍ଧୋରୁଭୟତଃ ପାର୍ଶ୍ୱେ ଦେଶଃ ପରମଶୋଭନଃ ।
ତଂ ଚ ରକ୍ଷନ୍ତି ଗନ୍ଧର୍ବାଃ ସାୟୁଧା ଯୁଦ୍ଧକୋବିଦାଃ । ୧୧ ।
ଶୈଳୂଷସ୍ୟ ସୁତା ବୀର ତ୍ରିକୋଟ୍ୟୋ ବୈ ମହାବଳାଃ ।
ତାନ୍ ବିନିର୍ଜିତ୍ୟ କାକୁତ୍ସ୍ଥ ଗନ୍ଧର୍ବନଗରଂ ଶୁଭମ୍ । ୧୨ ।
ନିବେଶୟ ମହାବାହୋ ସ୍ୱପୁରେ ସୁସମାହିତେ ।
ଅନ୍ୟସ୍ୟ ନ ଗତିସ୍ତତ୍ର ଦେଶଃ ପରମଶୋଭନଃ । ୧୩ ।
ରୋଚତାଂ ତେ ମହାବାହୋ ନାହଂ ତ୍ୱାମହିତଂ ବଦେ ।
ତଚ୍ଛ୍ରୁତ୍ୱା ରାଘବଃ ପ୍ରୀତୋ ମହର୍ଷେର୍ମାତୁଳସ୍ୟ ଚ । ୧୪ ।
ଉବାଚ ବାଢ଼ମିତ୍ୟେବ ଭରତଂ ଚାନ୍ୱବୈକ୍ଷତ ।
ସୋଽବ୍ରବୀଦ୍ରାଘବଃ ପ୍ରୀତଃ ସାଞ୍ଜଳିଃ ପ୍ରଗ୍ରହୋ ଦ୍ୱିଜମ୍ । ୧୫ ।
ଇମୌ କୁମାରୌ ତଂ ଦେଶଂ ବ୍ରହ୍ମର୍ଷେ ବିଚରିଷ୍ୟତଃ ।
ଭରତସ୍ୟାତ୍ମଜୌ ବୀରୌ ତକ୍ଷଃ ପୁଷ୍କଳ ଏବ ଚ । ୧୬ ।

---

ଯଦି ତୁମ୍ଭର ମନକୁ ପାଉଛି ତେବେ ତାହା ଶୁଣ । 'ଗନ୍ଧର୍ବଦେଶ ବହୁ ଫଳମୂଳରେ ଶୋଭିତ ହୋଇ ସିନ୍ଧୁ ନଦୀର ଉଭୟ ପାର୍ଶ୍ୱରେ ଅତିଶୟ ଶୋଭା ପାଉଅଛି । ଯୁଦ୍ଧବିଶାରଦ ଶସ୍ତ୍ରଧାରୀ ଗନ୍ଧର୍ବମାନେ ସେହି ଦେଶକୁ ରକ୍ଷା କରୁଅଛନ୍ତି । ୭-୧୧ । ଏହି ମହାବଳୀ ତିନ କୋଟି ଗନ୍ଧର୍ବ ଶୈଳୂଷ ନାମକ ଗନ୍ଧର୍ବଙ୍କର ସନ୍ତାନ ଅଟନ୍ତି । ହେ କାକୁତ୍ସ୍ଥ ! ତୁମେ ସେମାନଙ୍କୁ ଯୁଦ୍ଧରେ ପରାସ୍ତ କରି ସେହି ସୁନ୍ଦର ଗନ୍ଧର୍ବ ନଗରକୁ ନିଜ ରାଜ୍ୟ ସହିତ ମିଶାଇଦିଅ । ଅତିଶୋଭମାନ ଏ ଦେଶକୁ ଜୟ କରିବାକୁ ଅନ୍ୟ କାହାରି ସାମର୍ଥ୍ୟ ନାହିଁ । ହେ ମହାବାହୋ ! ଯଦି ତୁମକୁ ଏ କଥା ପସନ୍ଦ ଆସୁଛି ତେବେ ତୁମେ ତାହା କର । ମୁଁ ତୁମକୁ କୌଣସି ଅମଙ୍ଗଳ କଥା କହୁ ନାହିଁ ।' ରାମ ମହର୍ଷିଙ୍କଠାରୁ ତାଙ୍କ ମାତୁଳଙ୍କ ସନ୍ଦେଶ ଶୁଣି ପ୍ରୀତହୋଇ କହିଲେ "ତାହାହିଁ ହେଉ ।" ଅନନ୍ତର ସେ ଭରତଙ୍କ ଆଡ଼କୁ ଚାହିଁଲେ । ରାଘବ ଅତିଶୟ ପ୍ରୀତ ହୋଇ କର ଯୋଡ଼ ସେ ବ୍ରାହ୍ମଣଙ୍କୁ ଏ କଥା କହିଲେ । ୧୨-୧୫ । ସେ କହିଲେ, "ହେ ବ୍ରହ୍ମର୍ଷେ ! ଏହି ଦୁଇ ବୀର କୁମାର ଭରତଙ୍କର ଦୁଇ ବୀରପୁତ୍ର ତକ୍ଷ ଓ ପୁଷ୍କଳ ସେ

ମାତୁଲେନ ସୁଗୁପ୍ତୌ ତୁ ଧର୍ମେଣ ସୁସମାହିତୌ ।
ଭରତଂ ଚାଗ୍ରତଃ କୃତ୍ୱା କୁମାରୌ ସବଲାନୁଗୌ । ୧୬ ।
ନିହତ୍ୟ ଗନ୍ଧର୍ବସୁତାନ୍ ଦ୍ୱେ ପୁରେ ବିଭଜିଷ୍ୟତଃ ।
ନିବେଶ୍ୟ ତେ ପୁରବରେ ଆତ୍ମଜୌ ସଂନିବେଶ୍ୟ ଚ । ୧୮ ।
ଆଗମିଷ୍ୟତି ମେ ଭୂୟଃ ସକାଶମତିଧାର୍ମିକଃ ।
ବ୍ରହ୍ମର୍ଷିମେବମୁକ୍ତ୍ୱା ତୁ ଭରତଂ ସବଲାନୁଗମ୍ । ୧୯ ।
ଆଜ୍ଞାପୟାମାସ ତଦା କୁମାରୌ ଚାଭ୍ୟଷେଚୟତ୍ ।
ନକ୍ଷତ୍ରେଣ ଚ ସୌମ୍ୟେନ ପୁରସ୍କୃତ୍ୟାଙ୍ଗିରଃସୁତମ୍ । ୨୦ ।
ଭରତଃ ସହ ସୈନ୍ୟେନ କୁମାରାଭ୍ୟାଂ ବିନିର୍ଯଯୌ ।
ସା ସେନା ଶକ୍ରଯୁକ୍ତେବ ନଗରାନ୍ନିର୍ଯଯାବଥ । ୨୧ ।
ରାଘବାନୁଗତା ଦୂରଂ ଦୁରାଧର୍ଷା ସୁରୈରପି ।
ମାଂସାଦାନି ଚ ସତ୍ତ୍ୱାନି ରକ୍ଷାଂସି ସୁମହାନ୍ତି ଚ । ୨୨ ।
ଅନୁଜଗ୍ମୁର୍ହି ଭରତଂ ରୁଧିରସ୍ୟ ପିପାସୟା ।
ଭୂତଗ୍ରାମାଶ୍ଚ ବହବୋ ମାଂସଭକ୍ଷାଃ ସୁଦାରୁଣାଃ । ୨୩ ।

---

ଦେଶକୁ ଯାଇ ସେଠାରେ ରାଜତ୍ୱ କରିବେ । ୧୬ । ସେ ଦୁହେଁ ମାତୁଳ ଯୁଧାଜିତଙ୍କ ଦ୍ୱାରା ସୁରକ୍ଷିତ ହୋଇ ଓ କର୍ତ୍ତବ୍ୟରେ ସାବଧାନ ରହି ଏବଂ ଭରତଙ୍କୁ ଅଗ୍ରଣୀ କରି ସୈନ୍ୟ ଓ ଅନୁଚରମାନଙ୍କ ସହିତ ସେଠାକୁ ଯିବେ । ୧୭ । ସେଠାରେ ଗନ୍ଧର୍ବ ସୁତମାନଙ୍କୁ ନିହତ କରି ଏବଂ ତାହାକୁ ଦୁଇଟି ନଗରରେ ବିଭକ୍ତ କରି, ଦୁଇ ପୁତ୍ରଙ୍କ ସେଠାରେ ରଜା କରାଇ, ଅତିଧାର୍ମିକ ଭରତ ପୁଣି ମୋ ନିକଟକୁ ଫେରି ଆସିବେ ।” ରାମ ବ୍ରହ୍ମର୍ଷିଙ୍କୁ ଏହିପରି କହି ସୈନ୍ୟ ଏବଂ ଅନୁଚରମାନଙ୍କ ସହିତ ଭରତଙ୍କୁ ସେ ଦେଶକୁ ଯିବାକୁ ଆଜ୍ଞା ଦେଲେ ଏବଂ ଦୁଇ ରାଜକୁମାରଙ୍କୁ ଶୁଭ ନକ୍ଷତ୍ରରେ ଅଭିଷିକ୍ତ କରାଇଲେ ଏବଂ ଅଙ୍ଗିରାପୁତ୍ର ଗାର୍ଗ୍ୟଙ୍କୁ ଉପଯୁକ୍ତ ପୁରସ୍କାର ଦେଲେ । ୧୮-୨୦ । ଅନନ୍ତର ଭରତ ସେ ଦୁଇ କୁମାରଙ୍କୁ ନେଇ ସୈନ୍ୟମାନଙ୍କ ସହିତ ଯାତ୍ରା କଲେ । ଇନ୍ଦ୍ରଙ୍କ ସେନାସଦୃଶ ସେହି ସେନା ଅଯୋଧ୍ୟା ନଗରରୁ ବାହାରିଲେ । ୨୧ । ଦେବତାମାନଙ୍କ ଦ୍ୱାରା ମଧ୍ୟ ଦୁର୍ଜେୟ ସେହି ସେନା ଭରତଙ୍କ ଅନୁଗମନ କରି କିଛିଦୂର ଗଲା ଉତ୍ତାରୁ ମାଂସଭକ୍ଷୀ ପ୍ରାଣୀମାନେ ଏବଂ ବଡ଼ ବଡ଼ ରାକ୍ଷସମାନେ ମଧ୍ୟ ରକ୍ତ ପାନ କରିବା ଅଭିଳାଷରେ ଭରତଙ୍କର ଅନୁଗମନ କଲେ । ଆହୁରି

ଗନ୍ଧର୍ବପୁତ୍ରମାଂସାନି ଭୋକ୍ତୁକାମାଃ ସହସ୍ରଶଃ ।
ସିଂହବ୍ୟାଘ୍ରବରାହାଣାଂ ଖେଚରାଣାଂ ଚ ପକ୍ଷିଣାମ୍ । ୨୪ ।
ବହୂନି ବୈ ସହସ୍ରାଣି ସେନାୟା ୟୟୁରଗ୍ରତଃ ।
ଅଧ୍ୟର୍ଧମାସମୁଷିତା ପଥି ସେନା ନିରାମୟା ।
ହୃଷ୍ଟପୁଷ୍ଟଜନାକୀର୍ଣା କେକୟଂ ସମୁପାଗମତ୍ । ୨୫ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ଗନ୍ଧର୍ବବିଷୟବିଜୟଯାତ୍ରା ନାମ ଶତତମଃ ସର୍ଗଃ ।

---

# ଏକୋତ୍ତରଶତତମଃ ସର୍ଗଃ

## ତକ୍ଷପୁଷ୍କଲନିବେଶଃ

ଶ୍ରୁତ୍ୱା ସେନାପତିଂ ପ୍ରାପ୍ତଂ ଭରତଂ କେକୟାଧିପଃ ।
ୟୁଧାଜିଦ୍ ଗାର୍ଗ୍ୟସହିତଂ ପରାଂ ପ୍ରୀତିମୁପାଗମତ୍ । ୧ ।
ସ ନିର୍ୟୟୌ ଜନୌଘେନ ମହତା କେକୟାଧିପଃ ।
ତ୍ୱରମାଣୋଽଭିଚକ୍ରାମ ଗନ୍ଧର୍ବାନ୍ କାମରୂପିଣଃ । ୨ ।

---

ବହୁସଂଖ୍ୟକ ମାଂସଭକ୍ଷୀ ଦାରୁଣ ପ୍ରାଣୀ ମଧ୍ୟ ଗନ୍ଧର୍ବପୁତ୍ରମାନଙ୍କର ମାଂସ ଖାଇବା ଅଭିଳାଷରେ ସହସ୍ର ସଂଖ୍ୟାରେ ଗଲେ । ବହୁ ସହସ୍ର ସିଂହ, ବ୍ୟାଘ୍ର, ବରାହ ଏବଂ ଆକାଶଗାମୀ ପକ୍ଷୀ ମଧ୍ୟ ସେହି ସେନାର ଆଗେ ଆଗେ ଗଲେ । ସେହି ସେନା ନିରୋଗ ହୋଇ, ପଥରେ ଦେଢ଼ମାସ ପର୍ଯ୍ୟନ୍ତ ରହି ରହି ହୃଷ୍ଟପୁଷ୍ଟ ଜନପୂର୍ଣ୍ଣ କେକୟ ଦେଶରେ ଯାଇ ପହଞ୍ଚିଲେ । ୨୨-୨୭ ।

---

## ୧୦୧ତମ ସର୍ଗ

### ( ତକ୍ଷ ଓ ପୁଷ୍କଲଙ୍କର ରାଜ୍ୟସ୍ଥାପନ )

କେକୟ ଦେଶାଧିପତି ୟୁଧାଜିତ୍ ଯେତେବେଳେ ଶୁଣିଲେ, ସେନାପତି ଭରତ ତାଙ୍କର ଗୁରୁ ଗାର୍ଗ୍ୟଙ୍କ ସହିତ ଆସି ପହଞ୍ଚିଛନ୍ତି, ସେତେବେଳେ ସେ ଅତିଶୟ ପ୍ରୀତି ଲାଭକଲେ । ୧ । କେକୟ ରାଜା ବହୁସଂଖ୍ୟକ ସୈନ୍ୟ ନେଇ ଗନ୍ଧର୍ବ

ଭରତଶ୍ଚ ଯୁଧାଜିଚ୍ଚ ସମେତୌ ଲଘୁବିକ୍ରମୌ ।
ଗନ୍ଧର୍ବନଗରଂ ପ୍ରାପ୍ତୌ ସବଲୌ ସପଦାନୁଗୌ । ୩ ।
ଶ୍ରୁତ୍ୱା ତୁ ଭରତଂ ପ୍ରାପ୍ତଂ ଗନ୍ଧର୍ବାସ୍ତେ ସମାଗତାଃ ।
ଯୋଦ୍ଧୁକାମା ମହାବୀର୍ଯା ବ୍ୟନଦନ୍ ତେ ସମନ୍ତତଃ । ୪ ।
ତତଃ ସମଭବଦ୍‌ଯୁଦ୍ଧଂ ତୁମୁଳଂ ଲୋମହର୍ଷଣମ୍ ।
ସପ୍ତରାତ୍ରଂ ମହାଭୀମଂ ନ ଚାନ୍ୟତରୟୋର୍ଜୟଃ । ୫ ।
ଖଡ୍ଗଶକ୍ତିଧନୁର୍ଗ୍ରାହାଃ ନଦ୍ୟଃ ଶୋଣିତସଂସ୍ରବାଃ ।
ନୃକଳେବରବାହିନ୍ୟଃ ପ୍ରବୃତ୍ତାଃ ସର୍ବତୋ ଦିଶମ୍ । ୬ ।
ତତୋ ରାମାନୁଜଃ କ୍ରୁଦ୍ଧଃ କାଳସ୍ୟାସ୍ତ୍ରଂ ସୁଦାରୁଣମ୍ ।
ସମ୍ବର୍ତ୍ତଂ ନାମ ଭରତୋ ଗନ୍ଧର୍ବେଷ୍ୱଭ୍ୟଚୋଦୟତ୍ । ୭ ।
ତେ ବଦ୍ଧାଃ କାଳପାଶେନ ସମ୍ବର୍ତ୍ତେନ ବିଦାରିତାଃ ।
କ୍ଷଣେନାଭିହତାସ୍ତେନ ତିସ୍ରଃ କୋଟ୍ୟୋ ମହାତ୍ମନାମ୍ । ୮ ।
ତଂ ଘାତଂ ଘୋରସଂକାଶଂ ନ ସ୍ମରନ୍ତି ଦିବୌକସଃ ।
ନିମେଷାନ୍ତରମାତ୍ରେଣ ତାଦୃଶାନାଂ ମହାତ୍ମନାମ୍ । ୯ ।

---

ଦେଶ ଜୟ କରିବା ପାଇଁ ଅଭିସରଣ କଲେ । ୨ । ମହାପରାକ୍ରମୀ ଭରତ ଏବଂ ଯୁଧାଜିତ୍ ଦୁହେଁ ମିଶି ସୈନ୍ୟ ଓ ଅନୁଚରମାନଙ୍କ ସହ ଗନ୍ଧର୍ବ ନଗରରେ କ୍ଷିପ୍ରଗତିରେ ଯାଇ ପହଞ୍ଚିଲେ । ୩ । ଭରତ ଆସୁଥିବାର ଶୁଣି ମହାବଳୀ ଗନ୍ଧର୍ବମାନେ ଏକତ୍ର ହୋଇ ଯୁଦ୍ଧ କରିବା ଅଭିଳାଷରେ ଚାରିଆଡ଼େ ଗର୍ଜନ କରିବାକୁ ଲାଗିଲେ । ୪ । ଅନନ୍ତର ସାତ ଦିନ ଓ ସାତ ରାତି ଅତିଭୟଙ୍କର ଓ ତୁମୁଳ ଯୁଦ୍ଧ ଲାଗିଲା; ମାତ୍ର କେହି କାହାକୁ ଜୟ କରିପାରିଲେ ନାହିଁ । ୫ । ସେହି ଯୁଦ୍ଧରେ ଚାରିଆଡ଼େ ରକ୍ତନଦୀ ବହିବାକୁ ଲାଗିଲା । ସେହି ରକ୍ତନଦୀରେ ଖଡ୍‌ଗ, ଶକ୍ତି ଓ ଧନୁଃସବୁ ମକର ସଦୃଶ ଦେଖାଯାଉଥିଲା ଏବଂ ସେହି ନଦୀରେ ମନୁଷ୍ୟ ଶବମାନ ଚାରିଆଡ଼କୁ ବୋହିଯାଉଥିଲା ।୬। ତତ୍ପରେ ରାମଙ୍କ କନିଷ୍ଠ ଭ୍ରାତା ଭରତ ଅତିଶୟ କ୍ରୁଦ୍ଧ ହୋଇ ସଂବର୍ତ୍ତ ନାମକ କାଳାସ୍ତ୍ରକୁ ଗନ୍ଧର୍ବମାନଙ୍କ ଉପରେ ପ୍ରୟୋଗ କଲେ । ୭ । ଏହା ଫଳରେ ସେହି ଗନ୍ଧର୍ବମାନେ କାଳପାଶରେ ବନ୍ଧା ହୋଇ ଏବଂ ସମ୍ବର୍ତ୍ତାସ୍ତ୍ରରେ ବିଦୀର୍ଣ୍ଣ ହୋଇ ମୁହୂର୍ତ୍ତକ ମଧ୍ୟରେ ତିନକୋଟି ମହାତ୍ମା ଗନ୍ଧର୍ବ ନିହତ ହେଲେ ।୮। ଏପରି ଘୋର ସଂଗ୍ରାମ ଘଟିଲା, ଯହିଁରେ କ୍ଷଣକେ ମଧ୍ୟରେ ତାଦୃଶ ମହାବଳୀ ଗନ୍ଧର୍ବମାନଙ୍କର ସଂହାର ହୋଇଗଲା । ଏପରି ସଂହାର ସ୍ୱର୍ଗବାସୀ ଦେବତାମାନେ କି କେବେ ସ୍ମରଣ କରି

ହତେଷୁ ତେଷୁ ସର୍ବେଷୁ ଭରତଃ କୈକୟୀସୁତଃ ।
ନିବେଶୟାମାସ ତଦା ସମୃଦ୍ଧେ ଦ୍ୱେ ପୁରୋତ୍ତମେ । ୧୦ ।
ତକ୍ଷଂ ତକ୍ଷଶିଳାୟାଂ ତୁ ପୁଷ୍କଳଂ ପୁଷ୍କଳାବତେ ।
ଗନ୍ଧର୍ବଦେଶେ ରୁଚିରେ ଗାନ୍ଧାରବିଷୟେ ଚ ସଃ । ୧୧ ।
ଧନରତ୍ନୌଘସଂପୂର୍ଣ୍ଣେ କାନନୈରୁପଶୋଭିତେ ।
ଅନ୍ୟୋନ୍ୟସଂଘର୍ଷକୃତେ ସ୍ପର୍ଧୟା ଗୁଣବିସ୍ତରୈଃ । ୧୨ ।
ଉଭେ ସୁରୁଚିରପ୍ରଖ୍ୟେ ବ୍ୟବହାରୈରକଲ୍ମଷୈଃ ।
ଉଦ୍ୟାନଯାନସଂପୂର୍ଣ୍ଣେ ସୁବିଭକ୍ତାନ୍ତରାପଣେ । ୧୩ ।
ଉଭେ ପୁରବରେ ରମ୍ୟେ ବିସ୍ତରୈରୁପଶୋଭିତେ ।
ଗୃହମୁଖ୍ୟୈଃ ସୁରୁଚିରୈର୍ବିମାନସମବର୍ଣ୍ଣିଭିଃ । ୧୪ ।
ଶୋଭିତେ ଶୋଭନୀୟୈଶ୍ଚ ଦେବାୟତନବିସ୍ତରୈଃ ।
ତାଳୈସ୍ତମାଳୈସ୍ତିଳକୈର୍ବକୁଳୈରୁପଶୋଭିତେ । ୧୫ ।
ନିବେଶ୍ୟ ପଞ୍ଚଭିର୍ବର୍ଷୈର୍ଭରତୋ ରାଘବାନୁଜଃ ।
ପୁନରାୟାନ୍ମହାବାହୁରଯୋଧ୍ୟାଂ କୈକୟୀସୁତଃ । ୧୬ ।

---

ନ ଥିଲେ । ୯ । ଗନ୍ଧର୍ବମାନେ ଏପରି ନିହତ ହୋଇଯିବା ପରେ କୈକେୟୀ ପୁତ୍ର ଭରତ ସେଠାରେ ଦୁଇଟି ସମୃଦ୍ଧିଶାଳୀ ଉତ୍ତମ ନଗର ସ୍ଥାପନ କଲେ । ୧୦ । ଏଥିମଧ୍ୟରୁ ଭରତ ଗୋଟିକର ନାମ ତକ୍ଷଶିଳା ଓ ଅପରଟିର ନାମ ପୁଷ୍କଳାବତ ରଖିଲେ । ତକ୍ଷଶିଳା ନଗରରେ ତକ୍ଷଙ୍କୁ ଏବଂ ପୁଷ୍କଳାବତ ନଗରରେ ପୁଷ୍କଳଙ୍କୁ ରାଜା କରାଇଲେ । ୧୧ । ସେ ଦୁଇ ନଗର ଧନ ରତ୍ନରେ ପୂର୍ଣ୍ଣ ହୋଇଥିଲା ଏବଂ ବନ ଉପବନ ଦ୍ୱାରା ସୁଶୋଭିତ ହୋଇଥିଲା । ସେହି ଦୁଇ ନଗର ଗୁଣରେ ପରସ୍ପର ପ୍ରତିଦ୍ୱନ୍ଦ୍ୱିତାରେ ଏକ ଅନ୍ୟକୁ ଜିଣିବାକୁ ସ୍ପର୍ଦ୍ଧା କରୁଥିଲେ । ୧୨ । ସେହି ଦୁଇ ସୁନ୍ଦର ନଗରରେ ଧର୍ମ ଏବଂ ନିଷ୍ପାପ ବ୍ୟବହାର ହେଉଥିଲା ଏବଂ ଲୋକଙ୍କ ବ୍ୟବହାରରେ ସତ୍ୟତା ରହିଥିଲା । ସେଥିରେ ଅନେକ ଉଦ୍ୟାନ ଓ ବହୁସଂଖ୍ୟକ ଯାନ ରହିଥିଲା ; ତହିଁର ରାଜପଥ ଓ ଦୋକାନ ବଜାରଗୁଡ଼ିକ ସୁନ୍ଦରଭାବରେ ଅଲଗା ଅଲଗା ସୁସଜ୍ଜିତ ହୋଇ ରହିଥିଲା । ୧୩ । ସେହି ଦୁଇ ରମଣୀୟ ନଗରରେ ପ୍ରଶସ୍ତ ସଡ଼କମାନ ଏବଂ ସୁନ୍ଦର ଏକାବର୍ଣ୍ଣର ବିମାନଯୁକ୍ତ ବିଶାଳ ଗୃହମାନ ସୁଶୋଭିତ ହେଉଥିଲା । ୧୪ । ବଡ଼ ବଡ଼ ସୁନ୍ଦର ଦେବମନ୍ଦିରମାନଙ୍କଦ୍ୱାରା ତାହା ଶୋଭା ପାଉଥିଲା ଓ ତାଳ, ତମାଳ, ତିଳକ, ବକୁଳ ଆଦି ବୃକ୍ଷଦ୍ୱାରା ମଧ୍ୟ ସୁଶୋଭିତ ହୋଇଥିଲା । ୧୫ । ଏହି ପ୍ରକାରେ ରାମଙ୍କର କନିଷ୍ଠ ଭ୍ରାତା ମହାବାହୁ ଭରତ ପାଞ୍ଚବର୍ଷ ମଧ୍ୟରେ ନିଜର ଦୁଇ ପୁତ୍ରଙ୍କୁ ସେ ଦୁଇ

**ସୋଽଭିବାଦ୍ୟ ମହାତ୍ମାନଂ ସାକ୍ଷାଦ୍ଧର୍ମମିବାପରମ୍ ।**
**ରାଘବଂ ଭରତଃ ଶ୍ରୀମାନ୍ ବ୍ରହ୍ମାଣମିବବାସବଃ । ୧୭ ।**
**ଶଶଂସ ଚ ଯଥାବୃତ୍ତଂ ଗନ୍ଧର୍ବବଧମୁତ୍ତମମ୍ ।**
**ନିବେଶନଂ ଚ ଦେଶସ୍ୟ ଶ୍ରୁତ୍ୱା ପ୍ରୀତୋଽସ୍ୟ ରାଘବଃ । ୧୮ ।**

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ତକ୍ଷପୁଷ୍କଳନିବେଶୋ ନାମ ଏକୋତ୍ତରଶତତମଃ ସର୍ଗଃ ।

---

# ଦ୍ୱ୍ୟୁତ୍ତରଶତତମଃ ସର୍ଗଃ

### ଅଙ୍ଗଦଚନ୍ଦ୍ରକେତୁନିବେଶଃ

**ତଚ୍ଛ୍ରୁତ୍ୱା ହର୍ଷମାପେଦେ ରାଘବୋ ଭ୍ରାତୃଭିଃ ସହ ।**
**ବାକ୍ୟଂ ଚାଦ୍ଭୁତସଂକାଶଂ ତଦା ପ୍ରୋବାଚ ଲକ୍ଷ୍ମଣମ୍ । ୧ ।**
**ଇମୌ କୁମାରୌ ସୌମିତ୍ରେ ତବ ଧର୍ମବିଶାରଦୌ ।**
**ଅଙ୍ଗଦଶ୍ଚନ୍ଦ୍ରକେତୁଶ୍ଚ ରାଜ୍ୟାର୍ଥେ ଦୃଢ଼ବିକ୍ରମୌ । ୨ ।**

---

ରାଜ୍ୟରେ ପ୍ରତିଷ୍ଠିତ କରାଇ ପୁଣି ଅଯୋଧ୍ୟାକୁ ଫେରି ଆସିଲେ । ୧୬ । ଭରତ ମହାତ୍ମା ମହାବଳୀ ରାମଙ୍କୁ, ଇନ୍ଦ୍ର ବ୍ରହ୍ମାଙ୍କୁ ପ୍ରଣାମ କଲାପରି ପ୍ରଣାମ କଲେ । ୧୭ । ଭରତ ରାମଚନ୍ଦ୍ରଙ୍କୁ ଗନ୍ଧର୍ବମାନଙ୍କର ବଧ ଏବଂ ସେହି ଦେଶରେ ଦୁଇ ନଗର-ସ୍ଥାପନର ବୃତ୍ତାନ୍ତ କହିଲେ । ତାହା ଶୁଣି ରାମ ତାଙ୍କ ଉପରେ ଅତିଶୟ ପ୍ରୀତ ହେଲେ । ୧୮ ।

---

## ୧୦୨ତମ ସର୍ଗ

( ଅଙ୍ଗଦ ଓ ଚନ୍ଦ୍ରକେତୁଙ୍କୁ ରାଜ୍ୟପ୍ରଦାନ )

ରାମ ଭରତଙ୍କ କଥା ଶୁଣି ଭାଇମାନଙ୍କ ସହିତ ହର୍ଷ ଲାଭ କଲେ ଏବଂ ଏହି ଅଦ୍ଭୁତ ବଚନ ଲକ୍ଷ୍ମଣଙ୍କୁ କହିଲେ । ୧ । "ହେ ଲକ୍ଷ୍ମଣ ! ଏହି ଯେ ତୁମ୍ଭର ଅଙ୍ଗଦ ଓ ଚନ୍ଦ୍ରକେତୁ ଦୁଇ ପୁତ୍ର ଅଛନ୍ତି, ସେ ଦୁହେଁ ଧର୍ମଜ୍ଞ । ସେମାନଙ୍କଠାରେ ଏତେ ପରାକ୍ରମ

ଇମୌ ରାଜ୍ୟେଽଭିଷେକ୍ଷ୍ୟାମି ଦେଶଂ ସାଧୁ ବିଧୀୟତାମ୍ ।
ରମଣୀୟୋ ହ୍ୟସଂବାଧୋ ରମେତାଂ ଯତ୍ର ଧନ୍ୱିନୌ । ୩ ।
ନ ରାଜ୍ଞା ଯତ୍ର ପୀଡ଼ା ସ୍ୟାନ୍ନାଶ୍ରମାଣାଂ ବିନାଶନମ୍ ।
ସ ଦେଶୋ ଦୃଶ୍ୟତେ ସୌମ୍ୟ ନାପରାଧ୍ୟାମହେ ଯଥା । ୪ ।
ତଥୋକ୍ତବତି ରାମେ ତୁ ଭରତଃ ପ୍ରତ୍ୟୁବାଚ ହ ।
ଅୟଂ କାରୁପଥୋ ଦେଶୋ ରମଣୀୟୋ ନିରାମୟଃ । ୫ ।
ନିବେଶ୍ୟତାଂ ତତ୍ର ପୁରମଙ୍ଗଦସ୍ୟ ମହାତ୍ମନଃ ।
ଚନ୍ଦ୍ରକେତୋଃ ସୁରୁଚିରଂ ଚନ୍ଦ୍ରକାନ୍ତଂ ନିରାମୟମ୍ । ୬ ।
ତଦ୍‌ବାକ୍ୟଂ ଭରତେନୋକ୍ତଂ ପ୍ରତିଜଗ୍ରାହ ରାଘବଃ ।
ତଂ ଚ କୃତ୍ୱା ବଶେ ଦେଶମଙ୍ଗଦସ୍ୟ ନ୍ୟବେଶୟତ୍ । ୭
ଅଙ୍ଗଦୀୟା ପୁରୀ ରମ୍ୟା ହ୍ୟଙ୍ଗଦସ୍ୟ ନିବେଶିତା ।
ରମଣୀୟା ସୁଗୁପ୍ତା ଚ ରାମେଣାକ୍ଲିଷ୍ଟକର୍ମଣା । ୮ ।
ଚନ୍ଦ୍ରକେତୋସ୍ତୁ ମଲ୍ଲସ୍ୟ ମଲ୍ଲଭୂମ୍ୟାଂ ନିବେଶିତା ।
ଚନ୍ଦ୍ରକାନ୍ତେତି ବିଖ୍ୟାତା ଦିବ୍ୟା ସ୍ୱର୍ଗପୁରୀ ଯଥା । ୯ ।

---

ଅଛନ୍ତି ଯେ ସେମାନେ ରାଜ୍ୟଶାସନ କରିପାରିବେ । ୨ । ମୋର ଇଚ୍ଛା ଯେ ଏମାନଙ୍କୁ କୌଣସି ଦେଶର ରାଜ୍ୟରେ ଅଭିଷିକ୍ତ କରାହେଉ; ସୁତରାଂ ଏପରି ଦେଶ ଖୋଜ, ଯାହା ରମଣୀୟ ଓ ନିରୁପଦ୍ରବ ହେବ ଏବଂ ସେଠାରେ ଏ ଦୁଇ ଧନୁର୍ଦ୍ଧାରୀ ଆନନ୍ଦରେ ରହିବେ । ୩ । ସେ ଦେଶ ଏପରି ହେବ, ଯେଉଁଠାରେ ଅନ୍ୟ କୌଣସି ରାଜାର ଭୟ ନ ଥିବ ଏବଂ ଆଶ୍ରମମାନଙ୍କର ବିନାଶ ହେବ ନାହିଁ । ହେ ସୌମ୍ୟ ! ତୁମେ ଏପରି କୌଣସି ଦେଶ ଖୋଜ, ଯେପରିକି ଆମେ ଅପରାଧୀ ବୋଲି ଅଭିଯୁକ୍ତ ନ ହେବା" । ୪ । ରାମ ଏପରି କହିବା ପରେ ଭରତ କହିଲେ, "ହେ ମହାରାଜ ! କାରୁପଥ ନାମକ ଦେଶ ଅତିଶୟ ରମଣୀୟ ଏବଂ ସବୁ ପ୍ରକାର ଆପଦରହିତ । ୫ । ସେହି ରାଜ୍ୟକୁ ତୁମେ ଅଙ୍ଗଦକୁ ଏବଂ ନିରାପଦ ଚନ୍ଦ୍ରକାନ୍ତ ନଗରର ରାଜତ୍ୱ ଚନ୍ଦ୍ରକେତୁକୁ ଦିଅନ୍ତୁ" । ୬ । ରାମ ଭରତଙ୍କ କଥାକୁ ଗ୍ରହଣ କରି ସେ ଦେଶକୁ ନିଜର ବଶୀଭୂତ କରି ସେଠାରେ ଅଙ୍ଗଦଙ୍କୁ ଅଭିଷିକ୍ତ କଲେ । ୭ । ଅକ୍ଲିଷ୍ଟକର୍ମା ରାମ ରମଣୀୟ ଅଙ୍ଗଦୀୟା ନାମକ ପୁରୀକୁ ଅଙ୍ଗଦଙ୍କୁ ଦେଲେ ଏବଂ ସେହି ପୁରୀର ରକ୍ଷାର ଉତ୍ତମ ବ୍ୟବସ୍ଥା କଲେ । ୮ । ରାମ ମଲ୍ଲଭୂମିରେ ସ୍ୱର୍ଗପୁରୀ ସଦୃଶ ଚନ୍ଦ୍ରକାନ୍ତା ନାମକ ଏକ ନଗରୀ ବସାଇ ସେହି ରାଜ୍ୟକୁ ବଳବାନ୍ ମଲ୍ଲ ଚନ୍ଦ୍ରକେତୁଙ୍କୁ ଦେଲେ । ୯ ।

ତତୋ ରାମଃ ପରାଂ ପ୍ରୀତିଂ ଲକ୍ଷ୍ମଣୋ ଭରତସ୍ତଥା ।
ଯୟୁର୍ଯୁଦ୍ଧେ ଦୁରାଧର୍ଷା ଅଭିଷେକଂ ଚ ଚକ୍ରିରେ । ୧୦ ।
ଅଭିଷିଚ୍ୟ କୁମାରୌ ସ ପ୍ରସ୍ଥାପୟତ୍ତ ରାଘବଃ ।
ଅଙ୍ଗଦଂ ପଶ୍ଚିମାଂ ଭୂମିଂ ଚନ୍ଦ୍ରକେତୁମୁଦଙ୍ମୁଖମ୍ । ୧୧ ।
ଅଙ୍ଗଦଂ ତ୍ୱପି ସୌମିତ୍ରିର୍ଲକ୍ଷ୍ମଣୋଽନ୍ୱଜଗାମ ହ ।
ଚନ୍ଦ୍ରକେତୋସ୍ତୁ ଭରତଃ ପାର୍ଷ୍ଣିଗ୍ରାହୋ ବଭୂବ ହ । ୧୨ ।
ଲକ୍ଷ୍ମଣସ୍ତ୍ୱଙ୍ଗଦୀୟାୟାଂ ସଂବତ୍ସରମଥୋଷିତଃ ।
ପୁତ୍ରେ ସ୍ଥିତେ ଦୁରାଧର୍ଷେ ହ୍ୟଯୋଧ୍ୟାଂ ପୁନରାଗମତ୍ । ୧୩ ।
ଭରତୋଽପି ତଥୈବୋଷ୍ୟ ସଂବତ୍ସରମତୋଽଧିକମ୍ ।
ଅଯୋଧ୍ୟାଂ ପୁନରାଗମ୍ୟ ରାମପାଦାବୁପାସ୍ତ ସଃ । ୧୪ ।
ଉଭୌ ସୌମିତ୍ରିଭରତୌ ରାମପାଦାବନୁବ୍ରତୌ ।
କାଲଂ ଗତମପି ସ୍ନେହାନ୍ନ ଜଜ୍ଞାତେଽତିଧାର୍ମିକୌ । ୧୫ ।
ଏବଂ ବର୍ଷସହସ୍ରାଣି ଦଶ ତେଷାଂ ଯୟୁସ୍ତଦା ।
ଧର୍ମେ ପ୍ରଯୁକ୍ତମାନାନାଂ ପୌରକାର୍ଯ୍ୟେଷୁ ନିତ୍ୟଦା । ୧୬ ।

---

ତଦନନ୍ତର ଏ ସମସ୍ତ ବ୍ୟବସ୍ଥା କରି ଦୁରାଧର୍ଷ ରାମ, ଭରତ ଓ ଲକ୍ଷ୍ମଣ ଅତିଶୟ ଆନନ୍ଦିତ ହୋଇ କୁମାରମାନଙ୍କୁ ଅଭିଷିକ୍ତ କଲେ । ୧୦ । ସେହି ଦୁଇ କୁମାରଙ୍କୁ ରାଜ୍ୟରେ ଅଭିଷିକ୍ତ କରାଇ ସାବଧାନତା ସହକାରେ ଅଙ୍ଗଦଙ୍କୁ ପଶ୍ଚିମଦେଶ ନଗରୀକୁ ଏବଂ ଚନ୍ଦ୍ରକେତୁଙ୍କୁ ଉତ୍ତର ଦିଗର ନଗରୀକୁ ପଠାଇଦେଲେ । ୧୧ । ଅଙ୍ଗଦଙ୍କ ସଙ୍ଗରେ ଲକ୍ଷ୍ମଣ ଓ ଚନ୍ଦ୍ରକେତୁଙ୍କ ସଙ୍ଗରେ ଭରତ ସେ ଦୁହିଁଙ୍କୁ ସହାୟତା କରିବା ପାଇଁ ଗଲେ । ୧୨ । ଅଙ୍ଗଦଙ୍କୁ ଅଙ୍ଗଦୀୟା ପୁରୀରେ ନିଯୁକ୍ତ କରି ଲକ୍ଷ୍ମଣ ବର୍ଷେ ପର୍ଯ୍ୟନ୍ତ ସେଠାରେ ରହି ଅଯୋଧ୍ୟାକୁ ଫେରି ଆସିଲେ । ୧୩ । ସେହିପ୍ରକାରେ ଭରତ ମଧ୍ୟ ବର୍ଷେ କିମ୍ବା ତାଠାରୁ ଅଧିକ କାଳ ଚନ୍ଦ୍ରକେତୁଙ୍କ ପାଖରେ ରହି ପୁଣି ଅଯୋଧ୍ୟାକୁ ଫେରିଆସି ରାମଙ୍କର ଚରଣସେବା କଲେ । ୧୪ । ସେ ଦୁଇ ମହାତ୍ମା ଧାର୍ମିକ ଭରତ ଓ ଲକ୍ଷ୍ମଣ ରାମଙ୍କର ସେବା କରୁଥିଲେ । ସ୍ନେହ-ପୂର୍ବକ ରହିଥିବାରୁ ବହୁତ ସମୟ ବିତିଗଲେ ମଧ୍ୟ ସେହି ଅତିଧାର୍ମିକମାନଙ୍କୁ କିଛି ଜଣାପଡ଼ିଲା ନାହିଁ । ୧୫ । ଏହିପ୍ରକାରେ ଧର୍ମପୂର୍ବକ ପ୍ରତିଦିନ ପ୍ରଜାପାଳନ କରୁକରୁ ସେମାନଙ୍କର ଦଶ ହଜାର ବର୍ଷ ବିତିଗଲା । ୧୬ । ଧନଧାନ୍ୟରେ ପୂର୍ଣ୍ଣ

ବହୁଂତ୍ୟ କାଳଂ ପରିପୂର୍ଣମାନସାଃ
ଶ୍ରିୟା ବୃତା ଧର୍ମପୁରେ ସୁସଂସ୍ଥିତାଃ ।
ଜ୍ୱଳଃ ସମିଦ୍ଧା ଇବ ଦୀପ୍ତତେଜସୋ
ମହାଧ୍ୱରେ ସାଧୁ ହୁତାସ୍ତ୍ରୟୋଽଗ୍ନୟଃ । ୧୭ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତ୍ସହସ୍ରିକାୟାଂ
ସଂହିତାୟାଂ ଉତ୍ତରକାଣ୍ଡେ ଅଙ୍ଗଦଚନ୍ଦ୍ରକେତୁନିବେଶୋ
ନାମ ଦ୍ୱ୍ୟୁତ୍ତରଶତତମଃ ସର୍ଗଃ ।

---

# ତ୍ର୍ୟୁତ୍ତରଶତତମଃ ସର୍ଗଃ

## କାଳାଗମନମ୍

କସ୍ୟଚିତ୍ତ୍ୱଥ କାଳସ୍ୟ ରାମେ ଧର୍ମପଥେ ସ୍ଥିତେ ।
କାଳସ୍ତାପସରୂପେଣ ରାଜଦ୍ୱାରମୁପାଗମତ୍ । ୧ ।
ସୋଽବ୍ରବୀଲ୍ଲକ୍ଷ୍ମଣଂ ବାକ୍ୟଂ ଧୃତିମନ୍ତଂ ଯଶସ୍ୱିନମ୍ ।
ମାଂ ନିବେଦୟ ରାମାୟ ସଂପ୍ରାପ୍ତଂ କାର୍ଯଗୌରବାତ୍ । ୨ ।

---

ଅଯୋଧ୍ୟାପୁରୀରେ ସନ୍ତୋଷରେ ଏବଂ ଆନନ୍ଦରେ ରହି ତିନି ଭାଇଙ୍କର ବହୁତ ସମୟ ବିତିଗଲା । ତିନି ଭାଇ ନିଜର ପ୍ରଜ୍ୱଳିତ ଅଗ୍ନିସମାନ ଦୀପ୍ତି ଦ୍ୱାରା, ବିଧିବଦ୍ଧ-ଭାବରେ ହୁତ ଯଜ୍ଞରେ ପ୍ରଜ୍ୱଳିତ ତିନି ଅଗ୍ନି ସଦୃଶ ଶୋଭା ପାଇଲେ । ୧୭ ।

---

## ୧୦୩ତମ ସର୍ଗ

### ( କାଳଙ୍କର ଆଗମନ )

ଏହି ପ୍ରକାରେ ଧର୍ମପୂର୍ବକ ରାଜ୍ୟ ପାଳନ କରିବାର କିଛି ସମୟ ବିତିଯିବା ପରେ କାଳ ତପସ୍ୱୀରୂପ ଧାରଣ କରି ରାଜଦ୍ୱାରରେ ଆସି ପହଞ୍ଚିଲେ । ୧ । ସେ ଧୈର୍ଯ୍ୟଶୀଳ ଯଶସ୍ୱୀ ଲକ୍ଷ୍ମଣଙ୍କୁ କହିଲେ, "ମୁଁ ବିଶେଷ ପ୍ରୟୋଜନରେ ଆସିଛି ବୋଲି ରାମଙ୍କୁ ଜଣାଇଦିଅ । ୨ ।

ଦୂତୋଽହ୍ୟତିବଲସ୍ୟାହଂ ମହର୍ଷେରମିତୌଜସଃ ।
ରାମଂ ଦିଦୃକ୍ଷୁରାୟାତଃ କାର୍ଯ୍ୟେଣ ହି ମହାବଲ । ୩ ।
ତସ୍ୟ ତଦ୍ ବଚନଂ ଶ୍ରୁତ୍ୱା ସୌମିତ୍ରିସ୍ତ୍ୱରୟାନ୍ୱିତଃ ।
ନ୍ୟବେଦୟତ ରାମାୟ ତାପସଂ ତଂ ସମାଗତମ୍ । ୪ ।
ଜୟସ୍ୱ ରାମ ଧର୍ମେଣ ଉଭୌ ଲୋକୌ ମହାଦ୍ୟୁତେ ।
ଦୂତସ୍ତ୍ୱାଂ ଦ୍ରଷ୍ଟୁମାୟାତସ୍ତପସା ଭାସ୍କରପ୍ରଭଃ । ୫ ।
ତଦ୍ ବାକ୍ୟଂ ଲକ୍ଷ୍ମଣେନୋକ୍ତଂ ଶ୍ରୁତ୍ୱା ରାମ ଉବାଚ ହ ।
ପ୍ରବେଶ୍ୟତାଂ ମୁନିସ୍ତାତ ମହୌଜାସ୍ତସ୍ୟ ବାକ୍ୟଧୃକ୍ । ୬ ।
ସୌମିତ୍ରିସ୍ତୁ ତଥେତ୍ୟୁକ୍ତ୍ୱା ପ୍ରାବେଶୟତ ତଂ ମୁନିମ୍ ।
ଜ୍ୱଲନ୍ତମିବ ତେଜୋଭିଃ ପ୍ରଦହନ୍ତମିବାଂଶୁଭିଃ । ୭ ।
ସୋଽଭିଗମ୍ୟ ରଘୁଶ୍ରେଷ୍ଠଂ ଦୀପ୍ୟମାନଂ ସ୍ୱତେଜସା ।
ଋଷିର୍ମଧୁରୟା ବାଚା ବର୍ଧସ୍ୱେତ୍ୟାହ ରାଘବମ୍ । ୮ ।
ତସ୍ମୈ ରାମୋ ମହାତେଜାଃ ପୂଜାମର୍ଘ୍ୟପୁରୋଗମାମ୍ ।
ଦଦୌ କୁଶଲମବ୍ୟଗ୍ରଂ ପ୍ରଷ୍ଟୁମେବୋପଚକ୍ରମେ । ୯ ।
ପୃଷ୍ଟଶ୍ଚ କୁଶଲଂ ତେନ ରାମେଣ ବଦତାଂ ବରଃ ।
ଆସନେ କାଞ୍ଚନେ ଦିବ୍ୟେ ନିଷସାଦ ମହାୟଶାଃ । ୧୦ ।

---

ହେ ମହାବଳ ! ମୁଁ ଅତିପରାକ୍ରମୀ ମହର୍ଷି ଅତିବଲଙ୍କର ଦୂତ ଏବଂ କୌଣସି କାର୍ଯ୍ୟବଶତଃ ରାମଙ୍କୁ ସାକ୍ଷାତ କରିବାକୁ ଆସିଛି" । ୩ । ତାଙ୍କର ସେ କଥା ଶୁଣି ଲକ୍ଷ୍ମଣ ଅତିସତ୍ୱର ତପସ୍ୱୀ ଆସିଥିବା କଥା ରାମଙ୍କୁ ଜଣାଇଲେ । ୪ । ଲକ୍ଷ୍ମଣ କହିଲେ, "ହେ ମହାରାଜ ! ରାଜଧର୍ମ ପାଳନଦ୍ୱାରା ଆପଣଙ୍କର ଦୁଇ-ଲୋକରେ ଜୟ ହେଉ । ହେ ମହାଦ୍ୟୁତିମାନ୍ ! ସୂର୍ଯ୍ୟଙ୍କ ସଦୃଶ ଏକ କାନ୍ତିଯୁକ୍ତ ଏକ ତପସ୍ୱୀ ଦୂତ ଆପଣଙ୍କ ସହିତ ସାକ୍ଷାତ କରିବାକୁ ଆସିଛନ୍ତି" । ୫ । ଲକ୍ଷ୍ମଣଙ୍କଠାରୁ ଏ କଥା ଶୁଣି ରାମ କହିଲେ, "ହେ ତାତ ! ସେହି ସନ୍ଦେଶ ଆଣିଥିବା ମହାତେଜସ୍ୱୀ ତପସ୍ୱୀଙ୍କୁ ଶୀଘ୍ର ଏଠାକୁ ଘେନିଆସ" ।୬। ଲକ୍ଷ୍ମଣ "ତାହାହିଁ ହେଉ" ବୋଲି କହି ତେଜରେ ଦେଦୀପ୍ୟମାନ ଏବଂ ସୂର୍ଯ୍ୟ ସଦୃଶ କିରଣ ବିକିରଣ କରୁଥିବା ସେହି ତପସ୍ୱୀଙ୍କୁ ରାମଙ୍କ ପାଖକୁ ନେଇଗଲେ । ୭ । ନିଜ ତେଜରେ ଦୀପ୍ତିମାନ୍ ରାମଙ୍କ ନିକଟକୁ ଯାଇ ସେହି ତପସ୍ୱୀ ମଧୁର ବଚନରେ କହିଲେ, "ତୁମ୍ଭର ବଢ଼ନ୍ତ ହେଉ" । ୮ । ମହାତେଜସ୍ୱୀ ରାମ ସେହି ଋଷିଙ୍କୁ ଅର୍ଘ୍ୟ ଦେଇ ପୂଜାକରି ତାଙ୍କୁ କୁଶଳପ୍ରଶ୍ନ ପଚାରିବାକୁ ଆରମ୍ଭ କଲେ । ୯ । ଯେତେବେଳେ ମହାତେଜସ୍ୱୀ ମୁନି ଦିବ୍ୟ ସୁବର୍ଣ୍ଣ ଆସନ ଉପରେ ବସିଗଲେ, ସେତେବେଳେ ବାକ୍ୟ-

**ତମୁବାଚ ତତୋ ରାମଃ ସ୍ୱାଗତଂ ତେ ମହାମୁନେ ।**
**ପ୍ରାପୟସ୍ୱ ଚ ବାକ୍ୟାନି ଯତୋ ଦୂତସ୍ତ୍ୱମାଗତଃ । ୧୧ ।**
**ଶ୍ରେଦତୋ ରାଜସିଂହେନ ମୁନିର୍ବାକ୍ୟମଭାଷତ ।**
**ଦ୍ୱନ୍ଦ୍ୱମେତଦ୍ ପ୍ରବକ୍ତବ୍ୟଂ ହିତଂ ବୈ ଯଦ୍ୟପେକ୍ଷସେ । ୧୨ ।**
**ଯଃ ଶୃଣୋତି ନିରୀକ୍ଷେଦ୍ ବା ସ ବଧ୍ୟୋ ଭବିତା ତବ ।**
**ଭବେଦ୍ ବୈ ମୁନିମୁଖ୍ୟସ୍ୟ ବଚନଂ ଯଦ୍ୟପେକ୍ଷସେ । ୧୩ ।**
**ସ ତଥେତି ପ୍ରତିଜ୍ଞାୟ ରାମୋ ଲକ୍ଷ୍ମଣମବ୍ରବୀତ୍ ।**
**ଦ୍ୱାରି ତିଷ୍ଠ ମହାବାହୋ ପ୍ରତୀହାରଂ ବିସର୍ଜୟ । ୧୪ ।**
**ସ ମେ ବଧ୍ୟଃ ଖଲୁ ଭବେତ୍ କଥାଂ ଦ୍ୱନ୍ଦ୍ୱଂ ସମୀରିତାମ୍ ।**
**ଋଷେର୍ମମ ଚ ସୌମିତ୍ରେ ପଶ୍ୟେଦ୍ ବା ଶୃଣୁୟାଚ୍ଚ ଯଃ । ୧୫ ।**
**ତତୋ ନିକ୍ଷିପ୍ୟ କାକୁତ୍ସ୍ଥୋ ଲକ୍ଷ୍ମଣଂ ଦ୍ୱାରି ସଂଗ୍ରହମ୍ ।**
**ତମୁବାଚ ମୁନେର୍ବାକ୍ୟଂ କଥୟସ୍ୱେତି ରାଘବଃ । ୧୬ ।**
**ଯତ୍ତେ ମନୀଷିତଂ ବାକ୍ୟଂ ଯେନ ବାସି ସମାହୃତଃ ।**
**କଥୟସ୍ୱାବିଶଙ୍କସ୍ତ୍ୱଂ ମମାପି ହୃଦି ବର୍ତ୍ତତେ । ୧୭ ।**

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଉତ୍ତରକାଣ୍ଡେ କାଳାଗମନଂ ନାମ ନ୍ୟୂତ୍ତରଶତତମଃ ସର୍ଗଃ ।

---

ନିପୁଣ ରାମ ତାଙ୍କୁ କୁଶଳ ପଚାରି କହିଲେ ।୧୦। "ହେ ମହାମୁନେ! ମୁଁ ଆପଣଙ୍କୁ ସ୍ୱାଗତ କରୁଅଛି; ବର୍ତ୍ତମାନ ଯେ ଆପଣଙ୍କୁ ଦୂତରୂପେ ପଠାଇଛନ୍ତି ତାଙ୍କ ସନ୍ଦେଶ କହନ୍ତୁ" ।୧୧। ରାଜସିଂହ ରାମ ଏପରି କହିବାରୁ ଋଷି ଉତ୍ତର ଦେଲେ, "ହେ ରାଜନ୍! ମୁଁ ନିଜର ସନ୍ଦେଶ ଆପଣଙ୍କୁ କେବଳ ଆମେ ଦୁଇଜଣ ଥାଇ କହିବି । ଆପଣ ଯଦି ହିତ ଇଚ୍ଛା କରୁଛନ୍ତି ତେବେ ସେହିପରି କରନ୍ତୁ ।୧୨। ଅତଏବ ଆମ ଦୁହିଙ୍କ କଥାବାର୍ତ୍ତା ବେଳେ ଯଦି ଅନ୍ୟ କେଏ ଶୁଣିବ ସେ ଆପଣଙ୍କଦ୍ୱାରା ବଧ୍ୟ ହେବ" ।୧୩। ରାମ "ତାହାହିଁ ହେବ" ବୋଲି ପ୍ରତିଶ୍ରୁତି ଦେଇ ଲକ୍ଷ୍ମଣଙ୍କୁ କହିଲେ, "ହେ ମହାବାହୋ! ତୁମେ ଦ୍ୱାରରେ ରହ, ଦ୍ୱାରୀକୁ ବିଦାୟ କରିଦିଅ ।୧୪। ହେ ଲକ୍ଷ୍ମଣ! ଋଷି ଓ ମୋ ମଧ୍ୟରେ କଥାବାର୍ତ୍ତା ବେଳେ ଯଦି କେଏ ଦେଖେ ବା ଶୁଣେ, ତେବେ ହେ ସୌମିତ୍ରେ! ସେ ମୋର ନିଶ୍ଚୟ ବଧ ହେବ" ।୧୫। ଏହି ପ୍ରକାରେ ରାମ ଲକ୍ଷ୍ମଣଙ୍କୁ ଦ୍ୱାରରେ ନିଯୁକ୍ତ କରି ସେହି ତପସ୍ୱୀଙ୍କୁ କହିଲେ କି "ଆପଣ ବର୍ତ୍ତମାନ କହନ୍ତୁ ।୧୬। ଆପଣଙ୍କର ଯାହା କିଛି ଅଭୀଷ୍ଟ ଅଛି, ଅଥବା ଯେ ଆପଣଙ୍କୁ ପଠାଇଛନ୍ତି, ତାଙ୍କର ମନୋରଥ କଅଣ, ଆପଣ ନିଃସଙ୍କୋଚରେ ପ୍ରକାଶ କରନ୍ତୁ, ମୋର ମଧ୍ୟ ତାହା ଶୁଣିବାକୁ ମନରେ ଉତ୍କଣ୍ଠା ଜାତ ହୋଇଅଛି ।୧୭।"

# ଚତୁରୁତ୍ତରଶତତମଃ ସର୍ଗଃ

## ପିତାମହବାକ୍ୟକଥନମ୍

ଶୃଣୁ ରାଜନ୍ ମହାସତ୍ତ୍ୱ ଯଦର୍ଥମହମାଗତଃ ।
ପିତାମହେନ ଦେବେନ ପ୍ରେଷିତୋଽସ୍ମି ମହାବଲ । ୧ ।
ତବାହଂ ପୂର୍ବକେ ଭାବେ ପୁତ୍ରଃ ପରପୁରଂଜୟ ।
ମାୟାସଂଭାବିତୋ ବୀର କାଲଃ ସର୍ବସମାହରଃ । ୨ ।
ପିତାମହଶ୍ଚ ଭଗବାନାହ ଲୋକପତିଃ ପ୍ରଭୁଃ ।
ସମୟସ୍ତେ କୃତଃ ସୌମ୍ୟ ତ୍ୱାନ୍ ଲୋକାନ୍ ପରିରକ୍ଷିତୁମ୍ । ୩ ।
ସଂକ୍ଷିପ୍ୟ ହି ପୁରା ଲୋକାନ୍ ମାୟୟା ସ୍ୱୟମେବ ହି ।
ମହାର୍ଣବେ ଶୟାନୋଽପ୍ସୁ ମାଂ ତ୍ୱଂ ପୂର୍ବମଜୀଜନଃ । ୪ ।
ଭୋଗବନ୍ତଂ ତତୋ ନାଗମନନ୍ତମୁଦକେଶୟମ୍ ।
ମାୟୟା ଜନୟିତ୍ୱା ତ୍ୱଂ ଦ୍ୱୌ ଚ ସତ୍ତ୍ୱୌ ମହାବଲୌ । ୫ ।

---

## ୧୦୪ତମ ସର୍ଗ

(ବ୍ରହ୍ମାଙ୍କ ସନ୍ଦେଶଜ୍ଞାପନ)

"ହେ ମହାବଳୀ ରାଜନ୍ ! ମୁଁ ଯେ ନିମନ୍ତେ ଏଠାକୁ ଆସିଛି ତାହା କହୁଅଛି ଶୁଣ । ମୋତେ ପିତାମହ ବ୍ରହ୍ମା ପଠାଇଛନ୍ତି ।୧। ହେ ପରପୁରଞ୍ଜୟ ! ପୂର୍ବକାଳରେ ଯେତେବେଳେ ସୃଷ୍ଟିର ଉତ୍ପତ୍ତି ହୁଏ, ସେତେବେଳେ ମୁଁ ତୁମ୍ଭର ମାୟାରୁ ଉତ୍ପନ୍ନ ହୋଇଥିଲି । ଅତଏବ ମୁଁ ତୁମ୍ଭର ପୁତ୍ର ଅଟେଁ । ହେ ବୀର ! ମୋ ନାମ କାଳ, ମୁଁ ସମସ୍ତଙ୍କର ସଂହାରକାରୀ ଅଟେଁ । ୨ । ଲୋକାଧିପତି ଭଗବାନ୍ ପିତାମହ ବ୍ରହ୍ମା କହିଛନ୍ତି କି 'ହେ ସୌମ୍ୟ ! ଏହି ଲୋକକୁ ରକ୍ଷା କରିବା ପାଇଁ ତୁମେ ଯେଉଁ ସମୟର ସୀମାନିର୍ଦ୍ଧାରଣ କରିଥିଲ, ସେ ସମୟ ବର୍ତ୍ତିମାନ ପୂରି ଯାଇଅଛି । ୩ । ତୁମେ ପୂର୍ବକାଳରେ ମାୟାଦ୍ୱାରା ସମସ୍ତ ଲୋକଙ୍କୁ ସଂହାର କରିସାରି, ମହାସାଗରରେ ଜଳମଧ୍ୟରେ ଶୋଇଥିଲ, ମୋତେ ସେତିକବେଳେ ତୁମେ ଜନ୍ମ ଦେଇଥିଲ । ୪ । ସେତେବେଳେ ତୁମେ ଏକ ଜଳଶୟୀ ବିଶାଳକାୟ ଅନନ୍ତ ନାଗକୁ ଉତ୍ପନ୍ନ କରିଥିଲ । ଏହାଛଡ଼ା ତମେ ଆଉ ଦୁଇଟି ମହାବଳୀ ଜୀବକୁ ମଧ୍ୟ ଉତ୍ପନ୍ନ କରିଥିଲ । ୫ । ସେ

ମଧୁଂ ଚ କୈଟଭଂ ଚୈବ ଯୟୋରସ୍ଥିଚୟୈର୍ବୃତା ।
ଇୟଂ ପର୍ବତସଂବାଧା ମେଦିନୀ ଚାଭବନ୍ମହୀ । ୬ ।
ପଦ୍ମେ ଦିବ୍ୟେଽର୍କସଂକାଶେ ନାଭ୍ୟାମୁତ୍ପାଦ୍ୟ ମାମପି ।
ପ୍ରାଜାପତ୍ୟଂ ତ୍ୱୟା କର୍ମ ମୟି ସର୍ବଂ ନିବେଶିତମ୍ । ୭ ।
ସୋହଂ ସଂନ୍ୟସ୍ତଭାରୋ ହି ତ୍ୱାମୁପାସେ ଜଗତ୍ପତିମ୍ ।
ରକ୍ଷାଂ ବିଧତ୍ସ୍ୱ ଭୂତେଷୁ ମମ ତେଜସ୍କରୋ ଭବାନ୍ । ୮ ।
ତତସ୍ତ୍ୱମପି ଦୁର୍ଧର୍ଷାତ୍ତସ୍ମାଦ୍ ଭାବାତ୍ସନାତନାତ୍ ।
ରକ୍ଷାର୍ଥଂ ସର୍ବଭୂତାନାଂ ବିଷ୍ଣୁତ୍ୱମୁପଜଗ୍ମିବାନ୍ । ୯ ।
ଅଦିତ୍ୟାଂ ବୀର୍ଯ୍ୟବାନ୍ ପୁତ୍ରୋ ଭ୍ରାତୃଣାଂ ବୀର୍ଯ୍ୟବର୍ଦ୍ଧନଃ ।
ସମୁତ୍ପନ୍ନେଷୁ କୃତ୍ୟେଷୁ ତେଷାଂ ସାହ୍ୟାୟ କଳ୍ପସେ । ୧୦ ।
ସ ତ୍ୱଂ ବିତ୍ରାସ୍ୟମାନାସୁ ପ୍ରଜାସୁ ଜଗତାଂ ବର ।
ରାବଣସ୍ୟ ବଧାକାଙ୍କ୍ଷୀ ମାନୁଷେଷୁ ମନୋଽଦଧାଃ । ୧୧ ।
ଦଶ ବର୍ଷସହସ୍ରାଣି ଦଶ ବର୍ଷଶତାନି ଚ ।
କୃତ୍ୱା ବାସସ୍ୟ ନିୟତଂ ସ୍ୱୟମେବାତ୍ମନା ପୁରା । ୧୨ ।

---

ଦୁହିଁଙ୍କର ନାମ ମଧୁ ଏବଂ କୈଟଭ । ସେ ଦୁହିଁଙ୍କ ଅସ୍ଥିଦ୍ୱାରା ପର୍ବତ ସହିତ ସମଗ୍ର ପୃଥିବୀ ଆଚ୍ଛାଦିତ ହୋଇଯାଇଥିଲା । ୬ । ତୁମେ ତୁମ୍ଭର ନାଭିରୁ ସୂର୍ଯ୍ୟସଦୃଶ ଦୀପ୍ତିଶାଳୀ ଏକ ଦିବ୍ୟ ପଦ୍ମ ଉତ୍ପନ୍ନ କରି, ସେଥିରେ ମୋତେ ଉତ୍ପନ୍ନ କରିଥିଲ ଏବଂ ମୋ ଉପରେ ସମସ୍ତ ପ୍ରଜାଙ୍କର ଉତ୍ପତ୍ତିର ଭାର ଦେଇଥିଲ । ୭ । ଏହିପ୍ରକାରେ ତୁମଠାରୁ ପ୍ରଜା ଉତ୍ପତ୍ତିର ଅଧିକାର ପାଇ ଏବଂ ତୁମକୁ ଉପାସନା କରି ବର୍ତ୍ତମାନ ଏହି ପ୍ରାର୍ଥନା କରୁଛି ହେ ଭଗବନ୍ ! ତୁମେ ସେ ସୃଷ୍ଟିରକ୍ଷାର ବ୍ୟବସ୍ଥା କର; କାରଣ ତୁମେହିଁ ମୋତେ ତେଜ ଦାନ କରିଥିଲ । ୮ । ସେତେବେଳେ ତୁମେ ସେହି ସନାତନ ଏବଂ ଦୁର୍ଦ୍ଧର୍ଷ ଭାବକୁ ତ୍ୟାଗକରି, ସମସ୍ତ ପ୍ରାଣୀଙ୍କ ରକ୍ଷା ନିମନ୍ତେ ବିଷ୍ଣୁରୂପ ଧାରଣ କରିଥିଲ । ୯ । ଅଦିତିଙ୍କ ଗର୍ଭରେ ବଳବାନ୍ ପୁତ୍ରରୂପରେ ଉତ୍ପନ୍ନ ହୋଇ ତୁମେ ଭ୍ରାତାମାନଙ୍କର ବଳ ବଢ଼ାଇ ସେମାନଙ୍କୁ ଉପସ୍ଥିତ କାର୍ଯ୍ୟକ୍ଷେତ୍ରରେ ସହାୟତା କରୁଥିଲ । ୧୦ । ହେ ଜଗତ୍‌ଶ୍ରେଷ୍ଠ ! ଏହିପ୍ରକାରେ ତୁମେ ସେତେବେଳେ ମଧ୍ୟ ପ୍ରଜାମାନଙ୍କୁ ମହାଦୁଃଖିତ ଦେଖି ରାବଣକୁ ବଧ କରିବା ନିମନ୍ତେ ମନୁଷ୍ୟରୂପ ଧରିବା ପାଇଁ ମନରେ ସ୍ଥିର କଲ । ୧୧ । ସେତେବେଳେ ତୁମେ ଏ ପୃଥିବୀରେ ବାସ କରିବା ନିମନ୍ତେ ଏଗାର ହଜାର ବର୍ଷ ସମୟ ନିଜେ ସ୍ଥିର କରିଥିଲ । ୧୨ । ହେ ନର-

ସ ତ୍ୱଂ ମନୋମୟଃ ପୁତ୍ରଃ ପୂର୍ଣାୟୁର୍ମାନୁଷେଷ୍ୱିହ ।
କାଲୋଽୟଂ ତେ ନରଶ୍ରେଷ୍ଠ ସମୀପମୁପବର୍ତ୍ତିତୁମ୍ । ୧୩ ।
ଯଦି ଭୂୟୋ ମହାରାଜ ପ୍ରଜା ଇଚ୍ଛସ୍ୟୁପାସିତୁମ୍ ।
ବସ ବା ବୀର ଭଦ୍ରଂ ତ ଏବମାହ ପିତାମହଃ । ୧୪ ।
ଅଥବା ବିଜିଗୀଷା ତେ ସୁରଲୋକାୟ ରାଘବ ।
ସନାଥା ବିଷ୍ଣୁନା ଦେବା ଭବନ୍ତୁ ବିଗତଜ୍ୱରାଃ । ୧୫ ।
ଶ୍ରୁତ୍ୱା ପିତାମହେନୋକ୍ତଂ ବାକ୍ୟଂ କାଲସମୀରିତମ୍ ।
ରାଘବଃ ପ୍ରହସନ୍ ବାକ୍ୟଂ ସର୍ବସଂହାରମବ୍ରବୀତ୍ । ୧୬ ।
ଶ୍ରୁତ୍ୱା ମେ ଦେବଦେବସ୍ୟ ବାକ୍ୟଂ ପରମମଦ୍ଭୁତମ୍ ।
ପ୍ରୀତିର୍ହି ମହତୀ ଜାତା ତବାଗମନସମ୍ଭବା । ୧୭ ।
ତ୍ରୟାଣାମପି ଲୋକାନାଂ କାର୍ଯାର୍ଥଂ ମମ ସମ୍ଭବଃ ।
ଭଦ୍ରଂ ତେଽସ୍ତୁ ଗମିଷ୍ୟାମି ଯତ ଏବାହମାଗତଃ । ୧୮ ।

---

ଶ୍ରେଷ୍ଠ ! ତୁମେ କେବଳ ନିଜର ସଂକଳ୍ପରୁ ଏ ମନୁଷ୍ୟଲୋକରେ ଦଶରଥଙ୍କର ପୂର୍ଣ୍ଣାୟୁ ପୁତ୍ରରୂପେ ବାସ କରିବାର ସମୟ ନିର୍ଦ୍ଧାରଣ କରିଥିଲ । ବର୍ତ୍ତମାନ ସେହି ସମୟ ପୂରିଯିବାକୁ ବସିଲଣି ।୧୩। ହେ ବୀର ! ତୁମ୍ଭର ମଙ୍ଗଳ ହେଉ । ଯଦି ବର୍ତ୍ତମାନ ତୁମର ଆଉ ଅଧିକ ସମୟ ପ୍ରଜାମାନଙ୍କୁ ପାଳନ କରିବା ପାଇଁ ଇଚ୍ଛା ଥାଏ, ତାହାହେଲେ ତୁମେ ଏଠାରେ ବାସ କର' । ବ୍ରହ୍ମା ଏହି ସନ୍ଦେଶ ତୁମଠାକୁ ପଠାଇଛନ୍ତି । ୧୪ । ହେ ରାଘବ ! ଯଦି ଦେବଲୋକ ଶାସନ କରିବାପାଇଁ ତୁମ୍ଭର ଇଚ୍ଛା ହେଉଥାଏ, ତେବେ ନିଜର ବିଷ୍ଣୁରୂପରେ ସମସ୍ତ ଦେବତାଙ୍କୁ ସନାଥ ଏବଂ ନିର୍ଭୟ କର" । ୧୫ । ରାମ କାଳଙ୍କ ମୁଖରୁ ବ୍ରହ୍ମାଙ୍କର ଏହି ସନ୍ଦେଶ ଶୁଣି ହସିକରି ସର୍ବ-ସଂହାରକାରୀ କାଳଙ୍କୁ କହିଲେ ।୧୬। "ଦେବଦେବ ବ୍ରହ୍ମାଙ୍କର ଏ ବଚନ ଶୁଣିବାରୁ ଏବଂ ତୁମେ ଏଠାକୁ ଆସିଥିବାରୁ ମୋତେ ବିଶେଷ ଆନନ୍ଦ ଜାତ ହୋଇଅଛି । ୧୭ । ତିନିଲୋକର କାର୍ଯ୍ୟ ସିଦ୍ଧି କରିବା ନିମନ୍ତେ ମୋର ଏ ଅବତାର ହୋଇଅଛି । ତୁମ୍ଭର ମଙ୍ଗଳ ହେଉ । ମୁଁ ଯେଉଁଠାରୁ ଆସିଛି ପୁଣି ସେଠାକୁ ଚାଲିଯିବି । ୧୮ ।

**ହୃଦ୍ଗତୋ ହ୍ୟସି ସଂପ୍ରାପ୍ତୋ ନ ମେ ଽସ୍ତ୍ୟତ୍ର ବିଚାରଣା ।**
**ମୟା ହି ସର୍ବକୃତ୍ୟେଷୁ ଦେବାନାଂ ବଶବର୍ତ୍ତିନା ।**
**ସ୍ଥାତବ୍ୟଂ ସର୍ବସଂହାର ଯଥା ହ୍ୟାହ ପିତାମହଃ । ୧୯ ।**

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ପିତାମହବାକ୍ୟକଥନଂ ନାମ ଚତୁରୁତ୍ତରଶତତମଃ ସର୍ଗଃ

---

# ପଞ୍ଚୋତ୍ତରଶତତମଃ ସର୍ଗଃ

## ଦୁର୍ବାସୋଽଭିଗମଃ

**ତଥା ତୟୋଃ ସଂବଦତୋର୍ଦୁର୍ବାସା ଭଗବାନୃଷିଃ ।**
**ରାମସ୍ୟ ଦର୍ଶନାକାଙ୍କ୍ଷୀ ରାଜଦ୍ୱାରମୁପାଗମତ୍ । ୧ ।**
**ସୋଽଭିଗମ୍ୟ ତୁ ସୌମିତ୍ରିମୁବାଚ ଋଷିସତ୍ତମଃ ।**
**ରାମଂ ଦର୍ଶୟ ମେ ଶୀଘ୍ରଂ ପୁରା ମେଽର୍ଥୋଽତିବର୍ତ୍ତତେ । ୨ ।**
**ମୁନେସ୍ତୁ ଭାଷିତଂ ଶ୍ରୁତ୍ୱା ଲକ୍ଷ୍ମଣଃ ପରବୀରହା ।**
**ଅଭିବାଦ୍ୟ ମହାତ୍ମାନଂ ବାକ୍ୟମେତଦୁବାଚ ହ । ୩ ।**

---

ହେ ସର୍ବସଂହାରକାରୀ କାଳ ! ଏହି ଭାବ ମୋର ହୃଦୟରେ ମଧ୍ୟ ଥିଲା, ତୁମେ ମଧ୍ୟ ଏଠାରେ ଆସି ପହଞ୍ଚିଛ ; ସୁତରାଂ ସେ ବିଷୟରେ ମୋର ଆଉ କିଛି ବିଚାର କରିବାର ନାହିଁ । ପିତାମହ ବ୍ରହ୍ମା ଯେପରି କହିଛନ୍ତି, ତଦନୁସାରେ ମୋତେ ସବୁ କାର୍ଯ୍ୟରେ ଦେବତାମାନଙ୍କର ବଶବର୍ତ୍ତୀ ହୋଇ ରହିବାକୁ ହେବ" । ୧୯-୨୦ ।

---

## ୧୦୫ତମ ସର୍ଗ

### ( ଦୁର୍ବାସାଙ୍କ ଆଗମନ )

ଯେତେବେଳେ ରାମ ଏବଂ କାଳ ପରସ୍ପର ଏହିପରି କଥାବାର୍ତ୍ତା ହେଉଥିଲେ, ସେତିକବେଳେ ରାମଙ୍କୁ ଦେଖିବାକୁ ଇଚ୍ଛାକରି, ଭଗବାନ୍ ଦୁର୍ବାସା ଋଷି ରାଜଦ୍ୱାରରେ ଆସି ପହଞ୍ଚିଲେ । ୧ । ସେହି ଋଷିଶ୍ରେଷ୍ଠ ଦୁର୍ବାସା ଲକ୍ଷ୍ମଣଙ୍କ ନିକଟରେ ପହଞ୍ଚି କହିଲେ,"ମୋତେ ରାମଙ୍କ ସହିତ ଶୀଘ୍ର ଦେଖାକରାଅ, ନଚେତ୍ ମୋର କାର୍ଯ୍ୟ ନଷ୍ଟ ହୋଇଯାଉଅଛି" । ୨ । ଶତ୍ରୁଘାତୀ ଲକ୍ଷ୍ମଣ ମୁନିଙ୍କର ଏ କଥା ଶୁଣି ସେହି

କିଂ କାର୍ଯ୍ୟଂ ବ୍ରୂହି ଭଗବନ୍ କୋ ବାର୍ଥଃ କିଂ କରୋମ୍ୟହମ୍ ।
ବ୍ୟଗ୍ରୋ ହି ରାଘବୋ ବ୍ରହ୍ମନ୍ ମୁହୂର୍ତ୍ତଂ ପ୍ରତିପାଲ୍ୟତାମ୍ । ୪ ।
ତଚ୍ଛ୍ରୁତ୍ୱା ଋଷିଶାର୍ଦ୍ଦୂଲଃ କ୍ରୋଧେନ କଲୁଷୀକୃତଃ ।
ଉବାଚ ଲକ୍ଷ୍ମଣଂ ବାକ୍ୟଂ ନିର୍ଦ୍ଦହନ୍ନିବ ଚକ୍ଷୁଷା । ୫ ।
ଅସ୍ମିନ୍ କ୍ଷଣେ ମାଂ ସୌମିତ୍ରେ ରାମାୟ ପ୍ରତିପାଦୟ ।
ଅସ୍ମିନ୍ କ୍ଷଣେ ମାଂ ସୌମିତ୍ରେ ନ ନିବେଦୟସେ ଯଦି । ୬ ।
ବିଷୟଂ ତ୍ୱାଂ ପୁରଂ ଚୈବ ଶପ ସେ୍ୟ ରାଘବଂ ତଥା ।
ଭରତଂ ଚୈବ ସୌମିତ୍ରେ ଯୁଷ୍ମାକଂ ଯା ଚ ସନ୍ତତିଃ । ୭ ।
ନ ହି ଶକ୍ଷ୍ୟାମ୍ୟହଂ ଭୂୟୋ ମନ୍ୟୁଂ ଧାରୟିତୁଂ ହୃଦି ।
ତଚ୍ଛ୍ରୁତ୍ୱା ଘୋରସଂକାଶଂ ବାକ୍ୟଂ ତସ୍ୟ ମହାତ୍ମନଃ । ୮ ।
ଚିନ୍ତୟାମାସ ମନସା ତସ୍ୟ ବାକ୍ୟସ୍ୟ ନିଶ୍ଚୟମ୍ ।
ଏକସ୍ୟ ମରଣଂ ମେଽସ୍ତୁ ମାଭୂତ୍ ସର୍ବବିନାଶନମ୍ ।
ଇତି ବୁଦ୍ଧ୍ୟା ବିନିଶ୍ଚିତ୍ୟ ରାଘବାୟ ନ୍ୟବେଦୟତ୍ । ୯ ।
ଲକ୍ଷ୍ମଣସ୍ୟ ବଚଃ ଶ୍ରୁତ୍ୱା ରାମଃ କାଳଂ ବିସୃଜ୍ୟ ଚ ।
ନିଃସୃତ୍ୟ ତ୍ୱରିତଂ ରାଜା ଅତ୍ରେଃ ପୁତ୍ରଂ ଦଦର୍ଶ ହ । ୧୦ ।

---

ମହାତ୍ମାଙ୍କୁ ଅଭିବାଦନ କରି କହିଲେ ।୩। "ହେ ଭଗବନ୍ ! ଆପଣଙ୍କର କି କାର୍ଯ୍ୟ ଅଛି ଏବଂ ମୁଁ ଆପଣଙ୍କ ପାଇଁ କଅଣ କରିବି କହନ୍ତୁ । ରାମ ବର୍ତ୍ତମାନ କୌଣସି ଏକ କାର୍ଯ୍ୟରେ ବ୍ୟସ୍ତ ଅଛନ୍ତି, ଅତଏବ ହେ ବ୍ରହ୍ମନ୍ ! ଆପଣ ମୁହୂର୍ତ୍ତେମାତ୍ର ଅପେକ୍ଷା କରନ୍ତୁ" ।୪। ଏହା ଶୁଣି ଋଷିଶ୍ରେଷ୍ଠ ଦୁର୍ବାସା କ୍ରୋଧପୂର୍ଣ୍ଣ ନେତ୍ରରେ ଯେପରି ଆଖି ପୋଡ଼ି- ପକାଇଲା ପରି ଲକ୍ଷ୍ମଣଙ୍କୁ କହିଲେ ।୫। "ହେ ସୌମିତ୍ରେ ! ତୁମେ ଏହି ମୁହୂର୍ତ୍ତରେ ମୁଁ ଆସିଥିବା କଥା ରାମଙ୍କୁ ଜଣାଅ; ଯଦି ଏହି ମୁହୂର୍ତ୍ତରେ ତୁମେ ନ ଜଣାଇବ, ତାହା- ହେଲେ ମୁଁ ଏ ଦେଶକୁ, ତୁମକୁ, ଏ ଅଯୋଧ୍ୟାନଗରୀକୁ, ରାମଙ୍କୁ ତଥା ଭରତଙ୍କୁ ଏବଂ ତୁମମାନଙ୍କର ଯେ ସନ୍ତାନ ସନ୍ତତି ଅଛନ୍ତି, ସମସ୍ତଙ୍କୁ ଅଭିଶାପ ଦେବି । ମୁଁ ଆଉ ଅଧିକ କାଳ ମୋର କ୍ରୋଧକୁ ହୃଦୟମଧ୍ୟରେ ସମ୍ଭାଳି ପାରିବି ନାହିଁ ।" ମହାତ୍ମା ଦୁର୍ବାସାଙ୍କର ଏ ଭୟଙ୍କର ବଚନ ଶୁଣି, ଲକ୍ଷ୍ମଣ ମନମଧ୍ୟରେ ତାଙ୍କର ସେହି ବାକ୍ୟର ପରିଣାମ ଚିନ୍ତାକଲେ । ସେ ଭାବିଲେ, ବରଂ ଏକମାତ୍ର ମୋର ମରଣ ହେଉ, କିନ୍ତୁ ସମସ୍ତଙ୍କର ବିନାଶ ନ ହେଉ । ଏହି କଥା ମନ ମଧ୍ୟରେ ସ୍ଥିରକରି, ସେ ରାମଙ୍କୁ ଯାଇ ଜଣାଇଲେ । ୬-୯ । ଲକ୍ଷ୍ମଣଙ୍କ କଥା ଶୁଣିବା ମାତ୍ରେ ରାମ କାଳଙ୍କୁ ବିଦାୟ ଦେଇ

ସୋଽଭିବାଦ୍ୟ ମହାତ୍ମାନଂ ଜ୍ୱଲନ୍ତମିବ ତେଜସା ।
କିଂ କାର୍ଯମିତି କାକୁତ୍ସ୍ଥଃ କୃତାଞ୍ଜଳିରଭାଷତ ।୧୧।
ତଦ୍ ବାକ୍ୟଂ ରାଘବେଣୋକ୍ତଂ ଶ୍ରୁତ୍ୱା ମୁନିବରଃ ପ୍ରଭୁମ୍ ।
ପ୍ରତ୍ୟାହ ରାମଂ ଦୁର୍ବାସାଃ ଶ୍ରୂୟତାଂ ଧର୍ମବତ୍ସଳ । ୧୨ ।
ଅଦ୍ୟ ବର୍ଷସହସ୍ରସ୍ୟ ସମାପ୍ତିସ୍ତପସୋ ମମ ।
ସୋଽହଂ ଭୋଜନମିଚ୍ଛାମି ଯଥାସିଦ୍ଧଂ ତବାନଘ । ୧୩ ।
ତଚ୍ଛ୍ରୁତ୍ୱା ବଚନଂ ରାଜା ରାଘବଃ ପ୍ରୀତମାନସଃ ।
ଭୋଜନଂ ମୁନିମୁଖ୍ୟାୟ ଯଥାସିଦ୍ଧମୁପାହରତ୍ । ୧୪ ।
ସ ତୁ ଭୁକ୍ତ୍ୱା ମୁନିଶ୍ରେଷ୍ଠସ୍ତଦନ୍ନମମୃତୋପମମ୍ ।
ସାଧୁ ରାମେତି ସଂଭାଷ୍ୟ ସ୍ୱମାଶ୍ରମମୁପାଗମତ୍ । ୧୫ ।
ତସ୍ମିନ୍ ଗତେ ମୁନିବରେ ସ୍ୱାଶ୍ରମଂ ଲକ୍ଷ୍ମଣାଗ୍ରଜଃ ।
ସଂସ୍ମୃତ୍ୟ କାଳବାକ୍ୟାନି ତତୋ ଦୁଃଖମୁପାଗମତ୍ । ୧୬ ।
ଦୁଃଖେନ ଚ ସୁସଂତପ୍ତଃ ସ୍ମୃତ୍ୱା ତଦ୍ ଘୋରଦର୍ଶନମ୍ ।
ଅବାଙ୍ମୁଖୋ ଦୀନମନା ବ୍ୟାହର୍ତୁଂ ନ ଶଶାକ ହ । ୧୭ ।

---

ଶୀଘ୍ର ବାହାରିଆସି ଅତିପୂଜ୍ୟ ଦୁର୍ବାସାଙ୍କୁ ଦେଖିଲେ ।୧୦। ରାମ ନିଜ ତେଜରେ ପ୍ରଜ୍ୱଳିତ ହେଉଥିବା ମହାତ୍ମା ଦୁର୍ବାସାଙ୍କୁ ପ୍ରଣାମ କରି, ହାତ ଯୋଡ଼ି କହିଲେ, "ଆପଣଙ୍କ ପାଇଁ ମୁଁ କଅଣ କରିପାରିବି" ।୧୧। ମୁନିଶ୍ରେଷ୍ଠ ଦୁର୍ବାସା ରାମଙ୍କର ସେହି କଥା ଶୁଣି ତାଙ୍କୁ କହିଲେ, "ହେ ଧର୍ମବତ୍ସଳ ! ମୋ କଥା ଶୁଣ ।୧୨। ହେ ନିଷ୍ପାପ ! ମୁଁ ହଜାରେ ବର୍ଷ ପର୍ଯ୍ୟନ୍ତ ଯେଉଁ ତପସ୍ୟା କରୁଥିଲି ତାହାର ଆଜି ସମାପ୍ତି ହୋଇଅଛି, ଅତଏବ ତୁମର ଏଠାରେ ଯାହା କିଛି ରନ୍ଧାହୋଇ ରହିଅଛି, ତାହା ମୁଁ ଭୋଜନ କରିବାକୁ ଇଚ୍ଛା କରୁଅଛି" ।୧୩। ରାଜା ରାମ ସେ କଥା ଶୁଣି ମନରେ ଅତିଶୟ ପ୍ରୀତ ହେଲେ ଏବଂ ଯାହା ରନ୍ଧା ହୋଇଥିଲା, ସେ ଖାଦ୍ୟ ସେହି ମୁନିଶ୍ରେଷ୍ଠଙ୍କ ପାଇଁ ଯୋଗାଇ ଦେଲେ ।୧୪। ମୁନିଶ୍ରେଷ୍ଠ ଦୁର୍ବାସା ଅମୃତ ସଦୃଶ ସେହି ଅନ୍ନ ଭୋଜନ କରି 'ସାଧୁ ସାଧୁ' ବୋଲି ରାମଙ୍କୁ ସମ୍ଭାଷଣ କରି ଆପଣା ଆଶ୍ରମକୁ ଚାଲିଗଲେ ।୧୫। ସେହି ମୁନିଶ୍ରେଷ୍ଠ ନିଜ ଆଶ୍ରମକୁ ଚାଲିଯିବା ପରେ ଲକ୍ଷ୍ମଣଙ୍କ ଜ୍ୟେଷ୍ଠ ଭ୍ରାତା ରାମ କାଳ କହିଥିବା କଥା ସ୍ମରଣ କରି ଅତିଶୟ ଦୁଃଖିତ ହୋଇପଡ଼ିଲେ ।୧୬। ରାମ ସେହି ଦାରୁଣ ପ୍ରତିଜ୍ଞା ସ୍ମରଣକରି, ମନୋଦୁଃଖରେ ଅତିଶୟ ସନ୍ତପ୍ତ ଏବଂ ଅଧୋମୁଖ ହୋଇ

**ତତୋ ବୁଦ୍ଧ୍ୟା ବିନିଶ୍ଚିତ୍ୟ କାଲବାକ୍ୟାନି ରାଘବଃ ।**
**ନୈତଦସ୍ତୀତି ନିଶ୍ଚିତ୍ୟ ତୂଷ୍ଣୀମାସୀନ୍ମହାୟଶାଃ । ୧୮ ।**

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ଦୁର୍ବାସୋଽଭିଗମୋ ନାମ ପଞ୍ଚୋତ୍ତରଶତତମଃ ସର୍ଗଃ ।

---

# ଷଡୁତ୍ତରଶତତମଃ ସର୍ଗଃ

## ଲକ୍ଷ୍ମଣପରିତ୍ୟାଗଃ

**ଅବାଙ୍‌ମୁଖମଥୋ ଦୀନଂ ଦୃଷ୍ଟ୍ୱା ସୋମମିବାପ୍ଲୁତମ୍ ।**
**ରାଘବଂ ଲକ୍ଷ୍ମଣୋ ବାକ୍ୟଂ ହୃଷ୍ଟୋ ମଧୁରମବ୍ରବୀତ୍ । ୧ ।**
**ନ ସନ୍ତାପଂ ମହାବାହୋ ମଦର୍ଥଂ କର୍ତ୍ତୁମର୍ହସି ।**
**ପୂର୍ବନିର୍ମାଣବଦ୍ଧା ହି କାଲସ୍ୟ ଗତିରୀଦୃଶୀ । ୨ ।**
**ଜହି ମାଂ ସୌମ୍ୟ ବିସ୍ରବ୍ଧଂ ପ୍ରତିଜ୍ଞାଂ ପରିପାଳୟ ।**
**ହୀନପ୍ରତିଜ୍ଞାଃ କାକୁତ୍ସ୍ଥ ପ୍ରୟାନ୍ତି ନରକଂ ନରାଃ । ୩ ।**

---

ରହିଲେ ଏବଂ କିଛିମାତ୍ର କଥା କହିପାରିଲେ ନାହିଁ । ୧୭ । ଅନନ୍ତର ମହାଯଶା ରାମ ମନେ ମନେ କାଳଙ୍କ କଥା ଅନୁସାରେ 'ଏହା ଛଡ଼ା ଅନ୍ୟ ପନ୍ଥା ନାହିଁ' ବୋଲି ସ୍ଥିରକରି ତୁନି ହୋଇରହିଲେ । ୧୮ ।

---

# ୧୦୬ତମ ସର୍ଗ

## (ଲକ୍ଷ୍ମଣପରିତ୍ୟାଗ)

ରାମଙ୍କୁ ରାହୁଗ୍ରସ୍ତ ଚନ୍ଦ୍ରଙ୍କପରି ଦୁଃଖିତ ଏବଂ ଅଧୋମୁଖ ଦେଖି ଲକ୍ଷ୍ମଣ ଆନନ୍ଦରେ ମଧୁର ବଚନରେ କହିଲେ ।୧। "ହେ ମହାବାହୋ ! ମୋ ଲାଗି ତୁମ୍ଭର ସନ୍ତାପ କରିବା ଉଚିତ ନୁହେଁ; କାଳର ଗତି ଏହିପରି ଅଟେ । ଯାହା ହେବାର ଥାଏ, ତାହା ପୂର୍ବରୁହିଁ ତିଆରି ହୋଇ ରହିଥାଏ ।୨। ହେ କାକୁତ୍ସ୍ଥ ! ତୁମେ ନିଶ୍ଚିନ୍ତମନରେ ମୋତେ ହତ୍ୟାକରି ନିଜର ପ୍ରତିଜ୍ଞା ପାଳନ କର । କାରଣ ହେ ସୌମ୍ୟ ! ପ୍ରତିଜ୍ଞା ପାଳନ ନ କରିବା ଲୋକେ ନରକଗାମୀ ହୋଇଥାନ୍ତି । ୩ । ହେ ମହାରାଜ !

ଯଦି ପ୍ରୀତିର୍ମହାରାଜ ଯଦ୍ୟନୁଗ୍ରାହ୍ୟତା ମୟି ।
ଜହି ମାଂ ନିର୍ବିଶଙ୍କସ୍ତ୍ୱଂ ଧର୍ମଂ ବର୍ଦ୍ଧୟ ରାଘବ । ୪ ।
ଲକ୍ଷ୍ମଣେନ ତଥୋକ୍ତସ୍ତୁ ରାମଃ ପ୍ରଚଳିତେନ୍ଦ୍ରିୟଃ ।
ମନ୍ତ୍ରିଣଃ ସମୁପାନୀୟ ତଥୈବ ଚ ପୁରୋଧସମ୍ । ୫ ।
ଅବ୍ରବୀଚ୍ଚ ତଦା ବୃତ୍ତଂ ତେଷାଂ ମଧ୍ୟେ ସ ରାଘବଃ ।
ଦୁର୍ବାସୋଽଭିଗମଂ ଚୈବ ପ୍ରତିଜ୍ଞାଂ ତାପସସ୍ୟ ଚ । ୬ ।
ତଚ୍ଛ୍ରୁତ୍ୱା ମନ୍ତ୍ରିଣଃ ସର୍ବେ ସୋପାଧ୍ୟାୟାଃ ସମାସତ ।
ବସିଷ୍ଠସ୍ତୁ ମହାତେଜା ବାକ୍ୟମେତଦୁବାଚ ହ । ୭ ।
ଦୃଷ୍ଟମେତନ୍ମହାବାହୋ କ୍ଷୟଂ ତେ ରୋମହର୍ଷଣମ୍ ।
ଲକ୍ଷ୍ମଣେନ ବିୟୋଗଶ୍ଚ ତବ ରାମ ମହାଯଶଃ । ୮ ।
ତ୍ୟଜୈନଂ ବଳବାନ୍ କାଲୋ ମା ପ୍ରତିଜ୍ଞାଂ ବୃଥା କୃଥାଃ ।
ବିନଷ୍ଟାୟାଂ ପ୍ରତିଜ୍ଞାୟାଂ ଧର୍ମୋଽପି ଚ ଲୟଂ ବ୍ରଜେତ୍ । ୯ ।
ତତୋ ଧର୍ମେ ବିନଷ୍ଟେ ତୁ ତ୍ରୈଲୋକ୍ୟଂ ସଚରାଚରମ୍ ।
ସଦେବର୍ଷିଗଣଂ ସର୍ବଂ ବିନଶ୍ୟେତ୍ତୁ ନ ସଂଶୟଃ । ୧୦ ।

---

ଯଦି ତୁମ୍ଭର ମୋଠାରେ ପ୍ରୀତି ଥାଏ, ଯଦି ତୁମ୍ଭେ ମୋତେ ଅନୁଗ୍ରହ କରୁଥାଅ, ତେବେ ମୋତେ ମାରି ନିଃସନ୍ଦେହରେ ସତ୍ୟଧର୍ମର ବୃଦ୍ଧି କର” । ୪ । ଲକ୍ଷ୍ମଣଙ୍କର ଏ କଥା ଶୁଣି ରାମଙ୍କର ଇନ୍ଦ୍ରିୟ ସକଳ ବିଚଳିତ ହୋଇପଡ଼ିଲେ ଏବଂ ସେ କୁଳପୁରୋହିତ ଓ ମନ୍ତ୍ରୀମାନଙ୍କୁ ଡକାଇ, ତପସ୍ୱୀ ଓ ତାଙ୍କ ମଧ୍ୟରେ ହୋଇଥିବା ଘଟଣା ତଥା ଦୁର୍ବାସାଙ୍କ ଆଗମନ ଏବଂ ତପସ୍ୱୀଙ୍କର ପ୍ରତିଜ୍ଞା କଥା ସେମାନଙ୍କୁ କହିଲେ ।୫-୬। ରାମଙ୍କର ସେ କଥା ଶୁଣି ମନ୍ତ୍ରୀମାନେ ସମସ୍ତେ ନୀରବ ହୋଇରହିଲେ । ତପୃରେ ମହାତେଜସ୍ୱୀ ବଶିଷ୍ଠ କହିଲେ ।୭। “ହେ ମହାଯଶସ୍ୱୀ ରାମ ! ମୋତେ ଯୋଗବଳରେ ଏହି ରୋମହର୍ଷଣକାରୀ ମହାବିନାଶର ବୃତ୍ତାନ୍ତ ଜଣାପଡ଼ିଯାଇଅଛି । ବର୍ତ୍ତମାନ ଲକ୍ଷ୍ମଣଙ୍କ ଠାରୁ ତୁମ୍ଭର ବିୟୋଗ ନିଶ୍ଚିତ ଅଟେ । ୮ । ତୁମ୍ଭେ ଏହାଙ୍କୁ ପରିତ୍ୟାଗ କର । କାଳହିଁ ବଳବାନ୍ ଅଟେ; ସୁତରାଂ ତୁମ୍ଭେ ନିଜର ପ୍ରତିଜ୍ଞାକୁ ଅନ୍ୟଥା କର ନାହିଁ । ପ୍ରତିଜ୍ଞା ନଷ୍ଟ ହୋଇଗଲେ ଧର୍ମ ମଧ୍ୟ ନଷ୍ଟ ହୋଇଯାଏ । ୯ । ପୁଣି ଧର୍ମ ନଷ୍ଟ ହୋଇଗଲେ ତ୍ରିଲୋକ ଏବଂ ଚର, ଅଚର ଓ ଦେବ ତଥା ଋଷିଗଣଙ୍କ ସହିତ ସମସ୍ତ ନଷ୍ଟ ହୋଇଯାଏ, ଏଥିରେ ସନ୍ଦେହ ନାହିଁ ।୧୦। ଅତଏବ ହେ ପୁରୁଷଶ୍ରେଷ୍ଠ !

ସ ତ୍ୱଂ ପୁରୁଷଶାର୍ଦ୍ଦୂଲ ତ୍ରୈଲୋକ୍ୟସ୍ୟାଭିପାଳନାତ୍ ।
ଲକ୍ଷ୍ମଣେନ ବିନା ଗୃହ୍ୟ ଜଗତ ସ୍ୱସ୍ଥଂ କୁରୁଷ୍ୱ ହ । ୧୧ ।
ତେଷାଂ ତତ୍ ସମବେତାନାଂ ବାକ୍ୟଂ ଧର୍ମାର୍ଥସଂହିତମ୍ ।
ଶ୍ରୁତ୍ୱା ପରିଷଦୋ ମଧ୍ୟେ ରାମୋ ଲକ୍ଷ୍ମଣମବ୍ରବୀତ୍ । ୧୨ ।
ବିସର୍ଜୟେ ତ୍ୱାଂ ସୌମିତ୍ରେ ମା ଭୂଦ୍ଧର୍ମବିପର୍ଯ୍ୟୟଃ ।
ତ୍ୟାଗୋ ବଧୋ ବା ବିହିତଃ ସାଧୂନାଂ ତ୍ୱଭୟଂ ସମମ୍ । ୧୩ ।
ରାମେଣ ଭାଷିତେ ବାକ୍ୟେ ବାଷ୍ପବ୍ୟାକୁଳିତେନ୍ଦ୍ରିୟଃ ।
ଲକ୍ଷ୍ମଣସ୍ତ୍ୱରିତଂ ପ୍ରାୟାତ୍ ସ୍ୱଗୃହଂ ନ ବିବେଶ ହ । ୧୪ ।
ସ ଗତ୍ୱା ସରଯୂତୀରମୁପସ୍ପୃଶ୍ୟ କୃତାଞ୍ଜଳିଃ ।
ନିଗୃହ୍ୟ ସର୍ବସ୍ରୋତାଂସି ନିଃଶ୍ୱାସଂ ନ ମୁମୋଚ ହ । ୧୫ ।
ଅନିଶ୍ୱସନ୍ତଂ ଯୁକ୍ତଂ ତଂ ସଶକ୍ରାଃ ସାପ୍ସରୋଗଣାଃ ।
ଦେବାଃ ସର୍ଷିଗଣାଃ ସର୍ବେ ପୁଷ୍ପୈରଭ୍ୟକିରଂସ୍ତଦା । ୧୬ ।
ଅଦୃଶ୍ୟଂ ସର୍ବମନୁଜୈଃ ସଶରୀରଂ ମହାବଳମ୍ ।
ପ୍ରଗୃହ୍ୟ ଲକ୍ଷ୍ମଣଂ ଶକ୍ରସ୍ତ୍ରିଦିବଂ ସଂବିବେଶ ହ । ୧୭ ।

---

ତ୍ରୈଲୋକ୍ୟର ପାଳନ ନିମନ୍ତେ ତୁମେ ଲକ୍ଷ୍ମଣଙ୍କୁ ତ୍ୟାଗକରି ଜଗତକୁ ସୁସ୍ଥ କର” । ୧୧ । ସେହି ସମବେତ ଲୋକମାନଙ୍କର ଧର୍ମ ଏବଂ ଯୁକ୍ତିଯୁକ୍ତ ବଚନ ଶୁଣି ରାମ ସେହି ସଭାମଧ୍ୟରେ ଲକ୍ଷ୍ମଣଙ୍କୁ କହିଲେ ।୧୨। “ହେ ସୌମିତ୍ରେ ! ଧର୍ମରେ ବ୍ୟାଘାତ ନ ଘଟୁ, ଏଥିଲାଗି ମୁଁ ତୁମକୁ ବିଦାୟ ଦେଉଛି । ସାଧୁମାନଙ୍କ ମତରେ ତ୍ୟାଗ ଏବଂ ବଧ ସମାନ ଅଟେ” ।୧୩। ରାମଙ୍କର ଏ କଥା ଶୁଣି ଲକ୍ଷ୍ମଣ ବିକଳ ହୋଇ ଏବଂ ଚକ୍ଷୁ ଅଶ୍ରୁପୂର୍ଣ୍ଣ କରି ସେଠାରୁ ତତ୍‌କ୍ଷଣାତ୍ ପ୍ରସ୍ଥାନ କଲେ । ସେ ନିଜ ଗୃହରେ ମଧ୍ୟ ପ୍ରବେଶ କଲେ ନାହିଁ । ୧୪ । ସେ ସିଧା ସରଯୂ ନଦୀକୂଳକୁ ଯାଇ ସେଠାରେ ଆଚମନ କରି, ହାତ ଯୋଡ଼ି ଏବଂ ସମସ୍ତ ଇନ୍ଦ୍ରିୟଙ୍କୁ ନିଗ୍ରହ କରି ଶ୍ୱାସକୁ ରୋଧକଲେ । ୧୫ । ଏହିପ୍ରକାରେ ଲକ୍ଷ୍ମଣଙ୍କୁ ଶ୍ୱାସରୋଧ କରିବାର ଦେଖି, ଇନ୍ଦ୍ର, ଅପ୍‌ସରାଗଣ ଦେବତା ଓ ଋଷିମାନେ ତାଙ୍କ ଉପରେ ପୁଷ୍ପ ବୃଷ୍ଟି କରିବାକୁ ଲାଗିଲେ ।୧୬। ମନୁଷ୍ୟମାନଙ୍କ ଅଦୃଶ୍ୟରେ ଇନ୍ଦ୍ର ମହାବଳୀ ଲକ୍ଷ୍ମଣଙ୍କୁ ସଶରୀରରେ ଧାରଣ କରି ଉଠାଇ ନେଇ ସ୍ୱର୍ଗରେ ଯାଇ ପ୍ରବେଶ କଲେ । ୧୭ । ଅନନ୍ତର ବିଷ୍ଣୁଙ୍କର ଚତୁର୍ଥ ଭାଗସ୍ୱରୂପୀ

**ତତୋ ବଷ୍ଟୋଶ୍ଚତୁର୍ଦ୍ଧଗମାଗତଂ ସୁରସତ୍ତମାଃ ।**
**ଦୃଷ୍ଟ୍ୱା ପ୍ରମୁଦତାଃ ସର୍ବେଽପୂଜୟନ୍ ସମହର୍ଷୟଃ । ୧୮ ।**

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦକାବ୍ୟେ ଚତୁର୍ବିଂଶତସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ଲକ୍ଷ୍ମଣତ୍ୟାଗୋ ନାମ ଷଡ୍ଭୁତ୍ତରଶତତମଃ ସର୍ଗଃ ।

---

# ସପ୍ତୋତ୍ତରଶତତମଃ ସର୍ଗଃ

## କୁଶଲବାଭିଷେକଃ

**ବସୃଜ୍ୟ ଲକ୍ଷ୍ମଣଂ ରାମୋ ଦୁଃଖଶୋକସମନ୍ୱିତଃ ।**
**ପୁରୋଧସଂ ମନ୍ତ୍ରିଣଶ୍ଚ ନୈଗମାଂଶ୍ଚେଦମବ୍ରବୀତ୍ । ୧ ।**
**ଅଦ୍ୟ ରାଜ୍ୟେଽଭିଷେକ୍ଷ୍ୟାମି ଭରତଂ ଧର୍ମବତ୍ସଲମ୍ ।**
**ଅଯୋଧ୍ୟାୟାଃ ପତିଂ ବୀରଂ ତତୋ ଯାସ୍ୟାମ୍ୟହଂ ବନମ୍ । ୨**
**ପ୍ରବେଶୟତ ସଂଭାରାନ୍ ମା ଭୂତ୍ କାଳସ୍ୟ ପର୍ଯ୍ୟୟଃ ।**
**ଅଦ୍ୟୈବାହଂ ଗମିଷ୍ୟାମି ଲକ୍ଷ୍ମଣେନ ଗତାଂ ଗତିମ୍ । ୩ ।**
**ତଚ୍ଛ୍ରୁତ୍ୱା ରାଘବେଣୋକ୍ତଂ ସର୍ବାଃ ପ୍ରକୃତୟୋ ଭୃଶମ୍ ।**
**ମୂର୍ଦ୍ଧଭିଃ ପ୍ରଣତା ଭୂମୌ ଗତସତ୍ତ୍ୱା ଇବାଭବନ୍ । ୪ ।**

---

ଲକ୍ଷ୍ମଣଙ୍କୁ ସ୍ୱର୍ଗକୁ ଆସିବାର ଦେଖି, ଦେବତାମାନେ ମହର୍ଷିମାନଙ୍କ ସହିତ ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ଲକ୍ଷ୍ମଣଙ୍କୁ ସମ୍ବର୍ଦ୍ଧନା କଲେ । ୧୮ ।

---

## ୧୦୭ତମ ସର୍ଗ

### ( କୁଶ ଓ ଲବଙ୍କ ଅଭିଷେକ )

ରାମ ଲକ୍ଷ୍ମଣଙ୍କୁ ତ୍ୟାଗକରି ଦୁଃଖ ଓ ଶୋକରେ ସନ୍ତପ୍ତ ହୋଇ ପୁରୋହିତ, ମନ୍ତ୍ରୀ ଏବଂ ମହାଜନମାନଙ୍କୁ ଡକାଇ କହିଲେ । ୧ । "ଆଜ ମୁଁ ଅଯୋଧ୍ୟାର ରାଜସିଂହାସନରେ ଧର୍ମବତ୍ସଳ ଭରତଙ୍କୁ ଅଭିଷିକ୍ତ କରାଇବି ଏବଂ ତଦନନ୍ତର ବନକୁ ଚାଲିଯିବି । ୨ । ଅତଏବ ଅଭିଷେକର ସମସ୍ତ ସାମଗ୍ରୀ ଆଣି ପହଞ୍ଚାଅ, ଆଉ କାଳ ବିଳମ୍ବ ନ ହେଉ; କାରଣ ଆଜହିଁ ଲକ୍ଷ୍ମଣ ଯେଉଁଆଡ଼େ ଯାଇଛନ୍ତି ମୁଁ ସେହି ଆଡ଼କୁ ଚାଲିଯିବି" । ୩ । ରାମଙ୍କର ଏ କଥା ଶୁଣି ପ୍ରଜାମାନେ ସମସ୍ତେ ଭୂମିରେ ମୁଣ୍ଡିଆ ମାରି ପ୍ରଣାମ କରି ନିର୍ଜୀବପ୍ରାୟ ହୋଇଗଲେ । ୪ । ରାମଙ୍କର କଥା ଶୁଣି

ଭରତସ୍ତୁ ବିସଂଜ୍ଞୋଽଭୂଚ୍ଛ୍ରୁତ୍ୱା ରାମସ୍ୟ ଭାଷିତମ୍ ।
ରାଜ୍ୟଂ ବିଗର୍ହୟାମାସ ରାଘବଂ ଚେଦମବ୍ରବୀତ୍ । ୫ ।
ସତ୍ୟେନାହଂ ଶପେ ରାଜନ୍ ସ୍ୱର୍ଗଲୋକେ ନ ଚୈବ ହି ।
ନ କାମୟେ ଯଥା ରାଜ୍ୟଂ ତ୍ୱାଂ ବିନା ରଘୁନନ୍ଦନ । ୬ ।
ଇମୌ କୁଶଲବୌ ରାଜନ୍ନଭିଷିଞ୍ଚ ନରାଧିପ ।
କୋସଲେଷୁ କୁଶଂ ବୀରମୁତ୍ତରେଷୁ ତଥା ଲବମ୍ । ୭ ।
ଶତ୍ରୁଘ୍ନସ୍ୟ ତୁ ଗଚ୍ଛନ୍ତୁ ଦୂତାସ୍ତ୍ୱରିତବିକ୍ରମାଃ ।
ଇଦଂ ଗମନମସ୍ମାକଂ ସ୍ୱର୍ଗାୟାଖ୍ୟାନ୍ତୁ ମା ଚିରମ୍ । ୮ ।
ତଚ୍ଛ୍ରୁତ୍ୱା ଭରତେନୋକ୍ତଂ ଦୃଷ୍ଟ୍ୱା ଚାପି ହ୍ୟଧୋମୁଖାନ୍ ।
ପୌରାନ୍ ଦୁଃଖେନ ସଂତପ୍ତାନ୍ ବସିଷ୍ଠୋ ବାକ୍ୟମବ୍ରବୀତ୍ । ୯ ।
ବତ୍ସ ରାମ ଇମାଃ ପଶ୍ୟ ଧରଣୀଂ ପ୍ରକୃତୀର୍ଗତାଃ ।
ଜ୍ଞାତ୍ୱୈଷାମୀପ୍ସିତଂ କାର୍ଯ୍ୟଂମା ଚୈଷାଂ ବିପ୍ରିୟଂ କୃଥାଃ ।୧୦।
ବସିଷ୍ଠସ୍ୟ ତୁ ବାକ୍ୟେନ ଉତ୍ଥାପ୍ୟ ପ୍ରକୃତୀଜନମ୍ ।
କିଂ କରୋମୀତି କାକୁତ୍ସ୍ଥଃ ସର୍ବା ବଚନମବ୍ରବୀତ୍ । ୧୧ ।
ତତଃ ସର୍ବାଃ ପ୍ରକୃତୟୋ ରାମଂ ବଚନମବ୍ରୁବନ୍ ।
ଗଚ୍ଛନ୍ତମନୁଗଚ୍ଛାମୋ ଯତ୍ର ରାମ ଗମିଷ୍ୟସି । ୧୨ ।

---

ଭରତ ମୂର୍ଚ୍ଛିତ ହୋଇଗଲେ । ସେ ରାଜ୍ୟକୁ ନିନ୍ଦାକରି ରାମଙ୍କୁ ଏହି କଥା କହିଲେ ।୫। "ହେ ରାଜନ୍, ହେ ରାମ ! ମୁଁ ସତ୍ୟକରି ଶପଥ କରୁଅଛି ଯେ, ତୁମ ବିନା ଏ ରାଜ୍ୟ କିଅଣ, ସ୍ୱର୍ଗଲୋକକୁ ମଧ୍ୟ କାମନା କରୁନାହିଁ । ୬ । ହେ ବୀର, ହେ ନରାଧିପ ! ତୁମେ କୁଶ ଲବଙ୍କର ଅଭିଷେକ କରାଇଦିଅ । କୋଶଳ ଦେଶରେ ବୀର କୁଶକୁ ଏବଂ ଉତ୍ତର କୋଶଳରେ ଲବକୁ ରାଜା କରିଦିଅ ।୭। ଶତ୍ରୁଘ୍ନଙ୍କ ପାଖକୁ ଅତିସତ୍ୱର ଦୂତ ଯାଇ ତାଙ୍କୁ ଆମ୍ଭର ସ୍ୱର୍ଗପ୍ରସ୍ଥାନ ସମ୍ବାଦ ଶୁଣାଇ ଶୀଘ୍ର ଏଠାକୁ ଘେନିଆସନ୍ତୁ" ।୮। ଭରତଙ୍କର ଏ କଥା ଶୁଣି ଏବଂ ପୁରବାସୀମାନେ ଅତିଦୁଃଖରେ ଅଧୋମୁଖ ଓ ସନ୍ତାପିତ ହୋଇଥିବା ଦେଖି ବଶିଷ୍ଠ କହିଲେ । ୯ । ହେ ବତ୍ସ ରାମ ! ତୁମ୍ଭର ପ୍ରଜାମାନଙ୍କୁ ଦେଖ, କିପରି ସେମାନେ ଭୂଇଁରେ ଲୋଟୁଛନ୍ତି । ଏମାନଙ୍କର ଅଭିପ୍ରାୟ ଜାଣି ତୁମେ ତଦନୁସାରେ କାର୍ଯ୍ୟ କରିବା ଉଚିତ; ଏମାନଙ୍କର ଅପ୍ରିୟ କାର୍ଯ୍ୟ କରିବା ତୁମ୍ଭର ଉଚିତ ନୁହେ" । ୧୦ । ବଶିଷ୍ଠଙ୍କ କଥା ଶୁଣି ରାମ ସେହି ପ୍ରଜାମାନଙ୍କୁ ଉଠାଇଲେ ଏବଂ ସେମାନଙ୍କୁ ପଚାରିଲେ, "ତୁମ୍ଭମାନଙ୍କ ପାଇଁ ମୁଁ କିଅଣ କରିବି ?" ।୧୧। ଅନନ୍ତର ପ୍ରଜାମାନେ ସମସ୍ତେ ରାମଙ୍କୁ କହିଲେ, "ହେ ରାମ ! ତୁମେ ଯେଉଁଆଡ଼େ ଯିବ, ଆମେ

ପୌରେଷୁ ଯଦି ତେ ପ୍ରୀତିର୍ଯଦି ସ୍ନେହୋ ହ୍ୟନୁତ୍ତମଃ ।
ସପୁତ୍ରଦାରାଃ କାକୁତ୍ସ୍ଥ ସମାଗଚ୍ଛାମ ସତ୍ପଥମ୍ ।୧୩।
ତପୋବନଂ ବା ଦୁର୍ଗଂ ବା ନଦୀମମ୍ଭୋନିଧିଂ ତଥା ।
ବୟଂ ତେ ଯଦି ନ ତ୍ୟାଜ୍ୟା ସର୍ବାନ୍ନୋ ନୟ ଈଶ୍ୱର ।୧୪।
ଏଷା ନଃ ପରମା ପ୍ରୀତିରେଷ ନଃ ପରମୋ ବରଃ ।
ହୃଦ୍ଗତା ନଃ ସଦା ପ୍ରୀତିସ୍ତବାନୁଗମନେ ନୃପ ।୧୫।
ପୌରାଣାଂ ଦୃଢ଼ଭକ୍ତିଂ ଚ ବାଢ଼ମିତ୍ୟେବ ସୋଽବ୍ରବୀତ୍ ।
ସ୍ୱକୃତାନ୍ତଂ ଚାନ୍ୱବେକ୍ଷ୍ୟ ତସ୍ମିନ୍ନହନି ରାଘବଃ ।୧୬।
କୋଶଲେଷୁ କୁଶଂ ବୀରମୁତ୍ତରେଷୁ ତଥା ଲବମ୍ ।
ଅଭିଷିଚ୍ୟ ମହାତ୍ମାନାବୁଭୌ ରାମଃ କୁଶୀଲବୌ ।୧୭।
ଅଭିଷିକ୍ତୌ ସୁତାବଙ୍କେ ପ୍ରତିଷ୍ଠାପ୍ୟ ପୁରେ ତତଃ ।
ପରିଷ୍ୱଜ୍ୟ ମହାବାହୁର୍ମୂର୍ଧ୍ନ୍ୟୁପାଘ୍ରାୟ ଚାସକୃତ୍ ।୧୮।
ରଥାନାଂ ତୁ ସହସ୍ରାଣି ନାଗାନାମୟୁତାନି ଚ ।
ଦଶାୟୁତାନି ଚାଶ୍ୱାନାମେକୈକସ୍ୟ ଧନଂ ଦଦୌ ।୧୯।

---

ସମସ୍ତେ ତୁମର ପଛେ ପଛେ ଯିବୁଁ ।୧୨। ହେ ରାମ ! ପୁରବାସୀମାନଙ୍କ ଠାରେ ତୁମ୍ଭର ଯଦି ପ୍ରୀତି ଏବଂ ଉତ୍ତମ ସ୍ନେହ ଥାଏ, ତାହାହେଲେ ଆମେ ସମସ୍ତେ ପୁତ୍ର ପତ୍ନୀ ସହିତ ତୁମ୍ଭର ସାଥିରେ ସତ୍‌ପଥରେ ଯିବୁ, ଏଥିପାଇଁ ଆମକୁ ଅନୁମତି ଦିଅ ।୧୩। ହେ ପ୍ରଭୋ ! ଯଦି ତୁମେ ଆମଙ୍କୁ ଛାଡ଼ିବାକୁ ନ ଚାହୁଁଥାଅ, ତେବେ ତୁମେ ତପୋବନକୁ ବା ଦୁର୍ଗମ ସ୍ଥାନକୁ ଅଥବା ସମୁଦ୍ରକୁ—ଯେଉଁଠିକି ଯାଅ, ଆମ ସମସ୍ତଙ୍କୁ ବି ତୁମ ସାଙ୍ଗରେ ନେଇଯାଅ ।୧୪। ହେ ରାଜନ୍ ! ଏଇଥିରେହିଁ ଆମର ପରମ ଆନନ୍ଦ ହେବ, ଏହାହିଁ ଆମମାନଙ୍କ ପାଇଁ ଉତ୍କୃଷ୍ଟ ବର ହେବ; ତୁମ୍ଭର ଅନୁଗମନ କରିବାକୁ ଆମ ମନରେ ସବୁବେଳେ ପ୍ରୀତି ରହିଅଛି'' ।୧୫। ପୁରବାସୀମାନଙ୍କର ରାମଙ୍କ ପ୍ରତି ଏପରି ଦୃଢ଼ ଭକ୍ତି ଦେଖି ଏବଂ ସେ ଆପଣା କର୍ତ୍ତବ୍ୟ ବିଚାର କରି, ସେହିଦିନ ସେମାନଙ୍କୁ ତାଙ୍କ ସଙ୍ଗରେ ଯିବାକୁ ଅନୁମତି ଦେଲେ ।୧୬। ରାମ କୋଶଳରେ ବୀର କୁଶଙ୍କୁ ଓ ଉତ୍ତର କୋଶଳରେ ଲବଙ୍କୁ ଅଭିଷିକ୍ତ କରି, ଦୁଇ ପୁତ୍ରଙ୍କୁ କୋଳରେ ବସାଇ ଆଲିଙ୍ଗନ କଲେ ଏବଂ ବାରମ୍ବାର ମସ୍ତକ ଆଘ୍ରାଣ କରି ସେମାନଙ୍କୁ ପ୍ରତ୍ୟେକଙ୍କୁ ହଜାରେ ରଥ, ଅୟୁତେ ହାତୀ ଏବଂ ଦଶ ଅୟୁତ

ବହୁରତ୍ନୌ ବହୁଧନୌ ହୃଷ୍ଟପୁଷ୍ଟଜନାବୃତୌ ।
ସ୍ୱେ ପୁରେ ପ୍ରେଷୟାମାସ ଭ୍ରାତରୌ ତୁ କୁଶୀଲବୌ । ୨୦ ।
ଅଭିଷିଚ୍ୟ ସୁତୌ ବୀରୌ ପ୍ରତିଷ୍ଠାପ୍ୟ ପୁରେ ତଦା ।
ଦୂତାନ୍ ସଂପ୍ରେଷୟାମାସ ଶତ୍ରୁଘ୍ନାୟ ମହାତ୍ମନେ । ୨୧ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ କୁଶଲବାଭିଷେକୋ ନାମ ସପ୍ତୋତ୍ତରଶତତମଃ ସର୍ଗଃ ।

# ଅଷ୍ଟୋତ୍ତରଶତତମଃ ସର୍ଗଃ

## ବିଭୀଷଣାଦ୍ୟାଦେଶଃ

ତେ ଦୂତା ରାମବାକ୍ୟେନ ଚୋଦିତା ଲଘୁବିକ୍ରମାଃ ।
ପ୍ରଜଗ୍ମୁର୍ମଧୁରାଂ ଶୀଘ୍ରଂ ଚକ୍ରୁର୍ବାସଂ ଚ ନାଧ୍ୱନି । ୧ ।
ତେ ତୁ ତ୍ରିଭିରହୋରାତ୍ରୈଃ ସଂପ୍ରାପ୍ୟ ମଧୁରାମଥ ।
ଶତ୍ରୁଘ୍ନାୟ ଯଥାତତ୍ତ୍ୱମାଚଖ୍ୟୁଃ ସର୍ବମେବ ତତ୍ । ୨ ।

---

ଘୋଡ଼ା ଏବଂ ଧନ ରତ୍ନାଦି ଦେଲେ । ୧୭-୧୯ । ସେମାନଙ୍କ ସହିତ ବହୁ ରତ୍ନ, ବହୁ ଧନ ଏବଂ ବହୁ ହୃଷ୍ଟପୁଷ୍ଟ ମନୁଷ୍ୟ ଦେଇ ଦୁଇ ଭାଇଙ୍କୁ ସେ ଦୁଇ ଦେଶକୁ ପଠାଇଦେଲେ । ୨୦ । ଏହିପ୍ରକାରେ ରାମ ସେ ଦୁଇ ବୀରଙ୍କୁ ରାଜ୍ୟାଭିଷିକ୍ତ କରି ଏବଂ ସେମାନଙ୍କୁ ନିଜ ନିଜ ପୁରରେ ସ୍ଥାପନା କରି ମହାତ୍ମା ଶତ୍ରୁଘ୍ନଙ୍କୁ ଡକାଇବା ପାଇଁ ଦୂତ ପଠାଇଲେ । ୨୧ ।

## ୧୦୮ତମ ସର୍ଗ

(ବିଭୀଷଣ ପ୍ରଭୃତିଙ୍କୁ ଆଦେଶ)

ରାମଙ୍କ ଆଜ୍ଞାରେ ଶୀଘ୍ରଗାମୀ ଦୂତମାନେ ଅତି ଶୀଘ୍ର ମଥୁରାକୁ ଗଲେ ଏବଂ ବାଟରେ କୌଣସିଠାରେ ରହିଲେ ନାହିଁ ।୧। ଅନନ୍ତର ତିନି ଦିନ ଓ ତିନି ରାତି ପରେ ସେମାନେ ମଥୁରାରେ ପହଞ୍ଚି ଯଥାଯଥଭାବରେ ଏ ସମସ୍ତ କଥା ଶତ୍ରୁଘ୍ନଙ୍କୁ କହିଲେ ।୨।

ଲକ୍ଷ୍ମଣସ୍ୟ ପରିତ୍ୟାଗଂ ପ୍ରତିଜ୍ଞାଂ ରାଘବସ୍ୟ ଚ ।
ପୁତ୍ରୟୋରଭିଷେକଂ ଚ ପୌରାନୁଗମନଂ ତଥା ॥ ୩ ॥
କୁଶସ୍ୟ ନଗରୀ ରମ୍ୟା ବିନ୍ଧ୍ୟପର୍ବତରୋଧସି ।
କୁଶାବତୀତି ନାମ୍ନା ସା କୃତା ରାମେଣ ଧୀମତା ॥ ୪ ॥
ଶ୍ରାବସ୍ତୀତି ପୁରୀ ରମ୍ୟା ଶ୍ରାବିତା ଚ ଲବସ୍ୟ ଚ ।
ଅଯୋଧ୍ୟାଂ ବିଜନାଂ କୃତ୍ୱା ରାଘବୋ ଭରତସ୍ତଥା ॥ ୫ ॥
ସ୍ୱର୍ଗସ୍ୟ ଗମନୋଦ୍ୟୋଗଂ କୃତବନ୍ତୌ ମହାରଥୌ ।
ଏବଂ ସର୍ବଂ ନିବେଦ୍ୟାଶୁ ଶତ୍ରୁଘ୍ନାୟ ମହାତ୍ମନେ ॥ ୬ ॥
ବିରେମୁସ୍ତେ ତତୋ ଦୂତାସ୍ତ୍ୱର ରାଜେତି ଚାବ୍ରୁବନ୍ ।
ତଚ୍ଛ୍ରୁତ୍ୱା ଘୋରସଂକାଶଂ କୁଳକ୍ଷୟମୁପସ୍ଥିତମ୍ ॥ ୭ ॥
ପ୍ରକୃତୀସ୍ତୁ ସମାନୀୟ କାଞ୍ଚନଂ ଚ ପୁରୋଧସମ୍ ।
ତେଷାଂ ସର୍ବଂ ଯଥାବୃତ୍ତମବ୍ରବୀଦ୍ରଘୁନନ୍ଦନଃ ॥ ୮ ॥
ଆତ୍ମନଶ୍ଚ ବିପର୍ଯାସଂ ଭବିଷ୍ୟଂ ଭ୍ରାତୃଭିଃ ସହ ।
ତତଃ ପୁତ୍ରଦ୍ୱୟଂ ବୀରଃ ସୋଽଭ୍ୟଷିଞ୍ଚନ୍ନରାଧିପଃ ॥ ୯ ॥

---

ଲକ୍ଷ୍ମଣପରିତ୍ୟାଗ, ରାମଙ୍କର ପ୍ରତିଜ୍ଞା, ପୁତ୍ରମାନଙ୍କର ରାଜ୍ୟାଭିଷେକ, ପୁରବାସୀମାନଙ୍କର ରାମଙ୍କ ସଙ୍ଗରେ ଯିବାର ପ୍ରସ୍ତାବ; ଏ ସବୁ କଥା ଦୂତମାନେ ତାଙ୍କୁ କହିଲେ ।୩। ବୁଦ୍ଧିମାନ୍ ରାମ ବିନ୍ଧ୍ୟପର୍ବତର ନିମ୍ନଦେଶରେ କୁଶାବତୀ ନଗର ବସାଇ ସେଥିରେ କୁଶଙ୍କୁ ଅଭିଷିକ୍ତ କରାଇବା ଏବଂ ଲବଙ୍କୁ ଶ୍ରାବସ୍ତୀ ନାମକ ଏକ ସୁନ୍ଦର ପୁରୀ ପ୍ରଦାନ କରିବା ତଥା ମହାରଥୀ ରାମ ଏବଂ ଭରତ ଅଯୋଧ୍ୟାକୁ ନିର୍ଜନ କରି ସ୍ୱର୍ଗକୁ ଯିବାକୁ ଉଦ୍ୟୋଗ କରିବା ଆଦି ସମସ୍ତ ବୃତ୍ତାନ୍ତ ସେମାନେ ମହାତ୍ମା ଶତ୍ରୁଘ୍ନଙ୍କୁ ଜଣାଇଲେ ।୪-୬। "ହେ ରାଜନ୍! ତୁମେ ଶୀଘ୍ର ଚାଲ" ଏହି କଥା ଦୂତମାନେ କହି ଚୁପ ହୋଇଗଲେ । ଶତ୍ରୁଘ୍ନ ଏପ୍ରକାର କୁଳକ୍ଷୟକାରୀ ଘୋର ବୃତ୍ତାନ୍ତ ଶୁଣି, ନିଜର ସମସ୍ତ ମନ୍ତ୍ରୀ ଓ ପ୍ରଜାମାନଙ୍କୁ ତଥା କାଞ୍ଚନ ନାମକ ପୁରୋହିତଙ୍କୁ ଡକାଇ, ସେ ସମସ୍ତଙ୍କୁ ଅଯୋଧ୍ୟାର ବୃତ୍ତାନ୍ତ ଶୁଣାଇଲେ ।୭-୮। ସେ ନିଜେ ମଧ୍ୟ ଭାଇମାନଙ୍କ ସହିତ ଶେଷ ପ୍ରୟାଣ କରିବେ ବୋଲି କହିଲେ । ଅନନ୍ତର ବୀର ରାଜା ଶତ୍ରୁଘ୍ନ

ସୁବାହୁର୍ମଧୁରାଂ ଲେଭେ ଶତ୍ରୁଘାତୀ ଚ ବୈଦିଶମ୍ ।
ଦ୍ୱିଧା କୃତ୍ୱା ତୁ ତାଂ ସେନାଂ ମାଧୁରୀଂ ପୁତ୍ରୟୋର୍ଦ୍ୱୟୋଃ ।୧୦।
ଧନଂ ଚ ଯୁକ୍ତଂ କୃତ୍ୱା ବୈ ସ୍ଥାପୟାମାସ ପାର୍ଥିବଃ ।
ସୁବାହୁଂ ମଧୁରାୟାଂ ଚ ବୈଦିଶେ ଶତ୍ରୁଘାତିନମ୍ । ୧୧ ।
ଯଯୌ ସ୍ଥାପ୍ୟ ତଦାଯୋଧ୍ୟାଂ ରଥେନୈକେନ ରାଘବଃ ।
ସ ଦଦର୍ଶ ମହାତ୍ମାନଂ ଜ୍ୱଲନ୍ତମିବପାବକମ୍ । ୧୨ ।
ସୂକ୍ଷ୍ମକ୍ଷୌମାମ୍ବରଧରଂ ମୁନିଭିଃ ସାର୍ଧମକ୍ଷୟୈଃ ।
ସୋଽଭିବାଦ୍ୟ ତତୋ ରାମଂ ପ୍ରାଞ୍ଜଳିଃ ପ୍ରୟତେନ୍ଦ୍ରିୟଃ ।୧୩।
ଉବାଚ ବାକ୍ୟଂ ଧର୍ମଜ୍ଞଂ ଧର୍ମମେବାନୁଚିନ୍ତୟନ୍ ।
କୃତାଭିଷେକଂ ସୁତୟୋର୍ଯୁକ୍ତଂ ରାଘବନନ୍ଦନ । ୧୪ ।
ତବାନୁଗମନେ ରାଜନ୍ ବିଦ୍ଧି ମାଂ କୃତନିଶ୍ଚୟମ୍ ।
ନ ଚାନ୍ୟଦପି ବକ୍ତବ୍ୟମତୋ ବୀର ନ ଶାସନମ୍ ।
ବିହନ୍ୟମାନମିଚ୍ଛାମି ତ୍ୱଦ୍‌ବିଧେନ ବିଶେଷତଃ । ୧୫ ।
ତସ୍ୟ ତାଂ ବୁଦ୍ଧିମକ୍ଲୀବାଂ ବିଜ୍ଞାୟ ରଘୁନନ୍ଦନଃ ।
ବାଢମିତ୍ୟେବ ଶତ୍ରୁଘ୍ନଂ ରାମୋ ବାକ୍ୟମୁବାଚ ହ । ୧୬ ।

---

ଦୁଇ ପୁତ୍ରଙ୍କୁ ରାଜ୍ୟରେ ଅଭିଷିକ୍ତ କରାଇଲେ । ୯ । ସୁବାହୁ ମଥୁରା ପାଇଲେ ଏବଂ ଶତ୍ରୁଘାତୀ ବିଦିଶା ପାଇଲେ । ମଥୁରାରେ ଥିବା ସେନାଙ୍କୁ ଏବଂ ଧନକୁ ଦୁଇଭାଗ କରି ସେ ଦୁଇ ପୁତ୍ରଙ୍କ ମଧ୍ୟରେ ବାଣ୍ଟିଦେଲେ । ସୁବାହୁଙ୍କୁ ମଥୁରାରେ ଏବଂ ଶତ୍ରୁଘାତୀଙ୍କୁ ବିଦିଶାରେ ସ୍ଥାପନ କରି ଶତ୍ରୁଘ୍ନ ନିଜେ ଏକ ରଥରେ ବସି ଏକାକୀ ଅଯୋଧ୍ୟାକୁ ଯାତ୍ରା କଲେ । ସେ ଅଯୋଧ୍ୟାରେ ପହଞ୍ଚି ଅଗ୍ନି ସଦୃଶ ତେଜସ୍ୱୀ ରାମଙ୍କୁ ଦେଖିଲେ । ୧୦-୧୨ । ସେତେବେଳେ ରାମ ଅତିସୂକ୍ଷ୍ମ ରେଶମୀ ବସ୍ତ୍ର ପିନ୍ଧି ମୁନିମାନଙ୍କ ସଙ୍ଗରେ ବସିଥିଲେ । ଅନନ୍ତର ଶତ୍ରୁଘ୍ନ ଧର୍ମଜ୍ଞ ରାମଙ୍କୁ ପ୍ରଣାମ କରି କର ଯୋଡ଼ି ସଂଯତ-ହୋଇ କେବଳ ଧର୍ମକଥାକୁହିଁ ଚିନ୍ତାକରି କହିଲେ, "ହେ ରଘୁନନ୍ଦନ ! ମୁଁ ମୋର ଦୁଇ ପୁତ୍ରଙ୍କର ଅଭିଷେକ କରାଇଦେଇ ଆସିଛି । ୧୩-୧୪ । ହେ ରାଜନ୍ ! ତୁମେ ଜାଣ ଯେ ମୁଁ ତୁମ୍ଭର ଅନୁଗମନ କରିବାକୁ ସଂକଳ୍ପ କରିସାରିଛି । ହେ ବୀର ! ମୋର ଆଉ କିଛି କହିବାର ନାହିଁ; ତୁମେ ମଧ୍ୟ ମୋତେ ଅନ୍ୟ କୌଣସି ଆଦେଶ ଦେବ ନାହିଁ । କାରଣ ମୋପରି ଲୋକ ତୁମ କଥା ଲଙ୍ଘନ କରିବା ଠିକ ହେବ ନାହିଁ । ମୁଁ ନିଜକୁ ତୁମ ସହିତ ଉତ୍ସର୍ଗ କରି ଦେବାକୁ ଇଚ୍ଛା କରୁଅଛି" । ୧୫ । ରାମ ଶତ୍ରୁଘ୍ନଙ୍କର ଏ ପ୍ରକାର ଦୃଢ଼ସଂକଳ୍ପ ଜାଣି ତାଙ୍କୁ କହିଲେ, "ଆଚ୍ଛା, ତାହାହିଁ

ତସ୍ୟ ବାକ୍ୟସ୍ୟ ବାକ୍ୟାନ୍ତେ ବାନରାଃ କାମରୂପିଣଃ ।
ଋକ୍ଷରାକ୍ଷସସଙ୍ଘାଶ୍ଚ ସମାପେତୁରନେକଶଃ । ୧୭ ।
ସୁଗ୍ରୀବଂ ତେ ପୁରସ୍କୃତ୍ୟ ସର୍ବ ଏବ ସମାଗତାଃ ।
ତେ ରାମଂ ଦ୍ରଷ୍ଟୁମନସୋ ସ୍ୱର୍ଗାୟାଭିମୁଖଂ ସ୍ଥିତମ୍ । ୧୮ ।
ଦେବପୁତ୍ରା ଋଷିସୁତା ଗନ୍ଧର୍ବାଣାଂ ସୁତାସ୍ତଥା ।
ରାମକ୍ଷୟଂ ବିଦିତ୍ୱା ତେ ସର୍ବ ଏବ ସମାଗତାଃ । ୧୯ ।
ତେ ରାମମଭିବାଦ୍ୟୋଚୁଃ ସର୍ବେ ବାନରରାକ୍ଷସାଃ ।
ତବାନୁଗମନେ ରାଜନ୍ ସଂପ୍ରାପ୍ତାଃ କୃତନିଶ୍ଚୟାଃ । ୨୦ ।
ଯଦି ରାମ ବିନାସ୍ମାଭିର୍ଗଚ୍ଛେସ୍ତ୍ୱଂ ପୁରୁଷୋତ୍ତମ ।
ଯମଦଣ୍ଡମିବୋଦ୍ୟମ୍ୟ ତ୍ୱୟା ସ୍ମ ବିନିପାତିତାଃ । ୨୧ ।
ତୈରେବମୁକ୍ତଃ କାକୁତ୍ସ୍ଥୋ ବାଢ଼ମିତ୍ୟବ୍ରବୀତ୍ ସ୍ମୟନ୍ ।
ଏତସ୍ମିନ୍ନନ୍ତରେ ରାମଂ ସୁଗ୍ରୀବୋଽପି ମହାବଲଃ ।
ପ୍ରଣମ୍ୟ ବିଧିବଦ୍ ବୀରଂ ବିଜ୍ଞାପୟିତୁମୁଦ୍ୟତଃ । ୨୨ ।
ଅଭିଷିଚ୍ୟାଙ୍ଗଦଂ ବୀରମାଗତୋଽସ୍ମି ନରେଶ୍ୱର ।
ତବାନୁଗମନେ ରାଜନ୍ ବିଦ୍ଧି ମାଂ କୃତନିଶ୍ଚୟମ୍ । ୨୩ ।

---

ହେବ" । ୧୬ । ରାମ ଏହି କଥା କହିବାର ଶେଷବେଳକୁ ଅସଂଖ୍ୟ କାମରୂପୀ ବାନର, ଋକ୍ଷ ଏବଂ ରାକ୍ଷସ ଦଳ ଦଳ ହୋଇ ଆସି ପହଞ୍ଚିଲେ । ୧୭ । ସୁଗ୍ରୀବଙ୍କ ନେତୃତ୍ୱରେ ସେହି ବାନରମାନେ ସ୍ୱର୍ଗକୁ ଯିବାପାଇଁ ପ୍ରସ୍ତୁତ ହୋଇଥିବା ରାମଙ୍କୁ ଦର୍ଶନ କରିବା ନିମନ୍ତେ ଆସିଥିଲେ । ୧୮ । ଦେବତା, ଋଷି ଓ ଗନ୍ଧର୍ବମାନଙ୍କଠାରୁ ଉତ୍ପନ୍ନ ଏହି ବାନରମାନେ ରାମଙ୍କର ପରଲୋକକୁ ଯିବା ସମ୍ବାଦ ଶୁଣି ସେଠାକୁ ଆସି ସମବେତ ହୋଇଥିଲେ । ୧୯ । ସେହି ବାନର ଓ ରାକ୍ଷସମାନେ ରାମଙ୍କୁ ଅଭିବାଦନ କରି କହିଲେ, "ହେ ରାଜନ୍ ! ଆମ୍ଭେମାନେ ତୁମ ପଛେ ପଛେ ଯିବାପାଇଁ ସଂକଳ୍ପ କରି ଏଠାକୁ ଆସିଅଛୁଁ । ୨୦ । ହେ ପୁରୁଷୋତ୍ତମ ରାମ ! ତୁମେ ଯଦି ଆମ୍ଭମାନଙ୍କୁ ସଙ୍ଗରେ ନ ନେଇ ଚାଲିଯିବ, ତାହାହେଲେ ତୁମେ ଯମଦଣ୍ଡ ଧରି ଆମ୍ଭମାନଙ୍କୁ ମାରିପକାଇଲ ବୋଲି ଆମେ ବୁଝିବୁଁ" ।୨୧। ସେମାନେ ଏପରି କହିବାରୁ ରାମ ଟିକିଏ ହସି "ଆଚ୍ଛା ତାହାହିଁ ହେବ" ବୋଲି କହିଲେ । ଇତିମଧ୍ୟରେ ମହାବଳୀ ସୁଗ୍ରୀବ ବୀର ରାମଚନ୍ଦ୍ରଙ୍କୁ ବିଧିପୂର୍ବକ ପ୍ରଣାମ କରି ଜଣାଇବାକୁ ଉଦ୍ୟତ ହେଲେ । ୨୨ । "ହେ ନରରାଜ ! ମୁଁ ବୀର ଅଙ୍ଗଦକୁ ରାଜ୍ୟରେ ଅଭିଷିକ୍ତ କରି ତୁମ

ତସ୍ୟ ତଦ୍ ବଚନଂ ଶ୍ରୁତ୍ୱା ରାମୋ ରମୟତାଂ ବରଃ ।
ବାନରେନ୍ଦ୍ରମଥୋବାଚ ମୈତ୍ରଂ ତସ୍ୟାନୁଚିନ୍ତୟନ୍ । ୨୪ ।
ସଖେ ଶୃଣୁଷ୍ୱ ସୁଗ୍ରୀବ ନ ତ୍ୱୟାହଂ ବିନାକୃତଃ ।
ଗଚ୍ଛେୟଂ ଦେବଲୋକଂ ବା ପରମଂ ବା ପଦଂ ମହତ୍ । ୨୫ ।
ବିଭୀଷଣମଥୋବାଚ ରାକ୍ଷସେନ୍ଦ୍ରଂ ମହାଯଶାଃ ।
ଯାବତ୍ ପ୍ରଜା ଧରିଷ୍ୟନ୍ତି ତାବତ୍ତ୍ୱଂ ବୈ ବିଭୀଷଣ ।
ରାକ୍ଷସେନ୍ଦ୍ର ମହାବୀର୍ଯ ଲଙ୍କାସ୍ଥଃ ସ୍ୱଂ ଧରିଷ୍ୟସି । ୨୬ ।
ଯାବଚ୍ଚନ୍ଦ୍ରଶ୍ଚ ସୂର୍ଯଶ୍ଚ ଯାବତ୍ତିଷ୍ଠତି ମେଦିନୀ ।
ଯାବଚ୍ଚ ମତ୍କଥା ଲୋକେ ତାବଦ୍ରାଜ୍ୟଂ ତବାସ୍ତ୍ୱିହ । ୨୭ ।
ଶାସିତସ୍ତ୍ୱଂ ସଖିତ୍ୱେନ କାର୍ଯଂ ତେ ମମ ଶାସନମ୍ ।
ପ୍ରଜାଃ ସଂରକ୍ଷ ଧର୍ମେଣ ନୋତ୍ତରଂ ବକ୍ତୁମର୍ହସି । ୨୮ ।
କିଂ ଚାନ୍ୟଦ୍ ବକ୍ତୁମିଚ୍ଛାମି ରାକ୍ଷସେନ୍ଦ୍ର ମହାମତେ ।
ଆରାଧୟ ଜଗନ୍ନାଥମିକ୍ଷ୍ୱାକୁକୁଲଦୈବତମ୍ ।
ଆରାଧନୀୟମନିଶଂ ସର୍ବୈର୍ଦେବୈଃ ସବାସବୈଃ । ୨୯ ।

---

ଚଳେଛ ପଛେ ଯିବାପାଇଁ ସଂକଳ୍ପ କରି ଆସିଅଛି" ।୨୩ । ସମସ୍ତଙ୍କୁ ପ୍ରୀତ କରିବାରେ ନିପୁଣ ରାମ ବାନରରାଜ ସୁଗ୍ରୀବଙ୍କର ସେ କଥା ଶୁଣି ଏବଂ ତାହାଙ୍କ ସହିତ ମିତ୍ରତା ସ୍ମରଣ କରି ତାଙ୍କୁ କହିଲେ । ୨୪ । "ହେ ସଖା ସୁଗ୍ରୀବ ! ତୁମେ ଶୁଣ, ମୁଁ ତୁମକୁ ଛାଡ଼ି ଦେବଲୋକକୁ କିମ୍ବା ଉତ୍କୃଷ୍ଟ ପରମ ପଦକୁ ମଧ୍ୟ ଯିବି ନାହିଁ" । ୨୫ । ଅନନ୍ତର ମହାଯଶା ରାମ ବିଭୀଷଣଙ୍କୁ କହିଲେ, "ହେ ରାକ୍ଷସେନ୍ଦ୍ର, ମହାବୀର୍ଯ୍ୟ ବିଭୀଷଣ ! ଯେତେଦିନଯାଏ ପ୍ରଜା ରହିଥିବେ ସେତେଦିନ ପର୍ଯ୍ୟନ୍ତ ତୁମେ ଲଙ୍କାରେ ରାଜତ୍ୱ କରି ରହିବ । ୨୬ । ଯେପର୍ଯ୍ୟନ୍ତ ଚନ୍ଦ୍ର ସୂର୍ଯ୍ୟ ବିଦ୍ୟମାନ ଥିବେ, ଯେପର୍ଯ୍ୟନ୍ତ ପୃଥିବୀ ରହିଥିବ ଏବଂ ଯେପର୍ଯ୍ୟନ୍ତ ମୋର କଥା ଜଗତରେ ପ୍ରଚଳିତ ରହିଥିବ, ସେପର୍ଯ୍ୟନ୍ତ ତୁମ୍ଭର ରାଜ୍ୟ ସ୍ଥିର ହୋଇ ରହିଥାଉ । ୨୭ । ମୁଁ ମିତ୍ରଭାବରେ ତୁମକୁ ଏ ଆଜ୍ଞା ଦେଉଅଛି । ସୁତରାଂ ମୋର ଏ ଆଦେଶ ତୁମ୍ଭର ମାନିବା ଉଚିତ । ତୁମେ ଧର୍ମପୂର୍ବକ ପ୍ରଜାମାନଙ୍କୁ ପାଳିବ । ଏ ବିଷୟରେ ତୁମେ ଆଉ କିଛି ଉତ୍ତର ଦିଅ ନାହିଁ । ୨୮ । ହେ ମହାବଳୀ . ରାକ୍ଷସେନ୍ଦ୍ର ! ମୁଁ ଆଉ କିଛି ମଧ୍ୟ ତୁମକୁ କହିବାକୁ ଚାହୁଁଛି । ଏହି ଇକ୍ଷ୍ୱାକୁକୁଳର ଇଷ୍ଟଦେବ ଜଗନ୍ନାଥଙ୍କୁ ତୁମେ ଆରାଧନା କରୁଥିବ । ସେ ଇନ୍ଦ୍ର ଏବଂ ସମସ୍ତ ଦେବଗଣଙ୍କ ସହିତ ସର୍ବଦା ଆରାଧନୀୟ

ତଥେତି ପ୍ରତିଜଗ୍ରାହ ରାମବାକ୍ୟଂ ବିଭୀଷଣଃ ।
ରାଜା ରାକ୍ଷସମୁଖ୍ୟାନାଂ ରାଘବାଜ୍ଞାମନୁସ୍ମରନ୍ । ୩୦ ।
ତମେବମୁକ୍ତ୍ୱା କାକୁତ୍ସ୍ଥୋ ହନୂମନ୍ତମଥାବ୍ରବୀତ୍ ।
ଜୀବିତେ କୃତବୁଦ୍ଧିସ୍ତ୍ୱଂ ମା ପ୍ରତିଜ୍ଞାଂ ବିଲୋପୟ । ୩୧ ।
ମତ୍କଥାଃ ପ୍ରଚରିଷ୍ୟନ୍ତି ଯାବଲ୍ଲୋକେ ହରୀଶ୍ୱର ।
ତାବଦ୍ରମସ୍ୱ ସୁପ୍ରୀତୋ ମଦ୍ବାକ୍ୟମନୁପାଲୟନ୍ । ୩୨ ।
ଏବମୁକ୍ତସ୍ତୁ ହନୁମାନ୍ ରାଘବେଣ ମହାତ୍ମନା ।
ବାକ୍ୟଂ ବିଜ୍ଞାପୟାମାସ ପରଂ ହର୍ଷମବାପ୍ୟ ଚ । ୩୩ ।
ଯାବତ୍ତବ କଥା ଲୋକେ ବିଚରିଷ୍ୟତି ପାବନୀ ।
ତାବତ୍ ସ୍ଥାସ୍ୟାମି ମେଦିନ୍ୟାଂ ତବାଜ୍ଞାମନୁପାଲୟନ୍ । ୩୪ ।
ଜାମ୍ବବନ୍ତଂ ତଥୋକ୍ତ୍ୱା ତୁ ବୃଦ୍ଧଂ ବ୍ରହ୍ମସୁତଂ ତଥା ।
ମୈନ୍ଦଂ ଚ ଦ୍ୱିବିଦଂ ଚୈବ ପଞ୍ଚ ଜାମ୍ବବତା ସହ ।
ଯାବତ୍ କଲିଶ୍ଚ ସଂପ୍ରାପ୍ତସ୍ତାବଜ୍ଜୀବିତ ସର୍ବଦା । ୩୫ ।

---

ଅଛନ୍ତି" । ୨୯ । ରାକ୍ଷସରାଜ ବିଭୀଷଣ ରାମଙ୍କର ଆଦେଶ ମାନ "ତାହାହିଁ ହେବ" ବୋଲି ତାଙ୍କର ସେ ଆଦେ ଶ ଗ୍ରହଣ କଲେ ।୩୦। ବିଭୀଷଣଙ୍କୁ ଏପରି କହିବା ଉତ୍ତାରୁ ରାମ ହନୁମାନଙ୍କୁ କହିଲେ, "ହେ ହନୁମନ୍ ! ତୁମେ ତ ଜୀବିତ ରହିବ ବୋଲି ଆଗରୁ ନିଷ୍ପତ୍ତି କରିସାରିଛ । ସୁତରାଂ ତୁମ୍ଭର ସେ ପ୍ରତିଜ୍ଞାକୁ ଲୋପ କର ନାହିଁ । ୩୧ । ହେ ବାନରରାଜ ! ଯେପର୍ଯ୍ୟନ୍ତ ଏ ଲୋକରେ ମୋ କଥା ପ୍ରଚୁର ହେଉଥିବ, ସେପର୍ଯ୍ୟନ୍ତ ତୁମେ ଆନନ୍ଦିତ ହୋଇ ଏହି ମର୍ତ୍ତ୍ୟ ଲୋକରେ ବିଚରଣ କରୁଥିବ" ।୩୨। ମହାତ୍ମା ରାମ ଏପରି କହିବାରୁ ହନୁମାନ୍ ତାଙ୍କୁ ଗୋଟିଏ କଥା ଜଣାଇଲେ ଏବଂ ବିଶେଷ ଆନନ୍ଦ ଲାଭକରି କହିଲେ ।୩୩। "ହେ ଭଗବନ୍ ! ଯେପର୍ଯ୍ୟନ୍ତ ଏ ଜଗତରେ ତୁମ୍ଭର ପବିତ୍ର କଥା ପ୍ରଚାରିତ ହେଉଥିବ, ସେପର୍ଯ୍ୟନ୍ତ ମୁଁ ତୁମ୍ଭର ଆଜ୍ଞା ପାଳନ କରି ଏ ପୃଥିବୀରେ ରହିଥିବି" ।୩୪। ତଦନନ୍ତର ସେ ବ୍ରହ୍ମାଙ୍କ ପୁତ୍ର ବୃଦ୍ଧ ଜାମ୍ବବାନ୍, ମୈନ୍ଦ ଓ ଦ୍ୱିବିଦଙ୍କୁ କହିଲେ, "କଳିଯୁଗ ଆସି ପହଞ୍ଚିବା ପର୍ଯ୍ୟନ୍ତ ତୁମେ ପାଞ୍ଚଜଣଯାକ ଜାମ୍ବବାନ୍‌ଙ୍କ ସହିତ ଜୀବିତ ରହିଥିବ" ।୩୫ । ରାମ ସେମାନଙ୍କୁ ଏହି-

ତାନେବମୁକ୍ତ୍ୱା କାକୁତ୍ସ୍ଥଃ ସର୍ବାଂସ୍ତାନ୍ ଋକ୍ଷବାନରାନ୍ ।
ଉବାଚ ବାଢ଼ଂ ଗଚ୍ଛଧ୍ୱଂ ମୟା ସାର୍ଧଂ ଯଥେପ୍ସିତମ୍ । ୩୭ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତସହସ୍ରିକାୟାଂ ସଂହିତାୟାଂ ଉତ୍ତରକାଣ୍ଡେ ବିଭୀଷଣାଦ୍ୟାଦେଶୋ ନାମ ଅଷ୍ଟୋତ୍ତରଶତତମଃ ସର୍ଗଃ ।

---

# ନବୋତ୍ତରଶତତମଃ ସର୍ଗଃ

## ଶ୍ରୀରାମମହାପ୍ରସ୍ଥାନମ୍

ପ୍ରଭାତାୟାଂ ତୁ ଶର୍ବର୍ୟାଂ ପୃଥୁବକ୍ଷାଃ ମହାଯଶାଃ ।
ରାମଃ କମଲପତ୍ରାକ୍ଷଃ ପୁରୋଧସମଥାବ୍ରବୀତ୍ । ୧ ।
ଅଗ୍ନିହୋତ୍ରଂ ବ୍ରଜତ୍ୱଗ୍ରେ ଦୀପ୍ୟମାନଂ ସହ ଦ୍ୱିଜୈଃ ।
ବାଜପେୟାତପତ୍ରଂ ଚ ଶୋଭମାନଂ ମହାପଥେ । ୨ ।
ତତୋ ବସିଷ୍ଠସ୍ତେଜସ୍ୱୀ ସର୍ବଂ ନିରବଶେଷତଃ ।
ଚକାର ବିଧିବଦ୍ଧର୍ମଂ ମହାପ୍ରସ୍ଥାନିକଂ ବିଧିମ୍ । ୩ ।
ତତଃ ସୂକ୍ଷ୍ମାମ୍ବରଧରୋ ବ୍ରହ୍ମମାବର୍ତୟନ୍ ପରମ୍ ।
କୁଶାନ୍ ଗୃହୀତ୍ୱା ପାଣିଭ୍ୟାଂ ପ୍ରସଜ୍ୟ ପ୍ରଯଯାବଥ । ୪ ।

---

ମୋର କହି ଅନ୍ୟ ସମସ୍ତ ଋକ୍ଷ, ବାନରମାନଙ୍କୁ କହିଲେ, "ଆଚ୍ଛା, ତୁମ୍ଭେମାନେ ନିଜ ନିଜ କହିବା ଅନୁସାରେ ମୋ ସଙ୍ଗରେ ଚାଲ" । ୩୭ ।

---

# ୧୦୯ତମ ସର୍ଗ

## (ରାମଙ୍କର ମହାପ୍ରସ୍ଥାନ)

ରାତି ପାହି ସକାଳ ହେଲାରୁ ବିଶାଳବକ୍ଷା ଯଶସ୍ୱୀ କମଳଲୋଚନ ରାମ ନିଜର ପୁରୋହିତ (ବଶିଷ୍ଠ)ଙ୍କୁ କହିଲେ । ୧ । "ବ୍ରାହ୍ମଣମାନଙ୍କ ସହିତ ମୋର ଅଗ୍ନିହୋତ୍ର ଏବଂ ବାଜପେୟ ଯଜ୍ଞର ଶୋଭାୟମାନ ଛତ୍ର ମହାପଥର ଶୋଭା ବଢ଼ାଇ ଆଗେ ଆଗେ ଚାଲୁ" ।୨। ଅନନ୍ତର ତେଜସ୍ୱୀ ବଶିଷ୍ଠ ମହାଯାତ୍ରାର ବିଧି ଅନୁସାରେ ସମସ୍ତ ଧର୍ମକୃତ୍ୟ କଲେ । ୩ । ତଦନନ୍ତର ରାମ ସୂକ୍ଷ୍ମ ପଟ୍ଟବସ୍ତ୍ର ପିନ୍ଧି ବୈଦିକମନ୍ତ୍ର ଉଚ୍ଚାରଣ କରି କରି, ହାତରେ କୁଶ ଧରି ସରଯୂ ନଦୀ ଆଡ଼କୁ ଚାଲିଲେ । ୪ ।

ଅବ୍ୟାହରନ୍ କ୍ୱଚିତ୍ କିଞ୍ଚିନ୍ନିଶ୍ଚେଷ୍ଟୋ ନିଃସୁଖଃ ପଥି ।
ନିର୍ଜଗାମ ଗୃହାତ୍ତସ୍ମାଦ୍ଦୀପ୍ୟମାନ ଇବାଂଶୁମାନ୍ । ୫ ।
ରାମସ୍ୟ ଦକ୍ଷିଣେ ପାର୍ଶ୍ୱେ ସପଦ୍ମା ଶ୍ରୀରୁପାଶ୍ରିତା ।
ସବ୍ୟେ ତୁ ହ୍ରୀର୍ମହାଦେବୀ ବ୍ୟବସାୟସ୍ତଥାଗ୍ରତଃ । ୬ ।
ଶରା ନାନାବିଧାଶ୍ଚାପି ଧନୁରାୟତମୁତ୍ତମମ୍ ।
ତଥାୟୁଧାନି ତେ ସର୍ବେ ଯଯୁଃ ପୁରୁଷବିଗ୍ରହାଃ । ୭ ।
ବେଦା ବ୍ରାହ୍ମଣରୂପେଣ ଗାୟତ୍ରୀ ସର୍ବରକ୍ଷିଣୀ ।
ଓଁକାରୋଽଥ ବଷଟ୍କାର ସର୍ବେ ରାମମନୁବ୍ରତାଃ । ୮ ।
ଋଷୟଶ୍ଚ ମହାତ୍ମାନଃ ସର୍ବ ଏବ ମହୀସୁରାଃ ।
ଅନ୍ୱଗଚ୍ଛନ୍ ମହାତ୍ମାନଂ ସ୍ୱର୍ଗଦ୍ୱାରମପାବୃତମ୍ । ୯ ।
ତଂ ଯାନ୍ତମନୁଗଚ୍ଛନ୍ତି ହ୍ୟନ୍ତଃପୁରଚରାଃ ସ୍ତ୍ରିୟଃ ।
ସବୃଦ୍ଧବାଲଦାସୀକାଃ ସବର୍ଷଧରକିଙ୍କରାଃ । ୧୦ ।
ସାନ୍ତଃପୁରଶ୍ଚ ଭରତଃ ଶତ୍ରୁଘ୍ନସହିତୋ ଯଯୌ ।
ରାମଂ ଗତମୁପାଗମ୍ୟ ସାଗ୍ନିହୋତ୍ରମନୁବ୍ରତଃ । ୧୧ ।

---

ଚାଲିବା ସମୟରେ ଆଉ କିଛି ନ କହି ବା ଅନ୍ୟ କୌଣସି ପ୍ରକାର ଚେଷ୍ଟା ନ କରି, କଣ୍ଟାକଣ୍ଟାକୁ ଖାତିର ନ କରି, ଖାଲି ପାଦୁକାରେ ଦୀପ୍ୟମାନ ସୂର୍ଯ୍ୟସଦୃଶ ଆପଣା ଘରୁ ବାହାରିଲେ । ୫ । ସେତେବେଳେ ରାମଙ୍କର ଦକ୍ଷିଣ ପାର୍ଶ୍ୱରେ ସାକ୍ଷାତ୍ ଲକ୍ଷ୍ମୀ, ବାମପାର୍ଶ୍ୱରେ ଭୂଦେବୀ ଏବଂ ଆଗେ ଆଗେ ସଂହାରଶକ୍ତି ଚାଲିଲେ । ୬ । ବିବିଧ ଶର, ଉତ୍ତମ ଧନୁ ଓ ରାମଙ୍କର ସମସ୍ତ ଅସ୍ତ୍ରଶସ୍ତ୍ର ପୁରୁଷରୂପ ଧରି ତାଙ୍କ ସଙ୍ଗେ ସଙ୍ଗେ ଯାଉଥିଲେ । ୭ । ବ୍ରାହ୍ମଣରୂପ ଧରି ସମସ୍ତ ବେଦ ତଥା ସର୍ବରକ୍ଷାକାରିଣୀ ଗାୟତ୍ରୀ, ଓଁକାର, ବଷଟ୍କାର ଏବଂ ଅନ୍ୟ ବଡ଼ ବଡ଼ ଋଷି ଏବଂ ସମସ୍ତ ବ୍ରାହ୍ମଣମଣ୍ଡଳୀ; ଏମାନେ ସମସ୍ତେ ସ୍ୱର୍ଗର ଦ୍ୱାର ଖୋଲା ହୋଇଥିବାର ଦେଖି ମହାତ୍ମା ରାମଙ୍କ ପଛେ ପଛେ ଚାଲିଥିଲେ ।୮-୯। ଗମନଶୀଳ ରାମଙ୍କ ପଛେ ପଛେ ଅନ୍ତଃପୁରର ସ୍ତ୍ରୀମାନେ, ବୃଦ୍ଧ, ବାଳକ, ଦାସୀ ଏବଂ ବୟୋବୃଦ୍ଧ ଭୃତ୍ୟମାନେ ଚାଲିଥିଲେ । ୧୦ । ନିଜ ନିଜର ଅନ୍ତଃପୁରବାସୀଙ୍କ ସହିତ ଭରତ ଏବଂ ଶତ୍ରୁଘ୍ନ ମଧ୍ୟ ରାମଙ୍କୁ ଏକମାତ୍ର ଗତି ବୋଲି ଜାଣି ଅଗ୍ନିହୋତ୍ର ସହିତ ଚାଲିଥିଲେ । ୧୧ ।

ତେ ଚ ସର୍ବେ ମହାତ୍ମାନଃ ସାଗ୍ନିହୋତ୍ରାଃ ସମାଗତାଃ ।
ସପୁତ୍ରଦାରାଃ କାକୁତ୍ସ୍ଥମନ୍ୱଗଚ୍ଛନ୍ମହାମତିମ୍ । ୧୨ ।
ମନ୍ତ୍ରିଣୋ ଭୃତ୍ୟବର୍ଗାଶ୍ଚ ସପୁତ୍ରପଶୁବାନ୍ଧବାଃ ।
ସର୍ବେ ସହାନୁଗା ରାମମନ୍ୱଗଚ୍ଛନ୍ ପ୍ରହୃଷ୍ଟବତ୍ । ୧୩ ।
ତତଃ ସର୍ବାଃ ପ୍ରକୃତୟୋ ହୃଷ୍ଟପୁଷ୍ଟଜନାବୃତାଃ ।
ଗଚ୍ଛନ୍ତମନ୍ୱଗଚ୍ଛଂସ୍ତଂ ରାଘବଂ ଗୁଣରଞ୍ଜିତାଃ । ୧୪ ।
ତତଃ ସସ୍ତ୍ରୀପୁମାଂସସ୍ତେ ସପକ୍ଷିପଶୁବାହନାଃ ।
ରାଘବସ୍ୟାନୁଗାଃ ସର୍ବେ ହୃଷ୍ଟା ବିଗତକଲ୍ମଷାଃ । ୧୫ ।
ସ୍ନାତାଃ ପ୍ରମୁଦିତାଃ ସର୍ବେ ହୃଷ୍ଟାଃ ପୁଷ୍ଟାଶ୍ଚ ବାନରାଃ ।
ଦୃଢ଼ଂ କିଲକିଲାଶବ୍ଦୈଃ ସର୍ବଂ ରାମମନୁବ୍ରତମ୍ । ୧୬ ।
ନ ତତ୍ର କଶ୍ଚିଦ୍ଦୀନୋ ବା ବ୍ରୀଡ଼ିତୋ ବାପି ଦୁଃଖିତଃ ।
ହୃଷ୍ଟଂ ପ୍ରମୁଦିତଂ ସର୍ବଂ ବଭୂବ ପରମାଦ୍ଭୁତମ୍ । ୧୭ ।
ଦ୍ରଷ୍ଟୁକାମୋଽଥ ନିର୍ଯାନ୍ତଂ ରାମଂ ଜାନପଦୋ ଜନଃ ।
ଯଃ ପ୍ରାପ୍ତଃ ସୋଽପି ଦୃଷ୍ଟ୍ୱୈବ ସ୍ୱର୍ଗାୟାନୁଗତୋ ମୁଦା । ୧୮ ।

---

ମହାତ୍ମା ବ୍ରାହ୍ମଣମାନେ ନିଜ ନିଜ ଅଗ୍ନିହୋତ୍ର ସହିତ ତଥା ସ୍ତ୍ରୀ ଓ ପୁତ୍ରମାନଙ୍କ ସଙ୍ଗରେ ଧୀର ମହାବ୍ରତଧାରୀ ରାମଙ୍କ ପଛେ ପଛେ ଯାଉଥିଲେ । ୧୨ । ସବୁ ମନ୍ତ୍ରୀ ତଥା ଅନ୍ୟ ଚାକର ବାକର ସେମାନଙ୍କ ପୁତ୍ର, ପଶୁ, ଭାଇ ବନ୍ଧୁଙ୍କୁ ସାଥିରେ ଧରି ଅତି ଆନନ୍ଦରେ ରାମଙ୍କ ପଛେ ପଛେ ଚାଲିଥିଲେ । ୧୩ । ସମସ୍ତ ପ୍ରଜା ହୃଷ୍ଟପୁଷ୍ଟ ହୋଇ ରାମଙ୍କ ଗୁଣରେ ମୋହିତ ହୋଇ ତାଙ୍କ ପଛେ ପଛେ ଚାଲିଥିଲେ । ୧୪ । ସେହି ସ୍ତ୍ରୀ ଓ ପୁରୁଷମାନେ ଆପଣା ଆପଣା ଭାଇ ବନ୍ଧୁଙ୍କ ସହିତ ନିଜର ପଶୁ ପକ୍ଷୀ ଓ ବାହନମାନଙ୍କ ସଙ୍ଗରେ ନେଇ ଆନନ୍ଦମନରେ ଏବଂ ନିଷ୍ପାପ ହୋଇ ରାମଙ୍କର ଅନୁଗାମୀ ହେଲେ । ୧୫ । ସବୁ ବାନର ସ୍ନାନକରି ପ୍ରସନ୍ନ ଓ ହୃଷ୍ଟପୁଷ୍ଟ ହୋଇ କିଲକିଲା ଶବ୍ଦ କରି କରି ରାମଙ୍କ ପଛେ ପଛେ ଚାଲିଥିଲେ । ୧୬ । ସେ ସମଗ୍ର ଜନସଙ୍ଘ ମଧ୍ୟରେ ସେତେବେଳେ କେହି ହେଲେ ଦୁଃଖିତ, ଲଜ୍ଜିତ କିମ୍ବା ଉଦାସୀନ ଦେଖାଯାଉ ନ ଥିଲେ, ସମସ୍ତେ ପ୍ରସନ୍ନମୁଖ ଦେଖାପଡ଼ୁଥିଲେ ; ଏହା ଏକ ଅଦ୍ଭୁତ କଥା । ୧୭ । ସେତେବେଳେ ମଫସଲ ଅଞ୍ଚଳରୁ ଯେଉଁ ଲୋକେ ରାମଙ୍କୁ ଦର୍ଶନ କରିବାକୁ ଆସିଥିଲେ ସେମାନେ ସମସ୍ତେ ସ୍ୱର୍ଗ ଯିବା ଆଶାରେ ରାମଙ୍କ

ଋକ୍ଷବାନରରକ୍ଷାଂସି ଜନାଶ୍ଚ ପୁରବାସିନଃ ।
ଆଗଚ୍ଛନ୍ ପରୟା ଭକ୍ତ୍ୟା ପୃଷ୍ଠତଃ ସୁସମାହିତାଃ ।୧୯।
ଯାନି ଭୂତାନି ନଗରେଽପ୍ୟନ୍ତର୍ଧାନଗତାନି ଚ ।
ରାଘବଂ ତାନ୍ୟନୁଯୟୁଃ ସ୍ୱର୍ଗାୟ ସମୁପସ୍ଥିତମ୍ ।୨୦।
ଯାନି ପଶ୍ୟନ୍ତି କାକୁତ୍ସ୍ଥଂ ସ୍ଥାବରାଣି ଚରାଣି ଚ ।
ସର୍ବାଣି ରାମଗମନେ ହ୍ୟନୁଜଗ୍ମୁର୍ହି ତାନ୍ୟପି ।୨୧।
ନୋଚ୍ଛ୍ୱସତ୍ତଦଯୋଧ୍ୟାୟାଂ ସୁସୂକ୍ଷ୍ମମପି ଦୃଶ୍ୟତେ ।
ତିର୍ଯଗ୍‌ଯୋନିଗତାଶ୍ଚାପି ସର୍ବେ ରାମମନୁବ୍ରତାଃ ।୨୨।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ଶ୍ରୀରାମମହାପ୍ରସ୍ଥାନଂ ନାମ ନବୋତ୍ତରଶତତମଃ ସର୍ଗଃ ।

---

ପଛେ ପଛେ ଚାଲିଲେ । ୧୮ । ଯେତେ ଋକ୍ଷ, ବାନର, ରାକ୍ଷସ ଏବଂ ପୁରବାସୀ ଲୋକ ଥିଲେ, ସେମାନେ ସମସ୍ତେ ଅତି ଭକ୍ତିସହକାରେ ଏବଂ ସୁସଂଯତଭାବରେ ରାମଙ୍କ ପଛେ ପଛେ ଚାଲିଥିଲେ । ୧୯ । ଅଯୋଧ୍ୟାରେ ଥିବା ଅଦୃଶ୍ୟ ଆତ୍ମାମାନେ ମଧ୍ୟ ସ୍ୱର୍ଗପ୍ରାପ୍ତି କାମନାରେ ରାମଙ୍କ ପଛେ ପଛେ ଗଲେ । ୨୦ । ଯେଉଁ ଯେଉଁ ସ୍ଥାବର ଓ ଜଙ୍ଗମମାନେ ରାମଙ୍କୁ ଯିବାର ଦେଖିଲେ, ସେମାନେ ସମସ୍ତେ ତାଙ୍କର ପିଚ୍ଛା ଧଇଲେ । ୨୧ । ସେତେବେଳେ ଅଯୋଧ୍ୟାରେ ଶ୍ୱାସ ପ୍ରଶ୍ୱାସ ନେଉଥିବା କୀଟ ପତଙ୍ଗ ଏବଂ ତିର୍ଯ୍ୟକ୍ ଯୋନିର ଜୀବମାନେ ସମସ୍ତେ ରାମଙ୍କ ପଛରେ ଚାଲିଥିଲେ । ୨୨ ।

# ଦଶୋତ୍ତରଶତତମଃ ସର୍ଗଃ

## ସହାନୁଗତଶ୍ରୀରାମସ୍ୱର୍ଗାରୋହଃ

ଅଧ୍ୟର୍ଧଯୋଜନଂ ଗତ୍ୱା ନଦୀଂ ପଶ୍ଚାନ୍ମୁଖାଶ୍ରିତାମ୍ ।
ସରଯୂଂ ପୁଣ୍ୟସଲିଲାଂ ଦଦର୍ଶ ରଘୁନନ୍ଦନଃ । ୧ ।
ତାଂ ନଦୀମାକୁଲାବର୍ତ୍ତାଂ ସର୍ବତ୍ରାନୁସରନ୍ ନୃପଃ ।
ଆଗତଃ ସପ୍ରଜୋ ରାମସ୍ତଂ ଦେଶଂ ରଘୁନନ୍ଦନଃ । ୨ ।
ଅଥ ତସ୍ମିନ୍ ମୁହୂର୍ତ୍ତେ ତୁ ବ୍ରହ୍ମା ଲୋକପିତାମହଃ ।
ସର୍ବୈଃ ପରିବୃତୋ ଦେବୈଋଷିଭିଶ୍ଚ ମହାତ୍ମଭିଃ । ୩ ।
ଆଯଯୌ ଯତ୍ର କାକୁତ୍ସ୍ଥଃ ସ୍ୱର୍ଗାୟ ସମୁପସ୍ଥିତଃ ।
ବିମାନଶତକୋଟୀଭିର୍ଦିବ୍ୟାଭିରଭିସଂବୃତଃ । ୪ ।
ଦିବ୍ୟତେଜୋବୃତଂ ବ୍ୟୋମ ଜ୍ୟୋତିର୍ଭୂତମନୁତ୍ତମମ୍ ।
ସ୍ୱୟଂପ୍ରଭୈଃ ସ୍ୱତେଜୋଭିଃ ସ୍ୱର୍ଗିଭିଃ ପୁଣ୍ୟକର୍ମଭିଃ । ୫ ।
ପୁଣ୍ୟା ବାତା ବବୁଶ୍ଚୈବ ଗନ୍ଧବନ୍ତଃ ସୁଖପ୍ରଦାଃ ।
ପପାତ ପୁଷ୍ପବୃଷ୍ଟିଶ୍ଚ ଦେବୈର୍ମୁକ୍ତା ମହୌଘବତ୍ । ୬ ।

---

## ୧୧୦ତମ ସର୍ଗ

(ରାମଙ୍କର ସହଯାତ୍ରୀଙ୍କ ସହ ସ୍ୱର୍ଗାରୋହଣ)

ଏହିପ୍ରକାରେ ଚାଲି ଚାଲି ଅଧଯୋଜନରୁ ଅଧିକ ବାଟ ଗଲାଉତ୍ତାରୁ, ରାମଚନ୍ଦ୍ର ପଶ୍ଚିମ ପ୍ରବାହରେ ପଶ୍ଚିମ ଆଡ଼କୁ ବହିଯାଉଥିବା ପୁଣ୍ୟସଲିଳା ସରଯୂ ନଦୀକୁ ଦେଖିଲେ ।୧। ରାମ ଯେତେବେଳେ ସବୁ ଲୋକଙ୍କୁ ସାଙ୍ଗରେ ନେଇ ଭଉଁରି ଓ ତରଙ୍ଗରେ ସୁଶୋଭିତ ସରଯୂ ନଦୀ ତଟରେ ପହଞ୍ଚିଲେ, ଠିକ ସେହି ସମୟକୁ ଲୋକପିତାମହ ବ୍ରହ୍ମା ଦେବତା ଏବଂ ମହାତ୍ମା ଋଷିମାନଙ୍କୁ ଆପଣା ସଙ୍ଗରେ ଘେନି ଶହେ କୋଟି ବିମାନ ସହିତ, ରାମ ଯେଉଁଠାରେ ସ୍ୱର୍ଗକୁ ଯିବାପାଇଁ ଉପସ୍ଥିତ ହୋଇଥିଲେ ସେହି ସ୍ଥାନରେ ଆସି ପହଞ୍ଚିଲେ । ୨-୪ । ସେତେବେଳେ ଆକାଶମଣ୍ଡଳ ଦେବତାମାନଙ୍କର ଦିବ୍ୟତେଜରେ ପରିପୂର୍ଣ୍ଣ ହୋଇ ଜ୍ୟୋତିମାନ୍ ହୋଇଥିଲା । ବଡ଼ ବଡ଼ ତେଜସ୍ୱୀ ଏବଂ ପବିତ୍ର କୀର୍ତ୍ତିସମ୍ପନ୍ନ ସ୍ୱର୍ଗବାସୀମାନେ ବ୍ରହ୍ମାଙ୍କ ସଙ୍ଗରେ ଆସିଥିଲେ । ୫ । ସେତେବେଳେ ସୁଗନ୍ଧ ଓ ସୁଖଦାୟକ ପବନ ବହିବାକୁ ଲାଗିଲା ଏବଂ ଦେବତାମାନେ ପକାଉଥିବା ପୁଷ୍ପ ଖୁବ

ତସ୍ମିଂସ୍ତୂର୍ଯଶତୈଃ କୀର୍ଣେ ଗନ୍ଧର୍ବାପ୍ସରସଂକୁଲେ ।
ସରଯୂସଲିଲେ ରାମଃ ପଦ୍ଭ୍ୟାଂ ସମୁପଚକ୍ରମେ । ୭ ।
ତତଃ ପିତାମହୋ ବାଣୀମନ୍ତରିକ୍ଷାଦଭାଷତ ।
ଆଗଚ୍ଛ ବିଷ୍ଣୋ ଭଦ୍ରଂ ତେ ଦିଷ୍ଟ୍ୟା ପ୍ରାପ୍ତୋଽସି ରାଘବ । ୮ ।
ଭ୍ରାତୃଭିଃ ସହ ଦେବାଭୈଃ ପ୍ରବିଶସ୍ୱ ସ୍ୱକାଂ ତନୁମ୍ ।
ଯାମିଚ୍ଛସି ମହାବାହୋ ତାଂ ତନୁଂ ପ୍ରବିଶ ସ୍ୱକାମ୍ । ୯ ।
ବୈଷ୍ଣବୀଂ ତାଂ ମହାତେଜସ୍ତଦ୍ ବାକାଶଂ ସନାତନମ୍ ।
ତ୍ୱଂ ହି ଲୋକଗତିର୍ଦେବ ନ ତ୍ୱାଂ କେଚିତ୍ ପ୍ରଜାନତେ । ୧୦ ।
ଋତେ ମାୟାଂ ବିଶାଲାକ୍ଷୀଂ ତବ ପୂର୍ବପରିଗ୍ରହାମ୍ ।
ତ୍ୱାମଚିନ୍ତ୍ୟଂ ମହଦ୍ଭୂତମକ୍ଷୟଂ ସର୍ବସଂଗ୍ରହାମ୍ ।
ଯାମିଚ୍ଛସି ମହାତେଜସ୍ତାଂ ତନୁଂ ପ୍ରବିଶ ସ୍ୱୟମ୍ । ୧୧ ।
ପିତାମହବଚଃ ଶ୍ରୁତ୍ୱା ବିନିଶ୍ଚିତ୍ୟ ମହାମତିଃ ।
ବିବେଶ ବୈଷ୍ଣବଂ ତେଜଃ ସଶରୀରଃ ସହାନୁଜଃ । ୧୨ ।
ତତୋ ବିଷ୍ଣୁମୟଂ ଦେବଂ ପୂଜୟନ୍ତି ସ୍ମ ଦେବତାଃ ।
ସାଧ୍ୟା ମରୁଦ୍‌ଗଣାଶ୍ଚୈବ ସେନ୍ଦ୍ରାଃ ସାଗ୍ନିପୁରୋଗମାଃ । ୧୩ ।

---

ଯୋରରେ ପଡ଼ୁଥିଲା ।୬। ଶଙ୍ଖ ଶବ୍ଦ ବିବିଧ ବାଦ୍ୟ ନାଦରେ ଏବଂ ଗନ୍ଧର୍ବ ଓ ଅପ୍ସରାମାନଙ୍କଦ୍ୱାରା ସେ ସ୍ଥାନ ପୂରିଗଲା । ଅନନ୍ତର ରାମ ପାଦରେ ଚାଲି ସରଯୂ ଜଳରେ ପ୍ରବେଶ କଲେ ।୭। ତତ୍ପରେ ଆକାଶରୁ ବ୍ରହ୍ମା କହିଲେ, "ହେ ରାଘବ, ହେ ବିଷ୍ଣୋ ! ଆସ, ଆସ, ତୁମ୍ଭର ମଙ୍ଗଳ ହେଉ । ଆମ୍ଭମାନଙ୍କର ସୌଭାଗ୍ୟ ଯେ ତୁମେ ଏଠାକୁ ଆସିଯାଇଛ । ୮ । ଦେବତାମାନଙ୍କ ସଦୃଶ ଦୀପ୍ତିମନ୍ତ ଭ୍ରାତାମାନଙ୍କ ସହିତ ତୁମେ ନିଜର ପୂର୍ବତନୁରେ ପ୍ରବେଶ କର । ୯ । ହେ ମହାବାହୋ ! ତୁମେ ଯେଉଁ ତନୁରେ ପ୍ରବେଶ କରିବାକୁ ଇଚ୍ଛା କରୁଅଛ, ସେଥିରେ ପ୍ରବେଶ କର । ତୁମେ ବିଷ୍ଣୁଙ୍କ ଶରୀରରେ ଅଥବା ଏହି ସନାତନ ଆକାଶରୂପୀ ନିଜ ଶରୀରରେ ପ୍ରବେଶ କର । ହେ ଦେବ ! ତୁମେ ହିଁ ସମସ୍ତ ଜଗତର ଗତି ଅଟ; ତୁମକୁ କେହି ଜାଣେ ନାହିଁ ।୧୦। ହେ ଭଗବନ୍ ! ବିଶାଳାକ୍ଷୀ ଜ୍ଞାନଶକ୍ତିରୂପିଣୀ ତୁମ୍ଭର ମାୟା ହିଁ ତୁମକୁ ଜାଣନ୍ତି । ସେ ତୁମ୍ଭର ପ୍ରଥମ ପତ୍ନୀ ଆଦିଶକ୍ତି ଅଟନ୍ତି । ତୁମେ ଅଚିନ୍ତ୍ୟ ମହାଭୂତ ଅକ୍ଷୟ ଏବଂ ସର୍ବସଂହାରକାରୀ ଅଟ । ହେ ମହାତେଜସ୍ୱିନ୍ ! ତୁମେ ଯେଉଁ ଶରୀରରେ ଇଚ୍ଛାକର ସେହି ଶରୀରରେ ସ୍ୱୟଂ ପ୍ରବେଶ କର" । ୧୧ । ମହାମତି ରାମଚନ୍ଦ୍ର ବ୍ରହ୍ମାଙ୍କର ବଚନ ଶୁଣି ଏବଂ ତାହା ମନ ମଧ୍ୟରେ ବିଚାର କରି, ସଶରୀରରେ ନିଜର ଭ୍ରାତାମାନଙ୍କ ସହିତ ବୈଷ୍ଣବୀ ତେଜ ମଧ୍ୟରେ ପ୍ରବେଶ କରିଗଲେ । ଅନନ୍ତର ବିଷ୍ଣୁମୟ ଭଗବାନ୍ ରାମଙ୍କୁ ସବୁ

ଯେ ଚ ଦିବ୍ୟା ଋଷିଗଣା ଗନ୍ଧର୍ବାପ୍ସରସଶ୍ଚ ଯାଃ ।
ସୁପର୍ଣନାଗଯକ୍ଷାଶ୍ଚ ଦୈତ୍ୟଦାନବରାକ୍ଷସାଃ । ୧୪ ।
ସର୍ବଂ ପୁଷ୍ଟଂ ପ୍ରମୁଦିତଂ ସୁସମ୍ପୂର୍ଣମନୋରଥମ୍ ।
ସାଧୁ ସାଧ୍ୱିତି ତୈର୍ଦେବୈସ୍ତ୍ରିଦିବଂ ଗତକଲ୍ମଷମ୍ । ୧୫ ।
ଅଥ ବିଷ୍ଣୁର୍ମହାତେଜାଃ ପିତାମହମୁବାଚ ହ ।
ଏଷାଂ ଲୋକଂ ଜନୌଘାନାଂ ଦାତୁମର୍ହସି ସୁବ୍ରତ । ୧୬ ।
ଇମେ ହି ସର୍ବେ ସ୍ନେହାନ୍ମାମନୁଯାତା ମନସ୍ୱିନଃ ।
ଭକ୍ତା ହି ଭଜିତବ୍ୟାଶ୍ଚ ତ୍ୟକ୍ତାତ୍ମାନଶ୍ଚ ମତ୍‌କୃତେ । ୧୭ ।
ତଚ୍ଛ୍ରୁତ୍ୱା ବିଷ୍ଣୁବଚନଂ ବ୍ରହ୍ମା ଲୋକଗୁରୁଃ ପ୍ରଭୁଃ ।
ଲୋକାନ୍ ସାନ୍ତାନକାନ୍ନାମ ଯାସ୍ୟନ୍ତୀମେ ସମାଗତାଃ । ୧୮ ।
ଯଚ୍ଚ ତିର୍ଯଗ୍‌ଗତଂ କିଞ୍ଚିତ୍ତ୍ୱାମେବମନୁଚିନ୍ତୟତ୍ ।
ପ୍ରାଣାଂସ୍ତ୍ୟକ୍ଷ୍ୟତି ଭକ୍ତ୍ୟା ବୈ ତତ୍ସାନ୍ତାନେ ନିବତ୍ସ୍ୟତି । ୧୯ ।
ସର୍ବୈର୍ବ୍ରହ୍ମଗୁଣୈର୍ଯୁକ୍ତେ ବ୍ରହ୍ମଲୋକାଦନନ୍ତରେ ।
ବାନରାଶ୍ଚ ସ୍ୱକାଂ ଯୋନିମୃକ୍ଷାଶ୍ଚୈବ ତଥା ଯଯୁଃ । ୨୦ ।

---

ଦେବତା, ସାଧ୍ୟ, ମରୁଦ୍‌ଗଣ, ଇନ୍ଦ୍ର, ଅଗ୍ନି ପୂଜା କରିବାକୁ ଲାଗିଲେ । ୧୩ । ଯେଉଁ ଅନ୍ୟ ବ୍ରହ୍ମର୍ଷି, ଅପ୍‌ସରା, ନାଗ, ସୁପର୍ଣ୍ଣ, ଯକ୍ଷ, ଦୈତ୍ୟ, ଦାନବ ଏବଂ ରାକ୍ଷସମାନେ ଥିଲେ ସମସ୍ତେ ଅତ୍ୟନ୍ତ ଆନନ୍ଦିତ ହେଲେ, ସମସ୍ତଙ୍କର ମନୋରଥ ପୂର୍ଣ୍ଣ ହୋଇଗଲା । ସେମାନେ ସାଧୁ ସାଧୁ କହି ତାଙ୍କର ସ୍ତୁତି କରିବାକୁ ଲାଗିଲେ । ସମଗ୍ର ସ୍ୱର୍ଗ ପାପରହିତ ହୋଇଗଲା । ୧୪-୧୫ । ଅନନ୍ତର ମହାତେଜସ୍ୱୀ ଭଗବାନ୍ ବିଷ୍ଣୁ ପିତାମହ ବ୍ରହ୍ମାଙ୍କୁ କହିଲେ, "ହେ ସୁବ୍ରତ ! ଏ ଯେତେ ପ୍ରାଣୀ ମୋ ସଙ୍ଗରେ ଆସିଛନ୍ତି, ସେ ସମସ୍ତଙ୍କୁ ତୁମେ ସ୍ଥାନ ଦିଅ । ୧୬ । ଏ ସମସ୍ତେ ମୋ ପ୍ରତି ସ୍ନେହର ବଶବର୍ତ୍ତୀ ହୋଇ ମୋ ସଙ୍ଗରେ ଚାଲି ଆସିଛନ୍ତି । ଏମାନେ ସମସ୍ତେ ଯଶସ୍ୱୀ ଏବଂ ମୋର ଭକ୍ତ ଅଟନ୍ତି । ମୋ ଲାଗି ଏମାନେ ନିଜର ଶରୀର ପର୍ଯ୍ୟନ୍ତ ତ୍ୟାଗ କରିଦେଇଛନ୍ତି । ଅତଏବ ଏମାନଙ୍କ ପ୍ରତି କୃପା କରିବା ମୋର କର୍ତ୍ତବ୍ୟ ଅଟେ" । ୧୭ । ଭଗବାନ୍ ବିଷ୍ଣୁଙ୍କ ବଚନ ଶୁଣି ଲୋକପିତାମହ ବ୍ରହ୍ମା କହିଲେ, "ତୁମ୍ଭର ଏ ଭକ୍ତମାନେ ସାନ୍ତାନିକ ନାମକ ଲୋକକୁ ଯାଇ ସେହିଠାରେ ସୁଖରେ ରହିବେ । ୧୮ । ଯେଉଁ ତିର୍ଯ୍ୟକ୍ ପ୍ରାଣୀମାନେ ଭକ୍ତିସହକାରେ ତୁମକୁ ଚିନ୍ତା କରି କରି ପ୍ରାଣ ତ୍ୟାଗକରିବେ ସେମାନେ ସମସ୍ତେ ଏହି ସାନ୍ତାନିକ ଲୋକରେ ଆସି ବାସକରିବେ । ୧୯ । ଏହି ସାନ୍ତାନିକ ଲୋକ ବ୍ରହ୍ମଲୋକ ସଙ୍ଗରେ ମିଶିକରି ରହିଛି ଏବଂ ଏହା ବ୍ରହ୍ମଲୋକ ସଙ୍ଗେ ସମାନ ଅଟେ ।" ବାନର ଏବଂ ଋକ୍ଷମାନେ ଯେଉଁ ଯେଉଁ ଦେବତାଙ୍କ ଅଂଶରୁ ଉତ୍ପନ୍ନ

ଯେଭ୍ୟୋ ବିନିଃସୃତାଃ ସର୍ବେ ସୁରେଭ୍ୟଃ ସୁରସମ୍ଭବାଃ ।
ତେଷୁ ପ୍ରବିବିଶେ ଚୈବ ସୁଗ୍ରୀବଃ ସୂର୍ଯମଣ୍ଡଳମ୍ । ୨୧ ।
ପଶ୍ୟତାଂ ସର୍ବଦେବାନାଂ ସ୍ୱାନ୍ ପିତୄନ୍ ପ୍ରତିପେଦିରେ ।
ତଥୋକ୍ତବତି ଦେବେଶେ ଗୋପ୍ରତାରମୁପାଗତାଃ । ୨୨ ।
ଭେଜିରେ ସରଯୂଂ ସର୍ବେ ହର୍ଷପୂର୍ଣାଶ୍ରୁବିକ୍ଳବାଃ ।
ଅବଗାହ୍ୟ ଜଲଂ ଯୋ ଯଃ ପ୍ରାଣୀ ହ୍ୟାସୀତ୍ ପ୍ରହୃଷ୍ଟବତ୍ ।
ମାନୁଷଂ ଦେହମୁତ୍ସୃଜ୍ୟ ବିମାନଂ ସୋଽଧ୍ୟରୋହତ । । ୨୩ ।
ତିର୍ଯଗ୍ ଯୋନିଗତାନାଂ ଚ ଶତାନି ସରଯୂଜଲମ୍ ।
ସଂପ୍ରାପ୍ୟ ତ୍ରିଦିବଂ ଜଗ୍ମୁଃ ପ୍ରଭାସୁରବପୂଂଷି ଚ ।
ଦିବ୍ୟା ଦିବ୍ୟେନ ବପୁଷା ଦେବା ଦୀପ୍ତା ଇବାଭବନ୍ । ୨୪ ।
ଗତ୍ୱା ତୁ ସରଯୂତୋୟଂ ସ୍ଥାବରାଣି ଚରାଣି ଚ ।
ପ୍ରାପ୍ୟ ତତ୍ତୋୟବିକ୍ଳେଦଂ ଦେବଲୋକମୁପାଗମନ୍ । ୨୫ ।
ତସ୍ମିନ୍ନପି ସମାପନ୍ନା ଋକ୍ଷବାନରରାକ୍ଷସାଃ ।
ତେଽପି ସ୍ୱର୍ଗଂ ପ୍ରବିବିଶୁର୍ଦେହାନ୍ନିକ୍ଷିପ୍ୟ ଚାମ୍ଭସି । ୨୬ ।

---

ହୋଇଥିଲେ, ସେହି ସେହି ଦେବତାମାନଙ୍କଠାରେ ଲୀନ ହୋଇଗଲେ । ସୁଗ୍ରୀବ ସୂର୍ଯ୍ୟମଣ୍ଡଳ ମଧ୍ୟରେ ପ୍ରବେଶ କରିଗଲେ । ୨୦-୨୧ । ଅନ୍ୟ ସବୁ ଋକ୍ଷ ଓ ବାନରମାନେ ଗୋପ୍ରତାର ଘାଟକୁ ଯାଇ ସେଠାରେ ଶରୀର ତ୍ୟାଗ କରି ଆପଣା ଆପଣା ପୂର୍ବଜମାନଙ୍କ ମଧ୍ୟରେ ଦେବତାମାନଙ୍କ ଦୃଷ୍ଟି ସମ୍ମୁଖରେହିଁ ମିଶିଗଲେ ।୨୨। ଅନ୍ୟ ଲୋକମାନେ ମଧ୍ୟ ଆନନ୍ଦରେ ଅଶ୍ରୁ ଗଡ଼ାଇ ସରଯୂଜଳରେ ସ୍ନାନ କରି ଆପଣାର ମନୁଷ୍ୟଦେହ ଛାଡ଼ିଦେଇ ବିମାନରେ ଆରୋହଣ କରି ସ୍ୱର୍ଗକୁ ଚାଲିଗଲେ ।୨୩। ଶତ ଶତ ତିର୍ଯ୍ୟକ୍ ଯୋନି ପଶୁପକ୍ଷୀମାନେ ମଧ୍ୟ ସରଯୂରେ ସ୍ନାନ କରି ଏବଂ ଶରୀର ତ୍ୟାଗ କରି ଅତିଦୀପ୍ତିମନ୍ତ ଶରୀର ପାଇ ଏବଂ ବିମାନରେ ବସି ସ୍ୱର୍ଗକୁ ଗଲେ । ସେଠାରେ ସମସ୍ତେ ଦେବତାମାନଙ୍କପରି ଶୋଭମାନ ହେବାକୁ ଲାଗିଲେ । ୨୪ । କି ଚର, କି ଅଚର ଯେତେ ପ୍ରାଣୀ ଥିଲେ, ସେ ସମସ୍ତେ ସେତେବେଳେ ସରଯୂରେ ସ୍ନାନ କରି ଏବଂ ଶରୀର ତ୍ୟାଗ କରି ସ୍ୱର୍ଗକୁ ଚାଲିଗଲେ । ୨୫ । ଋକ୍ଷ, ବାନର ଓ ରାକ୍ଷସମାନଙ୍କ ମଧ୍ୟରୁ ଯେଉଁମାନେ ସେତେବେଳେ ସରଯୂ ଜଳରେ ସ୍ନାନ କଲେ, ସେମାନେ ସମସ୍ତେ ତହିଁରେ ଆପଣା ଶରୀର ତ୍ୟାଗ କରି ସ୍ୱର୍ଗକୁ ଚାଲିଗଲେ । ୨୬ ।

ତତଃ ସମାଗତାନ୍ ସର୍ବାନ୍ ସ୍ଥାପ୍ୟ ଲୋକଗୁରୁର୍ଦିବି ।
ଜଗାମ ତ୍ରିଦଶୈଃ ସାର୍ଧଂ ସଦାହୃଷ୍ଟୈର୍ଦିବଂ ମହତ୍ । ୨୭ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଉତ୍ତରକାଣ୍ଡେ ସହାନୁଗତଶ୍ରୀରାମସ୍ବର୍ଗାରୋହଣୋ ନାମ ଦଶୋତ୍ତରଶତତମଃ ସର୍ଗଃ ।

---

# ଏକାଦଶୋତ୍ତରଶତତମଃ ସର୍ଗଃ

## ଶ୍ରୀମଦ୍ରାମାୟଣଫଲଶ୍ରୁତିଃ

ଏତାବଦେତଦାଖ୍ୟାନଂ ସୋତ୍ତରଂ ବ୍ରହ୍ମପୂଜିତମ୍ ।
ରାମାୟଣମିତିଖ୍ୟାତଂ ମୁଖ୍ୟଂ ବାଲ୍ମୀକିନା କୃତମ୍ । ୧ ।
ତତଃ ପ୍ରତିଷ୍ଠିତୋ ବିଷ୍ଣୁଃ ସ୍ୱର୍ଗଲୋକେ ଯଥାପୁରମ୍ ।
ଯେନ ବ୍ୟାପ୍ତମିଦଂ ସର୍ବଂ ତ୍ରୈଲୋକ୍ୟଂ ସଚରାଚରମ୍ । ୨ ।
ତତୋ ଦେବାଃ ସଗନ୍ଧର୍ବାଃ ସିଦ୍ଧାଶ୍ଚ ପରମର୍ଷୟଃ ।
ନିତ୍ୟଂ ଶୃଣ୍ୱନ୍ତି ସନ୍ତୁଷ୍ଟା କାବ୍ୟଂ ରାମାୟଣଂ ଦିବି । ୩ ।

---

ଏହି ପ୍ରକାରେ ଲୋକଗୁରୁ ବ୍ରହ୍ମା ସମାଗତ ହୋଇଥିବା ସମସ୍ତଙ୍କୁ ଉତ୍ତମଲୋକରେ ସ୍ଥାପିତ କରାଇ ଅତିଶୟ ଆନନ୍ଦିତ ହୋଇଥିବା ଦେବତାମାନଙ୍କ ସହିତ ମହତ୍ ବ୍ରହ୍ମଲୋକକୁ ଚାଲିଗଲେ । ୨୭ ।

---

# ୧୧୧ତମ ସର୍ଗ

## ( ରାମାୟଣପାଠର ଫଳ )

ମହର୍ଷି ବାଲ୍ମୀକଙ୍କ ରଚିତ ଉତ୍ତରକାଣ୍ଡ ସହିତ ଏହି କାବ୍ୟ ରାମାୟଣ ନାମରେ ପ୍ରସିଦ୍ଧ ଏବଂ ଏହା ବ୍ରହ୍ମାଙ୍କ ଦ୍ୱାରା ପ୍ରଶଂସିତ ଅଟେ । ୧ । ଭଗବାନ୍ ବିଷ୍ଣୁ, ଯେ କି ଚରାଚରମୟ ତିନଲୋକରେ ବ୍ୟାପି ରହିଛନ୍ତି, ସେ ପୂର୍ବପରି ସ୍ୱର୍ଗରେ ଯାଇ ବିରାଜମାନ ହେଲେ । ୨ । ସେହିଦିନଠାରୁ ସ୍ୱର୍ଗରେ ଦେବତା, ଗନ୍ଧର୍ବ, ସିଦ୍ଧ ଏବଂ ମହର୍ଷିମାନେ ଏହି ରାମାୟଣ କାବ୍ୟକୁ ହର୍ଷିତ ହୋଇ ନିତ୍ୟ ଶୁଣିବାକୁ

ଇଦମାଖ୍ୟାନମାୟୁଷ୍ୟଂ ସୌଭାଗ୍ୟଂ ପାପନାଶନମ୍ ।
ରାମାୟଣଂ ବେଦସମଂ ଶ୍ରାଦ୍ଧେଷୁ ଶ୍ରାବୟେଦ୍ ବୁଧଃ । ୪ ।
ଅପୁତ୍ରୋ ଲଭତେ ପୁତ୍ରମଧନୋ ଲଭତେ ଧନମ୍ ।
ସର୍ବପାପୈଃ ପ୍ରମୁଚ୍ୟେତ ପଦମପ୍ୟସ୍ୟ ଯଃ ପଠେତ୍ । ୫ ।
ପାପାନ୍ୟପି ଚ ଯଃ କୁର୍ଯାଦହନ୍ୟହନି ମାନବଃ ।
ପଠତ୍ୟେକମପି ଶ୍ଳୋକଂ ପାପାତ୍ସ ପରିମୁଚ୍ୟତେ । ୬ ।
ବାଚକାୟ ଚ ଦାତବ୍ୟଂ ବସ୍ତ୍ରଂ ଧେନୁଂ ହିରଣ୍ୟକମ୍ ।
ବାଚକେ ପରିତୁଷ୍ଟେ ତୁ ତୁଷ୍ଟାଃ ସ୍ୟୁଃ ସର୍ବଦେବତାଃ । ୭ ।
ଏତଦାଖ୍ୟାନମାୟୁଷ୍ୟଂ ପଠନ୍ ରାମାୟଣଂ ନରଃ ।
ସପୁତ୍ରପୌତ୍ରୋ ଲୋକେଽସ୍ମିନ୍ ପ୍ରେତ୍ୟ ଚେହ ମହୀୟତେ । ୮ ।
ଅଯୋଧ୍ୟାପି ପୁରୀ ରମ୍ୟା ଶୂନ୍ୟା ବର୍ଷଗଣାନ୍ ବହୂନ୍ ।
ଋଷଭଂ ପ୍ରାପ୍ୟ ରାଜାନଂ ନିବାସମୁପଯାସ୍ୟତି । ୯ ।
ଏତଦାଖ୍ୟାନମାୟୁଷ୍ୟଂ ସଭବିଷ୍ୟଂ ସହୋତ୍ତରମ୍ ।
କୃତବାନ୍ ପ୍ରଚେତସଃ ପୁତ୍ରସ୍ତଦ୍ବ୍ରହ୍ମାପ୍ୟନ୍ୱମନ୍ୟତ । ୧୦ ।

---

ଲଭିଲେ । ୩ । ଏହି ଉପାଖ୍ୟାନ ଆୟୁ ଓ ସୌଭାଗ୍ୟ ବୃଦ୍ଧି କରେ ଏବଂ ପାପକୁ ନାଶ କରେ । ଏହି କାବ୍ୟ ବେଦ ସହିତ ସମାନ ଅଟେ । ପଣ୍ଡିତ ଲୋକମାନେ ଶ୍ରାଦ୍ଧ ସମୟରେ ଏହା ଶୁଣାଇବା ଉଚିତ । ୪ । ଏହି କାବ୍ୟର ଗୋଟିଏ ପାଦ ମଧ୍ୟ ଯେ ପାଠ କରେ ସେ ଅପୁତ୍ରିକ ହୋଇଥିଲେ ପୁତ୍ର ଲାଭକରେ, ନିର୍ଦ୍ଧନ ହୋଇଥିଲେ ଧନ ଲାଭକରେ ଏବଂ ସବୁ ପାପରୁ ମୁକ୍ତ ହୁଏ । ୫ । ଯେଉଁ ଲୋକ ପ୍ରତିଦିନ ନାନାପ୍ରକାର ପାପ କରୁଅଛି, ସେ ମଧ୍ୟ ଏ କାବ୍ୟର ଗୋଟିଏ ଶ୍ଳୋକ ପଢ଼ିଲେ, ସମସ୍ତ ପାପରୁ ମୁକ୍ତ ହୋଇଯାଏ । ୬ । ଏ କାବ୍ୟ ଯେ ପଢ଼ି ଶୁଣାନ୍ତି ତାଙ୍କୁ ବସ୍ତ୍ର, ଧେନୁ ଏବଂ ସୁବର୍ଣ୍ଣ ଦେବା ଉଚିତ, କାରଣ ବାଚକମାନେ ସନ୍ତୁଷ୍ଟ ହେଲେ ସବୁ ଦେବତା ସନ୍ତୁଷ୍ଟ ହୁଅନ୍ତି । ୭ । ଏହି ଆୟୁବର୍ଦ୍ଧକ ରାମାୟଣ ଆଖ୍ୟାନ ପାଠ କଲେ ମନୁଷ୍ୟ ଏ ସଂସାରରେ ଏବଂ ପରଲୋକରେ ପୁତ୍ରପୌତ୍ର ସହିତ ପ୍ରତିଷ୍ଠା ଲାଭକରେ । ୮ । ରମଣୀୟ ଅଯୋଧ୍ୟାନଗରୀ ବହୁ କାଳଯାଏ ଶୂନ୍ୟରହିବ । ତଦନନ୍ତର ଏହାକୁ ଋଷଭ ନାମକ ରାଜା ପୁଣି ବସାଇବେ । ୯ । ଭବିଷ୍ୟ ଏବଂ ଉତ୍ତର ସହିତ ଏହି ଆୟୁବର୍ଦ୍ଧନକାରୀ ଆଖ୍ୟାନକୁ ପ୍ରଚେତାଙ୍କ ପୁତ୍ର ବାଲ୍ମୀକି ରଚନା କରିଥିଲେ ଏବଂ ବ୍ରହ୍ମା ମଧ୍ୟ ଏହାକୁ ଅନୁମୋଦନ କରି ଅଛନ୍ତି । ୧୦ । ମନୁଷ୍ୟ

ଅଶ୍ୱମେଧସହସ୍ରସ୍ୟ ବାଜପେୟାୟୁତସ୍ୟ ଚ ।
ଲଭନ୍ତେ ଶ୍ରବଣାଦେବ ସର୍ଗସ୍ୟୈକସ୍ୟ ମାନବାଃ । ୧୧ ।
ପ୍ରୟାଗାଦୀନି ତୀର୍ଥାନି ଗଙ୍ଗାଦ୍ୟାଃ ସରିତସ୍ତଥା ।
ନୈମିଷାଦୀନ୍ୟରଣ୍ୟାନି କୁରୁକ୍ଷେତ୍ରାଦିକାନ୍ୟପି । ୧୨ ।
ଗତାନି ତେନ ଲୋକେଽସ୍ମିନ୍ ଯେନ ରାମାୟଣଂ ଶ୍ରୁତମ୍ ।
ହେମଭାରଂ କୁରୁକ୍ଷେତ୍ରେ ଗ୍ରସ୍ତେ ଭାନୌ ପ୍ରୟଚ୍ଛତି । ୧୩ ।
ଯଶ୍ଚ ରାମାୟଣଂ ଲୋକେ ଶୃଣୋତି ସଦୃଶାବୁଭୌ ।
ସମ୍ୟକ୍ ଶ୍ରଦ୍ଧାସମାୟୁକ୍ତଃ ଶୃଣୁତେ ରାଘବୀଂ କଥାମ୍ । ୧୪ ।
ସର୍ବପାପାତ୍ ପ୍ରମୁଚ୍ୟେତ ବିଷ୍ଣୁଲୋକଂ ସ ଗଚ୍ଛତି ।
ଆଦିକାବ୍ୟମିଦଂ ତ୍ୱାର୍ଷଂ ପୁରା ବାଲ୍ମୀକିନା କୃତମ୍ । ୧୫ ।
ଯଃ ଶୃଣୋତି ସଦା ଭକ୍ତ୍ୟା ସ ଗଚ୍ଛେଦ୍ ବୈଷ୍ଣବୀଂ ତନୁମ୍ ।
ପୁତ୍ରଦାରାଶ୍ଚ ବର୍ଧନ୍ତେ ସମ୍ପଦଃ ସନ୍ତତିସ୍ତଥା । ୧୬ ।
ସତ୍ୟମେତଦ୍ ବିଦିତ୍ୱା ତୁ ଶ୍ରୋତବ୍ୟଂ ନିୟତାତ୍ମଭିଃ ।
ଗାୟତ୍ର୍ୟାଶ୍ଚ ସ୍ୱରୂପଂ ତଦ୍ରାମାୟଣମନୁତ୍ତମମ୍ । ୧୭ ।
ଯଃ ପଠେଚ୍ଛୃଣୁୟାନ୍ନିତ୍ୟଂ ଚରିତଂ ରାଘବସ୍ୟ ହି ।
ଭକ୍ତ୍ୟା ନିଷ୍କଲ୍ମଷୋ ଭୂତ୍ୱା ଦୀର୍ଘମାୟୁରବାପ୍ନୁୟାତ୍ । ୧୮ ।

---

ଏହାର ଗୋଟିଏ ସର୍ଗ ଶୁଣିଲେ ସହସ୍ର ଅଶ୍ୱମେଧ ଯଜ୍ଞ ଏବଂ ଦଶହଜାର ବାଜପେୟ ଯଜ୍ଞର ଫଳ ଲଭିକରେ । ୧୧ । ଏ ସଂସାରରେ ଯେଉଁ ଲୋକ ଏହାକୁ ଶୁଣିଅଛି, ସେ ବ୍ୟକ୍ତି ପ୍ରୟାଗ ଆଦି ତୀର୍ଥ , ଗଙ୍ଗାଦି ସରିତ ଓ ନୈମିଷାଦି ଅରଣ୍ୟ ଏବଂ କୁରୁକ୍ଷେତ୍ର ପ୍ରଭୃତି ତୀର୍ଥର ଫଳ ଲଭିକରିଥାଏ । ସୂର୍ଯ୍ୟଗ୍ରହଣ ସମୟେ ସୁବର୍ଣ୍ଣଭାର ଦାନ ଦେବାର ଯେ ଫଳ ଏବଂ ଏ ଲୋକରେ ରାମାୟଣ ଶୁଣିବାର ଫଳ, ଏ ଉଭୟ ଏକ ଅଟେ । ଯେଉଁ ଲୋକ ବିଶେଷ ଶ୍ରଦ୍ଧାଯୁକ୍ତ ହୋଇ ରାମଙ୍କ ସମ୍ପର୍କୀୟ ଏ ଆଖ୍ୟାନ ଶୁଣେ, ସେ ସବୁ ପାପରୁ ମୁକ୍ତ ହୁଏ ଏବଂ ବିଷ୍ଣୁଲୋକକୁ ଯାଏ । ପୂର୍ବକାଳରେ ବାଲ୍ମୀକି ମହର୍ଷିଙ୍କ ରଚିତ ଏହି କାବ୍ୟକୁ ଆଦିକାବ୍ୟ ବୋଲି କୁହାଯାଏ । ୧୨-୧୫ । ଯେଉଁ ଲୋକ ସର୍ବଦା ଭକ୍ତିସହକାରେ ଏ କାବ୍ୟକୁ ଶୁଣେ ସେ ବିଷ୍ଣୁଙ୍କ ଶରୀରରେ ଲୀନ ହୋଇଯାଏ ଏବଂ ତାହାର ପୁତ୍ରକଳତ୍ର, ସମ୍ପତ୍ତି ତଥା ସନ୍ତାନ ଆଦି ସମୃଦ୍ଧି ଲଭି-କରନ୍ତି ।୧୬। ସଂଯତ ଲୋକମାନେ ଏହି ଆଖ୍ୟାନକୁ ସତ୍ୟ ବୋଲି ବିଶ୍ୱାସକରି ଶୁଣିବା ଉଚିତ । ଏହି ଉତ୍କୃଷ୍ଟ ରାମାୟଣ କାବ୍ୟ ସାକ୍ଷାତ୍ ଗାୟତ୍ରୀଙ୍କର ସ୍ୱରୂପ ଅଟେ । ୧୭ । ରାମଙ୍କର ଏ ଚରିତକୁ ଯେଉଁ ବ୍ୟକ୍ତି ଭକ୍ତି ସହକାରେ ନିତ୍ୟ ପାଠକରେ ବା ଶ୍ରବଣ

ଚିନ୍ତୟେଦ୍ରାଘବଂ ନିତ୍ୟଂ ଶ୍ରେୟଃ ପ୍ରାପ୍ତୁଂ ଯ ଇଚ୍ଛତି ।
ଶ୍ରାବୟେଦିଦମାଖ୍ୟାନଂ ବ୍ରାହ୍ମଣେଭ୍ୟୋ ଦିନେ ଦିନେ । ୧୯ ।
ଯସ୍ତ୍ୱିଦଂ ରଘୁନାଥସ୍ୟ ଚରିତଂ ସକଳଂ ପଠେତ୍ ।
ସୋଽସୁକ୍ଷୟେ ବିଷ୍ଣୁଲୋକଂ ଗଚ୍ଛତ୍ୟେବ ନ ସଂଶୟଃ । ୨୦ ।
ପିତା ପିତାମହସ୍ତସ୍ୟ ତଥୈବ ପ୍ରପିତାମହଃ ।
ତତ୍ପିତା ତତ୍ପିତା ଚୈବ ବିଷ୍ଣୁଂ ଯାନ୍ତି ନ ସଂଶୟଃ । ୨୧ ।
ଚତୁର୍ବର୍ଗପ୍ରଦଂ ନିତ୍ୟଂ ଚରିତଂ ରାଘବସ୍ୟ ତୁ ।
ତସ୍ମାତ୍ ଯତ୍ନବତା ନିତ୍ୟଂ ଶ୍ରୋତବ୍ୟଂ ପରମଂ ସଦା । ୨୨ ।
ଶୃଣ୍ୱନ୍ ରାମାୟଣଂ ଭକ୍ତ୍ୟା ଯଃ ପାଦଂ ପଦମେବ ବା ।
ସ ଯାତି ବ୍ରହ୍ମଣଃ ସ୍ଥାନଂ ବ୍ରହ୍ମଣା ପୂଜ୍ୟତେ ସଦା । ୨୩ ।
ଏବମେତତ୍ ପୁରାବୃତ୍ତମାଖ୍ୟାନଂ ଭଦ୍ରମସ୍ତୁ ବଃ ।
ପ୍ରବ୍ୟାହରତ ବିସ୍ରବ୍ଧଂ ବଳଂ ବିଷ୍ଣୋଃ ପ୍ରବର୍ଦ୍ଧତାମ୍ । ୨୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାମ୍ ଉତ୍ତରକାଣ୍ଡେ ଶ୍ରୀମଦ୍ରାମାୟଣଫଳଶ୍ରୁତି ର୍ନାମ ଏକାଦଶୋତ୍ତରଶତତମଃ ସର୍ଗଃ

---

କଷ୍ଟରୁ ସେ ନିଷ୍ପାପ ହୋଇ ଦୀର୍ଘ ଆୟୁ ଲାଭକରେ ।୧୮। ଯେଉଁ ଲୋକ ଶ୍ରେୟ ଲାଭ କରିବାକୁ ଇଚ୍ଛା କରେ, ସେ ପ୍ରତ୍ୟହ ରାମଙ୍କୁ ଚିନ୍ତା କରିବା ଉଚିତ ଏବଂ ପ୍ରତିଦିନ ଏହି ଆଖ୍ୟାନକୁ ବ୍ରାହ୍ମଣମାନଙ୍କୁ ଶୁଣାଇବା ଉଚିତ ।୧୯। ଯେଉଁ ଲୋକ ରାମଙ୍କର ଏହି ଚରିତକୁ ସମ୍ପୂର୍ଣ୍ଣଭାବରେ ପାଠ କରେ, ସେ ମୃତ୍ୟୁ ପରେ ବିଷ୍ଣୁଲୋକକୁ ଯାଏ, ଏଥିରେ ସନ୍ଦେହ ନାହିଁ । ୨୦ । ତାହାଙ୍କର ପିତା, ପିତାମହ, ପ୍ରପିତାମହ, ତାଙ୍କର ପିତା ଓ ତାଙ୍କର ପିତା ମଧ୍ୟ ବିଷ୍ଣୁଲୋକକୁ ଯାନ୍ତି, ଏଥିରେ ସନ୍ଦେହ ନାହିଁ । ୨୧ । ରାମଙ୍କର ଏ ଚରିତ ଧର୍ମ, ଅର୍ଥ, କାମ, ମୋକ୍ଷ ଏହି ଚତୁର୍ବର୍ଗ ଫଳ ସର୍ବଦା ପ୍ରଦାନ କରିଥାଏ । ସୁତରାଂ ଏହି ପରମଚରିତକୁ ଲୋକେ ଯତ୍ନବାନ୍ ହୋଇ ସର୍ବଦା ଶୁଣିବା ଉଚିତ ।୨୨। ଯେଉଁ ଲୋକ ଭକ୍ତିସହକାରେ ରାମାୟଣର ଗୋଟିଏ ପାଦ ବା ଗୋଟିଏ ମାତ୍ର ପଦ ଶ୍ରବଣ କରେ, ସେ ଲୋକ ବ୍ରହ୍ମଲୋକକୁ ଯାଏ ଏବଂ ସର୍ବଦା ବ୍ରହ୍ମାଙ୍କଦ୍ୱାରା ପୂଜିତ ହୁଏ । ୨୩ । ପୂର୍ବକାଳରେ ଘଟିଥିବା ଏହି ଆଖ୍ୟାନକୁ ବିଶ୍ୱାସ ସହକାରେ ପାଠ କରିବାଦ୍ୱାରା ବିଷ୍ଣୁଙ୍କର ବଳ ବୃଦ୍ଧି ଲାଭକରିବ ଏବଂ ଆପଣମାନଙ୍କର ସମସ୍ତ ମଙ୍ଗଳ ହେବ । ୨୪ ।

---

୧୯୫୪ ମସିହା ସେପ୍ଟେମ୍ବର ମାସ ୨୧ ତାରିଖ ଦିନ ନିଜଦାଣ୍ଡପୀଠାରେ ବାଲ୍ମୀକି ରାମାୟଣର ଅନୁବାଦ ସମାପ୍ତ ହେଲା । **ଲିଙ୍ଗରାଜ ମିଶ୍ର**

# ରାମାୟଣ ପାଠବିଧି

'ବାଳେ' ବଂଶକରଃ ପ୍ରୋକ୍ତ 'ଅଯୋଧ୍ୟା' ବ୍ୟାଧିନାଶନଃ ।
'ଅରଣ୍ୟେ' ହ୍ୟଭୟଂକର୍ତ୍ତା 'କିଷ୍କିନ୍ଧା' ମିତ୍ରଦାୟକଃ ।୧।
'ସୁନ୍ଦରଃ' ଶୋକହର୍ତ୍ତା ଚ 'ଯୁଦ୍ଧଃ' ଶତ୍ରୁପ୍ରଣାଶକଃ ।
'ଉତ୍ତରଃ' ଶ୍ରବଣାତ୍ ପୁଂସାଂ 'ନୋତ୍ତରଂ' ବିଦ୍ୟତେ ଫଳମ୍ ।୨।

**ପାଠବିଧି** :—ପୁନର୍ବସୁ ନକ୍ଷତ୍ର ଦିନରୁ ଆରମ୍ଭ କରି ରାମାୟଣ ପାଠ ଆରମ୍ଭ କରିବା ଉଚିତ । ପ୍ରତିଦିନ ଦଶ ସର୍ଗ ଲେଖାଏଁ ପାଠ କରି, ପୁଷ୍ୟା ନକ୍ଷତ୍ରରେ ରାଜ୍ୟାଭିଷେକ କରି ପାରାୟଣ ସମାପନ କରିବା ଉଚିତ । ଉତ୍ତରକାଣ୍ଡ ସାଧାରଣତଃ ଘରେ ବସି ପାଠ କରାଯାଏ ନାହିଁ ।

ପାଠ କରିବା ପୂର୍ବରୁ ହନୁମାନଙ୍କ ସହିତ ସୀତା ଓ ରାମଚନ୍ଦ୍ରଙ୍କର ଷୋଡ଼ଶ ଉପଚାର ପୂଜା କରି, ତଦନନ୍ତର ପାଠ ଆରମ୍ଭ କରିବା ଉଚିତ । ରାମାୟଣ ପାଠ କଲାବେଳେ ପାଠକ ନିଜର ଦକ୍ଷିଣପାର୍ଶ୍ୱରେ ଗୋଟିଏ ଘିଅଦୀପ ରଖିବ । କେଶରମିଶ୍ରିତ ଚନ୍ଦନଦ୍ୱାରା ତାମ୍ରପାତ୍ରରେ ଗୋଟିଏ ଷଟ୍‌କୋଣ ଯନ୍ତ୍ର ଲେଖି ତା ଉପରେ ଚାଉଳ ଦେଇ, ସେହି ଚାଉଳ ଉପରେ ଉକ୍ତ ଘିଅଦୀପକୁ ରଖିବ । ଯେଉଁଦିନ ପଟ୍ଟାଭିଷେକ ହେବ ସେ ଦିନ ବ୍ରାହ୍ମଣଭୋଜନ କରାଇବ ଏବଂ ହନୁମାନଙ୍କର ପ୍ରୀତି ନିମନ୍ତେ ବାନରମାନଙ୍କୁ ଗହମଭଜା ଗୁଡ଼ରେ ପାକ କରାଇ ଖୁଆଇବ ।

ପାଠ କରିବା ସମୟରେ ପାଠକ ଉତ୍ତର ବା ପୂର୍ବାଭିମୁଖ ହୋଇ ବସିବେ ଏବଂ ଯେତେଦିନଯାଏ ରାମାୟଣ ପାଠ କରୁଥିବେ, ସେତେଦିନ ପର୍ଯ୍ୟନ୍ତ ବ୍ରତ ପାଳନ କରିବେ, ଅର୍ଥାତ୍ ଭୂମିରେ ଶୟନ କରିବେ, ଦିନରେ ଥରେ ମାତ୍ର ହବିଷ୍ୟାନ୍ନ ଭୋଜନ କରିବେ, ସ୍ତ୍ରୀସହବାସ କରିବେ ନାହିଁ, ଚର୍ମପାଦୁକା ପିନ୍ଧିବେ ନାହିଁ, କ୍ଷୌର ହେବେ ନାହିଁ ଏବଂ ମିଥ୍ୟା କଥା କହିବେ ନାହିଁ ।

